ଶୁଦ୍ରମୁନି ୰ ଶାରଳା ଦାସଙ୍କ କୃତ

# ମହାଭାରତ



ପ୍ରକାଶକ- **ଧର୍ମଗ୍ରନ୍ଥ ଷ୍ଟୋର** ଅଲିଶା ବଜାର, କଟକ-୨

ଶୂଦ୍ରମୁନି ଶାରଳା ଦାସଙ୍କ ବିରଚିତ




# ବନପର୍ବ

(ନୂତନ ମୁଦ୍ରଣ)

ପ୍ରକାଶକ ଓ ପ୍ରାପ୍ତିସ୍ଥାନ -

**ଧର୍ମଗ୍ରନ୍ଥ ଷ୍ଟୋର**

ପରିଚାଳକ -

ଶ୍ରୀ ବିଦ୍ୟାଧର ସାହୁ

ଅଲିଶା ବଜାର, କଟକ - ୨

ଫୋନ୍ : ୦୬୭୧-୨୫୦୮୨୯୬

ମୂଲ୍ୟ : ଏକଶହ କୋଡ଼ିଏ ଟଙ୍କା ମାତ୍ର





# ମହାଭାରତ ବନପର୍ବର

## ସୂଚୀପତ୍ର

| ବିଷୟ | ପୃଷ୍ଠା |
|---|---|

| ବିଷୟ | ପୃଷ୍ଠା |
|---|---|
| ମୁଦ୍‌ଗଲ ଋଷି ସଗର ହୋଇ ଜନ୍ମ ଓ ସଗରଙ୍କ ଷାଠିଏ ହଜାର | |
| ପୁତ୍ର କପିଳ ଋଷିଙ୍କର କ୍ରୋଧାନଳରେ ଦହନ | ୧୨୨ |
| ଭଗୀରଥଙ୍କର ଜନ୍ମ ଓ ଗଙ୍ଗାଙ୍କୁ ଆଣି ପିତୃ ଗଣଙ୍କୁ ଉଦ୍ଧାର କରିବା | ୧୩୦ |
| ସୁରେଶ୍ୱରୀ ଗଙ୍ଗା ଶ୍ରୀରାମଙ୍କ ଅଙ୍ଗ ସ୍ପର୍ଶକରି ପବିତ୍ର ହେବା | ୧୩୬ |
| ନିକୁମ୍ଭ ଦୈତ୍ୟର ବଧ ଓ ହାରାବତୀ ଅର୍ଜ୍ଜୁନର ବିଭା | ୧୪୦ |
| ସତ୍ୟ ଆମ୍ବର ବିବରଣ | ୧୫୨ |
| ଗୋକର୍ଣ୍ଣ ତୀର୍ଥର ମାହାତ୍ମ୍ୟ | ୧୫୭ |
| ସଚଳା ହରଣ | ୧୫୯ |
| ଇନ୍ଦ୍ରାଦି ଦେବଙ୍କ ସହିତ ରାମ କୃଷ୍ଣଙ୍କର ଯୁଦ୍ଧ ଓ ସଚଳାର ବିବାହ | ୧୬୭ |
| କୀର୍ତ୍ତିବାସ ଦୈତ୍ୟ ବଧ, ଚନ୍ଦ୍ରଭାଗା ତୀର୍ଥ ମାହାତ୍ମ୍ୟ ଓ ଅର୍କଦୈତ୍ୟ ବଧ | ୧୭୯ |
| ଚନ୍ଦ୍ରଭାଗା ତୀର୍ଥେ ଶାମ୍ବଙ୍କର କୁଷ୍ଠବ୍ୟାଧି ମୋଚନ ଓ ଯୁଧିଷ୍ଠିରଙ୍କର | |
| ମହୋଦଧିରେ ମହାମାଘସ୍ନାନ ଫଳର ବିବରଣ | ୧୮୬ |
| ଗଜ କଚ୍ଛପର ଯୁଦ୍ଧ | ୧୯୫ |
| ନୀଳଗିରିର ପୂର୍ବବୃତ୍ତାନ୍ତ ଏବଂ ଶ୍ରୀକୃଷ୍ଣଙ୍କର ମୃତପିଣ୍ଡ ବର୍ଣ୍ଣନ | ୧୯୯ |
| ସଂକ୍ଷିପ୍ତ ରାମାୟଣ | ୨୦୫ |
| ସତ୍ୟଭାମା ଦ୍ରୌପଦୀଙ୍କ କଥୋପକଥନ | ୨୧୫ |
| ନଳରାଜା ଉପାଖ୍ୟାନ | ୨୧୭ |
| ଦମୟନ୍ତୀ ସ୍ୱୟମ୍ବର, ନଳ ଦମୟନ୍ତୀଙ୍କ ବନବାସ ଏବଂ ବିଚ୍ଛେଦ | ୨୨୧ |
| ନଳଙ୍କର ଅଯୋଧ୍ୟା ପ୍ରବେଶ ଓ ବାହୁକ ସାରଥି ନାମ ଧାରଣ | ୨୨୮ |
| ଦମୟନ୍ତୀଙ୍କ ଦ୍ୱିତୀୟ ସ୍ୱୟମ୍ବର | ୨୩୨ |
| ବଳରାମଙ୍କର ଜନ୍ମ ଓ ରେବତୀ କନ୍ୟା ସହିତ ବିବାହ | ୨୪୨ |
| ଭୀମର ବନବିହାର ଓ କାଳଞ୍ଜି ରାକ୍ଷସୀ ସହିତ ଗାନ୍ଧର୍ବ ବିବାହ | ୨୪୭ |
| ନକୁଳର ସତ୍ୟନିଷ୍ଠା ଦର୍ଶନ, ରେବାଦୈତ୍ୟର ପୁରସ୍କାର ଏବଂ ବସ୍ତ୍ରାହରଣ | |
| ଦୋଷେ ବ୍ରହ୍ମାଙ୍କୁ ଅପୂଜ୍ୟ ଅଭିଶାପ | ୨୫୦ |
| ସତୀ ସ୍ତ୍ରୀର ଉପାଖ୍ୟାନ | ୨୫୫ |
| ତ୍ରିପୁରମୋହିନୀ ହରଣ ଓ ମେରୁଶୃଙ୍ଗ ଦୈତ୍ୟର ବଧ | ୨୫୭ |
| ବିରାଟ ରାଜା ଓ ସୁଦେଷ୍ଣାଙ୍କ ପୂର୍ବଜନ୍ମ ବିବରଣ, କୀଚକ ଶତଭାଇଙ୍କ ଜନ୍ମ | |
| ଏବଂ ବିରାଟ ରାଜାଙ୍କ ମତ୍ସ୍ୟଦେଶେ ଅଭିଷେକ | ୨୭୦ |
| ବିରାଟ ଉପଦେଶ ପ୍ରାପ୍ତି ଏବଂ ପଞ୍ଚପାଣ୍ଡବଙ୍କ ଛଦ୍ମବେଶ ଧାରଣ | |
| ଶମିବୃକ୍ଷର ଉତ୍ପତ୍ତି, ତାହାର କୋଟରେ ଅସ୍ତ୍ରରକ୍ଷା | ୨୭୪ |
| ପାଣ୍ଡବଙ୍କ ଗୁପ୍ତବେଶ ଧାରଣ କରି ରହିବାର ମନ୍ତ୍ରଣା | ୨୭୯ |
| ଯୁଧିଷ୍ଠିରଙ୍କର ବାଞ୍ଛାବଟକୁ ସ୍ତବ ଓ ସାହାଡ଼ାପତ୍ରର ମାହାତ୍ମ୍ୟ | ୨୮୬ |
| ତ୍ରିପୁରାସୁର ବଧ | ୨୮୭ |

**ବନପର୍ବର ସୂଚିପତ୍ର ସମାପ୍ତ**

# ମହାଭାରତ

## ବନପର୍ବ

ନାରାୟଣଂ ନମସ୍କୃତ୍ୟଂ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟମୁଦୀରୟେତ୍ ।।
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା ।
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।।

ତଂ ବେଦଶାସ୍ତ୍ରପରିନିଷ୍ଠିତଶୁଦ୍ଧବୁଦ୍ଧିଂ,
ଚର୍ମାମ୍ବରଂ ସୁରମୁନୀନ୍ଦ୍ରନ୍ୟତଂ କବୀନ୍ଦ୍ରଂ ।
କୃଷ୍ଣତ୍ୱିଷଂ କନକପିଙ୍ଗଜଟାକଳାପଂ,
ବ୍ୟାସଂ ନମାମି ଶିରସା ତିଳକଂ ମୁନୀନାଂ ।

ଆଦୌ ଧୃତରାଷ୍ଟ୍ରପଣ୍ଡୁ ଜନନଂ ଲାକ୍ଷାଗୃହେ ଦାହନଂ,
ଦ୍ୟୁତେ ସ୍ତ୍ରୀହରଣଂ ବନେ ବିଚରଣଂ ମତ୍ସ୍ୟାଳୟେ ଗୋପନଂ ।
ଲୀଳା ଗୋ ହରଣଂ ହ୍ୟନେନ ତରଣଂ ସନ୍ଧିକ୍ରିୟା କୃଷ୍ଣଣଂ,
ଭୀଷ୍ମଦ୍ରୋଣସୁଯୋଧନାଦି ଦଳନଂ ଏତନ୍ମାହାଭାରତଂ ।।

ଭୀଷ୍ମଦ୍ରୋଣତଟା ଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା,
ଶଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମାବିକର୍ଣ୍ଣ ଘୋର ମକରା ଦୁର୍ଯ୍ୟୋଧନାବର୍ତ୍ତିନୀ,
ସୋଽତ୍ତୀର୍ଣ୍ଣା ଖଳୁ ପାଣ୍ଡବୈଃ ରଣନଦୀ ଯତ୍କର୍ଣ୍ଣଧାରୋ ହରିଃ ।।

ଭାରତ ଶ୍ରୁତିମାତ୍ରେଣ ଗଙ୍ଗାସ୍ନାନେନ ମାନବଃ ।
ବିଷ୍ଣୁ ସ୍ମରଣ ମାତ୍ରେଣ ସର୍ବପାପୈଃ ପ୍ରମୁଚ୍ୟତେ ।
ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଲ୍ମଷଂ ।
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିଂ ।।

ତତ୍ରୈବ ଗଙ୍ଗା ଯମୁନା ଚ ତତ୍ର, ଗୋଦାବରୀ ତତ୍ର ସରସ୍ୱତୀ ଚ ।
ସର୍ବାଣି ତୀର୍ଥାନି ବସନ୍ତି ତତ୍ର ଯତ୍ରାଚ୍ୟୁତୋଦାର କଥା ପ୍ରସଙ୍ଗଃ ।

## ବନ୍ଦନା

ନମସ୍ତେ ଗିରିଜା ମାଗୋ ଝଙ୍କଡ଼ବାସିନୀ
ଅନଳ ସମ୍ଭବୀ ମୁଖ ତୋର ସରୋଜନୀ ।
କୃପାଜଳ ନନ୍ଦିନୀ ନର୍ମଦା ସରସ୍ୱତୀ
ଚନ୍ଦ୍ରଭାଗା ତୀରେ ମାଗୋ ଯୋଗଲୟେ ସ୍ଥିତି ।
ସହଜ ଆସନ ମାଗୋ ଚିନ୍ତୁ ବ୍ରହ୍ମରାଶି
ସୁର ନର କିନ୍ନରାଦି ତୋର ନାମ ଘୋଷି ।
ଦନୁଜବଳ ଧ୍ୱଂସିନୀ ରଣରଙ୍ଗେ ପଶୁ
କେଶରୀ ପିଠିରେ ବସି ଅସୁର ବିନାଶୁ ।
ଅଦୃଢ଼ ଡଙ୍ଗାକୁ ମାଗୋ ହେଳେ ଦୃଢ଼ କରୁ
ସ୍ମରନ୍ତେ ବୁଡ଼ିଲା ଡଙ୍ଗା ବାରେ ତୁ ଉଦ୍ଧରୁ ।
ଅନାଥ ଜନର ମାଗୋ ତୁହି ଅଟୁ ସଖା
ଆଦି ଅନ୍ତଃକାଳେମାଗୋ ତୁହି କରୁ ରକ୍ଷା ।
କଳିକାଳ ବିଧ୍ୱଂସିନୀ ନମସ୍ତେ ଶାରଳା
ଯାହାଙ୍କର ହୃଦୟରେ ଶୋହେ ମୁଣ୍ଡମାଳା ।
ଶିରରେ ମୁକୁଟ ମାଗୋ ଶୋହେ ସୀମନ୍ତିନୀ
ଚାଲନ୍ତେ ପାଦେ ନୂପୁର କରୁଥାଇ ଧ୍ୱନି ।
କନକପୁରକୁ ମାଗୋ ଦେଉଅଛୁ ଦୃଷ୍ଟି
ନିର୍ଭୟେ ବସିଛୁ ମାଗୋ କେଶରୀର ପିଠି ।
ଅଷ୍ଟ ଅଷ୍ଟ ଦିନେ ମାଗୋ ତୋର ହୁଏ ଜାତ
କୁଷ୍ଠ ବ୍ୟାଧି ଜନଙ୍କୁ ତୁ କରୁଛୁ ମୁକତ ।
ମୁକୁତା ମାଳାରେ ହେଉ ଚମ୍ପାଫୁଲ ମଣ୍ଡି
କର ଅନୁଗ୍ରହ ମାଗୋ ଶ୍ରୀ ଶାରଳା ଚଣ୍ଡୀ ।
ନରମଦା ସରସ୍ୱତୀ ଅଟେ ତୋର ନାମ
ବେଦଶାସ୍ତ୍ର ପୁରାଣାଦି ସବୁରେ ଉତ୍ତମ ।
ପରାଶରଙ୍କ ନନ୍ଦନ ବ୍ୟାସ ତପୋବନ୍ତ
ସେ ମୁନି ଜାଣନ୍ତି ମାଗୋ ତୋହର ତଦନ୍ତ ।
କାଠି ଯୋଖା କରିଲେ କି ସିନ୍ଧୁ ହୁଏ କଳି
ତେଣୁ ସୁପ୍ରସନ୍ନ ହୁଅ ମୋତେ ଭଦ୍ରକାଳୀ ।
ସିନ୍ଧୁ ମନ୍ଥନେ ମୋହିନୀ ମୋହିଥିଲେ ଯଥା
ଭାରତେ ମୋହିବି ତଥା ତୋ ପ୍ରସନ୍ନେ ମାତା
ନ ପଢ଼ି ପଣ୍ଡିତ ହେଲି ତୋର କୃପା ଘେନି
ଯହୁଁ ମୋତେ ସୁପ୍ରସନ୍ନ ଝଙ୍କଡ଼ ବାସିନୀ ।
ନ ପଢ଼ିଲି ନ ଲେଖିଲି ନ ଦେଖିଲି ନେତ୍ରେ
ଅମୂଲ୍ୟ ନିଧି ପୁରାଣ ପାଇଲି ମୁଁ ହାତେ ।
କନକାବତୀ ପାଟଣା କନକର ପୁରେ
ତୋର ଭେଟ ପାଇଲି ମୁଁ ନିଶାର୍ଦ୍ଧେ କାଳରେ ।
କେତେକ ଜନମେ କେତେ ତପ କରିଥିଲି
ଏ ଜନ୍ମେ ଅଭକତିରେ ତୋତେ ମୁଁ ଭେଟିଲି ।
ଶ୍ରୀଚଣ୍ଡୀ ଶାରଳା ପାଦେ ସଦା ମୋର ସେବା
ଶୂଦ୍ରମୁନି ଶାରଳାକୁ ମୁକ୍ତି ଗତିଦେବା ।
ଶ୍ରୀମହାଭାରତ ବନପର୍ବର ଯେ କଥା
ଚତୁର୍ଥ ଖଣ୍ଡର ଏହି ଦୁର୍ଲ୍ଲଭ ବାରତା ।
କହିବି ଯେହ୍ନେ ପଶିବେ ଗହନ ବନସ୍ତେ
ଦୁର୍ଗାଙ୍କୁ ମୁଁ ସୁମରଣା କରେ ହୃଦଗତେ ।
ସୀମନ୍ତିନୀ କାତ୍ୟାୟିନୀ ଅଭୟେ ମା ଦୁର୍ଗେ
ତୁହି ସେ ଆପଦ ମୋର ଖଣ୍ଡୁ ସର୍ବଯୁଗେ ।
ଆପଦ ଖଣ୍ଡିନୀ ମାଗୋ ଦୁର୍ଗତି ତାରିଣୀ
ଆଦି ଅନ୍ତ ମଧ୍ୟେ ତୁହି ଅଟୁ ନା କାରିଣୀ ।
ନାରାୟଣୀଙ୍କୁ ସମରେ ପଶିଲେ ସୁମରି
ଜଳରେ ରକ୍ଷା କରନ୍ତି ଦେବୀ ମାହେଶ୍ୱରୀ
ଅଟବୀରେ ରକ୍ଷା ମାଗୋ କର ସର୍ବକାଳେ
ସର୍ବଦାକାଳେ ରଖନ୍ତି ମା ସର୍ବମଙ୍ଗଳେ ।
ଜରା ମୃତ୍ୟୁକାଳେ ତାଙ୍କୁ ସ୍ମରୁଥିବ ଭାଳି
ଶ୍ଳେଷ୍ମା ବ୍ୟାଧିରେ ସୁମରିଥିବ ଭଦ୍ରାକାଳୀ ।
ବାତୋଦୟକାଳେ ବାରାହୀକି ସୁମରିବ
ଯଜ୍ଞର ସଂଯୋଗକାଳେ ଇନ୍ଦ୍ରାଣୀ ଭଜିବ ।
କାମରସ କାଳେ ସୁମରିବ ଯେ କାମାକ୍ଷୀ
ବ୍ୟାଧିପୀଡ଼ା କାଳେ ସୁମରିବ ପିଙ୍ଗଳାକ୍ଷୀ ।
ଅଜୀର୍ଣ୍ଣ ହୋଇଲେ ସୁମରିବ ଉଗ୍ରତାରା
ଭୈରବୀ ସୁମରିଲେ ନ ପୀଡ଼େ ଗର୍ଭଭାରା ।
ଶରୀରରେ ପୀଡ଼ା ଯେବେ କରେ ରୋଗବ୍ୟାଧି
ତ୍ରିପୁରାକୁ ସୁମରନ୍ତେ ରୋଗ ହୁଏ ସାଧି ।
ବିପଦ କାଳରେ କାଳିକାକୁ ସୁମରିବ
ଯାତ୍ରା ଉତ୍ସବ କାଳରେ ମଙ୍ଗଳା ଧାୟିବ ।
ପାକ ପ୍ରସ୍ତୁତ କାଳରେ ସ୍ମରିବ ହିଙ୍ଗୁଳା
ବାସେଳୀଙ୍କୁ ସୁମରିବ ଭୋଜନର ବେଳା ।
ଅନୁଭବକାଳେ ସ୍ମର ଦେବୀ ଅନନ୍ତାଈ
ଦ୍ୟୂତାରମ୍ଭ କାଳେ ସ୍ମର ଦେବୀ ବରୁଣାଈ ।
ମୃଗୟାକାଳେ ସ୍ମରିବ ଦେବୀ ହରିଣାଈ
ଶୟନକାଳେ ସ୍ମରିବ ଦେବୀ ଜାଗୁଳାଈ ।
କ୍ଷତ୍ରୀ ଆରମ୍ଭ କାଳରେ ସ୍ମରିବ ଚାମଣ୍ଡା
ଦୁଃସ୍ୱପ୍ନ ହେଲେ ସ୍ମରିବ ସ୍ୱପ୍ନାବତୀ ଖଣ୍ଡା ।
ତର୍କାରମ୍ଭେ ସୁମରିବ ଦେବୀ ଯେ ବାସେଳୀ
ଗୃହେ ପ୍ରବେଶି ସ୍ମରିବ ଦେବୀ ଭଦ୍ରାକାଳୀ ।
ଅନନ୍ତ ମୂରତି ତାଙ୍କ କେ କରିବ ସଂଖ୍ୟା
ପ୍ରସନ୍ନ ଦାୟିନୀ ମାଗୋ ଫେଡ଼ ମନୋବାଞ୍ଛା ।
ଜଗଜ୍ଜନତାରିଣୀ ଗୋ ପ୍ରସନ୍ନ ମଙ୍ଗଳେ
ସଦା ସମ୍ପଦ ଦେଉ ମା ସବୁ ଅନୁକୂଳେ ।

ନମୋ କାତ୍ୟାୟିନୀ ମାଗୋ ନମସ୍ତେ ନମସ୍ତେ
ତବ ଚରଣ ବନ୍ଦନ କରଇ ମୁଁ ନିତ୍ୟେ ।
ଝଙ୍କଡ଼ପୁର ବାସିନୀ ତୁହି ବରଦାତ୍ରୀ
ଯୋଗେଣ ଯୋଗେଶ୍ୱରୀ ଗୋ ଶ୍ରୀ ଶାରଳା ମୂର୍ତ୍ତି
ବହୁତ କୌଣପ ମାରି ପୃଥ୍ୱୀ କଲୁ ରକ୍ଷା
ଆପଦ ଖଣ୍ଡିଣ ମୋର ପୂରା ମନୋବାଞ୍ଛା ।
ଶ୍ରୀଚଣ୍ଡୀ ଶାରଳାଙ୍କର ଅଟେ ନିଜଦାସ
କହଇ ଯେ ଶୂଦ୍ରମୁନି କରିଣ ଅଭ୍ୟାସ ।



## ପାଣ୍ଡବଙ୍କର ବନବାସ

ବୈବସ୍ୱତ ମନୁ କଲେ ଅଗସ୍ତିଙ୍କୁ ପୁଚ୍ଛା
କୌରବ ପାଣ୍ଡବ ଏକ ଛାଡ଼ିହେଲେ କକ୍ଷା ।
ଯୁଧିଷ୍ଠିର ବନବାସ ହୋଇଲା କେମନ୍ତେ
ଏ କଥା ବିସ୍ତାରି ମୁନି କହିବାକ ମୋତେ ।
ଶୁଣ ଆହେ ବୈବସ୍ୱତ କହନ୍ତି ଅଗସ୍ତି
ପାଣ୍ଡବଙ୍କ ବନବାସ ହେଲା ଯେଉଁ ମତି ।
ତୁଳ କୃଷ୍ଣପକ୍ଷ ଭୌମ ବାସର ଚଉଠି
ରୋହିଣୀ ନକ୍ଷତ୍ର ଦିନ ବେଳ ତିନି ଘଟି ।
ସେ ଦିନ ଯୁଧିଷ୍ଠିଦେବ ହସ୍ତିନାକୁ ଗଲେ
ଧୃତରାଷ୍ଟ୍ର ପଦେ ବହୁ ପ୍ରଣମିତ ହେଲେ ।
ଆସ୍ଥାନରେ ବସ ବୋଲି ତାଙ୍କୁ ଅବଧାରୀ
ଆସ୍ଥାନ ମଧ୍ୟରେ ପୂଜେ ଧର୍ମ ଦଣ୍ଡଧାରୀ ।
ଯୁଧିଷ୍ଠିର ଦୁର୍ଯ୍ୟୋଧନ ବସି ଏକାସନେ
କଉତୁକେ କହୁଛନ୍ତି କଥା ଯୋଦ୍ଧାମାନେ ।
ଆସ୍ଥାନରେ ପାତନ୍ତେଣ ମନ୍ତ୍ରୀ ପଶାକାଠି
ଯୁଧିଷ୍ଠିର ଦେବ ତହିଁ ବଳାଇଲେ ଦୃଷ୍ଟି ।
ଶ୍ରୀଭୁଜରେ ଖଡ଼ିଘେନି ଆପେ ଧର୍ମସୁତେ
କୋଠିକାଟ ବୋଲିଦେଲେ ସହଦେବ ହାତେ ।
ଆପେ ସହଦେବ ମନ୍ତ୍ରୀ କାଟେ ଖଡ଼ି ଘେନି
ବଇଜୟନ୍ତୀ ଯେ ମାଳା କଲା ଛକ ତିନି ।
ଏ ପଶା କପଟ ବୋଲି ଲିହିଲା କପଟୀ
ଦେଖିଣ ଦରହସିତ ନୃପତି ଯୁଧିଷ୍ଠି ।
ବୋଲନ୍ତି ଧର୍ମସୁତ ଏ ନୁହଇ ତ ପଶା
ଅନ୍ୟ ପଶା ଖେଳିବାକୁ ବଳଇ ମୋ ଆଶା ।
ଆନ ପଶା ଆଣ ବୋଲି ବୋଇଲେ ଯୁଧିଷ୍ଠି
ଅଭୂତେ ସଭାରେ ଆସି ପଡ଼େ ପଶାକାଠି ।
ବଡ଼ଇ ଚକିତ ପଶା ପଡ଼େ ଦଶଦାନ
ଦେଖିଣ ହରଷ ତହିଁ ହେଲେ ଦୁର୍ଯ୍ୟୋଧନ ।
ଆହେ ଧର୍ମ ଦେବ ପଶା ହୋଇଲା ପ୍ରାପତ
ସହଦେବ ପାତୁ ବୋଲି ବୋଲେ କୁରୁନାଥ ।
ଦକ୍ଷିଣେ ମାନଗୋବିନ୍ଦ ଉତ୍ତରେ ଯୁଧିଷ୍ଠି
ମଧ୍ୟେ ପାତେ ସହଦେବ ଘେନି ପଶାକାଠି ।
କାଠିକୁ ନିରେଖି ଚାହିଁ ବସେ ମନ୍ତ୍ରୀବର
ଏସନକ ଭିଆଣ ଯେ ହେଲା ଦେବଙ୍କର ।
ଚଇତନ୍ୟ ପୁଚ୍ଛାକଲା ମନ ପୁରୁଷକୁ
ସହଦେବ କିପାଁ ନିନ୍ଦା କଲା ଦେବତାଙ୍କୁ ।
ଶୁଣ ଆହେ ଚଇତନ୍ୟ ଏଥିର ତଦନ୍ତ
ଦେବେ ବିଜେ କରିଛନ୍ତି ମେରୁ ପରବତ ।
ଏମନ୍ତ ବେଳେ ପିତାଙ୍କୁ ବୋଇଲେ ଅବନୀ
ଆସ୍ଥାନେ ଗୁହାରି କଲା କରେ କମ୍ବୁ ଘେନି ।
ବିକଳ ହେଲା ଧାତାର ଅଗ୍ରତରେ ମହୀ ।
କୀଚକର ଭାରା ମୁହିଁ ନ ପାରଇ ସହି
ବିକ୍ରମି ଚାଲନ୍ତେ ମୁଖୁଁ ରୁଧିର ବହଇ ।
ରସାଗତ ହୋଇବି ମୁଁ ବଡ଼ ଦୁଃଖ ପାଇ
ଧାତା କହିଲେ ଦୁର୍ବଳ ଖେଳ ବେନି ଦ୍ୟୁତେ
ବିଗ୍ରହ କରାଅ କୁରୁ ପାଣ୍ଡବ ଦ୍ୱି ଭ୍ରାତେ ।
ଯୁଧିଷ୍ଠିରଙ୍କୁ ପଶାରେ ହରାଇଣ ଆସ
ଭାଇସହ ଯୁଧିଷ୍ଠିର ଯାଉ ବନବାସ ।
ଦ୍ୱାଦଶ ବରଷ ସେହି ହେଉ ବନଗାମୀ
ବରଷକେ ତେରଦିନ ଗୋପ୍ୟ ହେଉ ଭ୍ରମି ।
ବିରାଟ ରାଜ୍ୟରେ ସେହି ହୋଇବ ଗୋପନ
କୀଚକ ବଧ କରିବ ବୀର ଭୀମସେନ ।
ପିତା ଆଜ୍ଞାରେ ଦୁର୍ବଳ ଖଳ ବେନି ଗଲେ
ଦୁହେଁ ଦୁହିଁଙ୍କ ହୃଦୟେ ଯାଇ ବିଶ୍ରାମିଲେ ।
ଦୁର୍ବଳ ପଶିଲା ଯୁଧିଷ୍ଠିରଙ୍କ ଉଦରେ
ଖଳ ଯାଇ ବସେ ଦୁର୍ଯ୍ୟୋଧନ ହୃଦୟରେ ।
କଳିକାଳ ଦୁହେଁ ତହିଁ ପଶାକାଠି ହେଲେ
ଦୁର୍ଯ୍ୟୋଧନ ଯୁଧିଷ୍ଠି ତା ବାରି ନ ପାରିଲେ ।
ଦୁର୍ଯ୍ୟୋଧନ ମୁଖ ଚାହିଁ ବୋଲେ ଧର୍ମରାଜା
ଏ ପଶାକୁ କିସ ପୀଢ଼ କରିବା ପରିଯା ।
ଦୁର୍ଯ୍ୟୋଧନ ବୋଇଲେ ଏ ପଶା କଳଙ୍କିତ
ଆକାଶୁ ଅଭୂତେ ଆସି ହେଲା ଉପଗତ ।
ଦୁହେଁ ଆମ୍ଭେ ଦାନେ ଦାନେ ଘେନିବାକ ବାଛି
ଯେ ହାରଇ ତାର ପାଞ୍ଚରାଜ୍ୟେ ନାହିଁ କିଛି ।
ଯୁଧିଷ୍ଠି ବୋଇଲେ ବାର ବରଷ ପର୍ଯ୍ୟନ୍ତେ
ରାଜ୍ୟ ତାର ଛାଡ଼ି ସେହି ବୁଲିବ ବନସ୍ତେ ।
ଏ ପଶାରେ କେହି ଜଣେ ହାରିବ ଅବଶ୍ୟ
ରାଜ୍ୟଭାର ଛାଡ଼ି ସେହି ଯିବ ବନବାସ ।
ଶକୁନି ବୋଇଲା ଏକ ବର୍ଷ ତେରଦିନ
ଅଜ୍ଞାତ ବାସ ହୋଇବ ଅଦୃଶ୍ୟ ଗୋପନ ।

ଏ ବରଷେ ତେରଦିନେ ଯେବେ ହେବ ଜ୍ଞାତ
ପୁଣି ତେର ବରଷ ସେ ପଶିବ ବନସ୍ତ ।
ଯୁଧିଷ୍ଠିର ଦୁର୍ଯ୍ୟୋଧନ ହେଲେ ଦୁହେଁ ତୁନି
ସହଦେବ ବୋଇଲେ ଯା ବୋଇଲେ ଶକୁନି ।
ଜାଣଇ ସେ ସହଦେବ ଦେବଙ୍କ ଚରିତ
ଗୋପନ ନୋହିଲେ ନୁହେଁ କୀଚକ ନିହତ ।
ଶତ କୀଚକ ମରିବେ ଭୀମସେନ ହସ୍ତେ
ସହଦେବ ସନମତ କଲା ଏହୁ ଅର୍ଥେ ।
ମନ୍ତ୍ରୀଙ୍କ ସମ୍ମତେ ବେନି ରାୟେ ହେଲେ ତୁଷ୍ଟି
ହୋଇଲା ଏହି ପରିଯା ବୋଇଲେ ଯୁଧିଷ୍ଠି ।
ଯୁଧିଷ୍ଠି ବୋଇଲେ ଦୁର୍ଯ୍ୟୋଧନ ମୁଖ ଚାହିଁ
ଘେନ ଦାନ ତୋହର ଯେ ମନରେ ଅଛଇ ।
ଦୁର୍ଯ୍ୟୋଧନ ଯୁଧିଷ୍ଠିଙ୍କ ବଚନେ ବୋଇଲା
ମୋର ବେନିଭାଗେ ବେନି ଚଉକ ହୋଇଲା ।
ଯୁଧିଷ୍ଠିଦେବ ବୋଇଲେ ଯେ ତୋହର ଇଚ୍ଛା
ମୋହର ଦାନ ହୋଇଲା ପାଞ୍ଚ ପାଞ୍ଚ ସଞ୍ଚା ।
ଦୁର୍ଯ୍ୟୋଧନର ଚଉକ ପାଞ୍ଚ ଯେ ଯୁଧିଷ୍ଠି
ଗୋରେଖ ସୁମରି ଦେଲେ କରେ ପଶାକାଠି ।
ଧର୍ମକୁ ସୁମରି ତୁହୋ ପକା ମନ୍ତ୍ରୀବର
ଜାଣିବା ନା ଧର୍ମ କର୍ମ ଅଟଇ କାହାର ।
ଧର୍ମ ସୁମରି ପାତିଲା ପଶା ସହଦେବ
ପଡ଼ିଲା ଚଉକ ଦାନ ଜିଣିଲେ କୌରବ ।
ଯୁଧିଷ୍ଠି ଦେବ ହାରିଲେ ଗଲା ରାଜ୍ୟଭାର
କଉରବେ ଯେ ଆନନ୍ଦ ହୋଇଲେ ଅପାର ।
ଯାଅ ହେ ପାଣ୍ଡବେ ଏଥେ କ୍ଷଣେ ହେଁ ନ ରହ
କରମ ଆଦରି ବନବାସେ ଦୁଃଖ ସହ ।
ଖାଇବ ମୃଗୟା ବେଣ୍ଟ କରି ବନଜୀବ
ଫଳମୂଳ ଖାଇ ବନେ ନିର୍ଦ୍ୱନ୍ଦେ ରହିବ ।
ସଂସାର ସାଗର ଏଥେ ଥିଲେ ଅପଖ୍ୟାତି
ଅନେକ କୌତୁକେ ଥିବ ଇଚ୍ଛାଏଣ ବର୍ତ୍ତି ।
ଏହି କୂଟକଥା ଶୁଣି କୁରୁଏ ହସିଲେ
ପଣ୍ଡୁପୁତ୍ରମାନେ ତହିଁ ବିରସ ହୋଇଲେ ।
କୋପକରି ଚାରିଭାଇ ଗର୍ଜନ୍ତି ତର୍ଜନ୍ତି
ଯୁଧିଷ୍ଠିଙ୍କୁ ଚାହିଁ କିଛି ବୋଲି ନ ପାରନ୍ତି ।
କୋପେ ନିଃଶ୍ୱାସ ଛାଡ଼ନ୍ତି ତହୁଁ ଘନ ଘନ
ଗରଜଇ ବାହାସ୍ଫୋଟ ମାରି ଭୀମସେନ ।
ରକତ କୁମୁଦ ଜିଣି ନେତ୍ର ଯେ ଦିଶଇ
ଯୁଧିଷ୍ଠିର ତରାଟିଣ ତାହା ସମ୍ଭାଳଇ ।
ଯେଉଁପରି ଜଳଧାରା ବର୍ଷେ ସୁରନାହା
ତେସନେକ ନିବାରିଲେ ଯୁଧିଷ୍ଠିର ତାହା ।

ତପସ୍ୱୀ ଶରୀର ତହୁଁ ପାଣ୍ଡବେ ଧଇଲେ
ପାଞ୍ଚବୀରେ ଉଠି ତହୁଁ ବନସ୍ତେ ଚଳିଲେ ।
କୋପେ ଭୀମ ସଭାରେ ଯେ କହଇ ପ୍ରକାଶି
କଥା ଏକ ଶୁଣ ତୁମ୍ଭେ ଯେତେ ଅଛ ବସି ।
ଦ୍ୱାଦଶ ବରଷ ନିଶ୍ଚେଁ ଯିବୁ ଆମ୍ଭେ ବନେ
ମଧ୍ୟ ବରଷକେ ଆମ୍ଭେ ରହିବୁ ଗୋପନେ ।
ତ୍ରୟୋଦଶ ବରଷ ଯେ ଆଉ ତେରଦିନ
ଅନ୍ତେ ଶତ ଭାଇଙ୍କର ଘେନିବି ପରାଣ ।
ଅମାତ୍ୟଙ୍କୁ ସାକ୍ଷୀ ସେହୁ କରଇ ରଥରେ
ଏକେ ନ ନାଶଇ ଯେବେ ଶତ କୁରୁବୀରେ ।
ମାମୁଁ କର୍ଣ୍ଣ ଦୁର୍ଯ୍ୟୋଧନ ଏହାଙ୍କ ଦେଖନ୍ତେ
ଦୁଃଶାସନ ହୃଦୟ ମୁଁ ବିଦାରିବି ହସ୍ତେ ।
ରକ୍ତପାନେ ସେ କୋପ ମୁଁ କରିବିଟି ଶାନ୍ତି
ଏଥକୁଟି କିଛି ମନେ ନ କରିବ ଭ୍ରାନ୍ତି ।
ସଭାମଧ୍ୟେ ଦ୍ରୌପଦୀର କେଶ ଆକର୍ଷିଲା
ଦୁଃଶାରକ୍ତେ କେଶ ନିଶ୍ଚେଁ ବାନ୍ଧିବି ବୋଇଲା ।
ଏହି କଥା ମୋର ଯେବେ ହୋଇବଟି ଆନ
ପିତା ମୋର ସ୍ୱର୍ଗପୁରେ ନ ପାଇବେ ସ୍ଥାନ ।
ଦୁର୍ଯ୍ୟୋଧନ ମୁକୁଟ ମୁଁ ମର୍ଦ୍ଦିବି ବିରୋଳି
ଯମପୁରକୁ ଯିବ ସେ ଭ୍ରାତେ ଆଶ୍ରାକରି ।
ତାର ଶତେଭାଇ ଏବେ ହେଲେ ମୋର ଭାଗ
ଅର୍ଜ୍ଜୁନ ମାରିବ କର୍ଣ୍ଣେ ଦେଖିଣ ସୁଯୋଗ ।
ଶକୁନି ସହଦେବର ଭାଗେ କୂଟବୁଦ୍ଧି
ପଶାଖେଳ କରାଇଲା ସେହି ଦୁଷ୍ଟବୁଦ୍ଧି ।
ଶୁଣି ସଭାଜନେ ତହିଁ ହୋଇଲେ ଚିନ୍ତିତ
ମାରୁତିର କଥା କେବେ ନୁହେଁ ବିପରୀତ ।
କୁଳକ୍ଷୟ କାରଣ ଏ ହୋଇଲାକ ଆସି
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ସଭାରେ ପ୍ରକାଶି ।
ଲୋକମୁଖେ ଅପଖ୍ୟାତି ପାଇ ଧୃତରାଷ୍ଟ୍ର
କୁଳକ୍ଷୟ କାରଣକୁ ହୋଇଲା ସେ ବାଟ ।
କର୍ଣ୍ଣ ବୋଲେ କୁଳକ୍ଷୟ କଲାକ ନିୟତ
ଅବଞ୍ଛା କରିବ କିଏ ପୂର୍ବଜନ୍ମ କୃତ ।
ଦ୍ୱିଦଶ ବରଷ ସୁଖେ ବନରେ ବଞ୍ଚିବ
ତହୁଁ ଆସି ବନ୍ଧୁସହ ସକଳ ନାଶିବ ।
ଭଲ ଏକ କାରଣକୁ କଲୁ ରାଜପୁତ୍ର
ହିତର କାରଣ ଏବେ ହୋଇଲା ଅହିତ ।
ଏଥୁ ଅନନ୍ତରେ ଶୁଣ ଏବେ ହୋ ରାଜନ
ଯୁଧିଷ୍ଠିର ଚରିତ ଯେ ପବିତ୍ର ଆଖ୍ୟାନ ।
ପାଣ୍ଡବେ ଚଳନ୍ତି ଯହୁଁ ରାଜଦାଣ୍ଡ ମାର୍ଗେ
ପୁରଜନେ କହୁଛନ୍ତି ଦେଖି ଅନୁରାଗେ ।

ଗୃହବାସ ଛାଡ଼ି ଜନେ ମିଳି ଦାଣ୍ଡେ ଆସି
ଲୋତକ ବହୁଛି ଯୁଧିଷ୍ଠିଙ୍କୁ ନେତ୍ରେ ଦେଖି ।
ଆହେ ପଣ୍ଡୁ ରାଜାର ଯେ ଅଟଇ ଏ ମହୀ
କୂଟେଣ ରାଜ୍ୟ ଏହାର ପୁତ୍ରକୁହିଁ ଦେଇ ।
ସୁକୁମାର ଶରୀର ଯେ ଭୋଗ ଅନୁରୂପ
କିପରି ବନେ ସହିବେ ଏହୁ ଦୁଃଖ ନୃପ ।
ଅଧର୍ମ କୂଟ କପଟ କଲା ଧୃତରାଷ୍ଟ୍ର
କେସନେକେ ସହିବ ଏ ବନସ୍ତରେ କଷ୍ଟ ।
ଗୋଡ଼ାନ୍ତି ନଗର ଜନେ ଆତ୍ମା ବିକଳିତ
ଯୁଧିଷ୍ଠିର ଆମ୍ଭର ଯେ ସ୍ୱାମୀ ଆଦିଅନ୍ତ ।
ଛାଡ଼ିବୁ ପୁତ୍ର କଳତ୍ର ଆଉ ଗୃହବାସ
ବନରେ ସେବିବୁ ଆମ୍ଭେ ଧରମ ପୁରୁଷ ।
ଭୀଷ୍ମଙ୍କର ଥାନ୍ତେ ଏତେ ଅନୀତି କିପାଇଁ
ବିଦୁର ମହାତମା କି ସଭାତଳେ ନାହିଁ ।
ଦ୍ରୋଣ ଗୁରୁ ସଞ୍ଜୟ କି ସଭାରେଣ ନାହିଁ
କୃପ ଶଲ୍ୟ ଦୁର୍ବାସା ମୁନିହିଁ ଗଲେ କାହିଁ ।
କିପାଇଁ ଯୁଧିଷ୍ଠିରଙ୍କୁ ଏ କଷ୍ଟ ବିହିଲା
ଦେବତା ଧର୍ମରେ ଯାହା ଅଛଇ ଲିହିଲା ।
ପ୍ରତିଜ୍ଞା ଚକ୍ଷୁ କିପରି ଛାଡ଼ିଲା ସେ କହ
କେସନେକ ଦହିର୍ଯ୍ୟରେ ହେବ ତାର ଦେହ ।
ଏ ସୁକୁମାର ଦ୍ରୁପଦ ରାଜାର ଦୁହିତା
ସୁଚରିତ୍ରା ସୁକୁମାରୀ ଅଟଇ ବନିତା ।
ଅତିଅନ୍ତ କୋମଳ ଯେ ଅଟେ ଏହା ପାଦ
ବନେ ସ୍ତିରୀ ବୁଲନ୍ତେ କି ନ ହେବ ପ୍ରମାଦ ।
ଦ୍ରୌପଦୀ ଦେଖି ବୋଲନ୍ତି ନଗ୍ର ନରନାରୀ
ଧିକ ଧିକ ଧୃତରାଷ୍ଟ୍ର ତୁହି ମନ୍ଦାଚାରୀ ।
ଯୁଧିଷ୍ଠି ଦେବଙ୍କ ବନ ଗମନକୁ ଶୁଣି
ଆସନ୍ତି ବ୍ରାହ୍ମଣେ ଆଉ ମୁନି ତପୋଧନୀ ।
ନିତ୍ୟେ ଅଠାଅଶୀ ସସ୍ର ଭୁଞ୍ଜନ୍ତି ଯେ ଦ୍ୱିଜ
ବାରସସ୍ର ଉର୍ଦ୍ଧ୍ୱରେତା ଆଉ ଚାରି ବାଜ ।
କରନ୍ତି ପ୍ରଣାମ ଧର୍ମ ଏମାନଙ୍କୁ ଦେଖି
ସୁଖେ ରହ ତୁମ୍ଭେମାନେ ଆମ୍ଭଙ୍କୁ ଉପେକ୍ଷି ।
ତ୍ରିଦଶ ବରଷ ଥିବି ବନେ ଅପ୍ରମାଦେ
ପୁଣି ଆସି ଖଟିବି ଏ ତୁମ୍ଭର ଶ୍ରୀପଦେ ।
କଲ୍ୟାଣ କରିଣ ବୋଲୁଛନ୍ତି ବିପ୍ରମାନେ
ତୁମ୍ଭର ବିନା ହୋ କେହୁ ରହିବ ଏ ସ୍ଥାନେ ।
ତୁମ୍ଭଙ୍କୁ ଘେନି ଆମ୍ଭେ ଯେ ପଶିବୁ ବିପିନ
ଛାଡ଼ି ରହିବା ଆମ୍ଭର ନ ବଳଇ ମନ ।
ସ୍ୱଚ୍ଛନ୍ଦରେ ଥିବୁ ଫଳମୂଳ ଖାଇକରି
ସର୍ବଦା ଥିବୁ ତୋହର ଚିତ୍ତ ଆମ୍ଭେ ହରି ।
ଆମ୍ଭଙ୍କୁ ନ ପ୍ରବର୍ତ୍ତାଅ ତୁମ୍ଭେ ରାଜ୍ୟୁ ଯାନ୍ତେ
ତୋହ ବ୍ୟତୀତ ହୋଇବ କେହୁ ପୁଣ୍ୟବନ୍ତେ ।
ଏଥୁ ଅନନ୍ତରେ ଶୁଣ ପୁରଜନମାନେ
ଗୋଡ଼ାଇଯାନ୍ତି ଯେ ଯୁଧିଷ୍ଠିଙ୍କ ସନ୍ନିଧାନେ ।
ଭାଇ ସୁତ ବନ୍ଧୁ ଆଉ ଭାରିଯା ସଂଯୋଗେ
ଯାଇ ସେ ମିଳିଲେ ଯୁଧିଷ୍ଠିର ଦେବ ଆଗେ ।
ଦେଖି ହସିକରି ବୋଲୁଛନ୍ତି ଧର୍ମ ନୃପ
କିପାଁ ଗୋଡ଼ାଇ ଆସିଲ ପଥଶ୍ରମେ ଧାପ ।
ବୋଲନ୍ତି ବିଚାରି ନଗ୍ରଲୋକ ସର୍ବପ୍ରାଣୀ
ତୁମ୍ଭ ସଙ୍ଗେ ବନଗାମୀ ହେବୁ ନୃପମଣି ।
ତୁହି ବନଗାମୀ ହେଲେ ଆମ୍ଭର କି ଘର
କାହାକୁହିଁ ସେବା ହୋ କରିବୁ ନୃପବର ।
କହନ୍ତି ଯୁଧିଷ୍ଠିଦେବ ପୁରଜନ ଆଗେ
ଦୁର୍ଯ୍ୟୋଧନ ସେବା ତୁମ୍ଭେ କର ମନଯୋଗେ ।
ନିତ୍ୟେହେଁ କଲ୍ୟାଣ କରି ସର୍ବଜନ ମିଳି
ଯେତେ କଷ୍ଟୁ ପାରହେବ ଦ୍ରୁପଦ ଦୁଲାଳୀ ।
ଯୁଧିଷ୍ଠି ପୁରଜନଙ୍କୁ ପ୍ରବୋଧନା କରି
ଅରଣ୍ୟେ ପଶିଲେ ଯାଇ ଶ୍ରୀକୃଷ୍ଣ ସୁମରି ।
ତହୁଁ ପୁରଜନେ ଫେରି ଆସିଲେ ବିମୁଖେ
ନିଜଗୃହେ ପ୍ରବେଶିଲେ ମନର ଅସୁଖେ ।
ଅନେକ ସାନନ୍ଦ ହେଲେ ଧର୍ମର ନନ୍ଦନ
ରୋହିଣୀ ଶୁଭଯୋଗରେ କଲେକ ପ୍ରସ୍ଥାନ ।
ତୁଳମାସ କୃଷ୍ଣପକ୍ଷ ପୁଣି ଭୃଗୁବାର
ଅମୃତଯୋଗ ରୋହିଣୀ ବୃଷ ସେ ଦିନର ।
କିଂସ୍ତୁଘ୍ନ ନାମେ କରଣ ଆୟୁଷ୍ମାନ ଯୋଗ
ପଞ୍ଚମୀ ତିଥି ପାଣ୍ଡବେ ଗଲେ ବନମାର୍ଗ ।
ଧନ ରତ୍ନମାନ ବହି ନିଅନ୍ତି ବା ବନେ
ସମସ୍ତ ଆଣିବ ଆଜ୍ଞାଦେଲେ ଦୁର୍ଯ୍ୟୋଧନେ ।
ବାହାର ହୋଇଲେ ଇନ୍ଦ୍ରପ୍ରସ୍ଥେ ଆଜଦିନ
ବାରୁଣାବନ୍ତକୁ ଜିଣି କରନ୍ତି ଗମନ ।
ଯୁଧିଷ୍ଠି ନକୁଳ ଭୀମାର୍ଜ୍ଜୁନ ସହଦେବ
କୁନ୍ତୀ ଦ୍ରୌପଦୀ ସୁଭଦ୍ରା ଘେନିଣ ପାଣ୍ଡବ ।
ସୁରନଦୀ ଜିଣି ଚଳିଯାନ୍ତି ପଞ୍ଚବୀରେ
ତୃତୀୟ ଦିନ ପ୍ରବେଶ ସୁନ୍ଦର ବନରେ ।
ତାଙ୍କ ଅଙ୍ଗେ ଯେତେ ଥିଲା ଅଳଙ୍କାରମାନ
ସମସ୍ତ ଛଡ଼ାଇ ତହୁଁ ନେଲା ଦୁଃଶାସନ ।
ଭୀମସେନର ଶରୀର କମ୍ପେ ଅତି ଖରେ
ଦୁଃଶାକୁ ପ୍ରହାର କରି ଲୋଡ଼େ ଅତି ବେଗେ ।
ଯୁଧିଷ୍ଠି ବୋଇଲେ କୋପ ନ କରରେ ଭୀମ
ଉଚିତ କଥାକୁ ବାବୁ କିପାଁ କରୁ ତମ ।

ଦୁର୍ଯ୍ୟୋଧନ ବୋଲି ମୋର ଅଟେ ଯେଉଁ ଭ୍ରାତ
ଜନ୍ମେ ଜନ୍ମେ ହେଉ ତେହ୍ନେ ସୋଦର ପ୍ରାପତ ।
ଅଳଙ୍କାରମାନ ଯେବେ ଆମ୍ଭ ସଙ୍ଗେ ଥାନ୍ତା
ବନସ୍ତରେ ଅରଣ୍ୟରେ ପ୍ରମାଦ ପଡ଼ନ୍ତା ।
ବିପଦ କାଳକୁ ଧନ ସମ୍ପଦ ଭାରିଯା
ପଣ୍ଡିତ ଜନେ କରନ୍ତି ତାହା ପରିତ୍ୟଜ୍ୟା ।
ବନସ୍ତକୁ ଆମ୍ଭର ଯେ ଧନ କିପାଁ ନେବା
ବନସ୍ତୁ ଅଇଲେ ପଛେ ଲୋଡ଼ିଲେ ପାଇବା ।
ଆପଣା କରମ ମନ୍ଦ ବିପଦେ କି ଦ୍ୱନ୍ଦ୍ୱ
ଆପଣେ ପଣ୍ଡିତ କିସ ପରକୁ ଯେ ନିନ୍ଦ ।
ଆପଣାର ରୂପକୁ ନ ନିନ୍ଦି ଗୁଣବନ୍ତେ
କରେ ଚରଣ ପ୍ରହାର କର ଅନିମିତ୍ତେ ।
ଏହା ବିଚାର ନ କର କିପାଁ ଭୀମସେନ
ଅବିରତେ ମୂର୍ଖପଣେ ବଞ୍ଚିବୁ କେସନ ।
ବୁଦ୍ଧି କଲୁ କିନା ବାବୁ ଏବେ ବର୍ତ୍ତିବାକୁ
ଯେମନ୍ତେ ରେ ରିପୁ ଦଳି ନ ପାରେ ଆମ୍ଭଙ୍କୁ ।
ଦୁଃଶାସନ ଶକୁନିକୁ ଦେଇ ବାହୁଡ଼ାଇ
ତପୀଙ୍କ ପରାୟେ ବନେ ବିଜେକଲେ ଯାଇ ।
ଅଶକତେ ବାଟ ଚାଲି ନ ପାରନ୍ତି କୋନ୍ତେ
ନିର୍ଝର ଝରଣା ପୂର୍ଣ୍ଣ ଗହନ ବନସ୍ତେ ।
ସେଦିନ ରହି ବାରାହୀ ନଦୀ ଆରକୂଳେ
ରାତ୍ରକ ବଞ୍ଚିଲେ ଏକ ନିମ୍ବବୃକ୍ଷମୂଳେ ।
ବିହରନ୍ତି ରାତ୍ରକାଳେ କରିଣ ପାରିଧି
ହରିଣୀ ଯେ ବାହୁଟିଆ ନାନା ଜୀବ ବଧି ।
ଏମନ୍ତେ ପାଣ୍ଡବମାନେ ବିହରନ୍ତି ବନେ
ବିଶ୍ରାମ କଲେ କାମ୍ୟକ ନାମେ ଯେ କାନନେ ।
କର୍ଣ୍ଣକେଶରୀ ବୋଲି ଯେ ଅଛି ନଦୀଗୋଟି
ମେଖଳା ଗଙ୍ଗାକୂଳୁ ସେ ତ୍ରିବେଣୀରେ ଫୁଟି ।
କାମ୍ୟକ ନାମେ ଅଛଇ ଏକଇ ପର୍ବତ
ଦୀର୍ଘ ପ୍ରତି ଉତ୍ସର୍ଗରେ ସେ ଯୋଜନ ସାତ ।
ଜମଦଗ୍ନି ସୁତେ ପର୍ଶୁରାମ ଦେବତୀର୍ଥେ
କାମ୍ୟଶ୍ରାଦ୍ଧ କରେ ତହିଁ ଦେବ ପିତୃଅର୍ଥେ ।
ତେଣୁ ଯେ କାମ୍ୟକ ନାମ ତାହାର ପ୍ରସିଦ୍ଧ
ସେ ପର୍ବତେ ଥିଲେ ପଞ୍ଚମନ ହୁଏ ସାଧ ।
ସେ ସ୍ଥାନ ନିର୍ମଳ ଦେଖି ରହିଲେ ଯୁଧିଷ୍ଠି
ସେ ପର୍ବତ ଉପରେ ସେ କଲେ ପର୍ଣ୍ଣକୁଟୀ ।
ଯୁଧିଷ୍ଠିଦେବ ବୋଇଲେ ଶୁଣରେ ପାର୍ଥିବ
ଅରଣ୍ୟକୁ ଯିବା କି ନ କହି ବାସୁଦେବ ।
ହରିଙ୍କୁ ତୁ ସୁମରଣା କର ବାବୁ ପାର୍ଥ
ତାହାଙ୍କ ଆଗେ କହିବା ସକଳ ବୃତ୍ତାନ୍ତ ।
ତାହାଙ୍କର ଆଜ୍ଞାରେ ସେ ବୀର ଧନଞ୍ଜୟ
କରପୁଟେ ଜଳ ଧରି ଲଗାଇଲେ ଲୟ ।
ମନ ବଚନ କର୍ତ୍ତବ୍ୟେ କରନ୍ତି ସେ ଧ୍ୟାନ
ନାରାୟଣ ନାମ ଚିନ୍ତା କରନ୍ତି ଅର୍ଜ୍ଜୁନ ।
ଚନ୍ଦ୍ରଶାଳା ମନ୍ଦିରରେ ବିଜେ ଜନାର୍ଦ୍ଦନ
ଅର୍ଜ୍ଜୁନ ଚିନ୍ତାରେ ଢ଼ଳେ ଦେବଙ୍କ ଆସନ ।
ଧ୍ୟାନରେ ଜାଣିଲେ ଦେବଦେବ ସେ ଗୋବିନ୍ଦ
ବିଚାରନ୍ତି ପାଣ୍ଡବଙ୍କୁ ପଡ଼ିଲା ପ୍ରମାଦ ।
ବୈନତେୟ ସୁମରଣା କଲେ ଚକ୍ରଧାରୀ
ରମ୍ୟକ ଦ୍ୱୀପରୁ ବେଗେ ଆସି ବିଜେକରି ।
ବିଜୟ ଶ୍ରୀ ନାରାୟଣ ବୈନତେୟ ପିଠି
କାମ୍ୟକ ବନକୁ ଗଲେ ଯେ ସ୍ଥାନେ ଯୁଧିଷ୍ଠି ।
ଉତୁରିଲେ ବୈନତେୟ ପୃଷ୍ଠୁ ଚକ୍ରପାଣି
ଛାମୁକୁ ଗଲେ ଅନନ୍ତ କୋଟି ଶିରୋମଣି ।
ଯୁଧିଷ୍ଠିଙ୍କ ମୁଖ ଚାହିଁ ସେ ଦେବ ଅନନ୍ତ
ଚରଣେ ଶତ ସହସ୍ର କଲେ ପ୍ରଣିପାତ ।
ଉଠି ଯୁଧିଷ୍ଠି ତାହାଙ୍କୁ କଲେ ବେଗେ କୋଳ
ଦେଖି ବିଷାଦ ପାଇଲେ ଦେବକୀର ବାଳ ।
ସ୍ୱାମୀ ଏ ଦୁରାପ ଘୋର ଦୁଃସହ ବନସ୍ତେ
ନିର୍ଝର ଝରେ ପଶିଲେ ଭୋଦେବ କିମର୍ଥେ ।
ଯୁଧିଷ୍ଠିଦେବ ବୋଇଲେ ଶୁଣ ଦେବରାଜ
ପଶାଖେଳି କୁତୂହଳେ ହରାଇଲି ରାଜ୍ୟ ।
ଯୁଧିଷ୍ଠିଦେବ ବଚନେ ବିସ୍ମୟ ଶ୍ରୀବତ୍ସି
କାମ୍ୟକ ବନେ ପ୍ରବେଶ ବ୍ୟାସ ମହାଋଷି ।
ତୁଲେଣ ଅଛନ୍ତି ତାଙ୍କ ଷଷ୍ଟିସସ୍ର ଶିଷ୍ୟ
ବାଳଖିଲ୍ୟାମାନ ଘେନି ହୋଇଲେ ପ୍ରବେଶ ।
ଦେଖିଣ ଧର୍ମନନ୍ଦନ ଉଠି ଧାତିକାରେ
କରନ୍ତି ଯେ ପୂଜାବିଧି ବ୍ୟାସଙ୍କ ପୟରେ ।
ଶ୍ରୀଗୋବିନ୍ଦ ପଚାରନ୍ତି ଶୁଣ ମୁନି ବ୍ୟାସ
ପୁଣିହିଁ ହେଲା ଯୁଧିଷ୍ଠି ଦେବ ବନବାସ ।
ବ୍ୟାସ ବୋଇଲେ ତୋତେ ବା କି କଥା ଦୁର୍ଲ୍ଲଭ
ନ ଜାଣୁ କି ବନବାସ କଥା ପଦ୍ମନାଭ ।
କାମ୍ୟକ ବନେ ରହିଲେ ହରି ବେନିମାସ
ତହିଁ ଦ୍ୱାରକାକୁ ବିଜେ କଲେ ହୃଷୀକେଶ ।
କୁନ୍ତୀଦେବୀ ବୋଇଲେ ଯେ ଶ୍ରୀହରିଙ୍କି ଚାହିଁ
ସୁଭଦ୍ରାର ଗର୍ଭ ପାଞ୍ଚମାସ ଅଛି ହୋଇ ।
କେମନ୍ତେ ରହିବ ବନେ ନୁହଇ ଯୁକତି
ସଙ୍ଗତରେ ଦ୍ୱାରକାକୁ ନିଅ ଶିରୀପତି ।
ମୁହିଁ ବୃଦ୍ଧକାଳେ ବନେ ନ ପାରିବି ଚାଲି
ବିଦୁର ଘରେ ରହିବି ଶୋକକୁ ସମ୍ଭାଳି ।

ସୁଭଦ୍ରାକୁ ସଙ୍ଗେ ଘେନି ବିଜେ କଲେ ହରି
ଅନ୍ତର ହୋଇଲେ ତହୁଁ ବ୍ୟାସ ତପଚାରୀ ।
ବିଦୁର ଯେ ପାଣ୍ଡବଙ୍କ ସଙ୍ଗେ ଥିଲେ ଯାଇ
ସୁରନଦୀକୂଳୁ ତାଙ୍କୁ ଦେଲେ ବାହୁଡ଼ାଇ ।
ବାହୁଡ଼ିଗଲେ ବିଦୁର ସେ ପଣ୍ଡିତ ବୁଦ୍ଧି
ସୋଦର ବିରୋଧେ ପୁଣି ହୋଇ ମହାକ୍ରୋଧୀ
ଆସ୍ଥାନେ ବିଜେ କରିଛି ରାଜା ଧୃତରାଷ୍ଟ୍ର
ଏସନ ବେଳେ ବିଦୁର ହେଲା ଯାଇଁ ଭେଟ ।
ଧୃତରାଷ୍ଟ୍ରଙ୍କ ଚରଣେ ବିଦୁର ପ୍ରଣମି
ସଞ୍ଜୟ ଯେ ଜଣାଇଲା ଶୁଣ ଦେବ ସ୍ୱାମୀ ।
ବିଦୁର ଦର୍ଶନ କରୁଅଛି କୁରୁପତି
ଧୃତରାଷ୍ଟ୍ର ବୋଇଲେ ରେ ବସ ମୋର କତି ।
ତୁ ଯେ ଗୋଡ଼ାଇଣ ଗଲୁ ପୁତ୍ରଙ୍କର ତୁଳେ
କେବଣ ସ୍ୱରୂପେ ସେହି ବନବାସ ଗଲେ ।
ଯୁଧିଷ୍ଠି ଭାଇ ଭାରିଯା ଗଲେ ବନବାସ
ଏଥିରେ ହୋଇଲା ଆମ୍ଭ ମନେ ବଡ଼ ତ୍ରାସ ।
ନୁହନ୍ତି ଦୁଃଖ ସହିବା ଯୋଗ୍ୟ ପାଞ୍ଚଭାଇ
କେସନେ ପଶିଲେ ସେହୁ ବନସ୍ତରେ ଯାଇ ।
କେବଣ ଚରିତ କଲା ଏ ମୋହର ସୁତ
ଚିନ୍ତେଣ ଅସୁ ଆର୍ଥ ତା ନ ସହଇ ଗାତ୍ର ।
ଜନମୁଖେ କିସରେ ବୋଲିବେ ମୋତେ ଥାଇ
ବୋଇଲେ ବିଦୁର ଆହେ ଶୁଣ କୁରୁସାଇଁ ।
ମାଳାକାରୀ ପ୍ରାୟ ତୁହି ହେଲୁ ମହାରାଜ
ପ୍ରଥମରୁ ତୁହି ନାଶ କଲୁ ସର୍ବକାର୍ଯ୍ୟ ।
ଭାରତ କୁଳକୁ ବହୁ ପୌରୁଷ ପୀରତି
ସତ୍ୟେ କରାଇଲୁ ତୁହି ଅଗତି ନୃପତି ।
ଯାହା ସେହୁ ପଶାକାଠି କାଟିଲା ଶକୁନି
ସେହିଟି ହୋଇଲା ରଣ ରଙ୍ଗ ଯେ ମେଦିନୀ ।
ଯେ ସେହିଟି କାଠି ହୋଇଅଛି କୃଷ୍ଣବଳ
ତାହା ସେହି ପାଣ୍ଡବଙ୍କୁ ଅଟେ ବେନିବଳ ।
ଏକକୁ ଆରେକ ଗୋଟି ଗୋଟି ତପସାରି
ଅନ୍ୟୋଅନ୍ୟ ତେସନେକ ହୋଇବେ ସଂସାରୀ
ପଶାକାଠି ଯେହ୍ନେ ବାଦ୍ୟ ହୋଇବ ସୁମରି
ବାନ୍ଧି ମାର ଶବଦ ଯେ ଶୁଭଇ ବିସ୍ତାରି ।
ଅଙ୍କ ଯେ ପଡ଼ଇ ସେହି ବୀରଙ୍କର ଶିର
ପୁଣ ଅବିଗୁଣ ଅଟେ ବାବଲ ଆକାର ।
ଦାନ ସବୁ ଭାଙ୍ଗିକରି ଯେଉଁ ଡାକ ଦେଇ
ପ୍ରୀତି ପ୍ରମୋଦିତ ଅନ୍ୟୋଅନ୍ୟ ପ୍ରସରଇ ।
ଧନ ପାଇଣ ତୁହି ଯେ ହୋଇଲୁ ଆନନ୍ଦ
ବଂଶ ବିନାଶରେ କଷ୍ଟୀ ହୋଇଲୁ ନରେନ୍ଦ୍ର ।

ଲତା ବୃକ୍ଷ ଲଗାଇଣ ଆପେ କର ଭୋଗ
ସ୍ୱକୁଟୁମ୍ବ ବନ୍ଧୁବର୍ଗ କଲୁ ମୃତଯୋଗ ।
ପୁଣି ବିଦୁର କହଇ କରପତ୍ର ଯୋଡ଼ି
ଓଦା ବସ୍ତ୍ର ପିନ୍ଧି ଓଦା ବସ୍ତ୍ର ଏକ ଓଢ଼ି ।
ହେଠମାଥ ହୋଇ ଧୀରେ ଚାଲେ ଧର୍ମସୁତ
ଭୂମିକି ନିରେଖି ଚାଲେ ଜାଣି ମଦମତ୍ତ ।
କୁଟୁମ୍ବ ମୃତ୍ୟୁରେ ଲୋକ ହୋଇଲା ପରାୟ
ସେହି ରୂପରେ ଚାଲଇ କୁନ୍ତୀର ତନୟ ।
ଶୁଣି ବିସ୍ମିତ ହୋଇଲା ଧୃତରାଷ୍ଟ୍ର ମନ
କେଉଁରୂପେ ଗଲା ପୁଣି କହ ଭୀମସେନ ।
ବିଦୁର କହିଲେ ଶୁଣ ଭୀମସେନ କଥା
ତାର ବୀରପଣ ମୂର୍ତ୍ତି ନ ଛାଡ଼େ ସର୍ବଥା ।
ଭୁଜ ବିସ୍ତାରି ଅଧରେ ଦନ୍ତପନ୍ତି ଚାପି
ଗଦା ବୁଲାଇ ବିକ୍ରମେ ଚାଲେ ମହାକୋପୀ ।
ପୁଣ ପୁଣ ପ୍ରହାରିବା ପାଇଁ ଲୋଡ଼େ ଭୂମି
ବିଚାର କର ତୁ ମହାପଣ୍ଡିତ ଭୋ ସ୍ୱାମୀ ।
ଧୃତରାଷ୍ଟ୍ର ବିଦୁରକୁ ପୁଣି ପଚାରିଲା
ଅକୋପୀ ଭାରତମଲ୍ଲ ଅର୍ଜ୍ଜୁନ କି କଲା ।
ବିଦୁର ବୋଇଲେ ଶୁଣ ହସ୍ତିନାଧିନାଥ
ଅର୍ଜ୍ଜୁନ ଶରୀରେ ଦେବ ମହାକ୍ରୋଧ ଜାତ ।
ବାମକରେ ଧନୁ ଦେଇ ଦକ୍ଷିଣରେ ମୁଷ୍ଟି
ବାମକୁ ଚାହିଁ ତଳକୁ କରିଥାଇ ଦୃଷ୍ଟି ।
ଇନ୍ଦ୍ରପ୍ରସ୍ଥେ ବାଲି ବିଞ୍ଚିଦେଇଗଲା ପାର୍ଥ
ଦ୍ୱାଦଶ ଯୋଜନ ସୁରନଦୀ ପରିଯନ୍ତ ।
ଅମ୍ବିକା ନନ୍ଦନ ପୁଣି ବଚନ ପ୍ରକାଶେ
ନକୁଳର କଥା କହ ବସି ମୋର ପାଶେ ।
ନକୁଳର କୋପ ସ୍ୱାମୀ କେ କରିବ ଅନ୍ତ
ଊର୍ଦ୍ଧ୍ୱବାହୁ ହୋଇ କୋପେ ବୁଲାଇଣ କୁନ୍ତ ।
ଭୂମିକି ମାରଇ ଦୃଢ଼େ ପୁଣ ସେ ତୋଳଇ
ବାହୁଡ଼ି ଆକ୍ରୋଶ କରି ଛାତିକି ଚାହିଁଇ ।
ଶୁଣି ଧୃତରାଷ୍ଟ୍ର ପୁଣି କହଇ ବଚନ
କହରେ ବିଦୁର ସହଦେବର ଗମନ ।
ବିନୟେ ବିଦୁର ଧୃତରାଷ୍ଟ୍ରଙ୍କୁ କହିଲା
ହସ୍ତିନାକୁ ଚାହିଁ ଚଉଦିଗ ଆକ୍ରୋଶିଲା ।
ସ୍ୱାମୀ ସୁରନଦୀ ନାବେ ବସିବା ନିମନ୍ତେ
ଦ୍ରୌପଦୀକି ବିନୟରେ କହିଲେ ସମସ୍ତେ ।
ବନବାସେ କେଶ କିପାଁ କରିଛୁ ମୁକୁଳା
ଏବେ କେଶ ବନ୍ଧନ ତୁ କର ରାଜବାଳା ।
ବ୍ୟାସ ଆଦି କହିଲେ ନ କଲେ କାହାବୋଲ
ତୁ ମହାବିଜ୍ଞ ବିଚାର ଏହା ମନ୍ଦ ଭଲ ।

ଧୃତରାଷ୍ଟ୍ର ବୋଇଲେ ତୁ ଶୁଣରେ ବିଦୁର
ସମ୍ପଦ ବିଅର୍ଥେ କିସ ଆବର ସୋଦର ।
ତେବେହେଁ ପାଣ୍ଡବଙ୍କର ନାହିଁ ନା ବିନାଶ
ପ୍ରତିଜ୍ଞାକୁ ଛାଡ଼ିଲେ ତ ହୋଇବ ଅଯଶ ।
ପାଣ୍ଡବଙ୍କ ଦୁର୍ବୁଦ୍ଧି ମୁଁ ହୃଦରେ ପାଞ୍ଚଇ
ତୋହର ବଚନ ଶୁଣି ହୃଦେ ଆମଞ୍ଚଇ ।
ପୁଣି ବିଚାରଇ ସେହି ଧୃତରାଷ୍ଟ୍ର ରାୟ
ଏକାନ୍ତ କରି ସନ୍ନିଧେ ପୁଚ୍ଛଇ ସଞ୍ଜୟ ।
ବିଦୁର କହିଲା ଯାହା ହେଜିଲି ତା ହୃଦେ
ତୁ ତାହା କେମନ୍ତ ଭାବେ ବୁଝିଲୁଟି ହାଦେ ।
ସଞ୍ଜୟ କହିଲେ ଧୃତରାଷ୍ଟ୍ରଙ୍କର ପାଶ
ସମ୍ପଦ ହରଣେ କିସ ବିରସ ହରଷ ।
ଯୁଧିଷ୍ଠିର ଗଲେ ଶିରେ ଓଦାବସ୍ତ୍ର ଦେଇ
ଗାନ୍ଧାରୀ ପୁତ୍ରଙ୍କ କ୍ରିୟା ଘେନିବଇଁ ମୁହିଁ ।
ମୋହର ଭୀମା ମାରିବ ନିଶ୍ଚେଁ କୌରବଙ୍କୁ
ଏମନ୍ତ ମାରି ରଖିବ ସିନା ସେ ଆତ୍ମଙ୍କୁ ।
ଏମନ୍ତ ବିଚାରି ମନେ ଯୁଧିଷ୍ଠିର ଗଲେ
ଓଦାବସ୍ତ୍ର ଶିରେ ଦେଇ ବନବାସ କଲେ ।
ଶୁଣ ଧୃତରାଷ୍ଟ୍ର ଭୀମ ବନବାସ କଥା
ବୀରମୂର୍ତ୍ତିପଣ ଭୀମ ନ ଛାଡ଼େ ସର୍ବଥା ।
ଗଦା ବୁଲାଇ ଚାଲଇ ଭୂମିକି ଆକ୍ରୋଶି
ଗାନ୍ଧାରୀ ପୁଅ ମାରିବି ବନବାସୁଁ ଆସି ।
ଅର୍ଜ୍ଜୁନ ଭୂମିରେ ପୁଣି ବୁଣିଗଲା ବାଲି
ଏମନ୍ତେ ସଂଗ୍ରାମେ ଶର ବରଷିବ ବୋଲି ।
କରିବି ମୁଁ ବାଲିବୃଷ୍ଟି ପ୍ରାୟ ଶରବୃଷ୍ଟି
ଅବଶ୍ୟ ସମର ବାରବର୍ଷ ଅନାବୃଷ୍ଟି ।
ସଞ୍ଜୟ ବୋଇଲା ଧୃତରାଷ୍ଟ୍ର ଦଣ୍ଡଧାରୀ
ନକୁଳ ଯେ ଗଲା ପୁଣି କୁନ୍ତକୁ ଉବାରି ।
ଏହି କୁନ୍ତମୁନେ ଛତ୍ରପ୍ରାୟେ ଗୁନ୍ଥି ଯୋଖି
ମାରିବି କୌରବବଳ କେ ପାରିବ ରଖି ।
ଏକା ପ୍ରହାରେ ମାରିବି ମୁହିଁ ଦଶବିଂଶ
ଏତେ ବିଚାରି ନକୁଳ ଆମଞ୍ଚଇ କୁନ୍ତ ।
ସହଦେବ ଚାହିଁଗଲା ବୁଲାଇ ଅଙ୍ଗୁଷ୍ଠି
ମରାଇବ ଚତୁର୍ଦ୍ଦିଗ ରାଜା ଧାର୍ତ୍ତରାଷ୍ଟ୍ରି ।
ସହଦେବ ଜାଣେ ଭୂତ ଭବିଷ୍ୟତ କଥା
ଫେରିଲେ ଅବଶ୍ୟ ଯୁଦ୍ଧ ନୋହିବ ଅନ୍ୟଥା ।
ଗଛ ଲଗାଇ ଅବଶ୍ୟ ସେହି ଫଳ ଭୁଞ୍ଜି
ଉତ୍କର୍ମ ହେଲା ପ୍ରାଣୀ କି ଥିବ ପୃଥ୍ୱୀମଝି ।
ଯେ ସହିବ ସେ ଅବଶ୍ୟ ଲଭିବ ନା କାର୍ଯ୍ୟ
ଦୁଃଖର ଅନ୍ତେ ସେ ପୁଣି ପାଇବେ ଐଶ୍ୱର୍ଯ୍ୟ ।
ଅନବରତ ପ୍ରାଣୀକୁ ନ ପଡ଼େ ପ୍ରମାଦ
ସଂସାରର ସ୍ୱଭାବ ଯେ ସମ୍ପଦ ବିପଦ ।
ସଂଗ୍ରାମେ ଅଜୟ ଜୟ କହି ତ ନୁହଇ
ବିପଦ ସମ୍ପଦ ରାତ୍ର ଦିବସ ଅଟଇ ।
ପାଣ୍ଡବମାନେ ଯେବେ ହୋ ପାଇବେ ନା କଷ୍ଟି
ଏ ପୁରୀ ଭୋଗ କରିବେ ଏ ବିଧାତା ସୃଷ୍ଟି ।
ଦ୍ରୌପଦୀ ଦେବୀ କେଶକୁ କରିଛି ମୁକୁଳା
ସତୀ ସାଧବୀ ସେ ପତିଭକତି ବତ୍ସଳା ।
ଦୁଃଶାର ଦକ୍ଷିଣ ଭୁଜ ଉପାଡ଼ିବ ଭୀମ
ତେବେ ପୂର୍ଣ୍ଣହେବ ସିନା ତାର ମନସ୍କାମ ।
ଏ କଥା ମନକୁ ତୋର ନ ପୁଣ ଆସଇ
ଯାହା ପଚାରିଲୁ ମୋତେ ଏମନ୍ତ ଦିଶଇ ।
ଗାଲବନନ୍ଦନ ଯହୁଁ କହିଲା ଏମନ୍ତ
ଶୁଣି ଧୃତରାଷ୍ଟ୍ର ମନେ ହୋଇଲେ ବିସ୍ମିତ ।
ଧୃତରାଷ୍ଟ୍ର ବୋଇଲେ ମୁଁ କହିବି କା ଆଗେ
ଦୁର୍ଯ୍ୟୋଧନ ନ ଶୁଣଇ କଉଣସି ବାଗେ ।
ଦୁର୍ଯ୍ୟୋଧନ ଅନୁକ୍ଷଣେ ଶକୁନିକି ଘେନି
ଭାଳୁଥାଇ ମନ୍ଦକଥା କହଇ ଶକୁନି ।
ପଥରଘରେ ଭରି ତା ବଂଶ ଏ ମାଇଲା
ଏହାର ବଂଶ ମାରିବ ବୋଲି କୂଟ କଲା ।
କାମ୍ୟକ ବନେ ପାଣ୍ଡବେ ଅଛନ୍ତି ଯେ ରହି
ଡଗର ବାରତା ଦେଲା ଦେବ କୁରୁସାଇଁ ।
ରାଜ୍ୟ ଧନ ଛାଡ଼ି ବନେ ଗଲେ ପଞ୍ଚଭ୍ରାତା
କାମ୍ୟକ ବନେ ଅଛନ୍ତି ନାହିଁ କିଛି ଚିନ୍ତା ।
ଶ୍ରୀରାମ ସୁମର ନରେ ଛାଡୁ ପାପ କଥା
ଶ୍ରୀରାମ ସୁମର ନରେ ତୁଟୁ ଯମବ୍ୟାଥା ।
ଶ୍ରୀରାମ ସୁମର ନରେ ପାଇବ ସୁଜ୍ଞାନ
ଶ୍ରୀରାମ ସୁମର ନରେ ଯିବ ମୋକ୍ଷସ୍ଥାନ ।
ଶ୍ରୀରାମ ସୁମର ନରେ ଭବୁ ଯିବ ତରି
ଶ୍ରୀରାମ ସୁମର ନରେ ପାପ ଯାଉ ସରି ।
ଶ୍ରୀରାମର ନାମ ଗୋଟି ସଂସାର କାରଣ
ଶୂଦ୍ରମୁନି ଶ୍ରୀଶାରଳା ଦାସ ଯେ ଶରଣ ।



## ଦୁର୍ଯ୍ୟୋଧନର ଅପମାନ

ବଦନ୍ତି ଅଗସ୍ତି ଶୁଣ ମନୁ ବ୍ରହ୍ମବେତ୍ତା
ଏଥୁ ଅନନ୍ତରେ ବନପର୍ବର ଯେ କଥା ।
ଶକୁନି ବୋଇଲେ ଦେବ ଶୁଣ କୁରୁପତି
ଅରଣ୍ୟକୁ ଗଲେ ସର୍ବ ପଣ୍ଡୁଙ୍କ ସନ୍ତତି ।
କେବଣରୂପେ ଅଛନ୍ତି ପଣ୍ଡୁ ପାଞ୍ଚପୁତ୍ରେ
କିରାତରୂପ ଧରି କି ବୁଲନ୍ତି ବନସ୍ତେ ।

ଦଣ୍ଡ ସୈନ୍ୟ ଆମ୍ଭର ହୋ ସାଜ କୁରୁସାଇଁ
ପାଣ୍ଡବଙ୍କୁ ଯିବା ଆମ୍ଭେ ସମ୍ପଦ ଦେଖାଇ ।
ଶକୁନିର ଏ ବଚନେ ବୋଲେ ଦୁର୍ଯ୍ୟୋଧନ
ସାଜ ମୋର ଦଣ୍ଡ ରଥ ଗଜ ଅଶ୍ୱ ସୈନ୍ୟ ।
ସାଜନ୍ତି ଯେ ଗଜ ଅଶ୍ୱ ପଦାତି ଅପାର
ନେତର ପତାକା ଶୂନ୍ୟେ ଉଡ଼େ ଫରହର ।
ହୀରାମଣି ମାଣିକ୍ୟ ଯେ ଝଲକନ୍ତି ରଥେ
ରଜନୀ ପ୍ରଭାତେ ଯେହ୍ନେ ଦିନକର ନାଥେ ।
ପବନରୁ ବେଗହୋଇ ଉଡ଼ନ୍ତି ଯେ ହୟେ
କ୍ଷେପନ୍ତି ଅଶ୍ୱେ ସୈନ୍ୟଙ୍କୁ ଶ୍ୟେନପକ୍ଷୀ ପ୍ରାୟେ
ଯୋଦ୍ଧା ଶିରେ ରତ୍ନମଣି ଜଡ଼ିତ ମୁକୁଟ
କନକମଣି ସୀମନ୍ତ ଶୋଭିତ ଲଲାଟ ।
ତାଡ଼ ତୋଡ଼ର ବାହୁଟି କଙ୍କଣ ବଳୟ
ଘେନି ସଜହୋଇ ଆସେ କୁରୁବଳ ରାୟ ।
ନବ ନିଶିତ କୁନ୍ତକୁ ଧରିଣ ରାଉତେ
ଉଭାହେଲେ ଆସି ଅଶ୍ୱ ଉପରେ ଅଗ୍ରତେ ।
ସମସ୍ତେ ଯେ ବିଧ୍ୱଂସନ୍ତି ଆଦିତ୍ୟର ତେଜ
କାର୍ତ୍ତିକେଶ୍ୱର ସମାନ ଦିଶେ କୁରୁରାଜ ।
ଭୀଷ୍ମ ଦ୍ରୋଣ ଆଦି ଦୁର୍ଯ୍ୟୋଧନେ କଲେ ପୁଚ୍ଛା
ଥାଆନ୍ତୁ ପାଣ୍ଡବେ ଯେଉଁ ସ୍ଥାନେ ତାଙ୍କ ଇଚ୍ଛା ।
ରାଜ୍ୟଭାଗ ହାରି ବନେ ହୋଇଲେ ସେ ଦୁଃଖୀ
ତାହାଙ୍କୁ ଯେ ଝିଙ୍ଗାସିବା କାର୍ଯ୍ୟ ନୁହେ କିଛି ।
ପର ଅପମାନେ ହୁଏ ନିଜ ମାନ ହାନି
କିଂ ନିମନ୍ତେ ବନସ୍ତକୁ ଚଳାଅ ସଇନି ।
ଶକୁନି ବୋଇଲା ଭୀଷ୍ମ ଦ୍ରୋଣ ଏବେ ଥାଅ
ଏ କଟକ ରକ୍ଷାକର ରାଜ୍ୟରୁ ନ ଯାଅ ।
ଝିଙ୍ଗାସ ପ୍ରାୟ କହିଲେ ସେ ବହୁତ ବାଣୀ
ଭୀଷ୍ମ ଦ୍ରୋଣ ତୁନି ହେଲେ ଦୁଷ୍ଟବାଣୀ ଶୁଣି ।
ରହିଲେ ଗାଙ୍ଗେୟ ଭରଦ୍ୱାଜଙ୍କର ବଳା
ଧୃତରାଷ୍ଟ୍ରଙ୍କ ଆଗରେ ବିଦୁର କହିଲା ।
ଶୁଣ ଧୃତରାଷ୍ଟ୍ର କଉରବ ମହାମଲ୍ଲ
କଦାପି ସେ ଦୁର୍ଯ୍ୟୋଧନ ନ କଲାଟି ଭଲ ।
ଦୁଃଖେ ଅଛନ୍ତି କାମ୍ୟକ ବନେ ପାଞ୍ଚଭାଇ
ତହିଁକି ଯାଇଅଛନ୍ତି ସମ୍ପଦ ଦେଖାଇ ।
ଭୀଷ୍ମ ଦ୍ରୋଣ ଯେ ଅନେକ ବାଗେ ମଣାଇଲେ
ଶକୁନୀର ବଚନରେ ତାଙ୍କୁ ଝିଙ୍ଗାସିଲେ ।
ଦଣ୍ଡ ଘେନି ଚଳଇ ସେ କୁରୁ ମହାରାଜ
ବାଳଆଦିତ୍ୟ ପରାୟ କ୍ଷତ୍ରିଙ୍କର ତେଜ ।
ତର୍ଜ୍ଜନ୍ତି ଗର୍ଜ୍ଜନ୍ତି ଘୋଟିଯାନ୍ତି ଘୋର ବନେ
ତ୍ରାସେ କନ୍ଦରେ ପଶନ୍ତି ବନ ଜୀବମାନେ ।
ପୃଥିବୀ ଆନ୍ଦୋଳ ହେଉ ଅଛଇ ଗହଣେ
ଧୃତରାଷ୍ଟ୍ର ନ ଶୁଣିଲା ସେ କଥାକୁ କର୍ଣ୍ଣେ ।
ମୁଖରାବ ଧ୍ୱନି ଯେହ୍ନେ ଶୁଭେ ସିନ୍ଧୁ ଘୋଷ
କାମ୍ୟକ ବନରେ ଯାଇ ହୋଇଲେ ପ୍ରବେଶ ।
ଯୁଧିଷ୍ଠି ଦେବ ପର୍ବତେ ଅଛନ୍ତି ଯେ ବସି
ବେଢ଼ିଲେ ଅନେକ ପୁର କରି ଥାଟେ ଆସି ।
ବଜାଇ ଟମକ ଭେରୀ ନିଶାଣ ଦୁନ୍ଦୁଭି
ବୀର ତୂର ବିଜିଘୋଷ ବାଦ୍ୟ ଡିବି ଡିବି ।
ସିନ୍ଧୁ ମନ୍ଥନର କାଳେ ଯେଉଁରୂପ ହୁଏ
ଝଟକେ କଣୟ ବିନ୍ଧୁ ରଥେ ବିଦ୍ୟୁପ୍ରାୟେ ।
ଉଡ଼ଇ ଆଲମ୍ୱ ନବଲକ୍ଷ ଫର ଫର
ଶତକୋଟି ଶଙ୍ଖ ସ୍ୱୁରେ ରାଜାର ଛାମୁର ।
ଅର୍ଜ୍ଜୁନ ବୋଇଲେ ଦେବ ଶୁଣ ରାଜସାଇଁ
ଦୁର୍ଯ୍ୟୋଧନ ଆସିଅଛି ସମ୍ପଦ ଦେଖାଇ ।
ଯୁଧିଷ୍ଠିଦେବ ବୋଇଲେ ନୁହଇ ଏମନ୍ତ
ଆମ୍ଭଙ୍କୁ ଦେଖିବାପାଇଁ ଆସେ କୁରୁନାଥ ।
ସେ ଆମ୍ଭର ସହୋଦର ପାରଇ କି ମୂର୍ଚ୍ଛି
କି ଅବା ଆମ୍ଭଙ୍କୁ ନେବା ନିମନ୍ତେ ଆସୁଛି ।
ଭୀମ ବୋଇଲେ ବାଳକ ତୁମ୍ଭେ ଧର୍ମପଣେ
ହରାଇଲ କେଡ଼େ ବଡ଼ ରାଜ୍ୟ ଅକାରଣେ ।
ଅର୍ଜ୍ଜୁନ ବୋଇଲେ ଆହେ ଶୁଣ ସହଦେବ
କି ନିମନ୍ତେ ଏ ସ୍ଥାନକୁ ଆସେ କୁରୁଦେବ ।
ଅର୍ଜ୍ଜୁନ ବଚନେ ସହଦେବ ଯେ କହିଲେ
ଆମ୍ଭଙ୍କୁ ଝିଙ୍ଗାସିବାକୁ କୌରବେ ଅଇଲେ ।
ଯୁଧିଷ୍ଠି ବୋଇଲେ ଦୁଃଖୀଜନେ ଝିଙ୍ଗାସିଲେ
ଦଇବ କି ସହିବରେ ଧର୍ମ ଉଦେ ହେଲେ ।
ଶ୍ୱେତ ହସ୍ତୀ ଉପରେ ଯେ ବିଜେ କୁରୁରାୟ
ବେନିଲକ୍ଷ ପାଟଛତ୍ର ବାଳଅର୍କ ପ୍ରାୟ ।
ବେନି କୋଟି ଆଲମ୍ୱ ଯେ ଅର୍ବୁଦେ ଚାମର
ମୟୂର ଝାଲର ପଙ୍ଖା ଅର୍ବୁଦେ ଆବର ।
କୋଟିଏ ଶଙ୍ଖସ୍ୱରଇ ତାହାର ଛାମୁରେ
କୋଟିଏ ଚାମର ପୁଣି ପଡ଼ଇ ଆଗରେ ।
ସହସ୍ର ବନିତା ଗୀତ ନୃତ୍ୟ ରସ ଖେଳେ
କରନ୍ତି ନୃତ୍ୟ ଆରମ୍ଭ ବହୁତ ସଙ୍କୁଳେ ।
ଏସନ ସମ୍ପଦ ସଙ୍ଗେ ଘେନି କୁରୁରାୟ
ବିହରନ୍ତି ତୁରଙ୍ଗମେ ଅର୍କତେଜ ପ୍ରାୟ ।
ଏସନ ସମ୍ପଦମାନ ତାହାଙ୍କୁ ଦେଖାନ୍ତି
ମହାମତ୍ତ ପ୍ରାୟ ହୋଇ ଡାକନ୍ତି ହାକନ୍ତି ।
ତର୍ଜନ୍ତି ଗର୍ଜନ୍ତି ପୁଣି ଗାଲତୁରୀ ମାରି
ନାଚନ୍ତି ଖତାଇ ହୋଇ ମଦମତ୍ତକାରୀ ।

ଏସନଙ୍କ ସମୟେ ଯେ ବାସବର ସୁତ
ଯାଇଥିଲା ଚନ୍ଦ୍ରଭାଗା ତୀର୍ଥେ ଚିତ୍ରରଥ ।
ବାଆଷଠି ଅକ୍ଷୌହିଣୀ ବିଦ୍ୟାଧର ତୁଲେ
ଗନ୍ଧର୍ବଙ୍କୁ ଦୁର୍ଯ୍ୟୋଧନ ସଇନ୍ୟ ବେଢ଼ିଲେ ।
ଘୋର ବନସ୍ତ ଭିତରେ ଶୁଭଇ ଚହଳ
ଦ୍ୱିତୀୟ ସମୁଦ୍ର ପ୍ରାୟ ଶୁଭେ ମୁଖଗୋଳ ।
ଅନେକ ସୈନ୍ୟ ଦେଖିଣ ଗନ୍ଧର୍ବ ପଚାରି
ମାତଳି ବୋଇଲା ଶୁଣ ଗଗନ ବିହାରୀ ।
ପାଣ୍ଡବଙ୍କୁ ବନବାସ ବିହି କୁରୁନାଥେ
ଏବେ ଆସିଛି ସମ୍ପଦ ଦେଖାଇବା ଅର୍ଥେ ।
ପାଣ୍ଡବଙ୍କୁ ନାନାମତେ ଝିଙ୍ଗାସ ସେ କରି
ଦେଖିଣ ପ୍ରାଣ ହରାନ୍ତୁ ସେ ସହି ନ ପାରି ।
ଅନେକ କୂଟ ଜାଣଇ ସେ ମାନଗୋବିନ୍ଦ
ଧର୍ମ ବର୍ତ୍ତିଲେ ସେ କଲେ ଯେତେକ ପ୍ରମାଦ ।
ବିଷଲଡୁ ଦେଇ ମାରୁଥିଲେ ସେ ଭୀମକୁ
ଧର୍ମବଳେ ସେ ତରିଲା ନ ପାଇ ମୃତ୍ୟୁକୁ ।
ପୁଣି ସେ ଭରିଲା ନେଇ ତାଙ୍କୁ ଜତୁଘରେ
ତହିଁ ଲଗାଇଲା ନେଇ ବହ୍ନି ନିରାଧାରେ ।
ତହୁଁ ପୁଣି ପାର ହୋଇଗଲେ ଜାଣ ଧର୍ମେ
କପଟ ପାଶାରେ ଜିଣି ନେଲେ କୂଟକର୍ମେ ।
ଦ୍ରୌପଦୀଙ୍କୁ କରାଇଲେ ସଭାରେ ଉଲଗ୍ନ
ତହୁଁ ଧର୍ମେ ଉତୁରିଲେ ଜାଣ ପାଞ୍ଚଜଣ ।
ପୁଣି ଏକ ପଶାକାଠି କଲେ ସେ ନିର୍ମିତ
ଧର୍ମକୁ ଝିଙ୍ଗାସ କରେ ଏହି ଅନ୍ଧସୁତ ।
ଶୁଣି ଚିତ୍ରସେନର ଯେ କମ୍ପଇ ସର୍ବାଙ୍ଗ
ବୋଇଲେ ରଥ ମୋହର ବାହା ମଧସ୍ୱର୍ଗ ।
ଆଜ ଦୁର୍ଯ୍ୟୋଧନକୁ ମୁଁ ଆଣିବଇଁ ବାନ୍ଧି
ପାଣ୍ଡବଙ୍କ ଦୁଃଖେ ଶିର ପକାଇବି ଛେଦି ।
ଗନ୍ଧର୍ବେ ବଚନେ ସେହି ମାତଳି ସାରଥି
ବାହୁଡାଇ ତୁରଙ୍ଗମ ପବନହୁଁ ଗତି ।
ଶ୍ୱେତହସ୍ତୀ ଉପରେ ଯେ ବିଜେ କୁରୁନାଥ
ଛାମୁରେ ଯେ ଚିତ୍ରସେନ ବିଜୟ ତୁରିତ ।
ଆକାଶ ମଧ୍ୟରେ ବିଦ୍ୟାଧରଙ୍କୁ ଯେ ଦେଖି
ପଳାଇଲେ କର୍ଣ୍ଣଆଦି ରାଜାଙ୍କୁ ଉପେକ୍ଷି ।
ଯୋଦ୍ଧାଙ୍କର ଭଗ୍ନ ଦେଖି ପଳାଇଲେ ଥାଟ
ଏକା ଦୁର୍ଯ୍ୟୋଧନ ଅଛି ରହି ହସ୍ତୀପୃଷ୍ଠ ।
କୋପରେ ମାନଗୋବିନ୍ଦ ଗଦାକୁ ବୁଲାଇ
ଚିତ୍ରସେନର ଉପରେ ପିଟିଲା ନିଠାଇ
ଗଦାବର ପଡ଼ନ୍ତେ ସେ ଦେଖି ଚିତ୍ରରଥ
ଦୁର୍ଯ୍ୟୋଧନ ବେନି ଗଦା ଦେହେ ଦେଇ ହସ୍ତ ।
ଦୁର୍ଯ୍ୟୋଧନର ହସ୍ତରୁ ନେଲାକ ଉଛୁଡ଼ି
ଗଜ କୁମ୍ଭସ୍ଥଳେ ପିଟେ ବାହାନାଦ କରି ।
ଆକର୍ଷି ପିଟିଲା ବିଦ୍ୟାଧର ଯେତେବେଳେ
ମହାମତ୍ତ ହସ୍ତୀ ଯାଇ ପଶିଲା ପାତାଳେ ।
ଆକର୍ଷି ଧଇଲା ଚିତ୍ରସେନ ତାର କେଶ
ବାହାନାଦ କରେ ବୀର ହୋଇ ମହାରୋଷ ।
ବାମକରେ କେଶ ଧରି ଡାହାଣେ କଟାରି
ବୋଲଇ ନାଶଗଲୁରେ ପାଣ୍ଡବ ବଇରୀ ।
ଶିର ଛେଦନ୍ତେ ବୋଇଲା ମାତଳି ସାରଥି
ପ୍ରଥମୁଁ ତୁ ବିନାଶ ନ କର କୁରୁପତି ।
ବାସବ ଦେବ ଛାମୁକୁ ଯିବା ଚାଲ ଘେନି
ଆକର୍ଷି ଧଇଲା ଚିତ୍ରସେନ ଭୁଜ ବେନି ।
ରଥ ଉପରେ ପକାଇ କୋପେ ବିଦ୍ୟାଧର
ସମସ୍ତ ଧନ ଗନ୍ଧର୍ବେ କଲେ ବେଗେ ଜୂର ।
ଯୋଦ୍ଧାଙ୍କ କୁଟୁମ୍ବ ହୃଦ ସୀମନ୍ତରମାଳା
ଘେନରେ ପ୍ରାଣେ ନ ମାର ବୋଲେ ଇନ୍ଦ୍ରବଳା
ଆଲଟ ଚାମର ଆଦି ଯେତେ ପାଟଛତ୍ରି
ବିଦ୍ୟାଧର ଜୂରକରି ଘେନିଲେ ସବୁନ୍ତି ।
ନିଦାଘ ବାଣେ ପଡ଼ିଲେ ଅନେକ ରାଜନ
ଅସମ୍ଭାଳ ହୋଇ ଭାଙ୍ଗି ପଳାଇଲେ ସୈନ୍ୟ ।
ଚିତ୍ରସେନର ଆଜ୍ଞାରେ ପ୍ରାଣେ ନ ମାଇଲେ
ରଥ ଗଜ ଅଶ୍ୱଆଦି ସମସ୍ତ ତେଜିଲେ ।
କ୍ରୋଧଭର ହୋଇ ବୀରମାନେ ଗଳଗାଜି
ପଳାଇଲେ ଅସମ୍ଭାଳ ହୋଇ ସର୍ବେ ଭାଜି ।
ଯେସନେ କଦଳୀ ବନ ଭାଙ୍ଗେ ବାତାଘାତେ
କୁରୁବଳ ନାରଖାର ହୋଇଣ ତେମନ୍ତେ ।
ନିରେଖ ହୋଇ ସଇନ୍ୟେ ପଡ଼ିଗଲେ ମୂର୍ଚ୍ଛା
ଚିତ୍ରସେନ ଗନ୍ଧର୍ବ ଯେ କଲା ତାଙ୍କୁ ରକ୍ଷା ।
ଚିତ୍ରସେନ କୋପେ ନାଶଗଲେ କୁରୁଥାଟ
ପଳାଇଲେ ଏଣେ ତେଣେ ନ ପାଇଲେ ବାଟ ।
ବିଦ୍ୟାଧର ଚଳିଗଲେ ଆକାଶ ମାର୍ଗରେ
ଦୁର୍ଯ୍ୟୋଧନକୁ ସେ ବାନ୍ଧି ରଥରେ ନିର୍ଭରେ ।
କାଳ ବେଷ୍ଟ କରି ଲଗାଇଲାକ ଦଉଡ଼ି
ବେନି ଭୁଜକୁ ପଛକୁ କରି ପୁଣି ଯୋଡ଼ି ।
ଏକ ଗାଲେ ଚୂନ ଆର ଗାଲେ ଦେଇ କଳା
ରତ୍ନମାଳା ନେଇ ଦେଲା ଜବାପୁଷ୍ପ ମାଳା ।
ଦେବାଙ୍ଗ ବସନ ଅଙ୍ଗୁ ପକାଇ ପାଲଟି
ପିନ୍ଧାଇଲା ଦଉଡ଼ିରେ ବାନ୍ଧି ଚିରକୁଟି ।
ଅନେକ ଅବସ୍ଥା ଦେଇକରି ପରପଞ୍ଚ
ବାହିଲେ ରଥକୁ ଶୂନ୍ୟେ ଛଡ଼ାଇଣ ମଞ୍ଚ ।

ଝଞ୍ଜାଳ ବାଦ୍ୟ ବିହୀନେ ଦାଉଣ୍ଡି ବଜାନ୍ତି
ଉଲଗ୍ନ ହେଇ ଖେମଟା ନାଚ ସେ କରନ୍ତି ।
ବହୁତ ଝିଙ୍ଗାସ କରି କହନ୍ତି ତାହାକୁ
କର୍ଣ୍ଣ ଆଦି ଛାଡ଼ି ପଳାଇଲେ ସେ ରାଜାକୁ ।
ଦୁର୍ଜ୍ଜୟ ସେ ଦୁଃଶାସନ ଭାଇ ଅନେଶତ
କେ କେଣେ ପଳାଇ ଗଲେ ନ ପାଇ ତଦନ୍ତ ।
ଯୁଧିଷ୍ଠିଦେବ ବୋଇଲେ ଶୁଣ ଫାଲଗୁନି
ଦୁର୍ଯ୍ୟୋଧନ ହତ ହେଲା ରଖ ରେ ବହନି ।
ବାବୁ ମାନଚକ୍ରବର୍ତ୍ତୀ ହୋଇଲା ବନ୍ଧନ
ଅଦଭୂତେ ନିଅଇ ଯେ ତାକୁ ଚିତ୍ରସେନ ।
ଅର୍ଜ୍ଜୁନ ଯେ ମନ୍ତ୍ରୀ ସହଦେବକୁ ପଚାରି
ମାନଗୋବିନ୍ଦକୁ କିଏ ନେଲା ବନ୍ଦୀକରି ।
ଅର୍ଜ୍ଜୁନ ବଚନେ କହେ ମନ୍ତ୍ରୀ ସହଦେବ
ଶୁଣ ସ୍ୱାମୀ ସାବଧାନେ ତହିଁର ଯେ ଭାବ ।
ସମ୍ପଦ ଦେଖାଇ ଆସୁଥିଲେ କୁରୁନାଥ
ମର୍ତ୍ତ୍ୟେ ଆସିଥିଲେ ବିଦ୍ୟାଧର ଚିତ୍ରରଥ ।
ବାଆଷଠି ଅକ୍ଷୌହିଣୀ ବଳ ତଳେ ଥିଲେ
ନିମିଷକେ କଉରବ ସୈନ୍ୟକୁ ଘୋଟିଲେ ।
ଯୋଦ୍ଧାମାନେ ପଳାଇଲେ ରାଜାଙ୍କୁହିଁ ତେଜି
ସମସ୍ତ ସମ୍ପଦ ତାର ନେଲେ ଦର୍ପଗଞ୍ଜି ।
ଚିତ୍ରସେନହିଁ ବାନ୍ଧିଲା ସେ ଦୁର୍ଯ୍ୟୋଧନକୁ
ଘେନି ଯାଉଅଛି ରଥେ ପକାଇ ତାହାକୁ ।
ବହୁତ ଅବସ୍ଥା ତାକୁ ଦେଇ ବିଦ୍ୟାଧରେ
ପ୍ରପଞ୍ଚ କରି ନିଅନ୍ତି ରଥର ଉପରେ ।
ରଥଦଣ୍ଡେ ବାନ୍ଧିଛନ୍ତି ତାହାଙ୍କର ବାଳ
ମାନଗୋବିନ୍ଦ କାନ୍ଦଇ ହୋଇଣ ବିକଳ ।
କହନ୍ତେ ସେ ଦୁର୍ଯ୍ୟୋଧନ କଷ୍ଟ ସହଦେବ
ଶୁଣି ଧର୍ମ ଯୁଧିଷ୍ଠିର ବହିଲେ ସଭାବ ।
ଦୁର୍ଯ୍ୟୋଧନ ଆସୁଥିଲା ଆମ୍ଭଙ୍କୁ ଯେ ଦେଖି
ଆମ୍ଭ ଥାଆନ୍ତେ ହୋଇଲା ଏସନ ନିର୍ମାକ୍ଷୀ ।
ଆମ୍ଭର ସୋଦର ଅଟେ ସେ ମାନଗୋବିନ୍ଦ
ଚିତ୍ରସେନ ଅନିମିତ୍ତେ କିପାଁ କଲା ଦ୍ୱନ୍ଦ ।
ଏବେ ରକ୍ଷା କର ତାକୁ ବୁଦ୍ଧି ଯେବେ ଅଛି
ସୋଦରଙ୍କୁ ଝିଙ୍ଗାସିଲେ କାର୍ଯ୍ୟ ନାହିଁ କିଛି ।
ପାର୍ଥ ବୋଲେ ଆମ୍ଭଙ୍କୁ ସେ ବହୁ ଝିଙ୍ଗାସିଲା
ସେହି ହେତୁ ଚିତ୍ରସେନ ତାକୁ ଦୁଃଖ ଦେଲା ।
ଇନ୍ଦ୍ରପୁତ୍ର ଚିତ୍ରସେନ ଅଟେ ମୋର ଭାଇ
କିପରି ତା ସଙ୍ଗେ ରଣ କରିବଇଁ ମୁହିଁ ।
ଶୁଣିଣ ଯୁଧିଷ୍ଠି ଦେବ ବଚନ ପ୍ରକାଶି
ଆମ୍ଭ ଅପମାନେ ଚିତ୍ରସେନ ନେଲା ଆସି ।
ଧର୍ମ ପ୍ରମାଣେ ତାହାକୁ ଫଳିଲା ପ୍ରତ୍ୟକ୍ଷ
ଏବେ ଅର୍ଜ୍ଜୁନ କେମନ୍ତେ ରକ୍ଷା ହେବ ଦେଖ ।
ସୋଦରକୁ ସମ୍ଭାଳିଲେ ହୁଏ ବହୁଧର୍ମ
କଥାଗୋଟି ରହିଥାଏ ଜାଣୁ ଜନ୍ମ ଜନ୍ମ ।
ଆମ୍ଭର ଛାମୁରେ ତାକୁ ଆନ ନିଏ ଧରି
ସୋଦର ଝିଙ୍ଗାସ ବାବୁ ସହି ତ ନ ପାରି ।
ମୋହର ଶପଥ ଶାନ୍ତ କର ବାବୁ ରାଗ
ବନ୍ଦିରୁ ମୁକତ କର ଯାଇ ବେଗେ ଆଗ ।
ଅନିତ୍ୟ ସଂସାର ଏହି ଜୀବ ନୁହେଁ ଚିର
କଥା ରୁହାଅ ପୃଥ୍ୱୀରେ ଯେଉଁମାନେ ପାର ।
ଦୁର୍ଯ୍ୟୋଧନକୁ ତୁ ରକ୍ଷା କରିବୁ କିରୀଟି
ନୋହିଲେ ମୁଁ ବିସର୍ଜିବି ଯାଉ ଜୀବଗୋଟି ।
ଭୀମ ବୋଇଲା ଆମ୍ଭର ଅଟଇ ବଇରି
ଆମ୍ଭେ ତ ନାଶ ନ କଲୁ ଆନେ ବଧ କରି ।
ଉପାୟେ ଶତ୍ରୁକୁ ଦେବ କରିବା ନିଧନ
ଏଥକୁ ନ କର ଦେବ କିଛି ଅଭିମାନ ।
ଧର୍ମ ବୋଇଲେ ନ କର କୋପ ବୃକୋଦର
ଆପଦରେ ପଡ଼େ ଯେଉଁ ଭାଗ୍ୟହୀନ ନର ।
ତାକୁ ଯେବେ ଆପଦରୁ ଉଦ୍ଧାର କରିବ
ସେହି ଧର୍ମବଳେ ସ୍ଥାନ ବୈକୁଣ୍ଠେ ପାଇବ ।
ଯୁଧିଷ୍ଠିଙ୍କ ବାକ୍ୟେ ଭୀମସେନ ହେଲା ତୁନି
ବିଦ୍ୟାଧରକୁ କରଇ ସ୍ତୁତି ଫାଲଗୁନି ।
ଉଚ୍ଚସ୍ୱରେ ଡାକ ଦିଏ ତାକୁ ସବ୍ୟସାଚି
କେଣେ ନେଇ ଯାଉଅଛୁ ଧୃତରାଷ୍ଟ୍ର ବଚ୍ଛି ।
ବନବାସେ ଆମ୍ଭଙ୍କୁ ସେ ଅଇଲା ଯେ ଦେଖି
ତୁ ତାକୁ ନେଉଛୁ କିପାଁ ଉପ୍ରୋଧ ଉପେକ୍ଷି ।
ଆରେ ଆରେ ବୋଲି କୋପେ ଡାକଇ ଅର୍ଜ୍ଜୁନ
ବେଗେ ଫେରିଆସି କର ମୋ ସଙ୍ଗରେ ରଣ ।
ଅନ୍ତରୀକ୍ଷ ମାର୍ଗେ ଚଳିଯାଏ ବୀରମଣି
ଚିତ୍ରସେନ ଗନ୍ଧର୍ବ ଯେ ବଚନ ନ ଶୁଣି ।
ବାସବର ନନ୍ଦନ ସେ ଅତି ଗାଢ଼ କୋପେ
ଶୂନ୍ୟ ଭୁବନ ଭେଦିଲା ଅତିବଡ଼ ତାପେ ।
ବେଳୁଁ ବେଳ କୋପେ ବଢ଼ିଯାଉଁ ସବ୍ୟସାଚୀ
ବିନ୍ଧିଲାକ ମନଭେଦୀ ନାରାଚକୁ ବାଛି ।
କୋପେ ଅନୁକ୍ଷଣେ ବାଣ ବିନ୍ଧି ଫାଲଗୁନି
ଶୂନ୍ୟ ଭୁବନ ଭେଦିଲା ସେ ଗାଣ୍ଡୀବ ପାଣି ।
ଶୂନ୍ୟ ଭୁବନ ସମସ୍ତ ଶରପୀଡ଼ା ହେଲା
ରଥ ଚାଳି ବିଦ୍ୟାଧର ଯାଇ ନ ପାରିଲା ।
ବୋଲଇ ସେ ରଥ ବାହୁ କିନା ହୋ ମାତଳି
ଅମର ପୁରକୁ ଆମ୍ଭେ ଯିବା ରଥେ ଚଳି ।

ମାତଳି ବୋଇଲା ତୁହୋ ଶୁଣ ମହାବୀର।
ଅର୍ଜ୍ଜୁନ ଆକାଶଯାକ କଲା ଶରପୀଡ଼ା ।
ସେ ଦୁର୍ଯ୍ୟୋଧନର ଅଟେ ସହୋଦର ଭ୍ରାତ
ବେଗକରି ବନ୍ଧନ ତୁ ଫେଡ଼ ଚିତ୍ରରଥ ।
ବୋଲେ ବିଦ୍ୟାଧର ଏହା କେମନ୍ତ ବିଚାର
ଶତ୍ରୁନିଧନେ କିପାଇଁ ମୋତେ କୋପ କର ।
ଗୁଣକୁ ହେ ଅବିଗୁଣ ଭାଳେ ଚିତ୍ରସେନ
ମାତଳି ବୋଇଲା ବେଗେ ଫେଡ଼ ହୋ ବନ୍ଧନ
ଅର୍ଜ୍ଜୁନର କୋପେ ଯାଇ ନ ପାରିବା ପୁରେ
ସମସ୍ତେ ନାଶିଯିବାଟି ଅର୍ଜ୍ଜୁନର ଶରେ ।
ବନ୍ଧନକୁ ଫେଡ଼ିଦେଇ ଲୋଡ଼ଇ ସେ ଛାଡ଼ି
ନବସହସ୍ର ଯୋଜନୁ ପଡ଼େ ମୁହଁମାଡ଼ି ।
ଦୁର୍ଯ୍ୟୋଧନ ଡାକଦେଲା ଭାଇ ହେ ବିବସ୍ତ
ଭୂମିରେ ପଡ଼ି ମରିବି ପ୍ରାଣ ମୋର ରଖ ।
ଦୁର୍ଯ୍ୟୋଧନର ବିକଳ ଦେଖି ଧନଞ୍ଜୟେ
ନବସସ୍ର ଯୁଣେ କଲା ଶରପଥଟିଏ ।
ଚିତ୍ରସେନ ଗନ୍ଧର୍ବ ଯେ ଦେଲା ତାକୁ ଛାଡ଼ି
ଶରପଥେ କୁରୁପତି ଆସୁଅଛି ଗଡ଼ି ।
ଯୁଧିଷ୍ଠି ପଦତଳକୁ ବୋଲି ଶରପଥ
ଚରଣ ତଳେ ପଡ଼ିଲା ଯାଇ କୁରୁନାଥ ।
ଅନର୍ଘ ମଣିମୁକୁଟ ଧର୍ମ ପାଦତଳେ
ଚରଣ ଉଦକ ଦୁର୍ଯ୍ୟୋଧନର କପୋଳେ ।
ଅଚେତନ କୁରୁବୀର ଦେହେ ନାହିଁ ପ୍ରାଣ
ମୁଖେ ପାଣି ସିଞ୍ଚିଦେଲେ ଭାଇ ଚାରିଜଣ ।
ସଚେତ ହୋଇ ବସିଲା ରାଜା କୁରୁସାଇଁ
ଦେଖିଲା ଲଲାଟ ଲାଗିଅଛି ପାଦେ ଯାଇ ।
ତା ଦେଖି ବିରସ ମନ ହେଲା ଦଣ୍ଡଧାରୀ
ଧିକ ଧିକ ଏ ଜୀବନ ହୋଇଲା ମୋହରି ।
ଶତ୍ରୁ ପାଦତଳେ ଆସି ପଡ଼ିଲଇଁ ମୁହିଁ
ନିର୍ଲ୍ଲଜ ଆତ୍ମା ମୋହର ଅଛି କାହିଁପାଇଁ ।
କିପାଇଁ ମୋର ବନ୍ଧନ ଫେଡ଼ିଲା ଅର୍ଜ୍ଜୁନ
କିପାଁ ଚିତ୍ରସେନ ଶିର ନ କଲା ଛେଦନ ।
ଅଭିମାନ ସହିବାଠୁ ନାଶଯିବା ଭଲା
ମୋହର ଶରୀର କିପାଁ ବିନଷ୍ଟ ନୋହିଲା ।
ଅଭିମାନ ପାଇ ସେ ଯେ ରାଜା କୁରୁପତି
ଯୁଧିଷ୍ଠିଦେବ ଆଶ୍ୱାସି ବସାଇଲେ କତି ।
ଦୁର୍ଯ୍ୟୋଧନ ବୋଲେ ସାଧୁ ସାଧୁରେ ଅର୍ଜ୍ଜୁନ
ଫେଡ଼ିଲୁ ମୋହର ଏଡ଼େ ଦୁଃସହ ବନ୍ଧନ ।
ମୁହିଁ କିସ ତୋତେ ଦେବି ଆରେ ଫାଲଗୁନି
ଗୁଣବନ୍ତ କନିଷ୍ଠ ତୁ ଦୟାବନ୍ତ ପ୍ରାଣୀ ।

କିସଦେଇ ଶୁଝିବି ତୋ ଋଣ ଧନଞ୍ଜୟ
ମାଗରେ ବାବୁ ଯେ ଇଚ୍ଛା ଦେବଇଁ ନିଶ୍ଚୟ ।
ମୋର ପ୍ରାୟ ସହୋଦର ତୋତେ ପ୍ରାପ୍ତ ନୋହୁ
ତୋ ପ୍ରାୟ ସୋଦର ମୋତେ ଜନ୍ମେ ଜନ୍ମେ ହେଉ
ମୁହିଁ ପାମର ଅଜ୍ଞାନ ମନ୍ଦ ବଡ଼ ଦୁଷ୍ଟ
କେବଣ ପାତକ କଲି ଜ୍ଞାନ ମୋର ଭ୍ରଷ୍ଟ ।
ଗତ ପ୍ରାଣ ରକ୍ଷାକଲୁ ଆରେ ସବ୍ୟସାଚୀ
ମୋହଠାରେ ଅନୁଗ୍ରହ କଲୁରେ ବିବସ୍ଥି ।
ମାଗ ମାଗ ଅର୍ଜ୍ଜୁନରେ ପ୍ରସନ୍ନ ମୁଁ ତୋତେ
ଯାହା ଇଚ୍ଛା ମାଗ ତାହା ଦେବଇଁ ଯୁକତେ ।
ବୋଲଇ ଅର୍ଜ୍ଜୁନ ସ୍ୱାମୀ ଦେବୁ ମୋତେ କିସ
ଦିନକ ମୁକୁଟ ଦେବୁ କର ତୁ ଆଦେଶ ।
ଦୁର୍ଯ୍ୟୋଧନ ବୋଲେ ତିନିବାର ମୋର ସତ୍ୟ
ଅନର୍ଘମଣି ମୁକୁଟ ଦେବଇଁ ନିୟତ ।
ବରଦେଇ ଦୁର୍ଯ୍ୟୋଧନ ପରମ ଆନନ୍ଦ
ହସ୍ତିନା ରାଜ୍ୟକୁ ଗଲା ସେ ମାନଗୋବିନ୍ଦ ।
ବନରେ ନୃପତି ଯେହୁ ଅଜ ନାମେ ବୀର
ଯୁଧିଷ୍ଠି ସମର୍ପି ଦେଲେ ସଙ୍ଗରେ ତାହାର ।
ବାହୁଟିଆ ଗୋଟିଏକ କରାଇ ବାହନ
ହସ୍ତିନା ରାଜ୍ୟକୁ ଚଳିଯାଇ ଦୁର୍ଯ୍ୟୋଧନ ।
ସମସ୍ତ ସୈନ୍ୟ ସେଠାରୁ ପଳାଇଣ ଗଲେ
ବାରୁଣାବନ୍ତରେ ଯାଇ ପ୍ରବେଶ ହୋଇଲେ ।
ବାରୁଣାବନ୍ତେ ପ୍ରବେଶ ହେଲା ଧାର୍ତ୍ତରାଷ୍ଟ୍ରି
ଭୀଷ୍ମ ଦ୍ରୋଣ ଆସି ତାଙ୍କୁ ବାଟରେ ଯେ ଭେଟି
ଆପଣା ରଥେ ବସାଇ ଗଙ୍ଗାର ତନୟ
ଆତ୍ମବଚନ ନ କଲୁ ଆରେ କୁରୁରାୟ ।
କର୍ଣ୍ଣ ଶକୁନି ଯେ ଦୁଃଶାସନ ଯେ ଦୁର୍ଜୟ
କାହିଁ ଛାଡ଼ିଲୁ ଏହାଙ୍କୁ ସୈନ୍ୟ ହେଲେ କ୍ଷୟ ।
କେ କେଣେ ପଳାଇଗଲେ ଦେଖି ତାର ମୂର୍ତ୍ତି
ଭୀଷ୍ମ ଦ୍ରୋଣଙ୍କ ସନ୍ନିଧେ କହେ କୁରୁପତି ।
ଚିତ୍ରସେନ ଗନ୍ଧର୍ବ ଯେ ବାନ୍ଧିକରି ନେଲା
ଯୁଧିଷ୍ଠି ଆଜ୍ଞାରେ ମୋତେ ଅର୍ଜ୍ଜୁନ ରଖିଲା ।
ସାଧୁ ପାଣ୍ଡବ ତୋହର ଜୀବନହିଁ ଧନ୍ୟ
ଶରଣ ପଞ୍ଜର ମୋର ରଖିଲେ ଜୀବନ ।
ନିଜ ଭୁବନେ ପ୍ରବେଶ ହେଲା ଦୁର୍ଯ୍ୟୋଧନ
ବେନି ଦିବସେ ପ୍ରବେଶ ହସ୍ତିନା ଭୁବନ ।
କର୍ଣ୍ଣ ଶକୁନି ପ୍ରବେଶ ହେଲେ ସପ୍ତଦିନେ
ଅନେକ ଯେ ଉପହାସ କଲେ ରାଜାମାନେ ।
ଅର୍ଦ୍ଧରାଜ୍ୟ କର୍ଣ୍ଣବୀର କରୁ ଏବେ ଭୋଗ
ରାଜାଙ୍କୁ ଛାଡ଼ିଣ ଯେଣୁ ପଳାଇଲେ ଆଗ ।

ଶ୍ରୀହସ୍ତେ ଅର୍ଘ୍ୟ ଘେନିଣ ରାଣୀ ଭାନୁମତୀ
ବିଜେକଲା ଆସି ରାଜା ଦୁର୍ଯ୍ୟୋଧନ କତି ।
ରାଜାର ଶିରରେ ଅର୍ଘ୍ୟ ଦିଏ ନେଇ ଦେବୀ
ନିଜ ଭୁବନକୁ ବେଗେ ଗଲା କଉରବୀ ।
ବାରତା ପାଇଣ ଧୃତରାଷ୍ଟ୍ର ବିଜେକଲେ
ମାନଗୋବିନ୍ଦକୁ ଯାଇଁ ବାରତା ପୁଚ୍ଛିଲେ ।
କାହାରି କଥା ନ କଲୁ କୁରୁରାଜ ଦେବ
ଶକୁନି ବଚନେ ତୋତେ ପଡ଼ିଲା ପ୍ରମାଦ ।
ତାହାର ବଚନକୁ ତୁ ଗଲୁ ଯେ ପରତେ
କାଳେ ପାପରାହୁ ଆସି ଗ୍ରାସିଲାକ ତୋତେ ।
ଅଇଲୁ ତୁ ଏଡ଼େ ଅପମାନମାନ ପାଇ
ଶକୁନି ବଚନ ଏବେ ନ କର ରେ ତୁହି ।
କର୍ଣ୍ଣ ଶକୁନିର ବୋଲେ ଯେବେ ତୁହି ଥିବୁ
ଅନେକ ଅବସ୍ଥା ପାଇ କୁଟୁମ୍ବ ନାଶିବୁ ।
ଅନେକମତେ ବୋଲୁଛି ମୁହିଁ ତୋତେ ବାବୁ
ଏମାନଙ୍କ ବୋଲକୁ ତୁ ପରତେ ନ ଯିବୁ ।
ଧୃତରାଷ୍ଟ୍ରଙ୍କ ବଚନେ କର୍ଣ୍ଣ ଯେ ବୋଇଲା
ମହାଗୋଳ ହେଲା ତହିଁ ରାଜା ବନ୍ଦୀ ହେଲା ।
ଆମ୍ଭେମାନେ ଯେବେ ଏକମେଳେ ରହିଥାନ୍ତୁ
ଗନ୍ଧର୍ବକୁ ସ୍ୱର୍ଗକୁ ଯେ ଛାଡ଼ି ନ ଦିଅନ୍ତୁ ।
ଚକ୍ଷୁହୀନ ବୁଦ୍ଧି ତାତ କହୁ ନ ବିଚାରି
ଅଦଭୂତେ ଦେଖି ସୈନ୍ୟ ପଳାଇଲେ ଡରି ।
କିଏ କେଣେ ପଳାଇଲେ ଛିନ୍ନଛତ୍ର ହୋଇ
ଏକା ଦେଖିଣ ରାଜାକୁ ବନ୍ଦୀ କଲା ସେହି ।
ଆମ୍ଭ ସୈନ୍ୟ ଯେବେ ଏକମେଣ୍ଟ ହୋଇଥାନ୍ତା
ଇନ୍ଦ୍ର ଦେବତା ହେଲେ କି ଘେନି ଚାଲିଯାନ୍ତା ।
ଧୃତରାଷ୍ଟ୍ର ବୋଇଲାରେ କହସିନା ବାବୁ
ରାଜାଙ୍କୁ ତ ଛାଡ଼ି ତହୁଁ ପଳାଇଲ ସବୁ ।
ଧୃତରାଷ୍ଟ୍ର ଝିଙ୍ଗାସରେ କର୍ଣ୍ଣ ହୁଏ ତୁନି
ଲଜ୍ଜାପାଇ ରହିଲେ ସେ ନିଜ ଆତ୍ମା ଘେନି ।
ରହିଲେ ପାଣ୍ଡବମାନେ କାମ୍ୟକ କାନନେ
ବଞ୍ଚିଲେ କିରୂପେ ଘୋର ଗହନ ଅରଣ୍ୟେ ।
ଗହନ ଉତ୍ସର୍ଗ ଗିରିବର ବଡ଼ ଶିଖ
ଗଗନର ଅର୍ଦ୍ଧଯାଏ ବଢ଼ିଛନ୍ତି ବୃକ୍ଷ ।
ଅନେକ ଫଳ ଲୋଡ଼ିଲେ ସେ ବନରେ ଯାଇ
ବନ ଜୀବମାନେ ତହିଁ କଳନା ନ ଯାଇ ।
କୃଷ୍ଣମୃଗ ବାହୁଟିଆ ଆଣି କୁତୂହଳେ
ହରିଣ ଗୟଳ ମାରି ପଶି ନିଶାକାଳେ ।
ଜୟ ଜୟ ବିନାୟକ ଦେବ ଗଜାନନ
ଦକ୍ଷିଣ ଦ୍ୱାରମଣ୍ଡନ ପାର୍ବତୀ ନନ୍ଦନ ।

ଅମୃତ ଲଡୁ ଶୋଭିତ ଦେବ ଯାର କର
ବିଘ୍ନ ବିନାଶନ ତୁହି ଜୟ ଦାମୋଦର ।
ସ୍ୱାମୀ ଯା ପ୍ରସନ୍ନେ ବିଘ୍ନ ହୁଅଇ ଦହିର୍ଯ୍ୟ
ତେଣୁକରି ତୋର ନାମ ଅଟେ ବିଘ୍ନରାଜ ।
ଗିରିଜାର ନନ୍ଦନ ତୁ ବିନାୟକ ମୂର୍ତ୍ତି
ସ୍ନେହେ ବିଶ୍ୱନାଥ ନାମ ଦେଲେ ଗଣପତି ।
ଚଉଦ କୋଟି ଈଶ୍ୱର ଦେବଗଣ ପୁତ୍ର
ସେମାନଙ୍କ ଉପରେ ତୁ ଅଟୁ ଗଣନାଥ ।
ମୁଁ ତୋର ଶରଣ ଦେବ ଶାସ୍ତ୍ରର ପ୍ରସ୍ତାବେ
ଆହେ ଦେବ ଗଣନାଥ ଦୟାକର ଏବେ ।
ତୁମ୍ଭର ଆଜ୍ଞାରେ ମୁହିଁ ନର ଯୋନି ଜାତ
ଏ ଭବସାଗରୁ ରକ୍ଷା କର ବିଶ୍ୱନାଥ ।
ଶ୍ରୀବିଘ୍ନ ରାଜାଙ୍କର ମୁଁ ଚରଣେ ଦଇନୀ
ନମଇଁ ଶାରଳାଦାସ ଗ୍ରନ୍ଥେ ମହାମୁନି ।
ନାରାୟଣ ସୁମରଣା କର ମନ ଧ୍ୟାନେ
କହିବି ବନପର୍ବର ଚରିତ ସୁଜନେ ।
ଯାହା କି କହିଲେ କୃପାଜଳର ନନ୍ଦିନୀ
ହୃଦଗତେ ଭାବିଲି ମୁଁ ତାହା ଲୟ ଘେନି ।
ସିଦ୍ଧସମ୍ଭବିନୀ ଦେବୀ ଝଙ୍କଡ଼ ମଣ୍ଡଣୀ
ଶ୍ରୀଶାରଳା ଚଣ୍ଡୀ ନାମ ଧରି ନାରାୟଣୀ ।
ସଂସାରେ ମାଗୋ ପ୍ରସନ୍ନେ କରୁ ବରଦାନ
ପଞ୍ଚବ୍ରହ୍ମ ଜଗତାଙ୍ଗୀ ଅଭୟା ତୋ ନାମ ।
ଆନ ମୁହିଁ ନ ଜାଣଇ ନାରାୟଣୀ ବିନୁ
ହୃଦୟରେ ବିକାଶିଲା ଗ୍ରନ୍ଥ ତବ ଜ୍ଞାନୁ ।
ନବ ଶରଦ ରୁଚିର ଝଙ୍କଡ଼ ବାସିନୀ
କପିଳାସପୁରୀ ଦିଅ ଅପର୍ଣ୍ଣା ଜନନୀ ।
ନୁହଇ ପଣ୍ଡିତ ମୁଁ ନ ଜାଣେ ଶାସ୍ତ୍ରବାଟ
ନ ପଢ଼ିଲି ବିଦ୍ୟା ମୁହିଁ ନୋହି ବାଳଚାଟ ।
ମୋହର ହୃଦରେ ପୂର୍ବ କର୍ମର ଅଭ୍ୟାସେ
ନାରାୟଣୀ ଆଜ୍ଞାରେ ମୁଁ ହୃଦପଦ୍ମେ ଘୋଷେ ।
ବିପଦେ ସୁମର ନରେ ନାରାୟଣୀ ନାମ
ଶାରଳା ଦାସ ମୁଁ ଶୂଦ୍ରକୁଳେ ମୋର ଜନ୍ମ ।
ସେ ଦେବୀ ଲୟ ସର୍ବଦା ନାମ ହୃଦଗତେ
ବଦନ୍ତି ଶାରଳାଦାସ ମୂର୍ଖ ଅପଣ୍ଡିତେ ।
ଶ୍ରୀମହାଭାରତ ବନପର୍ବର ଏ କଥା
ଶୁଣିଲେ ଛାଡ଼ଇ ପାପ ତାପ ମନବ୍ୟଥା ।
ପାପୀ ଲୋକମାନେ ପୁଣି ହୋଇଯାନ୍ତି ମୋକ୍ଷ
ଅଗତି ଗତି ଦିଅନ୍ତି ଶ୍ୱେତପଦ୍ମ ଅକ୍ଷ ।
ଗଙ୍ଗା ଗୟା ବାରାଣସୀ ପ୍ରୟାଗ ଏ ସର୍ବ
ତୀର୍ଥ ଫଳ ପାଇବୁଟି ଶୁଣି ବନପର୍ବ ।

ମେରୁ ସମାନ ଦାନରେ ଯେ ଫଳ ପାଇବ
ମହାଭାରତ ଶ୍ରବଣେ ସେ ଫଳ ମିଳିବ ।
ମେରୁ ତୁଲ୍ୟ ସ୍ୱର୍ଣ୍ଣ ଦେଲେ ଯେତେ ପୁଣ୍ୟ ଅଛି
ସଂକଳ୍ପ ଶ୍ରବଣେ ସେହି ପୁଣ୍ୟ ତୁଳେ ଗଛି ।
ମହାଭାରତ ଶୁଣି ଯେ ନ ଦିଏ ଦକ୍ଷିଣା
ବଧିର ହୁଅଇ ଜାଣୁ ଜାଣୁ ହୁଏ ବଣା ।
ନ ଜାଣନ୍ତି ମୂଢ଼ମତି ଜାଣନ୍ତି ପଣ୍ଡିତେ
ଶ୍ରୀହରି ଚରିତ ଅଛି ଏ ମହାଭାରତେ ।
ଯେଉଁମାନେ ଶକ୍ୟ ନରେ କରିବାଟି ଧର୍ମ
ଯମ ଦଣ୍ଡୁ ତରିବା ନ ଭଜି ରାମ ନାମ ।



## ପର୍ଶୁରାମଙ୍କର ଜନ୍ମ ବିବରଣ ଓ ମାତା ଭ୍ରାତାମାନଙ୍କର ଶିରଚ୍ଛେଦନ ଏବଂ ପୁନର୍ଜୀବନ ପ୍ରାପ୍ତି

ହେ ଚୈତନ୍ୟ ବିଲଙ୍କର ବୈବସ୍ୱତ ମନୁ
ମହା ବ୍ରହ୍ମବେତ୍ତା ସେହି ଘଟରଷି ସୁନୁ ।
ବୈବସ୍ୱତ ପୁଚ୍ଛାକଲେ ଶୁଣ ଅଗସ୍ତିହେ
ସଭାପର୍ବକୁ ଶୁଣିଲି ତବ ଅନୁଗ୍ରହେ ।
ଏ ଭବସାଗରୁ ମୁହିଁ କେହ୍ନେ ଯିବି ତରି
ମୁକତି କାରଣ ମୋତେ କୁହ ତପଚାରୀ ।
ଭକତ ବତ୍ସଳ ତୁମ୍ଭେ ଅଟ ମୁନିଦେବ
ଅରଣ୍ୟ ପର୍ବର କଥା ମୋତେ ଆଜ୍ଞାହେବ ।
ବସନ କୁଣ୍ଡଳ ଧୂପ ଦୀପ ନଇବେଦ୍ୟ
ପୁଷ୍ପ ଚନ୍ଦନ ଦେଇଣ ନମେ ମୁନିପାଦ ।
ନବତନ ବସ୍ତ୍ର ପୁଣି ନଟୀକାଳ ଫଳ
ଭକ୍ତିଭରେ ପାଦୋଦକ ଘେନେ ମହୀପାଳ ।
ତବ ଚରଣରେ ଭକ୍ତି ମୋହର ଘେନିବା
ଅରଣ୍ୟ ପର୍ବର କଥା ମୋ ଆଗେ କହିବା ।
ଭାଗ୍ୟବନ୍ତ ପଣ୍ଡିତ ସେ ଶ୍ରୋତା ଯେ ନୃପତି
ବ୍ରହ୍ମବେତ୍ତା ଧାର୍ମିକ ସେ କହନ୍ତି ଅଗସ୍ତି ।
ଶୁଣ ତୁ ମନୁ ପୁରୁଷ ବନପର୍ବ କଥା
ଧର୍ମ ଅର୍ଥ କାମ ମୋକ୍ଷ ପ୍ରାପତ ସର୍ବଥା ।
ରହିଲେ ପଣ୍ଡୁନନ୍ଦନ କାମ୍ୟକର ବନ
ନିଶାରେ ଭ୍ରମି ମାରନ୍ତି ତହିଁ ଜୀବମାନ ।
ସେହି ବନରେ ଅଛଇ କାମ୍ୟକ ପର୍ବତ
ରାତ୍ରେ ଉତ୍ସର୍ଗ ହୁଅଇ ଯୂଣ ତିନିଶତ ।
ଦିବସେ ଉତ୍ସର୍ଗ ହୁଏ ଯୂଣ ପାଞ୍ଚ ତାର
କାଞ୍ଚନଦୀ ବହିଯାଏ ଉତ୍ତରେ ତାହାର ।
ସେ ନଦୀରେ ସ୍ନାନ କରି ନାମ ଜପି କ୍ଷଣେ
ତେପନ ପୁରୁଷ ତରିଯାନ୍ତି ପିତୃଗଣେ ।
ଏ ପର୍ବତେ ଯେବେ କେହି ରହେ ପାଞ୍ଚରାତ୍ର
ସମ୍ବତ୍ସର ପରିଯନ୍ତେ ପାପ ହୁଏ ହତ ।
କାମ୍ୟକ ପର୍ବତ ଯେଣୁ ଅଟେ କାମରୂପୀ
ଦିନକୁ ସାମାନ୍ୟ ରାତ୍ରେ ହୁଏ ବୃଦ୍ଧିପ୍ରାପ୍ତି ।
ସେହି ପର୍ବତରେ ରହି ଧ୍ୟାନରେ ଚିନ୍ତିଲେ
ଦେବତା ଦିଶନ୍ତି ହୃଦଗତରେ ଚାହିଁଲେ ।
ରୋଗ ନ ପୀଡ଼ଇ ଆୟୁ ନ ହୁଅଇ ହତ
କାମଦେବର ସଦୃଶ ହୁଅଇ ନିରତ ।
ଅଗସ୍ତି ବୋଇଲେ ତୁମ୍ଭେ ଶୁଣ ମହାମନୁ
ଭବିଷ୍ୟତ ଜ୍ଞାତା ହୋନ୍ତି ପର୍ବତ ପ୍ରସନ୍ନୁ ।
ଚଇତନ୍ୟ ପୁରୁଷଙ୍କୁ ମନୁ କଲେ ପୁଚ୍ଛା
ଏ ପର୍ବତ ପୂର୍ବକଥା ଶୁଣିବାକୁ ଇଚ୍ଛା ।
ମୋତେ ସେହୁ ପର୍ବତର କହ ପୂର୍ବକଥା
ତାହା ଶୁଣି ମୋ ମନରୁ ଛାଡ଼ିଯାଉ ବ୍ୟଥା ।
ଆହୋ ଚଇତନ ଶୁଣ ପର୍ବତ ଚରିତ
ସତ୍ୟଯୁଗେ ଯମଦଗ୍ନି ଯଜ୍ଞ କଲେ ଏଥ ।
କାମଭଦ୍ରାନଦୀ ତୀରେ ପୂଜିଲେ କାମାକ୍ଷୀ
ଶୁଦ୍ଧ ସ୍ଫଟିକର ଅଙ୍ଗ ଦିଶେ କମଳାକ୍ଷୀ ।
ଆପଦ ପଡ଼ିଲେ ନିଜେ ହୋନ୍ତି କାମସେଣା
ମହା ବ୍ରହ୍ମବେଦୁ ଶୈଳ ରାଜାର ଦୁଲଣା ।
ବ୍ରହ୍ମା ନନ୍ଦନ କୁଣ୍ଡଳ ନାମେ ମହାରଷି
ସ୍ଥୂଳରଷି ବୋଲିକରି ତାହାଙ୍କର ଶିଷି ।
ତାହାଙ୍କର ନନ୍ଦନ ଯେ ଇନ୍ଦ୍ର ମହାରଷି
ଅସ୍କନ୍ଧ ନାମରେ ହେଲା ଏହାଙ୍କର ଶିଷି ।
ଏହାଙ୍କ ନନ୍ଦନ ହେଲା ଇନ୍ଧନ ମହର୍ଷି
ଦଧୀଚି ବୋଲିକରି ଯେ ତାହାଙ୍କର ଶିଷି ।
ଦଧୀଚିର ସୁତ ପୀତାମ୍ବର ପୁରୋହିତ
ଅସ୍କନ୍ଧ ବୋଲିକରି ଯେ ଏହାଙ୍କର ସୁତ ।
ଅସ୍କନ୍ଧ ରଷିଙ୍କ ପୁତ୍ର ହୋଇଲେ ବରୁଣ
ବରୁଣ ରଷିର ପୁତ୍ର ହୋଇଲେ ଅରୁଣ ।
ଅରୁଣ ରଷିଙ୍କ ପୁତ୍ର ହୋଇଲେ ଯେ ତିନି
ସୁଦେବ ଭରଦ୍ୱାଜ ଯେ ପୁଣି ଯମଦଗ୍ନି ।
ଗନ୍ଧର୍ବ ରାଜାର ନାମ ଅଟେ ଅଂଶୁମାଳି
ଏହାଠାରୁ ଜାତ ହେଲେ ଚାରୋଟି ଦୁଲାଳୀ ।
ରେଣୁକା ଅମ୍ବିକା ସଉନିକା ଯମନିକା
ଯମଦଗ୍ନିଙ୍କୁ ପ୍ରଦାନ ହୋଇଲେ ରେଣୁକା ।
ଗାଧିରାଜା ବିଭାହେଲେ ସୌନିକା ନାରୀକି
ଯମଦଗ୍ନି ଯାଗକଲେ ସନ୍ତାନ ପାଇଁକି ।
ସୌନିକା କହିଲେ ଆସି ରେଣୁକାର ଆଗ
କ୍ୱାଇଁକି କହ କରନ୍ତୁ ପୁତ୍ରେଷ୍ଟିର ଯାଗ ।

ଯେ ଧନ ଲାଗିବ ତାହା କରିବି ପ୍ରଦାନ
ରେଣୁକା କହିଲା ଯାଇଁ ସ୍ୱାମୀ ସନ୍ନିଧାନ ।
ଯଜ୍ଞ କରି ଏକଗୋଟି ପୁତ୍ରଦାନ କର
ଗାଧି ଦେଶରେ ହୋଇବ ସେହି ନୃପବର ।
ରେଣୁକା ବଚନ ଶୁଣି ଯମଦଗ୍ନି ଋଷି
ଯଜ୍ଞକୁଣ୍ଡ କଲେ ଏହି ପର୍ବତରେ ଆସି ।
କାଳାନଳ ବୈଶ୍ୱାନର କଲେ ଆବାହନ
ରାଜା ବସିଣ ଆହୁତି କରନ୍ତି ପ୍ରଦାନ ।
ଏହି କାମ୍ୟକ ଯଜ୍ଞରେ କାମକ୍ରିୟା ଅର୍ଥେ
ମହାଯଜ୍ଞ କଲେ ଶତବର୍ଷ ପରିଯନ୍ତେ ।
ଆୟର ଜ୍ୟୋତିର ବୋଲି ଏହି ବେନି ମନ୍ତ୍ରେ
ଅବିଶ୍ରାମରେ ଆହୁତି ବସି ଦେଲେ ନିତ୍ୟେ ।
ପୌଷମାସର ପୂର୍ଣ୍ଣମୀ ପୁଣି ଭୃଗୁବାର
ପୁଷ୍ୟା ନକ୍ଷତ୍ରର ଭୋଗ ଅଟେ ସେ ଦିନର ।
ବାଳବନାମେ କରଣ ପ୍ରୀତିନାମେ ଯୋଗ
ସେ ଦିନରେ ଯମଦଗ୍ନି କଲେ ତହିଁ ଯାଗ ।
ମକର ମାସରେ ଶେଷ ହୁଏ ପୂର୍ଣ୍ଣାହୁତି
ଆପ୍ୟାନରେ ପିତୃଲୋକ ହେଲେ ସଦଗତି ।
ଚରୁ ଆଣିଲେ ଶ୍ରୀକରେ ତହୁଁ ତପୋବନ୍ତ
କୃଷ୍ଣ ପ୍ରତିପଦା ଦିନ ହୁଏ ସମାପତ ।
ଯମଦଗ୍ନି ରେଣୁକାକୁ କହିଲେ ଡିଆରି
ଏବେ ତୁମ୍ଭେ ଦ୍ୱିଭଉଣୀ ଆସ ସ୍ନାନକରି ।
ଆଜ୍ଞା ଦେଇ ଯମଦଗ୍ନି ଆହନିକେ ଗଲେ
ରେଣୁକା ଚରୁକୁ ପୂର୍ବଭାଗରେ ଥୋଇଲେ ।
ସୌନିକା ଚରୁ ପଶ୍ଚିମଭାଗ ଦେଶେ ଥୋଇ
ବୋଇଲେ ଯେ ଯାହା ଚରୁ ଭୁଞ୍ଜିବ ଗୋ ଦୁଇ ।
ରେଣୁକାକୁ ବୋଇଲେ ତୋ ଚରୁ ପୂର୍ବଭାଗ
ଆମ୍ଭେ ବାଣ୍ଟି ଥୋଇଅଛୁ ଯେ ଯାହାର ଯୋଗ ।
ଏତେ କହି ମହାମୁନି ଗଲେ ଯେ ଆହ୍ନିକେ
ଗଙ୍ଗାସ୍ନାନ କରିଗଲେ ରେଣୁକା ସୌନିକେ ।
ରେଣୁକା ଅଟନ୍ତି ଜାଣ ଋଷିଙ୍କର ପତ୍ନୀ
ନିତ୍ୟକର୍ମ ତାହାଙ୍କର ଶେଷ ଯୋଗ ଘେନି ।
ସଉନିକା ଅଟନ୍ତି ଯେ ରାଜାର ଭାରିଯା
କ୍ଷତ୍ରିୟ ପ୍ରକୃତି ସେହୁ ସବୁ କଲେ ତେଜ୍ୟା ।
ସ୍ନାହାନକୁ ସାରିଣ ସେ ଅଇଲା ବହନ
ଐଶାନ୍ୟେ କୋଣର ଭାଗ କଲା ସେ ଭୋଜନ
ନିତ୍ୟକର୍ମ ସାରି ତହୁଁ ରେଣୁକା ଅଇଲେ
ପଶ୍ଚିମରୁ ଚରୁ ଦେବୀ ଗ୍ରାସ ତା ନ କଲେ ।
ବିଚାରିଣ ରେଣୁକା ଯେ ନ ବୋଇଲେ କିଛି
ନ ପୁଣ କରନ୍ତି ଯମଦଗ୍ନି ମୋତେ ବାଞ୍ଛି ।

ବିଚାରି ପାଳଟଚରୁ ଭୁଞ୍ଜିଲେ ରେଣୁକେ
ତାଙ୍କ ଗର୍ଭେ ରହିଲେ ଯେ କୃଷ୍ଣ ଦଇବକେ ।
କହନ୍ତି ଅଗସ୍ତି ଶୁଣ ଆହେ ଭାଗ୍ୟବନ୍ତ
ଦୁହିଁଙ୍କର ଉପୁଜିଲେ ତହୁଁ ବେନିପୁତ୍ର ।
ଆଗ ଗାଧିରାଜା ପୁରେ ଜାତ ବିଶ୍ୱାମିତ୍ର
ଗାଧିରାଜା ପୁର ତହିଁ ହୋଇଲା ପବିତ୍ର ।
ଯମଦଗ୍ନି କୋଳେ ପର୍ଶୁରାମ ହେଲେ ଜାତ
କ୍ଷତ୍ରିବୃତ୍ତି ତେଜି ତାଙ୍କ ହୋଇଲା ସଂଜାତ ।
ବାମକରରେ ଦକ୍ଷିଣାବର୍ତ୍ତ ଶଙ୍ଖ ଚିହ୍ନ
ବିରାଜେ ଦକ୍ଷିଣ କରେ ପଦ୍ମ ଚିହ୍ନମାନ ।
ଦକ୍ଷିଣ କରରେ ପର୍ଶୁ ଚିହ୍ନେକ ଅଛଇ
ବାମକରେ ସ୍ଥଳେ ସ୍ଥଳେ ପର୍ଶୁ ଯେ ଶୋଭଇ ।
ଅତି ସୁନ୍ଦର ସକ୍ଷମ ଅଟେ ତାଙ୍କ କାୟ
ବେନିଚକ୍ଷୁ ବିରାଜଇ କାଳାନଳ ପ୍ରାୟ ।
ବେନି ପାଦତଳେ କାଳଚକ୍ର ଯେ ବିରାଜି
ସର୍ବଗୁଣେ ସମ୍ପନ୍ନ ସେ ଅଟେ ମହାତେଜୀ ।
ପୁତ୍ର ଜାତ ହେବା ଶୁଣି ପ୍ରୀତ ଯମଦଗ୍ନି
ପୂର୍ଣ୍ଣ କୁମ୍ଭ ଥୋଇ ବିଚାରନ୍ତି ପାଞ୍ଜି ଘେନି ।
କୁମ୍ଭମାସ କୃଷ୍ଣପକ୍ଷ ତୃତୀୟାର ଦିନ
ଭୌମବାରରେ ରେଣୁକା ଚରୁ କଲେ ପାନ ।
ଏହିରୂପେ ଦଶମାସ ହୋଇଲା ସମ୍ପୂର୍ଣ୍ଣ
ପର୍ଶୁରାମ ଜନ୍ମ କନ୍ୟା ପ୍ରତିପଦା ଦିନ ।
ଉତ୍ତରଭାଦ୍ର ନକ୍ଷତ୍ର ହେଲା ମୀନରାଶି
ଦୈବଜ୍ଞ ବିଚାର କରି କହଇ ସେ ଆସି ।
ବୃହସ୍ପତି କାଳରେ ଯେ କୁମର ଉତ୍ପତ୍ତି
ସୁରଗୁରୁ ସପତମ ଗୃହରେ ଅଛନ୍ତି ।
ଗଣନାରେ ଚାରିପାଦେ ଛନ୍ତି ବୃହସ୍ପତି
ମହାସିଦ୍ଧାନ୍ତ କ୍ଷତ୍ରିଏ ହେବେ ଏହୁ କ୍ଷିତି ।
ଶନିଶ୍ଚର ରହିଛନ୍ତି ଗୃହର ନବମେ
ପାପଗ୍ରହ ନାହିଁ କିଛି ତୃତୀୟ ସପ୍ତମେ ।
ଉତ୍ତରଭାଦ୍ର ମୀନରେ ଗଣ୍ଡମୂଳେ ନାସ୍ତି
ସପ୍ତାଙ୍ଗ ଘେନିଣ ଯମଦଗ୍ନି ବିଚାରନ୍ତି ।
ଅଶ୍ୱିନୀ ନକ୍ଷତ୍ରର ଯେ ଆଗ ତିନିଦଣ୍ଡ
ଏଥେ ଜନ୍ମିଲେ ଷୋହଳ ବର୍ଷେ ପାଇ ଗଣ୍ଡ ।
ଯଥା ଜନ୍ମ ହୁଏ ତାର ତଥା ହୁଏ ସତ୍ତ୍ୱ
ବୁଝନ୍ତି ଯେ ଯମଦଗ୍ନି ବିଚାରିଣ ତତ୍ତ୍ୱ ।
ମଘା ନକ୍ଷତ୍ର ପ୍ରଥମ ଯେଉଁ ଚାରିଦଣ୍ଡ
ଏଥେ ଜାତହେଲେ ଅଷ୍ଟ ବରଷକୁ ଗଣ୍ଡ ।
ଅଶ୍ଳେଷା ନକ୍ଷତ୍ର ଆଗ ଯେଉଁ ସାତଦଣ୍ଡ
ଏଥେ ଜାତ ହେଲେ ଚାରି ବରଷକୁ ଗଣ୍ଡ ।

ରେବତୀ ନକ୍ଷତ୍ରରେ ଯେ ଶେଷ ପାଞ୍ଚଦଣ୍ଡ
ଏଥେ ଜନ୍ମହେଲେ ଷଡ଼ମାସେ ପାଇ ଗଣ୍ଡ ।
ଅଶ୍ୱିନୀ ମୂଳା ମଘା ଯେ ଅଶ୍ଳେଷା ନକ୍ଷତ୍ର
ଜ୍ୟେଷ୍ଠା ରେବତୀ ଏ ଷଡ଼ ଅଟନ୍ତି ଏମନ୍ତ ।
ଏ ଯୋଗରେ ଯେବେ ଜାତ ହୁଏ ବାଳଶିଷି
ଅବଶ୍ୟ ଭୋଗକରେ ସେ ହୋଇ ଗଣ୍ଡଦୋଷୀ
ପିତାକୁ ଦୋଷ ଲାଗଇ ଦିବସେ ଜନ୍ମିଲେ
ରାତ୍ରେ ଜନ୍ମିଲେ ମାତାକୁ ଲାଗୁଥାଇ ଭଲେ ।
ଏହିରୂପେ ଯମଦଗ୍ନି ଗଣ୍ଡଶୂଳ ବାରି
ପୁତ୍ରକୁ ଦେଖି ଚଳିଲେ କରେ ଅର୍ଘ୍ୟ ଧରି ।
ଦୀପାବଳି ଧରି ପୁତ୍ରେ ବନ୍ଦାଇଲେ ଅର୍ଘ୍ୟ
ଲକ୍ଷଣ ସବୁ ଦେଖିଣ ହେଲେ ଉଦବେଗ ।
ଦେଖିଲେ ସେ ସର୍ବଗୁଣେ ପରିପୂର୍ଣ୍ଣ ଗଛି
ଶିଶୁ ଶ୍ରୀଭୁଜ ମଧ୍ୟରେ ପର୍ଶୁ ଚିହ୍ନ ଅଛି ।
ତେଜ ଗୁଣ ଦେଖି ପୁଚ୍ଛାକଲେ ରେଣୁକାକୁ
ଈଶାନ ଭାଗ ଚରୁ ଯେ ଦେଲଇଁ ତୁମ୍ଭଙ୍କୁ ।
ତାହାକୁ ତୁମ୍ଭେ ପାନ କି ନ କଲ ରେଣୁକା
ରେଣୁକା ବୋଇଲା ତାହା ଭୁଞ୍ଜିଲା ସୌନିକା ।
ଯମଦଗ୍ନି ମହାଋଷି ବିଚାରନ୍ତି ଚିତ୍ତ
କ୍ଷତ୍ରିୟ ସନ୍ତାନ ଆମ୍ଭ ଘରେ ହେଲା ଜାତ ।
ରାଜା ଘରରେ ଜନମ ଯାଇ ହେଲା ତପୀ
ଚରୁ ପାଲଟେ ଏମନ୍ତ ହୋଇଲା ସ୍ୱରୂପୀ ।
ତପ ନାଶଗଲା ସ୍ତ୍ରୀଙ୍କ ଅସତ୍ୟର ପଣେ
ଆହନିକ କରିଗଲି କିପାଁ ଅକାରଣେ ।
ସନ୍ତତି ପ୍ରାପତ ହେଲୁ ଆମ୍ଭ ପୂର୍ବକର୍ମେ
ପର୍ଶୁରାମ ନାମ ତାକୁ ଦେଲେ ପର୍ଶୁ ଚିହ୍ନେ ।
ସମୟକରେ ରେଣୁକା ପୁଣି ଗର୍ଭବତୀ
ସୁଯୋଗ ଘେନିଣ ଏକ କୁମର ଉତ୍ପତ୍ତି ।
ତାକୁ ଦେଖି ଯମଦଗ୍ନି ସାନନ୍ଦ ହୋଇଲେ
ହଳିରାମ ବୋଲି ତାର ନାମକୁ ବିହିଲେ ।
ପୁନଶ୍ଚ ଜନମ ହେଲେ ଆଉ ଏକ ପୁତ୍ର
ରଘୁରାମ ନାମ ଦେଲେ ତାର ତପୋବନ୍ତ ।
ପୁଣି କିଛିଦିନେ ପୁତ୍ରେ ହୋଇଲା ଜନମ
କନିଷ୍ଠ ପୁତ୍ରକୁ ଦେଲେ ନୀଳରାମ ନାମ ।
ଏମନ୍ତେ ଯମଦଗ୍ନିଙ୍କ ଚାରୋଟି ନନ୍ଦନ
କ୍ରମେ କ୍ରମେ ହୋଇଲେ ଯେ ବାଳକେ ବର୍ଦ୍ଧନ ।
ଚଇତନ ପୁଚ୍ଛାକଲେ ଶୁଣ ମନଦେବ
ପର୍ଶୁରାମ କ୍ଷତ୍ରିପଣ କି କଲେ କହିବ ।
ମନୁ ବୋଇଲେ ତୁ ଶୁଣ ଏବେ ସେ ବାରତା
ଯମଦଗ୍ନି ପୁତ୍ରଙ୍କର ଯେମନ୍ତ ବ୍ୟବସ୍ଥା ।

ଯମଦଗ୍ନି ବିଜେକଲେ କାମ୍ୟକ ପର୍ବତେ
କାମ୍ୟକ ଶ୍ରାଦ୍ଧ କରିଲେ ପିତୃଶ୍ରାଦ୍ଧ ଅର୍ଥେ ।
ତୁଳ କୃଷ୍ଣପକ୍ଷ ପୁଣି ନକ୍ଷତ୍ର ରୋହିଣୀ
ଚତୁର୍ଥୀର ଭୃଗୁବାର ଯେ ହୋଇଲା ପୁଣି ।
ଯମଦଗ୍ନି ଚାରିପୁତ୍ରେ ଆଣିଲେ ହକାରି
ବୋଇଲେ ହରିଣ ଗଣ୍ଡା ଆଣ ମାରିକରି ।
ପଶ୍ଚିମକୁ ପର୍ଶୁରାମ ରଘୁ ଯେ ଉତ୍ତରେ
ପୂର୍ବେ ହଳିରାମ ନୀଳରାମ ଦକ୍ଷିଣରେ ।
ପାରିଧିକୁ ଚାରିଦିଗେ ଚାରିସୁତ ପେଶି
ଯମଦଗ୍ନି ନିତ୍ୟକର୍ମ କରିଲେ ଯେ ବସି ।
ରେଣୁକାକୁ ବୋଲେ ଜଳଦିଅ ରତ୍ନଘଟେ
ତା ଶୁଣି ଦିଅନ୍ତି ଜଳ ସ୍ୱାମୀଙ୍କ ନିକଟେ ।
ତମ୍ବା ପାତ୍ରରେ ରେଣୁକା ଦିଏ ଜଳ ତୋଳି
ସୌରଭ ପାତ୍ରିରେ କର୍ମ କଲେ ତପଃଶାଳୀ ।
ତିଳ ତର୍ପଣ କରନ୍ତି ତହିଁ ଯମଦଗ୍ନି
ରେଣୁକା ତାହାଙ୍କୁ ଜଳ ତିଳ ଦ୍ୟନ୍ତି ଘେନି ।
ବଦନ୍ତି ଅଗସ୍ତି ମୁନି ଶୁଣ ମନୁରାୟେ
ଚିତ୍ରସେନ ଗନ୍ଧର୍ବ ସେ ବାସବ ତନୟେ ।
ଆକାଶମାର୍ଗେ ଗମନ କରେ ବିଦ୍ୟାଧର
ଗନ୍ଧର୍ବ ଛାୟା ଦିଶିଲା ଘଟର ମଧ୍ୟର ।
ଯୁକତେ ଗନ୍ଧର୍ବ ରୂପ ଯେସନେ ନାୟିକା
ଦେଖିଣ ଊର୍ଦ୍ଧ୍ୱକୁ ଦୃଷ୍ଟି କରିଲା ରେଣୁକା ।
ତେଣୁ ସ୍ୱାମୀ ତର୍ପଣକୁ ଆଉ ଲୟ ନାହିଁ
ଯମଦଗ୍ନି ପାତ୍ରେ ନୀର ନ ପଡ଼ିଲା ଯାଇ ।
ମଉନେ ରହିଲେ ମୁନି କିଛି ହିଁ ନ ଭାଷି
ତର୍ପଣ ନ କରି ତହୁଁ ମୁନିଛନ୍ତି ବସି ।
ଯହୁଁ ଗନ୍ଧର୍ବ ଅଦୃଶ୍ୟ ହୋଇଗଲା ସ୍ୱର୍ଗେ
ପାଣିଘଟ ତୋଳିଦ୍ୟନ୍ତି ତହୁଁ ଦେବୀ ବେଗେ ।
ରାଗରେ ତର୍ପଣ ତ୍ୟାଗକଲେ ତପୋନିଷ୍ଠୀ
ବୋଇଲେ ସେ ପୋଡୁ ପୋଡୁ ନାରୀ ଜନ୍ମ ଗୋଟି
ମଦିରା ଆହାର କଲେ ଭୋଳହୁନ୍ତି ପ୍ରାଣୀ
ତେମନ୍ତ ପର ପୁରୁଷେ ବିରହୀ ରମଣୀ ।
ପରକୁ ଦେଖି ଆପଣେ ହୋଇଯାନ୍ତି ମତ୍ତା
ପ୍ରମଦା ନାମକୁ ତେଣୁ ବିହିଲେ ବିଧାତା ।
ତୁହି ଗୋ ରେଣୁକା ହେଲୁ ପର ପରାଭବୀ
ଆଉ ତୁ ମୋତେ ଅଯୋଗ୍ୟ ଅଟୁ ଅସାଧବୀ ।
ମୋର ପ୍ରାୟ ସ୍ୱାମୀ ଥାଉଁ ପରେ ଦେଲୁ ମତି
ଆନେ ମନଦେଇ ତୁହି ହୋଇଲୁ ଅସତୀ ।
ଅନ୍ୟ ପୁରୁଷରେ ମନ ଦିଅନ୍ତି ଯେ ବାମା
ଆରବେଳ ନ ଯିବ ସେ ସ୍ତିରୀଙ୍କର ସୀମା ।

ମୋର ହସ୍ତେ ପାଣିଦେଇଁ ପରେ ଦେଲୁ ଦୃଷ୍ଟି
ନ ଛୁଅଁ ମୋହର ଅଙ୍ଗ ବୋଲେ ତପନିଷ୍ଠି ।
ସ୍ୱାମୀ ଭର୍ତ୍ସନାରେ ଦେବୀ ବସି କିଛି ଦୂରେ
ନେତ୍ରୁ ଅଶ୍ରୁ ବହିଯାଏ ରୋଦନ୍ତି ଉଚ୍ଚରେ ।
କ୍ରୋଧଭର ହୋଇ ଶୋକ କରଇ ରେଣୁକା
ଯମଦଗ୍ନି ବୋଲେ ମୋତେ ନ ଦିଅ ତୁ ଦେଖା ।
ଯାହାଠାରେ ତୋର ମନ ବଳିଛି ଆବର
ସେଠାରେ ଯାଇ ବସିଣ ରୋଦନ ତୁ କର ।
ରେଣୁକା ରୋଦନ କଲେ ସୂର୍ଯ୍ୟାସ୍ତ ସମୟେ
ମୃଗଭାର ଘେନି ବିଜେ ତାଙ୍କ ତିନିପୋଏ ।
ହଳିରାମ ରଘୁନାଥ ନୀଳରାମ ତିନି
ପୁତ୍ରଙ୍କୁ କୋଳେ ବସାଇ ବୋଲେ ଯମଦଗ୍ନି ।
ପୁତ୍ରେ ବୋଲୁଛନ୍ତି ମାତା ବସିଲେ ତ ଦୂରେ
ଅଶ୍ରୁଜଳ ବହେ କିପାଁ ରୋଦନ ଉଚ୍ଚରେ ।
ମୁନି ବୋଇଲେ ତୁମ୍ଭର ମାତା ବଡ଼ ନଷ୍ଟୀ
ମୋତେ ତେଜ୍ୟା କରି ସେହି ପରେ ଦେଲା ଦୃଷ୍ଟି ।
ଶୁଣିଣ କୋଳରୁ ଡେଇଁପଡ଼ି ତିନିପୁତ୍ରେ
ଆମ୍ଭ ମାତଙ୍କୁ ଦୂଷଣ କଲା କେ ଜଗତେ ।
ଆଜ୍ଞାଦିଅ ତାତ ଛେଦି ଆସିବୁ ତା ଶିର
ଆମ୍ଭ ମାତା ହରିବାକୁ କ୍ଷମତା କାହାର ।
ଯଦି ଅବା ହୋଇଥିବେ ସେହୁ ହରବ୍ରହ୍ମା
ଅବଶ୍ୟ ମାରିବୁ କେହି ନ ରଖିବେ ସୀମା ।
ଯମଦଗ୍ନି ବୋଲେ ବାବୁ କେହୁ ନ ଲଙ୍ଘିଲେ
ଗନ୍ଧର୍ବ ଦେଖିଣ ତୁମ୍ଭ ମାତା ଲୋଭ କଲେ ।
ତହୁଁ ପୁତ୍ରେ ବୋଇଲେ ଏ ଅସମ୍ଭବ କଥା
କେମନ୍ତେ ହେ ପିତା ତୁମ୍ଭେ ବୋଲାଉଛ ଜ୍ଞାତା ।
ଅକାରଣରେ ମାତାକୁ କୋପ କରୁଅଛୁ
କାହିଁକି ବିଧାତା ତେବେ ଦେଲା ବେନି ଚକ୍ଷୁ ।
ଆମ୍ଭ ବିଚାରେ ମାତାର କିଛି ଦୋଷ ନାହିଁ
ଚକ୍ଷୁଥିଲା ଲୋକ ଅବା କିସ ନ ଦେଖଇ ।
ପୁତ୍ରଙ୍କ ବଚନେ କୋପ କଲେ ଯମଦଗ୍ନି
ବୋଇଲେ ପରପୁରୁଷେ ଜାତ ତୁମ୍ଭେ ତିନି ।
ଆରେ ମୋର ପୁତ୍ର ହୋଇ ଏ ପ୍ରକାରେ କହ
ପଳାଅ ମୋର ପାଖରୁ କ୍ଷଣେହେଁ ନ ରହ ।
ପୁତ୍ରେ ବୋଇଲେ ହେ ପିତା ପାଇ ତିନି ପୁତ୍ରେ
ଆମ୍ଭମାନଙ୍କୁ ଚଳୁଛ କାହିଁର ନିମନ୍ତେ ।
ତୁମ୍ଭେ ପିତା ହୋଇ କଲ ଆମ୍ଭଙ୍କୁ ନିରାଶ
ମାତା ସେହି ଦେଲା ଠାବେ ଗର୍ଭେ ଦଶମାସ ।
ପିତାହୋଇ ପାରିବକି ଦଣ୍ଡେ ଗର୍ଭେ ବହି
ଆପଣେ ଅକାରଣରେ କ୍ରୋଧଅଛ ବହି ।

ଦଶମାସ ସହିଲା ସେ ଗର୍ଭ ଯେତେ ଭାର
ଜନ୍ମ କରି ଆମ୍ଭଙ୍କୁ ସେ ଦେଲା ପୁଣି କ୍ଷୀର ।
ବହୁଦିନ ଯାଏ ପାଳିଥିଲା କଷ୍ଟ ସହି
ପ୍ରକୃତ ବିଚାରେ ପୁତ୍ର ମାତାର ଅଟଇ ।
ଶୁଣି ସମସ୍ୟା ନ ଦେଲେ ଆଉ ଯମଦଗ୍ନି
ମାତା କୋଳରେ ବସିଲେ ଯାଇ ପୁତ୍ର ତିନି ।
ଗଣ୍ଡାଭାର ଘେନି ବିଜେ କଲେ ପର୍ଶୁରାମ
ଯମଦଗ୍ନିଙ୍କ ଚରଣେ କରିଲେ ପ୍ରଣାମ ।
ଦେଖି ପୁଚ୍ଛିଲେ ବିମର୍ଷ କିପାଇଁ ମାତାଏ
ଅଭିମାନେ ବସିଛନ୍ତି ଘେନି ତିନିପୋଏ ।
ଯମଦଗ୍ନି ବୋଲେ ବାବା ମାତା ଯେ ତୁମ୍ଭରି
ଆମ୍ଭେ ତେଜ୍ୟାକଲୁ ସେହି ହୋଇଲା ଦୋଚାରୀ ।
ପର୍ଶୁରାମ ବୋଲେ କାର ଏଡ଼େକ ଭରସା
ଅଗ୍ନିରେ ଝାସ ଦେବାକୁ କରିଲେ ମନିଷା ।
ଯମଦଗ୍ନି ବୋଇଲେ ମୋ ପିତୃ ଶ୍ରାଦ୍ଧକାଳେ
ଚିତ୍ରସେନ ଯାଉଥିଲା ଗଗନ ମଣ୍ଡଳେ ।
ଜଳ ଭିତରେ ଦିଶିଲା ତାର ପ୍ରତିଛାୟା
ତାରଠାରେ ତୋର ମାତା ବଳାଇଲା ହିୟା ।
ଭ୍ରାତା ବୋଇଲେ ଆମ୍ଭଙ୍କୁ ପାଇଲୁ ତୁ କାହିଁ
ମାତା ସମ୍ଭାଳନ୍ତେ ସିନା ଗର୍ଭେ ଠାବଦେଇ ।
ବହୁତ ନିନ୍ଦା କରିଣ କହିଲେ ସେ ମୋତେ
ତିନିହେଁ ବସିଲେ ଯାଇ ମାତା କୋଳାଗ୍ରତେ ।
ପର୍ଶୁରାମ ବୋଇଲେ ସେ ଶିଶୁ ମନ୍ଦ ବାଇ
ଅଜ୍ଞାନୀ ଅଟନ୍ତି ଜ୍ଞାନ ତାହାଙ୍କର ନାହିଁ ।
ଆହେ ତାତ ପାଞ୍ଚମନ ପଚିଶ ପ୍ରକୃତି
ଏ କାୟା ଘରକୁ ବୃଥା ଭ୍ରମେଣ ପକାନ୍ତି ।
ବାଆସ୍ତରି ନାଡ଼ି ପୁଣି ଚୌରାଅଶୀ ହେତୁ
ପବନର ଭେଟାଭେଟି ସଲିଳର ତନ୍ତୁ ।
ଇଅଁଳା ପିଅଁଳା ପୁଣି ମଧ୍ୟେ ସୁଷୁମ୍ନା
ଉଚ୍ଚାଟର ଛନ୍ଦ ଏହି ନବନାଡ଼ୀ ସିନା ।
ଏଥିରୁ ଜାତ ନାଡ଼ୀ ଯେ ବାଆସ୍ତରି କୋଟି
ପୁଣି ଏହା ସାର ନାଡ଼ୀ ଅଟେ ଚୌରାଶୀଟି ।
ରସନା ନିଃଶ୍ୱାସ ଦୁହେଁ ଏକଇ ଯେ ବାଟ
ଶରୀରର ଧାରଣାକୁ ଟେକିଲା ଶ୍ରୀହଟ ।
ଇଅଁଳା ଏକାକେ ଦେଲା ଚନ୍ଦ୍ରମେଳେ କଳା
ଅଗତି ଭାବକୁ ମନମଥ ଯେ ପିଅଁଳା ।
ଅଧୋବଦନେ ଉଜାଣି ବନ ଚାରିଗୋଟି
ଚୌରାଅଶୀ ଆବାହନ ମୁଦ୍ରା ଚଉଷଠି ।
ଧ୍ୟାନେ ଲୟ କରି କାୟେ ରନ୍ଧ୍ରମୂଳ ଚକ୍ର
ଶ୍ରୀହଟ ପବନେ ଉଡ଼େ ଚନ୍ଦ୍ରର ଉଦକ ।

ଜ୍ଞାନ ତପନ ଧାପନ ବାୟୁ ସଦା ବ୍ରହ୍ମା
ଏତେକ ଛନ୍ଦି ଅଛଇ ପଞ୍ଚଭୂତ ଆତ୍ମା ।
ଏତେ ଯୋଗ ଘେନିଯେବେ ବହେ ବିଷ୍ଣୁବାତ
ତେତେବେଳେ ଚଳଇ ସେ ପଞ୍ଚଭୂତ ତତ୍ତ୍ୱ
ସମ୍ପୂର୍ଣ୍ଣେ ଚଳାଇ ଧାତୁ ଆହୁତର ମନ୍ଦା
ଜ୍ଞାନକୋଠା ମଧ୍ୟରେ ସେ ହୋଇଅଛି ଛନ୍ଦା ।
ଏତେକ ଘେନିଣ ଯେବେ ଚଳୁଥାଏ ରତୁ
ତେବେ ମାତାର ଗର୍ଭରେ ରହେ ପଞ୍ଚତତ୍ତ୍ୱ ।
ଶରୀର ମଧ୍ୟରେ କ୍ଷେପି ସେହି ଧାତୁ ଗୋଟି
ମହାବୀର୍ଯ୍ୟ ଟାଳିଲା ସେ ଦେହ ଆରମ୍ଭିଟି ।
ଭୋ ପିତା ତା ସ୍ଥାନ ଗୋଟି ଯେବେ ସୁସ୍ଥେ ଥାଇ
କାର୍ଯ୍ୟକାଳେ ବିହାର ସେ ପୁଣ ହୋଇଯାଇ ।
ମାତାର ଉଦରେ ସେହି ଘର କରେ ସ୍ମରି
ପିତା ନ ଥିଲେ ତ ମାତା କାହୁଁ ଜାତ କରି ।
ଛାର ଏ ପାମରମାନେ ଅଟନ୍ତି ଅଜ୍ଞାନ
ମହାଗୁରୁ ଦୈବତକୁ ଦେଲେ ଅପମାନ ।
ଭୋ ମହାପିଅର ଅଟୁ ତୁହି ମହାବାହୁ
ବାଳୁତ ବୋଲି ତାହାଙ୍କ ଦୋଷ ତାତ ସହୁ ।
ଯମଦଗ୍ନି ବୋଲେ ତୁହି ଅଟୁ ମୋର ପୁତ୍ର
ମୋହର ବୀର୍ଯ୍ୟେ ଜନମ ଅଟୁ ତୁହି ସୁତ ।
ଆସ ଆସ ପୁତ୍ର ତୁହି ଆରେ ପର୍ଶୁରାମ
ପୃଥିବୀ ମଧ୍ୟେ ବନ୍ଦନ ହୋଇବ ତୋ ନାମ ।
ତୁ ଏକା ଜାଣିଲୁ ପୁତ୍ର ମୋହର ପ୍ରକୃତି
ସପତ ଦ୍ୱୀପ ମଧ୍ୟରେ ହୁଅ ଏକ କ୍ଷତ୍ରୀ ।
ବାବୁ ତିନିଭାଇ ମାତା ସମ୍ଭାଳ ତୋହରି
ଏବେ ଯାଉଅଛୁ ଆମ୍ଭେ ନିତ୍ୟକର୍ମ କରି ।
କାମ୍ୟ ଭଦ୍ରା ନଦୀକୂଳେ ଗଲେ ଯମଦଗ୍ନି
ପର୍ଶୁରାମ ଉଠିଲେ ଯେ କରେ ପର୍ଶୁଘେନି ।
ମହାକୋପେ ପ୍ରଜ୍ୱଳିତ ହୋଇ ପର୍ଶୁରାମ
ମାତାକୁ ବୋଇଲେ ସ୍ମର ତୋ ଇଷ୍ଟର ନାମ ।
ରେଣୁକାଦେବୀ ବୋଇଲେ ମୁଁ ନୁହଇ ଦୋଷୀ
ଅକାରଣେ କୋପ ମୋତେ କରିଛନ୍ତି ଋଷି ।
ବିଧାତା ଦେଇଛି ଚକ୍ଷୁ ଚାହିଁଲି ଆକାଶେ
ନାଶ କରିବାକୁ ମୋତେ କହିଗଲେ କି ସେ ।
ରାମ ବୋଇଲେ ତୁ ସ୍ୱାମୀଠାରେ କଲୁ ଦୋଷ
ପରେ ଚିତ୍ତ ଖଟାଇଲୁ କେବଣ ସନ୍ଦେଶ ।
ମାଗୋ ସ୍ୱାମୀଠାରେ ଦ୍ରୋହକରେ ଯେଉଁସ୍ତିରୀ
ଅତି ନିର୍ଲ୍ଲଜ ଆତ୍ମା ଯେ ଅଟଇ ତାହାରି ।
କହୁଁ କହୁଁ ପର୍ଶୁରାମ କୋପେ ପରଚଣ୍ଡ
କୁଠାରଘାତେ ମାତାଙ୍କୁ କଲେ ବେନିଖଣ୍ଡ ।
ଉତ୍ତାନ ହୋଇଣ ତହୁଁ ପଡ଼ିଗଲେ ସତୀ
କଟାମୁଣ୍ଡ ମାତା ହୃଦ ଉପରେ ରଖନ୍ତି ।
ରଘୁକୁ ବୋଇଲେ ସ୍ମର ତୋ ଇଷ୍ଟଦେବତା
ସେ ବୋଇଲେ ଆମ୍ଭେ କିସକଲୁ ଜ୍ୟେଷ୍ଠଭ୍ରାତା
ପର୍ଶୁରାମ ବୋଇଲେ ତୁ ପିଅରକୁ ନିନ୍ଦୁ
ସ୍ତ୍ରୀ ପାମରୀ ଅଲକ୍ଷଣୀ କିପାଁ ତୁହି ବନ୍ଦୁ ।
କାନ୍ଦଇ ଯେ ରଘୁରାମ ତାଙ୍କ ମୁଖ ଚାହିଁ
ବୋଲେ ପର୍ଶୁରାମ ବିନା ମୋର ଇଷ୍ଟ ନାହିଁ ।
ସ୍ୱଭାବରେ ଜ୍ୟେଷ୍ଠଭ୍ରାତା ଅଟଇ ଯେ ପିତା
ତେଣୁକରି ତୁହି ଅଟୁ ମୋ ଇଷ୍ଟ ଦେବତା ।
ମହାରାଗେ ପର୍ଶୁଧର ଉଠେ ଶିରଝୁଣି
ଶିରକାଟି ରଖେ ମାତା ଦକ୍ଷିଣର ପାଣି ।
ତହୁଁ ଆର ଦ୍ୱିଭାଇଙ୍କି ବୋଲେ କୋପଚିତ୍ତେ
ସୁମର ବାବୁରେ ତୁମ୍ଭ ଇଷ୍ଟ ଦଇବତେ ।
ନୀଳରାମ ହଳିରାମ କହିଲେ ଉତ୍ତର
ଆମ୍ଭର ଇଷ୍ଟଦେବତା ସ୍ୱାମୀ ପର୍ଶୁଧର ।
ବିକଳରେ ଦୁଇଭାଇ କରିଲେ ଦଇନୀ
ପର୍ଶୁରାମ ସେ ଦୁହିଁଙ୍କି ପକାଇଲେ ହାଣି ।
ଦୁଇଶିରକୁ ଥୋଇଲେ ମାତା ଦୁଇ କୁକ୍ଷି
ରକ୍ତ ଚିତା ଘେନି ତହୁଁ ହୋଇଲେ ସେ ସୁଖୀ ।
କୁଠାର ହୋଇଅଛି ଯେ ରକ୍ତେ ଜରଜର
ପିତା ଆସନ୍ତେ ତାହାଙ୍କୁ କଲେ ନମସ୍କାର ।
ଯମଦଗ୍ନି ବୋଇଲେ ତୋ ଲଲାଟେ ଶୋଣିତ
କୁଠାର ରକ୍ତ ରଞ୍ଜିତ କିପାଁ କୋପଚିତ୍ତ ।
ଶୁଣିକରି ପର୍ଶୁଧର ଯୋଡ଼ି ବେନି ପାଣି
ବୋଇଲେ ତାତ ତୋ ବୈରୀ ପକାଇଲି ହାଣି ।
ଯମଦଗ୍ନି ବିଷାଦିତ ହେଲେ ଶୁଣିକରି
ବୋଇଲେ କହିଥିଲି କି ତାଙ୍କୁ ପକା ମାରି ।
ବାବୁରେ ରେଣୁକା ତୋର ମାତାକୁ ମାଇଲୁ
ଅଦୋଷୀ ମାଇଲୁ ଦେଖ କିପାଁ ଏହା କଲୁ ।
ଆଗେ ଆଗେ ପର୍ଶୁରାମ ପଛେ ଯାନ୍ତି ମୁନି
ନେଇକରି ଦେଖାଇଲେ ମାତା ଭ୍ରାତା ତିନି ।
ସେମାନଙ୍କୁ ଦେଖି ମୁନି ହୋଇଲେ ବିକଳ
ବୋଇଲେ ଏ କଥା କିପାଁ କଲୁ ଆରେ ବାଳ ।
ସନ୍ଧ୍ୟା କରିବାକୁ ଗଲି ସମର୍ପିଣ ତୋତେ
ମାତା ଭ୍ରାତାଙ୍କୁ କାଟିଲୁ ମୋହର ଅଜ୍ଞାତେ ।
ଶୁଣି ପର୍ଶୁରାମ ବୋଲେ ତୋହର ଭାରିଯା
ତୋ ପରା ସ୍ୱାମୀକି ମନୁ କରିଲା ସେ ତେଜ୍ୟା
ତୋର ପୁତ୍ର ହୋଇ ଯେବେ ତୋ ମତ ବାହାର
ଆଉ କି ସୋଦର ମୋର ସେ ଦୁଷ୍ଟ ପାମର ।

ଯମଦଗ୍ନି ବୋଇଲେ ତୋ ଭ୍ରାତାଏ ଅଦୋଷୀ
ବିନାଦୋଷେ ସେମାନଙ୍କୁ ପକାଇଲୁ ନାଶି ।
ପର୍ଶୁରାମ ବୋଲେ ତାତ ତୁହି ତ କହିଲୁ
ମାତାକୁ ପରପୁରୁଷେ ଅପବାଦ ଦେଲୁ
ତୋହର କଥାରୁ ଯେବେ ହୋଇଲେ ବାହାର
ଆଉ କିପାଇଁ ବଞ୍ଚିବେ ପାମରୀ ପାମର ।
ଭାରିଯା ହୋଇଣ ଯେବେ ଦୋଚାରୀ ହୋଇବ
ପୁତ୍ର ହୋଇଣ ଆଦେଶ ଯେବେ ନ ପାଳିବ ।
କ୍ଷତ୍ରିୟ ହୋଇଣ ଯେବେ ଦୈତ୍ୟ ଅନୁରାଗୀ
ପଣ୍ଡିତେ ଏହାଙ୍କୁ ତେଜ୍ୟା କରିଦ୍ୟନ୍ତି ବେଗି ।
ଯମଦଗ୍ନି ବୋଲେ ଏହା ଜାଣରେ କୁମର
ସନ୍ତୁଷ୍ଟ ହେଲି ଯା ଇଚ୍ଛା ମାଗି ଘେନ ବର ।
ପର୍ଶୁରାମ ବୋଲେ ତାତ ଦୟା ଯେବେ ମୋତେ
ଜନନୀ ଜୀଅନ୍ତୁ ତିନି ଭ୍ରାତାଙ୍କ ସହିତେ ।
ମୁନି ଆଶ୍ଚର୍ଯ୍ୟ ହୋଇଲେ ଏହି କଥା ଶୁଣି
କେ ତୋତେ ମାର ବୋଇଲା କ୍ୟାଇଁ ଲୋଡୁ ପୁଣି
ପର୍ଶୁରାମ ବୋଲେ ଯେବେ ହେଲେ ଦୋଷକାରୀ
ତବାଜ୍ଞା ପାଳି ତାହାଙ୍କୁ ପକାଇଲି ମାରି ।
ନିର୍ଦ୍ଦୟ ନିରନୁରୋଧୀ ମୁହିଁ ଅଟେ ଜାଣ
ପିତୃ ମାତୃ ଭକ୍ତି ମୋର ଅଟଇ ପ୍ରମାଣ ।
ପିତୃ ଭକ୍ତିରେ ମାଇଲି ମୁହିଁ ଚାରିଜଣ
ମାତୃ ଭକ୍ତିରେ ଜୀଆଇଁ ଦେବାକୁ ଆପଣ ।
ଯମଦଗ୍ନି ବୋଇଲେ ଯେ ଶିରଚ୍ଛେଦ ହେଲେ
କେମନ୍ତେ ବର୍ତ୍ତିବେ ଆଉ ସମ୍ପୂର୍ଣ୍ଣେ ମରିଲେ ।
ତୁହି ଜୀଆଇଣ ପାରୁ ପର୍ଶୁରାମ ବୋଲି
ତୋତେ ଶକ୍ୟ ନୋହିଲେ କି ଏମନ୍ତ ମାଗିଲି ।
ଯମଦଗ୍ନି ବୋଲେ ସାଧୁ ମହିମା ତୋହରି
ମୋହର ନିମନ୍ତେ ମାତା ଭ୍ରାତା ଅଛୁ ମାରି ।
ଯୋଡ଼ରେ ନନ୍ଦନ ଶିର ଯେ ଯାହା କନ୍ଧରେ
ମାତା ଭ୍ରାତାମାନେ ତୋର ବର୍ତ୍ତନ୍ତୁ ବେଗରେ ।
ପିତା ବାକ୍ୟେ ପର୍ଶୁରାମ ହୋଇ ଉଦବେଗୀ
ଯେ ଯାହା ଶିର ଯୋଡ଼ିଲେ ସେ ପରମ ଯୋଗୀ ।
ଯୁକତରେ ହୋଇଅଛି ଅନ୍ଧାରର ରାତି
ବାରି ନ ପାରିଲେ ସେହୁ କେ କାହାର ମୂର୍ତ୍ତି ।
ରଘୁରାମ ଶିର ଯୋଖେ ମାତା କନ୍ଧେ ନେଇ
ମାତା ଶିର ରଘୁ କନ୍ଧେ ଦେଲେକ ଲଗାଇ ।
ଏହି ରୂପରେ ଯୋଖିଲେ ଶିର ପର୍ଶୁଧ୍ୱଜ
ମୃତ୍ୟୁ ସଞ୍ଜୀବନୀ ମନ୍ତ୍ର ପଢ଼ି ମୁନିରାଜ ।
ଜୀବନ୍ୟାସିଣ ଚାହିଁଲେ କରି ସୁଧାବୃଷ୍ଟି
ପର୍ଶୁରାମ ଜଣାଇଲେ ଯୋଡ଼ିକରଦୋଟି ।

ସ୍ୱାମୀ ତୋହର ବଚନ ଏ ସର୍ବ ଉଠିବେ
ପର୍ଶୁରାମ ଏହା କଲା କେହି ନ ଜାଣିବେ ।
ଜାଣିଲେ ସେମାନେ ମୋତେ ହେବେ ରାଗାନ୍ୱିତ
ବଞ୍ଚନ୍ତୁ ଚାରୋଟି ପିଣ୍ଡ ଆଜ୍ଞାଦିଅ ତାତ ।
କମଣ୍ଡଳୁ ପାଣି ସିଞ୍ଚି ପକାନ୍ତେ ସୁଦୃଷ୍ଟି
ତିନି ପୁତ୍ରଙ୍କ ସହିତ ମାତା ବେଗେ ଉଠି ।
ତକ୍ଷଣେ ହୋଇଲେ ଯମଦଗ୍ନି ଅନ୍ତର୍ଦ୍ଧାନ
ପର୍ଶୁଧରି ବସିଛନ୍ତି ପର୍ଶୁ ସନ୍ନିଧାନ ।
ମହାଘୋର ଅନ୍ଧାର ଯେ ହୋଇଅଛି ରାତି
ପର୍ଶୁରାମ ମୁଖ ଚାହିଁ ରେଣୁକା କହନ୍ତି ।
ରେ ପୁତ୍ର ଶ୍ମଶାନେ କିପାଁ ବସିଅଛୁ ଏକା
ତୋହର ଚିତ୍ତ ମଧ୍ୟରେ ଟିକେ ନାହିଁ ଦକା ।
ପର୍ଶୁରାମ ବୋଲେ ମାଗୋ ଶିଶୁପୁତ୍ର ଘେନି
ଶ୍ମଶାନରେ ନିଦ୍ରାଗଲୁ ଏ ଘୋର ରଜନୀ ।
ନିଦ୍ରା ନ ଜାଣଇ ମାଗୋ ଘର କି ମଶାଣି
କ୍ଷୁଧା ନ ଜାଣଇ ମାଗୋ ଅଲଣା କି ଲୁଣି ।
ମୂର୍ଖ ନ ଜାଣଇ ମାଗୋ ଶାସ୍ତ୍ର ବାଟ କଥା
ଅସୁରେ ଜାଣିବେ କାହୁଁ ପଣ୍ଡିତ ବ୍ୟବସ୍ଥା ।
ପରଧନ ଚୋରିକରି ଜାଣେ ଏକା ଚୋର
ମାନ ଗୌରବ ଜାଣିବ କାହୁଁ ସେ ପାମର ।
ଦରିଦ୍ର ଦ୍ୱିଜ ନ ଜାଣେ ଉଚ୍ଚ ନୀଚ ଜାତି
ଅମାର୍ଗରେ ଥାଇ ପ୍ରତିଗ୍ରହ ସେ କରନ୍ତି ।
ସ୍ଥାନାସ୍ଥାନ ନ ଜାଣି ତୁ ହେଲୁ ନିଦ୍ରାଭୋଗୀ
ପର୍ଶୁପାଶ ଘେନି ମୁହିଁ ବସିଅଛି ଜଗି ।
ରେଣୁକା ବୋଇଲେ ପୁତ୍ର ମୋର ଅଟୁ ସାଧୁ
ଅସ୍ତ୍ରାଘାତେ ତୋର ଶିର ନ ଛିଡୁ ତୋ କନ୍ଧୁ ।
ବାଳୁତ ପୁତ୍ର ହୋଇଣ ମୋତେ ଏଥେ ବ୍ୟଥା
ମୋହର ଆୟୁଷ ଘେନି ସର୍ବଥା ବର୍ତ୍ତିଥା ।
ଭାଇଏ ବୋଇଲେ ସ୍ୱାମୀ ଏଡ଼େ ହିତକାରୀ
ସବୁରି ଆୟୁଷ ଘେନି ବର୍ତ୍ତ କଳ୍ପ ଚାରି ।
ଜୟ ତୁହି ପର୍ଶୁରାମ ଯମଦଗ୍ନି ବାଳ
ମାତାଙ୍କ ବଚନେ ତୋର ତେଜ ଅନର୍ଗଳ ।
ସାଧବ ପୁରୁଷ ତୁହି ଅଟୁ ଭାଗ୍ୟବନ୍ତ
ଶୟଳ ଜନ ତାରନ୍ତା ସ୍ୱାମୀ ତେଜୋବନ୍ତ ।
ପିତୃପାଳି ମାତୃଭକ୍ତି ଭାଇ ପ୍ରତିପାଳି
ପର୍ଶୁଧ୍ୱଜ କରେ ଶୋଭେ ଜୟ ବନମାଳୀ ।
ମହାଯୋଗୀ ପୁରୁଷ ତୁ ସଦା ଯୋଗଚିନ୍ତା
ସଦା ହୃଦେ ଲୟ ମୋର ଦୁଃଖ ଉଦ୍ଧାରନ୍ତା ।
ତୋର ପାଦ ପଦ୍ମ ସଦା ରହୁ ମୋର ହୃଦେ
ଲଭିବି ପରମଗତି ତୋହର ପ୍ରସାଦେ ।

ଶୟଳ ତାରଣ ନାଥ ଧନୁ ଦୀକ୍ଷାଗୁରୁ
ତୋତେ ଲୟକରି ମୋର ସୁବୁଦ୍ଧି ତା ସ୍ଫୁରୁ ।
ଅଭୟ ଅବିକାର ତୁ ପୁରୁଷରେ ସଚ୍ଚା
ମନମଥ ପୁରୁଷ ତୁ କାଳାନଳ ବାଞ୍ଛା ।
ସାଧକରେ ଜିଣିବି ମୁଁ କାଳ କାମ ନିଦ୍ରା
ଅଣଗୁରୁରେ ସାଧିଲୁ ପାଞ୍ଚକୋଟି ବିଦ୍ୟା ।
ଅନୁଭବରେ କାମ୍ୟକ ପର୍ବତକୁ ବନ୍ଦି
କାମିନୀ କାମାକ୍ଷୀ କାମସେଣା କଲୁ ନଦୀ ।
ମାତାମୁଣ୍ଡ କାଟି ଭାଇ ଶିର ବଦଳାଇ
କାଳ ବଞ୍ଚିଲେ ପ୍ରପଞ୍ଚ ରୂପକୁ ସେ ବହି ।
ଷୋହଡ଼ ସୁନ୍ଦର ନାଥ ଅଟ ଜଗଜ୍ଜେଠି
ସର୍ବଦା ଭାବଇ ପର୍ଶୁରାମ ନାମଗୋଟି ।
ଅଭାବିତ ବିଦ୍ୟା ତୋର ନିରାକାର ଯୋଗୀ
ଆଦିଅନ୍ତ ନାଥ ତୁହି ଅଟୁ କଷ୍ଟଭୋଗୀ ।
ତୋର ଚରଣରେ ମୁହିଁ ସଦା ପରଣାମି
ଏ ମାୟା ମୋହ ସଂସାରୁ ଉଦ୍ଧରିବ ସ୍ୱାମୀ ।
ଯେତେକାଳ ବଞ୍ଚିବଇଁ ସ୍ୱାମୀ ଏ ଜଗତେ
ଶୂଦ୍ରମୁନି ଶାରଳା ଯେ ସେବୁଥିବ ନିତ୍ୟେ ।



## ଯୁଧିଷ୍ଠିରଙ୍କର ନାନା ସ୍ଥାନ ଭ୍ରମଣ ଓ ରାମଗୟା ତୀର୍ଥର ବିବରଣ

ପଚାରନ୍ତି ବୈବସ୍ୱତ ମନୁ ଦଣ୍ଡଧର
ଏଥୁଅନ୍ତେ କିସ କଲେ ଧର୍ମ ନୃପବର ।
କହ ହେ ଅଗସ୍ତି ମୁନି ତହିଁର ବାରତା
ବଳଇ ମାନସ ମୋର ଶୁଣିବି ସେ କଥା ।
ଶୁଣି ବୈବସ୍ୱତ ମନୁ ଅଗସ୍ତି ବଦନ୍ତି
କାମ୍ୟକ ଗିରିରେ ତେଣୁ କଲେ ଅବସ୍ଥିତି ।
ପୁଣ୍ୟସ୍ଥାନ ଦେଖିକରି ପଣ୍ଡୁର ସନ୍ତାନେ
ବର୍ଷାଋତୁ କଟାଇଲେ କାମ୍ୟକ ଅରଣ୍ୟେ ।
ବିଛାମାସ ଶୁକ୍ଳପକ୍ଷ ଦ୍ୱିତୀୟାର ତିଥି
ଚନ୍ଦ୍ରବାର ଶ୍ରବଣା ଯେ ନକ୍ଷତ୍ର ଯୁକତି ।
ଶ୍ରବଣା ଅମୃତ ଯୋଗ ଉପସ୍ଥିତି ବେଳେ
କାମ୍ୟକ ବନୁ ବାହାର ଶୁଭ ଅନୁକୂଳେ ।
ଚଉଷଠି ଯୋଜନ ଯେ ବନ ଆୟତନ
ତହିଁକି ପାଣ୍ଡବମାନେ କରନ୍ତି ଗମନ ।
ଅନନ୍ତଭଦ୍ରା ବୋଲିଣ ନଦୀ ଏକଗୋଟି
ବନ ଗହଳ ମଧ୍ୟରେ ସେହି ନଦୀ ଭେଟି ।
ସେ ମହା ଅରଣ୍ୟ ଘୋର ଅଟେ ବନଲତା
ହରିଣ ସମ୍ବର ଗଜ ନାହିଁ ତା ଇୟତା ।
ଗଗନକୁ ଭେଦିଅଛି ବୃକ୍ଷଙ୍କର ଶାଖା
ବୃକ୍ଷ ଗହଳରେ ସୂର୍ଯ୍ୟ ନ ଦିଅନ୍ତି ଦେଖା ।
ନିର୍ଝର ଅଟଇ ପୁଣି ସେ ଅଗମ୍ୟ ବନେ
ତହିଁ ବୁଲନ୍ତି ପାଣ୍ଡବେ ଅତି ତୋଷ ମନେ ।
କନ୍ଦମୂଳ କୋମଳାଦି ପତ୍ରମାନ ପାଇ
ବହୁ ହରଷେ ରହିଲେ ବନଚାରୀ ହୋଇ ।
ଯୁଧିଷ୍ଠିଦେବ ବୋଇଲେ ରହିବା ଏ ବନେ
ହିମକାଳ କଟାଇବା ରହି ଏହି ସ୍ଥାନେ ।
ବୃକ୍ଷର ଗହଳେ ଏଥି ନ ଲାଗଇ ଶୀତ
କନ୍ଦମୂଳ ଦ୍ରାକ୍ଷା ଏଥି ମିଳେ ଅପ୍ରମିତ ।
ଦ୍ରୁତଗାମୀ ଅଟଇ ଯେ ସେହି ନଦୀଗୋଟି
ନିତ୍ୟକର୍ମାନ୍ତେ ବାଲୁଙ୍କାଲିଙ୍ଗ ଯାଇ ଭେଟି ।
ବୁଲନ୍ତି ପାଣ୍ଡବମାନେ ମାରନ୍ତି ମୃଗାରି
ପରମ ସାନନ୍ଦେ ଥାନ୍ତି ବନରେ ବିହରି ।
ହେମକାଳ ଶେଷ ହେଲା ବସନ୍ତର ଋତୁ
ରହିଲେ ପାଣ୍ଡବମାନେ ଯେଝା ବ୍ରତ ହେତୁ ।
କଣୟ ନଦୀ ତୀରରେ ଏକଇ ପର୍ବତ
ତହିଁ ଯାଇଣ ରହିଲେ ଗ୍ରୀଷ୍ମଋତୁ ଅନ୍ତ ।
ରହିଲେ ପାଣ୍ଡବମାନେ କଣୟ ପର୍ବତେ
ସେଠାରେ ରହିଲେ ଗ୍ରୀଷ୍ମ ଶେଷ ପରିଯନ୍ତେ ।
ଗଣ୍ଡୁକୀ ନଦୀ ବହଇ ପର୍ବତ ତଳରେ
ସ୍ନାନ ତର୍ପଣ କରନ୍ତି ପଣ୍ଡୁଙ୍କ କ୍ରମରେ ।
ସେଠାରେ ବଞ୍ଚିଲେ ପୁଣି ବର୍ଷା ଚାରିମାସ
ଆଶ୍ୱିନ ଅନ୍ତେ କାର୍ତ୍ତିକ ହୋଇଲା ପ୍ରବେଶ ।
ବିଜୟ କଲେ ପାଣ୍ଡବ ପ୍ରାଗବଟ ତୀର୍ଥେ
ବହେ ସ୍ୱର୍ଣ୍ଣଭଦ୍ରା ନଦୀ ଅତ୍ୟନ୍ତ ପବିତ୍ରେ ।
କାରଣ ନିମନ୍ତେ ତହିଁ ପିତୃକାର୍ଯ୍ୟ କରି
ସେଠାରୁ ରହିଲେ ଯାଇ ସ୍ୱର୍ଣ୍ଣଭଦ୍ରା ଗିରି ।
ବଞ୍ଚନ୍ତି ସେ ପଞ୍ଚରାତ୍ର କାମକଳା ନିଦ୍ରା
ଏମନ୍ତ ସୁଖେ ଭ୍ରମନ୍ତି ସେହି ସ୍ୱର୍ଣ୍ଣଭଦ୍ରା ।
ତୁଳମାସ କୃଷ୍ଣପକ୍ଷ ପୁଣି ଭୃଗୁବାର
ଅନୁରାଧାନକ୍ଷତ୍ର ଯେ ଅଟେ ସେ ଦିନର ।
ତୈତିଳନାମେ କରଣ ଆୟୁଷ୍ମାନ୍ ଯୋଗ
ତୁଳ ସଂକ୍ରାନ୍ତିକି ପଞ୍ଚବିଂଶ ଦିନ ଭୋଗ ।
ସେ ନଦୀ ପୁଳକୀତୀରେ ପିଣ୍ଡ ଯାଇ ଦେଲେ
ସୋମବଂଶ ପିତୃଲୋକ ଆସି ରୁଣ୍ଡ ହେଲେ ।
ବାଲିପିଣ୍ଡକୁ ଦିଅନ୍ତେ ଭକ୍ଷି ପିତୃଲୋକେ
ଅମୋକ୍ଷ ମୋକ୍ଷ ହୋଇଣ ଚାଲିଗଲେ ଥୋକେ ।
ଆପଣେ ଯେ ବାଲିପିଣ୍ଡ ଦିଅନ୍ତି ଯୁଧିଷ୍ଠି
ପ୍ରତ୍ୟକ୍ଷରେ ପଣ୍ଡୁରାଜା ପାତେ କରଗୋଟି ।

ଯୁଧିଷ୍ଠି ପୁଛିଲେ ତାଙ୍କୁ ଯୋଡ଼ି କରପତ୍ର
ବୋଇଲେ ଭୋଦେବ ତୁମ୍ଭେ କେଉଁ ଦଇବତ ।
ଶୂନ୍ୟରେ ଥାଇ ବୋଲନ୍ତି ପଣ୍ଡୁ ନରନାଥ
ମୁଁ ଅଟେ ପଣ୍ଡୁରାଜନ ତୁମ୍ଭ ନିଜ ତାତ ।
ଅଗ୍ନିକା ଋଷିଙ୍କୁ ମୁହିଁ ବିନ୍ଧିଲି ନାରାଜ
ସେହି ଦୋଷେ ଦଣ୍ଡଦେଲା ମୋତେ ଜନ୍ତୁରାଜ
ଏକଶତ ପଞ୍ଚସ୍ତରି ବର୍ଷ ପରିଯନ୍ତେ
ଆସ୍ଥାନେ ବସି ନ ଦିଏ ଯମରାଜା ମୋତେ ।
ରାଜସୂୟ ଯାଗ ତୁହି ଆରମ୍ଭୁ ଯେ କାଳେ
ମୋ ପାତକ ଖଣ୍ଡିଗଲା ଯମରାଜା ଆଳେ ।
ତହୁଁ ଅନେକ ବିନୟୀ ହେଲା ଯମରାଜା
ଇନ୍ଦ୍ର ସମାନରେ ମୋତେ କରାଇଲା ପୂଜା ।
ପାଇଲି ପରମଗତି ତୋହର ଯତନେ
ମହାପାପ ନାଶଗଲା ତୋର ପୁତ୍ରପଣେ ।
ତୁହି ଅଟୁରେ ସୁପୁତ୍ର ମୋର କୁଳଭାଗ୍ୟ
ତୋର ପାଇଁକି ପାଇଲି ମୁହିଁ ସ୍ୱର୍ଗ ଭୋଗ ।
ଏ ମହାଶ୍ରାଦ୍ଧ ପାଇବି ହୋଇ ତୋଷମନ
ପିଣ୍ଡ ଦିଅ ମୋତେ ବାବୁ କରିବି ଭୋଜନ ।
ଶୁଣି ଯୁଧିଷ୍ଠିର ତହୁଁ କରିଲେ ଅର୍ପଣ
ପଣ୍ଡୁ ରାଜା ବାଲିପିଣ୍ଡ କରିଲେ ଗ୍ରହଣ ।
ପଣ୍ଡୁ ହସ୍ତେ ପିଣ୍ଡ ଦେଇ ହୋଇଣ ଆଶ୍ଚର୍ଯ୍ୟ
ଧୌମ୍ୟଙ୍କୁ ପୁଛିଲେ ତହୁଁ ଦେବ ଧର୍ମରାଜ ।
ଶୁଣ ହେ ଧୌମ୍ୟ ପୁରୋଧା ମୋହର ବଚନ
କହିବାକୁ ହେଉଅଛି ସଙ୍କୁଚିତ ମନ ।
ବାଲିପିଣ୍ଡ ଦ୍ୟନ୍ତେ ମୁହିଁ ପଣ୍ଡୁ ନୃପବର
ଆସି ମୋ ହସ୍ତରୁ ଘେନି କରିଲେ ଆହାର ।
ଧନ୍ୟ ପୁଣ୍ୟସ୍ଥାନ ଏହି କେ କଲା ସୃଜନ
କହ ମୋତେ ସେହି କଥା କରିଣ ଯତନ ।
ଯୁଧିଷ୍ଠିଙ୍କ ପ୍ରଶ୍ନ ଶୁଣି ଧୌମ୍ୟ ପୁରୋହିତ
ବୁଝାଇ କହନ୍ତି ତାଙ୍କୁ ପୁରାଣ ଉକତ ।
ପବିତ୍ର ସ୍ଥାନ ଏ ରଘୁନାଥଙ୍କ ସଞ୍ଚିତ
କହଇ ତୋର ଆଗରେ ଏଥିର ବୃତ୍ତାନ୍ତ ।
ବାବୁ ତ୍ରେତୟା ଯୁଗରେ ରାମଚନ୍ଦ୍ର ଆସି
ମକର ମାସେ ପ୍ରବେଶ ଦଶରଥ ଶିଷି ।
ଶ୍ରୀରାମଚନ୍ଦ୍ର ଲକ୍ଷ୍ମଣ ଆଉ ସୀତାଦେଈ
ତିନିଜଣ ବିଶ୍ରାମିଲେ ଆସି ଏହିଠାଇଁ ।
ପିତୃକାର୍ଯ୍ୟ ପାଇଁ ରାମ ମନ ଉଦବେଗ
ଗଣ୍ଡାଜୀବ କେସନକ ମାରିବା ସଂଯୋଗ ।
ସୀତାର ପାରୁଶେ ଜଣେ କେହିଥିବ ବସି
ଏକା ଛାଡ଼ିଗଲେ ବନେ ଡ଼ରିବ ସୁକେଶୀ ।
ବ୍ରହ୍ମାନନ୍ଦନ ଫଲଗୁ ନଦୀକୁ ସେ ଚାହିଁ
ଆମ୍ଭର ଆସିବା ଯାଏ ସୀତା ଜଗ ତୁହି ।
ଏହା କହି ସୀତା ଛାଡ଼ିଗଲେ ବେନି ଭାଇ
ପିତୃକାର୍ଯ୍ୟ କରିବାକୁ ଗଣ୍ଡାଜୀବ ପାଇଁ ।
ମକରର ଅମାବାସ୍ୟା ପୁଣ ଅର୍କବାର
ଶ୍ରବଣା ନକ୍ଷତ୍ର ଭୋଗ ହେବ ସେ ଦିନର ।
କୌଳବ ନାମେ କରଣ ବ୍ୟତୀପାତ ଯୋଗ
ଅର୍ଦ୍ଧେକ ସୂର୍ଯ୍ୟ ଉଦୟ ଥିଲା ପୂର୍ବଭାଗ ।
ପଡ଼ିଲା ଅର୍ଦ୍ଧ ଉଦୟ ପିଣ୍ଡ ସେହି ଦିନ
ଧର୍ମ ଉଦୟା ଅଟଇ ନାମ ବିଦ୍ୟମାନ ।
ସମସ୍ତ ଜନେ ପିଣ୍ଡକୁ ଦିଅନ୍ତି ଯେ ତହିଁ
ରାମଙ୍କୁ ନ ଦେଖି ସୀତା ଦେବୀ ବିଚାରଇ ।
ସ୍ୱାମୀ ମୋର ଯେବେ ଏହି ସମୟେ ଥାଆନ୍ତେ
ଏହି ମହାସ୍ଥାନେ ପିଣ୍ଡଦାନ ସେ କରନ୍ତେ ।
ଏତେ ବିଚାରି ଘେନିଲେ ବାଲିରୁ ମୁଠାଏ
ସାତଭାଗରେ ରଖିଲେ ଦେବୀ ଠାୟେ ଠାୟେ
କରେ ଧରି ଦେଉଛନ୍ତି ପିଣ୍ଡ ଏହିମତେ
ମନେ ବିଚାରନ୍ତି ସ୍ୱାମୀ ଏପରି ଦିଅନ୍ତେ ।
ଗୋତ୍ର ସୁମରିଣ ଯହୁଁ ଦେଲେ ବାଲିପିଣ୍ଡ
ଦଶରଥ ପାତିଦେଲେ ଆସି କରଦଣ୍ଡ ।
କାୟା ନ ଦିଶଇ କିଛି ଦିଶେ କରସ୍ଥଳ
ଶୂନ୍ୟେ ରହିଅଛି ଦଶରଥ ମହୀପାଳ ।
ତାହା ଦେଖିଣ ଜାନକୀ ହୋଇଲେ ତଟସ୍ଥ
କେବଣ ପୁରୁଷ ଆସି ପାତୁଅଛି ହସ୍ତ ।
ଦିଅ ବୋଲି ଦଶରଥ କରିଲେ ଉକତ
ତୁମ୍ଭର ପିଣ୍ଡରେ ମୁହିଁ ହୋଇବି ମୁକତ ।
ଯେତେବେଳେ ତୁମ୍ଭେମାନେ ଅଇଲ ଏଣିକି
ମୁହିଁ ପ୍ରାଣତ୍ୟାଗ କଲି ତୁମ୍ଭଙ୍କୁ ନ ଦେଖି ।
ଭ୍ରତ ଶତ୍ରୁଘନ ଥିଲେ ଯାଇ ଅଜାଘରେ
ଶ୍ରୀରାମ ଲକ୍ଷ୍ମଣ ତୁମ୍ଭେ ଅଇଲ ବନରେ ।
ମୋ ମୃତ ପିଣ୍ଡ କୈକେୟୀ ତୈଳ ଦ୍ରୋଣେ ଥୋଇ
ପାଞ୍ଚମାସ ପାଞ୍ଚଦିନ ମୋର ଗ୍ରାସ ନାହିଁ ।
ତୁ ମୋ ବଂଶ ଉଦ୍ଧାରିଣୀ ଅଟୁ କୁଳବଧୂ
ଯଜ୍ଞ କୁଣ୍ଡରୁ ଉତ୍ପତ୍ତି ତୁ ମୈଥିଳୀ ସାଧୁ ।
ବ୍ୟାକୁଳ ହୋଇ ମାଗିଲେ ଯହୁଁ ଦଶରଥ
ଶୁଣି ସୀତା ବାଲିମୁଠା ଦେଲେ ତାଙ୍କ ହସ୍ତ ।
ସୀତା ଆନନ୍ଦରେ ପୁଣି ଦେଲେ ତିନିମୁଠି
ଏକାବନ ପୁରୁଷ ଯେ ଭୁଞ୍ଜିଲେକ ବାଣ୍ଟି ।
ବାଲିପିଣ୍ଡକୁ ଭୁଞ୍ଜିଣ ହେଲେ ସ୍ୱର୍ଗଗତି
ଫଲଗୁ ନଦୀକି ସୀତା ଡାକିଣ କହନ୍ତି ।

ମୁହିଁ ବାଲିପିଣ୍ଡ ଦେଲି ଦଶରଥ ହସ୍ତେ
ଶ୍ରୀରାମଙ୍କୁ ତୁ କହିବୁ ତୋତେ ବା ପୁଚ୍ଛନ୍ତେ ।
ସେ ବୋଇଲା ଯେବେ କି କହିବି ଶ୍ରୀରାମଙ୍କୁ
ବେଳେକ ସଙ୍ଗିନୀ ହୋଇ ତୋଷ ତୁ ଆମ୍ଭଙ୍କୁ ।
ତାହା ଶୁଣିଣ ବିରସ ହେଲେ ଦେବୀ ସୀତେ
ବୋଇଲେ ସ୍ୱାମୀ ସମର୍ପି ଦେଇଗଲେ ତୋତେ
ବ୍ରହ୍ମାଙ୍କର ପୁତ୍ର ହୋଇ ଏଡ଼େ ତୁ ଅଭାବୀ
ନାଶଯିବାକୁ ହୋଇଛୁ ଏବେ ମତ୍ତଗର୍ବୀ ।
ଯହୁଁ ସତୀ ମହାଦେବୀ ବୋଇଲେ ଏ ବାଣୀ
ଲଜ୍ଜା ପାଇଣ ଫଲଗୁ ବାହୁଡ଼ିଲା ପୁଣି ।
ଯହୁଁ ସୀତୟା କହିଲେ ତାକୁ ଅତିରାଗେ
ହିଂସାରେ କହେ ଫଲଗୁ ଗୟା ଦ୍ୱିଜ ଆଗେ ।
ଶୁଣ ଦ୍ୱିଜେ ଏହି ନାରୀ ପିଣ୍ଡ ଦେଲା ତୀର୍ଥେ
ଦକ୍ଷିଣା ଘେନ ଏହାଠୁଁ ଧନ ଦେବ କେତେ ।
ଗୟା ବ୍ରାହ୍ମଣ ଫଲଗୁ ବଚନକୁ ଶୁଣି
ବୋଇଲେ ଦକ୍ଷିଣା ତେବେ ଦିଅ ମହାମ୍ରାଣୀ
ସୀତୟା ବୋଇଲେ ଆମ୍ଭେମାନେ ବୁଲୁ ଦୁଃଖୀ
କିସ ବା ଦେବୁ ଦକ୍ଷିଣା ମାଗ କିସ ଦେଖି ।
ସ୍ୱାମୀର ଆସିବା ଯାଏ ତୁମ୍ଭେ ଥାଅ ଦଣ୍ଡେ
ବ୍ରାହ୍ମଣ ବୋଇଲେ ତୁହି ଦେଲୁ ବାଲିପିଣ୍ଡେ ।
ପିନ୍ଧିଲା ଲୁଗା ତୋର ଗୋ ଦିଅସି ପାଲଟି
ଆନହିଁ ବସ୍ତ୍ର ନ ଥିଲେ ଦିଅ ଅଧେ କାଟି ।
ଫଲଗୁ ବୋଲେ ନିସତ କିପାଁ ତୁହି ହେଉ
ପିଣ୍ଡ ଦେଇଣ ଦକ୍ଷିଣା କିପାଁ ତୁ ନ ଦେଉ ।
ସହି ନ ପାରିଲେ ଦେବୀ କଟୁକଥା ଗୋଟି
ସେହିକ୍ଷଣି ସେ ଶାଢ଼ୀକୁ ଦେଲେ ସେ ପାଲଟି ।
ପଦ୍ମ ପତ୍ରରୁ ବିଡ଼ିଏ ପରିଧାନ କଲେ
ଏକାଳେ ରାମ ଲକ୍ଷ୍ମଣ ପ୍ରବେଶ ହୋଇଲେ ।
ସୀତାଙ୍କର ଏ ଅବସ୍ଥା ଦେଖି ରଘୁନାଥ
ପଚାରିଲେ ଶାଢ଼ୀ କିସ କଲୁ ଗୋ ସଙ୍ଗାତ ।
ସୀତୟା ବୋଇଲେ ମୁହିଁ ସହି ନ ପାରିଲି
ଦଶରଥ ମାଗନ୍ତେ ମୁଁ ବାଲିପିଣ୍ଡ ଦେଲି ।
ରାମ ବୋଇଲେ ରାଜ୍ୟରେ ଛନ୍ତି ଦଶରଥ
କେମନ୍ତେ ବାଲିପିଣ୍ଡକୁ ପାତିଲେ ସେ ହସ୍ତ ।
ସ୍ତିରୀମାନଙ୍କ ସ୍ୱଭାବ ଅଟଇ ଏମନ୍ତ
ଏତେକ ମିଛକଥାକୁ କେ କରିବ ସତ ।
ସତ ବୁଝିବାକୁ ରାମ ଫଲ୍‌ଗୁକୁ ପୁଚ୍ଛିଲେ
କହ ଫଲଗୁ ଏହାର କିଛି ସତ ଥିଲେ ।
ସେ ବୋଲେ ମୃତ୍ୟୁପୁରୁଷ କାହିଁ ହସ୍ତ ପାତି
ଭାବ କରିବାକୁ ସ୍ୱାମୀ ଭଣ୍ଡାନ୍ତି ଯୁବତୀ ।

ଶ୍ରୀରାମ କୋପ କରିଲେ ଫଲ୍‌ଗୁ ବାକ୍ୟ ଶୁଣି
ମୋତେ ଭଣ୍ଡାଇଲୁ ତୁ ଲୋ ଜନକ ଦୁଲଣୀ ।
ଅନ୍ତରୀକ୍ଷରେ ଥାଇଣ ବୋଲେ ଦଶରଥ
ସୀତାର ବଚନ ରାମ ଜାଣ ତୁ ସିଦ୍ଧାନ୍ତ ।
ତୁମ୍ଭେ ବନକୁ ଅଇଲା ଦିନଠାରୁ ମୁହିଁ
ତୁମ୍ଭଙ୍କୁ ନ ଦେଖି ପ୍ରାଣତ୍ୟାଗୀ ହୋଇଲଇଁ ।
ସୀତା ବାଲିପିଣ୍ଡ ଦ୍ୟନ୍ତେ ସ୍ୱର୍ଗକୁ ମୁଁ ଗଲି
ପାଞ୍ଚମାସ ପାଞ୍ଚଦିନ ଅମୋକ୍ଷରେ ଥିଲି ।
ରାମଚନ୍ଦ୍ର ତାହା ଶୁଣି କରିଲେ ପରତେ
ବୋଇଲେ ଗୋ ମୋ ପିତାଙ୍କୁ ମୁକ୍ତକଲ ସୀତେ
ଶ୍ରୀରାମ ବୋଇଲେ ପୁଣି ସୀତା ମୁଖ ଚାହିଁ
ତୁମ୍ଭେ କିପାଁ ବିବସନ କହ ବଇଦେହୀ ।
ସୀତାୟା ବୋଇଲେ ମୁହିଁ ଦେଲି ପିଣ୍ଡଦାନ
ଦ୍ୱିଜେ ଦକ୍ଷିଣା ମାଗନ୍ତେ ନାହିଁ ମୋର ଧନ ।
ନିର୍ଦ୍ଦୟ ନିରପେକ୍ଷ ଯେ ଅଟେ ଏ ସ୍ଥାନଟି
ପିନ୍ଧିଲା ବସନ ମୋର ନେଲେ ସେ ପାଲଟି ।
ଶ୍ରୀରାମ ଶୁଣିଣ କୋପ କଲେ ବ୍ରାହ୍ମଣଙ୍କୁ
ଅନେକ ଅର୍ଜିଲେ ଅନ୍ନ ନ ମିଳୁ ଦିନକୁ ।
ଯେତେଧନ ଅର୍ଜ ତୁମ୍ଭେ ସବୁ ନେବ ରାଜା
ପତ୍ର ସିଇଁଣ ପିନ୍ଧନ୍ତୁ ତୁମ୍ଭର ଭାରିଯା ।
ଯେତେଲୋକ ଏ ସ୍ଥାନରେ ଦେବେ ବାଲିପିଣ୍ଡ
ବ୍ରାହ୍ମଣେ ଦକ୍ଷିଣା ନେଲେ ଛିଡ଼ିପଡୁ ମୁଣ୍ଡ ।
ସୀତା ବୋଇଲେ ଫଲଗୁ ବ୍ରହ୍ମାଙ୍କର ସୁତ
ପିଣ୍ଡ ଦେଲାବେଳେ ସାକ୍ଷୀଦେଲି ମୁଁ ଏହାନ୍ତ ।
ଏ ଦୁଷ୍ଟ ଚଣ୍ଡାଳ ମୋରେ ମାଗିଲା ପୀରତି
ତାହା ନ ପାଇ କହିଲା ମିଥ୍ୟା ମୋହ ପ୍ରତି ।
ଶୁଣି ରାମ ଫଲଗୁକୁ କରିଲେ ଯେ କୋପ
ଅଗତି ହୋଇଣ ଥାଅ ମୋର ଅଭିଶାପ ।
ପୁଣି ରାଗରେ କହିଲେ ତାହାକୁ ରାଘବ
ଅନ୍ୟଦିନେ ଏ ଠାବକୁ କେହି ନ ଆସିବ ।
ଆବରହିଁ ଶୁଖିଯାଉ ତୋହର ଏ ଜଳ
ତୃଷାର୍ତ୍ତ ପିଇବେ ଚିରି ତୋର ବକ୍ଷସ୍ଥଳ ।
ଯୁଧିଷ୍ଠି ବୋଇଲେ ଯେବେ ସୀତା ପିଣ୍ଡଦେଲେ
ରାମ ରାବଣକୁ ମାରି ଫେରିବାର ବେଳେ ।
ଯୁଧିଷ୍ଠି ବୋଇଲେ ପିଣ୍ଡ ଦେଲେ ସେ ସୀତୟା
କିପାଇଁ ବୋଲନ୍ତି ଲୋକେ ଯାକୁ ରାମଗୟା ।
ଏହି କଥା ସବୁ ରାମ ରଖିଣ ମନରେ
ଏ ବାଟେ ନ ଆସି ଗଲେ ଉତ୍ତର ପଥରେ ।
ଭଣ୍ଡତୀର୍ଥ ବୋଲିକରି ନଇଲେ ଏଥିକି
ବାଲି ଘେନି ଦ୍ୱିଜେ ଗଲେ ଶ୍ରୀରାମ କତିକି ।

ତୀର୍ଥନିନ୍ଦା କରିଯାଅ ସ୍ୱାମୀ ରଘୁନାଥ
ତୁମ୍ଭେ ନ ଆସିଲେ ନାଶଗଲା ଏହି ତୀର୍ଥ ।
ବାହୁଡ଼ିଣ ବିଜେକଲେ ଆବର ସେଠାରେ
ମହାତୀର୍ଥ ଗୋଟି ସାର ହୋଇବ ସଂସାରେ ।
ଅନେକ ବିକଳେ ଦ୍ୱିଜ ତାଙ୍କୁ କଲେ ସେବା
ସୀତୟା ବୋଇଲେ ସ୍ୱାମୀ ବାହୁଡ଼ିଣ ଯିବା ।
ତେଣୁ ବାହୁଡ଼ି ବିଜୟ କଲେ ରଘୁନାଥ
ସେଥିପାଇଁ ହେଲା ନାମ ରାମଗୟା ତୀର୍ଥ ।
ବ୍ରାହ୍ମଣେ ଯେ ଅଭ୍ୟର୍ଥନା କଲେ ଶ୍ରୀରାମଙ୍କୁ
ଗୟାତୀର୍ଥ ଭିତରକୁ ତାହାଙ୍କୁ ଯିବାକୁ ।
ଯୁଧିଷ୍ଠିର ବୋଲେ ତେଣେ ଅଛି କିସ ଅର୍ଥ
ଏହି ଗୟାଶ୍ରାଦ୍ଧ ବୋଲି ପିଣ୍ଡ ହିତେ ସତ ।
ଗୟାତୀର୍ଥେ ବାଲିପିଣ୍ଡ ଯୁଧିଷ୍ଠିର ଦେଲେ
ପିତା ପିତାମହମାନେ ମୁକତି ଲଭିଲେ ।
ଗୟାଶ୍ରାଦ୍ଧ କରି ତହିଁ ଦେଖନ୍ତି ପିତୃଙ୍କୁ
ଯୁଧିଷ୍ଠିର ପୁଚ୍ଛାକଲେ କୋଇନ୍ତା ମାତାଙ୍କୁ ।
ମାଗୋ ତୁମ୍ଭେ ବୋଲୁଥିଲ ଦୁର୍ଯ୍ୟୋଧନ ମନ୍ଦ
ସୁଲଭ ସୋଦର ମୋର ସେ ମାନଗୋବିନ୍ଦ ।
ସେହୁ ଯେବେ ବନସ୍ତକୁ ନ ପେଷନ୍ତା ମୋତେ
ଏହି ତୀର୍ଥରେ ପିଣ୍ଡ ମୁଁ ଦିଅନ୍ତି କେମନ୍ତେ ।
କୁନ୍ତୀ ପିଣ୍ଡ ଦେଲେ ଭୋଜବଂଶର ନିମନ୍ତେ
ଦ୍ରୌପଦୀ ପିଣ୍ଡ ବାଢ଼ିଲେ ପୁତ୍ରଙ୍କର ହିତେ ।
ଜୟ ଜୟ ଜଗନ୍ନାଥ ଜଗତ କରତା
ଜୟ ଜୟ ଜଗନ୍ନାଥ ତୁମ୍ଭେ ବିଶ୍ୱପିତା ।
ଜୟ ଜୟ ଜଗନ୍ନାଥ ଅରକ୍ଷ ରକ୍ଷଣ
ଜୟ ଜୟ ଜଗନ୍ନାଥ ମାନ ଉଦ୍ଧାରଣ ।
ହେ ପ୍ରଭୁ ତୁମ୍ଭର ପାଦେ ସଦା ମୋର ଲୟ
ପାପତାପ ଖଣ୍ଡି ଦିନ ଶ୍ରୀପଦେ ଆଶ୍ରୟ ।
ହେ ପ୍ରଭୁ ତୁମ୍ଭର ଛଡ଼ା ଆନେ ନ ଜାଣଇ
ମାର ଅବା ତାର ଅବା ଯେ ଇଚ୍ଛା ହୁଅଇ ।
ସର୍ବଦା ମୋହର ମତି ହେଉଛି ଚଞ୍ଚଳ
ପୁଣି ଷଡ଼ରିପୁ ଆସି କରନ୍ତି ଆକୁଳ ।
ତେଣୁକରି ନିଶ୍ଚଳରେ ବସି ନ ଦିଅନ୍ତି
ତୁମ୍ଭ ଧ୍ୟାନ ଧାରଣାକୁ ବିବାଦ ଘଟାନ୍ତି ।
ମୋର ଏ ପ୍ରବଳ ଶତ୍ରୁ ଛେଦ ହେ ଚକ୍ରରେ
ନିଶ୍ଚଳେ ଦେଖିବି ବସି ତାହାର ଭିତରେ ।
ଏହି ଭିକ୍ଷା ଦିଅ ହରି ମାଗୁଛି ନିରତ
ଶାରଳା ଦାସକୁ ପାପପଙ୍କୁ କର ମୁକ୍ତ ।



## ହିମବନ୍ତ ପୁତ୍ର ଚନ୍ଦ୍ରଧ୍ୱଜ ଓ କାର୍ତ୍ତିକଙ୍କର କଳହ, ପାର୍ବତୀଙ୍କର ହିମାଳୟ ପରିତ୍ୟାଗ ସଂକଳ୍ପ

ପଚାରନ୍ତି ବୈବସ୍ୱତ ମନୁ ନୃପବର
ଏଥୁଅନ୍ତେ କେଉଁଦିଗେ ଗଲେ ଯୁଧିଷ୍ଠିର ।
ସେହି କଥା ଶୁଣିବାକୁ ବଳଇ ମାନସ
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ ।
ପଣ୍ଡୁସୁତେ ଗୟାତୀର୍ଥେ ରହି ଦଶଦିନ
କାଶୀପୁରକୁ ବିଜୟ କରିଲେ ବହନ ।
ମଣିକର୍ଣ୍ଣିକା ବୋଲିଣ ଅଛଇ ତୀର୍ଥେକ
ବ୍ରହ୍ମହତ୍ୟା ପାରିହେଲେ ତହିଁ ତ୍ରିଅମ୍ବକ ।
ଏକେ ପୁଣ୍ୟସ୍ଥାନ ପୁଣି ମକରର ମାସ
ଶୁକ୍ଳପକ୍ଷ ଏକାଦଶୀ ରୋହିଣୀ ପ୍ରବେଶ ।
ଭୃଗୁଙ୍କର ବାର ଅଟେ ପୁଣି ସେ ଦିନରେ
ଯୁଧିଷ୍ଠିର ପ୍ରବେଶିଲେ ମଣିକର୍ଣ୍ଣିକାରେ ।
ବ୍ରହ୍ମା ନିତ୍ୟକର୍ମ ତହିଁ କରନ୍ତି ପ୍ରବେଶି
କୋଟି ଲିଙ୍ଗ ବିଜେ ତହିଁ ନାମ ବାରାଣସୀ ।
ବହୁ ଫଳ ସ୍ନାନକଲେ ମକର ମାସରେ
ଶିଷ୍ୟ ସହିତରେ ବ୍ୟାସ ପ୍ରବେଶ ସେଠାରେ ।
ମାତା ଭ୍ରାତା ଭାର୍ଯ୍ୟାସହ ଯୁଧିଷ୍ଠିର ସ୍ୱାମୀ
ପରାଶରସୁତ ପାଦେ ହେଲେ ପରଣାମି ।
ଉଠ ଉଠ ସୁଲକ୍ଷଣୀ ହୁଅ ହେ କୁମାରୀ
ଧର୍ମ ସଖା ହୁଏ ଯେହୁ ରାଗକୁ ସଂହାରି ।
ବାବୁ ତୀର୍ଥ ଧର୍ମ ତୋତେ ହେଉ ପରାପତ
ରାଜ୍ୟକୁ କାରଣ ତୁମ୍ଭେ ହୁଅ ପଞ୍ଚଭ୍ରାତ ।
ସମସ୍ତ ପାତକ ଏଥି ଖଣ୍ଡେ ବ୍ରହ୍ମରାଶି
ଦିବସକେ ହୋଇ ପୁଣି ରାତ୍ରେ ପରକାଶି ।
ସର୍ବଦା ପ୍ରାଣୀଙ୍କୁ ଭୋଗ ହୁଅଇ ସମ୍ପଦ
ସବୁଦିନେ ପ୍ରାଣୀକିଟି ନ ଥାଇ ବିପଦ ।
ଜନ୍ମ କର୍ମ ଧର୍ମ ଆଉ ଅନ୍ୟ ଅନ୍ୟ ରାଶି
ଯାହାର ବେଳରେ ଯାହା ସେହୁ ଦ୍ୟନ୍ତି ଆସି ।
ବାବୁ ଅତି ଭାଗ୍ୟରେ ଯେ ପାଇ ଏହି ତୀର୍ଥ
ବହୁ ପୁଣ୍ୟ ଥିଲେ ଏହୁ ହୁଏ ପରାପତ ।
ଯୁଧିଷ୍ଠିର ଦେବ ତହୁଁ ବ୍ୟାସେ କଲେ ପୁଚ୍ଛା
କେଉଁରୂପେ ବିଶ୍ୱନାଥ ଏଥେ କଲେ ଇଚ୍ଛା ।
କହନ୍ତି ସତ୍ୟବତୀର ସୁତ ତପୋନିଷ୍ଠୀ
ଅପୁତ୍ରକ ଥିଲା ହିମବନ୍ତ ଅଧିପତି ।
ବନ୍ଧୁବର୍ଗ ରାଇ ପୁଚ୍ଛେ ଅଚଳର ଅଧି
କେଉଁ ଦେବତା ସେବିଲେ କାର୍ଯ୍ୟ ହୁଏ ସିଦ୍ଧି ।

ଦର୍ଶନ ପ୍ରସନ୍ନେ ତାଙ୍କ ସର୍ବ ଫଳ ପାଇ
ଯାହାଙ୍କୁ ଭେଟିଲେ କଳ୍ପ ଚିରାୟୁ ହୁଅଇ ।
ସେମାନେ ବୋଇଲେ ତୁ ହୋ ଶୁଣ ହିମବନ୍ତ
ହର ପ୍ରସନ୍ନେ ସନ୍ତାନ ହୁଅଇ ପ୍ରାପତ ।
ତୁମ୍ଭେ ଯାଇ ସେବାକର ଦେବ ତ୍ରିପୁରାରି
ଅପୁତ୍ରକ ଦୋଷ ନିଷ୍ଟେ ଖଣ୍ଡିବେ ତୋହରି ।
ତେଣୁ ସେ ସେବା କରିଲା ତ୍ରିପୁର ଈଶ୍ୱର
ରୁଦ୍ର ପ୍ରସନ୍ନେ ତା ଜାତ ଏକଇ କୁମର ।
ଚନ୍ଦ୍ର ଧ୍ୱଜ ବୋଲିକରି ହିମବନ୍ତ ପୁତ୍ର
ପଞ୍ଚଦଶ ବରଷର ଅଟଇ ବାଳୁତ ।
ଗିରିଜାଙ୍କୁ ବିଭା ହୋଇଥିଲେ ବିଶ୍ୱନାଥ
କାର୍ତ୍ତିକ ନାମେ କୁମର ହୋଇଥିଲା ଜାତ ।
କାର୍ତ୍ତିକେୟ ଚନ୍ଦ୍ରଧ୍ୱଜ ଏ ବେନି କୁମର
ମାମୁଁ ଭଣଜା ଅଟନ୍ତି ଶୁଣ ନୃପବର ।
ଖେଳ ଖେଳୁଥାନ୍ତି ଦୁହେଁ ଆନନ୍ଦିତ ହୋଇ
ନାଟ ବିନୋଦରେ କ୍ରୀଡ଼ା କଉତୁକ ପାଇ ।
ମିଥୁନ ଶୁକ୍ଳ ସଉରି ଦଶମୀର ତିଥି
ସେ ବେନି କୁମରେ ନାନା ରଙ୍ଗେ ଖେଳୁଛନ୍ତି ।
ଖେଳୁ ଖେଳୁ ଦୁହେଁଯାକ ଲଗାଇଲେ କଳି
ବୋଲାବୋଲି ହେଉଁ ହେଉଁ ହେଲେ ବାରୁଆଳି
କାର୍ତ୍ତିକେଶ୍ୱର ମାଇଲା ସେ ଚନ୍ଦ୍ରଧ୍ୱଜକୁ
ବହୁତ ଝିଙ୍ଗାସ କରି ବୋଇଲା ତାହାକୁ ।
କାର୍ତ୍ତିକେଶ୍ୱର ବୋଇଲେ ଆରେ ଚନ୍ଦ୍ରଧ୍ୱଜ
ପିତାମାତା ତୋହର ଯେ ଅଟେ ଗିରିରାଜ ।
ନ ଜାଣି କି ଲୋକେ ଖଣ୍ଡେ ଖଣ୍ଡେ କରି କାଟି
ତୁଠେ ପକାଇ ଘଷନ୍ତି ପାଦ ଗୋଟି ଗୋଟି ।
ବାଡ଼ି ତାଟରେ ପକାନ୍ତି ବହିର୍ଭୂମି ଅର୍ଥେ
ଅସାର ଜୀବ ତୁମ୍ଭେରେ ବର୍ତ୍ତିଛ କେମନ୍ତେ ।
କଚାଡ଼ି ଭୂମିରେ ଫିଙ୍ଗି ଗାଧୁଆନ୍ତି ମାଡ଼ି
ନିର୍ଲ୍ଲଜ ଆତ୍ମା ତୋହର ଯାଉଥାଇ ଛିଡ଼ି ।
ଶୁକ୍ଳକାରମାନେ ତୋତେ ଘେନନ୍ତି ବହନ
ତୋ ପିଠିରେ କଚାଡ଼ନ୍ତି ଅଧମ ବସନ ।
ଏଡ଼େ ଅଧମ ପଣରେ ବର୍ତ୍ତିଛ ସଂସାରେ
ସ୍ଥାବର ଛାର ତୁ ହୋଇ ଆମ୍ଭଙ୍କୁ ମାରୁରେ ।
ଇନ୍ଦ୍ର ଦେବତା ତୁମ୍ଭର ଜାତି ଗୋତ୍ର ଜାଣି
ଦୁଇପାଖ ଡ଼େଣା ତେଣୁ ପକାଇଲେ ହାଣି ।
ବହୁତ ଝଙ୍ଗାସିଲେ ଯେ ସେ କାର୍ତ୍ତିକେଶ୍ୱର
ଶୁଣି ଚନ୍ଦ୍ରଧ୍ୱଜ ବୋଲେ ଶୁଣ ଆରେ ଛାର ।
ଆରେ ଶୁଣ ଆମ୍ଭେ ସବୁ ଦେବାଦେବୀ ହୋଇ
ମର୍ତ୍ତ୍ୟପୁରେ ରହିଅଛୁ ନାନା ପୂଜା ପାଇ ।

ଶତେପଳ ପଞ୍ଚାମୃତ ଆମ୍ଭେ ଅଙ୍ଗେ ବୋଳି
ଆମ୍ଭେ ଇନ୍ଦ୍ର ଚନ୍ଦ୍ର ବ୍ରହ୍ମା ହେଉ ଯେ କପାଳି ।
ତ୍ରୈଲୋକ୍ୟ ମଧ୍ୟରେ ଆମ୍ଭେ ହୋଇଛୁ ଦେବତା
ତ୍ରିଭୁବନ ମଧ୍ୟେ ଆମ୍ଭେ ପୂଜାହିଁ ଘେନନ୍ତା ।
ଆମ୍ଭେ ହିଁ ଠାକୁର ଅଟୁ ଏ ଭୁବନ ତିନି
ମୁକ୍ତି ପାନ୍ତି ଆମ୍ଭ ପାଦୋଦକ ଶିରେ ଘେନି ।
ତୋର ବାପ ମୂଢ଼ ଜାଣ ବହେ ରୁଦ୍ର ନାମ
ଦେବତାମାନଙ୍କ ମଧ୍ୟେ ଅଟେ ଯେ ଅଧମ ।
ଗଉରୀ ବିଭା ହେବାକୁ ଆସେ ଯେତେବେଳେ
ବରବେଶେ ବସେ ଛାୟା ମଣ୍ଡପର ତଳେ ।
ଶିରରେ ମୁକୁଟ ନାଗ ନାଗକଟିବନ୍ଧ
ବର ପାଖରେ ବସିଲେ ସର୍ବ ଦେବବୃନ୍ଦ ।
ସମସ୍ତେ ବୋଇଲେ କେତେକାଳ ବଳଦଟା
ଅତି ପରପଞ୍ଚ ବିଶ୍ୱନାଥ ଯେ ଲାଙ୍ଗଟା ।
ହିମବନ୍ତକୁ ବହୁତ କହିଲେ ଝିଙ୍ଗାସି
କେମନ୍ତେ ବୋଲୁ ବରିଲି ମୁହିଁ ଦେବକାଶୀ ।
ତୁମ୍ଭ ଘରେ ବିଭା ହୁନ୍ତି ଯେଉଁ ସ୍ତିରୀମାନେ
ଭ୍ରମନ୍ତି ସେ ଅହର୍ନିଶି ବଳଦ ବାହନେ ।
କନ୍ୟାଗୋଟି ଯେତେବେଳେ ନେଇଣ ସମର୍ପେ
ମହାଦେବ ବସିଲେଟି ଘେନି ମହାସର୍ପେ ।
ପ୍ରପଞ୍ଚ ଲଙ୍ଗଳା ବୋଲି ସକଳେ ଝିଙ୍ଗାସି
କହିଲେ ମୋ ପିତାକୁଟି ଶୁଣ ଆରେ ଶିଷି ।
ଏଡ଼େ ବଡ଼ପଣ କରି କହିଲେ ହେ ରାଜା
ବର ବେଶରେ କେମନ୍ତେ ବସିଛି ନିର୍ଲ୍ଲଜା ।
ଏହା ଦେଖି ନାରୀମାନେ ବୁଦ୍ଧିଏ ପାଞ୍ଚିଲେ
ପର୍ବତରୁ ନାଗଏରି ଖୋଜିଣ ଆଣିଲେ ।
କନ୍ୟାର କପୋଳଦେଶେ କରିଲେ ଲେପନ
ବରମଣ୍ଡନା ସେ କର ଲଲାଟେ ଲିଖନ ।
କନ୍ୟାଗୋଟି ନେଲେ ଯହୁଁ ପିତା ନିକଟକୁ
ଔଷଧି ଗନ୍ଧରେ ସର୍ପ ପଳାନ୍ତି ଦୂରକୁ ।
ବାସୁକୀ ନାଗକୁ ତୋର ପିତା ପିନ୍ଧୁଥିଲା
ଫିଟିଯାଇ ପଳାନ୍ତେ ସେ ଲାଙ୍ଗଟା ହୋଇଲା ।
ଲଙ୍ଗଳା ହୋଇଣ ଯହୁଁ ବସିଲେ ବେଦୀରେ
ତା ଦେଖି ଲଜ୍ଜା ପାଇଲେ ସବୁ ଦେବାସୁରେ ।
ବାପ ତୋର ତ ନିର୍ଲ୍ଲଜ ତୁ ପାଇବୁ କାହିଁ
ସମସ୍ତଙ୍କ ମୁଖ ଚାହିଁ କୌପୀନ ପୋଡ଼ଇ ।
ଆରେ ଯୋଗିଆର ପୁଅ ଏଡ଼େ ଅଟୁ ଭାଣ୍ଡ
ଘର ଶ୍ମଶାନରେ କରେ ତ୍ରିଶୂଳର ଦଣ୍ଡ ।
ବୃଦ୍ଧ ବଳଦ ଗୋଟିଏ ଚଢ଼ିଥାଏ ନିତି
ଡମ୍ବରୁ ବାଜା ବଜାଇ ଭିକ୍ଷା ମାଗୁଥାନ୍ତି ।

ଭାବ କେବେ ନ କରଇ ଆନ ଦେବ ତୁଲେ
ଶମଶାନେ ରହେ ପୁଣି ଉଲଗ୍ନରେ ବୁଲେ ।
ପୁଅ ଭାରିଯାଙ୍କୁ ସେହୁ ନ ପାରିଲା ପୋଷି
ବିଭୂତି ଅଙ୍ଗରେ ବୋଲି ପ୍ରପଞ୍ଚ ତପସ୍ୱୀ ।
ଉମା ଦହନରେ ପ୍ରଜାପତି ମୁଣ୍ଡ କାଟେ
କପିଳାକୁ ମାରି ଗୋରୁହତ୍ୟା ଦୋଷ ଘଟେ ।
ଦକ୍ଷମୁଣ୍ଡ କାଟି ଯହୁଁ ଛିନ୍ନ ସେହି କଲା
ଭଇରବ ରୂପେ କରେ ମୁଣ୍ଡ ଯେ ଲାଗିଲା ।
କାଦମ୍ବରୀ ପାନକରି ମାଇଲା କପିଳା
ଭଇରବ ରୂପେ କରେ ମୁଣ୍ଡ ଯେ ଲାଗିଲା ।
ପାପ କରିବାରୁ ଲାଗି ରହିଲାଟି ମୁଣ୍ଡ
କହଇ ବିକାର ବାକ୍ୟମାନ ସବୁ ଭଣ୍ଡ ।
ଡିବି ଡିବି ଡମ୍ବରୁ ଯେ ବଜାଏ ଉଚ୍ଚାଟେ
ପରପଞ୍ଚ ଯୋଗୀ ସେହୁ ବଞ୍ଚୁଥାଇ କଷ୍ଟେ ।
ହିମବନ୍ତ ରାଜା ତାକୁ ନିଜ କନ୍ୟା ଦେଲା
ସତ୍ୟବାକ୍ୟ ତୁମ୍ଭର ଯେ କାରଣ ହୋଇଲା ।
ଆରେ ଜାତିହୀନ ତୁମ୍ଭ କୁଳଗୋତ୍ର ନାହିଁ
ଆମ୍ଭ ଘରେ ଆମ୍ଭ ଭଗ୍ନୀ ରହେ ବିଭା ହୋଇ ।
ଆମ୍ଭ ଅନ୍ନେ ପୋଷି ହୋଇ ପୁଣି ଗାଳିଦିଅ
କେଉଁ ଗାରିମାରେ ତୁମ୍ଭେ ଏଡ଼େ ଗର୍ବ ବହ
ଯାର ଅନ୍ନ ଖାଅ କିରେ ତାକୁ ନିନ୍ଦାକର ।
ବିଭଙ୍ଗ ବିକୃତି ଅଟେ ବୃତ୍ତାନ୍ତ ତୁମ୍ଭର
ଶ୍ୱଶୁର ଘରକୁ ଯେବେ ଆସିଥାଏ କ୍ୱାଇଁ
ଅଢ଼ାଇ ଦିନରୁ ବେଶୀ କେଭେ ନ ରହଇ ।
ଶ୍ୱଶୁରର ଅନ୍ନ ଖାଇ ବଞ୍ଚେ ଯେଉଁ ଜନ
ବଳବୀର୍ଯ୍ୟ ଥାଉଁ ସେହି ହୁଏ ହୀନିମାନ ।
ଅରକ୍ଷିତ ପ୍ରାୟେ ତୁମ୍ଭ ବାଡ଼ିବୃତ୍ତି ନାହିଁ
ସଂସାରେ ବୋଲନ୍ତି ହିମବନ୍ତର ଜ୍ୱାଇଁ ।
ଆରେ ସ୍ୱାମୀଙ୍କର ଭୃତ୍ୟ ତଦଭୃତ୍ୟକାରୀ
ଶ୍ୱଶୁର ଘରେ ଜାମାତା ତାକୁ ନୁହେ ସରି ।
ପ୍ରକୃତରେ ଅଟ ତୁମ୍ଭେ ସଦା ଭିକ୍ଷାକାରୀ
ବିଚାରିଲେ ତୁମ୍ଭେ ଆମ୍ଭ ପିତା ଭୃତ୍ୟପରି ।
ଚନ୍ଦ୍ରଧ୍ୱଜ କାର୍ତ୍ତିକଙ୍କୁ ବହୁ ଦେଲା ଗାଳି
କାନ୍ଦିଣ କୁମର ଗଲେ ମାତା ପାଶେ ଚଳି ।
କାନ୍ଦଇ କୁମରମଣି ଲୁହ ବେନି ଆଖି
ଧାଇଁଲେ ଗିରିଜା ଦେବୀ ପୁତ୍ରକଷ୍ଟ ଦେଖି ।
ଆରେ ପ୍ରାଣ ପଞ୍ଚଭୂତ କି ନିମନ୍ତେ କାନ୍ଦୁ
କେ ତୋତେ ମାଇଲା ଆରେ କହ ପ୍ରାଣବନ୍ଧୁ ।
ପୂର୍ଣ୍ଣିମା ଚନ୍ଦ୍ରମା ତୋର ଅଟେ ମୁଖଗୋଟି
ସୁକୁମାର କୁମାର ତୁ କିପାଁ କାନ୍ଦୁ ଲୋଟି ।
ଜଗତ ବନ୍ଦନ ବାବୁ ତୁ ମୋର ଦୁଲଣା
କେ ମାଇଲା ତୋତେ କିପାଁ କି କଲୁ ବୋଲଣା ।
ଶୋକେ କଇଁ କଇଁ କହି ନ ପାରନ୍ତି କିଛି
ମୁଖ ଚୁମ୍ବିଣ ବୋଲନ୍ତି ମୁହିଁ ଯାଏ ଲୁଛି ।
କାର୍ତ୍ତିକ ବୋଇଲେ ତୋର ଭାଇ ଚନ୍ଦ୍ରଧ୍ୱଜ
ବହୁତ ଝିଙ୍ଗାସ କରି କହିଲା ସେ ଆଜ ।
ମୋତେ ଅନେକ ଧିକାରି ସେହୁ ଦେଲା ଗାଳି
କହଇ କୁମର ମାତା ଆଗରେ ବିକଳି ।
ବୋଲେ ଅକୂଳ ଅମୂଳ ବାଡ଼ି ବୃତ୍ତି ନାହିଁ
ଆମ୍ଭଙ୍କୁ ଜଞ୍ଜାଳ କରି ଆମ୍ଭ ଅନ୍ନ ଖାଇ ।
କାନ୍ଦିଣ କହେ କୁମର ସକଳ ବୃତ୍ତାନ୍ତ
କୋପ କରିଲେ ଗଉରୀ ଶୁଣିଣ ଏମନ୍ତ ।
ମାତା ପୁତ୍ର କ୍ରୋଧକରି ଅଛନ୍ତି ଯେ ବସି
ଦେବ ସଭାରୁ ଈଶ୍ୱର ପ୍ରବେଶିଲେ ଆସି ।
ନନ୍ଦୀ ମହାକାଳ ରଖେ ବୃଷଭ ସମ୍ଭାଳି
ଭିତରେ ପ୍ରବେଶ ହେଲେ ଦେବଦେବ ଶୂଳୀ ।
ଗଉରୀଙ୍କୁ ଦେଖି ତାଙ୍କୁ ଧରି କୋଳାଗ୍ରତେ
ବୋଇଲେରେ ଅସମ୍ଭାଳ କ୍ରୋଧ କି ନିମନ୍ତେ ।
ମାତା ପୁତ୍ର ଦୁହେଁ ପ୍ରଣମିଲେ ତାଙ୍କ ପାଦେ
ବହୁତ ଭୁଞ୍ଜିଲୁ ହିମବନ୍ତର ପ୍ରସାଦେ ।
ତୁମ୍ଭର ବିଚାରେ କିପାଁ ଆମ୍ଭେ ଏଥି ଥିବା
ପୋଡୁ ଏହି ହିମବନ୍ତ ଚାଲ ଏଥୁ ଯିବା ।
ଈଶ୍ୱର ବୋଇଲେ ଅଛି ତୋର ପିତାଘରେ
ମୁହିଁ କେମନ୍ତ ବିକୃତ ଧରିବି ବିଚାରେ ।
ତୁ ନିଜେ ବିଚାର କରି କର ସମାଧାନ
ମୋ ପ୍ରତି ବିକୃତ କିପାଁ କରିଅଛୁ ମନ ।
ଗିରିଜା ବୋଇଲେ ସ୍ୱାମୀ ମିଳଇ ବିଚାରେ
କୁବୃକ୍ଷ ଥାଆନ୍ତି ସିନା ବୃକ୍ଷଙ୍କ ଉପରେ ।
କୁସ୍ତିରୀ ଖଟନ୍ତି ପରେ କରି ପରିତ୍ୟକ୍ତ
କୁଜନ ସନ୍ଧ୍ୟାରେ କିବା ହୁଅନ୍ତି ପବିତ୍ର ।
କୁଶଯ୍ୟା ଯେ କୁଭୋଜନ ଆଉ କୁପୁରୁଷ
ଶ୍ୱଶୁରର ଘରେ ବଢ଼େ ଏହା ସତ୍ୟଭାଷ ।
ସ୍ୱାମୀ ହେ ନିଜର କୁଳ ଗୋତ୍ରକୁ ବୁଡ଼ାଇ
ସଂସାରେ ବୋଲାଅ ହିମବନ୍ତର ଜ୍ୱାଇଁ ।
ଜଗତ ଠାକୁର ତୁମ୍ଭେ ଅଟ ତ୍ରିପୁରାରି
ହେ ଈଶ୍ୱର ତୋତେ ଅବା କିଏ ଅଛି ସରି ।
ସ୍ୱାମୀ ହେ ଶ୍ୱଶୁର ଘରେ ଥାନ୍ତି ଯେଉଁ ଲୋକ
ଜୀବିତରେ ହୀନ ସେହୁ ମଲେ ହ୍ୱନ୍ତି ପୋକ ।
ଅତ୍ୟନ୍ତ ପାମର ଜନ ହ୍ୱନ୍ତି ନୃତ୍ୟକାରୀ
ଶ୍ୱଶୁରର ଅନ୍ନଭୋଗୀ ତାକୁ ନୁହେଁ ସରି ।

ତୁମ୍ଭେ ଭୋଳାନାଥ ଅଟ ତ୍ରୈଲୋକ୍ୟର ରାଜା
ଅନନ୍ତ କୋଟି ବ୍ରହ୍ମାଣ୍ଡେ ପାଉଅଛ ପୂଜା ।
ଅନେକ ଭୋଜନ ନାନା ଅଳଙ୍କାର ଦେଲେ
ବହୁ ଆରାଧନା କରି ଭକତି କରିଲେ ।
କୁଟୁମ୍ବଯାକ ଆସିଣ କରୁଥିବେ ସେବା
ଏତେ କଲେହେଁ ଶ୍ୱଶୁର ଘରେ ନ ରହିବା ।
କୌଣସି ପ୍ରକାରେ ପେଟ ନ ପାରିଲେ ପୋଷି
ଉଦରପୂର୍ଣ୍ଣ କରିବା ହୋଇଣ ଭିକ୍ଷାଶୀ ।
ତୁମ୍ଭର ଯେବେ କୌଣସି ଗ୍ରାମେ ଅଛି ଭୂମି
ନ ଥିବା ଏ ପିତାଘରେ ଚାଲ ଯିବା ସ୍ୱାମୀ ।
ଦୁଷ୍ଟ ପାମର ସୋଦର ନାମ ଚନ୍ଦ୍ରଧ୍ୱଜ
ମୋର କାର୍ତ୍ତିକକୁ କଲା ଅପମାନ ଆଜ ।
ପୋଡୁ ପୋଡୁ ବାପଘରେ ଦଣ୍ଡେ ହେଁ ନ ଥିବା
ଭିକ୍ଷା ମାଗିକରି ପଛେ ଜୀବନ ରଖିବା ।
ଯହିଁ ତୋର ଅଛି ଶମଶାନ ଗ୍ରାମ ଭୂମି
ଉଠ ଚାଲ ଯିବା କ୍ଷଣେ ନ ଥିବା ହୋ ସ୍ୱାମୀ ।
ଈଶ୍ୱର ବୋଇଲେ ତୁହି ଶୁଣ ମାହେଶ୍ୱରୀ
ତୁହି କି ନ ଜାଣୁ ଦେବୀ ପ୍ରକୃତି ମୋହରି ।
ଆଦ୍ୟୁ ହିମବନ୍ତପୁର ଅଟଇ ମୋହର
ଆମ୍ଭଙ୍କୁ ତାହାକୁ ଦେଇଥିଲେ ବେଦବର ।
ପର ଦୁଃଖରେ କାତର ଅଟଇ ମୋ ଆତ୍ମା
ମୋର ଆଜ୍ଞାପାଇ ହୁଏ ସେହୁ ବେଦବ୍ରହ୍ମା ।
ଆଦି ଅବତାରେ ମୁହିଁ ଅଟେ ଦେବରାଜା
ସପତ ବ୍ରହ୍ମାଣ୍ଡ ମୋତେ କରନ୍ତି ଗୋ ପୂଜା ।
ଗୋଲୋକ ମହାଋଷି ଯେ ସେବା କଲେ ମୋତେ
ଇନ୍ଦ୍ର ପଦକୁ ମାଗିଲା ଦେଲି ତୋଷଚିତ୍ତେ ।
ଆଦି ଅଷ୍ଟନିଧି ବିଳସନ୍ତି ଯେ ମୋହରି
ସତମନେ ମାଗିନେଲେ ଋଷି ତପଚାରୀ ।
କୁବେର ହୋଇଲା ଦେବ ଭଣ୍ଡାରାଧିକାରୀ
ଦେବପୁର ନେଲେ ବିଶ୍ୱଦେବା ତପକରି ।
ଆଦ୍ୟ ଅବତାର ମୁହିଁ ବିଦ୍ୟାର ପୁରୁଷ
ଚୌଦଭାଗ କରି ମୁହିଁ ବାଣ୍ଟିଲି ତ୍ରିଦଶ ।
ଧନରତ୍ନ ଅଳଙ୍କାର ମୋର ଯେତେ ଥିଲା
ଅଶ୍ୱିନୀକୁମାର ତାହା ତପେ ଘେନିଗଲା ।
ପକ୍ଷୀ ବାହନରେ ସଦା ବିଜେ କରୁଥିଲି
ବିଧାତା ମାଗିଲେ ତାହା ନେଇ ତାକୁ ଦେଲି ।
ଆଦି ବାହନ ମୋହର ଅଟେ ଐରାବତ
ମୋ ଠହୁଁ ଘେନିଲା ଭକ୍ତିକରି ପୁରୁହୂତ ।
ଅଷ୍ଟ ଅଶ୍ୱ ଘେନି ମୁହିଁ ବିଜେ କରୁଥିଲି
ଆଦିତ୍ୟ ମାଗନ୍ତେ ମୁହିଁ ଭୋଳେ ତାହା ଦେଲି
ଅନେକ କାଳର ବୃଦ୍ଧ ସେ ବଳଦ ଗୋଟା
ଏହାକୁ ନ ନେଲେ କେହି ବାହନ ସେ ଗୋଟା ।
ହାର କୁଣ୍ଡଳ ମୁହିଁ ଯେ ଦେଲି ନକୁଳକୁ
ଅସ୍ଥିମାଳ ଆଭରଣ କେ ନ ମାଗେ ତାକୁ ।
ଅସ୍ତ୍ର ଶସ୍ତ୍ରମାନ ସବୁ ଆନକୁ ମୁଁ ଦେଲି
କେ ମାଗନ୍ତା ନାହିଁ ଶୂଳ ଏକ ମୁଁ ଧଇଲି ।
ମନ୍ଦର ସମାନ ଅଟେ ଏ ଶୂଳରୁ ଗରୁ
କେହି ଯେ ନ ନେଲେ ମୋହଠାରୁ ଏ ଡମ୍ବରୁ ।
ସୁବର୍ଣ୍ଣ ଯୋଗାଡ଼ ମାଗିନେଲେ ବୃହସ୍ପତି
ଖପର ବହିଲି ଏହା କେହି ନ ମାଗନ୍ତି ।
ବହୁ ବସ୍ତ୍ର କରୁଥିଲି ମୁହିଁ ପରିଧାନ
ଚନ୍ଦ୍ର ମାଗନ୍ତେ ମୁଁ ତାକୁ କରିଦେଲି ଦାନ ।
ପବିତ୍ର ବସନ ସର୍ବ ଦେବତାଙ୍କୁ ଦେଲି
ବିବସନ ହୋଇ ଦିଗମ୍ବର ମୁଁ ହୋଇଲି ।
ଅଗୁରୁ ଚନ୍ଦନ ମାଗିନେଲା ବିଶ୍ୱାବସୁ
ମୁହିଁ ଭୂଷଣ ହୋଇଲି ପ୍ରତ୍ୟକ୍ଷରେ ପାଂଶୁ ।
କ୍ଷାର ବୋଲିଣ ଏହାକୁ ନ ମାଗିଲେ କେହି
ଅପ୍ରୟୋଜନ ପଦାର୍ଥ ଅଛି ମୋର ଠହିଁ ।
ଅପୂର୍ବ ପଦାର୍ଥ ସବୁ ପରକୁ ମୁଁ ଦେଇ
ପାତାଳ ଭୁବନେ ଏବେ ଅଛି ଗୋପ୍ୟ ହୋଇ ।
ହଟକେଶ୍ୱର ନାମେ ମୁଁ ରଚି କପିଳାସ
ପାତାଳେ ମୟଦାନବ ଖଟେ ମୋର ପାଶ ।
ପାତାଳ ଭୁବନ ମୋର ଘେନିଗଲେ ମାଗି
ସମସ୍ତ ପୁରକୁ ଦେଇ ମୁଁ ପରମ ଯୋଗୀ ।
ବିମୁଖ ହୋଇ ଅଇଲି ମୁଁ ପାତାଳ ସ୍ୱର୍ଗେ
ଏକଛତ୍ର ଠାକୁର ମୁଁ ଅଟେ ଚାରିଯୁଗେ ।
ରକ୍ଷ ଭକ୍ଷ ମାଳି ଆଉ ସୁମାଳି ପ୍ରାପତି
ଶମ୍ଭୁ ନିଶମ୍ଭୁ ନିକୁମ୍ଭ ସୌନକ ନିପାତି ।
ଅନେକମତେ ଏମାନେ କଲେ ମୋତେ ସେବା
ଶସ୍ତ୍ର ମାଗିଣ ଘେନିଲେ ଏ ଦୃଷ୍ଟ ଦାନବା ।
ଜଗତ ତେଜିଣ ମୁହିଁ ହେଲି ଦିଗମ୍ବରୀ
ରହିଲି ଶ୍ମଶାନେ କେହି ନ ଯାଆନ୍ତି ଡରି ।
ଶ୍ମଶାନବାସିନୀ ବୋଲି ଏକଇ ଦେବତୀ
ସେ ମୋତେ ସେବା କରଇ ଦିବା ଆଉ ରାତି ।
ସେ ମୋତେ ଡରଇ ମୋର କୁରୂପକୁ ଦେଖି
କୋପ ହୋଇକରି ଶମଶାନକୁ ଉପେକ୍ଷି ।
ମହା ଅରଣ୍ୟେ ପଶିଲି ସପ୍ତଗିରି ତଳେ
ଗୁପତେ ରହିଲି ଚିତ୍ରୋତ୍ପଳା ନଦୀକୂଳେ ।
ଶଙ୍କରା ବୋଲି କରିଣ ଅଛଇ ଶବର
ସେ ମୋତେ ସେବା କରିଲା ଅନେକ ପ୍ରକାର ।

ସେ ଶଙ୍କରା ଶବରକୁ ଭୋଳେ ଦେଲି ବର
କପିଳାସ ବାସୀ ହେଲା ସେ ଶଙ୍କରେଶ୍ୱର ।
ସମସ୍ତ ଦେଇଣ ମୁହିଁ ବିଅର୍ଥ ହୋଇଲି
ହିମବନ୍ତ ଗୃହେ ସୁଖପାଇ ମୁଁ ରହିଲି ।
ତ୍ରିଦଶ ଦେବତା ମୋର ସର୍ବେ ବଶବର୍ତ୍ତୀ
ସମସ୍ତଙ୍କୁ ଦେଇ ମୁହିଁ ହୋଇଲି ବିଅର୍ଥୀ ।
ତୋ ପିତା ପୁରେ ହୋଇଲି ମୁହିଁ ବଡ଼ ସୁଖ
ତୁ ସୁନ୍ଦରୀ କିପାଁ ଧରୁ ମନରେ ବିକୃତ ।
କହନ୍ତି ଯେ ସତୀ ସତ୍ୟ କହିଲ ହେ ସ୍ୱାମୀ
ଏଥୁ ରହିବାର ଭଲ ଶମଶାନ ଭୂମି ।
ଆଜଠାରୁ ରହିବି ମୁଁ ଯେବେ ଏହିଠାରେ
ମଦ ମାଂସ ମିଶାଇଣ ଭକ୍ଷିବି ହସ୍ତରେ ।
ନିରଞ୍ଜନ ଥାଳରେ ମୁଁ ବିଷ ଭରିବଇଁ
ହିମବନ୍ତ ପୁରେ ଯେବେ ଅନ୍ନ ମୁଁ ଭୁଞ୍ଜାଇ ।
ଶଙ୍କର ଗଉରୀଙ୍କର ଦେଖି ଏ ବୃତ୍ତାନ୍ତ
ଧାତିକାରେ ସନ୍ନିଧିରେ ମିଳେ ହିମବନ୍ତ ।
ଭାରିଯା ପୁତ୍ରକୁ ତାର ସଙ୍ଗତରେ ଘେନି
ଶଙ୍କର ଗିରିଜା ପାଦେ କରଇ ଦଇନୀ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ହିମବନ୍ତ
କାର୍ତ୍ତିକଙ୍କୁ ଝିଙ୍ଗାସିଲା ଚନ୍ଦ୍ରଧ୍ୱଜ ସୁତ ।
ଅଭିମାନେ ମାତା ପୁତ୍ରେ ଦଣ୍ଡେ ନ ରହନ୍ତି
ଯାଉଅଛୁ ତୋର ଘରୁ ଶୁଣ ଗିରିପତି ।
ଶୁଣି ବ୍ୟାକୁଳ ହୋଇଲା କନ୍ଦରାଧିକାରୀ
ବୋଲେ ଦୁହିତା ହୋଇଣ ନିର୍ଦ୍ଦୟା ଗଉରୀ ।
କି ଅବା ତୋତେ ମୁଁ ସେବା ନ କରିଲି ପଣେ
ପୁତ୍ର ଦୋଷ ଧଇଲୁ ତୁ ମୋର ଅକାରଣେ ।
ଉମା ବୋଲେ ତୋ ରାଜ୍ୟେ ମୁଁ ଦଣ୍ଡେ ନ ରହିବି
ମୋହ କର୍ମେ ଯାହା ଅଛି ତାହା ମୁଁ ଭୁଞ୍ଜିବି ।
ହୋଇବି ମୁଁ ସ୍ୱାମୀ ଅନୁରୂପେ ଯୋଗିଆଣି
ତୁ ଆମ୍ଭଙ୍କୁ ଘରେ କିପାଁ ରଖିଲୁ ଯେ ଆଣି ।
କୁଟୁମ୍ବଯାକ ତୋହର ହୋଇଲେ ବିଟାଳି
ଉଚ୍ଚସ୍ୱରେ ମାହେଶ୍ୱରୀ ଛାଡ଼ନ୍ତି ବୋବାଳି ।
ଯଦ୍ୟପି ଏ ପିତା ପୁତ୍ର ଥିବେ ତୋର ଘରେ
ତେବେ ମୁହିଁ ଆତ୍ମଘାତୀ ହେବି ନିଶ୍ଚୟରେ ।
ହିମବନ୍ତ ବୋଲେ ତୋର ବର ଦେବରାଜା
ତୁ ମୋର କୁଳମଣ୍ଡଣି କନ୍ୟା ଗୋ ଗିରିଜା ।
ବହୁ ଅପରାଧ କରି ମୁହିଁ ତ ନ ଜାଣି
ମୋର ପୁତ୍ର ଦୋଷ କ୍ଷମା କର ଲୋ ଦୁଲଣୀ ।
ଅନେକ ବିନୟୀ ହୋଇ କହେ ଗିରିରାଜା
ମହାକୋପେ କାହା ବାକ୍ୟ ନ କଲେ ଗିରିଜା ।
ଗଉରୀଙ୍କ କୋପ ଦେଖି ସର୍ବେ କଲେ ଭୀତି
ବ୍ରହ୍ମଗଣ ଘେନି ବିଜେକଲେ ବେଦପତି ।
ବିଜୟ ଅମରଗଣ ଘେନି ମଘବାନ
ବୃହସ୍ପତି ଚନ୍ଦ୍ର ସୂର୍ଯ୍ୟ କୁବେର ପବନ ।
ଆକାଶ ତେଜ ଧଇଲେ ସର୍ବ ବୃନ୍ଦାରକେ
ଭକ୍ତି କଲେ ଗଉରୀଙ୍କ ପାଦେ ଦେବଲୋକେ ।
ହିମବନ୍ତ ବୋଲେ କ୍ୱାଇଁ ମୋ ରୁଦ୍ର ଦେବତା
ସେ ଯେ ମନରେ ବିକୃତ ଧରିବେ ଗୋ ମାତା
ତୁହି ମୋର ନନ୍ଦିନୀ ଗୋ କୁଳର ମଣ୍ଡଣି
ଦୁଃଖ ବିନାଶିନୀ ମାଗୋ ତ୍ରୈଲୋକ୍ୟ ତାରିଣୀ
ଅତି ବିନୟ ଭାବରେ ବଦୟନ୍ତି ବ୍ରହ୍ମା
ଦାସ ଦୋଷ ଅପରାଧ ମାୟେ କର କ୍ଷମା ।
ଇନ୍ଦ୍ର କୁବେର ପବନ କରନ୍ତି ଦଇନୀ
ଆମ୍ଭମାନଙ୍କ ଭକତି ଘେନ ଗୋ ଜନନୀ ।
ଦେବତାମାନଙ୍କୁ ଦେଖି ରୋଦନ୍ତି ଗଉରୀ
ଭୋ ବିଧି ଧିକ ଜୀବନ ଅଛଇ ମୋହରି ।
ଏ ପିତାର ମୁଖ ଆଉ ନ ଚାହିଁବି ମୁହିଁ
ନିଶ୍ଚୟ ମରିବି କାଳକୂଟ ବିଷ ଖାଇ ।
ଦେବଙ୍କ ପ୍ରାର୍ଥନା ସବୁ ଦେବୀ କଲେ ତେଜ୍ୟା
ନ ବୋଲ ନ ବୋଲ କିଛି ବୋଲନ୍ତି ଗିରିଜା ।
ଦେବସହ ଗିରି କଲେ ବିନୟ ଅଶେଷ
ଏମନ୍ତ ଷୋଡ଼ଶ ଦିନ କଲେ ଉପବାସ ।
ଆହେ ପ୍ରଭୁ ଦୟାମୟ ଅନନ୍ତ ମୂରତି
ଆବର ଅଛଇ ତବ ଅନନ୍ତ ଶକତି ।
କିଞ୍ଚିତ ଶକତି ମୋରେ କର ସଂପ୍ରଦାନ
ଶାରଳାଦାସର ଏହି ବିନତିକୁ ଘେନ ।



## ସ୍ଥାନ ଅନୁସନ୍ଧାନ ନିମନ୍ତେ ଗଣନାୟକଙ୍କର ମର୍ତ୍ତ୍ୟଲୋକ ଆଗମନ ଓ କାଶୀପୁର ଦହନ

ଅଗସ୍ତିଙ୍କୁ ପଚାରନ୍ତି ମନୁ ନରଈଶ
ପାର୍ବତୀ ଷୋଡ଼ଶ ଦିନ କଲେ ଉପବାସ ।
କାହାର କଥାକୁ ଦେବୀ ନ କଲେ ଗ୍ରହଣ
କେଉଁ କଥା କଲେ ଦେଖି ଧୂର୍ଜ୍ଜଟୀ ଆପଣ ।
ସେହି କଥା ଶୁଣିବାକୁ ବଳଇ ମାନସ
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ ।
ଈଶ୍ୱରେ ଆଜ୍ଞା କରିଲେ ଡାକି ଗଣେଶ୍ୱରେ
ବୋଇଲେ ତୁ ଆଜ ଯାଇ ମଧ୍ୟ ଭୁବନରେ ।
ନବଦ୍ୱୀପ ସାତସିନ୍ଧୁ ଆସ ତୁହି ଭ୍ରମି
ଆମ୍ଭର ରହିବାକୁ ଯେ ଖୋଜ ରମ୍ୟଭୂମି ।

କାର ଅଧିକାର ସେହି ଭୂମିରେ ନ ଥିବ
ପୁଣି ଯେ ସ୍ଥାନକୁ କେହି ଯାଇ ନ ପାରିବ ।
ସଦାଶିବ ଆଜ୍ଞା ପାଇ ଦେବ ଗଣପତି
ଇନ୍ଦୁର ବାହନେ ତହିଁ ଗମନ କରନ୍ତି ।
ସସାଗରା ପୃଥିବୀ ଯେ ଭ୍ରମଣ କରିଲେ
କେଉଁ ଠାବରେ ସୁସଞ୍ଚ ଭୂମି ନ ପାଇଲେ ।
ମନେ ବିଚାର କରନ୍ତି ବିଘ୍ନରାଜ ସ୍ୱାମୀ
ହିମଗିରିକି ଛାଡ଼ିଣ ଅଛି କେଉଁ ଭୂମି ।
ଲୋଡ଼ି ନ ପାଇ ଚିନ୍ତିଲେ ତହୁଁ ହୃଦଗତେ
ଦେଖିଲେ ସିନ୍ଧୁରେ ନଗ୍ର ନବର ପ୍ରଶସ୍ତେ ।
କାଶୀପତି ବୋଲିକରି ତହିଁ ନରପତି
ବିପ୍ର ଦରିଦ୍ରଙ୍କୁ ଦାନ ଦିଅଇ ସେ ନିତି ।
କର୍ଣ୍ଣଜ ବୋଲିଣ ତହିଁ ଏକ ରାଜା ଥିଲା
ମହୀଦାସ ରାଜା ତାର ବଂଶ ନାଶକଲା ।
ସେ ଦେଶ ମାଡ଼ି ବସିଲା ବୃନ୍ଦାର୍କ ନୃପତି
ଅପୁତ୍ରକ ରାଜା ତାର ନାହିଁ ଯେ ସନ୍ତତି ।
ଗଣପତି ସେହିସ୍ଥାନେ ବିଜେକଲେ ଯାଇ
ବିଚାରିଲେ ହିମବନ୍ତୁ ଅଲଗା ଏ ଭୂଇଁ ।
ବସୁ ନାମରେ ଯେ ଏକ ଚକ୍ରୀ ଅଟେ ସେହି
ଶିବାନଦୀ କୂଳରେ ଯେ ଶାଳ କରିଥାଇ ।
ସେହୁ ପୁଣି ଅପୁତ୍ରକ ଅଟେ ବଂଶହୀନ
ଗଳିତ କୁଷ୍ଟବ୍ୟାଧି ତା ଅଙ୍ଗେ ବିଦ୍ୟମାନ ।
ସେ କୁରାଳକୁ ଗଣେଶ ହୋଇଲେ ପ୍ରସନ୍ନ
ପୃଥୁଳ ଉଦର ପୁଣି ଗଜର ଆନନ ।
ଆମ୍ଭର ହୃଦୟଗତ ଉତ୍ସର୍ଗ ମଉଳି
ଉଚିତ ଗଜ ଆନନ ପ୍ରସନ୍ନେ ଧବଳି ।
ଇନ୍ଦୁର ବାହାନ ରୂପ ଦଧିବାମନର
ତାଣ୍ଡବର ଆଳାପନ ଶିରରେ ସିନ୍ଦୂର ।
ଶ୍ରୀଭୁଜରେ ଶୋଭାବନ ପର୍ଶୁପାଣି ଗୋଟି
ଅଭୟ ହସ୍ତରେ ଅଛି ଅମୃତ ଲଡୁଟି ।
ଶିରରେ ସୁଧାଂଶୁ ଆଉ ବାସୁକୀ ପଇତା
ପାଶାଙ୍କୁଶା ଅସ୍ତ୍ରେ ସେହୁ ହୋଇଛି ଶୋଭିତା ।
ଅଷ୍ଟଭୁଜ ଶୋଭପାଏ ଲମ୍ବ ଉଦରକୁ
ଡାକିଣ ବୋଲନ୍ତି ସେହି ବସୁ କୁମ୍ଭାରକୁ ।
ଆରେ କୁରାଳ ମୁଁ ଅଟେ ଜାଣ ଗଣେଶ୍ୱର
ଏକମୂର୍ତ୍ତି କର ତୁହି ସ୍ୱରୂପେ ମୋହର ।
ଶାଳେ ବସାଇ ଅଗ୍ନିରେ ପୋଡ଼ାଇ ତାହାକୁ
ସତ୍ୱରରେ ଆଣିଦିଅ ମୋହର ଛାମୁକୁ ।
ଦକ୍ଷିଣମୂର୍ତ୍ତି ଆସନ କରିବୁ ଯତନେ
ଲଡୁମୁଆଁ ଗଜା ଦେଇ ପୂଜ ପ୍ରତିଦିନେ ।
ରଙ୍ଗବସ୍ତ୍ର ଦେଇ ରଙ୍ଗପୁଷ୍ପରେ ପୂଜିବୁ
ଲୟ ବୁଝି ସିନ୍ଦୁରରେ ମୁଖକୁ ମଣ୍ଡିବୁ ।
ଏସନକ ଦମ୍ଭରୂପ କରି ମୋତେ ସ୍ଥାପ
ଏ ବ୍ୟାଧି ଭଲ ହୋଇବ ଖଣ୍ଡି ତୋର ପାପ ।
ଏପରି ରୂପକୁ କହିଦେଇ ଗଜାନନ
ପ୍ରସନ୍ନ ହୋଇ ଗଣେଶ ହେଲେ ଅନ୍ତର୍ଦ୍ଧାନ ।
ସ୍ୱପ୍ନ ତେଜିଣ କୁମ୍ଭାର ସଞ୍ଚିଲାକ ମାଟି
ବିଘ୍ନରାଜଙ୍କ ସ୍ୱରୂପେ ପିତୁଳାଏ କାଟି ।
ହୁତାଶନ ଯୋଗକରି ପୋଡ଼େ ଗଣପତି
ସିଂହାସନ ଯୋଗକଲା ଦକ୍ଷିଣ ମୂରତି ।
ପଞ୍ଚାମୃତ ଲଡୁମୁଆଁ ଶୀତଳାଦି ଘେନି
ଏ ବିଧିରେ ପୂଜାକଲା ସେ ଦିବସ ତିନି ।
ପାଦୋଦକ ପାଇ ଶିରେ କରଇ ଲେପନ
ଘେନଇ ପ୍ରସାଦ ସେହୁ ସୁଖେ ପ୍ରତିଦିନ ।
ଘରଣୀ ବୋଇଲା ତୋର ଏ କେମନ୍ତ କଥା
କାହୁଁ ଆଣି ପୂଜାକରୁ ମାଟିର ଦେବତା ।
ମନୁଷ୍ୟ ଶରୀର ତାର ଗଜମୁଖ ଗୋଟି
ପ୍ରପଞ୍ଚ ଦିଶଇ ପୁଣି ଅରୂପ ଭ୍ରୂକୁଟି ।
ବସୁ କୁମ୍ଭାର ବୋଇଲା ତୁହି ବଡ଼ ମନ୍ଦ
ଭକତଜନ ବତ୍ସଳ ଏ ପରମାନନ୍ଦ ।
ପାଦୋଦକ ସ୍ନାନୀୟ ଯେ ଲେପ ମଉଷଧି
ତିନିଦିନେ ଦେଖ ଭଲ ହେଲା କୁଷ୍ଟବ୍ୟାଧି ।
ଦେଖି ଆଶ୍ଚର୍ଯ୍ୟ ହୁଅନ୍ତି ସେହି ନଗ୍ରଜନେ
କୁଷ୍ଟବ୍ୟାଧି ଖଣ୍ଡିଲା ଏ ଦେବତା ପ୍ରସନ୍ନେ ।
ସମସ୍ତ ନଗରଜନେ କଲେ ତହୁଁ ପୂଜା
ବହୁ ଉପହାର ବଳି ଭୋଗ ଖଣ୍ଡ ଗଜା ।
ଖଟନ୍ତି ଯେ ନାନା ରୋଗୀମାନେ ସର୍ବେ ଆସି
ଖଣ୍ଡନ ହୁଅଇ ପାଞ୍ଚଦିନେ ବ୍ୟାଧି ଧ୍ୱଂସି ।
ଖଟିଛନ୍ତି ଅହର୍ନିଶି ହୋଇଣ ଜାଗ୍ରତ
ଖଣ୍ଡନ କରନ୍ତି ସର୍ବବିଘ୍ନ ଗଣନାଥ ।
ସେ ନଗରେ ବହୁଲୋକ ଅପୁତ୍ରକ ଥିଲେ
ପାଞ୍ଚରାତ୍ରି ଜାଗି ସେହୁ ପୁତ୍ର ଯେ ପାଇଲେ ।
ଏକଦିନେ ସେବାକଲେ ଦିଶନ୍ତି ସ୍ୱରୂପ
ଦଣ୍ଡକେ ଖଣ୍ଡିତ ହୁଏ ଯୁଗକର ପାପ ।
କାଶୀପତିର ଭାରିଯା ନାମ ଲୀଳାବତୀ
ତାର ଆଗେ ମୁଦୁସୁଲୀ ଯାଇଣ ଜଣାନ୍ତି ।
ଶୁଣ ଆଗୋ ଠାକୁରାଣୀ ଅପୂର୍ବ ଚରିତ
ବାସୁ କୁରାଳ ଏ ରାଜ୍ୟେ ହୋଇଛି ବିଖ୍ୟାତ ।
ଗଣନାଥ ବିଜେକଲେ ସେ କୁରାଳ ଘର
ଅନେକ ବାଞ୍ଛାକୁ ସିଦ୍ଧ କଲେ ଲମ୍ବୋଦର ।

ଆମ୍ଭେ ଅଟୁ ଅପୁତ୍ରକ ଆମ୍ଭ ପୁତ୍ର ନାହିଁ
ବିଘ୍ନ ରାଜାଙ୍କୁ ସେବିବା ରାଜାଙ୍କୁ ଜଣାଇ ।
କିଞ୍ଚିତ ଭକ୍ତିରେ ସେହୁ ବହୁ ଫଳଦାତା
ଶୁଣିଣ ଚଳଇ ତହୁଁ ସେ ରାଜ ବନିତା ।
ରାଣୀମାନେ ଜଣାଇଲେ ଯାଇଣ ରାଜାଙ୍କୁ
ସ୍ୱାମୀ ହେ ସେବା କରିବୁ ସେ ବିଘ୍ନରାଜଙ୍କୁ ।
ଦୂତ ମୁଖୁ ଶୁଣିଥିଲା ରାଜା ସେ ଉଦନ୍ତ
ସମଦଣ୍ଡ ଘେନି ବିଜେ ହୋଇଲା ତୁରିତ ।
ଦେଖନ୍ତି ସେ ଗଜାନନ ବିନାୟକ ମୂର୍ତ୍ତି
ବହୁ ଉପହାର ଦେଇ କରଇ ଭକତି ।
ସୁବର୍ଣ୍ଣ ସିଂହାସନରେ ପ୍ରଭୁଙ୍କୁ ବସାଇ
ପୁତ୍ର ଦାନକର ବୋଲି ମନରେ ବାଞ୍ଛଇ ।
ତତ୍‌କ୍ଷଣେ ଭଙ୍ଗାଇ ସେହି କୁରାଳର ଶାଳ
ଅଷ୍ଟରତ୍ନ ଜଡ଼ିତରେ ତୋଳାଏ ଦେଉଳ ।
ତୁଲେ ରଖିଛନ୍ତି ପଞ୍ଚାଳିଶ ଭାରିଯା
ଗଣେଶ ପାଦେ ଖଟନ୍ତି ଥାଇ ରାଣୀ ରାଜା ।
ସ୍ନାନ ନିତ୍ୟକର୍ମ ଆଦି ସାରି ନରପତି
ପତ୍ନୀମାନେ ପ୍ରତିଦିନ ଦାଣ୍ଡ ପହଁରନ୍ତି ।
ଘୋରା ଚନ୍ଦନ ହାଣ୍ଡିଏ ଘେନି ମହାବୀରା
ସେ ଆପଣେ କାଶୀପତି କରଇ ଯେ ହେରା ।
ରାଜ୍ୟବାଡ଼ି ସବୁ ତାର ସମର୍ପି ମନ୍ତ୍ରୀକି
ନିତ୍ୟାଚାରେ କରେ ରାଜା ଶ୍ରୀଗଣପତିଙ୍କି ।
ବରଷେ ପର୍ଯ୍ୟନ୍ତେ ରାଜା ଖଟଇ ବିନୟେ
ଲମ୍ବୋଦରର ମୂରତି ନ ଦେଖିଲେ ରାୟେ ।
ନିତ୍ୟ ଅନାହାରେ ବିନାୟକ ମନ୍ତ୍ର ଜପ
ଏ ବିଧିରେ ରହେ ରାଜା ମନେ କରି ତାପ ।
ବରଷେ ପର୍ଯ୍ୟନ୍ତେ ସେହୁ କଲା କୁଶଶଯ୍ୟା
ଆହାର ନିଦ୍ରା ମୈଥୁନ ସବୁ କରି ତ୍ୟଜ୍ୟା ।
ନିରାଶେ ରାଜନ କଲା ବ୍ରତ ଏକଗୋଟି
ପୁଣି ନୃତ୍ୟଗୀତ କରି ବରଷେକ ଖଟି ।
ରାଜାର ଦେଖନ୍ତେ ବରଦ୍ୟନ୍ତି ସମସ୍ତଙ୍କୁ
ଷଡ଼ବର୍ଷ ଖଟେ ରାଜା ଦୟା ନାହିଁ ତାକୁ ।
ଅନେକ ଶୀତଳ ଦ୍ରବ୍ୟ ଉପହାରମାନ
ଅଳଙ୍କାରରେ ଭୂଷିତ କରେ ଗଜାନନ ।
ଚରଣେ ଘାଗୁଡ଼ି ପୁଣି କରେ କରତାଳି
ଅନେକ ବିନୟେ ଖଟେ ମନର ହିୟାଳି ।
ନିତି ପ୍ରତି ଦିଅଇ ସେ ଶଏ ଆଠଦୀପ
ବହୁ ଭକ୍ତି କରି ରାଜା ନ ଦେଖେ ସ୍ୱରୂପ ।
ମୀନମାସ ଶୁକ୍ଳପକ୍ଷ ଚଉଠିର ରାତି
ଅମୃତଯୋଗେ ସେ ଦିନ ବିଜେ ଗଣପତି ।

ସ୍ନାନ ଷଟକର୍ମ ସାରି କାଶୀ ନରପତି
ବିଘ୍ନରାଜାଙ୍କୁ କରଇ ବହୁତର ସ୍ତୁତି ।
ଜୟ ଜୟ ଲମ୍ବୋଦର ଅଭୟ ଧବଳି
ଜୟ ଜୟ ଲମ୍ବୋଦର ଶଶାଙ୍କ ମଉଳି ।
ଜୟ ଜୟ ଲମ୍ବୋଦର ବିଘ୍ନ ବିନାଶନ
ଜୟ ଜୟ ଲମ୍ବୋଦର ଅନାଦି ଈଶାନ ।
ଜୟ ଜୟ ଲମ୍ବୋଦର ଅଭୟ ମୂରତି
ଜୟ ଜୟ ଲମ୍ବୋଦର ଅଗ୍ରେ ତୋତେ ଚିନ୍ତି ।
ଜୟ ଜୟ ଲମ୍ବୋଦର ପୂରାଅ ମାନସ
ଜୟ ଜୟ ଲମ୍ବୋଦର ସିଦ୍ଧି ଦାତାଈଶ ।
ଜୟ ଜୟ ବିଘ୍ନରାଜ ଅଟୁ ଅଣାକାର
ଦଧିବାମନ ରୂପ ତୁ ଦୟାଳୁ ସାଗର ।
ଭକତ ତାରଣ ପ୍ରଭୁ ଜୟ ଗଣପତି
ଭକ୍ତବତ୍ସଳ ନାଥ ତୁ କଣୟ ମୂରତି ।
ଯୋଗୀମାନଙ୍କର ଅଟୁ ତୁ ପରମବନ୍ଧୁ
ଧ୍ୟାନ ଧାରଣ ଅଜପା ଲୟ ତୁହି ସାଧୁ ।
ଯୋଗୀ ପୁରୁଷ ଶୟଳ ଜନଙ୍କର ଚିନ୍ତା
ପ୍ରଳୟ ଉଦ୍ଧାରକାରୀ ଅଟୁ ବରଦାତା ।
ସ୍ୱାମୀ ମେରୁତୁଲ୍ୟ ମଥା କ୍ଷୁଦ୍ର ବେନିଆଖି
ଚାହିଁଲେ କୋଟି ବ୍ରହ୍ମାଣ୍ଡ ତହିଁ ପାରୁ ଦେଖି ।
ପାର୍ବତୀ ନନ୍ଦନ ତୁହି କକ୍ଷା ଜଗଜ୍ଜେଠୀ
ଶୁଭ ଅନୁକୂଳ ନାଥ ତୋର ନାମ ଗୋଟି ।
ସ୍ୱାମୀ ବହୁତ ଭକ୍ତିରେ ତୁହି କରୁ ରକ୍ଷା
ଧାରଣା ପୁରୁଷ ତୁହି ମହାବିଦ୍ୟା ଦୀକ୍ଷା ।
ସ୍ୱାମୀ ହେ ତାଣ୍ଡବ ନୃତ୍ୟ ରଙ୍ଗରସ ଖେଡ଼େ
ମେରୁ ପର୍ବତ ଟଳିଲା ଯାହା ରାସକ୍ରୀଡ଼େ ।
ତେତିଶକୋଟି ଦେବତା ତୁମ୍ଭ ପାଦେ ବନ୍ଦେ
ଲଭିବି ପରମଗତି ତୁମ୍ଭର ପ୍ରସାଦେ ।
ସଂସାର ନାଶିଲା ଯହୁଁ ସେ ଯମଦେବତା
ଇନ୍ଦୁର ବାହନ କନ୍ଥ ଜଗତ କରତା ।
ସ୍ୱାମୀ ଧର୍ମ ଅର୍ଥ କାମ ମୋକ୍ଷ ଚଉବର୍ଗ
ସଂସାର ସାଗରକୁ ତୁ କରୁ ସିନା ଭୋଗ ।
ଭାଗ୍ୟବନ୍ତ ପଣ୍ଡିତ ତୁ ଦୃଷ୍ଟିବିଦ୍ୟା ସାଧି
ପର ଦୁଃଖରେ କାତର ଗୁଣେ ଗୁଣନିଧି ।
ବିଘ୍ନନାଶନ ହେ ସ୍ୱାମୀ ସର୍ବ ବରଦାତା
ଯାବତ ଦୋଷରୁ ନାଥ ତୁହି ଉଦ୍ଧାରନ୍ତା ।
ସ୍ୱାମୀ ତୋହର ଚରଣେ ଜନ୍ମେ ଜନ୍ମେ ସେବା
ଏ ଭବସାଗର ନାଥ ଅଭୟ ତୁ ଦେବା ।
ବିଘ୍ନରାଜାଙ୍କ ଚରଣେ ସଦା ମୋର ଆଶ
ଶୂଦ୍ର ମୁନି ଶାରଳାର ପୂରାଅ ମାନସ ।

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ବିନାୟକଙ୍କୁ ପ୍ରାର୍ଥନା କଲା କାଶୀପତି ।
ତହୁଁ ପ୍ରସନ୍ନ ନୋହିଲେ ଦେବ ଗଜାନନ
ଅନେକ କଷ୍ଟରେ ତପ କରଇ ରାଜନ ।
କହୁଁ କହୁଁ ନୟନରୁ ବହେ ଅଶ୍ରୁଜଳ
କାଳସର୍ପ ପରାୟେକ ଗର୍ଜେ ମହୀପାଳ ।
ରକତ କୁମୁଦ ପ୍ରାୟେ ଦିଶେ ବିନେଡ଼ୋଳ
ଗର୍ଜନ କରେ ନରେନ୍ଦ୍ର ବହେ ଅଶ୍ରୁଝାଳ ।
ଅତି କୋପାନଳେ ତାର କମ୍ପିଲାକ କାୟେ
ଗଣନାଥ ହୃଦୟରେ ପ୍ରହାରିଲା ପାୟେ ।
ତହୁଁ କିଞ୍ଚିତେ ଚାହିଁଲେ ସେ ପୁରୁଷୋତ୍ତମ
କାଳାନଳ ଅନଳରେ ହୋଇଲାକ ଭସ୍ମ ।
ସହସ୍ରେ ଯୋଦ୍ଧାଙ୍କୁ ଘେନି ଭକ୍ତି କରିଥିଲା
ଗଣନାଥ କୋପାନଳେ ଭସ୍ମ ହୋଇଗଲା ।
ଶେଷସୈନ୍ୟ ଯାହା ଥିଲେ ପଳାଇଲେ ଡରେ
ରାଜ୍ୟରେ ଉଲୁକାପାତ କଲେ ଲମ୍ବୋଦରେ ।
ଅଦଭୂତେ ସେ ରାଜ୍ୟରେ ଉପୁଜେ ଅରିଷ୍ଟି
ଗ୍ରାମ ତେଜି ପଳାଇଲେ ଲୋକେ ହୋଇ କଷ୍ଟୀ
ଅକଣ୍ଟକେ ରାଜ୍ୟ ନଷ୍ଟ କରିଲେ କୌତୁକେ
ପୁତ୍ର ପତ୍ନୀଘେନି ତହୁଁ ପଳାଇଲେ ଲୋକେ ।
ରହିଲେ ଯାଇଣ ପାଞ୍ଚଯୋଜନ ଅନ୍ତରେ
ବିନାୟକ ଚଳିଗଲେ ହିମବନ୍ତ ପୁରେ ।
ସମସ୍ତ କହିଲେ ଯାଇ ଶିବଙ୍କ ଆଗରେ
ଯେ ବିଧିରେ ଜୟ କଲେ ଯେମନ୍ତ ପ୍ରକାରେ ।
ଜୟ ହେ ଅନାଥ ନାଥ ଦୀନବନ୍ଧୁ ନାମ
ଜୟ ନୀଳାଦ୍ରିବିହାରୀ ଅଟ ଦାରୁବ୍ରହ୍ମ ।
ଉଦ୍ଧାର କରିବା ପାଇଁ ହେ ପ୍ରଭୁ ପତିତ
ବଡ଼ ଦେଉଳେ କାହିଁକି ପାତିଅଛ ନେତ ।
ଭୃତ୍ୟମାନଙ୍କ ଆରତ ନିବାରଣ ପାଇଁ
ଶ୍ରୀଭୁଜେ ଧରିଛ ଚକ୍ର ଆହେ ଭାବଗ୍ରାହୀ ।
କାହାକୁ କହିବି ପ୍ରଭୁ ଯେ ଇଚ୍ଛା ତୁମ୍ଭର
ତବ ପାଦେ ବନ୍ଧୁଅଛି ମୁହିଁ ନିରନ୍ତର ।
ଏହି ବନପର୍ବ ଅଟେ ସୁଧାମୟ ରସ
କର୍ଣ୍ଣେପଥେ ପିଅ କହେ ଶ୍ରୀ ଶାରଳା ଦାସ ।



## ମଣିକର୍ଣ୍ଣିକା ଓ ବାରାଣସୀ ବିବରଣ ଏବଂ ନିର୍ବାତକପଟ ବଧ

ଅଗସ୍ତିଙ୍କୁ ପଚାରିଲେ ମନୁ ନରପତି
କାଶୀପୁର ଧ୍ୱଂସକରି ଗଲେ ଗଣପତି ।
ସେ କଥା ଶୁଣି କିସ ସେ କଲେ ମୃତ୍ୟୁଞ୍ଜୟ
କହନ୍ତି ଅଗସ୍ତି ମୁନି ଶୁଣ ନୃପରାୟ ।
ଈଶ୍ୱର ବୋଇଲେ ତୋତେ କରିଲେ ଭକତି
ବିଶ୍ୱାସଘାତକୀ ହୋଇ ନାଶିଲୁ ସବୁନ୍ତି ।
ଗଣେଶ ବୋଇଲେ ମୋତେ ପ୍ରହାରିଲା ପାଦେ
ଭସ୍ମାନ୍ତ ହୋଇଲା ସେହୁ ମୋହର ପ୍ରସାଦେ ।
ଶୁଣି ବିସ୍ମୟ ହୋଇଲେ ଦେବ ପଞ୍ଚାନନ
ଦେବତାମାନଙ୍କୁ ଡାକି ବୋଇଲେ ବଚନ ।
ବହୁକାଳ ହିମବନ୍ତ ପୁରେ ଆମ୍ଭେ ଥିଲୁ
ତାଙ୍କ ପ୍ରୀତି ଉପୁଜାଇ ଯାଇ ନ ପାରିଲୁ ।
ଏଥିକି ଭୟ ନ କର ତୁମ୍ଭେ ହିମବନ୍ତ
ଯାବତ ଜନ୍ମେ ଆମ୍ଭର ଶ୍ୱଶୁର ତୁମ୍ଭେ ତ ।
କୋଟିଏ ବାରରେ ନାଶ ଗଲାଣି ଗଉରୀ
ସବୁଜନ୍ମେ ତୁମ୍ଭେ ଅଟ ପିଅର ତାହାରି ।
ଯାବତ ଜନ୍ମରେ ଅଟ ତୁମ୍ଭେ ତାର ପିତ
ସଦା କରି ଆସୁଅଛ ଆମ୍ଭଙ୍କୁ ପାଳିତ ।
ଏହା କହି ଗୌରୀ ଘେନି ବିଜେ ବୃଷ ପିଠି
ତୁଲେ ଶିବଗଣ ଗଲେ ଚତୁର୍ଦ୍ଦଶ କୋଟି ।
ଯେହୁ ଯାହାର ବାହନେ ସର୍ବେ ଆରୋହିଲେ
ଗଣପତିଙ୍କୁ ସଙ୍ଗରେ ଗୋଡ଼ାଇ ଚଳିଲେ ।
ଆପଣେ ଯହୁଁ ବିଜୟେ କଲେ ଦେବକାଶୀ
ତ୍ରିଦଶ ଦେବତାମାନେ ଗୋଡ଼ାଇଲେ ଆସି ।
ଚଞ୍ଚଳ ଆସୁ ହଜିଲା ତମୋନାଶ ମଣି
ଲେଉଟି ଚାହିଁଲେ କାହିଁ ପଡ଼ିଲା ଧରଣୀ ।
ଅଜପା ଗଣ୍ଡସ୍ଥଳରୁ ମଣି ପଡ଼େ ଖସି
ବେନିଦଣ୍ଡ ପରିଯନ୍ତେ ନ ପାଇଲେ କାଶୀ ।
କୋପେ ଭୂମି ବିଦାରିଲେ ଦେବ ଶୂଳହସ୍ତ
ଗଭୀର ଗର୍ତ୍ତେକ ହୋଇଗଲା ଭୂମିଗତ ।
ମେଖଳୀ ଗଙ୍ଗା ଆଉ ସେ ଗୋପ୍ୟାନୀ ବାହିନୀ
ଦକ୍ଷିଣୁ ବହୁଛି ରୁଦ୍ରମୂରତି ଯେ ଘେନି ।
ସେ ଗଙ୍ଗାର ମଧ୍ୟେ ଫୁଟେ ଯାଇ ମଣିକୁଣ୍ଡେ
ମହୋଦଧିର ସଙ୍ଗମ ହୋଇଲା ବ୍ରହ୍ମାଣ୍ଡେ ।
ନବକୋଟି ତୀର୍ଥଙ୍କର ସେହୁ ଅଟେ ନାଭି
ଧବଳାଙ୍ଗୀ ସରସ୍ୱତୀ ବିସ୍ତାର ସୌଭାଗୀ ।
ପୁଷ୍କର କୋଟିଏ ତୀର୍ଥ ଘେନିଣ ସଙ୍ଗରେ
ସଙ୍ଗମ ହୋଇଲା ଯାଇ ସେ ମଣିକୁଣ୍ଡରେ ।
ସେ ତୀର୍ଥଜଳରେ ପଶି ଯାଇ ସ୍ନାନ କଲେ
ସ୍ୱର୍ଗ ଦିଶଇ ନିଶ୍ଚଳ ନିରୋପି ଚାହିଁଲେ ।
ସ୍ନାନ ଉତ୍ତାରୁ ତର୍ପଣ କରିଲେ ଏଠାରେ
ପିତୃଲୋକେ ଦୃଶ୍ୟ ହୋଇ ଆନନ୍ଦ ଚିତ୍ତରେ ।

ପ୍ରାତଃ ଆହନିକ ଯେହ୍ନୁ କରେ ଏକାବେଳେ
ସେହ୍ନୁ ଯମଦଣ୍ଡେ ଗଞ୍ଜି ନୁହେଁ କେଉଁ କାଳେ ।
ବ୍ୟାସ ବୋଇଲେ ବାବୁରେ ଶୁଣ ତୁ ଯୁଧିଷ୍ଠି
ସପତ ବ୍ରହ୍ମାଣ୍ଡକୁ ଏ ମହାତୀର୍ଥ ଗୋଟି ।
ଆଉ ତୀର୍ଥମାନଙ୍କୁ ଯେ ଉପେକ୍ଷା କରନ୍ତି
ମଣିକର୍ଣ୍ଣିକା ତୀର୍ଥରେ ସ୍ନାହାନ ସାରନ୍ତି ।
ବାରେ ଆସି କେଶ ଏଥେ କଲେ ପ୍ରକ୍ଷାଳନ
ପିତୃଲୋକମାନେ ପାଇଥାଆନ୍ତି କାରଣ ।
ଏ ମଣି କର୍ଣ୍ଣିକା ତମ ବିଦାରଣ କୁଣ୍ଡ
ଈଶ୍ୱର ଛଡ଼ାଇ ଥାନ୍ତି ବ୍ରହ୍ମହତ୍ୟା ଦଣ୍ଡ ।
ତାଙ୍କ ବ୍ରହ୍ମହତ୍ୟା ଥିଲା ନ ଯୁଗ ପର୍ଯ୍ୟନ୍ତେ
ବ୍ରହ୍ମାଙ୍କ କପାଳ ଲାଗିଥିଲା ବାମହସ୍ତେ ।
ମହା ମହାହତ୍ୟା ଏଥେ ହୁଅଇ ମୋଚନ
ଗୋ ବ୍ରହ୍ମହତ୍ୟା ଖଣ୍ଡିଲେ ଦେବ ତ୍ରିଲୋଚନ ।
କହୁଛନ୍ତି ବ୍ୟାସମୁନି ଶୁଣ ହେ ଯୁଧିଷ୍ଠି
କେଉଁରୂପେ ଏଥେ ବିଜେ କରିଲେ ଧୂର୍ଜ୍ଜଟି ।
ବୃଷଭ ବାହନେ ବସି ଦେବ ଦେବ ସ୍ୱାମୀ
ବିଜୟ କରିଲେ ଆସି ପାତାଳର ଗାମୀ ।
ସଇନ୍ଦୁ ମସ୍ତକ ଶୋଭେ ଯୋଗ ତନ୍ତ୍ରମନ୍ତ୍ର
ପଞ୍ଚଦଶ ନୟନ ଯେ ପୁଣି ପଞ୍ଚବକ୍ତ୍ର ।
ମଳିଖ ନନ୍ଦୀ ପିଙ୍ଗଳ ଆଦି ପଞ୍ଚଜଟି
ପ୍ରପଞ୍ଚ ଶରୀର ସ୍ୱାମୀ ଦିଶନ୍ତି ଭ୍ରୂକୁଟି ।
ଗଙ୍ଗା ଯମୁନା ଯେ ସରସ୍ୱତୀ ବୈତରଣୀ
ତ୍ରିବେଣୀ ନଦୀ ବହଇ ଗୋପ୍ୟଭାବ ଘେନି ।
ପରମ ବ୍ରହ୍ମପୁରୁଷ ଅମୃତ ଶୀତଳ
ଦକ୍ଷେ ମାହେଶ୍ୱରୀ ଘେନି ଦିଶନ୍ତି ସୁଢ଼ଳ ।
ଦକ୍ଷିଣ ଦିଗରେ ଧାତା ଲିଙ୍ଗ ଗଙ୍ଗେଶ୍ୱର
ଇନ୍ଦ୍ର ହୋଇବେ ଯେ ଇନ୍ଦ୍ର କଳିଙ୍ଗ ଈଶ୍ୱର ।
ଦ୍ୱାଦଶ ଚନ୍ଦ୍ର ହୋଇଲେ ଦ୍ୱାଦଶ ମୂରତି
ଚନ୍ଦ୍ର ସୂର୍ଯ୍ୟ ସମୀରଣ ଯକ୍ଷ ପଶୁପତି ।
ଏହିମାନେ ଲିଙ୍ଗେ ଲିଙ୍ଗେ ହେଲେ ସେହିସ୍ଥାନେ
କହନ୍ତି ବ୍ୟାସେ ଶୁଣ ହେ ଧର୍ମର ସନ୍ତାନେ ।
ଧର୍ମେଶ୍ୱର କର୍ମେଶ୍ୱର ନନ୍ଦିକା ଈଶ୍ୱର
ରତ୍ନେଶ୍ୱର ଭଇରବ ଈଶ୍ୱରାବତାର ।
କପାଳେଶ ଯୋଗେଶ୍ୱର ପରମ ବୈଷ୍ଣବ
ଦ୍ୱାଦଶ ବିଶ୍ୱଦେବ ଯେ ବିଜେ ଏକଠାବ ।
ସପ୍ତତୀର୍ଥକୁ ଘେନିଣ କୁଣ୍ଡ ମଣିଭଦ୍ରା
ଯମେଶ୍ୱର ରୁଦ୍ରେଶ୍ୱର ବାମେଶ୍ୱର ଭଦ୍ରା ।
ବାମନ ରୁଦ୍ରଅନନ୍ତ କାଳାନ୍ତକ ରୂପ
ବିଜୟ ଶମ୍ଭୁ ସାକାର ଆବର ଅରୂପ ।

ଯମେଶ୍ୱର ଶୂନ୍ୟେଶ୍ୱର ଈଶ୍ୱର କନ୍ଦର୍ପ
ଶ୍ରୀବିନାୟକ ଆଦି ଯେ ମାନଧାତାଧିପ ।
ରାମେଶ୍ୱର ପାରେଶ୍ୱର ବେନି ଅବତାର
ଶ୍ରୀମହାରୁଦ୍ର ଅରୂପା ଶ୍ରୀନନ୍ଦିକେଶ୍ୱର ।
କୂର୍ମରୂପ ବରେହାର ରୂପେଣ ଯେ କାଶୀ
ପିଙ୍ଗଳ କାମେଶ୍ୱର ସେ ପର୍ଶୁ ବାରାଣସୀ ।
ତଦର୍ଥେ ଶ୍ରୀବିଶ୍ୱନାଥ ତହିଁ ସ୍ଥିର ଦେବ
ତହିଁଛନ୍ତି ପଞ୍ଚବିଂଶ କୋଟି ଲିଙ୍ଗଦେବ ।
ଅନନ୍ତ କୋଟି ଲିଙ୍ଗ ଯେ ଅନନ୍ତ ମୂରତି
ବିଜେଶ୍ୱର ଫିଜେଶ୍ୱର ବାରାଣସୀ ପତି ।
ଅଲକ୍ଷ ଶିରୀ ଘେନିଣ ବିଜେ ହିମବନ୍ତେ
ବିଜୟେ ପ୍ରସନ୍ନେ ନାରାୟଣ ବିଶ୍ୱନାଥେ ।
ବାରାଣସୀ ପୁରେ ପଶିଛନ୍ତି ଏକାବେଳେ
ବସନ୍ତି କପିଳା କାଶୀ ଭୁବନ ମଣ୍ଡଳେ ।
ଦେବଗଣମାନେ ତହିଁ ଅଇଲେ ପାଛୋଟି
ମୁକତି ତୀର୍ଥ ଘେନିଣ ବିଶ୍ୱନାଥେ ଖଟି ।
ପାଣ୍ଡବମାନଙ୍କୁ ଘେନି ପରାଶର ସୁତ
ମଣାଇ ନେଲେ ଆପଣେ ମଣିକର୍ଣ୍ଣି ତୀର୍ଥ ।
କହନ୍ତି ଯେ ବ୍ୟାସମୁନି ତୀର୍ଥଙ୍କ ମହିମା
ଶତ ଶତ ଲିଙ୍ଗଛନ୍ତି ବାରାଣସୀ ସୀମା ।
ଏହି ମହାତୀର୍ଥ ନବ କ୍ରୋଶ ପରିଯନ୍ତେ
କରିବା ତପ ପର୍ବତ ମୂଳେ ଜାଣ ଏଥେ ।
ଯେତେଦିନ ଥିବା ଏଥେ ହୋଇ ନିରାଧାର
ମନ ବଚନେ ନ କର କିଛି ପାପାଚାର ।
ଜୟ ଜୟ ବିଶ୍ୱନାଥ ବାରାଣସୀ କ୍ଷେତ୍ରେ
ମମକର୍ମେ ଧର୍ମ ପ୍ରାପ୍ତ କରାଅ ଏ ତୀର୍ଥେ ।
ତବ ପାଦେ ଲୟ ରଖ ମୋର ପଞ୍ଚଆତ୍ମା
ପରମ ପୁରୁଷ ତୁମ୍ଭେ ପରମ ମହାତ୍ମା ।
ଚନ୍ଦ୍ର ଦିବାକରଙ୍କର ଅଟ ତୁମ୍ଭେ ଜ୍ୟୋତି
ବିଶ୍ୱନାଥ ପ୍ରସନ୍ନରେ ଖଣ୍ଡ ମୋ ଦୁର୍ଗତି ।
ନମଇଁ ବିଶ୍ୱନାଥ ହେ ଗିରିଜା ବଲ୍ଲଭ
ସଦା ବିବୁଧାଦି ଜନେ ଜଣାନ୍ତି ତୋ ଭାବ ।
ନମୋ ସଦାଶିବ ଦେବ ତୁ ପରମ ଯୋଗୀ
ଶୈଳସୁତା ତୋ ଚରଣେ ନିରନ୍ତର ଭୋଗୀ ।
ଶୂଦ୍ରମୁନି ଶାରଳା ଯେ ଭାବଇ ନିରତେ
ମହାଘୋର କଳିକାଳୁ ଉଦ୍ଧରିବ ମୋତେ ।
ଶୁଣ ଆହେ ଯୁଧିଷ୍ଠିର ଏ ତୀର୍ଥର ଧର୍ମ
ତ୍ରେତୟା ଯୁଗରେ ଥିଲେ ଏଠାରେ ଶ୍ରୀରାମ ।
ଶ୍ରୀରାମ ଲକ୍ଷ୍ମଣ ସ୍ନାନେ କରିଲେ ଗମନ
ମେଖଳା ବେଶ୍ୟା ସେ ତୁଠେ କରୁଥିଲା ସ୍ନାନ ।

ଲକ୍ଷ୍ମଣ ବୋଇଲେ ମୋଢ଼ୀ ତୁହି ଲୋ ପାମରୀ
ଏ ତୁଠରେ ସ୍ନାନ କରୁ ବେଶ୍ୟା ହୋଇକରି ।
ବ୍ରହ୍ମ କପୋଳ ଛାଡ଼ିଲେ ଏ ଜଳେ ଧୂର୍ଜଟି
ତୁହି ଅବଗାହିଲୁ ଲୋ ପାମରୀ ପାପିଷ୍ଠୀ ।
ଉଦର ପୋଷିବା ପାଇଁ ପର ପୁଂସ କର
ତୋତେ ଯେ ଛୁଏଁ ସୁକୃତି ତୁଟଇ ତାହାର ।
ଲକ୍ଷ୍ମଣ ବଚନ ଶୁଣି ବୋଲଇ ଆକ୍ରୋଶି
ତୁ କିସ ଭାଗ୍ୟବନ୍ତରେ ବୋଲାଇ ତପସ୍ୱୀ ।
ତୁହି ଯେଉଁଦିନ ତୋର ତେଜିବୁରେ କାୟେ
ତୁ ତ ମରିଲେ ଏଠାରେ ହେବୁ ଲିଙ୍ଗଟାଏ ।
ମୁଁ ମଧ୍ୟ ମଲେ ଏଠାରେ ହେବି ଏକ ଲିଙ୍ଗ
ସତ ଅସତ କିସରେ ବିଚାରୁଛୁ ଅଙ୍ଗ ।
ଶୁଣିଣ ଶ୍ରୀରାମଚନ୍ଦ୍ର ଆଶ୍ଚର୍ଯ୍ୟ ହୋଇଲେ
ପାଶେ ଯାଇ ବିଶ୍ୱନାଥ ଦେବଙ୍କୁ ପୁଚ୍ଛିଲେ ।
ବେଶ୍ୟାଏ କର୍ଣ୍ଣିକାତୀର୍ଥେ ବୁଡ଼ ପାରୁଥିଲା
ତାକୁ ଦେଖିଣ ଲକ୍ଷ୍ମଣ ନାନା ଗାଳିଦେଲା ।
ସେ ବେଶ୍ୟା ବୋଲେ ତପସ୍ୱୀ ମୋର ପାପଅଙ୍ଗ
ତୁ ମଲେ ମୁଁ ମଲେ ମୁକ୍ତି ହୋଇ ହେବୁ ଲିଙ୍ଗ ।
ସତ କି ମିଛ ଏ କଥା ପୁଚ୍ଛିଲେ ଶ୍ରୀରାମ
ସମସ୍ତ ଏକ ହୋଇବ ଧର୍ମ କି ଅଧର୍ମ ।
ଅତି କଷ୍ଟ ପାଇକରି ତୋତେ ଯେ ସେବିବ
ଦୁଃଖେ ସେବିଲାର ଲୋକ ଲିଙ୍ଗେକ ହୋଇବ
ସେ ପାମରୀ ସଦା ପର ପୁରୁଷରେ ରତ
ସେ କିପାଁ ଲିଙ୍ଗେକ ହେବ ବୋଲ ବିଶ୍ୱନାଥ ।
ତା ଶୁଣି ଶିବ ବୋଲନ୍ତି ରାମଙ୍କ ଅଗ୍ରତେ
ଅବଶ୍ୟ ଲିଙ୍ଗେକ ହେବ ପ୍ରବେଶିଲେ ଏଥେ ।
ତପୋଧନ ପ୍ରାୟେ ଯେହ୍ନୁ ତପସ୍ୟା କରନ୍ତି
ଦେବରାଜ ସମାନରେ ଲିଙ୍ଗେକ ହୁଅନ୍ତି ।
ସୁଖ ଭୋଗେ ଥାଇ ଯେହୁ ମୋତେ କରେ ସେବା
ଦୁର୍ଲ୍ଲଭ କରି କଷ୍ଟେ ସେ ଭୋଗପାଏ ବାବା ।
ଶୁଣି ରାମ ଲକ୍ଷ୍ମଣଙ୍କୁ ବୋଇଲେ ଯେ ବାଛି
ଚାଣ୍ଡାଳୀ ହେଲେହେଁ ତୁହି ନ ବୋଲିବୁ କିଛି ।
କହନ୍ତି ବ୍ୟାସ ମହର୍ଷି ଜ୍ଞାନୀ ସର୍ବଜ୍ଞାତା
ବାବୁ ଏମନ୍ତ ଚରିତ ପୁଣ୍ୟତୋୟା କଥା ।
ଏକ କରସ୍ଥଳେ ଜାଣ ଶତଲିଙ୍ଗ ଅଛି
ପାଦକରେ ଶତଲିଙ୍ଗ ପ୍ରତ୍ୟକ୍ଷରେ ବାଛି ।
ଶୁଣ ଆହେ ମନୁରାୟେ ବଦନ୍ତି ଅଗସ୍ତି
ଅମର ସ୍ୱର୍ଗପୁରରେ ବିଜେ ସୁରପତି ।
ପାଣ୍ଡବଙ୍କ ବନବାସେ କହିଲେ ନାରଦ
ବାରାଣସୀ କ୍ଷେତ୍ରେ ପୂଜୁଛନ୍ତି ସଦାନନ୍ଦ ।

ମକର ମାସର ଶୁକ୍ଳ ଏକାଦଶୀ ତିଥି
ଭୌମବାରରେ ଆରଦ୍ରା ନକ୍ଷତ୍ର ଯୁକତି ।
ଗର ନାମରେ କରଣ ସିଦ୍ଧନାମେ ଯୋଗ
ମକର ସଂକ୍ରାନ୍ତି ଅଷ୍ଟାବିଂଶ ଦିନ ଭୋଗ ।
ଉଦୟଗିରି ହରଣ୍ୟଗର୍ଭ ବୋଲି ପୁର
ଉଦୟଗିରି କପଟ ତହିଁର ଠାକୁର ।
ସତ୍ୟଯୁଗେ ତ୍ୱଷ୍ଟାଋଷି ଇନ୍ଦ୍ରର ବିବାଦେ
ଦଧୀଚି ଅଙ୍ଗ କପଟ କରିଲାକ ହାଦେ ।
ଭୂତ ମହର୍ଷିକି ସେ କପଟ ପିନ୍ଧି ମାରି
ସେ ହିରଣ୍ୟ ଗର୍ଭେ ପୁଣି ଥୁଏ ଯତ୍ନ କରି ।
କପଟ ରହିଲା ତହିଁ ବରଷ ଅର୍ବୁଦ
ସେହି କପଟରୁ ପୁଣି ପୁତ୍ରେ ହେଲା ଜାତ ।
ଉଦେ କପଟ ବୋଲିଣ ହେଲା ତାର ନାମ
ପୁରୁରବା ସଂହାରିଲେ କରିଣ ସଂଗ୍ରାମ ।
ତା ପୁତ୍ର ମେରୁ କପଟ ବୋଲି କହି ବୀର
ତାକୁ ମାରେ ବିଶ୍ୱାବସୁ କରିଣ ସମର ।
ମେଦ କପଟ ବୋଲିଣ ତାହାର ନନ୍ଦନ
କପଟ ବିରାମ ଏହା ପୁତ୍ର ଖ୍ୟାତପନ୍ନ ।
କୃଷ୍ଣ ଅବତାରେ କୃଷ୍ଣ କରିଲେ ନିଧନ
ରତ୍ନକପଟ ହୋଇଲା ତାହାର ନନ୍ଦନ ।
ଏହାର ନନ୍ଦନ ହେଲା କପଟ ଯେ ନୃପ,
ନାରାୟଣ ଅବତାରେ ହରିଲେ ତା ଦର୍ପ ।
ଏହାର ନନ୍ଦନ ବଜ୍ର କପଟ ବୋଲିଣ
ନହୁଷ ମାଇଲେ ତାକୁ ସଂଗ୍ରାମ କରିଣ ।
ବଜ୍ର କପଟର ଚାରିପୁତ୍ର ଦୁହିତାଏ
କୁମ୍ଭୀରୀ କିନ୍ନରୀ ବକା ହିଡ଼ିମ୍ବ ତନୟେ ।
ଦୁହିତାଏ ଜନ୍ମ ତାର ନାମ ହିଡ଼ିମ୍ବିକୀ
ଆଦ୍ୟ ବନବାସେ ଭୀମ ମାଇଲା ଚାରିଙ୍କି ।
ହିରଣ୍ୟ ଗର୍ଭେ ରହିଲା ନିର୍ବାତ କପଟ
ବାଳ ଆଦିତ୍ୟକୁ ଜିଣି ତା ତେଜ ପ୍ରତ୍ୟକ୍ଷ ।
ସୂର୍ଯ୍ୟ ମଣ୍ଡଳ ରଥରେ ସଦା ସେ ଆରୋହୀ
ତିନି ଅରବୁଦ ଯୋଦ୍ଧା ତୁଲେ ଥାଏ ରହି ।
ସତ୍ୟଯୁଗେ ସ୍ୱର୍ଗପୁରେ ଦେଲା ସେହୁ ଧାଡ଼ି
ସଦାନନ୍ଦ ବରେ ସଦା ଭୟ ଭ୍ରାନ୍ତି ଛାଡ଼ି ।
ତ୍ରେତାଯୁଗେ ଧାଡ଼ି ଦେଲା ଯାଇ ବହୁବାର
ବହୁ ଅବସ୍ଥା ପାଇଲେ ତହିଁ ସୁରେଶ୍ୱର ।
ସତ୍ୟ ତ୍ରେତୟା କେବଳ ଏ ଦୁଇ ଯୁଗରେ
ଚୌରାଅଶୀ ଥର ଧାଡ଼ି ଦେଲା ସେ ସ୍ୱର୍ଗରେ ।
ଥରକୁ ଥର ବାସବ ପାଇ ପରାଜୟ
ବହୁ ବିକଳେ ଭାଳଇ ଆପଣା ହୃଦୟ ।

କୁମ୍ଭମାସ କୃଷ୍ଣପକ୍ଷ ଦ୍ୱିତୀୟାର ତିଥି
ସଉରି ବାରରେ ହସ୍ତା ନକ୍ଷତ୍ର ଯୁକତି ।
ବିଷ୍ଟିନାମେ କରଣ ଯେ ବ୍ରହ୍ମନାମେ ଯୋଗ
ନାରଦ କହିଲେ ଇନ୍ଦ୍ର ଦେବତାଙ୍କ ଆଗ ।
ତ୍ରେତାଯୁଗେ ଧାଡ଼ି ଦେଲା ଯୁଗ ପରିଯନ୍ତେ
ଅନେକ ଅବସ୍ଥା ପାଇଲେ ଯେ ଶଚୀନାଥେ ।
ସତ୍ୟ ତ୍ରେତୟା ଦ୍ୱାପର ଯୁଗ ଆଦି କରି
ଚୌରାଶୀ ବେଳ ଅମରପୁରେ ଦେଲା ଧାଡ଼ି ।
ଶୁଣ ଆହୋ ପୁରନ୍ଦର ଦେବତାଙ୍କ ସଜ
ନିର୍ବାତ କପଚ ସ୍ୱର୍ଗେ ଧାଡ଼ିଦେବ ଆଜ ।
ସମସ୍ତ ସଇନ୍ୟ ସାଜିଲା ସେ ସମଦଣ୍ଡ
ମୁଁ ଦେଖି ଅଇଲି ତୁମ୍ଭେ ରଥମାନ ମଣ୍ଡ ।
ଆସିଲଇଁ ତେଣୁ ମୁହିଁ ଅତି ବେଗ କରି
ବୋଇଲା ଅମର ସ୍ୱର୍ଗ ଆଜି ଦେବି ଚୁରି ।
ନାରଦ ମୁଖୁଁ ଏମନ୍ତ କଥାମାନ ଶୁଣି
ସ୍ତମ୍ଭୀଭୂତେ ବସିଲେ ସେ ଦେବ ବଜ୍ରପାଣି ।
ଛାମୁରେ ବସିଅଛନ୍ତି ଜ୍ଞାନୀ ବୃହସ୍ପତି
ବୋଇଲେ ସାଜହେ ଇନ୍ଦ୍ର ସୈନ୍ୟ ସେନାପତି ।
ଇନ୍ଦ୍ର ବୋଲେ ବୃହସ୍ପତି ମନ୍ତ୍ରୀଙ୍କ ଅଗ୍ରତେ
ଭୃଗୁଙ୍କର ତହୁଁ ଜାତ ହେଲେ ତିନି ପୁତ୍ରେ ।
ଦେବତା ଅସୁର ଆମ୍ଭେ ଅଟୁ ବଳ ବେନି
ଦେବଗୁରୁ ହେଲେ ତୁମ୍ଭେ ମନ୍ତ୍ରୀ ମହାଜ୍ଞାନୀ ।
ଅସୁରଙ୍କ ଗୁରୁ ଶୁକ୍ର ହୋଇଲେ ଯୁକତେ
ତାହାଙ୍କର ବୁଦ୍ଧିବଳେ ରାଜ୍ୟ ଯେ ସଂପ୍ରତେ ।
ଶୁକ୍ରଙ୍କ ବଚନେ ସେହି ଘେନେ ମୋର ପୁରୀ
ତୁମ୍ଭରି ବୁଦ୍ଧିବଳେ ମୁଁ ବେଳେ ବେଳେ ହାରି ।
ଅସୁର ପାମର ରାଜ୍ୟ ଘେନିଯାଏ ବଳେ
ବୃହସ୍ପତି ଅଗ୍ରେ ଇନ୍ଦ୍ର ଦେବତା କହିଲେ ।
ବୃହସ୍ପତି ତାହା ଶୁଣି ହୋଇଲେ ବିସ୍ମୟ
ବୋଇଲେ କହୁଛ ତହୁଁ ହେଲା ପରିଚୟ ।
ବୃହସ୍ପତି ବୋଇଲେ ତୁ ବେଳ ଅପସରି
ଏଡ଼େ ସନ୍ଦେହ କଥା ତୁ ମୋତେ ନ ବିଚାରି ।
ବହୁ ପ୍ରକାରେ ବିନୟୀ ବୋଲନ୍ତି ବାସବେ
ଗତକଥା ଛାଡ଼ି ମୁହିଁ ପଚାରୁଛି ଏବେ ।
ବୃହସ୍ପତି ବୋଇଲେ ତୁ ଶୁଣ ମଘବାନ
ନିର୍ବାତ କପଚର ଯେ ସନ୍ଦେହ ବିଧାନ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ସର୍ବେ ଦେବଗଣ
ନିର୍ବାତ କପଚ ସମ ନ ହୁଅନ୍ତି ଜାଣ ।
ସତ୍ୟଯୁଗେ ତାର ସଙ୍ଗେ ଯୁଦ୍ଧ କଲେ ଧାତା
ଅନେକଥର ଯୁଦ୍ଧରେ ହାରିଲେ ବିଧାତା ।
ତ୍ରେତାରେ ରୁଦ୍ର ଦେବତା କରିଲେ ସମର
ସେ ମଧ୍ୟ ହାରିଲେ ତାକୁ ଯୁଦ୍ଧେ ଶତେବାର ।
ଦ୍ୱାପର ଯୁଗେ ସମର କଲେ ଭଗବାନ
ସେହି ହାରିଗଲେ ଯାତୁଧାନର ସଙ୍ଗେଣ ।
ତୁ ଯେ ପଚାରୁ ନିର୍ବାତ କପଚର ତଥ୍ୟ
କେଉଁ ରୂପରେ ସେ ବଧ ହୋଇବ ଦଇତ୍ୟ ।
ଅନେକ କଷ୍ଟରେ ବଧ ହେବ ସେହୁ ଯାଇଁ
ଏକମନେ ଶୁଣ ତୁହି ଶଚୀଦେବୀ ସାଇଁ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଇନ୍ଦ୍ର ଚାରିଦେବେ
ଏହି ଚାରି ଦିଗପାଳ ଏକତ୍ରେ ଜନ୍ମିବେ ।
ତାହାଙ୍କର ହସ୍ତେ ତେବେ ଦୈତ୍ୟହେବ ହତ
ଶୁଣ ଆହେ ପୁରନ୍ଦର କହିଦେଲୁ ସତ ।
ତାହା ଶୁଣି ଇନ୍ଦ୍ର ଦେବ ହୋଇଲେକ ମୂର୍ଚ୍ଛା
ଚେତି ଉଠିଣ ମନ୍ତ୍ରୀଙ୍କୁ ପୁଣି କଲେ ପୁଚ୍ଛା ।
ଆଉ ତୋତେ ନ ପଚାରେ ନିର୍ବାତ ବାରତା
ମୋତେ ଅସମ୍ଭବ ହେଲା ତୋ କହିବା କଥା ।
ମୋର ଅଗୋଚର କଥା କହୁ ବୃହସ୍ପତି
ଚାରି ଦିଗପାଳ କାହୁଁ ହେବେ ଏକମୂର୍ତ୍ତି ।
ଚାରିଦେବେ ଜନ୍ମି କାହିଁ ହେବେ ଏକମୂର୍ତ୍ତି
ତେଣୁ ମୋର ଆଶାନାହିଁ ଆଉ ବାରସ୍ୱତି ।
ମୁଁ ପୁଚ୍ଛିଲି ବିପଦର କାଳେ ଯେଉଁ ବାକ୍ୟ
ତୁ କହିଲୁ ଅଗୋଚର ଯେ କଥା ଅଶକ୍ୟ ।
ନିର୍ବାତକପଚ ନ ମରିବ କଦାଚିତେ
ଆବର ସ୍ୱର୍ଗପୁରେ ମୁଁ ବସିବି କେମନ୍ତେ ।
ରାଜ୍ୟଭାର ସମ୍ପଦ ମୁଁ କରିବଇଁ ତେଜ୍ୟା
କ୍ଷୀରୋଦ ଶାୟୀ ହୋଇ ମୁଁ କରିବଇଁ ଶଯ୍ୟା ।
ଶୁଣି ବୃହସ୍ପତି ବୋଲେ ଶୁଣ ଆଖଣ୍ଡଳ
ରକ୍ଷା ହୋଇବ ତୋହର ଏବେ ସ୍ୱର୍ଗଆଳ ।
ଧର୍ମରେ ଉଦିତ ହୋଇ ହୋଇଛି କାରଣ
ଚାରିଦିଗପାଳ ଏକମୂର୍ତ୍ତି ଅଛି ଜାଣ ।
ଏଡ଼େବଡ଼ ସମ୍ପଦ ଯେ ତ୍ରିଲୋକ ଚରିତ
ବ୍ରହ୍ମା ବିଷ୍ଣୁ ଶିବ ହୋଇଛନ୍ତି ଏକଭୂତ ।
ତାହାଙ୍କ ହସ୍ତେ ନିର୍ବାତ କପଚ ମରିବ
ବାସବ ବୋଇଲେ ଏହା କେମନ୍ତେ ହୋଇବ ।
ବୃହସ୍ପତି ବୋଇଲେ ସେ ତୋର କୁଳେ ଜାତ
କୋଇନ୍ତା ଦେବୀ ନନ୍ଦନ ବୀରବର ପାର୍ଥ ।
ନିର୍ବାତ କପଚ ବଧ ହେବ ତାରେ ହସ୍ତେ
ଇନ୍ଦ୍ର ବୋଇଲେ ଏ କଥା କହୁଛ କେମନ୍ତେ ।
ଅର୍ଜ୍ଜୁନକୁ ଏଡ଼େ କୋପ କିପାଇଁ ପଣ୍ଡିତେ
ପାର୍ଥ ବଧ କରାଇବୁ ନିର୍ବାତର ହସ୍ତେ ।

ସେହୁ ଅବା କେଉଁ ଦୋଷ କରିଛି ତୋ ଠାରେ
ତାହାକୁ ମରାଉଅଛୁ ଅସୁର ହସ୍ତରେ ।
ବୃହସ୍ପତି ବୋଇଲେ ତୁ ଶୁଣ ପୂର୍ବ କଥା
ସାବଧାନେ ଶୁଣ ତୁହି ଅର୍ଜୁନ ବ୍ୟବସ୍ଥା ।
ସତ୍ୟଯୁଗେ ହର ବ୍ରହ୍ମା ହୋଇଲେ ବିବାଦୀ
ବ୍ରହ୍ମା ବସିଥିଲେ ପଞ୍ଚବେଦକୁ ଆରାଧି ।
ରକ ସାମ ଯଜୁର୍ବେଦ ଅଥର୍ବାଦି ଚାରି
ଅଜପା ବେଦ ଗାୟତ୍ରୀ ବାକ୍ୟ ଆଦିକରି ।
ବ୍ରହ୍ମା ବସିଣ ଏ ବେଦ କରନ୍ତେ ଗାୟନ
ବିଶ୍ୱନାଥ ଦେବଙ୍କର କମ୍ପିଲା ଆସ୍ଥାନ ।
ତହୁଁ ଧ୍ୟାନ ଯୋଗାରୂଢ଼ ବ୍ରହ୍ମାଙ୍କୁ ସେ ଭେଟି
କୋପଭରରେ ସମସ୍ୟା କରନ୍ତି ଧୂର୍ଜ୍ଜଟି ।
ତୁ ହୋ ଧାତା ପାପ ପୁଣ୍ୟ କିଛି ନ ବିଚାରୁ
ଚାରିମୁଖେ ପାଞ୍ଚବେଦ କିପାଁ ତୁ ଉଚ୍ଚାରୁ ।
ବିଶେଷ ଅଟଇ ତୋର ଚାରୋଟି ବଦନ
ବାମ ମୁଖରେ ଅଥର୍ବ କରି ତୁ ଅଧ୍ୟାନ ।
ଡାହାଣ ଦିଗରେ ଅଛି ଯେଉଁ ମୁଖ ତୋର
ସେ ମୁଖରେ ସାମବେଦ ଯତ୍ନରେ ଉଚ୍ଚାର ।
ଆଗରେ ଯେଉଁ ବଦନ ହୋଇଛି ନିର୍ମିତ
ଯଜୁର୍ବେଦକୁ ତହିଁରେ କର ତୁ ସଞ୍ଚିତ ।
ପଛଭାଗରେ ଯେବଣ ବଦନ ରହିଛି
ରକବେଦ ପଢ଼ ସେହି ବଦନେ କହୁଛି ।
ଏମନ୍ତେ ଏ ଚାରିବେଦ ଚାରି ବଦନକୁ
ଆବର୍ ବଦନ କାହିଁ କହନି ଆମ୍ଭଙ୍କୁ ।
ବ୍ରହ୍ମା ଶୁଣିଣ ବୋଇଲେ ତହୁଁ ପଞ୍ଚାନନ
ଜପ ଜପ ଶିଶୁବେଦ କଲେ ଅଧ୍ୟୟନ ।
ନଟକାର ଲୋକ ସିନା କରନ୍ତି ଏ କୃତ୍ୟ
ମୁଣ୍ଡର ଉପରେ ମୁଣ୍ଡ ଜନ୍ମାନ୍ତି ତ୍ୱରିତ ।
କହୁଁ କହୁଁ ରୁଦ୍ରଦେବ ହେଲେ ମହାକୋପୀ
ସେ ମୁଣ୍ଡ ମୋଡ଼ିଲେ ହର ହୋଇ ବିଶ୍ୱରୂପୀ ।
ସେହି ମୁଣ୍ଡ ଛିଡ଼ିଗଲା ବେଗେ ଧାତାଙ୍କର
ତକ୍ଷଣେ ଲାଗିଲା ସଦାଶିବ ବାମକର ।
ଶୂଳ ଘେନିଣ ଈଶ୍ୱର ତକ୍ଷଣେ ବିଦାରି
କରୁ ନ ଛାଡ଼ିଲା ଶିଶୁବେଦ ସେ ଉଚ୍ଚାରି ।
ଧାତାଙ୍କର ମସ୍ତକରୁ ବହଇ ରୁଧିର
ବ୍ରହ୍ମରାକ୍ଷସେକ ତହୁଁ ହେଲେ ଅବତାର ।
ସେ ରାକ୍ଷସ ବିଧାତାକୁ ଖାଇବାକୁ ମାଗେ
ବ୍ରହ୍ମା ବୋଇଲେ ଈଶ୍ୱରେ ଖାଅଯାଇ ବେଗେ ।
ଧାତାର ବଚନ ଶୁଣି ଧାଏଁ ବ୍ରହ୍ମଦୈତ୍ୟ
ଭୟ ପାଇ ପଳାଇଲେ ତହୁଁ ବିଶ୍ୱନାଥ ।

ଦେବତାମାନଙ୍କ ପୁରେ ପଳାଇ ପଶିଲେ
ବ୍ରହ୍ମହତ୍ୟା କଲୁ ବୋଲି କେହି ନ ଚାହିଁଲେ ।
କ୍ଷୀର ସମୁଦ୍ରକୁ ହର ପଡ଼ିଲେକ ଡେଇଁ
ସେ ବ୍ରହ୍ମରାକ୍ଷସ ପଛେ ଅଛଇ ଗୋଡ଼ାଇ ।
ଆହେ ନାରାୟଣ ରଖ ପଶିଲି ଶରଣ
ଉର୍ଦ୍ଧ୍ୱେ ଡାକଦେଲେ ଶିବ କମ୍ପିଲା ଆସନ ।
କୋଳ କରିଣ ହରଙ୍କୁ ଧରି ନାରାୟଣ
ଚକ୍ର ଧରି ରାକ୍ଷସକୁ ଚାହିଁଲେ କୋପେଣ ।
ଭୟେ ସେ ବ୍ରହ୍ମରାକ୍ଷସ ରହିଲାକ ଦୂରେ
ଆକ୍ରୋଶି ରହିଲା ସେହୁ ବିଷ୍ଣୁଙ୍କ ଆଗରେ ।
ଈଶ୍ୱରଙ୍କ କରେ ଯେଉଁ ବ୍ରହ୍ମା ମୁଣ୍ଡ ଅଛି
ରାକ୍ଷସ ମାଗେ ଖାଇବି କ୍ଷୁଧାର୍ତ୍ତୀ ରହିଛି ।
ବାମକରେ ମୁଣ୍ଡ ଧରି କଲେ ଚକ୍ରାଘାତ
ମୂଷଳ ଧାରା ପ୍ରମାଣେ ବହିଲା ଶୋଣିତ ।
ସେହି ଶୋଣିତ ବହିଲା ସହସ୍ରେ ବରଷ
ଶାନ୍ତ ହୋଇଣ ରୁଧିର ଭକ୍ଷିଲା ରାକ୍ଷସ ।
ବିଧାତା ରୁଧିରୁ ଜାତ ସସ୍ର ତାର ନାମ
ହରିଙ୍କି ଚାହିଁଣ ସେହୁ ମାଗଇ ସଂଗ୍ରାମ ।
ବ୍ରହ୍ମାଙ୍କର ସେ ମୁଖରେ ନିଜ ରକ୍ତ ଭରି
ଶିବ ବିଭୂତି ପୂରାଇ ମର୍ଦ୍ଦି ଯତ୍ନକରି ।
ତହିଁରୁ ଏକ ପୁରୁଷ ହୋଇଲା ଜନମ
ପ୍ରଶସ୍ତ ବୋଲିଣ ତହୁଁ ଦେଲେ ତାର ନାମ ।
ତାହାକୁ ବୋଇଲେ ହରି ମୋର କଥା ଶୁଣ
ସହସ୍ର ସଙ୍ଗରେ ଯାଇ ତୁହି କର ରଣ ।
ନାରାୟଣଙ୍କ ବଚନେ ଧାମଇଁ ପ୍ରଶସ୍ତ
ସହସ୍ର ସଙ୍ଗରେ ରଣ କରେ ଅପ୍ରମିତ ।
ଦୁହେଁ ମୁଥ ମରାମରି ହୋଇଲେ ଅପାର
ବ୍ରହ୍ମାଣ୍ଡ କମ୍ପିଲା ତାଙ୍କ ହେଉଁ ରଣଘୋର ।
ସହସ୍ର ବର୍ଷ ପର୍ଯ୍ୟନ୍ତ ଲାଗିଲାକ ଗୋଳ
ସିନ୍ଧୁ ମନ୍ଥନ ପରାୟେ ଶୁଭିଲା ଚହଳ ।
ନାନାଦି ଅରିଷ୍ଟିମାନ ଦେଖିଣ ଅଚ୍ୟୁତ
ଦୁହିଙ୍କ ସମୀପେ ଯାଇ କରିଲେ ନିବର୍ତ୍ତ ।
ବୋଇଲେ ଏ ଯୁଗେ ଆଉ ନ କର ସମର
ତ୍ରେତୟା ଯୁଗରେ ପୁଣି ହେବ ଅବତାର ।
ବ୍ରହ୍ମା ଅଂଶେ ଜାତ ହେବ ସସ୍ର ବଳବନ୍ତା
ବାଳି ନାମରେ ବିଦିତ ହେବ ଯୁଦ୍ଧଜିତା ।
ପ୍ରଶସ୍ତ ତୁ ଆମ୍ଭବଂଶେ ପୁଣି ଅବତରି
ତୋ ନାମ ହବ ସୁଗ୍ରୀବ ବୀର ବୋଲିକରି ।
ସେ ଯୁଗରେ ଦୁହିଁଙ୍କର ହୋଇବ ସମର
ତ୍ରେତାଯୁଗେ ତୁମ୍ଭେ ଦୁହେଁ ହେବ ଅବତାର ।

ରାମ ଅବତାରେ ବାଳି ବଧି ରଘୁବୀର
ତୋତେ ଘେନିଯିବେ ସଙ୍ଗେ ଲଙ୍କାର ଭିତର ।
ଦ୍ୱାପର ଯୁଗରେ ପୁଣି ହେବ ଉତପନ୍ନ
ନାମ ହୋଇବ ସେକାଳେ କର୍ଣ୍ଣ ଯେ ଅର୍ଜ୍ଜୁନ ।
ପ୍ରଶସ୍ତର ନାମ ତହିଁ ହୋଇବ ଅର୍ଜ୍ଜୁନ
ସହସ୍ର ନାମ ବହିବ ବୀରବର କର୍ଣ୍ଣ ।
ଶୁଣ ଆହେ ପୁରନ୍ଦର ବୋଲେ ବୃହସ୍ପତି
ଆଦିତ୍ୟଙ୍କୁ ଦେଲେ ବ୍ରହ୍ମା ଦେବତା ଶ୍ରୀପତି ।
ତୋର ଗୋଚରେ ପ୍ରଶସ୍ତ ଦେଲେ ଯତ୍ନକରି
ଆଦିତ୍ୟ ଔରସେ ଜନ୍ମେ ବାତ ନାମ ଧରି ।
ତୋହର ଅଂଶରୁ ଜାତ ହେଲେ ସୁଗ୍ରୀବର
ଏହା ତ ଗଲା ତ୍ରେତୟା ଯୁଗଙ୍କ ବେଭାର ।
ପୁଣି ଦ୍ୱାପରେ ଆଦିତ୍ୟ କୋଳେ ଜାତ କର୍ଣ୍ଣ
ତୋର ବଂଶେ ଜାତ ପୁଣି ହୋଇଲେ ଅର୍ଜ୍ଜୁନ ।
ଏବେ ଶୁଣ ଇନ୍ଦ୍ରଦେବ ହୋଇ ସାବଧାନ
ଏ ବିଧିରେ ଚାରିବେଦ ଏକମୂର୍ତ୍ତି ଜାଣ ।
ପୂର୍ବର ବିଧାନ ମାନ କହି ବୃହସ୍ପତି
ବୋଇଲେ ତୁ ଏବେ ଶୁଣ ଅମରାଧିପତି ।
ବ୍ରହ୍ମାଙ୍କର ଶିର ବାସୁଦେବଙ୍କ ରୁଧିର
ଈଶ୍ୱର ମାଂସ ବିଭୂତି ମିଶେ ଅନ୍ତଃପୁର ।
ପୁଣି ବାସବ ରେତ ତ ହୋଇଲା ସଂଯୋଗ
ଶେଷେ ଧନଞ୍ଜୟ ହେଲା ତୋହର ଆତ୍ମଜ ।
ଆବର ସେହୁ ଜନମ ମାନବୀର ଗର୍ଭେ
ତେଣୁ ଦୈତ୍ୟ ନାଶଯିବ ତୋହର ଆହବେ ।
ବୃହସ୍ପତି କହିଲେ ଯେ ଶାସ୍ତ୍ରର ସମ୍ମତେ
ନିର୍ବାତ କପଚ ବଧ ହେବ ପାର୍ଥ ହସ୍ତେ ।
ଏହା ଶୁଣି ଶଚୀନାଥ ପଡ଼େ ପାଦଗତେ
ଏମନ୍ତ ସନ୍ଦେଶ କିପାଁ ନ କହିଲ ମୋତେ ।
ବୃହସ୍ପତି ବୋଇଲେ ତୁ ମୋତେ ନ ପଚାରୁ
ବୃଥାରେ କି ମହାଭେଦ କଥା କହିପାରୁ ।
ଧନଞ୍ଜୟ ଯେଉଁଦିନ ଜନମ ହୋଇଲା
ସେଦିନୁ ନିର୍ବାତ ସ୍ୱର୍ଗେ ଧାଡ଼ି ଯେ ନ ଦେଲା ।
ଶୁକ୍ର କହିଲେ ନିର୍ବାତ କପଚ ଅଗ୍ରତେ
ତୋହର ମୃତ୍ୟୁ ନିକଟେ ହୋଇଲା ଯୁକତେ ।
ଶୁକ୍ରଙ୍କ ବଚନ ଶୁଣି ଘୁଞ୍ଚି ଯାଇଥିଲା
ଏବେ ମୃତ୍ୟୁ ଆସି ତାର ପଥ କଢ଼ାଇଲା ।
ମାତଳିକୁ ରାଇ ଆଜ୍ଞା ଦେଲେ ସସ୍ରଯୋନି
ଏହିକ୍ଷଣି ଚଳ ତୁହି ପୁଷ୍ପରଥ ଘେନି ।
ବାରାଣସୀର ତୀର୍ଥରେ ଅଛନ୍ତି ପାଣ୍ଡବେ
ବହନ ପାର୍ଥକୁ ଆଣ ବଦନ୍ତି ବାସବେ ।

ମାତଳି ଚଳିଲା ତହୁଁ ଆଜ୍ଞା ପରମାଣେ
ବାରାଣସୀରେ ପ୍ରବେଶ ହୋଇଲା ତତ୍‌କ୍ଷଣେ
ବ୍ୟାସ ବାଲମୀକ ଆଉ ଧୌମ୍ୟ ଜଇମିନି
କହନ୍ତି ପୁରାଣ କଥା ପୁସ୍ତକକୁ ଘେନି ।
ବାରାଣସୀ ତୀର୍ଥ ସ୍ଥାନେ ରହିଣ ପାଣ୍ଡବ
କରନ୍ତି ନାନାଦି ପରକାରରେ ଉତ୍ସବ ।
ଅନେକ ବ୍ରାହ୍ମଣ ଆଉ ଦେବ ଧର୍ମସୁତ
ଭୀମସେନ ଅର୍ଜ୍ଜୁନାଦି ଛନ୍ତି ଚାରିଭ୍ରାତ ।
ଏମନ୍ତକାଳେ ମାତଳି ହୋଇଲେ ପ୍ରବେଶ
ଆସ୍ଥାନ ତେଜିଲେ ସର୍ବେ ସହ ବେଦବ୍ୟାସ ।
ମାତଳିକୁ ଦେଖି ସର୍ବେ ହେଲେ ପରଣାମି
ବୋଇଲେ କିମର୍ଥେ ବିଜେକଲେ ଦେବସ୍ୱାମୀ
ସର୍ବକୁଶଳ ପୁଛିଲେ ତାଙ୍କୁ ଧର୍ମସୁତ
କ୍ଷେମେ ଅମରେ ଅଛନ୍ତିଟି କି ସୁରନାଥ ।
ମାତଳି ବୋଇଲା ତାଙ୍କ କୁଶଳ ସମସ୍ତ
ଶୁଣ ଯହିଁପାଇଁ ତୁମ୍ଭ ପାଶେ ଉପଗତ ।
ଇନ୍ଦ୍ର ଦେବତା ପଠାଇ ଅଛନ୍ତିରେ ବାବୁ
ଅର୍ଜ୍ଜୁନକୁ ସ୍ୱର୍ଗପୁରେ ଆମ୍ଭେ ଘେନିଯିବୁ ।
ଯୁଧିଷ୍ଠିଦେବ ବୋଇଲେ ପିତାଙ୍କର ଆଜ୍ଞା
ଦେବରାଜ ବାକ୍ୟ କିଏ କରିବ ଅବଜ୍ଞା ।
ଶୁଣି ଅର୍ଜ୍ଜୁନ ମୁଖକୁ ଚାହିଁ ଦେବରାୟ
ବୋଇଲେ ସ୍ୱର୍ଗକୁ ବିଜେ କର ରେ ବିଜୟ ।
ଭୀମ ବୋଇଲା ଅର୍ଜ୍ଜୁନ ଅମରେ ବିବାଦୀ
ଖାଣ୍ଡବ ଦହି ଅଗ୍ନିକୁ ଦେଲା ମହୌଷଧି ।
ଯୁକତେ ବାସବ ଜାତ ତାହାର ଯେ ବୀର୍ଯ୍ୟ
ତେଣୁ ସେହି ଧନଞ୍ଜୟ ତାହାର ଆତ୍ମଜ ।
ତୁମ୍ଭେ ପାର୍ଥକୁ ପଠାଇ ଦିଅ କେଉଁ ବାଗେ
ନ ପୁଣ ଇନ୍ଦ୍ରକପଟ କରେ ପୂର୍ବରାଗେ ।
ବ୍ୟାସ ବୋଇଲେ ରେ ବାବୁ ଶୁଣ ସହଦେବ
ଅମର ପୁରେ ଅର୍ଜ୍ଜୁନ ଯିବ କି ନ ଯିବ ।
ମନ୍ତ୍ରୀ ସହଦେବ ବୋଲେ ଭୟ ନାହିଁ କିଛି
ନିର୍ବାତ କପଚ ଦୈତ୍ୟ ଧାଡ଼ି ଦେଉଅଛି ।
ଚୌରାଅଶୀ ବେଳ ସ୍ୱର୍ଗେ ଦେଲାକ ସେ ଧାଡ଼ି
ବ୍ରହ୍ମା ରୁଦ୍ର ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ଆଦିକରି ।
କୌଣସି ଦେବତା ତାକୁ ନୁହନ୍ତିଟି ସରି
ସ୍ୱର୍ଗ ଛାଡ଼ି ଜଳଶାୟୀ ହେଲେ ବଜ୍ରଧାରୀ ।
ଜିଣି ନ ପାରି ବାସବ ପାଇ ଅପଚୟ
ବୃହସ୍ପତି କହିଲେ ଯେ ତହିଁର ଉପାୟ ।
ନିର୍ବାତ କପଚ ଆଜି ସ୍ୱର୍ଗେ ଧାଡ଼ିଦେବ
ତେଣୁ ମାତଳିକୁ ପେଶିଅଛନ୍ତି ବାସବ ।

ପାର୍ଥ ନ ଗଲେ ଦାନବ କେମନ୍ତେ ମରିବ
ତାହାର ହସ୍ତେ ଏ କାର୍ଯ୍ୟ ନିଶ୍ଚେ ସିଦ୍ଧ ହେବ ।
ବାଲମୀକ ପଚାରିଲେ ଶୁଣ ସହଦେବ
ଦୈତ୍ୟ ପାର୍ଥ ହସ୍ତେ ନାଶ ହେବ କି ନ ହେବ ।
ତାହା ଶୁଣି କରଯୋଡ଼ି ବୋଲେ ମନ୍ତ୍ରୀବର
ତାର ମୃତ୍ୟୁଭେଦ ଅଛି ପାର୍ଥଙ୍କର କର ।
ବ୍ୟାସଦେବ ବୋଇଲେ ସେ ନିର୍ବାତ ଦଇତ
ଲକ୍ଷ ବରଷ ଦୃଢ଼ରେ ସେବିଲା ଆଦିତ୍ୟ ।
ବର ମାଗ ବୋଇଲେ ସେ ଅର୍କନାରାୟଣ
ନିର୍ବାତ ବୋଲେ ଜିଣିବି ସର୍ବ ଦେବଗଣ ।
ରୁଦ୍ର ଆଉ ନାରାୟଣ ନ ପାରିବେ ମୋତେ
ଇନ୍ଦ୍ର ପବନ କୁବେର ଯମ ଆଦି ଯେତେ ।
ଜଳ ଅନଳ ପବନେ ନ ହୋଇବି ନାଶ
ଅସ୍ତୁ ବୋଲିଣ ବୋଇଲେ ସେ କମଳକୋଷ ।
ନିର୍ବାତ ବୋଲେ ପୁରରେ ନ ପଶିବ ବାତ
ତେଣୁକରି ନାମ ତାର ହୋଇଲା ନିର୍ବାତ ।
କହନ୍ତି ଯେ ନାରାୟଣ ଅଭୟ ବିରଞ୍ଚି
ଅସଂଖ୍ୟ କର୍ମ ମାଗିଲୁ କଳେବର ସଞ୍ଚି ।
ଜାତ ହୋଇଲେ ନିଶ୍ଚୟ ହୁଅଇଟି ମୃତ୍ୟୁ
ଏହାକୁ କିପାଇଁ ତୁହି ଅଳପ ନ ଚିନ୍ତୁ ।
ନିର୍ବାତ ବୋଇଲା ଦେବ କହିଲ ଯେ ମୋତେ
ବ୍ରହ୍ମା ରୁଦ୍ର ବିଷ୍ଣୁ ଇନ୍ଦ୍ରେ ଜିଣିବି ସମସ୍ତେ ।
ଏ ଚାରି ମୂରତି ଯେବେ ହେବେ ଏକ ଜଣେ
ମମ ପ୍ରାଣ ବିସର୍ଜନ ହୋଇବାକୁ ତେଣେ ।
ଏହି ଚାରିଦେବେ ଯେବେ ହେବେ ଏକମୂର୍ତ୍ତି
ନର ଯୋନିରେ ଜନମ ହୋଇବେକ ପୃଥ୍ୱୀ ।
ମୋହର ଜୀବନ ହତ ହୋଇବ ତା ହସ୍ତ
ଏପରି ବର ପାଇଛି ପୂର୍ବରୁ ନିର୍ବାତ ।
ବାବୁ ଏକମୂର୍ତ୍ତି ହେଲେ ଏ ଚାରି ଦେବତା
ନିର୍ବାତ ମରିବ ଏସନକ ଶାସ୍ତ୍ର କଥା ।
ନିର୍ବାତ କପଚ ବଧ ନୁହେଁ ଆନମତେ
ଧାଡ଼ିଦେଲା ଚୌରାଅଶୀ ବେଳ ପରିଯନ୍ତେ ।
ବ୍ରହ୍ମାଙ୍କର ଶିର ବାସୁଦେବଙ୍କ ରୁଧିର
ଈଶ୍ୱର ମାଂସ ବିଭୂତି ମିଶେ ଅତଃପର ।
ଇନ୍ଦ୍ର ଔରସେ ମାନବୀ ଗର୍ଭେ ହେଲା ଜାତ
ବ୍ୟାସ ବୋଇଲେ ଅର୍ଜ୍ଜୁନ ଯାଉ ଯେ ତ୍ୱରିତ ।
ସବୁରି ପାଦତଳରେ ପ୍ରଣମେ ଅର୍ଜ୍ଜୁନ
ନିର୍ବାତକୁ ବଧ କର କରିଲେ କଲ୍ୟାଣ ।
ଦଧିବାମନ ସୁମରି ଶୁଭ ଅନୁକୂଳେ
ବୀରବେଶରେ ଭୂଷିତ ହେଲେ ତତକାଳେ ।

ନାରକା ବଧକାଳରେ ଯେହ୍ନେ ବନମାଳୀ
ରଥେ ବସନ୍ତେ ଦେଖିଲେ ତେମନ୍ତ ମାତଳି ।
ବୈଜୟନ୍ତୀ ମାଳ ଘେନି ଦେବଦୂତ ଦେଲେ
ଅନ୍ଧକ ବଧରେ ରୁଦ୍ର ପରାୟେ ଦିଶିଲେ ।
ଧାଡ଼ିକାରେ ରଥ ବାହେ ମାତଳି ସାରଥି
ଅନ୍ତରୀକ୍ଷ ପଥେ ରଥ ଯାଏ ଶୀଘ୍ରଗତି ।
ମେଘମାଳର ଭିତରେ ପଶେ ବୀର ପାର୍ଥ
ଏମନ୍ତ କାଳେ ସ୍ୱର୍ଗକୁ ଧାଡ଼ିଦେଲା ଦୈତ୍ୟ ।
ବୀର ଟମକ ବଜାଇ ଉଡ଼ାଇ ନିଶାଣ
ଝମକାଇ ଅସି ଧାଇଁଛନ୍ତି ଦୈତ୍ୟଗଣ ।
ଅର୍ଜ୍ଜୁନର ଅଗ୍ରତରେ ମାତଳି କହିଲା
ଦେଖ ବାବୁ ଅମରକୁ ଦୈତ୍ୟ ଧାଡ଼ିଦେଲା ।
ଅର୍ଜ୍ଜୁନ ଶୁଣି ବୋଲଇ ଲୋଡୁ ଆଉ କିସ
ବାହା ମୋହର ରଥକୁ ଅସୁରାଧି ପାଶ ।
ମାତଳି ବୋଇଲା ଆଗ ଭେଟ ଆଖଣ୍ଡଳ
ଇନ୍ଦ୍ର ଦେବତାର ତହୁଁ ଘେନ ରତ୍ନମାଳ ।
ପାର୍ଥ ବୋଇଲା ମାତଳି ଘେନ ମୋର କଥା
ଅମରାଧିନାଥ ହାଦେ ଅଟେ ମୋର ପିତା ।
ମୋ ଆଗେ ନ କହ ସେହି ଜୟମାଳା କଥା
ସେହି ଜୟମାଳା ହେଉ ଇନ୍ଦ୍ର ହୃଦଗତା ।
କିପାଇଁ ହାରଇ ନିର୍ବାତକୁ ମୋର ପିତ
ଏଥିର ଛଳେ ମୁହିଁ ଯେ ନାଶିବି ଦଇତ୍ୟ ।
ବଧ କରି ନେବି ତାକୁ ପିତାର ଅଗ୍ରତ
ନିଶ୍ଚୟ ଏହୁ ପ୍ରତିଜ୍ଞା ଅଟେ ମୋର ସତ୍ୟ ।
ଯେବେ ନିର୍ବାତକୁ ବଧ କରିବଇଁ ମୁହିଁ
ତେବେ ସେହି ଜୟମାଳା ଦେବେ ସୁରସାଇଁ ।
ଅର୍ଜ୍ଜୁନର ବଚନରେ ମାତଳି ସାରଥି
ବାହଇ ସେ ତୁରଙ୍ଗମ ପବନର ଗତି ।
କରେ ଶୋଭାବନ ଦିଶେ ପିନାକୀ କୋଦଣ୍ଡ
ଅର୍ଜ୍ଜୁନ ଶଙ୍ଖ ଧ୍ୱନିରେ କମ୍ପଇ ବ୍ରହ୍ମାଣ୍ଡ ।
ପିତାମହଙ୍କ ଅଗ୍ରତେ ନାରଦ କହିଲେ
ସ୍ୱାମୀ ନିର୍ବାତ ମାରଣେ ପାର୍ଥ ସଧକଲେ ।
ନିର୍ବାତ କପଚ ଆସେ ସ୍ୱର୍ଗ ଭୁବନକୁ
ଇନ୍ଦ୍ର ମାତଳି ପଠାଇ ଆଣେ ଅର୍ଜ୍ଜୁନକୁ ।
ଦେବଦତ୍ତ ଶଙ୍ଖ ବାଜେ ଘନ ଘନ ବାଣୀ
ଅସୁର ହୃଦ କମ୍ପିଲା ରମ୍ଭାପତ୍ର ଜିଣି ।
ନିର୍ବାତ ପଚାରେ ଶୁଣ ଶୁକ୍ର ମହାମନ୍ତ୍ରୀ
ଏ କିସ ଶବଦ ଶୁଭୁଅଛି ମୋର କତି ।
ଶୁକ୍ର ବୋଇଲେ ରାଜା ମୋ ହୃଦୟେ ବିଷାଦ
ଅସୁର କୁଳରେ ଆଜ ପଡ଼ିବ ପ୍ରମାଦ ।

ପୁଣ୍ୟରେ ଅନେକ ଭୋଗ କଲ ମହାବଳା
ମୃତ୍ୟୁନିକଟ ହୋଇଲା ଶୀଘ୍ର ଏଥୁପଳା ।
ନିର୍ବାତ ବୋଇଲା ଇନ୍ଦ୍ର ରୁଦ୍ର ଚନ୍ଦ୍ର ସୂର୍ଯ୍ୟ
ସମସ୍ତଙ୍କୁ ଜିଣି ମୋର ଭାଗ୍ୟ ଅଇଶ୍ୱର୍ଯ୍ୟ ।
ଚୌରାଶୀ ବାର ଅମର ପୁରେ ଦେଲି ଧାଡ଼ି
ପଳାଇଗଲା ଅମର ରାଜ୍ୟ ଇନ୍ଦ୍ର ଛାଡ଼ି ।
କେ ମୋତେ ସମାନ ଅଛି ଏହି ରବିତଳେ
ଏକାଦଶ ଲୋକ ସାଧ କଲି ଭୂମଣ୍ଡଳେ ।
ଶୁକ୍ର ବୋଇଲେ ସୋଦର ତୋର ଚାରିଭାଇ
କୁମ୍ଭୀର କିନ୍ନର ଆଦି ମାଇଲେଟି ସେହି ।
ପାଣ୍ଡବ କୁଳରେ ଜାତ ନାମ ଭୀମସେନ
ତୋର ଚାରି ଭାଇଙ୍କି ସେ କରିଲା ନିଧନ ।
ତାହାର ସାନୁଜ ଏହୁ ଅଟଇ ଅର୍ଜ୍ଜୁନ
ବାସବ ଦେବତାର ସେ ଅଟଇ ନନ୍ଦନ ।
ବୃହସ୍ପତି କହିଦେଲେ ତୋର ମୃତ୍ୟୁ ଭେଦ
ଏବେ ଯେ ନିଶ୍ଚୟ ତୋତେ ପଡ଼ିଲା ପ୍ରମାଦ ।
ମନ୍ତ୍ରୀବାକ୍ୟେ ବୋଇଲେ ସେ ନିର୍ବାତ ଯେ ରାୟେ
ମାନବ ମାତ୍ରକୁ ମୋର ଅଛି କିସ ଭୟେ ।
କାହାଠୁଁ ନ ହାରିଲି ମୁଁ ବିରଞ୍ଚି ପ୍ରସାଦେ
ମୋତେ ଜିଣିବାକୁ କିଏ ତ୍ରିଭୁବନ ମଧ୍ୟେ ।
ତୁ ମହାମନ୍ତ୍ରୀ ପ୍ରସନ୍ନ ବୁଦ୍ଧି ମୋତେ ଦେବୁ
ତୋର ବୁଦ୍ଧିବଳେ ଆମ୍ଭେ ଶତ୍ରୁକୁ ଜିଣିବୁ ।
ଏମନ୍ତ ପ୍ରତିଜ୍ଞା କରି ସେ ଦୁଷ୍ଟ ଦଇତ
ସାଜ ସାଜ ସୈନ୍ୟ ମୋର ହୋଇଣ ତ୍ୱରିତ ।
ରାଜାର ଆଜ୍ଞା ପାଇଣ ଅମନାତ୍ୟ ଯୋଦ୍ଧି
ବହିଲେ ଦକ୍ଷିଣ ତୀରେ ଦେବ ସୁରନଦୀ ।
ମହାଆରମ୍ଭ ଘେନିଣ ନିଜ ଥାଟ ଗୋଟି
ଗର୍ଜ୍ଜନ ନାଦେ ପାର୍ଥକୁ ହେଲେ ଭେଟାଭେଟି ।
ଦେଖଇ ଅର୍ଜ୍ଜୁନବୀର ପାଞ୍ଚଗୋଟି ଯୋଦ୍ଧି
ମାତଳି ବୋଲେ ତ୍ରୈଲୋକ୍ୟ ପାରେ ଏ ନିରୋଧି
ପୁଣି ନିରୋଧ କଲାଣି ପୁର ବାରସ୍ୱତୀ
ତୁ ଏହାକୁ ନାଶ କର ବାସବ ସନ୍ତତି ।
ଅର୍ଜ୍ଜୁନ ବୋଇଲେ ତୁହି କିଛିହିଁ ନ ଭାଳ
ଏହିକ୍ଷଣି ନାଶିବି ମୁଁ ଅସୁରଙ୍କ ବଳ ।
ତୁ ହୋ ମାତଳି ନିଶ୍ଚିନ୍ତେ ରହୁବରେ ଥାଅ
ବାହ ରଥଗୋଟି ମନେ ଶଙ୍କା ତୁ ନ ବହ ।
ଅଶ୍ୱ ତୋର ଚାଳିବୁ ତୁ ନୋହିବୁ କାତର
ପାମର ଅସୁର ବଳ କେତେକ ମାତର ।
ଗାଣ୍ଡିବ ଧନୁ ଟଙ୍କାର କରି ଫାଲଗୁନି
ମାରଇ କୌଣପବଳ କରି ଘୋର ଧ୍ୱନି ।

ଗୋଟିଏ ରଥୀକି ପାଞ୍ଚ ମରବୁଦ ରଥୀ
ଅନୁକ୍ଷଣରେ ବିନ୍ଧନ୍ତି ହୋଇ କୋପ ମୂର୍ତ୍ତି ।
ଶରେ ଶର ସମାର୍ଜ୍ଜନା କରେ ସବ୍ୟସାଚୀ
ଗାଣ୍ଡିବ ଧନୁରେ ଗୁଣ ବସାଇ ସେ ପାଞ୍ଚ ।
ଏକ ସାଧନେ କରଇ ସେହୁ ଶରବୃଷ୍ଟି
ଏକ ବନ୍ଧନେ ହୁଅଇ ତହୁଁ କୋଟି କୋଟି ।
ଅନେକ ନାରାଚ ଘେନି ବିନ୍ଧେ ଅନୁକ୍ଷଣେ
ପାଦେକ ଘୁଞ୍ଚନ୍ତି ନାହିଁ ସେ ଅସୁରଗଣେ ।
ପୁଣ ପୁଣ ଅସୁରଙ୍କୁ ବାଣରେ ନିରୋଧି
ଏକ ପ୍ରହାରକେ ଶତ ଶତ ଦିଏ ଛେଦି ।
ଅତି ଅସମ୍ଭବ ରୂପେ ହୁଅଇ ସେ ରୋଳ
ନିର୍ଘାତ ଶବଦ ପ୍ରାୟେ ଶୁଭଇ ଚହଳ ।
ପାଞ୍ଚ ମରବୁଦ ଅଟେ ଦୈତ୍ୟଙ୍କର ବଳ
ଏକାକେ ସାଧ କରଇ ଆଖଣ୍ଡଳ ବାଳ ।
ନାନାଦି ଶର ମାରନ୍ତି ଅସୁର ସଇନ୍ୟ
ସମସ୍ତ ଛେଦି ପକାଏ ଏକାକୀ ଅର୍ଜ୍ଜୁନ ।
ମାନବ ଶରରେ ଯହୁଁ ନ ପାରିଲା ଜିଣି
ଦେବ ଅସ୍ତ୍ରକୁ ସନ୍ଧାନ କଲା ବୀରମଣି ।
ନିଦାଘ ଅସ୍ତ୍ର ପେଶିଲେ ଧରି କଉଣପେ
ଦିଗ ଅନ୍ଧାର ହୋଇଲା ଅସୁରଙ୍କ ଦର୍ପେ ।
ହାବୋଡ଼ା ଶର ମାଇଲା ବୀରବର ପାର୍ଥ
ଭାଜି ଚୂର ହୋଇଗଲା ଅସୁରଙ୍କ ରଥ ।
ପାଦଗତି ହେଲେ ତହୁଁ ସେ ଅସୁରବଳ
ପୁଣି ବାହନ ଆରୋହି ହୋଇଲେ ପ୍ରବଳ ।
ଶାର୍ଦ୍ଦୁଳମାନ ଆରୋହି ଲୁହା ଧନୁ ଧରି
ଲୁହାର ନାରାଚମାନ ଯତ୍ନେ ତହିଁ ଭରି ।
ଶ୍ୟାମମେଘ ଯେଉଁରୂପେ ଦିଶେ ଆର୍ଦ୍ରାବଳି
ସେହି ତେଜଠାରୁ ତେଜ ଦିଶନ୍ତି ଉଗୁଳି ।
ଲୁହା ଧନୁ ଶ୍ୱେନପକ୍ଷୀ ପରାୟେକ ବାଣ
ବିନ୍ଧନ୍ତି ଶ୍ରାବଣେ ବୃଷ୍ଟି ପତନ ପ୍ରମାଣ ।
ମାତଳି ବୋଲେ ସମ୍ଭାଳ ବାବୁ ସବ୍ୟସାଚୀ
ଏ ତିନି ଭୁବନ ଦିଗ ନ ଦିଶଇ କିଛି ।
ତାହା ଶୁଣି ଧନଞ୍ଜୟ କରିଲେ ଉତ୍ତର
ଏହି ମହା ସମରକୁ ଏକା ମୁହିଁ ବୀର ।
ଦେଖ ପ୍ରତିଜ୍ଞା ମୋହର କେଡ଼େ ସାମରଥା
ଏକ୍ଷଣି ଦୂରନ୍ତ ବଳ ହେବେ କି ଅବସ୍ଥା ।
କହି ଆକର୍ଷିଣ ଧରେ ଗାଣ୍ଡିବର ଧନୁ
ପାଞ୍ଚଲକ୍ଷ ଶର ସନ୍ଧେ ବାସବର ସୁନୁ ।
ପ୍ରହାରକେ ଅସମ୍ଭବ ଶରମାନ ସନ୍ଧି
ଅସୁରଙ୍କ ଧନୁର୍ଗୁଣ ପକାଇଲେ ଛେଦି ।

ଦେଖି ପ୍ରଶଂସା କରନ୍ତି ଅସୁର ସଇନ୍ୟ
ସାଧୁ ସାଧୁରେ ପାଣ୍ଡବ ତୋ ଜୀବନ ଧନ୍ୟ ।
ପୁଣି ପରିଘ ନାରାଚ ପୂରାଇ ଦନୁଜ
ସହସ୍ର ସହସ୍ର ଶର କରନ୍ତି ଗ୍ରାହିଯ୍ୟ ।
ଯେସନେ ଆକାଶୁ ଖସେ ନକ୍ଷତ୍ରର ପନ୍ତି
ଜୁଳୁଜୁଳା ପୋକ ଯେହ୍ନେ ଆକାଶେ ଉଡନ୍ତି ।
ସେହି ପରକାରେ ଦିଶେ ବାଣଙ୍କରକାନ୍ତି
ଅର୍ଜ୍ଜୁନ ନାରାଚ ବିନ୍ଧେ ତାହା ଦେଖି ଧାତି ।
ବିନ୍ଧିଲା ବାରୁଣୀ ନାରାଚକୁ ଫାଲଗୁନି
ନଲକ୍ଷ ସୈନ୍ୟ ଛେଦିଲା ଏକ ବାଣ ଘେନି ।
ଅନ୍ତରୀକ୍ଷେ ଥାଇକରି ଦେଖନ୍ତି ତ୍ରିଦଶେ
ସାଧୁ ସାଧୁ ପାର୍ଥ ବୋଲି ଶୁଭିଲା ଆକାଶେ ।
ବିକ୍ରମିଣ ପାର୍ଥ ବିନ୍ଧେ ଅଧାଚନ୍ଦ୍ର ବାଣ
ଅସୁରଙ୍କ ଧନୁମାନ ଛେଦିଲେ ଅର୍ଜ୍ଜୁନ ।
ଆରୋହି ଅଛନ୍ତି ଦୈତ୍ୟ ଶାର୍ଦ୍ଦୂଳ ଉପରେ
ମହା ତେଜରେ ଆସନ୍ତି ଧନୁ ଧରି କରେ ।
ଲକ୍ଷ ଲକ୍ଷ ନାରାଚ ଯେ ପୂରାଇ ଅସୁରେ
ପାଞ୍ଚ ଅରବୁଦ ଯୋଦ୍ଧା ବିନ୍ଧିଲେ ସତ୍ୱରେ ।
ଦୁରାପଦ ପ୍ରତିଜ୍ଞା ଯେ ଦୈତ୍ୟ ମହାବଳୀ
ଘୋଟିଗଲେ ମହାବଳୀ ଗଗନ ମେଖଳି ।
ଅର୍ଜ୍ଜୁନ ବିନ୍ଧିଲା ପଞ୍ଚବିଂଶ ଅସ୍ତ୍ରବାଣ
ଅସୁର ନାରାଚ ସବୁ ଛେଦିଲା ତକ୍ଷଣ ।
ପୁଣି ନବଲକ୍ଷ ଶର ପେଶେ ଇନ୍ଦ୍ରସୂନୁ
ଛେଦି ପକାଏ ତକ୍ଷଣେ ମର୍ବୁଦେକ ଧନୁ ।
ଦେଖି ସ୍ତମ୍ଭୀଭୂତ ହେଲେ ସେ ଅସୁରବଳ
ଆନ ଧନୁକୁ ଧଇଲେ ପୁଣି କରସ୍ଥଳ ।
ମନମଥଠାରୁ ଶୋଭା ଦିଶେ ଫାଲଗୁନି
ଆକର୍ଷି ବିନ୍ଧଇ ଶର ପୁଣି ସସ୍ର ତିନି ।
ଅତି ତେଜୋମୟ ଶର ଅଟେ ତୀକ୍ଷ୍ଣ ମୁନା
ପଡ଼ି ନିକିଳିଣ ଦୈତ୍ୟମାନଙ୍କର ସେହ୍ନା ।
ହୃଦେ ପଡ଼ିଣ ନାରାଚ ପିଠି ଗଲା ଫୁଟି
ଲକ୍ଷେକ ଯୋଦ୍ଧାଙ୍କୁ ପାଞ୍ଚଲକ୍ଷ ଶର ବୃଷ୍ଟି ।
ଶରବୃଷ୍ଟି ଦେଖି ଘୁଞ୍ଚିଗଲେ କଉଣପେ
ପାଶୁପତ ଅସ୍ତ୍ର ଘେନି ପାର୍ଥ ବିନ୍ଧେ କୋପେ ।
ଶର ଘାତରେ ଲୋଟିଲେ ଅସୁର ସଇନି
ଖଣ୍ଡ ଖଣ୍ଡ ହୋଇଣ ସେ ଲୋଟିଲେ ମେଦିନୀ ।
ଘାୟେ ଦୈତ୍ୟବଳମାନେ ପଳାଇଲେ ଭାଜି
ଦେଖିଣ ନିର୍ବାତ ତହୁଁ ଉଠେ ଗଳଗାଜି ।
ନିର୍ଘାତ ଉଲ୍ଲୂକ ନାମେ ବେନି ସେନାପତି
ଆଗୁଆଣିର ଥାଟରେ ସେମାନେ ଅଛନ୍ତି ।

ଅସୁରବଳ ପଳାନ୍ତେ ଦେଖି ବୀର ବେନି
ରେରେକାରରେ ଉଠିଲେ ବେନିଲକ୍ଷ ଘେନି ।
ସେ ନିର୍ଘାତ ସେନାପତି ବାଣ ଘେନି କରେ
ଅର୍ଜ୍ଜୁନ ଅଗ୍ରତେ ଆସି ମିଳିଲା କୋପରେ ।
ରେ ରେ ମାନବରେ ତୋର ପୂରିଲାଟି କାଳ
ଗାରେଡ଼ି ନ ଜାଣି ସର୍ପ ସଙ୍ଗେ କରୁ ଖେଳ ।
ଆରେ ରେ ମାନବ ତୁହି କେଉଁକୁଳେ ଜାତ
ତିରଣ ପ୍ରାୟେ କାଟିବି ମୁହିଁ ତୋର ଗାତ୍ର ।
ରେ ରେ ମାନବା ସୁମର ତୋର ପିତାମାତା
ରେ ରେ ମାନବା ସୁମର ତୋ ଇଷ୍ଟଦେବତା ।
ମାତଳି ବୋଇଲେ ଏହୁ କରୁଛି କଟାଳ
ଅର୍ଜ୍ଜୁନ ବୋଇଲା ଏହୁ ଅଟଇ ଶୃଗାଳ ।
ମାତଳି ବୋଲେ ନିର୍ଘାତ ଉଲ୍ଲୂକ ଦଇତ
ଆକାଶ ଘେନିଲେ ଦୁହେଁ ବଡ଼ ସାମରଥ ।
ମେରୁ ସମାନରେ ବଳବନ୍ତ ବେନି ବୀରେ
ଏହୁ ବଡ଼ ଉପଦ୍ରବ କରିଲେ ଅମରେ ।
ପୁଣି ହିଁ ବୋଇଲେ ତୁହି ଦେଖ ବୀରପାର୍ଥ
ବିନ୍ଧ୍ୟ ଗିରି ପ୍ରାୟ ଗଦା ଧରିଛନ୍ତି ହସ୍ତ ।
ଶାର୍ଦ୍ଦୂଳ ବାହନେ ଚଢ଼ିଯାନ୍ତି ବୀର ବେନି
ବୁଲାନ୍ତି ଗଦା କୁରାଳଚକ୍ର ପ୍ରାୟ ଜାଣି ।
ଶୁଣି ଅର୍ଜ୍ଜୁନ ବୋଇଲେ ମାତଳି ଅଗ୍ରତ
ବଜ୍ର ଛାମୁରେ ରହେ କି କୌଣସି ପର୍ବତ ।
ଗଜକୁ କେଭେ କି ଭୟ କରଇ କେଶରୀ
ଖଗେଶ୍ୱର ଆଗେ ଅହି ଅଟେ ଯେଉଁ ପରି ।
ଦୁଃସହ ପ୍ରତିଜ୍ଞା ପାର୍ଥ କଲା କହୁଁ କହୁଁ
ଅଭୟ କକ୍ଷାବନ୍ତ ସେ କ୍ଷତ୍ରୀ ମହାବାହୁ ।
ବହୁତ ପ୍ରତିଜ୍ଞା କରି ବୀର ସବ୍ୟସାଚି
ବୋଲେ ବାହ ମୋ ବିମାନ ଭୟ ନାହିଁ କିଛି ।
ଦେଖ ଦେଖ ତୁ ମୋହର ଶୂର ବୀରପଣ
ଏ ନିଦାଘ ସୈନ୍ୟ ବଳ ମାରିବି ଏକ୍ଷଣ ।
ଏହି ଦୁଃସହ ପ୍ରତିଜ୍ଞା କରି ଫାଲଗୁନି
ଲକ୍ଷେ ଯୋଦ୍ଧାଙ୍କୁ ବିନ୍ଧିଲା ତିନିଲକ୍ଷ ଘେନି ।
ଗଦାବରକୁ ବୁଲାଏ ଦୈତ୍ୟ ମହାଦର୍ପେ
ଧାତିକାରେ ଅସ୍ତ୍ର ପଡ଼େ ଅସୁରଙ୍କ ଗାତ୍ରେ ।
ବଜ୍ରାଘାତ ପ୍ରାୟ ତାଙ୍କ ସେହ୍ନାଗଲା ଫୁଟି
ଲକ୍ଷେକ ଯୋଦ୍ଧା ପଡ଼ିଲେ ଯାଇଁ ମହୀଲୋଟି ।
ଅର୍ଦ୍ଧଚନ୍ଦ୍ର ବାଣ ପୁଣି ବିନ୍ଧେ ବୀରମଣି
ବେନିଖଣ୍ଡ କରି ସର୍ବ ପକାଇଲା ହାଣି ।
ଯେତେ ଯେତେ ଯୋଦ୍ଧାବସି ଯୁଝୁଥିଲେ ରଥେ
ବେନିଖଣ୍ଡ ହୋଇଗଲା ଅର୍ଜ୍ଜୁନ ବିଘାତେ ।

ନାରଦ କହିଲେ ଯାଇ ଶୁଣ ମଘବାନ
ଅମର ପୁରକୁ ରକ୍ଷାକଲା ତୋ ଅର୍ଜୁନ ।
ନିର୍ଘାତ ଉଲ୍ଲୁକ ଯେଉଁ ସେନାପତି ବେନି
ସମରରେ ତାଙ୍କୁ ବଧକଲା ଫାଲଗୁନି ।
ବେନିକୋଟି ଯୋଦ୍ଧାଘେନି ପଡ଼ିଲେ ସମରେ
ପ୍ରତିଜ୍ଞା ସଚ୍ଚା ଯେ ବୀର ତିନି ବ୍ରହ୍ମାଣ୍ଡରେ ।
ତାହା ଶୁଣିଣ ସନ୍ତୁଷ୍ଟ ହୋଇଲେ ମଘବା
ଅମର ବୃନ୍ଦକୁ ଘେନି ବିଜେ ସୁରଦେବା ।
ଦେବବଳ ଘେନି ବିଜେହୋଇ ସହସ୍ରାକ୍ଷ
ଦେଖଇ ସେ ମହାଯୁଦ୍ଧ କରଇ ବିବକ୍ଷ ।
ନିର୍ଘାତ ଉଲ୍ଲୁକ ଯହୁଁ ପଡ଼ି ମଲେ ବେନି
ରଣ ଆବୋରି ରହିଲା କୌଣପ ନୃମଣି ।
ବିଜୟ ନିର୍ବାତ ଦେବ ମନ୍ଥନର ରଥେ
ବେନିକୋଟି ଶାର୍ଦ୍ଦୁଳଙ୍କୁ ଯୋଚିଅଛି ରଥେ ।
କୋଟିଏ ସିଂହର ବଳ କରେ ଧରି ଧନୁ
ଶୁକ୍ରଙ୍କୁ ପଚାରେ ବକ୍ର କପଟର ସୁନୁ ।
ଆହେ ଶୁକ୍ର ସମରେ ମୁଁ ହେଲି ପରାଜୟ
ଶୁକ୍ର ବୋଇଲେ ମୋ ବୋଲ ନ କରିଲୁ ରାୟ ।
ସତ୍ୟଯୁଗେ ବଳୀ ସଙ୍ଗେ ମନ୍ତ୍ରୀପଣେ ରହେ
ମୋ ମନ୍ତ୍ରଣା ବଳେ ବଳୀ ବଳବନ୍ତା ହୁଏ ।
ସପତ ବ୍ରହ୍ମାଣ୍ଡରେ ସେ ହେଲା ଜଗଜ୍ଜିତା
କେହୁ ନ ରହିଲେ ଆଉ ତାହାକୁ ଜିଣନ୍ତା ।
ଦେବତାମାନେ ଉପାୟ କରିଲେ ଯେ ଭଳି
ବାମନ ରୂପ ଧଇଲେ ତହୁଁ ବନମାଳୀ ।
ଦାନ ଦ୍ୟନ୍ତେ ମୁଁ ରୋଧିଲି ସେ ବଳିରାଜାକୁ
ନ ମାନିଣ ଦାନଦେଲା ବାମନ ପଣ୍ଡାକୁ ।
ସଂକଳ୍ପ ବେଳେ ଝରିକୁଁ ଧରେ କହି କଟୁ
ପେଲି ଦିଅନ୍ତେ ଚକ୍ଷୁରେ ବାଜେ କୁଶବଟୁ ।
ବାମନ କୁଶ ପ୍ରହାରେ ଚକ୍ଷୁ ନାଶ ଗଲା
ମୋର ବୋଲ ନ କରି ସେ ସମ୍ପଦ ସାରିଲା ।
ତୁ ମଧ ମୋହର ବୋଲ ନ କଲୁ ନିର୍ବାତ
ତୋ ସମ୍ପଦ ନାଶଯିବ ଏ ଅର୍ଜୁନ ହସ୍ତ ।
ଶୁକ୍ରର ବଚନେ ବୋଲେ ନିର୍ବାତ କପଟ
ଯାଅ ଶୁକ୍ର ରହିଥାଅ ଏବେ ମୋର ପଛ ।
ଦେବ ଦାନବ ଜିଣିବା ଯେହୁ ସାମରଥା
ସପ୍ତ ବ୍ରହ୍ମାଣ୍ଡ ଚମକ ପଡ଼େ ଯାର କଥା ।
ଶୁକ୍ରଙ୍କୁ ନିନ୍ଦା କରିଣ ବହୁତ କହିଲା
ମୃତ୍ୟୁ ଆଗମେ ତା ସଙ୍ଗେ କଳି ଲଗାଇଲା ।
ବେନି ମରବୁଦ ରଥୀ ସଙ୍ଗତରେ ଘେନି
ଆକାଶ ଉଛୁଳି ପଡ଼େ ମୁଖର ଯେ ଧ୍ୱନି ।

ତିନିଲକ୍ଷ ଯୋଦ୍ଧାଙ୍କୁ ଯେ ଘେନି ଆଗଥାଟେ
ଅବିରତ ଶରବୃଷ୍ଟି କରିଲେ ବଳିଷ୍ଟେ ।
ବ୍ରହ୍ମାଣ୍ଡ ଯେ କମ୍ପିଗଲା ଅସୁରଙ୍କ ଡାକେ
ଶୂନ୍ୟଭୁବନ ତେଜିଲେ ସର୍ବ ବୃନ୍ଦାଅର୍କେ ।
ମାତଳି ବୋଇଲେ ତୁହି ଶୁଣ ସବ୍ୟସାଚୀ
ଦଣ୍ଡ ଘେନିଣ ନିର୍ବାତ କପଟ ଆସୁଛି ।
ଅର୍ଜୁନ ବୋଇଲା ତାତ ହୋଇଥାଅ ଦମ୍ଭ
ବାହା ତୁହି ରହୁବର ସଂଗ୍ରାମର ମଧ ।
ଆଗୁଆଣୀ ସୈନ୍ୟ ରେ ରେ କାର ଡାକଦେଇ
ଲକ୍ଷେ ପୁରରେ ପାର୍ଥଙ୍କୁ ବେଢ଼ିଗଲେ ଯାଇଁ ।
ଅନୁକ୍ଷଣେ ଶରମାନ ବିନ୍ଧିଲେ ଅସୁରେ
କକଡ଼ା ମାସରେ ଜଳ ବୃଷ୍ଟି ଯେ ପ୍ରକାରେ ।
ଏକା ପାର୍ଥକୁ ସମସ୍ତେ ପେଶୁଛନ୍ତି ଶର
ସମସ୍ତଙ୍କ ଧନୁ ଛେଦେ ଧନ୍ୟ ଧନୁର୍ଦ୍ଧର ।
ପୁଣିହିଁ ପାର୍ଥ ପେଶିଲା ଶର ମନଭେଦୀ
ସମସ୍ତ ସୈନ୍ୟଙ୍କ ଶର ପକାଇଲା ଛେଦି ।
ବାଛିଣ ହାବୁଡ଼ାଶର ବିନ୍ଧିଲା କିରିଟୀ
ଭାଙ୍ଗି ଚୂର୍ଣ୍ଣ କରିଦେଲା ରଥ ପାଞ୍ଚଗୋଟି ।
ସବୁ ରଥ ଛେଦ ଯହୁଁ ହୋଇଲା ସମରେ
ଦୁଇ ଦୁଇ ଗଦା ଧରି ବୁଲନ୍ତି ଅସୁରେ ।
କେଶ ଉର୍ଦ୍ଧ୍ୱକୁ ଖାଙ୍କର ବିକଟାଳ ମୁଣ୍ଡ
ବିକଟାଳ ଦାଢ଼ି ହୃଦେ ଅସ୍ଥିମାଳ ଖଣ୍ଡ ।
ସପତତାଳ ଉସର୍ଗ ଯୋଜନେକ ବାହୁ
ମଧସ୍ୱର୍ଗେ ଓଷ୍ଠଲାଗେ ରାବ ଯେହ୍ନେ ରାହୁ ।
ଏକ ଯୋଜନ ବିସ୍ତାରେ ପଡ଼େ ତାଙ୍କ ପାଦ
ପର୍ବତ ତୁଲ୍ୟ ମଉଳି ଦିଶନ୍ତି ପଳାଦ ।
ଭୟଙ୍କର ବଳ ଦେଖି ବୀର ଫାଲଗୁନି
ଏକ ସନ୍ଧାନେ ବିନ୍ଧଇ ଶର କୋଟି ତିନି ।
ଲୋମକରେ ଶତ ଶତ ପଶିଲାକ ବାଣ
ପଡ଼ିଲେ ନିର୍ବାତ ବଳ ମାଡ଼ି ଦଶଯୁଣ ।
କାମ୍ୟକ ନାମକ ଶର ଅର୍ଜୁନ ବିନ୍ଧିଲେ
ଅସୁରମାନଙ୍କ ଶିର ଛେଦି ପକାଇଲେ ।
ଶିର ଛେଦନ୍ତେ ଅସୁର ପଡ଼ିଲେକ ଲୋଟି
କବନ୍ଧ ନାଚିଲେ ତହିଁ ହୋଇ କୋଟି କୋଟି ।
ସୈନ୍ୟ ଭଗ୍ନ ଦେଖିକରି ନିର୍ବାତ କପଟ
ସଙ୍ଗତେ ଅଛନ୍ତି ଯୋଦ୍ଧା ତାର ପାଞ୍ଚଲକ୍ଷ ।
ଅର୍ଜୁନ ଛାମୁରେ ରଥ ରଖିଲେକ ନେଇ
ରେ ରେ କାର ଶବଦରେ ଡାକହାକ ଦେଇ ।
ବୀରସେନ ଦୁରାନ୍ତକ ଧୂରୁମାକ୍ଷ ବୀର
ଚଳଚକ୍ର ବଳାନିକ ଆବର ଅଗ୍ନିର ।

ଭୂପକ ସୁବାହୁ ଆଉ ଧୃତ ମାଲ୍ୟବନ୍ତ
ଘୋରବୀର ବୀରସେନ ବିଷାକ୍ତ ନେତ୍ରାନ୍ତ ।
ଚନ୍ଦ୍ରଧ୍ୱଜ ଅଙ୍ଗାରକ ନିର୍ଭର ମେରୁଘ୍ନି
କାଳମୂର୍ତ୍ତି କାଳାନ୍ତକ କନକା ଏ ବେନି ।
ଖଗରାହୁ ମୃଗସେନ ସୁରମୂର୍ତ୍ତି ନାମ
ଅସ୍ତ୍ର ଘେନିଣ ମିଳିଲେ କରିଣ ବିକ୍ରମ ।
ବୀରଦ୍ରୁମ ମଦନ ଯେ ମହାବଳବନ୍ତ
ମେଘ ଅନ୍ଧାରେ ଦିଶନ୍ତି ଯେସନେ ପର୍ବତ ।
ଅର୍ଜ୍ଜୁନ ଭୟ କରିଲା ଅସୁରଙ୍କୁ ଦେଖି
ମଧୁସୂଦନଙ୍କୁ ଡାକେ ହୃଦପଦ୍ମେ ରଖି ।
ଜୟ ଜୟ ସାକ୍ଷୀ ତୁମ୍ଭେ ହେ ପରମାନନ୍ଦ
ଅସ୍ତ୍ର ବିଦ୍ୟାରେ ନିପୁଣ ତୁମ୍ଭେ ହେ ଗୋବିନ୍ଦ ।
ସୁମରଇ ପାର୍ଥବୀର ରେଣୁକାର ବଳା
ମହାପଣ୍ଡିତ ହେ ନାଥ ବିଦ୍ୟା ମହାଖଳା ।
ପର୍ଶୁଧର ପୁରୁଷ ହେ ମହାନନ୍ଦ ଦେହା
କୋଦଣ୍ଡର ଦୀକ୍ଷାଗୁରୁ ବଳୀୟାର ବାହା ।
କ୍ଷତ୍ରିୟ ଦର୍ପ ଧ୍ୱଂସନ ମନ୍ତ୍ରୀଙ୍କର ଗୁରୁ
ହେ ଦେବ ଅସାଧକୁ ତୁ ସିନା ସାଧକରୁ ।
ରେଣୁକା ନନ୍ଦନ ପର୍ଶୁରାମ ମମହୃଦେ
ଦୁରନ୍ତ ବଳ ନାଶିବି ତୁମ୍ଭର ପ୍ରସାଦେ ।
ତୋର ଅନୁଗ୍ରହେ ଭରଦ୍ୱାଜଙ୍କର ସୁତ
ଦ୍ରୋଣଗୁରୁ ମମ ପ୍ରାଣ ଅଟେ ପଞ୍ଚଭୂତ ।
ତାଙ୍କ ପ୍ରସାଦେ ସାଧିଲି ମୁହିଁ ଅସ୍ତ୍ରବିଦ୍ୟା
ଅନନ୍ତ ପ୍ରସନ୍ନ ନାଥ ତୁ ସୁନ୍ଦର ସିଦ୍ଧା ।
ହେ ଯୋଗେଶ୍ୱର ସହସ୍ର ଅର୍ଜ୍ଜୁନ ସୂଦନ
ତୁ ସିନା ଗଞ୍ଜିଲୁ ନାଥ କ୍ଷତ୍ରୀ ଦର୍ପମାନ ।
ପିତା ଅଭିମାନେ ତୋର ହେଲା କୋପମୂର୍ତ୍ତି
ଏକୋଇଶ ଥର କଲୁ ନିଃକ୍ଷତ୍ରିୟ ପୃଥ୍ୱୀ ।
ପିତା ବାକ୍ୟରେ ବଧିଲୁ ମାତା ତିନି ଭାଇ
ପୁଣି ତାଙ୍କୁ ଜୀଆଇଲୁ ତୋ ପିତାଙ୍କୁ କହି ।
ଯାବତ କାଳରେ ହୁଏ ତୋର ଅବତାର
ବୀର ବୋଲି ନ ଥୋଇଲୁ ଜଣେ ଏ ସଂସାର
ତୋ ବଳେ ନିଧନ ହେବ ଏ ଅସୁରାଧମ
ପରାକ୍ରମ ଦିଅ ମୋତେ ପ୍ରଭୁ ପର୍ଶୁରାମ ।
ଅବଳା ଅକାମ ତୁମ୍ଭେ ଅଟ ଗୁରୁ ସଚା
ଶୂଦ୍ରମୁନି ଶାରଳାର ପୂର୍ଣ୍ଣକର ବାଞ୍ଛା ।
ଶୁଣ ବୈବସ୍ୱତ ମନୁ କହନ୍ତି ଅଗସ୍ତି
ଚତୁର୍ଥ ଭାରତ ଆରଣ୍ୟକ ପର୍ବ ରୀତି ।
ପର୍ଶୁରାମ ଦ୍ରୋଣଗୁରୁ ଦୁଇ ଲୟ କରି
ବିନ୍ଧିଲା ଶର ପ୍ରସନ୍ନେ ଦ୍ୱିତୀୟ ଶ୍ରୀହରି ।
ବାବଲ ଶରେକ ଧରି ମାଇଲା ପ୍ରଚଣ୍ଡ
ଛିଡ଼ି ପଡ଼ିଲା ସକଳ ସେନାଙ୍କର ମୁଣ୍ଡ ।
ସଇନି ନିପାତ ଦେଖି କୁପିତ ନିର୍ବାତ
ପର୍ବତଶର ବିନ୍ଧିଲା ଧରିଣ ତ୍ୱରିତ ।
ଆକାଶ ବ୍ୟାପି ଆସଇ ସେହି ମହାଶର
ଗଗନ ମଣ୍ଡଳ କମ୍ପେ ହୋଇ ଥର ଥର ।
ଶବଦେ ବ୍ରହ୍ମାଣ୍ଡ ଅବା ପଡ଼ିବ କି ଖସି
ପାର୍ଥ ରଖ ବୋଲି ଡାକ ଦେଲେ ସ୍ୱର୍ଗବାସୀ ।
ଗିରି ସକଳେ ଉଡ଼ନ୍ତେ ଯାଇ ଆକାଶରେ
ଶୂନ୍ୟ ପୁରୁଷ ସକଳେ ପଳାଇଲେ ଡରେ ।
ବଜ୍ରମୁନା ଶର ମାରେ ପାର୍ଥ ମହାମତି
ମହାତେଜରେ ବ୍ୟାପିଲା ସେ ବଜ୍ର ଶକତି ।
ହିମବନ୍ତ ବିବାଦରେ ଯେହ୍ନେ ସସ୍ତ୍ରଯୋନି
ପର୍ବତ ପକ୍ଷ ଛେଦିଲେ ଘେନିଣ ଅଶନି ।
ସେ ବଜ୍ର ଶକ୍ତି ଅର୍ଜ୍ଜୁନ ପେଶିଲେ ଆକର୍ଷି
ସେହି ଗିରିମାନେ ସବୁ ହୋଇଗଲେ ଧ୍ୱଂସି ।
ଦେଖି ନିର୍ବାତ କପଟ ହାହାକାର କଲା
ସାଧୁରେ ପାଣ୍ଡବ ବୋଲି ବହୁ ପ୍ରଶଂସିଲା ।
ପୁଣି ଅସୁର ପନ୍ନଗ ଶର ଘେନି ମାରେ
ସର୍ପଙ୍କର ରୂପ ଦେଖି କମ୍ପନ୍ତି ତ୍ରିପୁରେ ।
ଖଗବର ନାରାଚକୁ ପେଶେ ସବ୍ୟସାଚୀ
ଖଗବର ନାଶଗଲା ଖଗ ଗଲେ ଲୁଚି ।
ପାଞ୍ଚକୋଟି ଶର ଘେନି ମାଇଲା ନିର୍ବାତ
ଆକର୍ଷିଣ ପେଶିଲା ସେ ଅର୍ଜ୍ଜୁନର ରଥ ।
ତୀକ୍ଷ୍ଣମୁନା ଶରେ ପାର୍ଥ ତାକୁଦେଲେ ଖେଦି
ଅସୁର ବିଚାରେ ପାର୍ଥ ଅଟେ ମହାଯୋଧି ।
କୌସ୍ତୁଭ ନାରାଚ ନାମେ ଦଶମୂନା ଶକ୍ତି
ତାହାକୁ ପେଶେ ବିଚିତ୍ର ବୀର୍ଯ୍ୟଙ୍କର ନାତି ।
ରଥ ଆରୋହିଣ ସର୍ବ ଦୈତ୍ୟବଳ ଥିଲେ
ପକ୍ଷୀ ପରାୟେ ହୋଇଣ ଗଗନେ ଉଡ଼ିଲେ ।
ଏହି ନିରାପକ୍ଷ ଯୁଦ୍ଧ ଦେଖିଣ ନିର୍ବାତ
କୁହୁକ ନାରାଚ ଘେନି ପେଶିଲା ତୁରିତ ।
ଶୂନ୍ୟ ଭୁବନ ହୋଇଲା ଅନ୍ଧକାରମୟ
ମାତଳିକି ପଚାରଇ ବୀର ଧନଞ୍ଜୟ ।
ଅସୁରେଶ୍ୱର କୂଟରେ ମହାଯୁଦ୍ଧ କଲା
ଏହିକ୍ଷଣି ପଳାଇବ ନିସତ ହୋଇଲା ।
ମାତଳି ବୋଇଲା ବାବୁ ନୁହଇ ଏମନ୍ତ
ପଳାଇ ନ ଯିବ ସେହି ଅଟେ ବଳବନ୍ତ ।
ଆବର ବୋଇଲା ସେହି ଅଟଇ ଦର୍ପିଷ୍ଠ
ନ ପୁଣ ଆମ୍ଭଙ୍କୁ ବଧ କରଇ ପାପିଷ୍ଠ ।

ଏତେ ବୋଲି ଅର୍ଜ୍ଜୁନଙ୍କୁ କହିଲା ମାତଳି
ଜଳପାଶ ଘେନି ପାର୍ଥେ ବିନ୍ଧେ ମହାବଳୀ ।
ମାତଳିକି ବୋଇଲା ଯେ ସୁଭଦ୍ରାର ନାହା
ନିର୍ବାତ କପଚ ପାଶେ ରଥ ମୋର ବାହା ।
ମାତଳି ବୋଇଲା କେତେ କୂଟକଲା ଦୈତ୍ୟ
କାଳପାଶ ଜଳପାଶେ ବାନ୍ଧିଲା ତୋ ରଥ ।
ନିବାରଣ ଶରଧରି ବାସବର ଶିଷ୍ୟ
ଧାତିକାରେ ଜଳପାଶେ କରିଲା ବିନାଶ ।
ଅର୍ଜ୍ଜୁନ ରଥକୁ ବାନ୍ଧିଥିଲା ସେ ଅସୁର
କୋପେ ଧନଞ୍ଜୟ ମାରେ ବଜ୍ର ମୁଦ୍ଗର ।
ମୁଦ୍‌ଗର ପଡ଼ନ୍ତେ ଦୈତ୍ୟ ରଥ ଗଲା ଭାଜି
ଢଳି ପଡ଼ିଲା ଅସୁର ରଥ ଗଳଗାଜି ।
ତୁଳେ ସଖା ନାହିଁ ଦୈତ୍ୟ ହୋଇଥିଲା ଶୂନ୍ୟ
କୁହୁକ ନାରାଚ ପେଶେ ପୁଣି ଯାତୁଧାନ ।
ସୂର୍ଯ୍ୟାବର୍ତ୍ତକ ଶରରେ ଅର୍ଜ୍ଜୁନ ବିନାଶେ
କୁହୁକ ବିନାଶ ହ୍ୱନ୍ତେ ସର୍ବପୁର ଦିଶେ ।
ଦେଖଇ ପାର୍ଥ ନିର୍ବାତ କପଚହିଁ ନାହିଁ
**ହସଇ** ଅର୍ଜ୍ଜୁନ ଦେବଦତ୍ତ ମୁଖ ଚାହିଁ ।
**ବୋଇଲେ** ମୁଁ ଜାଣିଥିଲି କ୍ଷତ୍ରୀ ଏ ନିର୍ବାତ
**କାହିଁ ଲୁଚିଗଲା** ଏହୁ କରିବା କେମନ୍ତ ।
ଦେବେ ଡାକ ଦେଲେ ଶୂନ୍ୟେ କରି ଦୀର୍ଘବାଣୀ
ପାତାଳ ସ୍ୱର୍ଗକୁ ଦୈତ୍ୟ ପଳାଇଲା ପୁଣି ।
ଦେବଙ୍କ ବଚନ ଶୁଣି ମାତଳି ସାରଥି
ପାତାଳ ସ୍ୱର୍ଗକୁ ରଥ ବାହିଲା ତଡ଼ତି ।
ମନ ପବନରେ ରଥ ବାହିଲା ମାତଳି
ରହ ରହ ବୋଲି ପାର୍ଥ ଆଗରେ ଓଗାଳି ।
ଅର୍ଜ୍ଜୁନ ବୋଇଲା ରହ ରହ ଦୈତ୍ୟମଲ୍ଲ
ନିଶ୍ଚୟ ରଣେ ଭାଙ୍ଗିବି ତୋର ସର୍ବ ବଳ ।
ଆରେ ଆରେ ପାମର ତୋ ଏଡ଼େକ ମହିମା
ସ୍ୱର୍ଗପୁରେ ଭାଙ୍ଗିଅଛୁ ଦେବତାଙ୍କ ସୀମା ।
ଧନ୍ୟରେ ଦନୁଜ ତୋର ଏଡ଼େକ ମହିମା
ସଂଗ୍ରାମେ ଜିଣିଲୁ ତୁହି ଇନ୍ଦ୍ର ରୁଦ୍ର ବ୍ରହ୍ମା ।
ପବନ ସହିତେ ହାରିଗଲେ ଏବେ ତୋତେ
ମୋତେ ଦେଖି ଅପସରି ଯାଉ କି ନିମନ୍ତେ ।
ଚାରିଯୁଗେ ତୁ ପ୍ରତାପୀ ଅଟୁ ବୀରମଣି
ସଂଗ୍ରାମ ଛାଡ଼ିଣ ଧର୍ମ ଲଙ୍ଘୁଅଛୁ ପୁଣି ।
ହାରିବା ଜିଣିବା କ୍ଷତ୍ରୀମାନଙ୍କର ଧର୍ମ
ନିସତ ହେଉଛୁ କିପାଇଁ ନ କରୁ ସଂଗ୍ରାମ ।
ନିର୍ବାତ କପଚ ପାର୍ଥ ବଚନ ଶୁଣିଣ
ଆମଞ୍ଚଇ କରେ ଧନୁ ଧରି ଘନ ଘନ ।

ପୁଣି ନିର୍ବାତ ସହସ୍ର ନାରାଚକୁ ଘେନି
ଅର୍ଜ୍ଜୁନର ଉପରକୁ ବିନ୍ଧେ ବେଳ ତିନି ।
କଉତୁକେ ବଞ୍ଚାଇଲେ ତାହା ବୀର ପାର୍ଥ
ଅନେକ ନାରାଚ ପୁଣି ବିନ୍ଧଇ ନିର୍ବାତ ।
ଅନଳ ନାରାଚ ଘେନି ପେଶିଲା ଅସୁର
ଘୋଟିଲା ଅଗ୍ନିର ତେଜ ଆସି ତିନିପୁର ।
ସଂସାରକୁ ଦହିଦେବ ସେ ଶର କିଞ୍ଚିତେ
ମେଘଶର ବିନ୍ଧେ ପାର୍ଥ ଅତି କୋପଚିତ୍ତେ ।
ମୂଷଳ ଧାରାରେ ମେଘ ବରଷିଲା ଜାଣି
ପ୍ରଚଣ୍ଡ ଅନଳ ସବୁ ଲିଭିଲା ତକ୍ଷଣି ।
ପୁଣି କାଳାନଳ ଶର ପେଶିଲା ଅର୍ଜ୍ଜୁନ
ନିର୍ବାତ କପଚ ରଥ କରିଲା ଛେଦନ ।
ତାହାଦେଖି କୋପାନଳ ନିର୍ବାତ ଅସୁର
ଆକ୍ରୋଷି ବିନ୍ଧିଲା ତହୁଁ ଅନ୍ଧକାର ଶର ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି ତହିଁ
ମହାଘୋର ଅନ୍ଧକାରେ କିଛି ନ ଦିଶଇ ।
ମାତଳି ବୋଇଲା ତୁହି ଶୁଣ ରେ ପାଣ୍ଡବ
ଏହିକ୍ଷଣି ଅସୁର ଯେ କପଟ କରିବ ।
ଅର୍ଜ୍ଜୁନକୁ ବୁଝାନ୍ତେଣ ମାତଳି ସାରଥି
ଏଣେ ଯେ କପଟ କଲା ଦୈତ୍ୟ ମହାରଥୀ ।
ନାଗପାଶ ବାଣେ ଦେଲା ପାର୍ଥ ରଥ ବାନ୍ଧି
ପାତାଳ ପୁରକୁ ସେହୁ ଯାଉଅଛି ଖେଦି ।
ମାତଳି ବୋଇଲା ଆହୋ ଦେଖ ଅରଜୁନ
ନାଗଫାଶରେ ବାନ୍ଧିଲା ପୁଷ୍ପକ ବିମାନ ।
ତାହା ଦେଖି ପାର୍ଥ ଗରୁଡ଼ାସ୍ତ୍ର ବୃଷ୍ଟିକଲା
ଖଣ୍ଡ ଖଣ୍ଡ କରି ନାଗପାଶ କାଟିଦେଲା ।
ନାଗପାଶ କାଟି ବଳେ ପୁଷ୍ପକ ବିମାନ
ନିର୍ବାତ କପଚେ ନ ଦେଖିଲା କୁନ୍ତୀନାନ ।
ପୃଥ୍ୱୀଯାକ ହୋଇଅଛି ଅନ୍ଧକାର ମୟ
ପାତାଳ ସ୍ୱର୍ଗକୁ ଗଲା ସେହି ଦୁଷ୍ଟରାୟ ।
ବିନ୍ଧିଲା ନାରାଚ ଚନ୍ଦ୍ରଚୂଡ଼ ଫାଲଗୁନି
ଅନ୍ଧାର ଫିଟି ଦିଶିଲା ଭୁବନ ଯେ ତିନି ।
ଦେବତାଏ ଫୁକାରନ୍ତି ଆକାଶରେ ବାଣୀ
ବାବୁ ନିର୍ବାତ ପଳାଇଗଲା ଏହିକ୍ଷଣି ।
ପାତାଳ ପୁରକୁ ଏବେ ଯାଉଛି ବିମାନ
ବେଗେ ତୁ ଦୈତ୍ୟକୁ ମାର ପଣ୍ଡୁଙ୍କ ନନ୍ଦନ ।
ନିର୍ବାତର ଭୟେ ସର୍ବେ ହେଲେ ଜଳଶାୟୀ
ଭାସିଲା ତୁ ନ ରଖିଲୁ ଏହି ସ୍ୱର୍ଗ ମହୀ ।
ଦେବତାମାନଙ୍କ ବାକ୍ୟ ଶୁଣିଣ ଅର୍ଜ୍ଜୁନ
ମାତଳିକି ବୋଇଲା ତୁ ବାହା ମୋର ଯାନ ।

ଅରଜୁନର ଆଜ୍ଞାରେ ମାତଳି ସାରଥି
ପାତାଳ ସ୍ୱର୍ଗକୁ ରଥ ବାହିଲାକ ଧାତି ।
ନିର୍ବାତ କପଚ ଏଣେ ଯାଉଛି ପଳାଇ
ପାଞ୍ଚଲକ୍ଷ ଯୋଦ୍ଧା ସଙ୍ଗେ ଯାଏ ବେଗ ହୋଇ ।
ଦେଖିଣ ବିନ୍ଧିଲା ଅର୍ଜ୍ଜୁନକୁ ବେଗେ ଶର
ଅର୍ଜ୍ଜୁନହିଁ ବିନ୍ଧିଲେକ ନାରାଚ ପନ୍ଦର ।
ଅନଳଶର ପରିଘ ଅଟେ ତୀକ୍ଷ୍ଣମୁନା
ଅନର୍ଯ୍ୟାପ୍ତ ଶର ପଡ଼େ ଅସୁରଙ୍କ ସେହ୍ନା ।
ସମରେ ପଡ଼ିଲେ ତହୁଁ ଦଇତ୍ୟ ସକଳ
ଦେବଦତ୍ତ ଶଙ୍ଖନାଦ କଲେ ଇନ୍ଦ୍ରବାଳ ।
ପୁଣି ମେଘଶର ଘେନି ନିର୍ବାତ ବିନ୍ଧିଲା
ପବନାଶରେ ଅର୍ଜ୍ଜୁନ ତାହା ଉଡ଼ାଇଲା ।
ଘୋରଯୁଦ୍ଧ ଦେଖିକରି ପଳାଏ ପଳାଦ
ନବଶତ ଯୋଦ୍ଧା ସହ ହୋଇ ଦଳବନ୍ଧ ।
ପାତାଳ ସ୍ୱର୍ଗେ ପଳାଏ ନାନା ମାୟା କରି
ପ୍ରବିଷ୍ଟ ହୋଇଲା ଯାଇ ହିରଣ୍ୟର ପୁରୀ ।
ଅର୍ଜ୍ଜୁନ ବୋଇଲା ତୁମ୍ଭେ ଶୁଣ ପିତାମହ
ନିର୍ବାତର ନିକଟକୁ ବେଗେ ରଥବାହ ।
ଆକାଶରେ ରହି ଆଜ୍ଞା କଲେ ସୁରପତି
ନିର୍ବାତ ପଳାଉଅଛି ପବନହୁଁ ଗତି ।
ଏହିକ୍ଷଣି ପଶିବ ସେ ହିରଣ୍ୟର ପୁରେ
କେହି ପଶନ୍ତା ନୋହିବ ସେହି ଭୁବନରେ ।
ଯଦି ରୁଣ୍ଡ ହେବେ ବ୍ରହ୍ମା ବିଷ୍ଣୁ ମହେଶ୍ୱର
ପଶି ନ ପାରିବେ ସେହି ଅଜେୟ ଦୁର୍ଗର ।
ବାସବଦେବ ବଚନ ଶୁଣି ସବ୍ୟସାଚୀ
ମାତଳିକି ବୋଲେ ଚାଲ ଦୈତ୍ୟ ଯହିଁ ଅଛି ।
ମାତଳି ବୋଇଲେ ତୁମ୍ଭେ ଶୁଣ ହେ ପାର୍ଥିବ
ଏକ୍ଷଣି ହିରଣ୍ୟଗର୍ଭ ପୁରରେ ପଶିବ ।
ମାତଳି ବଚନେ ପାର୍ଥ ହୋଇ ମହାକ୍ରୋଧୀ
ତୂଣୀରୁ କାଢ଼େ ନାରାଚ ନାମେ ମନଭେଦୀ ।
ଆକର୍ଷି ବିନ୍ଧିଲା ପାର୍ଥରଥ କରି ଛିଡ଼ା
ଆକାଶ ସ୍ୱର୍ଗର ଯାଏ କଲା ଶରପୀଡ଼ା ।
ଦୈତ୍ୟ ରଥ ବାହେ ଲୋହିତାକ୍ଷ ଯେ ସାରଥି
ରଥ ଚାଳି ନ ପାରନ୍ତେ ନ ହୋଇଲା ଗତି ।
ନିର୍ବାତ କପଚ ବୋଲେ ରଥ ବାହା ବାବୁ
ସାରଥି ବୋଇଲା ଆଉ କେଉଁଦିଗେ ଯିବୁ ।
ଆକାଶ ଭୁବନ ଶର ପୀଡ଼ା କଲା ପାର୍ଥ
ରହିଣ କର ତୁ ଯୁଦ୍ଧ ନ ହୋଇ ନିସତ ।
ସାରଥି ବଚନ ଶୁଣି ରହିଲା ଲେଉଟି
ଅଶୀସହସ୍ର ଯୋଦ୍ଧା ଘେନି କଲା ଶରବୃଷ୍ଟି ।

ନିରନ୍ତର ନାରାଚକୁ ବିନ୍ଧଇ ଦଇତ୍ୟ
ପଡ଼ଇ ଶର ଅର୍ଜ୍ଜୁନ ପୁଷ୍ପକର ରଥ ।
ଶର ପୀଡ଼ାରେ ଅର୍ଜ୍ଜୁନ ଦୈତ୍ୟ କରି ବନ୍ଦୀ
ଗାଣ୍ଡୀବ ଧନୁରେ ଅସ୍ତ୍ରମାନଙ୍କୁ ସେ ସନ୍ଧି ।
ନାରାଚକୁ ଅବିରତ ପେଶେ ଫାଲଗୁନି
ସେ ଆଘାତରେ ପଡ଼ିଲେ ଦୈତ୍ୟ ସପ୍ତତିନି ।
ପୁଣି ପୁଣିହିଁ ନାରାଚ ବିନ୍ଧଇ କିରୀଟୀ
ହୃଦୟ ଦେଶରେ ବାଜି ପିଠିଯାଏ ଫୁଟି ।
ରୁଧିର ଉଦ୍‌ଗାର କରି ପଡ଼ନ୍ତି ଦଇତେ
କେହି ମୁଖରେ ଅଙ୍ଗୁଳି ଭରନ୍ତି ନିସତେ ।
ରୋଷଭରେ ଡାକଇ ବାସବର ବଳା
ଏବେ ନିର୍ବାତ କପଚ କାହିଁ ପଳାଇଲା ।
ରହି ଯୁଦ୍ଧ କର ସର୍ବେ ନ ହୁଅ ନିସତ
ଆଜ ସମରରେ ତୋତେ କରିବି ନିପାତ ।
ଏହା କହି ବାୟୁଶର ମାରେ ଫାଲଗୁନି
ତୂଳା ପରାୟେ ଉଡ଼ିଲେ ଅସୁର ସଇନି ।
ଶୁଣ ଆହେ ଚଇତନ ଅର୍ଜ୍ଜୁନ ମହିମା
ଆକାଶରେ ସାଧୁ ସାଧୁ କଲେ ସୁରବ୍ରହ୍ମା ।
ଚୌରାଶୀ ସହସ୍ରଯୂଣ ଊର୍ଦ୍ଧ୍ୱ ପରିଯନ୍ତେ
ଶରପୀଡ଼ା କଲା ପାର୍ଥ କିଞ୍ଚିତ ଯେ ମାତ୍ରେ ।
ବେନି ତାଳରେ ଉତ୍ସର୍ଗ ବହଲେ ସେ ପୁଣି
ଅସଂଖ୍ୟ ଅଗୋଚର ସେ କେ ପାରେ ପ୍ରମାଣି
ସୈନ୍ୟବଳ ତାହାର ଯେ କେହି ନାହିଁ ସଖା
ପାଞ୍ଚ ମର୍ବୁଦ ଯୋଦ୍ଧାଙ୍କୁ ପାର୍ଥ ମଣ୍ଟେ ଏକା ।
ବାତେ ରମ୍ଭାବୃକ୍ଷ ଯେହ୍ନେ ଲୋଟଇ ଅବନୀ
ଏକା ନିର୍ବାତ ଯୁଝଇ କୁଠାରକୁ ଘେନି ।
ବୁଲାଏ କୁଠାର ସେହୁ ବାୟୁଗତି କରି
ଅର୍ଜ୍ଜୁନ ଉପରେ ପୁଣି ପିଟେ କୋପକରି ।
ପ୍ରତିଜ୍ଞାବନ୍ତ ଅର୍ଜ୍ଜୁନ ଶିର ତାର ସଞ୍ଚେ
ଗାଣ୍ଡୀବ ଧନୁରେ ପାଶୁପତକୁ ଆମଞ୍ଚେ ।
ତ୍ରିପୁରାକୁ ବଧକଲେ ହର ଯେ ଶରରେ
ତାହାକୁ ସନ୍ଧାନ କଲା ବାସବ କୁମରେ ।
ଅନ୍ଧକ ବଧ ହୋଇଲା ଯେଉଁ ଶରାଘାତେ
ତାହା ନେଇ ପ୍ରହାରିଲେ ବୀରବର ପାର୍ଥେ ।
ବିଷ୍ଣୁଙ୍କର ତେଜଶର ଅଗ୍ନିଙ୍କର ଫଳ
ପବନର ଗତି ରୁଦ୍ରପକ୍ଷ ମହାବଳ ।
ତିନି ଦେବତାରେ ହୋଇଅଛି ଏକବାଣ
ମହାଦେବ କରିଛନ୍ତି ତାହାକୁ ନିର୍ମାଣ ।
ସେ ଦେବଶର ପର୍ବତ ସମାନରେ ଗରୁ
ତ୍ରିଭୁବନ କମ୍ପାଇଲା ଧାନ କରୁ କରୁ ।

ମନ୍ତ୍ର ପଢ଼ିଣ ଛାଡ଼ିଲା ବୀର ଧନଞ୍ଜୟେ
ଘାୟେଣ ଭେଦିଗଲା ସେ ନିର୍ବାତର କାୟେ ।
ଲୋମ ଲୋମରୁ ରୁଧିର ବହିଗଲା କଣ୍ଟି
ଯେଉଁରୂପେ ଗଙ୍ଗା ବହେ ମେରୁ ଗିରି ଫୁଟି ।
ରୁଧିରେ ତ୍ରିପଣ୍ଡ ହୋଇ ଦିଶେ ତାର କାୟେ
ଦୈତ୍ୟରାଜ ଏକାବେଳେ ଅଚେତନ ହୁଏ ।
ଅଚେତନରେ ଅସୁର ପଡ଼େ ମହୀଲୋଟି
ଦେବଦତ୍ତ ଶଙ୍ଖନାଦ କରିଲେ କିରୀଟୀ ।
ଚିତ୍ରସେନ ଜୟସେନ ଥିଲେ ଅନ୍ତରୀକ୍ଷେ
ଆସି ଭେଟିଗଲେ ସେହୁ ପାର୍ଥଙ୍କୁ ପ୍ରତ୍ୟକ୍ଷେ ।
ଅନେକ ପ୍ରକାର ରତ୍ନ ଅଳଙ୍କାର ମାନ
ଘେନିଣ ମଣ୍ଡନ କଲେ ହୋଇ ତୋଷମନ ।
ଅସୁର ସୈନ୍ୟରୁ ବାକୀ ଯେତେ ଯୋଦ୍ଧାଥିଲେ
ଚିତ୍ରସେନ ଜୟସେନ ବିକୋଟି କାଟିଲେ ।
ତିରଣ ପ୍ରମାଣ କରି କାଟି ନିର୍ବାତକୁ
ସକଳ ଗଲେ ହିରଣ୍ୟଗର୍ଭର ପୁରକୁ ।
ଜୟ ସିତାଂଶୁ ମଉଳି ଦେବ ଶୂଳପାଣି
ତ୍ରିନୟନ ଶୋଭାପାଏ ମନ୍ଦାରକୁ ଜିଣି ।
ତ୍ରିଶୂଳ ପାଶ ଅଙ୍କୁଶ ଆବର ପିନାକୀ
ଡମ୍ବରୁ ବାଦ୍ୟେ ତ୍ରିପୁର ପଡ଼ଇ ଚମକି ।
ଅନନ୍ତ ନାଗ ପଇତା କରେ ଫୁଁଫୁଁକାର
ଗଳେ ହାଡ଼ମାଳ ଶୋହେ ଅତି ଚମତ୍କାର ।
ମସ୍ତକରୁ ଝର ଝର ବହି ମନ୍ଦାକିନୀ
କୃତାର୍ଥ କରୁଅଛନ୍ତି ପଡ଼ିଣ ଅବନୀ ।
ବ୍ୟାଘ୍ରଛାଲ ପରିଧାନେ ବସି ବୃକ୍ଷ ପିଠି
ଗିରିଜାଙ୍କୁ ବାମଅଙ୍କେ ବସାଇ ଥିବେଟି ।
ଏହିରୂପେ ଥରେ ମୋତେ ଦେଇ ଦରଶନ
ମୋହର ଦୁରିତ ସବୁ କରାଅ ମୋଚନ ।
ହେ ଶଙ୍କର ଶଙ୍କା ମୋର ତୁଟାଇଣ ଦିଅ
ଜନ୍ତୁପତିକି ନ ଥିବ ଯେଉଁରୂପେ ଭୟ ।
ସର୍ବଦା ମନରେ ଦକା ହେଉଛି ବିଶେଷ
ବନ ପର୍ବରେ କହଇ ଶ୍ରୀଶାରଳା ଦାସ ।



## ଅର୍ଜୁନ ନିର୍ବାତ କପଟଙ୍କୁ ବଧ କରିଥିବାରୁ ତହିଁ ନିମନ୍ତେ ସ୍ବର୍ଗରେ ଉତ୍ସବ ଏବଂ ଅର୍ଜୁନର ବରପ୍ରାପ୍ତି ଓ ଉର୍ବଶୀର ଶାପ

ଅଗସ୍ତିଙ୍କୁ ପଚାରିଲେ ମନୁ ନୃପରାୟ
ନିର୍ବାତକୁ ବଧକଲା ବୀର ଧନଞ୍ଜୟ ।
ତଦପରେ କେଉଁ କଥା କଲେ ଦେବଗଣ
ସେହି କଥା ଶୁଣି ମୁହିଁ ହୋଇବି କାରଣ ।
କହନ୍ତି ଅଗସ୍ତି ମୁନି ଶୁଣ ଦଣ୍ଡଧାରୀ
ଯେଉଁ ଯେଉଁ କଥା ହେଲା କହୁଛି ବିସ୍ତାରି ।
ଐରାବତ ଆରୋହିଲେ ଦେବ ମଘବାନ
ସର୍ବସୁର ଘେନି ବିଜେ ଦୈତ୍ୟର ଭୁବନ ।
ଦେଖନ୍ତି ଅସୁରଙ୍କର ବାସ ଆୟତନ
ମେଡ଼ ମଣ୍ଡପ ଜଗତୀ ଦେବାଳୟ ସ୍ଥାନ ।
ନିର୍ମଳ ଭୁବନ ତାର ଅଷ୍ଟରତ୍ନ ଜିଣି
ଭଲ ପଦାର୍ଥ ଲୁଣ୍ଟିଲେ ଦେବତା ସଇନି ।
ଦେବାଙ୍ଗ ବସନ ପୁଣି ନାନା ଅଳଙ୍କାର
ବିଦ୍ୟାଧରମାନେ ମିଳି ସବୁ କଲେ ଜୁର ।
ବାସବ ଦେବତା ପୁଣି ପାର୍ଥକୁ ଘେନିଣ
ଐରାବତ ହସ୍ତୀପୃଷ୍ଠେ କଲେ ଆରୋହଣ ।
କାଳଦଣ୍ଡ ଘେନି ବିଜେକଲେ ନାଶକର
ଆଲୋକ୍ୟ ମଣିକୁ ଦେଲେ ଅର୍ଜୁନ ହୃଦର ।
ବୋଇଲେ ଏ ମାଳା ଥିଲେ ନ ପଡ଼େ ପ୍ରମାଦ
କେବେହେଁ ମନରେ ଜାତ ନ ହୁଅଇ ଖେଦ ।
ଇନ୍ଦ୍ରଦେବତା ଅର୍ପିଲେ ଅମୃତାକ୍ଷ ମଣି
ଅର୍ଜୁନ ହୃଦୟ ଦେଶେ ଲମ୍ବାଇଲେ ଆଣି ।
ବ୍ରହ୍ମା ଜପାମାଳ ଦେଲେ ପାର୍ଥକରେ ଘେନି
ବୋଇଲେ ନାନାଦି ବ୍ୟାଧିସବୁ ହୁଏ ହାନି ।
ଏ ମାଳଥିଲେ କଦାଚ ନ ପଡ଼େ ପ୍ରମାଦ
ଘେନିଣ ଅର୍ଜୁନ ତହୁଁ ହୋଇଲେ ଆନନ୍ଦ ।
ଅର୍କମଣି ଦେଲେ ନେଇ ଗଗନ ବିହାରୀ
ବୋଇଲେ ଏ ମଣିଥିଲେ ଦିଗ ଦିଶିପାରି ।
ବୈଦୁର୍ଯ୍ୟ ମଣିକୁ ଘେନି ତୋଷେ ଦେଲେ ସୋମ
ବୋଇଲେ ଏ ମଣିଥିଲେ ମେଣ୍ଟେ କାଳମାନ ।
ବହୁରତ୍ନ ଦେଇ ଦେବେ ପାର୍ଥେ କଲେ ପୂଜା
ପାର୍ଥଙ୍କୁ ଅମର ପୁରେ ଘେନିଲେ ବିଡ଼ୋଜା ।
ଅଭିଷେକ ଆସ୍ଥାନକୁ କରିଲେ ମଣ୍ଡଣି
ନାନା ଅଳଙ୍କାରେ ତାକୁ କରିଲେ ଖଞ୍ଜଣି ।
ସେ ଅଭିଷେକ ମଣ୍ଡପେ ପାର୍ଥେ କରି କୋଳ
ଅନେକ ରତ୍ନରେ ପୂଜା କଲେ ଆଖଣ୍ଡଳ ।
ମର୍ଦ୍ଦଳ କଂସାଳ ତୁରୀ ତାଳର ବିଧାନେ
ଚଉଷଠି କୋଟି ପୁଣି ବିଦ୍ୟାଧରୀମାନେ ।
ଚଞ୍ଚୁପୁଟ ଚାଞ୍ଚପୁଟ ଉର୍ଦ୍ଧ୍ୱଗତ ଘଟି
ନବପଞ୍ଚକ ଆରକ୍ତ ପୂଜାରେ ସେ ଖଟି ।
ଚଉଷଠି କୋଟି ତହିଁ ବିଦ୍ୟାଧର ନାରୀ
ଅନେକ ବେଶ ଭୂଷଣେ ସଜ ହୋଇକରି ।
ବାହୁଟି କଙ୍କଣ ଚୂଡ଼ୀ ତାଡ଼ ତୋଡ଼ମାନ
ବିଦ ମୁଦି ହାରମାନେ ଦିଶିଲେ ଶୋଭନ ।

ତିଥି ବାର ନକ୍ଷତ୍ର ଯେ ଗଣିକାଙ୍କ ନାଟ
ଆସ୍ଥାନେ ନାଟ କରନ୍ତି ଗୋଷ୍ଠୀ ହୋଇ ହୃଷ୍ଟ ।
ବିଦ୍ୟାଧରମାନେ କଲେ ଆଳାପର ବାଣୀ
ନୃତ୍ୟରଙ୍ଗକୁ ଆରମ୍ଭ ତହିଁ କଲେ ଆଣି ।
ବେଢ଼ିଣ ଅପସରୀଏ ନୃତ୍ୟରଙ୍ଗେ ରଙ୍ଗୀ
ଝମଝମ ପାଦଗତି ଯେସନେ ମାତଙ୍ଗୀ ।
ଆରୋପଣ ବିଦ୍ୟମାନ ଚୌଷଠି ବନ୍ଧେଣ
ପାଦଗତି କରି ଉଭାହେଲେ ଠିଆଟାଣ ।
ପଖାଉଜ ମୃଦଙ୍ଗାଦି ବୀଣାସୁରେ ମିଶି
କୋକିଳ ସ୍ୱରେ ଭାଷନ୍ତି ସର୍ବ ଶୁଭ୍ରକେଶୀ ।
ମୃଦଙ୍ଗ ବାଜଇ ଧିକ ଧିକ ଯେ ସ୍ୱରଟି ।
ସୁସ୍ୱରରେ ଆରୋପଣ ଓଁ କାର ପ୍ରକଟି
ରମ୍ଭା ଉର୍ବଶୀ ମେନକା ଆଉ ଚିତ୍ରରେଖା
ମଦନିକା କାମସେଣା ମୋହିନୀ ନାୟିକା ।
ଯାଙ୍କମୂଳେ ଚଉଷଠି କୋଟି ବିଦ୍ୟାଧରୀ
ଅମର ସଭାରେ ଆସି ନୃତ୍ୟରଙ୍ଗ କରି ।
ଶୋଭାଙ୍ଗୀ ସୁନ୍ଦରୀ ଭରହରଷ ଚଞ୍ଚଳା
ବୀଣାବାଦ୍ୟ ରସରେ ସେ ଖଟନ୍ତି ଅବଳା ।
ଏଡ଼ିଲେ ମତ୍ତଙ୍ଗୀ ରଙ୍ଗ ପ୍ରଥମେ ପ୍ରସରି
ମଦନରେ ଉନମତ୍ତା ହୋଇଣ ଅପ୍‌ସରୀ ।
ଈଶ୍ୱର କରିଥିଲେ ଯେ ମଦନେ ଦହନ
ପାର୍ଥରୂପେ ମାନବରେ ହେଲେ ଉତପନ୍ନ ।
ବାସବ ସୁତ ଭାରୋଇ ମହାମଲ୍ଲ ପାର୍ଥ
ଏହା ଯୋଗୁଁ ସ୍ୱର୍ଗପୁର ହୋଇଲା କୃତାର୍ଥ ।
ସପତ ବ୍ରହ୍ମାଣ୍ଡ ମଧ୍ୟେ ଏହୁ କ୍ଷତ୍ରୀ ଏକା
ଜଳ ଅନଳ ଏହାର କିଛି ନାହିଁ ଶଙ୍କା ।
ନିର୍ବାତ କପଚର ଏ ହରିଲା ସଂପ୍ରଧି
ଦୁରାନ୍ତକ ନାଶଗଲା ଯାହାଙ୍କର ବୁଦ୍ଧି ।
ଉଭାଉଳେ ଲଜ୍ଜା ତେଜି ମତ୍ତ ଗୀତ ଗାଇ
ସ୍ଥକିତ ହେଲେ ନାୟିକା ଅର୍ଜ୍ଜୁନଙ୍କୁ ଚାହିଁ ।
ବାସବ ବୋଇଲେ ସୁତ ତୋ ପରାୟେ ପୁତ୍ରେ
ଜନ୍ମେ ଜନ୍ମେ ପରାପତ ହେଉଥାଉ ମୋତେ ।
ମୋର ବାଞ୍ଛା ପ୍ରାପ୍ତହେଉ ତୋର ମନଗୋଟି
କହି ପାର୍ଥକୁ ମଣ୍ଡିଲେ ମୁକୁଟ କିରୀଟି ।
ଏକେତ ସୁନ୍ଦର ଏହୁ ଅନଙ୍ଗ ସାକ୍ଷାତ
ଦ୍ୱିଗୁଣ ଭୂଷଣ କଲେ ତାକୁ ପୁରୁହୁତ ।
ମଦନେ ଆବେଶ ହୋଇ ସର୍ବ ବିଳାସିନୀ
ଇଚ୍ଛା କରନ୍ତି ବସିବେ ପାର୍ଥ ସଙ୍ଗେ ଘେନି ।
ନୃତ୍ୟରଙ୍ଗରେ ସୁନ୍ଦରୀ ଗାଉଛନ୍ତି ଗୀତ
ସାକ୍ଷାମେ ବା ଅସାକ୍ଷାମେ କରୁଛନ୍ତି ନୃତ୍ୟ ।

କିରୀଟୀ ମୁକୁଟ ବାନ୍ଧି ସହସ୍ର ଲୋଚନ
କିରୀଟ ନାମକୁ ଦେଲେ ହୋଇ ତୋଷମନ ।
ଅମରାଧିନାଥ କୋଳେ ଧନଞ୍ଜୟ ବସି
ଅପସରୀ ନୃତ୍ୟ ଦେଖି ସନ୍ତୋଷ ପ୍ରକାଶି ।
ଇନ୍ଦ୍ର ବୋଇଲେ ମୋହର ସାଧୁପୁତ୍ର ଗୋଟି
ନିର୍ବାତ ଭୟରୁ ମୋତେ ରଖିଲୁ କିରୀଟୀ ।
ସ୍ୱାମୀ ମୋତେ ଦେବ ଯାହା ମାଗିବି ମୁଁ ବର
ଦୁର୍ଯ୍ୟୋଧନ ଆମ୍ଭର ଯେ ଅଟେ ସହୋଦର ।
ତାହାର ସଙ୍ଗତେ ଏତେ ଆମ୍ଭର ବିବାଦ
ଅବଶ୍ୟ ସଂଗ୍ରାମରେ ଯେ ହୋଇବ ସେ ସାଧ
ସ୍ୱାମୀ ଦୁର୍ଯ୍ୟୋଧନ ମିତ୍ର ଅଟେ ବୀର କର୍ଣ୍ଣ
ଆବର ବିଶେଷେ ସେହୁ ଆମ୍ଭେ ଅଟୁ ଭିନ୍ନ ।
ଅବଶ୍ୟ ରଣ ହୋଇବ ଦୁର୍ଯ୍ୟୋଧନ ତୁଲେ
କର୍ଣ୍ଣବୀର ଆମ୍ଭପଟେ କେବେହେଁ ନଇଲେ ।
ତାର ତହିଁ ଅଛି ଯେଉଁ ଅମୃତ କୁଣ୍ଡଳ
ବଜ୍ରଛଉରି ଅଭେଦ୍ୟ କବଚ କୁଣ୍ଡଳ ।
ଏହି ତିନି ପଦାର୍ଥକୁ ତାହାକୁ ମାଗିଣ
ଆଣିକରି ମୋତେ ଦେବୁ ସତ୍ୟ ଏ ବଚନ ।
କିସ ଦେଇ ଅର୍ଜ୍ଜୁନ ରେ କରିବି ମୁଁ ପୂଜା
ବର ମାଗ ବର ମାଗ ବୋଇଲେ ବିଡ଼ୋଜା ।
ସତ୍ୟ କଲି ଦେବି ଯା ମାଗିବୁ ଆରେ ସୁତ
କରପତ୍ର ଯୋଡ଼ିକରି ବୋଲେ ତହୁଁ ପାର୍ଥ ।
ସତ୍ୟଯୁଗେ ଚଉବନ ବେଳ ପରିଯନ୍ତେ
ତ୍ରେତୟାଯୁଗ କୋଡ଼ିଏ ଥର ସେହି ମତେ ।
ଦ୍ୱାପର ଯୁଗରେ ଧାଡ଼ିଦେଲା ବାର ଦଶ
ସଂଗ୍ରାମେ ହାରିଲେ ତାକୁ ଦେବତା ତ୍ରିଦଶ ।
ଚୌରାଅଶୀ ବେଳ ଧାଡ଼ିଦେଲା ତିନିଯୁଗେ
ସକଳ ସମ୍ପଦ ହରିନିଏ ମୋର ଆଗେ ।
ତୁ ମୋର ଅମରପୁରରକ୍ଷୀ ପୁତ୍ର ଗୋଟି
ତୋହର ପ୍ରସାଦେ ଆମ୍ଭ କଷ୍ଟ ଗଲା ମେଣ୍ଟି ।
ଦେବେନ୍ଦ୍ର ବୋଇଲେ ଆମ୍ଭେ ସତ୍ୟକଲୁ ବାବୁ
ଆଣିବୁ କର୍ଣ୍ଣକୁ ତହିଁ ଯେବେ ତୁ ସ୍ମରିବୁ ।
ପାର୍ଥ ବୋଇଲେ ସମର ସ୍ଥିର ଯେବେ ହେବ
ସେହିଦିନ ସୁମରିବି ଶୁଣ ଆହେ ଦେବ ।
ଅର୍ଜ୍ଜୁନ ବଚନେ ଇନ୍ଦ୍ର କଲେ ସନମତ
ସଭାମଧ୍ୟେ ବସିଥିଲେ ସର୍ବ ଦଇବତ ।
ସେ କଥାକୁ ଶୁଣୁଥିଲେ ଦେବ ଦିବାକର
ସମସ୍ତ କହିଲେ ଯାଇ କର୍ଣ୍ଣର ଆଗର ।
ଆରେ କର୍ଣ୍ଣ ପାର୍ଥ ବଧ କଲା ନିର୍ବାତକୁ
ଦେବ ଇନ୍ଦ୍ର ପୁରୁଷାର୍ଥ କରିଲେ ତାହାକୁ ।

ଦେବେନ୍ଦ୍ର ପାର୍ଥକୁ ତୋଷେ ବର ଯେ ଯାଚିଲା
ଅମୃତ କୁଣ୍ଡଳ ଛୌରୀ ଅର୍ଜ୍ଜୁନ ମାଗିଲା ।
ବାବୁ ଇନ୍ଦ୍ର ଆସିବଟି ଦ୍ୱିଜରୂପ ଧରି
ଏ ପଦାର୍ଥ ମାଗିବେ ତୁ ନ ଦେବୁ ଯେପରି ।
କର୍ଣ୍ଣ ହାସ୍ୟ କଲା ଶୁଣି ସୂର୍ଯ୍ୟଙ୍କ ବଚନ
ଭୋ ପିତା କିପାଁଇ କହ ଏମନ୍ତ ବିଧାନ ।
ଇନ୍ଦ୍ର ମାଗିବେ ଯଦ୍ୟପି ତଳହସ୍ତେ ମୋତେ
ମୁହିଁ ଅବା ସେ ପଦାର୍ଥ ନ ଦେବି କେମନ୍ତେ ।
ସୂର୍ଯ୍ୟ ବୋଇଲେ ଧରିଲି ତୋତେ ବାଳ କାଳେ
ଶ୍ରବଣେ ଭରିଲି ତୋର ଅମୃତ କୁଣ୍ଡଳେ ।
ଶୟନକାଳେ କର୍ଣ୍ଣରୁ ଝରିବ ଅମୃତ
ମୁଖରେ ପଡ଼ନ୍ତେ ତୋର ହେବୁ ସମରଥ ।
ଅଭେଦ କବଚ ଅଛି ତାଳୁକା ଭିତରେ
ତାହା ଥିଲେ ଅସ୍ତ୍ର ସବୁ ନ ଭେଦେ ଦେହରେ ।
ଶରୀରରେ ଅଛି ବଜ୍ର ଛଉରୀ ଯେ ତୋର
ବଜ୍ର ଶକତି ପଡ଼ିଲେ ମଧ ହେବ ଚୂର ।
ଏତେକ ତୋ ଅଙ୍ଗେ ଥିଲେ ହେବୁ ଜଗଜ୍ଜିତା
କର୍ଣ୍ଣ ବୋଲେ ତାତ ମୁହିଁ ଦାନେ ଶୂରବନ୍ତା ।
ସ୍ୱର୍ଣ୍ଣ ଶତଭାର ଦାନ ଦିଅଇ ମୁଁ ନିତି
ଶତ ଅଶ୍ୱମେଧ ଫଳ ପାଏ ନିତି ପ୍ରତି ।
ଏକାବେଳେ ଦାନ ଦେବି ଊର୍ଦ୍ଧ୍ୱହସ୍ତ କରି
ଭାଗ୍ୟେ ଥିଲେ ଦାନ ନେବେ ଆସି ବଜ୍ରଧାରୀ
ଆଦିତ୍ୟ ବୋଇଲେ ବାବୁ ହୋଇଲୁ ତୁ ମୋହ
କର୍ଣ୍ଣ ବୋଇଲେ ହେ ପିତା ଏ କଥା ନ କହ ।
ଶୁଣ ଚଇତନ ଏହା କହନ୍ତେ ଯେ କର୍ଣ୍ଣ
ଶୁଣିଣ ବିରଞ୍ଚି ଦେବ ହେଲେ ଅନ୍ତର୍ଦ୍ଧାନ ।
ଅର୍ଜ୍ଜୁନକୁ ଘେନିଗଲେ ବାସବ ଦେବତା
ଅନେକ ଆନନ୍ଦ ହୋଇ ଖଟନ୍ତି ବନିତା ।
ଅର୍ଜ୍ଜୁନକୁ ଦେଖିକରି ବିରହେ ଉର୍ବଶୀ
ବିହ୍ୱଳିତ ହୋଇ ସେହୁ ନ ପାରଇ ଭାଷି ।
ଅଳପ ଅଳପ କରି ଗାଆନ୍ତି ବାହୁନି
କିଞ୍ଚିତେ ଦୃଷ୍ଟି ନିକ୍ଷେପ କରେ ଫାଲଗୁନି ।
ଅର୍ଜ୍ଜୁନର ବଦନକୁ ଚାହିଁବା ନିମନ୍ତେ
ବିଚିତ୍ର ନୃତ୍ୟ କରନ୍ତି ପାର୍ଥର ଅଗ୍ରତେ ।
ମହା ନୃତ୍ୟ ଦେଖି ପାର୍ଥ ଚାହିଁଲା କିଞ୍ଚିତ
ମୁଖ ଦେଖିଣ ଉର୍ବଶୀ ହୁଏ ମୋହ ଗତ ।
ନିତାନ୍ତ ଆସକ୍ତା ଯହୁଁ ହୋଇଲା ବନିତା
ତା ଦେଖି ଜାଣି ପାରିଲେ ସ୍ୱର୍ଗର କରତା ।
ଇନ୍ଦ୍ର ଆଜ୍ଞାଦେଲେ ତହୁଁ ନୃତ୍ୟ ରହୁ ରହୁ
ଅନ୍ୟ ମନ୍ଦିରେ ଚଳିଲେ ଶ୍ରୀଗାଣ୍ଡିବ ବାହୁ ।

ଦେବସ୍ତିରୀମାନେ ଦେଲେ ଅର୍ଜ୍ଜୁନକୁ ଅର୍ଘ୍ୟ
ବହୁତ ଉତ୍ସବ କଲେ ସେ ଅମର ସ୍ୱର୍ଗ ।
ଅପୂର୍ବ ପଦାର୍ଥମାନ କରିଲା ଭୋଜନ
ବିଚିତ୍ର ମନ୍ଦିରେ ପାର୍ଥ କରିଲା ଶୟନ ।
ବୃନ୍ଦାଅର୍କ ଯକ୍ଷପତି ଆଉ ବୃଦ୍ଧଶ୍ରବା
ଅର୍ଜ୍ଜୁନକୁ ଅର୍ଘ୍ୟ ଦେଇ ବୋଇଲେରେ ବାବା ।
ମୋର ପତ୍ନୀକି ନିର୍ବାତ ବଳେ ନେଲା ଧରି
ତୁହି ଯେବେ ବଧକଲୁ ମୋ ଦାରା ବଇରୀ ।
ତେବେ ଚାରିଅଶ୍ୱ ନେଇ ଯୋଚ ତୋର ରଥେ
ସମରେ ଶତ୍ରୁ ଜିଣିବୁ ସଦା ଜୟ ତୋତେ ।
କ୍ଷଣକେ ଶୂନ୍ୟେ କ୍ଷେପନ୍ତି ଏହି ଚାରି ହୟେ
ଶସ୍ତ୍ର ନ ଭେଦଇ ଜାଣ ତାହାଙ୍କର କାୟେ ।
ମୁହିଁ ତୋତେ ପୂଜା କରି ଶ୍ୱେତ ଅଶ୍ୱ ଘେନି
ଆଜଠାରୁ ନାମ ହେଉ ଶ୍ୱେତ ଯେ ବାହନି ।
ଶୟନ ସ୍ଥଳରେ ଅର୍ଘ୍ୟ ଦେଇ ବିଦ୍ୟାଧର
ଚଳିଗଲେ ବୃଦ୍ଧଶ୍ରବା ଆପଣା ମନ୍ଦିର ।
ବିଦ୍ୟାଧର ମଧ୍ୟେ ଶ୍ରେଷ୍ଠ ଯେ ପ୍ରଚଣ୍ଡବଳୀ
ତାହାର ପତ୍ନୀର ନାମ ଅଟଇ ଚଞ୍ଚଳୀ ।
ତାହାକୁ ହରିଣ ନେଲା ନିର୍ବାତ ଦଇତ
ସେ ପ୍ରଚଣ୍ଡବଳୀ ଆସି ପୂଜିଲା ବହୁତ ।
ଅର୍ଜ୍ଜୁନକୁ କୋଳେ ଧରି ବୋଲେ ବରମାଗ
ମୋର ଦାରା ବଇରୀକି କଲୁ ସମଯୋଗ ।
ପ୍ରଚଣ୍ଡବଳୀ ପ୍ରସନ୍ନେ ବର ଯେ ଯାଚଇ
ବିନୟୀ ହୋଇଣ ପାର୍ଥ ବଚନ କହଇ ।
ଅଜ୍ଞାତବାସ ଆମ୍ଭର ହେବ ଯେତେ ଦିନ
ଅସ୍ତ୍ରକୁ ଜଗିବୁ ଶମୀବୃକ୍ଷେ ଯାତୁଧାନ ।
ଦେବାସୁର ନର ତହିଁ ପ୍ରାଣେ ନ ଛାଡ଼ିବୁ
ମୃତ୍ୟୁପିଣ୍ଡ ପ୍ରାୟେ ହୋଇ ବୃକ୍ଷେ ଝୁଲୁଥିବୁ ।
ଯୋଜନେକ ଦୂରଠାରୁ ନ ଯିବେ ସେ ପଥେ
ପଚା ଦୁର୍ଗନ୍ଧ ସର୍ବଦା ବହୁଥିବ ଗାତ୍ରେ ।
ଯଦି ଜନ ମାନବାଦି ଦେଖୁ ନିକଟରେ
ନିର୍ଘାତ ରଡ଼ିଏ ଦେବୁ ପଡ଼ିବେ ସେଠାରେ ।
ବିଦ୍ୟାଧର ବୋଲେ ସତ୍ୟ ମୋହର ଅଟଇ
ଗୋପନ ସରିବାଯାଏ ବୃକ୍ଷେ ଥିବି ରହି ।
ବର ଦେଇଣ ପ୍ରଚଣ୍ଡ ଯହୁଁ ଗଲା ଚଳି
ନାରୀମାନେ ବନ୍ଦାଇଲେ ନେଇ ଅର୍ଘ୍ୟଥାଳି ।
ସମସ୍ତ ନିର୍ବାହ କରି କପାଟ କିଳିଣ
ପଲ୍ୟଙ୍କ ଉପରେ ପାର୍ଥ କଲା ଆରୋହଣ ।
ଏମନ୍ତ ସମୟରେ ଯେ ଦେବ ମଘବାନ
ନିଜ ମନ୍ଦିରେ ବିଜୟ ଶୟନର ସ୍ଥାନ ।

ମଦନ ଶରେ ଆରତ ହୁଅଇ ଉର୍ବଶୀ
ନିଦ୍ରା ନ ମାଡ଼ଇ ତାକୁ ଭାଳୁଅଛି ବସି ।
କିପାଇଁ ସେ ଧନଞ୍ଜୟ ଆସେ ଅମରକୁ
ପଞ୍ଚଭୂତାତ୍ମା ଦହିଲା ଦେଖିଣ ତାହାକୁ ।
କାମବିଶିଖ ପରାୟେ ତା କଟାକ୍ଷ ବାଣ
ମାରନ୍ତେ ଦହିର୍ଯ୍ୟ ହୁଏ ପଞ୍ଚଭୂତ ପ୍ରାଣ ।
କୋଇନ୍ତା ନନ୍ଦନ ଆସି ନାଶକଲା ମୋତେ
ଅର୍ଜ୍ଜୁନକୁ ନ ପାଇଣ ବଞ୍ଚିବି କେମନ୍ତେ ।
ବ୍ରହ୍ମାଙ୍କୁ ମୋହିଲି ମୁହିଁ ମୋର ରୂପ ଗୁଣେ
କିଞ୍ଚିତରେ ମଲି ଦେଖି ମାନବରୁ ଜଣେ ।
ମମ ପଞ୍ଚଆତ୍ମା ସଦା ପାଉଛି କଷଣ
ଅର୍ଜ୍ଜୁନ ନୟନ ମୋତେ ହେଲା ପଞ୍ଚବାଣ ।
ନିଶ୍ଚୟ ଜୀବନ ଯିବ ନ ପାରିବି ରଖି
ସୁମରଣା କରେ ତହୁଁ ଅଭୟା କାମାକ୍ଷୀ ।
ପ୍ରସନ୍ନ ଯୋଗେଶ୍ୱରୀ ଗୋ ମୋତେ କର ରକ୍ଷା
ଅନାଥ ଜନର ମାତା ପୂରୁ ମନୋବାଞ୍ଛା ।
ଦାନବଧ୍ୱଂସୀ କାମାକ୍ଷୀ ମାଗୋ କାମସେଣୀ
ଅର୍ଜ୍ଜୁନ ନୟନ ଶରେ ହେଲି ବିରହିଣୀ ।
ମୁହିଁ ତୋହର ଶରଣ ଜଗତ ଜନନୀ
ପାଷାଣ ଝଡ଼ଇ ମାଗୋ ତୋର ନାମ ଶୁଣି ।
ସ୍ତମ୍ଭନ ମୋହନ ବଶ୍ୟ ଉଚ୍ଚାଟନ ବିଦ୍ୟା
ଏ ସବୁ ବିଦ୍ୟାକୁ ମାଗୋ ତୁ ପରମସିଦ୍ଧା ।
ମାନେ ମାନବତୀ ମାଗୋ ତୁ ଯେ ଡାକେଶ୍ୱରୀ
ଦୁଃସହ ସଂକଟୁ ମାଗୋ ବେଗେ କର ପାରି ।
ତୁ ଅଟୁ ମହତ ମୁହିଁ ତୋହର ଆଶ୍ରିତ
ଅର୍ଜ୍ଜୁନକୁ ପରାପତ କରାଅ ଗୋ ମାତ ।
କୋଇନ୍ତା ନନ୍ଦନ ଯେହୁ ବୀର ଫାଲଗୁନି
ଦେଇ ଦୟା ମୋତେ କର ମାଗୋ କାତ୍ୟାୟିନୀ ।
ପରମ ବିଦ୍ୟା ସାଧନ ତୋର ଗୋସାମଣି
ପ୍ରସନ୍ନା ହୁଅ ଗୋ ମୋତେ ଅଭୟ ତାରିଣୀ ।
ନିର୍ବାତ କପଚ ଯାର ହସ୍ତରେ ନିଧନ
ମୁଁ ତା ନେତ୍ର ଶରରେ କି ପାଇବି ଜୀବନ ।
ମୋତେ ପ୍ରସନ୍ନ ହୁଅ ଗୋ ତୁ ସର୍ବମଙ୍ଗଳେ
ଶାରଳାଦାସ ପ୍ରଣମେ ତୋର ପାଦତଳେ ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଉର୍ବଶୀ ମନରେ ଯହୁଁ ସୁମରେ ପାର୍ବତୀ ।
ସେ ପାର୍ବତୀ ବିଜେ କଲେ ବାସବ କଣ୍ଠରେ
ତହୁଁ ମଘବା ବିଚାରେ ଆପଣା ମନରେ ।
ପରମାନନ୍ଦ ନାମରେ ଏକ ବିଦ୍ୟାଧର
ତାହାକୁ ଡକାଇ ଆଜ୍ଞା ଦେଲେ ପୁରନ୍ଦର ।

ବୋଇଲେ ବହନ ଚଳ ଉର୍ବଶୀକି ଘେନି
ଶୟନ ସ୍ଥାନେ ସମର୍ପି ଆସ ଫାଲଗୁନି ।
ଇନ୍ଦ୍ର ବାକ୍ୟେ ବିଦ୍ୟାଧର ପରମ ଆନନ୍ଦେ
ଉର୍ବଶୀର ମନ୍ଦିରରେ ବିଜୟ ସାନନ୍ଦେ ।
ବାହାରରେ ଥାଇ ଡାକ ଦିଏ ବିଦ୍ୟାଧର
ବାସବର ଆଜ୍ଞା ତୋତେ ହୁଅ ଗୋ ବାହାର ।
ସୁରେନ୍ଦ୍ର ବଚନେ ତୋତେ ନେବିଧାତିକାରେ
ନେଇ ଭେଟାଇବି ଆଜି କୋଇନ୍ତା କୁମରେ ।
ତାହା ଶୁଣିଣ ଉର୍ବଶୀ ହୋଇଲା ମାଜଣା
ମନରୁ ଦୁଃଖ ତେଜିଣ ହେଲା ସେ ଫୁରୁଣା ।
ପରମନ ଜାଣନ୍ତା ସେ ଦେବ ଜମ୍ଭଭେଦୀ
କାମାକ୍ଷୀ ପ୍ରସନ୍ନେ ହେଲା ମୋର କାର୍ଯ୍ୟସିଦ୍ଧି ।
ନାନାଦି ପ୍ରକାରେ ବେଶ ହୋଇ ବିରହିଣୀ
ମନର ସାନନ୍ଦେ ଚଳେ ତହୁଁ ସେହିକ୍ଷଣି ।
ପୁଷ୍ପକେ ଆରୋହି ତହୁଁ ଚଳିଲା ଅବଳା
ଅର୍ଜ୍ଜୁନ ନିଦ୍ରା ମନ୍ଦିର ଦ୍ୱାରରେ ମିଳିଲା ।
ବିମାନରୁ ଓହ୍ଲାଇ ସେ ଠେଲଇ କପାଟ
ପରମାନନ୍ଦେ ଡାକଇ ସେ ବାସବ ଚାଟ ।
ଯାହା ମୋତେ ଆଜ୍ଞାଦେଲେ ଦେବ ଜମ୍ଭଭେଦୀ
ଉର୍ବଶୀ ଆସିଛି ତାର ବଚନ ସମ୍ପାଦି ।
ଏମନ୍ତ ବୋଲିଣ ସେହୁ ଗଲା ନିଜପୁରେ
ଅର୍ଜ୍ଜୁନ ଅର୍ଜ୍ଜୁନ ବୋଲି ନାରୀ ଡାକେ ଦ୍ୱାରେ ।
କବାଟ ଫିଟାଅ ମୁହିଁ ଯିବି ଭିତରକୁ
ତୋର ପାଶେ ସୁନାସୀର ପେଶିଛି ଆମ୍ଭଙ୍କୁ ।
ପାର୍ଥ ବୋଲେ ଅଛି ମୁହିଁ ସମାଧି ସଂଯୋଗେ
କେବଣ ସନ୍ଦେଶ କହ ସେହି ଠାବେ ବେଗେ ।
ଉର୍ବଶୀ ବୋଲେ ଭିତରେ ଯାଇଁ କହିବଇଁ
ତେଣୁ ଶୀଘ୍ର ଅଇଲି ମୁଁ ଇନ୍ଦ୍ର ଆଜ୍ଞା ପାଇ ।
ଅର୍ଜ୍ଜୁନ ବୋଇଲା ମୋର ଇଷ୍ଟ ସୁମରଇ
ପଦ୍ମାସନେ ବସି ଯୋଗେ ଲୟ ମୁଁ ସାଧଇ ।
ତୋର ସମସ୍ୟା କହିବୁ ରଜନୀ ପାହିଲେ
ଉର୍ବଶୀ ବୋଲେ ତୋ କାଷ୍ଠା ନାହିଁ ଏ ମଣ୍ଡଳେ
ନିର୍ବାତ କପଚର ଯେ ଭ୍ରାତା ପୁତ୍ର ଥିଲେ
ଆସନ କିପରି ହେବ ସେମାନେ ବାହିଲେ ।
କ୍ଷତ୍ରିୟ ହେଲେ ହୁଅନ୍ତି ବହୁତ ବିବାଦୀ
ଭୋଜନ ନିଦ୍ରା ତାହାର କେଉଁଠି ସମାଧି ।
ନିତ୍ୟକର୍ମାଦି କରନ୍ତି ସକଳ ଭକତେ
ସକଳ ଶାସ୍ତ୍ରରେ ଧର୍ମ ଥାଇ ଅନୁବ୍ରତେ ।
ଯୁକତରେ ଚଞ୍ଚଳା ସେ ଦିବ୍ୟରୁଚି ବାଛି
ସମସ୍ୟାରେ ହାରି ପାର୍ଥ ନ ବୋଲଇ କିଛି ।

ମଦନ ଅସାଷ୍ଟମରେ ବାଳୀ ଦିଏ ଡାକ
ଶୁଣିଣ ପାର୍ଥ ବସିଲେ ଯେଉଁରୂପେ ମୂକ ।
ମଉନରେ ଉର୍ବଶୀକି କିଛିହିଁ ନ ଭାଷି
ପୁନଃ ପୁନଃ ଡାକଦିଏ ବିରହେ ଉର୍ବଶୀ ।
କଠୋର ଦେଖିଣ ତହିଁ ବୋଲେ ଧନଞ୍ଜୟେ
ବାସବ ଭୁବନେ ବିଜେ କର ଆଗୋ ମାୟେ ।
ଇନ୍ଦ୍ର ପରାୟେ ସ୍ୱାମୀକି କରି ପରିତ୍ୟାଜ୍ୟ
ମାନବ ଦୂଷିତକୁ ତୁ କରୁଛୁ ଗ୍ରାହିଯ୍ୟ ।
ଇନ୍ଦ୍ର ଦେବତାର ତୁହି ପ୍ରାଣର ବଲ୍ଲଭୀ
ମୁଁ ଅଟେ ତୋର ତନୟ ଚରଣେ ସେବିବି ।
ଉର୍ବଶୀ ବୋଇଲା ଆମ୍ଭେ ଅଟୁ ଯେ ଚଞ୍ଚଳା
ପ୍ରମଦା ଆମ୍ଭର ନାମ ସର୍ବ ସଙ୍ଗେ ମେଳା ।
ଯେହୁ ରୂପବନ୍ତ ଆମ୍ଭେ ତାକୁ ଦେଉ ଅଙ୍ଗ
ବଡ଼ ସ୍ନେହେ ଥାଉ ଆମ୍ଭେ ସବୁଙ୍କରି ସଙ୍ଗ ।
ଚନ୍ଦ୍ରଙ୍କର ପୁତ୍ର ବୁଧ ଇନ୍ଦ୍ର ହୋଇଥିଲା
ସେହୁ ଆମ୍ଭମାନଙ୍କର ସଙ୍ଗେ ବିହରିଲା ।
ବୁଧର ନନ୍ଦନ ପୁଣି ହେଲା ପୁରୋରବା
ସେ ପୁରୋରବାର ପୁଣି ଆମ୍ଭେ କଲୁ ସେବା ।
ପୁରୋରବାର ନନ୍ଦନ ଆୟୁର ସନ୍ତତି
ତିନିଯୁଗ ଅମରରେ ହେଲା ଅଧିପତି ।
ଏକାଙ୍କ ବଲ୍ଲଭୀ ସେହୁ କରିଥିଲେ ମୋତେ
ନହୁଷର ନନ୍ଦନ ଯେ ଯଯାତି ନୃପତେ ।
ସେହି ଯଯାତିର ପୁଣି ଆମ୍ଭେ ଭାର୍ଯ୍ୟା ଅଟୁ
ଅନେକ ଭକତି କରି ତା ଚରଣେ ଖଟୁ ।
ବାବୁ ତୁହି ସେ ବଂଶରେ ହେଲୁ ଉତପତ୍ତି
ତେଣୁକରି ଆମ୍ଭର ତୁ ଅଟୁ ପଣନାତି ।
ଅର୍ଜ୍ଜୁନ ବୋଇଲେ ତୁମ୍ଭେ କହିଲ ଯଥାର୍ଥ
ଅନେକ ଆୟୁ ବଳରୁ ଯୁଗେ ଯୁଗେ ବଞ୍ଚ ।
ମାଗୋ ବୟସୀ ସ୍ତିରୀ ଯେ ହରନ୍ତି ଅଜ୍ଞାନେ
ଅସୁର ଯୋନିରେ ଜନ୍ମ ହୁଅନ୍ତି ସେମାନେ ।
ଗୁରୁର ପରମଗୁରୁ ଅଟୁ ମହାମ୍ରାଣୀ
ମାରାଗ ତୁଲେ କାଚକୁ ସମ କରୁ ଜାଣି ।
ମୁହିଁତ ମନୁଷ୍ୟ ମୋର ମାତାହିଁ ମାନୁଷୀ
ଦେବସ୍ତିରୀ ହୋଇ ମୋତେ କରି ଲୋଡୁଧ୍ୱଂସି
ମାଗୋ ଭୋଜନ ରମଣ ଦଣ୍ଡକର କଥା
ଜାତାନ୍ତର ହେଲେ ଦଣ୍ଡେ ଶମନ ଦେବତା ।
ମାଗୋ ତୋ ଚରଣେ ମୋର ସେବା ନିରନ୍ତର
କଲ୍ୟାଣ କରିଣ ଏବେ ଚଳିଯାଅ ଘର ।
ଉର୍ବଶୀ ବୋଇଲେ ତୁହି କ୍ଷତ୍ରୀ ବଳବନ୍ତା
ପର କାତରେ ଶରଣେ ତୁହି ଉଦ୍ଧାରନ୍ତା ।
ବିରହୀ କନ୍ୟା ମୁଁ ତୋର ପଶିଲି ଶରଣ
ତୁ ଦେବ ଅର୍ଜ୍ଜୁନ ମୋତେ କରିବୁ କାରଣ ।
ମାନବରେ ଜାତ ତୁହି କକ୍ଷା ଜଗଜେଠୀ
ତିନିଲୋକ ଜଣାଇଲୁ ତୋ ନାମ କିରୀଟୀ ।
ପୁରୁଷେ ବଶ ହୁଅନ୍ତି ଆମ୍ଭ ରୂପ ଦେଖି
ତୋର ପାଶେ ଏବେ ମୁହିଁ ହୋଇଲି ନିର୍ମାଖି ।
ଦେବତାମାନେ ଅମରେ ତୋତେ କଲେ ପୂଜା
କିରୀଟୀ ନାମ ତୋହର ଦେଲେ ଦେବରାଜା ।
ଆମ୍ଭେ ତ ଚଞ୍ଚଳା ନାରୀ ଅଟୁ ଯେ ସବୁରୀ
ରଜନୀ ପ୍ରଭାତେ ପୁଣି ନୋହୁ ନା କାହାରି ।
ଏମନ୍ତ କରି ଆମ୍ଭଙ୍କୁ ସୃଜିଲା ବିଧାତା
ଗୁରୁ ଗଉରବ ନାହିଁ ନାହିଁ ପିତାମାତା ।
ଆମ୍ଭେ ବେଶ୍ୟାନାରୀ ଅଟୁ ସକଳଙ୍କ ରୁଚି
ଏଥକୁ ସଂକୋଚ ନୁହେଁ ଆରେ ବାବୁ କିଛି ।
ଆମ୍ଭରି କର୍ମରେ ଯେବେ ହୋଇଲୁ ପ୍ରାପତ
ପୂରାଇବି ମନୋରଥ ସମର୍ପିଣ ଗାତ୍ର ।
ଧନ ପ୍ରାଣ ଦେଇ ମୋତେ ନ ପାଆନ୍ତି ଲୋଡ଼ି
ଅମୃତକୁ ଦେଉଅଛୁ ହାତରେ ଫୋପାଡ଼ି ।
ପୁଷ୍ଟ ଭୋଜନ ଦେଖିଣ ପଳାଉ ତୁ ଡରେ
ଯତ୍ନରେ ପ୍ରାପତ ନିଧି ଫିଙ୍ଗିଦେଉ ଦୂରେ ।
ବହୁ ରତ୍ନ ଅଳଙ୍କାର ତୋତେ ମୁହିଁ ଦେବି
ମନ ଜାଣିଣ ତୋହର ସେବା କରୁଥିବି ।
ଗୁଣାଗୁଣ ନ ଜାଣି ତୁ ହେଉଅଛୁ ବଣା
ଭୁଞ୍ଜିଲା ଲୋକ ଜାଣଇ ଲୁଣି କି ଅଲଣା ।
ଅପୂର୍ବ ପଦାର୍ଥ ମିଳେ ପାଶରେ ତୋହରି
ସ୍ୱାଦ ପାଇଲେ ବାଳକ ନ ପାରୁ ପାଶୋରି ।
ଅର୍ଜ୍ଜୁନ ବୋଇଲେ ତୁହି କହିଲୁ ବହୁତ
ପରମ ପୁରୁଷ ପିତା ପରସ୍ତିରୀ ମାତ ।
ମୁହିଁ ତୋହର ନନ୍ଦନ ତୁହି ମୋର ମାୟେ
ଏହିଠାରେ ରହି ମୁହିଁ ପଡ଼ିଛି ତୋ ପାୟେ ।
ବ୍ରାହ୍ମଣ ପତ୍ନୀକୁ କାହିଁ ପାଇବ ଚଣ୍ଡାଳ
ସେହିପରି ମାତା ପୁତ୍ର କାହିଁ ହେବ ମେଳ ।
ଉର୍ବଶୀ ବୋଇଲା ବାବୁ ନ କହ ଏମନ୍ତ
ଅକାରଣର କାରଣେ ପୁଣ୍ୟହିଁ ବହୁତ ।
ବୁଡ଼ିଲା ଶରୀର ମୋର ପଡ଼ି ଗଲି ମୂର୍ଚ୍ଛା
ଶରଣ ପଞ୍ଜର ବାନା କରିବୁ ତୁ ରକ୍ଷା ।
ଅର୍ଜ୍ଜୁନ ବୋଇଲା ତୁହି କହୁ ଯେ ଅନୀତି
ସ୍ୱଭାବରେ ବେଶ୍ୟା ତୁହି ଅଟୁ ନୀଚଜାତି ।
ଦାସୀ ଅଙ୍ଗସ୍ୱରଣନେ ଯେହ୍ନେ ଅବିଧାନ
ବେଶ୍ୟାଅଙ୍ଗ ସେହିପରି ଚଣ୍ଡାଳୀରୁ ହୀନ ।

ପାକାସ୍ପର୍ଶ ସ୍ତିରୀ ଆଉ ଜାତ୍ୟନ୍ତର ଲୋକ
ଏହାଙ୍କୁ ଛୁଇଁଲେ ଦୋଷ ଅଛଇ ଅନେକ ।
ଜ୍ଞାନ ଥାଉଁ ଏମାନଙ୍କୁ ଛୁଇଁ ନ ଯୋଗାଇ
ଜୀର୍ଣ୍ଣ କୂପେ ନରକରେ ସେ ନିଶ୍ଚେ ପଡ଼ଇ ।
ପଳା ଆଲୋ ମୋଡ଼ୀ ଅଟୁ ବଡ଼ ତୁ ପାପିଷ୍ଠା
ଜ୍ଞାନ ବୁଡ଼ାଇଣ ତୁହି ହୋଇଲୁଣି ନଷ୍ଟା ।
ଏମନ୍ତ ଅର୍ଜ୍ଜୁନ ଯହୁଁ ବହୁ ଗାଳିଦେଲେ
ଉର୍ବଶୀ ବୋଲେ ପାଷାଣ ତରଳେ ଦେଖିଲେ
ଧର୍ମନାଶିନୀ ଆମ୍ଭେ ରେ ମୁନି ତପ ଭାଙ୍ଗୁ
ମାନବ ଛାର ହୋଇଣ ଏଡ଼େ ଦର୍ପେ ଗଞ୍ଜୁ ।
ମାତା ତୋହର ଅଟଇ ନାମ ଯେ କୋଇନ୍ତୀ
ତାହାକୁ ବିବାହ କଲା ପଣ୍ଡୁ ନରପତି ।
ସେ ପର ପୁରୁଷ କଲା ପୁତ୍ର କାମନାର୍ଥେ
ଏଡ଼େ ନିଷ୍ପାପର ତୁହି ତୋର ବାପ କେତେ ।
କ୍ଷୀରୋଦ ପରାୟେ ମୁହିଁ ତୋତେ କଲି ଆଶ
କାଳେ ପାମରରେ ମୋତେ କଲୁ ତୁ ନିରାଶ ।
ତହୁଁ କୋପକରି ଶାପ ବିହିଲେ ଉର୍ବଶୀ
ଯାଅରେ ଅର୍ଜ୍ଜୁନ ଏବେ ନପୁଂସକ ହୋସି ।
ମୋତେ ଅପ୍ରାପତ ଯେବେ ହୋଇଲୁ ନିର୍ଦ୍ଦୟା
ଆନକୁ ପ୍ରାପ୍ତ ନ ହେଉ ତୋହର ଏ କାୟା ।
ଏହିରୂପେ ଶାପ ଦେଇ ଚଳିଲେ ଉର୍ବଶୀ
ନିଜ ମନ୍ଦିରେ ପ୍ରବେଶ ହୋଇଲା ସେ ଆସି ।
ରାତ୍ର ପ୍ରଭାତେ ମାଜଣା ଖଟିବାର କାଳେ
ଉର୍ବଶୀକି ପଚାରିଲେ ଦେବ ଆଖଣ୍ଡଳେ ।
ଇଚ୍ଛାଏ ଭୋଜନ ପୁଣି ବାଞ୍ଛାମତେ ପ୍ରୀତି
ମହାପୁଣ୍ୟରେ ଏମାନ ମିଳନ୍ତି ଯେ କତି ।
ଉର୍ବଶୀ ବୋଇଲେ ଶୁଣ ହେ ସହସ୍ରଯୋନି
ତୁମ୍ଭେ ମୋତେ ପଠାଇଲ ମୁଁ ଗଲି ରଜନୀ ।
ଯେ ଯାହାର ପ୍ରକୃତିକି ଛାଡ଼ିବ କେମନ୍ତେ
ରାତ୍ରଯାକ ଅନିଦ୍ରା ମୁଁ ନାସ୍ତିକଲା ମୋତେ ।
ସହି ନ ପାରିଣ ମୁହିଁ ତାକୁ ଦେଲି ଶାପ
ନପୁଂସକ ହୁଅ ବୋଲି କହେ କରି କୋପ ।
ଶୁଣି ଇନ୍ଦ୍ର କୋପକଲେ ଉର୍ବଶୀ ବେଶ୍ୟାକୁ
ବୋଇଲେ ଶାପଦେଲୁ ମୋ ନିର୍ଦ୍ଦୋଷ ପୁତ୍ରକୁ ।
ଅକାରଣର କଥାରେ ଶାପ ଦେଲୁ ତୁହି
ମାନବ ଯୋନିରେ ଜାତ ହୁଅ ଯାଇ ମହୀ ।
ଉର୍ବଶୀ ବୋଇଲା ଦେବ ନକର ତୁ କୋପ
ତୋ ପୁଅକୁ ହିତ ହେବ ମୋ କହିବା ଶାପ ।
ଅବଶ୍ୟ ପାଣ୍ଡବମାନେ ହୋଇବେ ଗୋପନ
କୀଚକର ବଧ ପାଇଁ ଭିଆଣ ଏମାନ ।
ମଘ ମତ୍ସ୍ୟଦେଶର ଯେ ବିରାଟ ନୃପତି
ତାହାର ରାଜ୍ୟେ ଲୁଚିବେ ଯାଇଁ ତୋ ସନ୍ତତି ।
କୋନ୍ତଭଟ୍ଟ ନାମେ ଖ୍ୟାତ ହେବ ଯୁଧିଷ୍ଠିର
ଭୀମସେନ ଖ୍ୟାତ ହେବ ହୋଇ ସୂପକାର ।
ଗ୍ରନ୍ଥିକାର ହୋଇ ତହିଁ ନକୁଳ ରିହବ
ତନ୍ତ୍ରୀପାଳ ନାମେ ଗୋପ୍ୟ ହେବ ସହଦେବ ।
କୁଳବଧୂ ଯାଜ୍ଞସେନୀ ସୈରିନ୍ଧ୍ରୀ ହୋଇଣ
ସୁଦେଷ୍ଣାର ନିକଟରେ ରହିବେ ଯାଇଣ ।
ତୋର ପୁତ୍ର ଧନଞ୍ଜୟ ଗୋପନ ନିମନ୍ତେ
ନପୁଂସକ ହୋଇକରି ଥିବ ଦିନାକେତେ ।
ଗୁଣ ଘର୍ଷଣର ଚିହ୍ନ ଅଛି ବାମହସ୍ତେ
ସୁନାଚୂଡ଼ି ନ ପିନ୍ଧିଲେ ଲୁଚିବ କେମନ୍ତେ ।
ଚୂଡ଼ୀ ପିନ୍ଧି ବେଣୀ ପାରି ହେବ ବୃହନ୍ନାରୀ
ନୃତ୍ୟ ଗୀତ ଶିଖାଇବ ବିରାଟ କୁମାରୀ ।
ଏହିରୂପେ ପାଞ୍ଚଭାଇ ହୋଇଲେ ଗୋପନ
ମୋର ଶାପ ତେଣୁ ହିତ ହେବ ମଘବାନ ।
ଶୁଣିକରି ଦେବ ଇନ୍ଦ୍ର ହୋଇଲେ ହରଷ
ଅନେକ ରସେ ଉର୍ବଶୀ ଖଟେ ଇନ୍ଦ୍ର ପାଶ ।
ଜୟ ଜୟ ଜଗନ୍ନାଥ ଜଗତ ବନ୍ଦନ
ନୀଳାଚଳ କ୍ଷେତ୍ରେ ଦେବ ତବ ଅନୁଷ୍ଠାନ ।
ବ୍ରହ୍ମା ବିଷ୍ଣୁ ହର ତୁମ୍ଭେ ବିଜେ ତିନିମୂର୍ତ୍ତି
ଏ କଳି କଳୁଷ ପଙ୍କୁ କରିବାକୁ ମୁକ୍ତି ।
ଜନ୍ମରୁ ମୁରୁଖ ମୋର ନାହିଁ ବୁଦ୍ଧି ଜ୍ଞାନ
ଶାରଳା ଦାସକୁ ମୁକ୍ତି ଦିଅ ଜନାର୍ଦ୍ଦନ ।
ଏତିକି ବିନତୀ ପ୍ରଭୁ ତବ ଶ୍ରୀ ପୟରେ
ଜଣାଉଅଛି ଅଧମ ଏ ବନ ପର୍ବରେ ।



## ପାଣ୍ଡବମାନଙ୍କୁ ବନରୁ ଫେରାଇ ଆଣିବା ନିମନ୍ତେ ଶ୍ରୀକୃଷ୍ଣଙ୍କୁ ସଙ୍ଗରେ ଘେନି ଶକୁନି ଓ ବିଦୁରର ଯୁଧିଷ୍ଠିରଙ୍କ ନିକଟକୁ ଗମନ

ମନୁରାଜା ପଚାରିଲେ ଅଗସ୍ତି ମୁନିଙ୍କୁ
ସୂର୍ଯ୍ୟଦେବ ଆସିଥିଲେ କର୍ଣ୍ଣ ନିକଟକୁ ।
ଆକାଶେ ସମର ହେଲା ଯେଉଁ ପରକାରେ
ସବୁ କହିଥିବେ ନିଶ୍ଚେ ପୁତ୍ର ନିକଟରେ ।
ସେ ସବୁ ବିଷୟ କର୍ଣ୍ଣେ ଦୁର୍ଯ୍ୟୋଧନ ପାଶ
ପ୍ରକାଶନ୍ତେ କଉରବେ ଶୁଣି କଲେ କିସ ।
ସେହି କଥା ଶୁଣିବାକୁ ମୋ ମନ ଆକୁଳ
ନିବେଦନ କରେ କହ କରିଣ ଆମୂଳ ।

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ହସ୍ତିନା ଆସ୍ଥାନେ ବିଜେ କୁରୁ ନରପତି ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଆବର ଶକୁନି
ବାଲମୀକ ସୋମଦତ୍ତ କୃପାଚାର୍ଯ୍ୟ ଦ୍ରୋଣି ।
ଆସ୍ଥାନରେ ବସି କହେ ବୀରବର କର୍ଣ୍ଣ
ଆକାଶେ ବଡ଼ ମହିମା ଅର୍ଜିଲା ଅର୍ଜ୍ଜୁନ ।
ନିର୍ବାତ କପଚ ଯେହୁ ଦେବଙ୍କ ଅଇରି
ଚୌରାଅଶୀ ବେଳ ସେହୁ ସ୍ୱର୍ଗେ ଦେଲା ଧାଡ଼ି
ସତ୍ୟ ତ୍ରେତୟା ଦ୍ୱାପର ପୁଣି କଳିଯୁଗେ
ଦେବେ ରହି ନ ପାରିଲେ ସେ ଅମର ମାର୍ଗେ ।
ଅର୍ଜ୍ଜୁନ ତାହାକୁ ବଧ କରିଲା ଆକାଶେ
ଅନେକ ଉତ୍ସବ କରାଇଲେ ଦେବଈଶେ ।
ଧୃତରାଷ୍ଟ୍ର ବୋଲେ କର୍ଣ୍ଣ ବଚନକୁ ଶୁଣି
ବିଦୁର ତୁ ସୁମରଣ କର ଚକ୍ରପାଣି ।
ଜଗନ୍ନାଥଙ୍କୁ ଘେନିଣ ଯାଅ ଏହିକ୍ଷଣି
ସମାର୍ଜ୍ଜନା କରିଣ ଯେ ପାଣ୍ଡବଙ୍କୁ ଆଣି ।
ଅମ୍ବିକାସୁତ କୃଷ୍ଣଙ୍କୁ ଲଗାଇଲେ ଧ୍ୟାନ
ବୈନତେୟ ଚଢ଼ି ହରି କଲେ ଆଗମନ ।
ଧୃତରାଷ୍ଟ୍ର ଭୀଷ୍ମ ଦ୍ରୋଣ କଲେ ତାକୁ ପୂଜା
ଦୁର୍ଯ୍ୟୋଧନ ବୋଲେ ଶୁଣ ଆହେ ଯଦୁରାଜା
ବିଦୁରଙ୍କୁ ସଙ୍ଗେ ଘେନି ଏବେ ତୁମ୍ଭେ ଯାଅ
ପାଣ୍ଡବଙ୍କ ନିକଟରେ ଉପସ୍ଥିତ ହୁଅ ।
ବନବାସର ସଙ୍କଟ ଆଜ ଗଲା ପାର
ଶକୁନିକୁ ସଙ୍ଗେ ଘେନି ଯାଅ ହେ ସତ୍ୱର ।
ଦୁର୍ଯ୍ୟୋଧନ ବଚନରେ ବିଦୁର ଅଚ୍ୟୁତେ
ଚଳନ୍ତି ଶ୍ରୀ ନାରାୟଣ ଶକୁନି ସହିତେ ।
ରଥେ ରଥେ ଆରୋହିଣ ଚଳନ୍ତି ଗାଙ୍ଗବ
ଚଳନ୍ତି ବଇନତେୟ ବାହନେ କେଶବ ।
ବାରାଣସୀ ତୀର୍ଥେ ଯାଇଁ ମିଳିଲେ ଶ୍ରୀହରି
ବସିଛନ୍ତି ବ୍ୟାସ ବାଲମୀକ ଆଦିକରି ।
ଯୁଧିଷ୍ଠିରଙ୍କ ଆସନ ଦେବ ଦେଖି ଦୂରେ
ବୈନତେୟ ପୃଷ୍ଠତେଜ୍ୟା କରିଲେ ସେ ଖରେ
ଯୁଧିଷ୍ଠିରଙ୍କ ବଦନ ଚାହିଁ ବନମାଳୀ
ଶ୍ରୀପାଦପଦ୍ମରେ ଯାଇ କଲେ ନିଉଛାଳି ।
ଅନେକମତେ ବିନୟ ବାକ୍ୟ ତାଙ୍କୁ ବୋଲି
ଦଣ୍ଡ ପ୍ରଣାମ କରିଲେ ହୋଇ ଗଡ଼ଘାଲି ।
ଯୁଧିଷ୍ଠି ଅଳ୍ପ ହସିଲେ କୃଷ୍ଣ ମୁଖ ଚାହିଁ
ନକୁଳ ବୋଲନ୍ତି ତହୁଁ ଉଠିବା ଗୋସାଇଁ ।
କରପତ୍ର ଯୋଡ଼ି ଉଭା ଦେବକୀର ବାଳ
ସମସ୍ତ କୁଶଳ ପୁଚ୍ଛା କରନ୍ତି ଭୂପାଳ ।
ବିଦୁରଙ୍କୁ କୁଶଳାଦି ପୁଚ୍ଛନ୍ତି ଯୁଧିଷ୍ଠି
କ୍ଷେମେ ଅଛଇ ବା ଜ୍ୟେଷ୍ଠତାତ ମୋହରଟି
ଦୁର୍ଯ୍ୟୋଧନ ଦୁଃଶାସନ ଦ୍ରୋଣ ଆଦିକରି
ଗାନ୍ଧାର ଭାନୁମତୀ ଯେ ଦାସୀ ପରିବାରୀ ।
ଶକୁନିର ପୁରଃସର ଧର୍ମଙ୍କର ବାଳ
ମନ୍ତ୍ରୀ ବୋଇଲା ସମସ୍ତେ ଅଛନ୍ତି କୁଶଳ ।
ଗୋବିନ୍ଦ ବୋଇଲେ ଥାଇ ଶିରେ କର ଦେଇ
ସମସ୍ତେ ଅଛ ଅର୍ଜ୍ଜୁନ କିପାଁ ଦେଖା ନାହିଁ ।
ଯୁଧିଷ୍ଠି ବୋଇଲେ ବାବୁ ଇନ୍ଦ୍ର ଦଇବତ
ଅମର ଭୁବନ ନେଲେ ଯାଇଅଛି ପାର୍ଥ ।
ବିଦୁର ପୁଚ୍ଛା କରିଲେ ଶୁଣ ସହଦେବ
କିସ କାର୍ଯ୍ୟରେ ପାର୍ଥକୁ ନେଲେ ଇନ୍ଦ୍ରଦେବ ।
ସହଦେବ ଶୁଣି ବୋଲେ ଅସୁରର ଭୟେ
ଅର୍ଜ୍ଜୁନେ ଡକାଇ ନେଲେ ଦେବଇନ୍ଦ୍ର ରାୟେ ।
ଘେନିଣ ଯାନ୍ତେ ମାତଳି ପାର୍ଥ ଅଧବାଟେ
ଭେଟି ତାଙ୍କ ସଙ୍ଗେ ଦୈତ୍ୟ ଯୁଝିଲା କପଟେ ।
ଜିଣିଲେ ସଂଗ୍ରାମେ ତାକୁ ବୀର ଧନଞ୍ଜୟ
ସ୍ୱର୍ଗରେ ବାଣୀ ଶୁଭିଲା ସାଧୁ ଜୟ ଜୟ ।
ପଞ୍ଚ ମରବୁଦ ସୈନ୍ୟ ଦୈତ୍ୟ ତୁଳେ ଥିଲେ
ଦିବସକ ମଧ୍ୟେ ପାର୍ଥ ସର୍ବନାଶ କଲେ ।
ଅନେକ ଉତ୍ସବ ସ୍ୱର୍ଗେ କଲେ ମଘବାନ
କିରୀଟୀ ମୁକୁଟ ବାନ୍ଧି କରିଲେ ପୂଜନ ।
ଦେବତାମାନେ ହୋଇଲେ ମନରେ ତୃପତି
କିରୀଟୀ ବୋଲିଣ ନାମ ଦେଲେ ସୁରପତି ।
ବୃଦ୍ଧଶ୍ରବା ପୂଜେ ଶ୍ୱେତଅଶ୍ୱ ଚାରି ଘେନି
ଶୁଣି ତୋଷେ ନାମ ଦେଲା ଶ୍ୱେତ ଯେ ବାହନୀ
ଅର୍ଜ୍ଜୁନ ରୂପକୁ ଦେଖି ମୋହିତ ଉର୍ବଶୀ
ବାସବ ଅର୍ଜ୍ଜୁନ ପାଶେ ତାକୁ ଦେଲା ପେଷି ।
ଅନେକ ମତରେ ସେହୁ ଅପସରା ଖଟି
ତାହାକୁ ରମଣ ଯହୁଁ ନ ଦେଲେ କିରୀଟୀ ।
ରାଗରେ ଉର୍ବଶୀ ତାଙ୍କୁ ଦେଲା ଅଭିଶାପ
ନପୁଂସକ ହୁଅ ବୋଲି କହେ କରି କୋପ ।
ତେଣୁ କରିଣ ଅର୍ଜ୍ଜୁନ ଉର୍ବଶୀକୁ ଖଟି
ଏମନ୍ତ ଶୁଣି ବିରସ ହୋଇଲେ ଯୁଧିଷ୍ଠି ।
ଏଥୁଅନ୍ତେ ସ୍ୱର୍ଗାସନେ ବିଜେ ମଘବାନ
ମାତଳିକୁ ଡକାଇଣ ଦେଲେ ଆଜ୍ଞାଦାନ ।
ପୁଷ୍ପକ ଆରୋହି ଯାଅ ମଧ୍ୟଭୁବନକୁ
ଏ ବାରତା କହ ଯାଇ ଯୁଧିଷ୍ଠି ଦେବଙ୍କୁ ।
ଅର୍ଜ୍ଜୁନକୁ ରଖାଇଲେ ସ୍ୱର୍ଗେ ବଜ୍ରଧାରୀ
ଅସୁରରୁ ଥୋକେ ଯାଇ ଅଛନ୍ତି ଉବୁରି ।

ପୁଣିହିଁ ସମୟ ପାଇ ଆସିବେ ସେ ବୋଲି
ତେଣୁ ଅର୍ଜ୍ଜୁନକୁ ସ୍ୱର୍ଗେ ମୁହିଁ ରୁହାଇଲି ।
ବାସବ ଦେବତାଙ୍କର ଆଜ୍ଞା ପ୍ରତିପାଳି
ବାରାଣସୀ ପୁରେ ଯାଇ ପ୍ରବେଶ ମାତଳି ।
ଅମର ସାରଥି ଦେଖି ଉଠି ଧାତିକାରେ
ସମସ୍ତେ ପ୍ରଣାମ କଲେ ମାତଳି ପୟରେ ।
ଜଗନ୍ନାଥଙ୍କ ପୟରେ ମାତଳି ପ୍ରଣମି
ସାନନ୍ଦେ ଅର୍ଜ୍ଜୁନ କଥା ପଚାରନ୍ତି ସ୍ୱାମୀ ।
ଶୁଣ ଦେବ ନାରାୟଣ ମାତଳି ବୋଇଲା
ନିର୍ବାତ କପଚ ଯାଇ ସ୍ୱର୍ଗେ ଧାଡ଼ି ଦେଲା ।
ସତ୍ୟ ତ୍ରେତୟା ଦ୍ୱାପର ଏହି ତିନିଯୁଗେ
ଚୌରାଅଶୀ ବେଳ ଧାଡ଼ିଦେଲା ସେହୁ ସ୍ୱର୍ଗେ
ତେଣୁକରି ଅର୍ଜ୍ଜୁନକୁ ଇନ୍ଦ୍ର ନିଆଇଲା
ପୃଥ୍ୱୀଦେବୀ ମଧ୍ୟ ଯହୁଁ ବିକଳ ହୋଇଲା ।
ମୁହିଁ ଅର୍ଜ୍ଜୁନକୁ ସଙ୍ଗେ ଯେ ଦିନ ନେଲଇଁ
ନିର୍ବାତ ସେହି ଦିନରେ ସ୍ୱର୍ଗକୁ ବାହଇ ।
ଅନେକ ସମ୍ଭାର ଘେନି ଆସେ ଦୈତ୍ୟନାହା
ଅର୍ଜ୍ଜୁନ ବୋଇଲା ଦୈତ୍ୟ ପାଶେ ରଥ ବାହା ।
ମୁଁ ବୋଇଲି ଆଗ ଭେଟ ଯାଇ ଆଖଣ୍ଡଳ
ଇନ୍ଦ୍ର ଦେବତା ଅର୍ପିବେ ବିଜୟର ମାଳ ।
ସେ ମାଳ ହୃଦରେ ଥିଲେ ନୁହେ ପରାଜୟେ
ସେଥିଲାଗି ଇନ୍ଦ୍ର ସଦା ଗଳେ ଭରିଥାଏ ।
ଅର୍ଜ୍ଜୁନ ବୋଇଲା ଆଗ ଦୈତ୍ୟକୁ ମାରିବି
ତେବେ ବାସବଙ୍କୁ ଦେଖି ଜୟମାଳା ନେବି ।
ଏତେ ବୋଲିଣ ଅର୍ଜ୍ଜୁନ କଲା ରଣ ଘୋର
ରାତ୍ର ଦିବସକ ମଧ୍ୟେ ନାଶିଲା ଅସୁର ।
ପ୍ରତ୍ୟକ୍ଷ ଦେଖିଲି ମୁହିଁ ଅର୍ଜ୍ଜୁନ ମହିମା
ରଣେ ସମାନ ନୋହିବେ ତାକୁ ହର ବ୍ରହ୍ମା ।
ଏମନ୍ତ ବଚନ କହେ ମାତଳି ସାରଥି
ସେ ଦିନ ସମରେ ଥୋକେ ଦୈତ୍ୟ ପଳାବନ୍ତି ।
ନ ପୁଣ ବାହାନ୍ତି ସେହୁ ଇନ୍ଦ୍ର ଭୁବନକୁ
ତେଣୁ କରିଣ ବାସବ ରୁହାଇଲେ ତାକୁ ।
ମୋତେ ରାଇ ଆଜ୍ଞାଦେଲେ ନେଣୁ ମଘବାନ
ଯୁଧିଷ୍ଠିଙ୍କୁ କହ ଯାଇ ରଖିଲି ଅର୍ଜ୍ଜୁନ ।
ତୁ ଦେବ ପାର୍ଥକୁ ଚିନ୍ତା ନ କରସି ଏବେ
ପାଞ୍ଚସାତ ବର୍ଷଥିବେ କହିଲେ ବାସବେ ।
ବିଦ୍ୟାଧରମାନେ ତାଙ୍କୁ କରିଛନ୍ତି ସେବା
ଅର୍ଜ୍ଜୁନ ଆନନ୍ଦେ ଅଛି ଶୁଣି ରାଜଦେବା ।
ଏମନ୍ତ ବଚନ ଯହୁଁ କହିଲା ମାତଳି
ଶୁଣି ତୃପତ ହୋଇଲେ ଧର୍ମ ବନମାଳୀ ।
ଦେବ ଅଳଙ୍କାର ଦେଇଥିଲେ ଜମ୍ଭଭେଦୀ
ଚାରିଭାଇଙ୍କୁ ଆବର ସୁଭଦ୍ରା ଦ୍ରୌପଦୀ ।
ସେହି ରତ୍ନ ଅଳଙ୍କାର ଦେଲା ଯେ ମାତଳି
ନିର୍ଧୂମ ଅଗ୍ନିକୁ ଜିଣି ରତ୍ନତେଜ ଝଳି ।
ତାହା ଦେଖିଣ ସାନନ୍ଦ ହେଲା ବୃକୋଦର
ଅଳଙ୍କାର ପିନ୍ଧିବାକୁ ଶ୍ରଦ୍ଧା ହେଲା ତାର ।
ଯୁଧିଷ୍ଠି ବୋଇଲେ ଭୀମ ରତ୍ନେ କଲୁ ବାଞ୍ଛା
ପୂର୍ବତପ ଥିଲେ ସିନା ପୂରନ୍ତା ତୋ ଇଚ୍ଛା ।
ଆମ୍ଭେମାନେ ଥିବା ବାବୁ ଅରଣ୍ୟର ମଧ
ଏ ରତ୍ନ ପିନ୍ଧିଲେ ନିଶ୍ଚେ ପଡ଼ିବ ବିରୋଧ ।
ବିପଦକାଳେ ଯୋଗାଏ ନାହିଁ ଏ ରତନ
ଏହାଲାଗି କାୟା ନିଶ୍ଚେ ହୁଅଇ ପତନ ।
ସୁନ୍ଦରୀ ସ୍ତିରୀ ଯୋଗାଏ ନାହିଁ ଯେ ବିପଦେ
ଥିଲେ ପଡ଼ିବାକୁ ହୁଏ ଅବଶ୍ୟ ପ୍ରମାଦେ ।
ଏହା କହି ସମର୍ପିଲେ ବିଦୁର ଗୋଚରେ
ଥୋକାଏ ମଣ୍ଡିଲେ ନେଇ ଶକୁନି ଶରୀରେ ।
ଅନେକ ପ୍ରଶଂସା କଲେ ଦେଖିଣ ମାତଳି
ଅମର ସ୍ୱର୍ଗକୁ ରଥ ଘେନିଗଲେ ଚଳି ।
ସବୁ ବାରତା କହିଲେ ଇନ୍ଦ୍ରଦେବତାଙ୍କୁ
ଯୁଧିଷ୍ଠିରଙ୍କ କୁଶଳ କହିଲେ ପାର୍ଥଙ୍କୁ ।
ବଦନ୍ତି ଅଗସ୍ତି ଶୁଣ ମନୁ ନରଈଶ
ସୁଭଦ୍ରାର ଗର୍ଭୋଦୟ ତହିଁ ପାଞ୍ଚମାସ ।
ପ୍ରୟାଗ ବେଣୀରେ ସର୍ବେ କଲେ ସ୍ନାନ ଦାନ
ସୁଭଦ୍ରା ଦେବୀ ଗର୍ଭରେ ରହିଲା ନନ୍ଦନ ।
ବିଦୁର ପୁଚ୍ଛା କରିଲେ ଶୁଣ ଯୁଧିଷ୍ଠିର
ମୋତେ ଆଜ୍ଞାଦେଲେ ଧୃତରାଷ୍ଟ୍ର ଦଣ୍ଡଧର ।
ମଣିକୁଣ୍ଡେ ସ୍ନାନକରି ବିଶ୍ୱନାଥ ଦେଖ ।
ଶେଷ ହେଲା ବନବାସ ସକଳ ଉପେକ୍ଷ ।
ଆମ୍ଭେ ଆସିଅଛୁ ଏବେ ତୁମ୍ଭଙ୍କୁ ନେବାକୁ
ବାହୁଡ଼ିଣ ଯିବ ପୁଣି ସେ ଇନ୍ଦ୍ରପ୍ରସ୍ଥକୁ ।
ଯୁଧିଷ୍ଠି ବୋଇଲେ ଏହା ନୁହଇ ଉଚିତ
ଧର୍ମ ଲଙ୍ଘିଣ ପ୍ରାଣୀର କିସ ବା ଜୀବିତ ।
ଆପଣାର କଲା କର୍ମ ଅଟେ ଯଥାର୍ଥରେ
କେମନ୍ତେ ଲଙ୍ଘିବି ତାହା କେବଣ ବିଚାରେ ।
ବରଷେ ସମ୍ପୂର୍ଣ୍ଣ ଆସି ହୋଇଲାଣି ଦିନ
ଥୋକାଏ ତୀର୍ଥ ବୁଲିଣ କରିବି ଭ୍ରମଣ ।
ବିଦୁର ବୋଇଲେ ବନବାସ ନ କରିବା
ଧୃତରାଷ୍ଟ୍ର ବାକ୍ୟେ ଚାଲ ବାହୁଡ଼ିଣ ଯିବା ।
ଏକାନ୍ତେ ସହଦେବକୁ ଘେନି ବାସୁଦେବେ
କହନ୍ତି ଯୁଧିଷ୍ଠି ଏବେ ଯିବେ କି ନ ଯିବେ ।

ସହଦେବ ବୋଲେ ସ୍ୱାମୀ ଆମ୍ଭ ବନବାସେ
ଯୁଧିଷ୍ଠିଙ୍କୁ ଦେଖି ମୁକ୍ତ ହେବେ ବନଘୋଷେ ।
ଧର୍ମଦେବତା ଅଛନ୍ତି ବକରୂପ ହୋଇ
ବହୁଦିନୁ ବ୍ରହ୍ମହତ୍ୟା କରିଛନ୍ତି ସେହି ।
ଯୁଧିଷ୍ଠିରଙ୍କ ଦର୍ଶନେ ପାଇବେ ମୁକତି
ନାରାୟଣ ଆଗେ କହେ ସହଦେବ ମନ୍ତ୍ରୀ ।
ଅଷ୍ଟବସୁ ଚୋରାଇଲେ ବଶିଷ୍ଠଙ୍କ ଗାଈ
ତା ଶାପେ ଅନିଳବସୁ ଅଛି ଅନ୍ଧ ହୋଇ ।
ଯୁଧିଷ୍ଠିରଙ୍କ ଦର୍ଶନେ ମୁକତି ହୋଇବ
ଚକ୍ଷୁକୁ ଦିଶିବ ଗୋରୁଚୋରା ଦୋଷ ଯିବ ।
କନ୍ଦରା ଦ୍ୱୀପରେ ଅଛି ବୈଧୃତି ରାକ୍ଷସ
ଭୀମସେନଙ୍କ ହସ୍ତରେ ହେବ ସେ ବିନାଶ ।
ସହଦେବ ବୋଲେ ଧର୍ମ ନ ଗଲେ ବନସ୍ତେ
ଅମୁକ୍ତ ହୋଇଣ ତେବେ ରହିବେ ସମସ୍ତେ ।
ସ୍ୱାମୀ ଶୋଷକର ପୁତ୍ର ନାମ ଯେ ବିରାଳ
ଯାକୁ ନାଶିଲା କୀଚକ ବୀର ମହାବଳ ।
ଦେବ ସଭାରେ ସର୍ବଦା କାନ୍ଦେ ବସୁମତୀ
କୀଚକର ଭାରା ସହି ନ ପାରଇ କ୍ଷିତି ।
ତେଣୁ ଦେବେ ଆଜ୍ଞାଦେଲେ ଅମର ଆକାଶେ
କୀଚକ ନାଶ ହୋଇବ ଆମ୍ଭ ବନବାସେ ।
ଦ୍ରୌପଦୀଙ୍କୁ ହରିବାକୁ ଲୋଡ଼ିବ ପାମର
ଶତ କୀଚକ ନାଶିବେ ବୀର ବୃକୋଦର ।
ସହଦେବଙ୍କୁ ଯୁଧିଷ୍ଠି ଚାହିଁ କଲେ ପୁଚ୍ଛା
ସେ ବୋଲେ ସତ୍ୟ ଲଙ୍ଘିବା ନୁହେ ଆମ୍ଭ ଇଚ୍ଛା
ମନ୍ତ୍ରୀ ବଚନେ ଯୁଧିଷ୍ଠିଦେବ ହେଲେ ତୁଷ୍ଟି
ବିଦୁର ବାକ୍ୟେ ବାହୁଡ଼ି ନ ଗଲେ ଯୁଧିଷ୍ଠି ।
ଗୋବିନ୍ଦ ବୋଇଲେ ଭଦ୍ରା ଗର୍ଭବତୀ ଅଛି
ଦ୍ୱାରକା ପୁରକୁ ଦେବ ତାହାକୁ ନେଇଛି ।
ବିଦୁର ବୋଇଲେ ଆମ୍ଭେ କୋଇନ୍ତାଙ୍କୁ ନେବୁ
ବନବାସ ଶେଷ ଯାଏ ପୁରେ ରଖିଥିବୁ ।
ଯୁଧିଷ୍ଠିଦେବ ମାତାଙ୍କୁ ପ୍ରଣମି ବିନୟେ
ବୋଇଲେ ବିଦୁର ଘରେ ରହିଥାଅ ମାୟେ ।
ଯୁଧିଷ୍ଠିଦେବଙ୍କୁ ତହୁଁ ବହୁତ ତିଆରି
ଚଳିଲେ କୋଇନ୍ତା ଦେବୀ ସୁକଲ୍ୟାଣ କରି ।
ବାବୁ ଭୀମ ଅର୍ଜ୍ଜୁନଙ୍କୁ ନାହିଁ ମୋର ଚିନ୍ତା
ମାଦ୍ରୀସୁତେ ସୁଖେ ଥାନ୍ତୁ ବୋଇଲେ କୁଇନ୍ତା ।
ପୁଅକୁ ତିଆରି କୋନ୍ତଭୋଜର ଦୁହିତୀ
ସୁଭଦ୍ରା ଦ୍ରୌପଦୀ ଆସି କରିଲେ ପ୍ରଣତି ।
ବିଦୁର ବୋଲେ ଦ୍ରୁପଦ ରାଜାର ଦୁଲଣୀ
କୋଇନ୍ତାଙ୍କ ତୁଲେ ତାଙ୍କୁ ଆମ୍ଭେ ଯିବୁ ଘେନି ।

ଦ୍ରୌପଦୀ ଦେବୀଙ୍କୁ ଧର୍ମ ଯୁଧିଷ୍ଠି କହିଲେ
ତୁମ୍ଭେ ଏବେ ଚଳିଯାଅ ମାତାଙ୍କର ତୁଲେ ।
ବନବାସ ଶେଷେ ଆମ୍ଭେ ଯିବୁ ହସ୍ତିନାକୁ
ତୁମ୍ଭେ ଥିଲେ ତ ଜଞ୍ଜାଳ ପଡ଼ିବ ଆମ୍ଭଙ୍କୁ ।
ଯୁଧିଷ୍ଠି ବଚନ ଶୁଣି ଦ୍ରୌପଦୀ ବୋଇଲେ
ଦୁଃଖକାଳେ କଷ୍ଟହୁଏ ଭାରିର୍ଯା ନ ଥିଲେ ।
ଶ୍ରୀରାମଚନ୍ଦ୍ର ଯେକାଳେ ଗଲେ ବନବାସେ
ଜନକ ଦୁହିତା ସୀତା ଥିଲେ ତାଙ୍କ ପାଶେ ।
ଦ୍ରୌପଦୀ ବଚନ ଶୁଣି ଯୁଧିଷ୍ଠି ବୋଇଲେ
ତାଙ୍କ ପାଇଁ ରାମଚନ୍ଦ୍ର କଷ୍ଟରେ ପଡ଼ିଲେ ।
ବହୁ ସାବଧାନେ ତାଙ୍କୁ ରଖିଥିଲେ ଜାଣ
କାଳେ ସୀତାଙ୍କୁ ହରିଲା ଲଙ୍କାର ରାବଣ ।
ଭୀମ ବୋଇଲେ ସେକାଳ କଥା ଏବେ ଛାଡ଼
ଏ ମହୀମଣ୍ଡଳେ କିଏ ଆମ୍ଭଠାରୁ ବଡ଼ ।
ସହଦେବ ବୋଇଲେ ଥାଉ ଦ୍ରୁପଦ ଦୁହିତୀ
ନାନାଦି ତୀର୍ଥରେ ସ୍ନାନ କରିବ ଯୁବତୀ ।
ଧର୍ମପାଦେ ଜଗନ୍ନାଥ କରିଣ ଦଇନୀ
ଗରୁଡ଼ ପୃଷ୍ଠରେ ଗଲେ ସୁଭଦ୍ରାକୁ ଘେନି ।
ବିଦୁର ଇନ୍ଦ୍ରପ୍ରସ୍ଥକୁ ଗମନ କରିଲେ
ତାହାଙ୍କ ମନ୍ଦିରେ କୁନ୍ତୀ ଯାଇଁଣ ରହିଲେ ।
ଦ୍ୱାରକାରେ ପରବେଶ ହେଲେ ଦାମୋଦର
ହଳୀଙ୍କ ଆଗେ କହିଲେ ସର୍ବ ସମାଚାର ।
ନନ୍ଦ ଯଶୋଦାଙ୍କ ପୁରେ ସଭଦ୍ରା ରହିଲେ
ଆନନ୍ଦେ ବିହାର କଲେ ଗୋପସ୍ତିରୀ ତୁଲେ ।
କୌରବ ଆସ୍ଥାନେ ଯାଇ ବିଦୁର କହିଲେ
ଅନେକ ସମ୍ପଦ ବନେ ପାଣ୍ଡବ ଅର୍ଜିଲେ ।
ତୁଲେ ବ୍ୟାସ ବାଲମୀକ ଶୁକ ମାରକଣ୍ଡ
ବିଶ୍ୱାମିତ୍ର ଲୋମଶ ଯେ ଗୌତମ ବିଭାଣ୍ଡ ।
ସଙ୍ଗତେ ଅଠାଶୀସସ୍ର ଛନ୍ତି ମହାମୁନି
ଧୌମ୍ୟ ପୁରୋହିତ ଛନ୍ତି ଲକ୍ଷେ ଦ୍ୱିଜ ଘେନି ।
ପୁଣ୍ୟବନ୍ତ ପ୍ରାଣୀ ଯହିଁ ଥିଲେହେଁ ସମ୍ପଦ
ଧର୍ମ ଆଶ୍ରିତ ପ୍ରାଣୀକୁ ନ ପଡ଼େ ପ୍ରମାଦ ।
ଯେଉଁ ସ୍ଥାନରେ ଯୁଧିଷ୍ଠି ରହିଥାନ୍ତି ବସି
ଜୈମିନି ତାଙ୍କୁ ପୁରାଣ କହନ୍ତି ବିଶେଷି ।
ଯୁଧିଷ୍ଠି ବୋଲେ ମୋ ମନ ଧୃତରାଷ୍ଟ୍ର ପାଦେ
ବନବାସୁ ବଞ୍ଚିବି ମୁଁ ପିତାଙ୍କ ପ୍ରସାଦେ ।
ଶୁଣିଣ ଅତି ସାନନ୍ଦ ହେଲେ କଉରବେ
ବୋଇଲେ ଆଉ କି ରାଜ୍ୟେ ଆସିବେ ପାଣ୍ଡବେ
ସତ୍ୟ ଆଚାରଙ୍କୁ ଯେବେ ମନେ କଲେ ବାଞ୍ଛା
ଧର୍ମ ଲଙ୍ଘିବାକୁ ଯେବେ ନ କଲେ ସେ ଇଚ୍ଛା ।

ଅଜ୍ଞାତବାସ ବଞ୍ଚିବେ ଯାଇଁ କେଉଁ ସ୍ଥାନେ
ଅବଶ୍ୟ ଜାଣନ୍ତା ହେଲେ ପୁଣି ଯିବେ ବନେ ।
ଏମନ୍ତ ବୋଲି ଭାଳନ୍ତି କଉରବ ବଳ
ଅକଣ୍ଟକ ରାଜ୍ୟ ହେଲା ଆମ୍ଭର ନିଶ୍ଚଳ ।
ଜୟ ଜୟ ରାମଚନ୍ଦ୍ର କୌଶଲ୍ୟା ନନ୍ଦନ
ଜନକସୁତା ଜାନକୀ ହୃଦୟ ଚନ୍ଦନ ।
ଜୟ ରଘୁକୁଳଚନ୍ଦ୍ର ଶ୍ରୀକୋଦଣ୍ଡ ବାହୁ
ଶ୍ୟାମଳ ଶ୍ରୀ ଶାନ୍ତମୂର୍ତ୍ତି କୌଣପକୁ ରାହୁ ।
ଶରଣ ବତ୍ସଳ ନାଥ ଦୁର୍ବଳର ବଳ
ଭକତ ଡାକକୁ ଡେରିଥାଅ କର୍ଣ୍ଣବିଳ ।
ଏବେ କି ସେ କଥା ପ୍ରଭୁ ଗଲାଣି ପାସୋର
ମହା ସଙ୍କଟେ ଡାକିଲେ ନ ଶୁଭେ ଏଥର ।
କାଳବେଳ ଜାଣି କିବା ହୋଇବ ମଉନ
ଅଥବା ବିଚାରୁଅଛ ମୋ କପାଳ ହୀନ ।
ଅକର୍ମ କର୍ମ ଦାୟକ ନିଜେ ଯେତେବେଳେ
ଜାଣୁଛି କୋଦଣ୍ଡ ନାହିଁ ଶ୍ରୀଭୁଜକମଳେ ।
ଯାହା ତାହା ହେଉ ପ୍ରଭୁ ମୁହିଁ ତା ନ ଜାଣେ
ଶାରଳା ଦାସ ଶରଣ ସେ ପଦ୍ମ ଚରଣେ ।

■■■

## ଯୁଧିଷ୍ଠିରଙ୍କ ସୂର୍ଯ୍ୟଙ୍କୁ ସ୍ତବ, ଅନିଳ ବସୁର ଚକ୍ଷୁଦାନ ଓ ଦ୍ରୌପଦୀ ହରଣ

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଅମରେ ପ୍ରବେଶ ହେଲେ ମାତଳି ସାରଥି ।
ଇନ୍ଦ୍ରଙ୍କୁ କହିଲେ ବନବାସ ହେଲା ସ୍ଥିର
ଅନେକ ସାନନ୍ଦ ହେଲେ ଶୁଣି ସୁନାସୀର ।
ଅର୍ଜୁନ ରହିଲେ ବିଦ୍ୟାଧରଙ୍କ ମେଳାରେ
ସେବା କରନ୍ତି ତାହାଙ୍କୁ ଅତି ଯତନରେ ।
ସମସ୍ତ କୌରବମାନେ ବିଚାର କରନ୍ତି
ଏଥର ଆମ୍ଭର ରାଜ୍ୟ ହୋଇଲା ନିର୍ଭାନ୍ତି ।
ଅଗସ୍ତିଙ୍କୁ ପଚାରିଲେ ମନୁ ରାଜରଷି
ଅର୍ଜୁନକୁ ଶାପଦେଲା ସ୍ୱର୍ଗରେ ଉର୍ବଶୀ ।
ସେହି ଶାପକୁ କେମନ୍ତେ ପାର୍ଥ କଲା ପାର
ସେ କଥା ମୋତେ କହିବା ହେ ପଣ୍ଡିତ ବର ।
ବଦନ୍ତି ଅଗସ୍ତି ଋଷି କୁମ୍ଭଋଷି ସୂନୁ
ଶୁଣ ମହାରାଜା ତୁହି ବୈବସ୍ୱତ ମନୁ ।
ମନରେ ଶଙ୍କା କରିଣ ପାଣ୍ଡବ କିରୀଟୀ
ଅନେକ ବିନୟ ଭାବେ ଉର୍ବଶୀକି ଖଟି ।
ଦେବେନ୍ଦ୍ର ବୋଇଲେ ତୁହି ଶୁଣ ଗୋ ଉର୍ବଶୀ
ଅର୍ଜୁନ ପ୍ରତି ତୋ ମନ ଆଉ ନ ବଳାସି ।
ଅର୍ଜୁନକୁ ଶାପଦେଲୁ ତୁହି ଅକାରଣ
ଏବେ ଯାଇଣ ତାହାକୁ କର ତୁ କାରଣ ।
ତୋହର ଶାପ କି କେଭେ ହୋଇବ ଖଣ୍ଡନ
ଉର୍ବଶୀର ପାଦ ଧରି ବୋଲଇ ଅର୍ଜୁନ ।
ମାତା ହୋଇଣ ପୁତ୍ରକୁ ଅଭିଶାପ ଦେଲୁ
ସେ ଶାପ ଖଣ୍ଡନ ହେବା କଥା ନ କହିଲୁ ।
ଉର୍ବଶୀ ବୋଇଲା ତୁହି ଶୁଣରେ ଅର୍ଜୁନ
ଅବଶ୍ୟ ଅଜ୍ଞାତ ହେବେ ଧର୍ମଙ୍କ ନନ୍ଦନ ।
ବିରାଟ ରାଜ୍ୟରେ ଯାଇ ଗୋପନ ହୋଇବ
ତହିଁ ତୋର ନପୁଂସକ ପ୍ରକାଶ ପାଇବ ।
ତହିଁ ତୁ ରହିବୁ ଯାଇ ହୋଇ ବୃହନ୍ନାରୀ
ଅଜ୍ଞାତକୁ କଟାଇବୁ ତୁହି ଏହିପରି ।
ଗୁଣ ଘର୍ଷଣର ଦାଗ ଅଛି ବାମହସ୍ତ
ସୁବର୍ଣ୍ଣ ଚୂଡ଼ୀ ପିନ୍ଧିଲେ ଲୁଚିବ ସମସ୍ତ ।
ମୋହର ଏ ଯେଉଁ ଶାପ ତୋରେ ହେବ ହିତ
ପୁରୁଷ କି ନାରୀ ଚିହ୍ନ ନ ଥିବ ତୋ ଗାତ୍ର ।
ତୋହର ରୂପକୁ ଧରି ସ୍ୱର୍ଗେ ଥିବି ରହି
ଅଜ୍ଞାତ ସରିଲେ ପୁଣି ଦେବି ବାହୁଡ଼ାଇ ।
ମୋର ଦେଇଥିବା ଶାପ ସୁଫଳ ଫଳିଲା
ଇନ୍ଦ୍ର ପାର୍ଥଙ୍କ ଆଗରେ ଉର୍ବଶୀ କହିଲା ।
ତାହା ଶୁଣି ଧନଞ୍ଜୟ ହେଲେ ତୋଷମନ
ଅଚିନ୍ତା ହୋଇ ରହିଲେ ଅମର ଭୁବନ ।
ଚାରିପାଣ୍ଡବ ଯେ ବାରାଣସୀ ତୀର୍ଥେ ଥିଲେ
ସିଦ୍ଧପୁର ନଗରରେ ପ୍ରବେଶ ହୋଇଲେ ।
ପୁଣି ସେ ନବର ଜିଣି ଗଲେ ଚାରିବୀରେ
ପାଞ୍ଚାଳୀ ଦେବୀ ଅଛଇ ତାଙ୍କ ସଙ୍ଗତରେ ।
ପଶିଲେ ପାଣ୍ଡବମାନେ ମହା ଘୋରବନେ
ତୁଲେ ଛନ୍ତି ତାହାଙ୍କର ବ୍ରହ୍ମଋଷିମାନେ ।
ବୀରଭଦ୍ରା ବୋଲି ନାମ ଏକ ନଦୀଗୋଟି
ବୀରକେଶ୍ୱର ପର୍ବତୁ ବହୁଅଛି ଫୁଟି ।
ବୀରସିଂହ ବୋଲିକରି ପର୍ବତେକ ନାମ
ତହିଁ ଯାଇଁ ପଣ୍ଡୁପୁତ୍ରେ କଲେକ ବିଶ୍ରାମ ।
ବହେ ବୀରଭଦ୍ରା ନଦୀ ଆକାଶ ବାହିନୀ
ସେହି ତୀର୍ଥେ ସ୍ନାନ କଲେ ଦେବୀ ଯାଜ୍ଞସେନୀ
ଯୁଧିଷ୍ଠି ଭୀମ ନକୁଳ ପୁଣି ସହଦେବ
ନିତ୍ୟକର୍ମାଦି ସାରିଲେ ସେ ଚାରି ପାଣ୍ଡବ ।
କରନ୍ତି ସେ ବନେ ଗଣ୍ଡା ମୃଗର ପାରିଧି
ଗଉରୀ ବିଧିରେ ପାକ ଦ୍ରୌପଦୀ ସମ୍ପାଦି ।
କାହିଁ କନ୍ଦମୂଳ କାହିଁ ମୃଗମାଂସ ଭୁଞ୍ଜି
ଅଠାଶୀ ସହସ୍ର ମୁନି ମନକୁ ସେ ରଞ୍ଜି ।

ରମ୍ଭା ନଡ଼ିଆ ପଣସ ଗୁଆ ଆଦି କରି
କେନ୍ଦୁ କପିତ୍ଥ ଖଜୁରି ଚୂତ ଭକ୍ଷ କରି ।
ଏହି ବିଧିରେ ବଞ୍ଚନ୍ତି ସେହି ଚାରିଭାଇ
ସେରୂପେ ଅଠାଶୀସହସ୍ର ଦ୍ୱିଜେ ଭୋଜ୍ୟଦେଇ ।
ଯେ ଯାହା ମାଗନ୍ତି ତାହା ଦ୍ୟନ୍ତି ପ୍ରତିଦିନ
ଯୁଧିଷ୍ଠିଦେବ ସୂର୍ଯ୍ୟଙ୍କୁ କରିଲେ ଯେ ଧ୍ୟାନ ।
ଜୟ ତୁ ଭାସ୍କର ଜୟ କମଳ ଲୋଚନ
ଏ ଦୁଃସହ ସଙ୍କଟରୁ କର ତୁ ମୋଚନ ।
ଏତେ ଋଷିଙ୍କି ମୁଁ କାହୁଁ ଦେବଇଁ ଭୋଜନ
ଏଥକୁ ସପକ୍ଷ ହୁଅ କମଳ ଲୋଚନ ।
ବନବାସେ ଦେବ ଏତେ ପାଇବି ମୁଁ କାହିଁ
ତୋହର ଶରଣ ମୁହିଁ ଯା କର ଗୋସାଇଁ ।
ଶୁଣିଣ କରତାର ଯେ ହୋଇଲେ ପ୍ରସନ୍ନ
ବୋଲେ ଖଣ୍ଡନ ହୋଇବ ତୋ ଦ୍ୱିଜ ଭୋଜନ ।
ଏତେ ବୋଲି କରତାର ହେଲେ ଅନ୍ତର୍ଦ୍ଧାନ
ଯହୁଁ ପାଣ୍ଡବେ ଚଳିଲେ ମହା ଘୋରବନ ।
ବଶିଷ୍ଠଙ୍କ ଗାଈ ଚୋର ସେ ଅନିଳବସୁ
ମୁନି ଶାପଦେଲା ତୋର ଚକ୍ଷୁକୁ ନ ଦିଶୁ ।
ଋଷି ଶାପରେ ଅନିଳ ହୋଇଗଲା ଅନ୍ଧ
ଅନ୍ଧ ହୋଇ ରହିଅଛି ବନ ଅସକନ୍ଦ ।
ମହାବନ କନ୍ଦରରେ ଚଳନ୍ତି ଯୁଧିଷ୍ଠି
ଅନିଳକୁ ଅସକନ୍ଦ ବନେ ଯାଇ ଭେଟି ।
ଅସ୍କନ୍ଦ ବନେ ଅସ୍କନ୍ଦ ନାମେ ଏକ ଗିରି
ଅନିଳବସୁ ଅଛଇ ତହିଁ କୁଟୀ କରି ।
ଅଷ୍ଟବସୁ ଚୋରିକଲେ ଗାବ ସତ୍ୟଯୁଗେ
ବଶିଷ୍ଠଙ୍କ ଶାପ ସେହୁ ତିନିଯୁଗ ଭୋଗେ ।
ଯୁଧିଷ୍ଠି ରହି ଅଛନ୍ତି ଅସ୍କନ୍ଦ ବନସ୍ତେ
ଯୁଧିଷ୍ଠି ରଖ ବୋଲିଣ ଡାକଇ ନିରତେ ।
ଏହି ପରକାରେ ବସୁ ଡାକେ ପ୍ରତିଦିନ
ଯୁଧିଷ୍ଠି ବୋଇଲେ ବାବୁ ଶୁଣ ଭୀମସେନ ।
ବାବୁ ଦେଖିଆସ କିଏ କରଇ ରୋଦନ
ଅତିବେଗେ ଯାଇ କର ତା ଅନୁସନ୍ଧାନ ।
ଶୁଣି ଭୀମ ବେନିକରେ ଧରି ଗଦାବର
ଧାତିକାରେ ଉଠିଲେ ସେ ପର୍ବତ ଉପର ।
ଦେଖଇ ଦିବ୍ୟ ପୁରୁଷ ପବନ ତନୟେ
ଶରୀର ଦିଶଇ ତାର କନ୍ଦର୍ପ ପରାୟେ ।
ବହୁ ଅଳଙ୍କାରେ ସେହୁ ହୋଇଛି ଭୂଷଣ
ବେନି ନୟନେ ଅଦୃଶ ସର୍ବେ ଏକଜଣ ।
ହସ୍ତେ ଧରିଅଛି ଏକ ବିଜୟ କଟାରୀ
ଆଚମ୍ଭିତ ପୁରୁଷ ସେ ସ୍ୱର୍ଗବାସୀ ପରି ।
ବାହୁଡ଼ି ଭୀମ ଧର୍ମକୁ କହିଲା ଯେ ଆସି
ଅନ୍ଧପୁରୁଷ ଗୋଟିଏ ତହିଁ ଅଛି ବସି ।
ବଡ଼ ସୁନ୍ଦର ପୁରୁଷ ବିଦ୍ୟାଧର ପ୍ରାୟେ
ଆନନ୍ଦ ହୋଇ ଉଠିଲେ ଧର୍ମ ନୃପରାୟେ ।
ଅନିଳ ବସୁକୁ ଯାଇ ପୁଚ୍ଛନ୍ତେ ଯୁଧିଷ୍ଠି
ଉର୍ଦ୍ଧ୍ୱ କରିଣ ଚାହାନ୍ତେ ଚକ୍ଷୁ ଗଲା ଫିଟି ।
ମର୍କତ ରସାଣ ପ୍ରାୟେ ଦିଶେ ବେନି ଡୋଳା
ଚାହେଁ ଅନିଳକ ବସୁ ତେଜେ ଅନର୍ଗଳା ।
ପାଣ୍ଡବଙ୍କର ସ୍ୱରୂପ ସେ ଅନିଳ ଦେଖି
ପଚାରଇ ତୁମ୍ଭେ ଧର୍ମଦେବ ଯୁଧିଷ୍ଠିକି ।
ଭୀମ ବୋଲେ ଏ ଅଟନ୍ତି ଯୁଧିଷ୍ଠି ଠାକୁରେ
ଉଠି ଅନିଳବସୁ ଯେ ନମେ ପୟରରେ ।
ଜୟ ତୁ ଧର୍ମନନ୍ଦନ ପ୍ରଥମ ପାଣ୍ଡବ
ସତ୍ୟବନ୍ତ ପୁରୁଷ ତୁ ମାନବେ ଦୁର୍ଲ୍ଲଭ ।
ଜୟ ରାଜ ରାଜେଶ୍ୱରୀ ପ୍ରାଣୀ କରୁ ଚର୍ଚ୍ଚା
ଜୟ ସତ୍ୟ ପୁରୁଷ ତୁ ସତ୍ୟ ତୋର ବାଚା ।
ଦେଖଇ ଅନିଳବସୁ ଧର୍ମଦେବ ରାୟେ
ଶୁକ୍ଳାମ୍ବର ପୁଂସ ଶୁଦ୍ଧ ସ୍ଫଟିକର ପ୍ରାୟେ ।
ଚୌରାଅଶୀ ଲକ୍ଷଣରେ ସର୍ବ ଗୁଣବନ୍ତା
ଗହନ ବନବାସୀଙ୍କ କଷ୍ଟ ଉଦ୍ଧାରନ୍ତା ।
ସତ୍ୟ ତ୍ରେତୟା ଦ୍ୱାପର ପୁଣି କଳିଯୁଗେ
ନିରଞ୍ଜନ ଅବତାର ଏହି ମଧ୍ୟ ସ୍ୱର୍ଗେ ।
ବଶିଷ୍ଠଙ୍କ ଶାପେ ମୁହିଁ ଥିଲି ବଡ଼ ଦୋଷୀ
ତିନିଯୁଗ ଅନ୍ଧ ହୋଇଅଛି ଏବେ ବସି ।
ସ୍ୱାମୀ ଅନ୍ୟ ପ୍ରତିକାର ନ ଫଳିଲା ମୋରେ
ଲୟକରି ଭେଟିଲି ମୁଁ ଏତେ କାଳାନ୍ତରେ ।
ଶ୍ରୀଯୁଧିଷ୍ଠି ପାଦପଦ୍ମେ ସେବା ନିରନ୍ତର
ଶାରଳା ଦାସକୁ ପ୍ରଭୁ କରିବେ ଉଦ୍ଧାର ।
ଯୁଧିଷ୍ଠି ଦେବ ପୁଚ୍ଛିଲେ ବସୁ ସନ୍ନିଧିରେ
ଅନ୍ଧ ହୋଇ ବସିଥିଲ କେବଣ ଦୋଷରେ ।
ଶୁଣ ଧର୍ମ ବୋଲଇ ସେ ଅନିଳକ ବସୁ
ସାବଧାନେ ଶୁଣ ତୁମ୍ଭେ ଆମ୍ଭେ ଯା ପ୍ରକାଶୁ ।
ଉମାବସୁ ଜୟବସୁ ପାର୍ଥଗମ ବସୁ
ନବ ମନୁ ପବ ପୁଣି ମୁଁ ଅନିଳ ବସୁ ।
ଅଷ୍ଟବସୁ ଆମ୍ଭେମାନେ ଶାୟନ୍ତନୁ ଗୋତ୍ରୀ
ବିହନ୍ତା ପୁରୁଷ ଆମ୍ଭେ ରଚୁ ସର୍ବ କ୍ଷିତି ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ହୋ କଥାଏ
ମୃଗୟାକୁ ବାହାରିଲେ ବିଶ୍ୱାମିତ୍ର ରାୟେ ।
ମୃଗ ହରିଣ ବରାହ ନ ପାଇଲେ କିଛି
ଚତୁରଙ୍ଗ ବଳ ତାଙ୍କ ସଙ୍ଗତରେ ଅଛି ।

ନବଦିନ ପରିଯନ୍ତେ କରିଲେ ଭ୍ରମଣ
ତେଢ଼େବଡ଼ ଥାଟକୁ ଯେ ନ ମିଳେ ଭୋଜନ ।
ଅନାହାରରେ ବନସ୍ତେ କରନ୍ତେ ଭ୍ରମଣ
ବଶିଷ୍ଠଙ୍କର ଆଶ୍ରମେ ମିଳିଲେ ଯାଇଣ ।
ଅଶ୍ୱରୁ ଉତୁରି ଗାଧି ରାଜାଙ୍କ ତନୟେ
ବଶିଷ୍ଠଙ୍କର ଚରଣେ ପ୍ରଣିପାତ ହୁଏ ।
ସେ ବଶିଷ୍ଠ ମହାମୁନି କଲ୍ୟାଣ କରନ୍ତି
ବୋଇଲେ ରାଜା ତୋ ସୈନ୍ୟ ପଥଶ୍ରାନ୍ତ ଛନ୍ତି
ବିଶ୍ୱାମିତ୍ର ବୋଲେ ନବଦିନ ଉପବାସୀ
ଆମ୍ଭେ ଅନ୍ନଦେବୁ ବୋଲି ବୋଇଲେ ମହର୍ଷି ।
ଅରୁନ୍ଧତୀ ବୋଇଲେ ଯେ ପାତ୍ରେ ଅଛି ଭାତ
ସୈନ୍ୟ ଘେନିଣ ବସିଲେ ତହୁଁ ବିଶ୍ୱାମିତ୍ର ।
ସୁମନକୁ ବୋଲେ ଦୁହଁ କାମଧେନୁ ଗୋଟି
କିଛିହିଁ ବ୍ୟଞ୍ଜନ ନାହିଁ ଦେବା କ୍ଷୀରପୁଟି ।
କୁଣ୍ଡେମାତ୍ର ଅନ୍ନ ଗାଈ ଗୋଟିକର ଦୁଧ
ସମସ୍ତଙ୍କୁ ଅଟେ ଭୁଞ୍ଜି ହୋଇଲେ ଆନନ୍ଦ ।
ବିଶ୍ୱାମିତ୍ର ବୋଇଲେ ଏ ଅସମ୍ଭବ ମୁନି
କେମନ୍ତେ ଅଣ୍ଟିଲା ଅନ୍ନ ମୋହର ସଇନି ।
ମୁନି ବୋଇଲେ ଆମ୍ଭର କାମଧେନୁ ଅଛି
ଶୁଣି ବିଶ୍ୱାମିତ୍ରଙ୍କୁ ଯେ ନ ସ୍ଫୁରିଲା କିଛି ।
ତହୁଁ ବିଶ୍ୱାମିତ୍ର ମୁନି ପାଦେ କଲେ ସେବା
ବୋଇଲେ ଏ କାମଧେନୁ ମୋତେ ତୁମ୍ଭେ ଦେବା ।
ମାଗନ୍ତେ ସେ କାମଧେନୁ ନ ଦେଲେ ମହର୍ଷି
ଦୁଷ୍ଟଯୋଦ୍ଧା ବଳେ ନେବେ ହୋଇଲେ ପ୍ରୟାସୀ
ଯଷ୍ଟି ଘେନିଣ ସେମାନେ ଅଡ଼ାଇଲେ ଗାଈ
ସମସ୍ତ ସୈନ୍ୟ ଗୋମାତା ମାଇଲେ ଗୋଡ଼ାଇ
ରଣଭଗ୍ନ ହୋଇକରି ପଳାଇଲେ ରାୟେ
ରାଜ୍ୟ ତେଜିଣ ଉଠିଲେ କରି ଯୋଗଲୟେ ।
ତପବଳରୁ ହୋଇଲେ ସେ ଅତି ତେଜସ୍ୱୀ
ସମସ୍ତ ସେ ତେଜ୍ୟାକରି ହୋଇଲେ ଉଦାସୀ ।
ବିଶ୍ୱାମିତ୍ର ଆଜ୍ଞାଦେଲେ ଅଷ୍ଟବସୁ ରାଇ
ବଶିଷ୍ଠଙ୍କ ତହୁଁ ଆଣି ମୋତେ ଦିଅ ଗାଈ ।
ତୁମ୍ଭେ ଅଷ୍ଟବସୁମାନେ ଯିବ ହେ ଗୁପତେ
ବଶିଷ୍ଠଙ୍କ ଗାଈଗୋଟି ଆଣିଦେବ ମୋତେ ।
ଶୁଣନ୍ତି ଯୁଧିଷ୍ଠି କହନ୍ତି ଅନିଳ ବସୁ
ବଶିଷ୍ଠ ଗାଈକି ଆମ୍ଭେ ଚୋରାଇଣ ଆସୁ ।
ଚରିଯିବାଠାରୁ ଅଡ଼ାଇଲୁ ଗାଈଟିକୁ
ଦେଖି ସେହି ବିଶ୍ୱାମିତ୍ର କହିଲା ଆମ୍ଭଙ୍କୁ ।
ବିନ୍ଧ୍ୟାମାଳ ମଧ୍ୟେ ନେଇ ଲୁଚାଇଲୁ ଗାବ
ଲୋଡ଼ିଣ ବଶିଷ୍ଠ ଯାଇଁ କଲେ ତହିଁ ଠାବ ।
ତହିଁ ଗାବ ବାନ୍ଧି ଆମ୍ଭେ ମୃଗ ଏକ ମାରି
ଗାଈ ଚେର ଦୁହିଁ ଖାଉ ମାଂସ ପୋଡ଼ିକରି ।
ବଶିଷ୍ଠ ଆସି ଭେଟିଲେ ଦେଖି ଗାଈଗୋଟି
ପର୍ବତୁ ଡେଇଁଲି ମୁହିଁ କରେ ଘେନି ଯଷ୍ଟି ।
ଯଷ୍ଟିରେ ପିଟିଲୁ ଆମ୍ଭେ ବଶିଷ୍ଠ ଆଗରେ
ଆରେ ଅନ୍ଧହୁଅ ବୋଲି ଶାପ ଦେଲେ ମୋରେ
ପଡ଼ିଛି ଅନ୍ଧହୋଇ ମୁଁ ଏ ଅସ୍କନ୍ଦବନେ
ଗାଈ ପାଇଁ ଯାଉଥିଲେ ଅନ୍ୟ ବସୁମାନେ ।
ବଶିଷ୍ଠଙ୍କୁ ମାରି ଧାଇଁଲେ ସେ କୋପକରି
ସେ ସପ୍ତ ବସୁଙ୍କୁ ଶାପ ଦେଲେ ବ୍ରହ୍ମଚାରୀ ।
ପାଞ୍ଚଜଣେ ଜାତ ହୁଏ ଶବରଣୀ ଘରେ
ପାଣ୍ଡବଙ୍କ ପାଇଁ ଦଗ୍ଧ ହୁଅ ଜତୁଘରେ ।
ଷଷ୍ଠକୁ ବୋଇଲେ ହୁଅ ପଣ୍ଡା ପୁରୋଚନ
ଉମାବସୁ ଏ ଶାପରେ ଭାଗୀହେଲେ ଜାଣ ।
ଜଉ କ୍ଷଣଘୃତେ ଘର କରସି ରଚନ
ସେହି ଘରେ ଥାଇ ତୁହି ହୁଅରେ ଦହନ ।
ପାର୍ଥବସୁ ଜନ୍ମ ହୁଅ ତୁ ଗଙ୍ଗାର ଘରେ
ଭୀଷ୍ମ ହୋଇ ଶରଶଯ୍ୟା କରିଲେ ସମରେ ।
ଶୁଣ ଦେବ ଯୁଧିଷ୍ଠିର କହେ ଅନିଳକ
ଋଷି ଶାପେ ଆମ୍ଭେ ନାଶଗଲୁ ସର୍ବଲୋକ ।
ଏହିପରି ଋଷିଶାପ ହେଲା ତିନିଯୁଗ
ଜଉଘରେ ଦଗ୍ଧ ହୋଇ ବସିଲେ ସେ ସ୍ୱର୍ଗ ।
ମୁହିଁ ହାଦେ ଅନ୍ଧ ହୋଏ ଏତେକାଳ ଥିଲି
ଭୋ ଧର୍ମ ତୁମ୍ଭ ଦର୍ଶନେ ମୁକତି ପାଇଲି ।
ଭୀଷ୍ମଦେବ ଅଛନ୍ତି ଯେ ଗଙ୍ଗାର ଆତ୍ମଜା
କୁରୁଯୁଦ୍ଧେ କରିବେ ତୋ ପାଇଁ ଶରଶଯ୍ୟା ।
ମହା ତେଜୋବନ୍ତ ମଧ୍ୟ ଭୁବନେ ତୁ ଆସୁ
ତୋହର ପ୍ରସାଦେ ମୁକ୍ତ ହେଲେ ଅଷ୍ଟବସୁ ।
ବାବୁ ମୋତେ ମୁକ୍ତ କଲୁ ବଶିଷ୍ଠ ଶାପରୁ
ଏହି ଦେହ ଘେନି ସ୍ୱର୍ଗକାଳେ ଭୋଗକରୁ ।
ଏସନକ ବର ଦେଲା ଧର୍ମେ ସେହି ବସୁ
ଅନ୍ତର୍ଦ୍ଧାନେ ଯାଇ ସ୍ୱର୍ଗ ଭୁବନରେ ପଶୁ ।
ସାନନ୍ଦ ହୋଇଲେ ତାହା ଶୁଣି ମହାଧର୍ମେ
ନିତ୍ୟକର୍ମ କଲେ ବୀରଭଦ୍ରାର ଆଶ୍ରମେ ।
ମାରନ୍ତି ଅନେକ ଜୀବଜନ୍ତୁ ବୀର ଭୀମେ
ମୃଗଭାର ଘେନି ବିହରନ୍ତି ବନେ କ୍ଷମେ ।
ବନସ୍ତେ ବୁଲନ୍ତି ଯାଇଁ ଭାଇ ଚାରିଜଣ
ସବୁରି ପ୍ରସିଦ୍ଧ ଖାଦ୍ୟ ମୃଗମାଂସ ଜାଣ ।
କଉତୁକେ ବିହରନ୍ତି ଗହନ ବନରେ
ଦ୍ରୌପଦୀ ଏକାକୀ ହୋଇ ଥାନ୍ତି ଆଶ୍ରମରେ ।

ଏମନ୍ତ ସମୟେ ସିନ୍ଧୁଦେଶ ନରପତି
ସଙ୍ଗତରେ ଦଶସସ୍ର ରହିଛନ୍ତି ରଥୀ ।
ବୀରଭଦ୍ରା ନଦୀତୀରେ ଆସେ ଜୟଦ୍ରଥ
ପାରିଧି ବିନୋଦେ କରି କୌତୁକ ବହୁତ ।
ବୀରଭଦ୍ରା ପର୍ବତରେ ଜୟଦ୍ରଥ ଉଠି
ଆଶ୍ରମ ନିକଟେ ଯାଇଁ ପାଞ୍ଚାଳୀକି ଭେଟି ।
ଜୟଦ୍ରଥକୁ ଦୂରରେ ଦେଖିଣ ପାଞ୍ଚାଳୀ
ଘେନିଲେ ଶ୍ରୀଭୁଜେ ମାହେଶ୍ୱରୀ ଅର୍ଘ୍ୟଥାଳୀ
କୃଷ୍ଣାଜିନ ଆଣି ତାକୁ ଦେଲେ ଯାଜ୍ଞସେନୀ
ବସ ବସ ଜୟଦ୍ରଥ କହିଲେ ମାନିନୀ ।
ମୃଗୟା ବିନୋଦେ ମୋର ଯାଇଛନ୍ତି ପତି
ଏହିକ୍ଷଣି ଆସିବେ ସେ ବସ ମହାକ୍ଷତ୍ରୀ ।
ଦ୍ରୌପଦୀ ବଚନ ଶୁଣି ସେ ଦୁଷ୍ଟ ବୋଇଲା
ମୁହିଁ ଯାହା ଲୋଡୁଥିଲି ଦେବ ଭେଟାଇଲା ।
ମୋହର ଯେ ପିତା ସିନ୍ଧୁ ଦେଶ ନରପତି
ତୋ ପିତା ନିକଟେ କହି ପଠାଏ ଏମତି ।
ତୋହର କନ୍ୟାକୁ ବିଭାକର ମୋ ପୁତ୍ରକୁ
ଏହା କହି ପତ୍ର ଦେଇ ପଠାଏ ଦୂତକୁ ।
ମୋତେ ଦେବାକୁ ଦ୍ରୁପଦ କରିଥିଲା ଇଚ୍ଛା
ସ୍ୱୟମ୍ବର କରାଇଲୁ ତୋର ମନ ଇଚ୍ଛା ।
ଆଜଠାରୁ ହେଲୁ ତୁହି ମୋହର ଭାରିଯା
ପାଣ୍ଡବଙ୍କୁ ଆଜଠାରୁ କର ତୁହି ତେଜ୍ୟା ।
ଏକଇ ନାରୀର କାହିଁ ପାଞ୍ଚଗୋଟି ପତି
ସ୍ତିରୀକୁଳକୁ ଦୂଷଣ ଏହୁ ଅଟେ ଅତି ।
ଏକ ନାରୀକୁ ହୋଇଣ ପାଞ୍ଚଗୋଟି ଭର୍ତ୍ତା
ତଥାଚ ଦୁଃଶା ନ କଲା କେବଣ ଅବସ୍ଥା ।
ଅଗ୍ନିରୁ ଜାତ ତୁହି ଯେ ଦ୍ରୁପଦ କୁମାରୀ
ଏବେ ବୁଲୁଅଛୁ ବନେ ହୋଇ ବନଚାରୀ ।
ଏ ଘୋର ଅରଣ୍ୟ ଅଟେ ଅତି ଭୟଙ୍କର
ଏକାକରି ଛାଡ଼ିଗଲେ ସଖା ନାହିଁ ତୋର ।
ଅନେକ ଅଛନ୍ତି ବ୍ୟାଘ୍ର ଭଲ୍ଲୁକ ରାକ୍ଷସ
ଧର୍ମେ ତୋତେ ନ ଖାଇଲେ ପ୍ରାଣେ କରି ନାଶ
ଆସ ଆସ ପାଞ୍ଚଳି ଗୋ ବସ ମୋର ରଥେ
ରାଜ୍ୟେ ଥାଅ ବନବାସ ଶେଷ ପରିଯନ୍ତେ ।
ଦ୍ରୌପଦୀ ବୋଲେ ଅନୀତି କହୁଅଛ ବାବୁ
ପରେ ଦୂଷିତ କରିଲେ ଅବଶ୍ୟ ମରିବୁ ।
ଦୁଃଶୀଳା ବଲ୍ଲଭ ତୁହି ଅଟୁ ଆମ୍ଭ ବନ୍ଧୁ
ସୋଦର ହୋଇଣ କିପାଁ ଏ ପ୍ରକାରେ ନିନ୍ଦୁ ।
ଜୟଦ୍ରଥ ବୋଲେ ତୁହି ଶଳାଙ୍କ ଭାରିଯା
ତୋର ଆମ୍ଭର କଥାରେ ଅଛି କେଉଁ ଲଜ୍ଜା ।
ଦ୍ରୌପଦୀ ବୋଇଲେ ତୋର ଏଡ଼େଦର୍ପ କାହୁଁ
ଅନ୍ୟସ୍ତିରୀ ପରାୟେ ତୁ ଅଲଘିତ କହୁ ।
ବାହୁଡ଼ି ଦ୍ରୌପଦୀ ଯାଇ ପଶନ୍ତେ ଆଶ୍ରମେ
କୋଳକରି ଜୟଦ୍ରଥ ଧରି ଉତକ୍ରମେ ।
ଦ୍ରୌପଦୀ ବୋଇଲେ ତୁହି ବଡ଼ଇ ଅସାଧୁ
ପାପାଚାର କରି ହରିଲୁ ତୁ ପରବଧୂ ।
ଜୟଦ୍ରଥ ବୋଲେ ତୁହି ଅଟୁଲୋ ଅଭାଗୀ
ମୋର ପୁରେ ହେବୁ ତୁହି ବଡ଼ ସଉଭାଗୀ ।
ଦ୍ରୌପଦୀକୁ ଜୟଦ୍ରଥ ଅକ୍ରୋଶି ଧରିଲା
ବଳାତ୍କାରେ ନେଇଯାଇ ରଥେ ବସାଇଲା ।
ଦଶସହସ୍ର ଅଛଇ ସଙ୍ଗରେ ବାହିନୀ
ଚଳିଯାଏ ଜୟଦ୍ରଥ ଦ୍ରୌପଦୀଙ୍କୁ ଘେନି ।
ରୋଦନ କରେ ସୁନ୍ଦରୀ ବଳାତ୍କାର ଦେଖି
ଉଚ୍ଚ ସ୍ୱରରେ ଡାକଇ ହୋଇଣ ନିର୍ମାକ୍ଷୀ ।
ଚଳଇ ଜୟଦ୍ରଥ ଯେ ଘେନିଣ ପାଞ୍ଚାଳୀ
ପବନ ଗତିରୁ ବେଗେ ରଥ ଯାଏ ଚଳି ।
ପିଙ୍ଗଳାତୀରେ ମିଳିଲେ ଧୌମ୍ୟ ପୁରୋହିତେ
ଦେଖିଲେ ସେ ଦ୍ରୌପଦୀକୁ ଘେନିଯାଏ ରଥେ
ପୁରୋଧା ଦେଖିଲେ ଜୟଦ୍ରଥ ଯାଏ ଘେନି
ପୁରୋହିତ ରକ୍ଷା କର ବୋଇଲେ ମାନିନୀ ।
ଧୌମ୍ୟ ବୋଇଲେ ତୋହର ଏ କେବଣ କଥା
ବଳେ ହରି ନେଉଅଛୁ ଦ୍ରୁପଦ ଦୁହିତା ।
ଜୟଦ୍ରଥ ବୋଲେ ଧୌମ୍ୟ ତୁମ୍ଭେ ଏହା ଶୁଣ
ଜାତିହୀନ ପାଣ୍ଡବଙ୍କ ଏଡ଼େ ବଡ଼ପଣ ।
ବୀରଭଦ୍ରା ପର୍ବତରେ ଛାଡ଼ିଗଲେ ଏକା
ଦୈତ୍ୟ ଦାନବ ହିରଣ୍ୟ ଅନ୍ତପା ନାୟିକା ।
ଆନ ହରିନେଲେ ମୋତେ ହେବ ବଡ଼ ଲଜ୍ଜା
ସମୟରେ ହୋଇଥାଉ ଆମ୍ଭର ଭାରିଯା ।
ଧୌମ୍ୟ ପ୍ରୋହିତ ବୋଇଲେ ନାଶୁ ବଡ଼ପଣ
ସୀତାଙ୍କୁ ହରିଲା ବଳତ୍କାରେଟି ରାବଣ ।
ଯେବଣ ସମୁଦ୍ର ମଧ୍ୟେ ଅଛି ଗଡ଼ଲଙ୍କା
ଦେବାସୁର ନରେ ତାକୁ ନାହିଁ ତିଳେ ଶଙ୍କା ।
ସେ ଲଙ୍କାଗଡ଼ରେ ରାଜା ରାବଣ ଅଟଇ
ତପରେ ମହାଦେବଙ୍କୁ ତୋଷିଥିଲା ସେହି ।
ଅମରବର ତାହାଙ୍କଠାରୁ ପାଇଥିଲା
ଛପନଗଣ୍ଡା ଯୁଗକୁ ଭୋଗୀ ନ ପାରିଲା ।
ପଞ୍ଚବଟୀରେ ହରିଲା ସେହି ଦେବୀ ସୀତେ
ସେ ଦୋଷରୁ ନାଶଗଲା ରାମଚନ୍ଦ୍ର ହସ୍ତେ ।
ଗୌତମ ନାରୀ ହରିଲେ ଇନ୍ଦ୍ର ଯେ ଆଦିତ୍ୟେ
ସେହି ନାଶଗଲେ ଋଷିଙ୍କର କୋପଚିତ୍ତେ ।

ବୃହସ୍ପତି ନାରୀ ହରେ ଯେ ଚନ୍ଦ୍ରଦେବତା
ଗୁରୁଙ୍କର ଶାପରେ ସେ ହେଲା କ୍ଷୟଗତା ।
ପାଣ୍ଡବଙ୍କ ଗୁଣ ତୁ ତ ଜାଣୁ ଜୟଦ୍ରଥ
ତାଙ୍କ ସଙ୍ଗତରେ କାହୁଁ ହେବୁ ସମରଥ ।
ସର୍ପ ଖଣ୍ଡିଆଳି କାହିଁ କରେ ଗରୁଡ଼କୁ
ଗଜ ବଡ଼ ହେଲେ ସୁଦ୍ଧା ଚାଳେ କି ସିଂହକୁ ।
ବକ ହୋଇ କି ସମ୍ଭୋଗେ ସେ ଶ୍ୟାମଳ ପକ୍ଷୀ
ଅଜାଯୂଥ କେଉଁଠାରେ ବ୍ୟାଘ୍ରତୁଲେ ଗଛି ।
ଇନ୍ଦୁର ହୋଇ କି କେବେ ଚାଳଇ ମଞ୍ଜାରୀ
କେଉଁ ସାହସେ ଏ କଥା କଲୁରେ ବିଚାରି ।
ପାଣ୍ଡବଙ୍କ ମହିମା ଯେ ଜାଣୁ ତୁ ଆପଣ
କିପାଁ ତାଙ୍କ ସଙ୍ଗେ ଦ୍ୱନ୍ଦ୍ୱ କଲୁ ସିନ୍ଧୁରାଣ ।
ବକ ହିଡ଼ିମ୍ବୀ କୁମ୍ଭୀର ଆବର କିନ୍ନରୀ
କିଞ୍ଚିତ ଯୁଦ୍ଧେ ତାହାଙ୍କୁ ଭୀମ ବଧକରି ।
ଏବେ କିରେ ଜୟଦ୍ରଥ ଜୀବନେ ତୋ ଆଶ
ପାଣ୍ଡବେ ଦେଖିଲେ ନ କରିବେ କି ବିନାଶ ।
ଜୟଦ୍ରଥ ବୋଇଲା ମୁଁ ଅଟଇ କେଶରୀ
ମୋହର ମୁଖେ ପଡ଼ିଲେ କେ ଯିବ ଉବୁରି ।
ପାଣ୍ଡବ ସମାନ ମୋତେ ନ ହେବେ ସମରେ
ଆସି ପାରିବେ କି କେବେ ମୋହର ଛାମୁରେ ।
ତୁହି ପୁରୋହିତ ମୋତେ ଅସମ୍ଭବ କହୁ
ଏଡ଼େ ଦରପ ବ୍ରାହ୍ମଣ ଜନ୍ମ ହୋଇ ବହୁ ।
ଯେତେ କଥାମାନ ମୋତେ କହିଲୁରେ ଭଣ୍ଡ
ବ୍ରାହ୍ମଣ ନ ହୋଇଥିଲେ କାଟନ୍ତି ତୋ ମୁଣ୍ଡ ।
ପ୍ରୋହିତ ବୋଇଲେ ମୂଢ଼ ତୋର ଏଡ଼େ ଗର୍ବ
ଗାନ୍ଧାରୀ ଦୁହିତା ଆଜି ବିଧବା ହୋଇବ ।
ଏମନ୍ତ ବୋଲିଣ ତହୁଁ ଧୌମ୍ୟ ପୁରୋହିତ
ପାଣ୍ଡବଙ୍କ ନିକଟକୁ ଚଳିଲେ ତ୍ୱରିତ ।
ମୃଗୟା କରିଣ ବିଜେ ହେଲେ ଚାରିଭାଇ
କୁଡ଼ିଆରେ ଦେଖନ୍ତି ସେ ଦ୍ରଉପଦୀ ନାହିଁ ।
ମୂର୍ଚ୍ଛାଗତ ପ୍ରାୟ ହୋଇ ଯୁଧିଷ୍ଠି ବୋଇଲେ
ମୋ ପ୍ରାଣର ବାନ୍ଧବୀକୁ କେହୁ ଘେନି ଗଲେ ।
ଦୈତ୍ୟମାନଙ୍କର ଏଥି ନାହିଁ ଆତଯାତ
ବନ ଗହଳେ ଲୋଡ଼ନ୍ତି ଯାଇ ଚାରିଭ୍ରାତ ।
ଏମନ୍ତ କାଳେ ପୁରୋଧା ହୋଇଲେ ପ୍ରବେଶ
ବୋଇଲେ ସେ ଜୟଦ୍ରଥ ନେଉଅଛି ଆସ ।
ପୁରୋଧା ବଚନ ଶୁଣି ବୀର ବୃକୋଦର
ବାନଭାର ଗଦା ଘେନି ଉଠିଲା ସତ୍ୱର ।
ଧାଆଁ ଆରେ ବୃକୋଦର ଏହି ପୂର୍ବମୂର୍ତ୍ତି
ପିଙ୍ଗଳାକ୍ଷୀ ନଦୀତୀରେ ଯାଏ ସିନ୍ଧୁପତି ।
ମୁହିଁ ଓଗାଳି ବୋଇଲି ତାକୁ ଦୃଢ଼ବାଣୀ
ଖଡ଼ଗ ଘେନିଣ ମୋତେ ଲୋଡ଼ୁଥିଲେ ହାଣି ।
ଧୌମ୍ୟ ପ୍ରୋହିତିଙ୍କ ବାକ୍ୟେ ଧାମେ ବୃକୋଦର
ଦଶଭଡ଼ା ଯାଇକରି ଧାମେ ଖରତର ।
ନିମିଷକେ ଭୀମସେନ ପାଞ୍ଚଯୂଣ କ୍ଷେପି
ପ୍ରହରକ ମଧ୍ୟେ ଭେଟେ ଯାଇ କାମରୂପୀ
ଶବର ପଲ୍ଲୀରେ ଯାଇ ପଚାରେ ମାରୁତି
ଶବର ବୋଇଲେ ଏହି ଯାଉଅଛି କତି ।
ଶୁଣି ଧାଇଁକରି ପୁଣି ପବନର ସୁତ
ଦେଖେ ଜୟଦ୍ରଥ ଯାଏ ଯୋଦ୍ଧାଙ୍କ ସହିତ ।
ଆରେ ଆରେ ବୋଲିକରି ବୃକୋଦର ଡାକି
ରହ ରହ ଜୟଦ୍ରଥ ଯାଉ ତୁ କାହିଁକି ।
ବ୍ରହ୍ମାଣ୍ଡ କମ୍ପଇ ଭୀମସେନଙ୍କର ଡାକେ
ପର୍ବତେ କମ୍ପିଲେ ତ୍ରସ୍ତ ହେଲେ ଦେବ ଲୋକେ
ପାଦଭରେ କମ୍ପଇ ଯେ ସପ୍ତଦ୍ୱୀପା ମହୀ
ଭୀମସେନ ବୋଇଲେରେ ଆଉ ଯିବୁ କାହିଁ ।
ରାହୁ ଘୋଟିଲା କି ଆସି ପୂର୍ଣ୍ଣ ଶଶଧର
ଜୟଦ୍ରଥ ଯୋଦ୍ଧାମାନେ ହୁଅନ୍ତି ଥରହର ।
ଧାମଇ ଯେ ବୃକୋଦର କାଳାନ୍ତକ ଜିଣି
ଆକାଶକୁ ଘୋଟିଅଛି ପାଣ୍ଡବ ପାବନି ।
କୁରାଳ ଚକ୍ର ପରାୟେ ବୁଲେ ବେନି ଆଖି
ଯୋଦ୍ଧାଏ ଡେଇଁ ପଡ଼ିଲେ ଅଶ୍ୱକୁ ଉପେକ୍ଷି ।
କାଳେବର ଗଦା ଧରି ବୀର ବୃକୋଦର
ରଥମାନଙ୍କ ଉପରେ କରିଲା ପ୍ରହାର ।
ଭାଜି ଯାଏ ରଥମାନେ ହେଲେ ମସିଗୁଣ୍ଡା
କଦଳୀ ବନକୁ ଯେହ୍ନେ ପବନ ପ୍ରଚଣ୍ଡା ।
ବେଢ଼ିଗଲେ ଯୋଦ୍ଧାମାନେ ରେ ରେ କାର କରି
ଗଦା ପ୍ରହାରିଲେ ଭୀମ ବାୟୁଗତି କରି ।
ରଥକୁ ରଥ ଉପରେ କଚାଡ଼େ ଦରାଣ୍ଡି
ରୁଧିରରେ ହୋଇଛନ୍ତି ସୈନ୍ୟ ସବୁ ମଣ୍ଡି ।
ବିହାର କରଇ ରଣେ ଭୀମ ବଳବନ୍ତା
ତା ଛାମୁରେ ମିଳିବାକୁ କେ ଅଛି ଶକତା ।
ରଣେ ସହସ୍ରେକ ରଥ ଭାଙ୍ଗିଲା କ୍ଷଣକେ
ରଣ ରଙ୍ଗରେ ମନ୍ଥନ କରଇ ଜଣକେ ।
ଗିରିବର ପରାୟେକ ବିକାଶିଲା କାୟେ
ଗର୍ଜ୍ଜେ ପାଣ୍ଡବ ସୁନ୍ଦର ମହାମେଘ ପ୍ରାୟେ ।
ସମରେ ଯୋଦ୍ଧା ପଡ଼ନ୍ତି ମହୀତଳେ ଲୋଟି
ସମ୍ଭର୍ବେ ସୈନ୍ୟ ଦଳର ସାନୁଜ ଯୁଧିଷ୍ଠି ।
ବାମ ଅଙ୍ଗ ପାତି ଅତି ବୀର ବୃକୋଦର
ଯୋଦ୍ଧାମାନଙ୍କର ଶର ପଡ଼ି ହୁଏ ଚୂର ।

ପରିଘ ନାରାଚ କୋନ୍ତ ଆଉ ତୀକ୍ଷ୍ଣ ମୁନା
ଭୀମ ଅଙ୍ଗେ ବାଜି ସବୁ ହୋଇଯାଏ ଚୂନା ।
ଯେହୁ ପ୍ରଚଣ୍ଡ ପ୍ରତାପୀ ଅଟେ ସାମରଥା
ଏ ମହୀ ମଣ୍ଡଳେ ତାକୁ କେ ଅଛି ଶକତା ।
ଶରୀରରେ ଅସ୍ତ୍ର ପଡ଼ି ଯହୁଁ ହେଲା କ୍ଷୟେ
ପଳାବନ୍ତି ସୈନ୍ୟ ବାସଭଗ୍ନ ପକ୍ଷୀ ପ୍ରାୟେ ।
ସୈନ୍ୟ ଭଗ୍ନ ଦେଖିକରି ନୃପ ଜୟଦ୍ରଥ
ଭୟ କରିଣ ମନରେ ହୋଇଲା ଚିନ୍ତିତ ।
ବେନି କ୍ରୋଶ ପରିଯନ୍ତେ ସୈନ୍ୟ ଗଲେ ପଡ଼ି
ବାକୀ ସୈନ୍ୟ ପଳାଇଲେ ରଣ ଭୂଇଁ ଛାଡ଼ି ।
ବିକଳେ ଦନ୍ତରେ କେହି ତିରଣ ଧରନ୍ତି
ଦଶନଖ ମୁଖେ ଭରି ଶରଣ ଡାକନ୍ତି ।
ନିର୍ଦ୍ଧୟ ନିରପେକ୍ଷ ଯେ ଅଟେ ଭୀମସେନ
ଶରଣ ବୋଇଲେ ଆଗେ ନିଏ ତା ଜୀବନ ।
ପଳାଇଲେ ସୈନ୍ୟମାନେ ନ ରହିଲେ କତି
ରହ ରହ ଡାକଦିଏ ସିନ୍ଧୁ ଅଧିପତି ।
ସୈନ୍ୟ ସକଳ ପଳାନ୍ତେ ନୃପ ଜୟଦ୍ରଥ
ଅସ୍ତ୍ର ଧରିଣ କହିଲା ଭୀମର ଅଗ୍ରତ ।
ଭୀମ ବୋଇଲେ ଲୋଡ଼ିଲୁ ତୁହି ଯାହା ମନେ
ହୋଇଲୁ ବିଅର୍ଥ ଏବେ ବଞ୍ଚିବୁ କେସନେ ।
ବହୁତ ପହିଜ କରି ଭୀମ ବୀରମଣି
ଜୟଦ୍ରଥର ଉପରେ ପିଟେ ଗଦା ଆଣି ।
ଜାଣି ଜୟଦ୍ରଥ ରଥ ନେଲାକ ଘୁଞ୍ଚାଇ
ପୁଣି ଭୀମକୁ ଗଦାଏ ପ୍ରହାରିଲା ନେଇ ।
ଆରେ ଆରେ ବୋଲି ଭୀମ ଦେଇ ଏକ ରଡ଼ି
ଜୟଦ୍ରଥ ହସ୍ତୁ ଗଦା ନେଲାକ ଉଛୁଡ଼ି ।
ସେହି ଗଦା ଧରି ଭୀମ ରଥେ ଦେଲା ପିଟି
ଜୟଦ୍ରଥ ପଳାଇଲା ରଥ ଗଲା ଫାଟି ।
ପୁଣି ରୋଷେ ଗଦା ଧରି ସିନ୍ଧୁ ନୃପବର
ପ୍ରହାର କରିଲା ନେଇ ଭୀମର ଉପର ।
ବାମ ଅଙ୍ଗ ପାତି ଦେଲା ତାହାକୁ ମାରୁତି
ଭାଜିଯାଇ ଗଦାବର ପଡ଼ିଲାକ କ୍ଷିତି ।
କୌତୁକ ସମର ତହୁଁ ହେଲା ବେଳୁବେଳ
କୋପେ ପ୍ରଜ୍ଜ୍ୱଳିତ ହେଲା ଭୀମ ମହାବଳ ।
ବାମହସ୍ତେ ଧରି ଭୀମ ଜୟଦ୍ରଥ ବାଳ
ଟେକି ଆଣନ୍ତେ ଚରଣ ନ ଲାଗଇ ତଳ ।
ନକୁଳ ସହଦେବ ଯେ ହୋଇଲେ ପ୍ରବେଶ
ଦେଖନ୍ତି ସେ ମହାକୋପ ପବନର ଶିଷ୍ୟ ।
ଦ୍ରୌପଦୀକି ଛଡ଼ାଇଣ ବୀର ବୃକୋଦର
ବୋଇଲା ତୁ ଆଉ କାହିଁ ଯିବୁରେ ପାମର ।
ଆରେ ଆରେ ଜୟଦ୍ରଥ ଭାର୍ଯ୍ୟା ଚୋରିକରୁ
କାହାବଳେ ଏଡ଼େ ଗର୍ବ କଥା ତୁ ଆଚରୁ ।
ବୁଡ଼ାଇଲୁ ସମ୍ପଦ ତୁ ହୋଇଲୁ ନିର୍ମାକ୍ଷି
ଆଜ ସମରେ ଦେଖିବା କେ ପାରିବ ରଖି ।
ସୁମରରେ ଜୟଦ୍ରଥ ତୋ ଇଷ୍ଟ ଦେବତା
ସୁମର ଆବର ତୋର ଯେହୁ ପିତାମାତା ।
ସୁମରରେ ବିଦ୍ୟାଗୁରୁ ତୋର ଯେ ଅଟଇ
ଆଜି ସଂଯମନୀପୁର ଦେଖାଇବି ନେଇ ।
ଅନେକ ପୁଣ୍ୟରେ ତୁହି ରାଜା ହୋଇଥିଲୁ
ପାପା ବାଧା ହେଲା ପରନାରୀ ଚୋରିକଲୁ ।
ଏହା କହି କେଶ ତାର ଝିଙ୍କିଲା ବହନ
ପର୍ବତରେ କଚାଡ଼ିବା କରିଲା ସେ ମନ ।
ସହଦେବ ଭୀମସେନ ଚରଣେ ପ୍ରଣମି
ବୋଲେ ଜୟଦ୍ରଥ ଦୋଷ କ୍ଷମାକର ସ୍ୱାମୀ ।
ଆମ୍ଭର ବାନ୍ଧବ ଏହୁ ଦୁଃଶୀଳାର ପତି
ବେଳେକ ଏହାର ଦୋଷ କ୍ଷମ ହେ ମାରୁତି ।
ଆକର୍ଷି କେଶ ଧରଇ ଭୀମ ବାମକରେ
ବହଇ ଶୋଣିତ ତାର ନାସିକା ମୁଖରେ ।
ଏମନ୍ତ ସମୟରେ ସେ ମିଳିଲେ ଯୁଧିଷ୍ଠି
ଗର୍ଜ୍ଜଇ ଯେ ଭୀମସେନ କମ୍ପେ ନବସୃଷ୍ଟି ।
ଯୁଧିଷ୍ଠି ବୋଇଲେ କୋପ ତେଜ ଆରେ ଭୀମ
ଜୟଦ୍ରଥକୁ ନ ମାର ତାର ଦୋଷ କ୍ଷମ ।
ଅପରାଧ କଲା ଅବା ଆସି ଏହି ମନ୍ଦ
ଆମ୍ଭ ଭଉଣୀ ଦୁଃଶୀଳା ହୋଇଯିବ ରାଣ୍ଡ ।
ଦୁଃଶୀଳାର ଦୁଃଖ କେହୁ ପାରିବରେ ସହି
ଗୁଣବନ୍ତ ଲୋକ ସିନା ଦୋଷ ନ ଧରଇ ।
ଭୀମ ମହାବଳ ବୋଲେ ମୁଁ ନିୟମ କଲି
ଯା ମୁଣ୍ଡ କାଟିବି ବୋଲି ପ୍ରତିଜ୍ଞା କରିଲି ।
ଯୁଧିଷ୍ଠି ବୋଇଲେ ଯାହା ବୋଇଲୁ ତୁ ରାଗେ
ତାହା ଧରିଲେ ସଂସାରେ ହେବ କେଉଁ ବାଗେ ।
ଯୁଧିଷ୍ଠିର ସମାର୍ଜ୍ଜନ କରିଲେ ବହୁତ
ଏମନ୍ତ କାଳେ ମିଳିଲେ ଧୌମ ପୁରୋହିତ ।
ଦେଖିଲେ ଯେ ଭୀମହସ୍ତେ ଜୟଦ୍ରଥ ବାଳ
ମୁଖ ନାସିକାରୁ ରକ୍ତ ବହେ ଖଳ ଖଳ ।
ପୁରୋଧା ବୋଇଲେ ତୁହି ଜୟଦ୍ରଥ ଟିକି
ଆମ୍ଭେ ଯାଇଥିଲୁ ବାବୁ ତୋହର ତହିଁକି ।
ବୋଇଲା ପାଣ୍ଡବେ ଶଶା ମୁହିଁ ଅଟେ ସିଂହ
ଦେଖ ସହସ୍ରେକ ରଥ ଅଛି ମୋର ସଙ୍ଗ ।
ଏଡ଼େ ପ୍ରତିଜ୍ଞାକୁ କରି ଖଡ଼ଗକୁ ଝୁଣି
ଆମ୍ଭର ଶିରକୁ ତୁହି ଲୋଡ଼ୁଥିଲୁ ହାଣି ।

ତେତେବେଳର ପ୍ରତିଜ୍ଞା କାହିଁ ତୁ ଥୋଇଲୁ
ଏବେ କିପାଇଁ ବାବୁରେ ଏମନ୍ତ ହୋଇଲୁ ।
କେଶ କାଟି ଭୀମସେନ ନେଲା ମଥାମଣି
ପ୍ରପଞ୍ଚ ସାତବେଣ୍ଟିଆ କଲା ସେହୁ ପୁଣି ।
ଦନ୍ତରେ ତିରଣ ଧରି କହେ ଜୟଦ୍ରଥ
ମୁହିଁ ତୁମ୍ଭ ଭୃତ୍ୟ ଭୃତ୍ୟ ଅଟେ ପରିଭୃତ୍ୟ ।
ବୃକୋଦର ଶର ଏକ ଧରି ନିଜ କରେ
ଚିତା କୁଟିଦେଲା ଜୟଦ୍ରଥ ଲଲାଟରେ ।
ଲେଖେ ପୁତ୍ର ବନ୍ଧୁ ଘେନି ଆରେ ଜୟଦ୍ରଥ
ଜନ୍ମେ ଜନ୍ମେ ପାଣ୍ଡବଙ୍କ ହୋଇଲୁ ତୁ ଭୃତ୍ୟ ।
ସେହିପରି ଲେଖେ ପୁଣି ଅନ୍ୟ ଅନ୍ୟ ଅଙ୍ଗେ
ପୁଣିହିଁ ଲେଖିଲା ଭୀମ ତାର ହୃଦ ଭାଗେ ।
ନବପଲ୍ଲବ ବୋଲିଣ ଗିରି ବେନିଗୋଟି
ଦୁଇପାଦେ ଦ୍ୱିପର୍ବତେ ଭୀମ ଦେଇ ଉଠି ।
ଚରଣକୁ ବିସ୍ତାରିଣ ଭୀମ ଦେଲା ତୋଳି
ବୋଇଲା ଜୟଦ୍ରଥରେ ଏଥୁ ଯାଅ ଚଳି ।
ପାଦେ ଗଳି ପଳୟନ କଲା ଜୟଦ୍ରଥ
ବାସ ଅସମ୍ଭାଳ ହୋଇ ନ ଦିଶଇ ପଥ ।
ଦଶ ସହସ୍ର ରଥୀ ଯେ ଥିଲେ ତାର ତୁଲେ
ଭୀମ ମାଡ଼େ ନବସସ୍ର ତହିଁ ନାଶ ହେଲେ ।
ସହସ୍ରେକ ଯୋଦ୍ଧା ଘେନି ଯାଏ ଜୟଦ୍ରଥ
ଲଜ୍ଜାରେ ରାଜ୍ୟେ ନ ଗଲା ସିନ୍ଧୁ ନରନାଥ ।
ମନ୍ତ୍ରୀକି ବୋଇଲା କେଉଁ ମୁଖେ ରାଜ୍ୟେ ଯିବି
ଏ ନିର୍ଲ୍ଲଜ ମୁଖ ଆଉ କାରେ ଦେଖାଇବି ।
କୌରବେ ଦେଖି କରିବେ ମୋତେ ଉପହାସ
ପାଣ୍ଡବେ ନ କଲେ କିପାଁ ମୋତେ ପ୍ରାଣନାଶ ।
ମନ୍ତ୍ରୀକି ବୋଇଲା ରାଜ୍ୟ କର ତୁ ପାଳନ
ସେବା କରିବି ଯାଇଣ ଦେବ ପଞ୍ଚାନନ ।
ପାଣ୍ଡବଙ୍କୁ ଜିଣିବାକୁ ମାଗିନେବି ବର
ବଧ ହୋଇବେ ପାଣ୍ଡବେ ନିଶ୍ଚେଁ ମୋ ହସ୍ତର ।
ତହୁଁ ଭଗ୍ନବଳ ଘେନି ମନ୍ତ୍ରୀ ଚଳିଗଲା
ଶିବଙ୍କୁ ମାନସ କରି ଅରଣ୍ୟେ ଚଳିଲା ।
ଶ୍ୱେତ୍‌ଦ୍ୱୀପେ ଅଛି ରୁଦ୍ର ନାମଧେୟ ଗିରି
ସେହି ପର୍ବତେ ରହିଲା ତପସ୍ୟା ଆଚରି ।
କୋମଳ ପତ୍ରାଦି ଖାଇ ଜଳାହାରେ ରହି
ଶ୍ରୀ ଈଶ୍ୱର ଦେବାତଙ୍କୁ ଲୟ ସେ କରଇ ।
ଦୃଢ଼ାସନ କରି ତହିଁ ଶିବ ନାମ ଜପି
ରୁଦ୍ର ମନ୍ତ୍ର ଜପଇ ସେ ବାଲି ଲିଙ୍ଗ ସ୍ଥାପି ।
ଗଙ୍ଗାଜଳରେ ସଂକଳ୍ପ କରେ ନୃପବର
ପାଣ୍ଡବେ ଜିଣିବେ ବୋଲି ସେବା କରେ ହର ।
ବହୁତ ବିନୟ ଭାବେ ଖଟେ ଦେବ କାଶୀ
ଅଙ୍ଗ ଶୀର୍ଣ୍ଣ କରି ରାଜା ବସେ ଦିବାନିଶି ।
ଜୟ ଜୟ ଜଗନ୍ନାଥ କରୁଣା ସାଗର
ଏ ମହାସଙ୍କଟୁ ମୋତେ ବାରେକ ଉଦ୍ଧର ।
ମାୟା ବିଭୀଷିକାରେ ମୁଁ ହେଉଅଛି ଭୋଳ
ଲୋଭ ମିଥ୍ୟା ପ୍ରବଞ୍ଚନା ହୋଇଲାଣି ମୂଳ ।
ଦିନୁଦିନ ଘୋର କଳି ହେଉଛି ପ୍ରବେଶ
ତାହା ସବୁ ଦେଖି ମୁହିଁ ହେଉଛି ହତାଶ ।
କେଉଁରୂପେ ଏ ଜଞ୍ଜାଳ ଜାଲୁ ହେବି ପାରି
ବୁଦ୍ଧିର ଅଗମ୍ୟ ପ୍ରଭୁ ତରିବି କିପରି ।
ଆହେ ପ୍ରଭୁ କୃପା ବାରି କର ବିତରଣ
ଶାରଳା ଦାସ ଯେପରି ନ ପାଉ କଷଣ ।

■ ■ ■

## ଅଭିମନ୍ୟୁ ଜନ୍ମ ଓ ନହୁଷ ରାଜା ଉପାଖ୍ୟାନ

ପୁଣି ପଚାରିଲେ ବୈବସ୍ୱତ ନୃପବର
ହେ ଅଗସ୍ତି ମୋ କହିବା କଥା ଘେନାକର ।
ଜୟଦ୍ରଥ ପଳାଇଲା ଅପମାନ ପାଇ
ତଦପରେ କେଉଁ କଥା କଲେ ଚାରିଭାଇ ।
ସେହି କଥା ଶୁଣିବାକୁ ବଳଇ ମୋ ଚିତ୍ତ
କହନ୍ତି ଅଗସ୍ତି ଶୁଣ ହେ ନୃପ ପଣ୍ଡିତ ।
ଦ୍ରୌପଦୀକି ସଙ୍ଗେ ଘେନି ତହୁଁ ଚାରିବୀରେ
ପ୍ରବେଶ ହୋଇଲେ ନନ୍ଦିକେଶ୍ୱର ବନରେ ।
ନନ୍ଦନ ବୋଲିଣ ତହିଁ ଏକଇ ପର୍ବତ
ତା ଉର୍ଦ୍ଧ୍ୱରୁ ବହେ ନଦୀ ନାମେ ନନ୍ଦାବର୍ତ୍ତ ।
ସେ ନଦୀରେ ପଶି ସର୍ବେ କରିଲେ ସ୍ନାହାନ
ନନ୍ଦିକେଶ୍ୱରଙ୍କୁ ଯାଇ କଲେ ଦରଶନ ।
ଶୁକ୍ଳାମ୍ବର ଦେହ ଶୁଦ୍ଧ ସ୍ଫଟିକର ପ୍ରାୟେ
ଅଟନ୍ତି ସାକ୍ଷାତେ ମହାଶମ୍ଭୁ ବରଦାୟେ ।
ପରମାନନ୍ଦ ପୁରୁଷ ଯେଣୁ ଯୋଗେଶ୍ୱର
ଦର୍ଶନେ ଅଙ୍ଗରୁ ପାପ ହୋଇଯାଏ ଦୂର ।
ପ୍ରସନ୍ନ ବଦନ ଦେବ ସର୍ବ ପ୍ରାଣୀ ଚିନ୍ତା
ସଦାନନ୍ଦ ଦ୍ୱାରପାଳ କଳ୍ପଜୀବୀ ଦାତା ।
ଜନ୍ମେ ଜନ୍ମେ ତବପାଦେ ମୋହର ଭକତି
ଶୂଦ୍ରମୁନି ଶାରଳାକୁ ଦିଅ ମୁକ୍ତିଗତି ।
ଏଥୁଅନ୍ତେ ଶୁଣ ଜନେ ଦେଇ ମନକର୍ଣ୍ଣ
ନନ୍ଦିକେଶ୍ୱରଙ୍କୁ ସେବା କଲା ସେ ରାଜନ ।
ନନ୍ଦିକେଶ୍ୱର ପର୍ବତେ ହରଗୌରୀ ସେବି
ରହିଲେ ନିଶ୍ଚିନ୍ତେ ସଦା ନିତ୍ୟକର୍ମ ଭାବି ।
ପଣ୍ଡୁପୁତ୍ରମାନେ ଥିଲେ ବାରାଣସୀ କ୍ଷେତ୍ରେ
ସୁଭଦ୍ରା କୃଷ୍ଣା ଶିବଙ୍କୁ ଖଟୁଥିଲେ ନିତ୍ୟେ ।

ପ୍ରସନ୍ନ ହୋଇଣ ବର ଦେଲେ ଦେବକାଶୀ
ସୁଭଦ୍ରା ଯେ ଗର୍ଭବତୀ ହେଲେ ବାରାଣସୀ ।
ତୁଳ କୃଷ୍ଣ ଦ୍ୱିତୀୟାରେ ପୁଣି ଅର୍କବାର
ପୁତ୍ରେକ ଉପୁଜେ ବେଳ ସତର ଦଣ୍ଡର ।
କୃତ୍ତିକା ଦଣ୍ଡରେ ଥାଇ ରୋହିଣୀ ପ୍ରବେଶ
ଲଗ୍ନ ସଙ୍ଗତରେ ରବି ଭୌମ ଏକାଦଶ ।
ବାଣିଜ୍ୟ ନାମେ କରଣ ଶୁଭ ନାମେ ଯୋଗ
ତୁଳ ସଂକ୍ରାନ୍ତିକି ଥିଲା ପାଞ୍ଚଦିନ ଭୋଗ ।
ନନ୍ଦର ଘରେ ହୋଇଲା କୁମାର ସମ୍ଭବ
ଶୁଣିଣ ସାନନ୍ଦ ହେଲେ ରାମ ବାସୁଦେବ ।
ଦ୍ୱାରକାପୁରରେ ବହୁ ଉତ୍ସବ କରାଇ
ଅନେକ ପରକାରରେ ଦେଲେ ସେ ବଧାଇ ।
ନନ୍ଦିବନରେ ପାଣ୍ଡବେ ସର୍ବେ ଥିଲେ ବସି
ଊର୍ଦ୍ଧ୍ୱମୁଖ କରି ସହଦେବ ଦେଲା ହସି ।
ଭୀମ ବୋଲେ ଏ କେମନ୍ତ କଥା ସହଦେବ
କେବଣ କଥାକୁ କଲୁ ଏହି ହାସ ଭାବ ।
ଯୁଧିଷ୍ଠି ବୋଇଲେ ଆମ୍ଭ ଅଧାର୍ମିକ ପଣେ
ପଶା ଖେଳିଣ ହାରିଲୁ ଆମ୍ଭେ ଅକାରଣେ ।
ଯାଜ୍ଞସେନୀ ବୋଇଲେ ନ ହସିବେ କେମନ୍ତ
ଚୋରିକରି ନେଇଗଲା ମୋତେ ଜୟଦ୍ରଥ ।
ନକୁଳ ବୋଇଲେ ଏହୁ ମୋତେ ଦେଖିହସେ
ମୁହିଁ କିସ ପ୍ରୟୋଜନ ମନରେ ନ ଆସେ ।
ପୁଣି ଭୀମ ପଚାରଇ ସେ ସହଦେବକୁ
ଅଦଭୂତେ ହାସ୍ୟକଲୁ କାହିଁକି କାହାକୁ ।
ସହଦେବ ବୋଲେ ମୁହିଁ କାରେ ହସିନାହିଁ
ଯହିଁକି ହସିଲି ତାହା ଶୁଣିମା ଗୋସାଇଁ ।
ସ୍ୱାମୀ ଦ୍ୱିତୀୟା ମଧରେ ସତର ଦଣ୍ଡରେ
ଅର୍ଜ୍ଜୁନ ଠାକୁରଙ୍କର ହୋଇଲା କୁମରେ ।
ଦ୍ୱାରକାରେ ଉତ୍ସବ ଯେ କରିଛନ୍ତି ହରି
ଗୁଣବନ୍ତ ପୁତ୍ରଗୋଟି ଅଛି ଅବତରି ।
ତେଣୁକରି ସ୍ୱାମୀ ହାସ୍ୟ ଉପୁଜିଲା ମୋର
ଆନକୁ ହାସ୍ୟ ନାହିଁ ମୋ ଶୁଣ ନୃପବର ।
ସହଦେବଙ୍କ ମୁଖରୁ ଏହି ବାକ୍ୟ ଶୁଣି
ଯୁଧିଷ୍ଠିଦେବ ହରଷ ହୋଇଲେକ ପୁଣି ।
ଆଦିତ୍ୟ ଇନ୍ଦ୍ରଦେବତା ବିଚାରନ୍ତି ସ୍ୱର୍ଗେ
ଅର୍ଜ୍ଜୁନର ପୁତ୍ର ଜାତ ହେଲା କେଉଁଯୋଗେ ।
ବୃହସ୍ପତି ବୋଇଲେ ଯେ ହେଲା ପାର୍ଥସୁତ
ଦ୍ରୌପଦୀଠୁଁ ପାଞ୍ଚପୁତ୍ର ହୋଇବେ ସମ୍ଭୂତ ।
ହିଡ଼ିମ୍ବିକୀ ଦ୍ରୌପଦୀଙ୍କୁ ଶାପଦେଲା ରାଗେ
ତୋର ପୁତ୍ର ଶିରଚ୍ଛେଦ ହେଉ ଲୋ ଅଯୋଗେ
ନାଗ ଅର୍ଜ୍ଜୁନ ନାଗୁଣୀ ଗର୍ଭେ ହେଲା ଜାତ
ଖଟେ ଯେ ପରମ ଯୋଗୀ ଦେବ ବିଶ୍ୱନାଥ ।
ଭୀମସେନ ବୀର୍ଯ୍ୟେ ହେଲା ବଳୀ ଯେ ବେଲାଳ
ନାଗାନ୍ତ ପୁରୁଷ ସେହୁ ରହିବ ପାତାଳ ।
ଘଟୋତ୍କଚ ଜନ୍ମହେବ ହିଡ଼ିମ୍ବିକୀ କୋଳେ
ରହିବ ଯେ ରକ୍ଷବୃତ୍ତି ଧରି ରକ୍ଷମେଳେ ।
ଏମନ୍ତେ ଏମାନେ ବଂଶ ନ କଲେ ଧାରଣ
ଏଡ଼େବଡ଼ ବଂଶ ବୁଡୁଅଛି ଅକାରଣ ।
ସାତ ମନୁକୁ ଯେ ଇନ୍ଦ୍ର ଦେଇଥିଲେ ଶାପ
କାଳ କାମ ଆଦି ସାର ଶକ୍ୟ ଅନୁରୂପ ।
ଏ ସାତ ମନୁ ବ୍ରହ୍ମାଙ୍କ ତହୁଁ ହେଲେ ଜାତ
ଅଭୟ ପୁରୁଷ ଏହୁ ଅଟନ୍ତି ସିଦ୍ଧାନ୍ତ ।
ପଣ୍ଡୁବଂଶେ ପାର୍ଥ ବୋଲି ଯେହୁ ଉତପତ୍ତି
ରାମ କୃଷ୍ଣଙ୍କ ଭଉଣୀ ତାର ପ୍ରିୟବତୀ ।
ସେ ଅର୍ଜ୍ଜୁନ ବୀର୍ଯ୍ୟେ ଆଉ ସୁଭଦ୍ରା ଗର୍ଭରେ
ସୋମବଂଶେ ଜନ୍ମି ଦୋଷ ଯିବ ସମୂଳରେ ।
ତାହାକୁ ବୋଇଲେ ମଞ୍ଚପୁରେ ହୁଅ ଜାତ
ଶୁଣି ସେହି ଆଦିମନୁ କଲେ ସନମତ ।
ଇନ୍ଦ୍ରଙ୍କର ଶାପ ପାଇ ସେ ଅଭୟ ମନୁ
ଆଦି ଜନ୍ମ ହେଲେ ହୋଇ ଅର୍ଜ୍ଜୁନର ସୂନୁ ।
ଗର୍ଭରୁ ବାହାର ଯହୁଁ ହେଲା ପୁତ୍ରଗୋଟି
ଦେଖନ୍ତି ଅପୂର୍ବ ତେଜ ବିରାଜଇ ସୃଷ୍ଟି ।
ଗର୍ଭରୁ ବାହାର ଯହୁଁ ହୋଇଲା ନନ୍ଦନ
ଅଭିନବ ସୁନ୍ଦର ଯେ ବିକାଶେ ବଦନ ।
ତାକୁ ମହାବ୍ରହ୍ମବେତ୍ତା ଜାଣି ଚକ୍ରପାଣି
ଅଭିମନ୍ୟୁ ବୋଲି ନାମ ଦେଲେ ସେହିକ୍ଷଣି ।
ପାଦ ଦେଇଣ ଜନମ ହୋଇଲା କୁମର
ପାଦ ଲାଗନ୍ତେ ପୃଥ୍ୱୀରେ କମ୍ପେ ମହୀଧର ।
କୁମରର ଶିର ଯେବେ ପଡ଼ନ୍ତା ମେଦିନୀ
ଅଗାଧ ଜଳେ ବୁଡନ୍ତା ଦ୍ୱାରକା ଅବନୀ ।
ଆସିବାବେଳେ ବୋଇଲା ବ୍ରହ୍ମାଙ୍କର ଆଗେ
ତୋର ବଚନେ ଯାଉଛି ମୁହିଁ ମଧ ସ୍ୱର୍ଗେ ।
ବହୁଦିନ ନ ରହିବି ମୁହିଁ ମଧ୍ୟପୁରେ
ମୋତେ ଅଣାଇବୁ ଯାଇ ଦ୍ୱାଦଶ ବର୍ଷରେ ।
ଇନ୍ଦ୍ରଦେବତା ବୋଇଲେ ମାଗୁଅଛି ଏତେ
ମର୍ତ୍ତ୍ୟପୁରେ ଥିବୁ ଚୌଦବର୍ଷ ପରିଯନ୍ତେ ।
ଅଭିମନ୍ୟୁ ବୋଲେ ଥିବି ବର୍ଷ ଗଣିକରି
ନ ଆଣିଲେ ଆସିବି ମୁଁ ହରି ପାର୍ଥ ମାରି ।
ପୁଣି ବୋଲେ ଚୌଦବର୍ଷ ଦିନେ ବଳିଗଲେ
ପାଣ୍ଡବ ଶିର ଛେଦିବି ତାଙ୍କ ପୁରେ ଥିଲେ ।

ଏବେ ସୁରନାଥ ମୋତେ କରି ଅନୁରାଗ
ଚୌଦବର୍ଷେ କରାଇବୁ ତୁହି ରଣଯଜ୍ଞ ।
ଇନ୍ଦ୍ର ବୋଲେ ପଞ୍ଚଦଶ ପୂର୍ବେ ଥିବୁ ସ୍ୱର୍ଗେ
ନାରାୟଣ ତୋତେ ବଧ କରାଇବେ ବାଗେ ।
ଶୁଣ ବୈବସ୍ୱତ ମନୁ ପୂର୍ବର ଏ କଥା
ଅଭିମନ୍ୟୁ ଜନମର ଏମନ୍ତ ବ୍ୟବସ୍ଥା ।
ପାଦରେ ଜନ୍ମିଲା ସେହି ନ ପଡ଼ିଲା ଭୂମି
ମନୁ ବ୍ରହ୍ମା ବୋଲି ରାଜା ହେଲା ସେ ଜନମି ।
ମହୀ ଭାରାଭର ସବୁ ନିବାରଣ ପାଇଁ
ଆଗରୁ ସଜ୍ଞ ଅଛନ୍ତି ପ୍ରଭୁ ରମାସାଇଁ ।
ତୁ ଯାହା ପୁଚ୍ଛା କରିଲୁ ମୋତେ ଧର୍ମଦେବେ
ଅଭିମନ୍ୟୁ କଥା ତୋତେ କହିଲି ପ୍ରସ୍ତାବେ ।
ବୈବସ୍ୱତ ମନୁ ପୁଚ୍ଛା କଲେ ଅଗସ୍ତିଙ୍କୁ
ଦୃଢ଼ବାକ୍ୟରେ କହିବା ପାଞ୍ଚାଳୀ ପୁତ୍ରଙ୍କୁ ।
ଅଗସ୍ତି ବୋଇଲେ ତାହା ଅଟଇ ବେଭାରେ
ପାଞ୍ଚାଳୀ ପୁତ୍ରେ ଜନ୍ମିଲେ ଅଷ୍ଟବରଷରେ ।
ସହଦେବ ଏହିପରି ବାରତା କହିଲେ
ପୁତ୍ରଜାତ ବୋଲି ଭାବେ ହରଷ ହୋଇଲେ ।
ଜାତକର୍ମ ବିଧାନାଦି ସାରି ନନ୍ଦିବନେ
ଘୃତ ଯୋଗାଡ଼ କରିଲେ ଆହୁତି ପ୍ରଦାନେ ।
ଜାତ ହୋମ କରିଲେ ଯେ ଧୌମ୍ୟ ପୁରୋହିତେ
କାୟାକୁ ଶୁଦ୍ଧ କରିଲେ ସେହି ଚାରିଭ୍ରାତେ ।
ଚତୁର୍ମାସ୍ୟା ରହିଲେ ସେ ନନ୍ଦିକ କାନନେ
ବହୁ କୌତୁକ କଲେ ସେ ନନ୍ଦିର ପ୍ରସନ୍ନେ ।
ତହୁଁ ଚଳିଲେ ପାଣ୍ଡବେ ପଶ୍ଚିମ ମୂରତି
କଉସ୍ତୁଭ ବନେ ବିଜେ କରିଲେ ସେ ଧାତି ।
ବହଇ ଗଣ୍ଡୁକୀ ନଦୀ ଅତି ପରିମଳ
ମଣି ପର୍ବତ ଅଛଇ ସେ ନଦୀର କୂଳ ।
କଣୟ ବଟର ସେହୁ ଈଶାନର ସ୍ଥିତି
ବହଇ ଗଣ୍ଡୁକୀ ନଦୀ ଉତ୍ତର ମୂରତି ।
ସେ ମଣି କୁଣ୍ଡଳ ମଧ୍ୟେ ଅଛି ବଜ୍ରକୀଟ
କଷ୍ଟ ଆୟୁଷ ତାହାର ଶରୀର ଅତୁଟ ।
ତା କାୟା ଶୋଭା ମର୍କତ ରସାଣକୁ ଜିଣି
ନୟନ ଦିଶେ ତିମିର ବିଦାରଣ ମଣି ।
ହୀରା ପ୍ରବାଳକୁ ଜିଣି ତାର ପାଞ୍ଚ ପାଦ
ବେନି ଶିର ଚକ୍ରାଘାତ ପରାୟେ ଶବଦ ।
କାଞ୍ଚନ ପ୍ରାୟେ ଦିଶଇ ତାହାର ଅଙ୍ଗୁଷ୍ଠି
ଶୁଦ୍ଧସ୍ଫଟିକ ପରାୟେ ଦିଶେ କୀଟ ପିଠି ।
ହୀରା ରସାଣିଲା ପ୍ରାୟେ ଦିଶେ ଦନ୍ତପନ୍ତି
ବାଳଆଦିତ୍ୟ ପରାୟେ କୀଟର ମୂରତି ।

ମୟୂରର କଣ୍ଠପ୍ରାୟେ ଦିଶେ ରୋମାବଳି
ନଖ ବିରାଜିତ କିବା ପୋହଳାର ମାଳି ।
ଏମନ୍ତ ସ୍ୱରୂପରେ ଯେ ଅଟେ ବଜ୍ର ପୋକ
ଶୟଳ ତାରଣ ସେହୁ ଅଶୋକ ଅଲେଖ ।
ମହାମନ୍ତ୍ରବାଦୀ ସେହୁ ଧାର୍ମିକ ପ୍ରସିଦ୍ଧି
ଅଜପା ମହାମନ୍ତ୍ରର ଗାୟତ୍ରୀକୁ ସାଧି ।
ଏମନ୍ତ ମହିମା ଅଟେ ସେହି ବଜ୍ରପୋକ
ସହସ୍ର ବରଷ କାଟେ ଶାଳଗ୍ରାମ ଏକ ।
ଆହାର ମୈଥୁନ ନିଦ୍ରା ତିନିକୁ ସେ ବଞ୍ଚେ
ମହାଯୋଗେଶ୍ୱର ସେହୁ ମହାମୂର୍ତ୍ତି ସଞ୍ଚେ ।
କାମ୍ୟକସିଦ୍ଧ ସେ ଶିଳା ନୀଳକଣ୍ଠ ରୂପ
ଭଗବାନ ମୂର୍ତ୍ତିଶିଳା ଶ୍ରୀକୃଷ୍ଣ ସ୍ୱରୂପ ।
ବ୍ରହ୍ମନାରାୟଣୀ ମୁଦ୍ରା ଅଭୟା ପିଙ୍ଗଳା
ଗୋପୀନାଥଙ୍କ ମୂରତି ନିରଞ୍ଜନ ଶିଳା ।
ଶ୍ରୀରାମ ଦାମୋଦର ଯେ ମୂର୍ତ୍ତି ଜନାର୍ଦ୍ଦନ
କେଶବ ମୂରତି ଶିଳା ଆବର ବାମନ ।
ଧାପନ ଅଧାପନ ଯେ ସାଧନାରେ ସିଦ୍ଧ
କାଶୀଶ୍ୱର ଗୋବର୍ଦ୍ଧନ ଶିଳା ବଳଭଦ୍ର ।
ମତ୍ସ୍ୟ କୂର୍ମ ପର୍ଶୁରାମ ଅନନ୍ତ ବରେହା
ଲକ୍ଷ୍ମୀ ନୃସିଂହ ମୂରତି ଅଟେ ଶିଳକାୟା ।
ମାଧବ ପଦାରବିନ୍ଦ ପୁଣି ବାସୁଦେବ
କାଳାନ୍ତକ କୃତାନ୍ତକ ଅନଳ ସମ୍ଭବ ।
ନାନାଦି ପ୍ରକାରମୂର୍ତ୍ତି ଶିଳାମାନ କାଟି
ଏମନ୍ତ ପ୍ରକାରେ ବଜ୍ରକୀଟ ମହିମାଟି ।
ସେହି ନଦୀରେ ସ୍ନାହାନ କରେ ଯେଉଁ ଜନ
ତାଙ୍କମାନଙ୍କର ଦେହ ଦିଶଇ ସୁବର୍ଣ୍ଣ ।
ପାଣ୍ଡବେ ବିଜେ କରିଲେ ସେହି ନଦୀକୂଳେ
ରହିଲେ ଯାଇ ହିରଣ୍ୟ ପର୍ବତର ତଳେ ।
ସେ ନଦୀରେ ସ୍ନାନକରି କରନ୍ତି ତର୍ପଣ
ସେ ପର୍ବତ ଅଟେ ସାତଯୂଣ ଆୟତନ ।
ତାର ପଶ୍ଚିମ ପାରୁଶେ ଦିଶେ ମେଘମାଳ
ବରନ କଳା ଲୋହିତ ଆବର ପିଙ୍ଗଳ ।
ଯୁଧିଷ୍ଠି ବୋଇଲେ ଶୁଣ ବୀର ବୃକୋଦର
ବନଜୀବ ଦେଖ ଏହି ବନର ଭିତର ।
ପିତୃଶ୍ରାଦ୍ଧ କରିବା ଏ ଗଣ୍ଡୁକୀର ତୀରେ
ଗଣ୍ଡା ଏକ ମାରି ଆଣ ଯାଇ ଧାତିକାରେ ।
ଗଣ୍ଡା ଗୋଟିଏ ବହନ ଆଣ ଭୀମ ଆଜ
ପବିତ୍ର ମାଂସରେ ଶ୍ରାଦ୍ଧ ହେବ ଶୁଦ୍ଧକାର୍ଯ୍ୟ ।
ଠାକୁର ବଚନ ଶୁଣି ଚଳେ ଭୀମସେନ
ବିହାର କରେ ପାଣ୍ଡବ ପଶ୍ଚିମ ଯେ ବନ ।

ଅସଂଖ୍ୟ ଅଟଇ ସେହି ବନ ବୃକ୍ଷଲତା
କିରାତ ବେଶରେ ଚଳେ ଭୀମ ବଳବନ୍ତା ।
ଧାମଣାକାଠ ନିର୍ମିତ ଧନୁ ଏକ ଧରି
କଣ୍ଟାବାଉଁଶର ଗୁଣ ଫିରକ ତିଆରି ।
ଡାଳ ଆଭରଣ ଗୁଞ୍ଜମାଳ ଯେ ଲଲାଟେ
ଗୋପନରେ ଭୀମସେନ ଚଳେ ଜଳତଟେ ।
ବହୁତ ଦେଖଇ ଜୀବ ମୃଗ ବାହୁଟିଆ
ଗଣ୍ଡାରେ କାର୍ଯ୍ୟ ବୋଲିଣ ନ ମାରଇ ତାହା
କନ୍ଦମୂଳକୁ ଆହାର କରେ ବୀରମଣି ।
ଗଣ୍ଡାର ନିମନ୍ତେ ସେହୁ କରଇ ଭ୍ରମଣି ।
ମନୋହର ବନେ ସବୁ ଶ୍ୱେତ ବୃକ୍ଷମାନ
ସକଳ ଜୀବେ ଦିଶନ୍ତି ମଧ ଶ୍ୱେତବର୍ଣ୍ଣ ।
ବହଇ ମଳୟାନିଳ ଦେଖିଣ ମାରୁତି
ଶିଂଶପା ବୃକ୍ଷ ମୂଳରେ ଦୂର କଲା ଶାନ୍ତି ।
ନନ୍ଦନବନ ପରାୟେ ଅଟଇ ବିଟପୀ
ବୃକ୍ଷଙ୍କ ଶିରେ ଆକାଶ ଯାଇଅଛି କ୍ଷେପି ।
ଯୁଆଦ କସ୍ତୁରୀ ପୁଣି ଆନ ଜୀବମାନେ
ଆନନ୍ଦ କରନ୍ତି ତହିଁ ମଳୟ ପବନେ ।
ଦ୍ୱାଦଶ ଯୋଜନ ଯାଏ ବନସ୍ତ ବନିକା
ଶ୍ରଦ୍ଧାରେ ମାରୁତି ବୁଲେ ହୋଇଣ ନିଃଶଙ୍କା ।
କନ୍ଦମୂଳ ଦ୍ରାକ୍ଷାଫଳ ବହୁ ତହିଁ ପାଇ
ସନ୍ତୋଷେ ପାବନି ତହିଁ ଆହାର କରଇ ।
ବହୁ କଉତୁକେ ସେହି ଦେଖଇ ସେ ବନ
ରାଜପଦ ସେ ସୁଖରେ ଅଟଇ ସାମାନ୍ୟ ।
ସେହି ନଦୀର ତୀରରେ ପଶ୍ଚିମ ମୂରତି
ମହା ଅଟବୀରେ ବୁଲି ବୁଲଇ ମାରୁତି ।
ଦୁଇ ଗିରି ମଧସ୍ଥାନେ ଅଟେ ଯେଉଁ ବନ
ସେହି ସ୍ଥାନ ଅଟେ ଜାଣ ଷାଠିଏ ଯୋଜନ ।
ସେହି ଦୁଇ ଗିରି ମଧ୍ୟେ ସର୍ପେ ଅଛି ପଡ଼ି
ଦୁଇକ୍ରୋଶ ବିସ୍ତାରରେ ଭୂମି ଅଛି ମାଡ଼ି ।
ମହାପର୍ବତ ପରାୟେ ସର୍ପେ ଅଛି ରହି
ତିନିମାସରେ ଲାଙ୍ଗୁଳ ଆଣଇ ଗୁଡ଼ାଇ ।
ଯାହା କିଛି ପାଏ ଅବା ଭକ୍ଷଣ କରଇ
ଏହି ପରକାରେ ସର୍ପ ତହିଁ ଅଛି ରହି ।
ଗଣ୍ଡା ଉଦ୍ଦେଶ୍ୟରେ ଭୀମ ସେ ପଥେ ଚଳଇ
ଲାଙ୍ଗୁଳରେ ତାକୁ ସର୍ପ ଆଣିଲା ଗୁଡ଼ାଇ ।
ଭୀମସେନକୁ ଖାଇବା କରିଣ ମନସ୍ଥ
ଅଣ୍ଟାଳି ଗିଳେ ଉରଗ ସେହୁ ବଳବନ୍ତ ।
ଗୋଡ଼ ଆଡ଼ରୁ ସେହୁ ଯେ ଆସୁଅଛି ଗିଳି
ମହାବଳବନ୍ତ ଭୀମ ନ ପାରଇ ଚଳି ।

ଶତସିଂହ ପର୍ବତକୁ ଭୀମ ସୁମରିଲା
ଏକୋତ୍ତର ଶତସିଂହ ପ୍ରାକର୍ମ କରିଲା ।
ତଥାପି ବୃକୋଦର ଯେ ନ ପାରେ ଉବୁରି
ଆକର୍ଷି ଗିଳଇ ସର୍ପ ବେଗ ବେଗ କରି ।
ଗିଳିଲା ସେ ମହାସର୍ପ ନାଭି ପରିଯନ୍ତେ
ଯୁଧିଷ୍ଠିର ରଖ ଭୀମ ଡାକଇ ନିସତେ ।
ଯହୁଁ ଭୀମ ସୁମରିଲା ଯୁଧିଷ୍ଠିର ନୃପ
ଗିଳିବାର ଉପେକ୍ଷିଲା ଧାର୍ମିକ ଯେ ସର୍ପ ।
ତୁମ୍ଭେ ଆହେ ମହାତମା ନିସତ କାହିଁକି
କେଉଁ କାରଣେ ସ୍ମରଣ କଲ ଯୁଧିଷ୍ଠିଙ୍କି ।
ଭୀମ ବୋଲେ ସେହୁ ପଞ୍ଚକଟକ ରାଜନ
ତାଙ୍କ ସାନ ସହୋଦର ମୁହିଁ ଭୀମସେନ ।
ଆଣ୍ଟକରି ଡାକଦିଅ ଆହେ ବୃକୋଦର
ନିକଟେ ଥିଲେ ଆସନ୍ତୁ ଧର୍ମ ନୃପବର ।
ସର୍ପ ବୋଲେ ଆଉ ମୁହିଁ ନ ଗିଳିବି ତୋତେ
ଯୁଧିଷ୍ଠିର ଚିହ୍ନାଇଣ ପାରିବୁ କି ମୋତେ ।
ତୋର ଯୋଗୁ ପାରି ମୁହିଁ ହୋଇବି କିଞ୍ଚିତେ
ଏତେ ବୋଲି ସର୍ପ ତହୁଁ ରହେ ସ୍ତମ୍ଭୀଭୂତେ ।
ଯୁଧିଷ୍ଠି ଦେବ ବୋଇଲେ ଶୁଣ ସହଦେବ
ଭୀମ ଯିବାର ହେଲାଣି ବହୁତ ବିଳମ୍ବ ।
ବୋଲେ ମନ୍ତ୍ରୀ ସହଦେବ ଶୁଣ ରାଜଇନ୍ଦ୍ର
ଭୀମସେନ ଠାକୁରଙ୍କୁ ପଡ଼ିଲା ପ୍ରମାଦ ।
ମହାସର୍ପ ଗିଳିଅଛି ଭୀମ ଠାକୁରଙ୍କୁ
ଯୁଧିଷ୍ଠି ଦେବ ବୋଇଲେ ନ କହୁ ଆମ୍ଭଙ୍କୁ ।
ଧାମନ୍ତି ଯୁଧିଷ୍ଠି ଦେବ ଆକୁଳିତ ହୋଇ
ଆଗେ ଆଗେ ମନ୍ତ୍ରୀବର ନିଅନ୍ତି କଢ଼ାଇ ।
ଦୂରରୁ ଦେଖିଲେ ତହୁଁ ଭୀମ ମହାବଳ
ଯୁଧିଷ୍ଠିର ମୁଖ ଚାହିଁ ହୋଇଲେ ବିକଳ ।
ଭୀମସେନ ବୋଲେ ଦେଖ ବିଜୟ ଯୁଧିଷ୍ଠି
ଶୁଣି ସର୍ପ ପଛଦିଗେ କରିଲାକ ଦୃଷ୍ଟି ।
ଏକଲୟ କରିଣ ସେ ଚାହେଁ ଧର୍ମମୁଖ
ବିଚାରଇ ମହାସର୍ପ ପାର କଲା ଦୁଃଖ ।
ତୋହର ଉପର ବଂଶ ଠାକୁର ମୁଁ ହାଦେ
ଫିଟିଲା ଦୁର୍ଗତି ମୋର ତବ ପରସାଦେ ।
କହୁଁ କହୁଁ ତା ଶରୀର ଗଲା ପାଲଟିଣ
ସର୍ପ ଶରୀର ଛାଡ଼ିଣ ହେଲା ଜ୍ୟୋତିପୂର୍ଣ୍ଣ ।
ସର୍ପରୂପ ତେଜି ହେଲା ସେହୁ ନିଜକାୟେ
ଦିଶଇ ସ୍ୱରୂପ ତାର ବିଦ୍ୟାଧର ପ୍ରାୟେ ।
ସତ୍ୟ ତ୍ରେତା ଦ୍ୱାପରର କଷ୍ଟ ଗଲା ଫିଟି
ଆକାଶ ଦେବତା ମାନେ କଲେ ପୁଷ୍ପବୃଷ୍ଟି ।

ଯୁଧିଷ୍ଠି ଦେବ ବୋଇଲେ ଶୁଣ ହୋ ପୁରୁଷ
ଏ ଅବସ୍ଥା ଲଭିଥିଲ କରି କେଉଁ ଦୋଷ ।
ଶୁଣି ଧର୍ମଙ୍କୁ କହନ୍ତି ଶ୍ରୀଦେବ ନହୁଷ
ମୋହର ଚରିତ ଶୁଣ ଯେମନ୍ତ ଭବିଷ୍ୟ ।
ଚୈତ୍ର କୃଷ୍ଣ ଚତୁର୍ଦ୍ଦଶୀ ପୁଣି ଅର୍କବାର
ରେବତୀ ନକ୍ଷତ୍ର ଭୋଗ ଥିଲା ସେ ଦିନର ।
ବିଷ୍ଟି ନାମରେ କରଣ ଆୟୁଷ୍ମାନ ଯୋଗ
ଚନ୍ଦ୍ରଭାଗା ତୀର୍ଥେ ଧାତା କରେ ସନ୍ଧ୍ୟାଯୋଗ
ଅର୍କ ଦୁହିତାର ନାମ ଅଟେ ପଞ୍ଚକୀର୍ତ୍ତି
ଦୁରଦାନ୍ତ ଦଇତୁଣୀ ଅଟଇ ସେ ଅତି ।
କାମସେଣା ରୂପ ଧରି ତୀର୍ଥରେ ସେ ବସି
ମୋହିତ କରି ଜନଙ୍କୁ ପକାଏ ବିନାଶି ।
ଆକାଶ ତେଜି ଆସନ୍ତେ ଦିନେ ବେଦପତି
ପିତାମହଙ୍କୁ କୋଳରେ ଧଇଲା ତଡ଼ତି ।
ନିର୍ଜନସ୍ଥାନ ଦେଖିଣ ତହୁଁ ପଦ୍ମଯୋନି
ଅନେକ ମତରେ କ୍ରୀଡ଼ା କଲେ ତାକୁ ଘେନି ।
ଅସୁର ତୁଲରେ ଯହୁଁ ଘଟିଲା ଏମତି
ତହୁଁ ସେହି ଦଇତୁଣୀ ହେଲା ଗର୍ଭବତୀ
ଅମୋଘ ରେତ ପଡ଼ନ୍ତେ ତାର ଗର୍ଭଗତ
ସେହିକ୍ଷଣି ପୁତ୍ର ଏକ ହୋଇଲାକ ଜାତ ।
ତହୁଁ ଅର୍କତୀର୍ଥେ ବସି ସନ୍ଧ୍ୟାକରି ପିତା
ଆକାଶେ ଗମନ କଲେ ଜଗତ କରତା ।
ବ୍ରହ୍ମାବୀର୍ଯ୍ୟେ ରାକ୍ଷସୀର ମିଶିବାର ରଜ
ତହୁଁ ଜାତହେଲା ଏକ ପ୍ରତାପୀ ଦନୁଜ ।
ସେହି ସେ ପୁରୁଷ ବ୍ରହ୍ମରାକ୍ଷସ ହୋଇଲା
ବହୁଜୀବ ଜନ୍ତୁ ଗୋରୁ ବ୍ରାହ୍ମଣ ଭକ୍ଷିଲା ।
ସେ ପୁରୁଷ ଦେଲା ପୁଣି ଚନ୍ଦ୍ର ପ୍ରତି ଧାଡ଼ି
ଶରଦ ପୂର୍ଣ୍ଣିମାଦିନ ଆସେ ତାକୁ ବେଢ଼ି ।
କୁନ୍ଦ କାଠର ଉପରେ ଚନ୍ଦ୍ରକୁ ବସାଇ
ଦର୍ପଣ ପରାୟେ ନିଜ ମୁଖକୁ ଦେଖାଇ ।
ପଳାଇଲା ଚନ୍ଦ୍ର ବ୍ରହ୍ମରାକ୍ଷସର ଭୟେ
ଗୁହାରି କରିଲା ଯାଇ ଇନ୍ଦ୍ରଙ୍କର ଠାୟେ ।
ତ୍ରୈଲୋକ୍ୟର ନାଥ ଅଟୁ ତୁହି ସୁରେଶ୍ୱର
ମୁହିଁ ପଶୁଅଛି କ୍ଷୀର ସମୁଦ୍ର ଭିତର ।
ଇନ୍ଦ୍ର ବୋଇଲେ ଏଥକୁ ତୁହି ତ ନ ଭାଳ
ବ୍ରହ୍ମରାକ୍ଷସର ମୁହିଁ ପୂରାଇବି କାଳ ।
ଇନ୍ଦ୍ରର ବଚନ ଶୁଣି ତୋଷ ନିଶାପତି
ପୁଣି ଦୈତ୍ୟ ଧାଡ଼ିଦେଲା ଅମାବାସ୍ୟା ରାତି ।
ବ୍ରହ୍ମରାକ୍ଷସ ଭୟରେ ଚନ୍ଦ୍ର ଗୋପ୍ୟ ହେଲା
ଅମାବାସ୍ୟା ଦିନ କ୍ଷୀରସମୁଦ୍ରେ ପଶିଲା ।
ନ ପାଇଣ ବାହୁଡ଼ିଲା ସେ ବ୍ରହ୍ମରାକ୍ଷସ
ପ୍ରତିଦିନ ଜଗିଥାଏ କରି ପ୍ରତିଆଶ ।
ପୁଣି ଉଦୟ ହୋଇଲେ ତାକୁ ଦେବ ଧରି
ତେଣୁ ଅମ୍ବରେ ଲୁଚଇ ସଦା ଯାଇକରି ।
ଦ୍ୱିତୀୟା ଦିନ ନ ଯାଏ ସେ ବ୍ରହ୍ମରାକ୍ଷସ
ଚନ୍ଦ୍ର ଦେବତା ଉଦୟ ନୋହିଲା ଆକାଶ ।
ସେ ଦୁଷ୍ଟ ଅସୁର ତହୁଁ ବିଚାରଇ ମନ
ଉଦୟ ନ ହୋଇ ଚନ୍ଦ୍ର ହୋଇଲା ଗୋପନ ।
ଦ୍ୱିତୀୟାର ଦିନ ଚନ୍ଦ୍ର କହେ ବାସବକୁ
ନିତିପ୍ରତି ଧାଡ଼ିଦିଏ ସେ ଦୈତ୍ୟ ଆମ୍ଭଙ୍କୁ ।
ମଘବା ବୋଇଲେ ଆଜି ହୁଅ ତୁ ଉଦୟେ
ମାରିବି ସେ ରାକ୍ଷସକୁ ହୁଅ ତୁ ନିର୍ଭୟେ ।
ଏମନ୍ତେ ତୃତୀୟାଦିନ ଚନ୍ଦ୍ର ଉଦେହେଲା
ଦେଖିଣ ସେ ଦୁରାନ୍ତକ କୋପେ ଧାଡ଼ିଦେଲା ।
ଧାଡିକାରେ ଅସ୍ତଗତ ହେଲା ଶଶଧର
ପୁଣି ଉଦୟ ହୋଇଲା ଚଉଠି ଦିନର ।
ସିଂହମାସ କୃଷ୍ଣପକ୍ଷ ଚୌଠି ରାତ୍ରିକାଳ
ବ୍ରହ୍ମରାକ୍ଷସ ଚନ୍ଦ୍ରକୁ କରିଲା କଟାଳ ।
ଇନ୍ଦ୍ର ରହିଥିଲେ ଯାଇ ଚନ୍ଦ୍ର ପଛକତି
ବ୍ରହ୍ମଦୈତ୍ୟକୁ ମାଇଲେ ବଜ୍ରର ଶକତି ।
ଇନ୍ଦ୍ର ପ୍ରହାରିଲେ ନେଇ ଯେଉଁ ବଜ୍ରଶର
ସେହି ଶରେ ଛେଦିଦେଲେ ପକ୍ଷ ଗିରିବର ।
ଇନ୍ଦ୍ର ପ୍ରହାରେ ପଡ଼ିଲା ବ୍ରହ୍ମାଙ୍କର ପୁତା
ଦେବେ ହୁରି କଲେ ଇନ୍ଦ୍ର କଲେ ବ୍ରହ୍ମହତ୍ୟା ।
ଅରକିଲେ ବ୍ରହ୍ମହତ୍ୟା ଦୋଷେ ହେଲେ ଦୋଷୀ
ଅଙ୍ଗଜ୍ୱାଳାରେ ପଶିଣ ଯାଇଣ ସରସୀ ।
ନାନା ସରୋବରେ ଯାଇ ପଶି ଆଖଣ୍ଡଳ
ତଥାପି ଶରୀର ଜ୍ୱାଳା ନୋହିଲା ଶୀତଳ ।
ହେମ ସରରେ ପଶିଲେ ଯାଇ ସୁରପତି
ତଥାପି ଶରୀର ଜ୍ୱାଳା ନ ହୋଇଲା ଶାନ୍ତି ।
ନୀଳେନ୍ଦ୍ରୀ ସରୋବରରେ ପଡ଼ିଲେ ସେ ଝାସି
ଅଙ୍ଗଜ୍ୱାଳା ଦ୍ୱିଗୁଣରେ ତହୁଁ ହେଲା ଆସି ।
ପଦ୍ମବନର ଭିତରେ ହେମବନ୍ତ ଆଳେ
ତହିଁ ଯାଇଣ ପଶିଲେ ଦେବ ଆଖଣ୍ଡଳେ ।
ପୃଥ୍ୱୀଯାକ ନାଶଗଲା ଇନ୍ଦ୍ର ନ ଥିବାରୁ
ବ୍ରହ୍ମଦୈତ୍ୟ ହତ୍ୟାଦୋଷ ଅଟେ ମହାଗୁରୁ ।
ଅମର ନାଥ ଇନ୍ଦ୍ରଙ୍କ ସକଳ ଅଭାବେ
ଦିଗପାଳ ବିଚଳିତ ନ ଖଟିଲେ କେଉଁ ।
ଶସ୍ୟମାନେ ଉପଜାତ ନୋହିଲେ ମେଦିନୀ
ନାନା ଉତପାତମାନ ହେଲା ପୁରତିନି ।

ଦିଗପାଳମାନଙ୍କୁ ଯେ ଧାତା ସଙ୍ଗେ ଘେନି
ନହୁଷ ଭୁବନେ ବିଜେକଲେ ପଦ୍ମଯୋନି ।
ଦେଖିଣ ସାନନ୍ଦ ହେଲା ସୋମବଂଶ ରାଜା
ପିତାମହଙ୍କ ଚରଣେ କଲା ବହୁପୂଜା ।
ଧାତା ବୋଇଲେ ଏବେ ତୁ ଶୁଣରେ ନହୁଷ
ପୁରରବା ଇନ୍ଦ୍ର ହୋଇଥିଲେ ଯେ ଆକାଶ ।
ସେ ଇନ୍ଦ୍ର ଦେବତା ଏବେ ବ୍ରହ୍ମହତ୍ୟା ଦୋଷେ
ସହସ୍ରେ ବରଷ ହେଲା ନାହିଁ ସେ ଆକାଶେ ।
ଆକାଶରେ ଇନ୍ଦ୍ର ପଦେ ବସ ତୁ ସମୟେ
ଇନ୍ଦ୍ର ଦେବତାର ପାପ କ୍ଷୟ ଯିବା ଯାଏ ।
ତ୍ରୈଲୋକ୍ୟ ଧାରଣ ଅଟେ ତୋହର ଯେ ବଂଶ
ସୁବିଧାନେ ଯାଇ ଏବେ ଇନ୍ଦ୍ରପଦେ ବସ ।
ପିତାମହଙ୍କ ବଚନେ ସାନନ୍ଦ ନହୁଷ
ଦିଗପାଳମାନେ ଆସି ଖଟିଲେ ତା ପାଶ ।
ଐରାବତ ଚଢ଼ି ଇନ୍ଦ୍ର ହୋଇଲେ ନହୁଷ
ବୁଲି ବୁଲିଣ ଦେଖଇ ବାରସ୍ୱତୀ ଦେଶ ।
ଖଟିଲେ ଯେ ଅପସରା ବିଦ୍ୟାଧରୀମାନେ
ଦିଗପାଳେହେଁ ଖଟିଲେ ନହୁଷ ବଚନେ ।
ଆଜ୍ଞା କରିଲା ନହୁଷ ମେଘକୁ ହକାରି
ଆବର୍ତ୍ତ ସମ୍ବର୍ତ୍ତ ଦ୍ରୋଣ ପୁଷ୍କରାଦି ଚାରି ।
ସପତ ସାଗର ସହ ମହୀ ଦିଗଭାଗେ
ତୁମ୍ଭେମାନେ ସୁବିଧାନେ ପାଳ ଚାରିଦିଗେ ।
ରାତ୍ରିରେ କରିବ ବୃଷ୍ଟି ଦିନରେ ନିର୍ମଳ
ନିତି ବୃଷ୍ଟି କରିବ ଯେ ଯାଇ ମେରୁସ୍ଥଳ ।
ଧର୍ମମତେ ବର୍ଷା ଶୀତ ଆଉ ଖରାକାଳେ
ଅନାବୃଷ୍ଟି ନ କରିବ ଏ ମହୀମଣ୍ଡଳେ ।
ଗାଢ଼େ ନ ବର୍ଷ ନ କର କିବା ଅନାବୃଷ୍ଟି
ବହୁଜଳ ହେଲେ ନାଶ ହୋଇଯିବ ସୃଷ୍ଟି ।
ଗାଢ଼ କରିଣ ଯେ ଝଡ଼ି ବରଷା ନ କଲେ
ଇନ୍ଦ୍ରକୁ ଦୁଃଖ ମିଳିବ ନରେ ଦୁଃଖୀ ହେଲେ ।
ମର୍ତ୍ତ୍ୟମଣ୍ଡଳରେ ଯେବେ ନ କରନ୍ତି ଇଚ୍ଛା
ମାଗିଲେ ବରଷୁଥିବ ଯେ ଯାହାର ବାଞ୍ଛା ।
ବେଳ ଜାଣି ନ ବର୍ଷିଲେ ଇନ୍ଦ୍ର ଦେବେ ଗାଳି
ଯେମନ୍ତେ ଅଖ୍ୟାତି ମୋତେ ନୋହୁ ମହୀସ୍ଥଳୀ
ମେଘ ବୋଇଲେ ଶସ୍ୟାଦି ହୋଇବ ବହୁତ
ଧାତୁ ମାତୁର ବରଷା ବର୍ଷିବୁ ତେମନ୍ତ ।
ବନ୍ଧନ ବାନ୍ଧଣ ଯେହୁ ମାରୁଥିବେ ଧାନ
ଦୋଷ ନୋହିବ ଆମ୍ଭର ଶୁଣ ମଘବାନ ।
ମିଥୁନ କକଡ଼ା ସିଂହ ଏହି ତିନିମାସ
ଯତନେ ପାଳିବ ବୋଲି ବୋଇଲେ ନହୁଷ ।
ଶିଶିର ଋତେ କରିବ କାକରର ବୃଷ୍ଟି
ଏମନ୍ତ ବୃଷ୍ଟି କରିଲେ ପୀଡ଼ା ନୁହେଁ ସୃଷ୍ଟି ।
ସିଂହ ଏକପକ୍ଷ ଆଉ କନ୍ୟା ଏକମାସେ
ତୁଳରୁ ପକ୍ଷେ ଏମନ୍ତ ଷାଠିଏ ଦିବସେ ।
ଶରତ ଋତୁରେ ବରଷିବ ଯେତେବେଳେ ।
ଶରୀର ପଲ୍ଲବ ହେବ ଜାଣ ତେତେବେଳେ
ତୁଳପକ୍ଷେ ବିଛାମାସେ ପୁଣି ଧନୁପକ୍ଷେ
ଏଥେ ବରଷିବ ବେଳ ଦୁଇ ଯେ ପ୍ରତ୍ୟକ୍ଷେ ।
କୁମ୍ଭପକ୍ଷେ ମୀନମାସେ ମେଷର ପକ୍ଷେକ
ଏ ସବୁଦିନେ ବର୍ଷିବ ଜାଣିଥା ବେଳକ ।
ମେଷପକ୍ଷେ ବୃଷମାସେ ମିଥୁନର ପକ୍ଷେ
ଏଥେ ବରଷିବ ତିନିବେଳ ଯେ ପ୍ରତ୍ୟକ୍ଷେ ।
ବରଷା ଶରତ ହେମ ବସନ୍ତ ଗ୍ରୀଷମ
ଷଡ଼ଋତୁ ଯେ ଯାହାର କରିବ ଉଦ୍ୟମ ।
ଯେଉଁରୂପେ ଶସ୍ୟୋଦୟେ ଜନେ ହେବେ ସୁସ୍ଥି
ଶସ୍ୟହାନି ନ କରିବ ତୁମ୍ଭେମାନେ ପୃଥ୍ୱୀ ।
ଯେହୁ ହେମନ୍ତ ଋତୁରେ ମେଘ ନ ପାଳିବ
ଅବଶ୍ୟ ଦଣ୍ଡରେ ସେହୁ କଷ୍ଟ ତୁଳ ହେବ ।
ଦୁର୍ଭିକ୍ଷ ନୋହିବ କଷ୍ଟ ନ ପାଇବେ ଜୀବେ
ବୋଲିବେ ନହୁଷ ରାଜା କିପାଇଁ ତ୍ରିଦେବେ ।
ଜଳବିନା ଦୁର୍ଭିକ୍ଷ ଯେ ହୋଇଲେ ଜଗତେ
ବୋଲିବେ ନହୁଷ ଇନ୍ଦ୍ର ହୋଇଲା କେମନ୍ତେ ।
ନହୁଷ କହିଲେ ଯହୁଁ ଏମନ୍ତ ବିଧାନେ
ଯତନ କରି ପାଳିଲେ ତହୁଁ ମେଘମାନେ ।
ପୁଣିହିଁ ଆଜ୍ଞା କରିଲେ ବିଦ୍ୟାଧର ରାଇ
ଯେ ଯାହାର ନୃତ୍ୟକର ତୁମ୍ଭେମାନେ ଥାଇ ।
ଅନୀତି କର୍ମ କଦାଚ ନୋହିବ ସଂସାରେ
ନହୁଷ କୀର୍ତ୍ତି ରହିବ ସକଳ କାଳରେ ।
ପୁଣିହିଁ ନହୁଷରାଜା ମନରେ ବିଚାରି
ଅସ୍ତୁକାର ପୁରୁଷଙ୍କୁ କହିଲେ ହକାରି ।
ଅଷ୍ଟୋତ୍ତର ଶତଭାଗ କରାଇବ କୃଷି
ରାଜା ନେବେ ଆଠଭାଗ ପ୍ରଜାନେବେ ଅଶୀ ।
ଦୁହିଙ୍କ ଭାଗରୁ ବିଂଶଭାଗେ ଯେ ରଖିବ
ସେ ଭାଗକୁ ନେଇ କ୍ଷେତ୍ରେ ବିହନ ବୁଣିବ ।
ରାଜାଙ୍କୁ ଏ ଭାବେ ଦେଇ ନ ପାରିଲେ ପ୍ରଜା
ଶଏମାଣେ ଏକଚିନା ସୁନା ଦେଉ ସଞ୍ଜା ।
ବିଦ୍ୟାଧରଙ୍କୁ ନହୁଷ ଏହି ଆଜ୍ଞାଦେଲେ
ତାହାଙ୍କର ଆଜ୍ଞା କେହି ଲଙ୍ଘି ନ ପାରିଲେ ।
ଏହି ରୂପରେ ବରଷା କଲେ ସର୍ବରାଜ୍ୟ
ସର୍ବ ଲୋକଙ୍କର ହେଲା ବହୁତ ଐଶ୍ୱର୍ଯ୍ୟ ।

ଦୈତ୍ୟ ଦାନବଙ୍କୁ ମାରି ନ ଥୋଇଲେ ବନେ
ସୁଖେ ତପସ୍ୟା କରିଲେ ତପୋନିଧିମାନେ ।
ଦୈତ୍ୟଙ୍କର ଭୟ ଆଉ ନୋହିଲେ ଆକାଶେ
ନିଶ୍ଚିନ୍ତେ ବିହାର କଲେ ଅମରେ ତ୍ରିଦଶେ ।
ଋଷିମାନେ ଯାଗଯଜ୍ଞ କଲେ ଅତି ଦୁଃଖେ
ସୁଖେ ହବିର୍ଭାଗ ପାନ୍ତି ତହୁଁ ଦେବଲୋକେ ।
ପ୍ରଜାମାନେ ସୁଖୀ ଲକ୍ଷ୍ମୀ ଘରେ ଘରେ ବିଜେ
ବାରସ୍ୱତୀ ପୁର ପ୍ରାୟ ଦିଶେ ସର୍ବରାଜ୍ୟେ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଚାରିଜାତି
ଧବଳ ପୁରୀରେ ଥାନ୍ତି ଯେହ୍ନେ ବାରସ୍ୱତୀ ।
ପାଚେରୀ ଅଟ୍ଟାଳି ସବୁ ରହିଅଛି ପୂରି
ଏକ ଏକ ଜଗତୀ ଯେ ଅଛି ସବୁଙ୍କରି ।
ଅଷ୍ଟରତନ କଳଶ ସବୁଙ୍କ ପିଢ଼ାରେ
ନେତର ପତାକା ଉଡ଼େ ତହିଁ ଫରହରେ ।
ଏମନ୍ତେ ନହୁଷ କଲେ ଅମରରେ ରାଜ୍ୟ
ପର୍ଶୁରାମଙ୍କ ସମାନେ ଅଟେ ତାଙ୍କ ତେଜ ।
ସତର ଲକ୍ଷ ଅଠାଶୀ ସହସ୍ର ବରଷ
ଏତେକାଳେ ଇନ୍ଦ୍ର ପଦେ ବସିଲେ ନହୁଷ ।
ଅମରେ ଉତ୍ସବ ଶୁକ୍ଳ ତୃତୀୟାର ଦିନ
ବିଜେ କଲେ ମଘବାନ ଅମର ଆସନ ।
ନାରଦ ବିଜେ କରିଲେ ଇନ୍ଦ୍ର ସନ୍ନିଧାନେ
ସା ରି ଗା ମା ପା ଧା ନି ସା ବୀଣା ତାନମାନେ
ନୃତ୍ୟ ନାୟକ ଅଟନ୍ତି ବ୍ରହ୍ମାଙ୍କ କୁମର
ଦେଖି ପ୍ରଣିପାତ ହେଲେ ସର୍ବ ବିଦ୍ୟାଧର ।
ନହୁଷ ବୋଇଲେ ତୁମ୍ଭେ ଶୁଣ ବ୍ରହ୍ମଯତି
ଭଲ ନୃତ୍ୟକର ଭରା ହରଷରେ ମାତି ।
ନାରଦ ବୋଇଲେ ଆମ୍ଭ ବୀଣା ନୃତ୍ୟସାର
ଆମ୍ଭେ ବା କରିବୁ ନୃତ୍ୟ କାହାର ଛାମୁର ।
ନହୁଷ ବୋଇଲା ମୁହିଁ ଅମରାଧିପତି
ମୋ ଆଗେ କରିବେ ନୃତ୍ୟ ହେବି ମୁହିଁ ତୃପ୍ତି ।
ମୁହିଁ ଅବା କିସ ତୋତେ ନ ପାରିବି ଦେଇ
ମୋହ ଆଗେ ନୃତ୍ୟ ତୋର କେହ୍ନେ ନ ଯୋଗାଇ
ନାରଦ ବୋଇଲେ ତୁହି କିସ ଦେବୁ ରାଜା
ଶଚୀଥିଲେ ଆମ୍ଭେ ସିନା କରନ୍ତୁ ତୋ ପୂଜା ।
ରାଜଇନ୍ଦ୍ର ପଦେ ସେହୁ ଅଟଇ ତୋହର
ଦେବଇନ୍ଦ୍ର ପଦେ ତୋତେ ନ ଶୋଭେ ଅମର ।
ଯେବେ ଶଚୀ ନାହିଁ ଦେବ ଇନ୍ଦ୍ରପଦ କାହିଁ
ପାରୁ ତେବେ ଇନ୍ଦ୍ର ଶଚୀ ଆଣ ତୁହି ଯାଇ ।
ଯେବେ ନାଥ ଶଚୀ ଆଣିପାରୁ ତୋର କୋଳେ
ନିଶ୍ଚୟ ଅମର ହେବୁ ତୁହି ଆଖଣ୍ଡଳେ ।
ଚୌଷଠି ନାୟିକା ତୁହି ସ୍ୱର୍ଗପୁରେ ଦେଖ
ଯାଙ୍କ ଆଶ୍ରାରେ ବର୍ତ୍ତନ୍ତି ଜାଣ ସର୍ବଲୋକ ।
ସାବିତ୍ରୀ ଦେବୀ ଅଟନ୍ତି ବ୍ରହ୍ମାଙ୍କ ଭାରିଯା
ଈଶ୍ୱର ପତ୍ନୀ ଅଟନ୍ତି ଶ୍ରୀଦେବୀ ଗିରିଜା ।
ବୃହସ୍ପତିଙ୍କର ତାରା ଅଗ୍ନି ସ୍ୱାହା ସ୍ୱଧା
ଆଦିତ୍ୟର ଛାୟା ଧର୍ମେ ମେଧା ଯେ ସୁମେଧା
କଶ୍ୟପାଦିତ୍ୟ ବଶିଷ୍ଠ ଭାର୍ଯ୍ୟା ଅରୁନ୍ଧତୀ
ଯମର କାଳୀ କରାଳୀ ଅଟେ ପ୍ରିୟବତୀ ।
ଅଳକା ନାଥର ଭାର୍ଯ୍ୟା ନାମ ହାରାବତୀ
ଚନ୍ଦ୍ରର ରୋହିଣୀ ବିଷ୍ଣୁଙ୍କର ସରସ୍ୱତୀ ।
ଦଇବତର ଭାରିଯା ଧାତ୍ରୀ ଗୁଣବତୀ
ବରୁଣର ପ୍ରିୟତମ ଅଟେ ନୀଳାବତୀ ।
ପ୍ରଭଞ୍ଜନର ଅଞ୍ଜନା ଭୃଗୁର ସୌନକା
ଶୁକ୍ରର ଚଞ୍ଚଳା ପୁଣି ବୃତ୍ତକା ଅମ୍ବିକା ।
ହେମବନ୍ତର ଭାରିଯା ଅଟଇ ଶରଳା
ମେଘର ଭାର୍ଯ୍ୟା ନିବୃତ୍ତ ଆବର ପିଙ୍ଗଳା ।
ବସୁଧାର ସୁମତୀ ଯେ ଆବର ଅଙ୍ଗିରୀ
ବିଭୀଷଣର ଭାରିଯା ନାମ ମନ୍ଦୋଦରୀ ।
ଏହି ଚୌଷଠୀ ଅପର୍ଣ୍ଣା ଯେଣୁ ଆଦିନାରୀ
ଚଉଷଠି ଦେବତାଙ୍କୁ ବରପଣେ ବରି ।
ଏହାଙ୍କର ଭର୍ତ୍ତା ମୃତ୍ୟୁହ୍ନନ୍ତି ଯେତେବେଳେ
ଧରି ବସନ୍ତି ଅମ୍ଳାନ ବଟ ବୃକ୍ଷ ତଳେ ।
ଆପଣାର ଆୟୁ ଦେଇ ସ୍ୱାମୀକି ବଞ୍ଚାନ୍ତି
ତେଣୁକରି ସେମାନେ ଯେ କଳ୍ପଭୋଗୀ ହ୍ନନ୍ତି ।
ବୃଥା ନାଶଯାନ୍ତି କଳ୍ପୀ ଅଟନ୍ତି ଯେ ସେହି
ଶଚୀ ଯେବେ ନାହିଁ ଦେବ ତୋତେ ନ ଶୋଭଇ
ନିମନ୍ତଇ ତୋତେ କି କାରଣେ ଇନ୍ଦ୍ରପଦେ
ସ୍ୱର୍ଗେ ନ ଶୋଭଇ ତୋର ଶଚୀ ଆଣ ହାଦେ ।
ନାରଦ ବଚନ ଶୁଣି ନହୁଷ ନୃପତି
ବହୁ ଉପହାର ଘେନି ବିଜେ ଶଚୀପତି ।
ନହୁଷ ବୋଲେ ତୁ ସ୍ୱର୍ଗ ପାଟରାଣୀ ଅଟୁ
ମୁହିଁ ଅଟେ ଇନ୍ଦ୍ର ମୋତେ କିପାଇଁ ନ ଖଟୁ ।
ଏ କନକ ହାନ୍ଦୋଳାରେ ବସିକରି ସତୀ
ବାରସ୍ୱତୀ ପୁରେ ବିଜେ କର ଶୀଘ୍ରଗତି ।
ନହୁଷ ଇନ୍ଦ୍ର ବଚନେ ବୋଲନ୍ତି ଅପର୍ଣ୍ଣା
ଅମର ଭୁବନେ ତୋର ଅଧିକାର ସିନା ।
ନହୁଷ ବୋଲେ ମୁଁ ଅଟେ ଅମରାଧିକାରୀ
ତୁହି ଦେବୀ ଅଭିଳାଷୀ ନୋହୁଛୁ ମୋହରି
ଶଚୀ ବୋଇଲେ ତୁ ସିନା ଅଟୁ ଦେବରାଜା
ଇନ୍ଦ୍ରକୁ ପଚାରି ଆସେ ତୁ ବାହୁଡ଼ି ଯା ଯା ।

ବାହୁଡ଼ି ନହୁଷ ଯାଏ ଆପଣା ସ୍ଥାନରେ
ପୁଷ୍ପକରେ ଶଚୀଦେବୀ ଚଳଇ ବେଗରେ ।
ନଦୀ ସରୋବର ପଦ୍ମ ନାଡ଼ର ଭିତରେ
ଇନ୍ଦ୍ର ଦେବତା ଦେଖିଲା ଧାୟି ହୃଦୟରେ ।
ସେହି ପଦ୍ମନାଡ଼ ମଧ୍ୟେ ଦେବୀ ଗଲେ ପଶି
ଦେଖି ବାସବ ଦେବତା କ୍ରୋଡ଼େ ମହାନାଶି ।
ଶଚୀ ବୋଇଲେ ହେ ତୁମ୍ଭେ ଶୁଣ ପୁରନ୍ଦର
ନହୁଷ ମୋତେ ମହିଷୀ କରିବେ ସ୍ୱର୍ଗର ।
ଇନ୍ଦ୍ର ବୋଇଲେ ତୋହର ଯେଉଁପରି ଇଚ୍ଛା
ମୁହିଁ ମହା ଦୁଃଖୀ ତୋତେ ତୁହି କର ରକ୍ଷା ।
ଅନାଦି ଅପର୍ଣ୍ଣା ତୁହି ଜାଣୁ ସର୍ବ ବିଧି
ସତୀ ଧାର୍ମିକା ତୁ ଅଟୁ କରୁ ସର୍ବସିଦ୍ଧି ।
ତୋର ବୁଦ୍ଧିବଳେ ରକ୍ଷା ହୁଅ ତୁ ସୁନ୍ଦରୀ
ସମୟ ଜାଣି କିଛିହିଁ ବିରୋଧ ନ କରି ।
ମୋହର ମୁଖ ଚାହିଁଲେ ହେବ ବଡ଼ ଦୋଷ
ଶୁଣି ଗଲେ ମାହେଶ୍ୱରୀ ହୋଇଣ ନିରାଶ ।
ବାରସ୍ୱତୀ ଭୁବନରେ ବିଜେ ମାହେଶ୍ୱରୀ
ନବଦିନ ଅନ୍ତେ ଆସେ ନହୁଷ ବିଚାରି ।
ବୋଇଲା ନହୁଷ ତୁହି ଆସ ଆଗୋ ସତୀ
ତୁ ମୋର ଅଙ୍ଗେ ବସିଲେ ତୁଟିଯିବ ଭ୍ରାନ୍ତି ।
ଶଚୀ ବୋଇଲେ ନହୁଷ ମୋତେ ଯେବେ ନେବୁ
ମୋହବାକ୍ୟ ଅନୁସାରେ ବ୍ରତ କରିଥିବୁ ।
ମୁହିଁ ଯଦ୍ୟପି ତୋହର ହୋଇବି ଭାବିନୀ
ସମସ୍ତ ଦେବ ଭୁବନେ ବୁଲ ମୋତେ ଘେନି ।
ବ୍ରହ୍ମଋଷିଏ ବହିବେ ବିମାନ ମୋହର
ତେବେ ତୋର ପତ୍ନୀ ବୋଲି ଜାଣିବେ ଅମର
ଅର୍ଘ୍ୟ ଦେଇ ଦେବସ୍ତିରୀ ଦେବେ ହୁଳହୁଳି
ସର୍ବ ଭୁବନକୁ ଯିବୁ ଇଚ୍ଛା ଖେଳାଖେଳି ।
ନହୁଷ ବୋଇଲା ତୋର ଯେଉଁ ରୂପେ ଚିତ୍ତ
ସେ ସକଳ କଥା ମୁହି କରିବି ନିଶ୍ଚିତ ।
ତହୁଁ ନହୁଷ ସକଳ ଦେବ ରୁଣ୍ଡକରି
ବୋଲେ ବ୍ରହ୍ମା କଲେ ମୋତେ ସ୍ୱର୍ଗେ ଅଧିକାରୀ ।
ଶଚୀ ବିଜେ ହେବେ ତୁମ୍ଭମାନଙ୍କ ପ୍ରସନ୍ନେ
ତେବେ ରାଜା ହେବି ମୁହିଁ ଚଉଦ ଭୁବନେ ।
ଦିଗପାଳ ବୋଇଲେ ଯେ ଆମ୍ଭ ସତ୍ୟ ସତ୍ୟ
ତୋ ବଚନ ଅଟେ ଆମ୍ଭମାନଙ୍କର ମତ ।
ନହୁଷ ବୋଇଲେ ତୁମ୍ଭେ ବ୍ରହ୍ମା ଯେ ଦେବତା
ତୁ ବସ୍ତ୍ର ଗୋଟିଏ ଘେନି ଆଗେ ଥିବୁ ଧାତା ।
ନହୁଷ ବୋଇଲା ଶିବ ଧରିଥିବେ ଛତି
ପବନ ଚାମ୍ବର ଧରି ଢ଼ାଳିବ ମୋ କତି ।

ବୃହସ୍ପତି ସପତାଙ୍ଗ ଯୋଗେ ଲଗ୍ନ କରି
କୁବେର ଅଭିଷେକର ଦ୍ରବ୍ୟ ଥିବେ ଧରି ।
ଯମରାଜା ଧରିଥିବେ ଆଲଟ ଗୋଟାଏ
ସନ୍ନିଧିରେ ଖଟିଥିବେ ସର୍ବ ଦେବତାଏ ।
ନହୁଷ ବଚନେ ଦେବେ କଲେ ସନମତ
ରାଜା ପ୍ରୀତ୍ୟର୍ଥରେ ଦେବେ ଖଟିଲେ ସମସ୍ତ ।
ଏମନ୍ତ ଆଜ୍ଞା ନହୁଷ ନରପତି ଦେଲେ
ଉତ୍ସବର କାଳେ ସେହୁ ସର୍ବେ ଖଟିଥିଲେ ।
ନହୁଷ ଶଚୀକି ଘେନି ବିଜେ ହାନ୍ଦୋଳାରେ
ସନ୍ନିଧିରେ ଦେବତାଏ ଖଟିଲେ ପ୍ରୀତିରେ ।
ଅନେକ ରତ୍ନାଳଙ୍କାର ଆଭରଣ ହୋଇ
ଋଷିମାନଙ୍କୁ ଆଣିଲା ନହୁଷ ଧରାଇ ।
ବୋଲେ ନହୁଷ ବିନୟ ଭକ୍ତିଭାବ ବହି
ଶଚୀ ଘେନି ଅଭିଷେକ ହୋଇବି ଯେ ମୁହିଁ ।
ତୁମ୍ଭେମାନେ ହାନ୍ଦୋଳାକୁ ବହିବ ମୋହର
ଶଚୀକି ମୁଁ ଘେନିଯିବି ହାନ୍ଦୋଳା ଭିତର ।
ଋଷିଏ ବୋଇଲେ ଅଟୁ ତୁହି ଦେବରାଜା
ତୋ ହାନ୍ଦୋଳା ବହିବାକୁ ଆମ୍ଭର କି ଲଜ୍ଜା ।
ସମସ୍ତେହେଁ ବର୍ତ୍ତୁଅଛୁ ତୋର ବାହୁବଳେ
ତୋ ବଚନ ଭାଙ୍ଗିବୁ କି ଆଜ୍ଞୁ ଏତେବେଳେ ।
ବହିବୁ ହାନ୍ଦୋଳା ତୋର ଆମ୍ଭର ଏ ବ୍ରତ
ଆମ୍ଭ ଦୁଃଖେ ତୁହି ଯେବେ ହୋଇବୁ ପୂଜିତ ।
ଆମ୍ଭେ ବିମାନ ବହିଣ ହେବୁ ଅବା ଦୁଃଖୀ
ଏତେକରେ ତୁହି ଯେବେ ହେବୁ ସର୍ବସୁଖୀ ।
ଏତେ ବୋଲି ଋଷିମାନେ ହାନ୍ଦୋଳା ବହିଲେ
ଶଚୀକି କୋଳରେ ଧରି ରାଜା ବିଜେକଲେ ।
ବିଧାତା କରେ ଧଇଲେ କନକର ଦଣ୍ଡ
କୁବେର ଧରେ ଯୋଗାଡ଼ ଈଶ୍ୱର ଉଦଣ୍ଡ ।
ପବନ ଦେବତା ଧରି ଅଛନ୍ତି ଚାମର
ଗନ୍ତାଲାଗି କରାବନ୍ତି ଦେବ ବୈଶ୍ୱାନର ।
ଶ୍ରୀକରରେ ବୀଣା ଧରି ନାରଦ ଦେବର୍ଷି
ବୃହସ୍ପତି ତାଳ ଧରି ନୃତ୍ୟରଙ୍ଗେ ପଶି ।
ଭୃଗୁ ମର୍ଦ୍ଦଳ ସନକ ଧଇଲେ କଂସାଳ
ଭୃତ୍ୟପଣରେ ଖଟିଲେ ସର୍ବ ଦିଗପାଳ ।
ଚୌରାଶୀ କୋଟି ଅମର ବିଳାସୀ ରମଣୀ
ବହୁ ଆଡ଼ମ୍ବରେ କରୁଅଛନ୍ତି ଖଟଣି ।
ଦିବ୍ୟ ବିଭୂଷିତ ହୋଇ ନହୁଷ ନୃପତି
ଶଚୀକୁ କୋଳରେ ଧରି ଆକାଶେ ଭ୍ରମନ୍ତି
ପ୍ରଥମରେ କାନ୍ଧକଲେ ବଶିଷ୍ଠ ପୌଲସ୍ତ୍ୟ
ସେହୁ ବହିନେଲେ ଧ୍ରୁବମଣ୍ଡଳ ପର୍ଯ୍ୟନ୍ତ ।

ତାଙ୍କ ଉତାରୁ ଦୁର୍ବାସା ଆଉ ମାରକଣ୍ଡ
ସେହୁ ବହିନେଲେ ଯହୁଁ ଦକ୍ଷର ବ୍ରହ୍ମାଣ୍ଡ ।
ତଦନ୍ତରେ ବାଲମୀକ ଆଉ ବିଶ୍ୱାମିତ୍ର
ସେହି ବହିନେଲେ ଇନ୍ଦ୍ର ଭୁବନ ପର୍ଯ୍ୟନ୍ତ ।
ଶ୍ରମେ ଋଷିଙ୍କ ନିଃଶ୍ୱାସ ବହେ ଖରତର
ବେଳୁବେଳ ଶଚୀଦେବୀ ହେଲେ ମହାଭାର ।
ବିଶ୍ରବା ବାଲମୀକ ଯେ ଖଣ୍ଡେଦୂର ବୋହି
ଫାଟିଯାଇ ଡରେ କାନ୍ଧ ନ କାଢ଼ନ୍ତି କେହି ।
ବଶିଷ୍ଠ ବୋଇଲେ ଦେବ ଆମ୍ଭ ବୋଲକର
ବିମାନୁ ଉତରି ଚଉଦୋଳେ ବିଜେକର ।
ଋଷିଙ୍କ ବଚନେ ଚଉଦୋଳେ ବିଜେକରି
ଶଚୀକୁ ସଙ୍ଗରେ ଧରି ବିଜେ ବଜ୍ରଧାରୀ ।
ସମସ୍ତ ଅପର୍ଣ୍ଣାମାନେ ଅର୍ଘ୍ୟାଦି ବନ୍ଦାଇ
କରେ ଦୀପାବଳି ଧରି ଅଛନ୍ତି ଗୋଡ଼ାଇ ।
ଅନେକ ରତ୍ନାଳଙ୍କାରେ ବନ୍ଦାଇଲେ ନାରୀ
ବେଳୁ ବେଳ ଚଉଦୋଳ ହେଲା ମହାଭାରୀ ।
ବହୁ ଆୟାସେ ବହିଲେ ତାହା ଋଷିମାନେ
ବିଜୟ ନହୁଷ ଯାଇ ବ୍ରହ୍ମାଙ୍କ ଭୁବନେ ।
ବ୍ରହ୍ମାଙ୍କ ଭୁବନେ ତହୁଁ ଅର୍ଘ୍ୟମାନ ପାଇ
ଚାଲୁ ଚଉଦୋଳ ତପୀ ନ ପାରିଲେ ବହି ।
ଋଷି ବୋଇଲେ ଚୌଦୋଳ ହେଲା ମହାଭାର
ଥୋକେ ଦୂର ପଲ୍ୟଙ୍କରେ ରାଜା ବିଜେ କର ।
ଶୁଣିଣ ପଲ୍ୟଙ୍କେ ବିଜେ କରିଲେ ନହୁଷ
ବହିନେଲେ ଶୁକଦେବ ମୁନି ଯେ ପରାଶ ।
ଅଳକା ଭୁବନେ ସର୍ବେ ପ୍ରବେଶିଲେ ଯାଇ
ବହୁ ରତ୍ନେ ହାରାବତୀ ବନ୍ଦାଇଲେ ନେଇ ।
ତହୁଁ କୈଳାସ ଭୁବନେ ଯାଉଛନ୍ତି ଚଳି
ଉତଙ୍ଗ ଅଷ୍ଟବକ୍ର ଏ ଦୁହିଙ୍କର ପାଳି ।
ଚଳନ୍ତେ ଅଷ୍ଟବକ୍ର ଯେ ପଡ଼େ ମୁହଁମାଡ଼ି
ବହଇ ଶୋଣିତ ତାର ଆଣ୍ଠୁ ଗଣ୍ଠି ଛିଡ଼ି ।
ସମ୍ଭାଳ ସମ୍ଭାଳ ବୋଲି ପାତିଲେ ସେ ହସ୍ତ
ତାଙ୍କେକ ପିଟେ ନହୁଷ ହୋଇ କୋପଚିତ୍ତ ।
ଶ୍ରମରେ ମହାତ୍ମା ବାକ୍ୟ ନ ପାରନ୍ତି କହି
ସର୍ପ ସର୍ପ ବୋଲି ଋଷି ବିକଳେ କହଇ ।
କଷ୍ଟରେ ଋଷି ବୋଇଲେ ହୋଇ ଅତି କୋପ
ନହୁଷ ନୃପତି ତୁହି ବନେ ହୁଅ ସର୍ପ ।
ଋଷିମାନଙ୍କୁ ପୁଚ୍ଛିଲେ ବହୁତ ବିନୟେ
କେମନ୍ତେ ମୁକତ ହେବି ହେ ବ୍ରହ୍ମଋଷିଏ ।
ଅଷ୍ଟବକ୍ର ବୋଇଲେ ତୁ ଶୁଣ ନୃପବର
ସତ୍ୟ ତ୍ରେତା ଅନ୍ତେ ତୁହି ଦ୍ୱାପର ମଧର ।
ଦ୍ୱାପରେ ବନବାସକୁ ଯୁଧିଷ୍ଠି ଆସିବେ
ତାହାଙ୍କ ଦର୍ଶନେ ମୁକ୍ତି ହୋଇବୁ ତୁ ତେବେ ।
ତହୁଁ ଆକାଶ ତେଜି ମୁଁ ପଡ଼ିଲି ବନସ୍ତେ
ଗଣ୍ଡୁକୀର ନଦୀତୀରେ ହିରଣ୍ୟ ପର୍ବତେ ।
ସେହିଦିନୁ ସର୍ପ ହୋଇଥିଲି ରେ ଯୁଧିଷ୍ଠି
ତୁହି ମୋହର ବଂଶର ଅଟୁ ପୁତ୍ରଗୋଟି ।
ସତ୍ୟ ତ୍ରେତା ଗଲା ଏହି ଦ୍ୱାପରର ଯୁଗେ
ତୋ ଦର୍ଶନେ ନିଜ କାୟା ପାଇଲି ମୁଁ ଯୋଗେ ।
ଏହିରୂପେ ଯୁଧିଷ୍ଠିଙ୍କୁ କହିଣ ନହୁଷ
ପାଇଲା ପରମ ଗତି ହେଲା ସ୍ୱର୍ଗବାସ ।
ନକ୍ଷତ୍ର ହୋଇଣ ଉଦେ ହୋଇଲେ ଆକାଶେ
ପରମ ସୁଖେ ରହିଲା ଅତ୍ୟନ୍ତ ହରଷେ ।
ମନୁ ମହାତ୍ମାଙ୍କୁ ପୁଚ୍ଛାକଲେ ଚଇତନ
ନହୁଷ ଅନ୍ତେ କି କଲେ ସେ ଅମରଗଣ ।
ଆକାଶରେ ଇନ୍ଦ୍ରପଦେ ବସିଲାକ କେହୁ
ନହୁଷ ସର୍ପ ହୋଇଲା ଅଷ୍ଟବକ୍ର କହୁ ।
ଶୁଣ ବୈବସ୍ୱତ ମନୁରାୟ ଆଗେ କହି
ବ୍ରହ୍ମଦୈତ୍ୟ ମାରି ଇନ୍ଦ୍ର ଥିଲା ଗୋପ୍ୟ ହୋଇ ।
ଆହେ ଚଇତନ ଇନ୍ଦ୍ର ପଦ୍ମସରେ ଥିଲେ
ତାଙ୍କ ତହିଁକି ଦେବତା ସକଳେ ଗମିଲେ ।
ଇନ୍ଦ୍ରଙ୍କୁ ଦେବତାମାନେ ଯାଇ କଲେ ପୁଚ୍ଛା
ଆପେ ଦୋଷୀହେଲୁ ତୁହି ଧର୍ମ କରି ରକ୍ଷା ।
ଇନ୍ଦ୍ର ବୋଲେ ଚନ୍ଦ୍ରେ ବ୍ରହ୍ମଦୈତ୍ୟ ଗିଳିଥିଲା
ସେ ଚନ୍ଦ୍ର ଆସି ମୋ ଆଗେ ଗୁହାରି କରିଲା ।
ଚନ୍ଦ୍ର ଦେବତା ବଚନେ ମାରେ ରାକ୍ଷସକୁ
ଅସ୍ତୁକାର ଅପଖ୍ୟାତି କରିଲେ ଆମ୍ଭଙ୍କୁ ।
ବିଧାତା ବୋଇଲେ ତୋତେ ବୃଥା ଦେଲେ ଦଣ୍ଡ
ଦୁଷ୍ଟ ଦାନବଙ୍କୁ ସଦା କରି ଖଣ୍ଡ ଖଣ୍ଡ ।
ମାର ତୁ ସଂସାରେ ଥିବେ ଯେ ଦୁଷ୍ଟ ରାକ୍ଷସ
ପୁଣିହିଁ ପିତା ବୋଇଲେ ତୋର ନାହିଁ ଦୋଷ ।
ଚନ୍ଦ୍ରର ବଚନେ ସିନା ନାଶିଲୁ ଦଇତ
ସେହି ହତ୍ୟାଦୋଷ ଲାଗୁ ଚନ୍ଦ୍ରକୁ ତୁରିତ ।
ଇନ୍ଦ୍ର ଦେବତାର ହତ୍ୟା ମୋଚନ କରିଲେ
ଅମର ସ୍ୱର୍ଗଭୁବନେ ଆଣି ବସାଇଲେ ।
ସେଦିନୁ ଚନ୍ଦ୍ର ଦେବତା ହେଲେ ମହାଦୋଷୀ
ତହୁଁ ଚନ୍ଦ୍ର ମନଦୁଃଖେ ପ୍ରଭାସରେ ପଶି ।
ଚନ୍ଦ୍ର ଦେବତାର ତହୁଁ ଝରେ ମହାରସ
ତେଣୁ ଉପଜାତ ହୁଏ ନାନାଜାତି ଶସ୍ୟ ।
ଚନ୍ଦ୍ର ନଷ୍ଟ ହୋଇଯାଏ ଅମାବାସ୍ୟା ଦିନ
ତାହା ଘେନି ଅନ୍ଧକାର ହୁଏ ରାତ୍ରମାନ ।

ଅମାବାସ୍ୟା ଦିନ ଝଡ଼ିପଡ଼େ ଯେଉଁ ବୀର୍ଯ୍ୟ
ସେହି ଅମାବାସ୍ୟାରେ ଯେ ଉପୁଜେ ଆତ୍ମଜ ।
ଶୁଣ ଚଇତନ ଚନ୍ଦ୍ର ଦେବତା ନ ଥିଲେ
କାମଭ୍ରଷ୍ଟ ହୋଇ ଶସ୍ୟ ନ ଉପୁଜେ ଭଲେ ।
ଚନ୍ଦ୍ର ବିହୁନେ ଅନେକ ଶସ୍ୟ ଗଲା ନାଶ
ଚନ୍ଦ୍ର ନ ଥିବାରୁ ଶୋଭା ନୋହିଲା ଆକାଶ ।
ଚନ୍ଦ୍ର ନିକଟକୁ ଗଲେ୍ ସର୍ବ ଦିଗପାଳେ
ଦେଖିଲେ ଚନ୍ଦ୍ର ରହିଛି ପ୍ରଭାସର ଜଳେ ।
ପ୍ରଭାସର ଜଳେ ଯାଇଁ ଚନ୍ଦ୍ରକୁ ଭେଟିଲେ
ସକଳ ଦେବତା ତହୁଁ ବିନୟେ କହିଲେ ।
ବୋଇଲେ ଚନ୍ଦ୍ର କିପାଇଁ ହୋଇଲୁ ଅଦୃଶ୍ୟ
ସଚରାଚର ତୋ ଯୋଗୁଁ ଯାଉଅଛି ନାଶ ।
ଚନ୍ଦ୍ର ବୋଲେ ମରାଇଲି ମୁଁ ବ୍ରହ୍ମ ରାକ୍ଷସ
ମୋର ବୋଲେ ତାକୁ ଇନ୍ଦ୍ର କରିଲା ବିନାଶ ।
ୟୁକତରେ ବ୍ରହ୍ମହତ୍ୟା ଦୋଷ ମୁହିଁ କଲି
ତେଣୁକରି ଆକାଶରେ ଉଦୟ ନୋହିଲି ।
ମୋତେ ଦେଖିକରି ସର୍ବେ ହେବେ ଦୋଷକାରୀ
ମୁହିଁ ଉଦୟ ନୋହିଲି ଏହି ଦୋଷ ଧରି ।
ଦେବେ ବୋଇଲେ ସର୍ବଦା ନୋହିବୁ ତୁ ଦୋଷୀ
ଯେଉଁଦିନ ବ୍ରହ୍ମହତ୍ୟା କରାଇଲୁ ଶଶୀ ।
ସିଂହମାସ ଶୁକ୍ଳପକ୍ଷ ଚଉଠିର ନିଶି
ସେହିଦିନ ବ୍ରହ୍ମହତ୍ୟା ଦୋଷେ ତୁହି ଦୋଷୀ ।
ସେହିଦିନ ଯେତେ ଜନ ଚାହିଁବେ ତୋ ମୁଖ
ବ୍ରହ୍ମହତ୍ୟା ଦୋଷ ତାଙ୍କୁ ହୋଇବ ପ୍ରତ୍ୟକ୍ଷ ।
ଇନ୍ଦ୍ର ବୋଲେ ସତ୍ୟ ତ୍ରେତା ଆବର ଦ୍ୱାପର
ଏ ତିନିଯୁଗରେ ଲୋକେ ଦୋଷୀ ସେ ଦିନର
ଏ ତିନି ଯୁଗର ଅନ୍ତେ ହେବ ଯୁଗକଳି
ଅପଣ୍ଡିତ ମୂର୍ଖମାନେ ଅମାର୍ଗରେ ଚଳି ।
କଳିଯୁଗେ ସଂସାରରେ ମରିବେ ଯେମନ୍ତେ
ପରର ଦୋଷରେ ଦୋଷୀ ହୋଇବେ ପଣ୍ଡିତେ
ବ୍ରହ୍ମା ଯେ ବୋଇଲେ ଅସ୍ତୁକାର ବାକ୍ୟ ଶୁଣି
ଆପଣା ହୃଦଗତରେ ତାହା ପରମାଣି ।
ଅଷ୍ଟଦଣ୍ଡ ଚତୁର୍ଥୀ ଯେ ସେ ରାତ୍ର ପ୍ରମାଣ
ହରିତାଳି ନାମ ଚନ୍ଦ୍ର ବହିଲେ ଯେ ଜାଣ ।
ହରିତାଳି ଚନ୍ଦ୍ର ସିଂହ ଶୁକ୍ଳ ଚଉଠି
ଶାସ୍ତ୍ରଯୋଗେ ଜାଣିଥିଲେ ସବୁଯାଏ ମେଣ୍ଟି ।
ମୂର୍ଖପଣେ ହରିତାଳି ଚନ୍ଦ୍ର ଯେବେ ଦେଖ
ସେ ପାପ ଖଣ୍ଡେ ଶୁଣିଲେ ବନପର୍ବ ଏକ ।
ଏହା କହିଲେ ନହୁଷ ଯୁଧିଷ୍ଠି ଆଗରେ
କହି ମହାତ୍ମା ବସିଲେ ଯାଇଣ ସ୍ୱର୍ଗରେ ।

ଜୟ ଦେବ ଦାମୋଦର ଗରୁଡ଼ ଆସନ
ଆରତ ଭଞ୍ଜନ ନାଥ ପତିତପାବନ ।
ମୁଁ କିସ କହିବି ପ୍ରଭୁ ତୁମ୍ଭର ମହିମା
ଯାହା ବର୍ଣ୍ଣନେ ଅକ୍ଷମ ଚତୁର୍ମୁଖ ବ୍ରହ୍ମା ।
ସୁପଥ ଦେଖାଅ ପ୍ରଭୁ ଏହି ଭିକ୍ଷା ମାଗେ
ନମଇଁ ଶାରଳା ଦାସ ତବ ପଦାମ୍ବୁଜେ ।



## ଦାତାକର୍ଣ୍ଣ ଉପାଖ୍ୟାନ

ପଚାରିଲେ ବୈବସ୍ୱତ ମନୁ ଅଗସ୍ତିଙ୍କି
ଅର୍ଜ୍ଜୁନ ବହୁତ ସେବା କଲା ଉର୍ବଶୀକି ।
କାରଣ ପାଇଲାଟିକି ସେ ଅମର ସ୍ୱର୍ଗେ
ଏଥିର ଚରିତ ମୁନି କହ ମୋତେ ଏବେ ।
ଶୁଣ ବୈବସ୍ୱତ ମନୁ ବୋଲେ ବ୍ରହ୍ମବେତ୍ତା
ଗଣ୍ଡୁକୀ କୂଳରେ ଥିଲେ ପାଣ୍ଡବେ ଶକତା ।
ସେହିସ୍ଥାନେ ଯାଜ୍ଞସେନୀ ହେଲେ ରଜୋବତୀ
ସେହି ତୀର୍ଥ ତେଜି ଦେଖି ଅନ୍ତରେ ରହନ୍ତି ।
କୁଣ୍ଡଳୀ ପର୍ବତ ତଳେ କରି ପର୍ଣ୍ଣକୁଟୀ
ତହିଁରେ ରହିଲେ ଦେବୀ ସର୍ବକଥା ମେଣ୍ଟି ।
ଏ ସମୟେ ଭାଗବତ ପୁସ୍ତକକୁ ଘେନି
ଗଣ୍ଡୁକୀତୀରେ ପ୍ରବେଶ ଶୁକ ମହାମୁନି ।
ଯୁଧିଷ୍ଠି ଦେବ କରିଲେ ତାଙ୍କ ପାଦପୂଜା
କୁଣ୍ଡଳ ମାଳ ଭୂଷଣ ଦେଲେ ଧର୍ମରାଜା ।
ନୂତନ ବସ୍ତ୍ର କୁଙ୍କୁମ ଆବର ଅକ୍ଷତ
ପୂଜା ପାଇ କୃଷ୍ଣାଜିନେ ବସି ତପୋବନ୍ତ ।
ପାଣ୍ଡବଙ୍କୁ ଶୁଣାଇଲେ ଶ୍ରୀକୃଷ୍ଣ ପୁରାଣ
ଧର୍ମାଦି କଥା କହିଲେ ଯୁଧିଷ୍ଠି ଆଗେଣ ।
ଯୁଧିଷ୍ଠି ଶୁକ ମୁନିଙ୍କି ବଚନ ପଚାରି
ଅମର ସ୍ୱର୍ଗକୁ ଯିବ କହେ ତପଚାରୀ ।
ଧନଞ୍ଜୟ ସ୍ୱର୍ଗେ ଗଲା ହେଲା ବହୁକାଳ
ତାକୁ ନ ଦେଖି ମୋ ମନ ହେଉଛି ବ୍ୟାକୁଳ ।
ଏଥକୁ ଆସୁ ମୋହର ଭ୍ରାତ ଫାଲଗୁନି
ଯୁଧିଷ୍ଠି ବାକ୍ୟେ ଚଳିଲେ ଶୁକ ମହାମୁନି ।
ଗମନ କରିଲେ ମୁନି ମନଦଣ୍ଡ ଯାନେ
ପ୍ରବେଶ ହୋଇଲେ ଯାଇ ଅମର ଭୁବନେ ।
ସକଳ କୁଶଳ ବାର୍ତ୍ତା ପୁଚ୍ଛିଲେ ବିଡ଼ୋଜା
ଅର୍ଜ୍ଜୁନକୁ କୋଳେ ଧରି ଇନ୍ଦ୍ର ଦେବରାଜା ।
ଅମର ଭୁବନେ ଅଛି ଯେତେ ନୃତ୍ୟ ବିଦ୍ୟା
ପାର୍ଥେ ଶିଖାନ୍ତି ଗନ୍ଧର୍ବମାନେ ସୁରସିଦ୍ଧା ।
ଶୁକ ବ୍ରହ୍ମାକୁ କହନ୍ତି ଦେବ ଆଖଣ୍ଡଳ
ପାର୍ଥ ନୃତ୍ୟକରେ ହୋଇ ଉର୍ବଶୀଙ୍କ ମେଳ ।

ତାଣ୍ଡବ ନୃତ୍ୟ କରିବ ଏବେ ସବ୍ୟସାଚୀ
ନାରୀବେଶେ ଅପସରା ସଙ୍ଗେ ରହିଅଛି ।
ଗଣିକା ରୂପରେ ନୃତ୍ୟ କରେ ଫାଲଗୁନି
ଦେଖିଣ ବଶ ହୋଇଲେ ଅମର ବାସିନୀ ।
ଅର୍ଜୁନକୁ ଶୁକମୁନି ନ ପାରିଲେ ଚିହ୍ନି
ବୋଇଲେ ନୃତ୍ୟେ ନଇଲା କିପାଁ ଫାଲଗୁନି ।
ଶୁକ ବଚନେ ହସିଲେ ଦେବ ସହସ୍ରାକ୍ଷ
ବୋଇଲେ ଏ ନୃତ୍ୟକରେ ଦେଖ ଏ ପ୍ରତ୍ୟକ୍ଷ ।
ପାର୍ଥମୁଖ ଚାହିଁ ମୋହ ଯାଆନ୍ତି ଅପ୍‌ସରୀ
ଅଙ୍ଗ ଢ଼ାଳନ୍ତେ ଧରନ୍ତି ତାଙ୍କୁ କୋଳକରି ।
ବୋଲନ୍ତି କଷ୍ଟେ କଷ୍ଟେକ ସାଧି ନୃତ୍ୟବିଦ୍ୟା
ଆମ୍ଭଙ୍କୁ ପ୍ରାପ୍ତ ନୋହିଲା ତୋର ଏବେ ମୁଦ୍ରା ।
ଉର୍ବଶୀ ବୋଇଲେ ବର ମାଗ ଫାଲଗୁନି
ଗୁଣବନ୍ତ ଲୋକକୁ ଯେ ବୋଲିବ ଅଗ୍ରଣି ।
ଉର୍ବଶୀ ବଚନ ଶୁଣି ବୋଲେ ଧନଞ୍ଜୟେ
ତୋ ଶାପକୁ ଅନୁଗ୍ରହ କର ଆଗୋ ମାଏ ।
ନପୁଂସକ ହୁଅ ବୋଲି କହିଲୁ ସାନ୍ତାଣୀ
ତହିଁରୁ ନିସ୍ତାର ମୋତେ କର ଏହିକ୍ଷଣି ।
ଉର୍ବଶୀ ବୋଇଲେ ପୁଂସ ପୁଣି ହୁଅ ପ୍ରାପ୍ତ
ଏହା କହି ଶିଖାଇଲେ ରତିଶାସ୍ତ୍ର ମନ୍ତ୍ର ।
ଅର୍ଜୁନ ଆଗରେ ତାହା ଉର୍ବଶୀ ଗାଇଲା
ଆଉ ଆଉ ବିଦ୍ୟାମାନ ତାର ଯେତେ ଥିଲା ।
ବୋଲନ୍ତି ଉର୍ବଶୀ ମୁଖ ଚାହିଁ ଶୁକମୁନି
ଗୁଣାକାର ତୁ ଅନୀତି କଲୁ ଫାଲଗୁନୀ ।
ଉର୍ବଶୀ ବୋଲେ କହିଲି ଯାକୁ ପରମାର୍ଥ
ମୋ ବିପାକ କର୍ମେ ମୋତେ ନୋହିଲା ପ୍ରାପତ
କୋପକରି ଶାପ ମୁହିଁ ଦେଲି ଅର୍ଜୁନକୁ
ନପୁଂସକ ହୁଅ ଭୋଗି ନ ପାର ନାରୀକୁ ।
ଅର୍ଜୁନ ବୋଇଲେ ତୁହି ଅଟୁ ମୋର ମାତ
ମହତଙ୍କ ବାକ୍ୟକାଳେ ହୋଇଥାଏ ହିତ ।
ପାଞ୍ଚବର୍ଷ ହେଲା ମୁହିଁ ବଞ୍ଚିଲି ଏ ପୁରେ
କଠୋର ଅପଖ୍ୟାତି ମୁଁ ପାଆନ୍ତି ଏଠାରେ ।
ମୁହିଁ ଯେବେ ତୋର ଶାପ ଲଭିଣ ନ ଥାନ୍ତି
ଅନ୍ୟ ବିଦ୍ୟାଧରୀ ସଙ୍ଗେ ପୀରତି କରନ୍ତି ।
ଅନେକ ଦ୍ୱନ୍ଦରେ ମୁହିଁ ନିଶ୍ଚେ ନାଶଯାନ୍ତି
କାଳ କାଳକୁ ରହିଲା ଏବେ ମୋ କୀରତି ।
ତୁହି ମୋହର ମାତା ଗୋ ସର୍ବଗୁଣଯୁକ୍ତା
ଏଡ଼େ ପ୍ରମାଦରୁ ମୋତେ ତୁହି ସେ ରଖନ୍ତା ।
ଉର୍ବଶୀ ବୋଇଲେ ତୁମ୍ଭେ ଶୁଣ ଶୁକମୁନି
ଦୋଷ ଛାଡ଼ି ଘେନିଲା ମୋ ଗୁଣ ଶୁକମୁନି ।

ମୋର ଶାପ ହେବ ତାକୁ କାଳେ ବଡ଼ ହିତ
ଏବେ ପୁରୁଷ ଲକ୍ଷଣ ହେଉ ପରାପତ ।
ଉର୍ବଶୀ ବୋଇଲେ ଶୁକ ସାବଧାନେ ଶୁଣ
ଏ ନୃତ୍ୟ ମଧ ପାର୍ଥକୁ ହେବ ବଡ଼ ଗୁଣ ।
ଅଜ୍ଞାତ ବିରାଟ ରାଜ୍ୟେ ରହିବେ ଗୁପତେ
ବର୍ଷେ ନପୁଂସକପଣ ରହିବ ଯୁକତେ ।
ଉତ୍ତରାବାଳୀକି ତହିଁ ଶିଖାଇବେ ନୃତ୍ୟ
ତହିଁକି ଜାଣ ଏ ପାପ ହେବ ବଡ଼ ହିତ ।
ଶୁକ ବୋଇଲେ ତୁହି ଗୋ ଶୁଣ ମହାସତୀ
ଦ୍ରୌପଦୀ ହୋଇଛି ଏବେ ବନେ ରଜୋବତୀ ।
ଆମ୍ଭଙ୍କୁ ଯୁଧିଷ୍ଠି ତେଣୁ ପେଷିଛନ୍ତି ରାଇ
ଆସିଅଛୁ ଆମ୍ଭେ ଅର୍ଜୁନକୁ ନେବାପାଇଁ ।
ଶୁଣି ସାନନ୍ଦ ମନ ଯେ ହୋଇଲା ଉର୍ବଶୀ
ଶୀଘ୍ର ହୋଇ ମଧପୁରେ ଯାଅରେ ବିବସି ।
ଏସନ କାଳେ ମୂର୍ଚ୍ଛିଲା ଦ୍ରୁପଦ ଦୁହିତୀ
ଏ ଘାନ୍ତି ହେଉ ତାକୁ ଯେ ପଞ୍ଚପୁତ୍ର ପ୍ରାପ୍ତି ।
ଇନ୍ଦ୍ର ଆଜ୍ଞା ଦେଲା ବିଶ୍ୱଦେବା ପୁତ୍ରେ ରାଇ
ପ୍ରବେଶ ହୁଅ ଦ୍ରୌପଦୀ ଗର୍ଭେ ତୁମ୍ଭେ ଯାଇ ।
ଅର୍ଜୁନ ଆଦି ବୀର୍ଯ୍ୟରେ ପାଞ୍ଚେ ହୁଅ ଜାତ
ବିଶ୍ୱାମିତ୍ର ଶାପୁ ତୁମ୍ଭେ ହୋଇବ ମୁକତ ।
ଅର୍ଜୁନକୁ ଇନ୍ଦ୍ରଦେବ ନିଜ କୋଳେ ଘେନି
ନୃତ୍ୟେ ମୋହିଦେଲୁ ବର ମାଗ ଫାଲଗୁନି ।
ପାର୍ଥ ବୋଲେ ସ୍ୱାମୀ ଆନ ବରେ କାର୍ଯ୍ୟ ନାହିଁ
କବଚ କୁଣ୍ଡଳ ଦିଅ କର୍ଣ୍ଣ ତହୁଁ ଯାଇଁ ।
କରିଲା ଅନେକ ପୁରୁଷାର୍ଥ ସୁରପତି
ଧନ୍ୟ ପାର୍ଥ ବୋଲି ମୁଖେ ଚୁମ୍ବନ ଦିଅନ୍ତି ।
ପୁଷ୍ପକ ବିମାନ ହକାରିଣ ମଘବାନ
ଅର୍ଜୁନକୁ ଛାଡ଼ିଆସ ଯାଇଁ ତୁ ବହନ ।
ଇନ୍ଦ୍ରର ଆଜ୍ଞାରେ ରଥ ତ୍ୱରିତେ ଚଳିଲା
ଅର୍ଜୁନ ସହିତ ମର୍ତ୍ତ୍ୟପୁରରେ ମିଳିଲା ।
ଯୁଧିଷ୍ଠିଛନ୍ତି ଗଣ୍ଡୁକୀ ନଦୀ ସନ୍ନିଧାନେ
ତହିଁ ଯାଇଁଣ ପ୍ରବେଶ ପୁଷ୍ପକ ବିମାନେ ।
ଯୁଧିଷ୍ଠିର ଦେବଙ୍କର ଦିଶିଲା ଆସନ
ନିଉଛାଳି କରିଣ ସେ ଶୋଇଲା ଅର୍ଜୁନ ।
ଆସ୍ଥାନ ତେଜି କଲ୍ୟାଣ କରିଲେ ଯୁଧିଷ୍ଠି
ଦେଖିଲେ ଅର୍ଜୁନ ମାଥେ ରହିଛି କିରୀଟି ।
ବୋଇଲେ ଏହି ମୁକୁଟ ପାଇଲୁ ତୁ କାହିଁ
ଇନ୍ଦ୍ର ଗୋବିନ୍ଦ ବ୍ୟତୀତ ଅନ୍ୟର ଯା ନାହିଁ ।
ପାର୍ଥ ବୋଲେ ବଧ କଲି କପଚ ନିର୍ବାତେ
ଦୟାକରି ସୁରନାଥ ବାନ୍ଧିଲେ ମୋ ମାଥେ ।

ଯୁଧିଷ୍ଠି ବୋଇଲେ ତେବେ ସ୍ମର ବାସୁଦେବ
ହରିଙ୍କର ପ୍ରୀତି ହେଲେ ସନ୍ଦେହ ତୁଟିବ ।
ବାବୁ ଅର୍ଜୁନ ତୋହର ପୁତ୍ର ହେଲା ଜାତ
ସହଦେବ ବୋଲେ ଆମ୍ଭେ କରୁନାହୁଁ ସତ ।
ହରି ଆସିଲେ ଜାଣିବା ତାହା ତଥ୍ୟକରି
ଯୁଧିଷ୍ଠି ବଚନେ ପାର୍ଥ ସୁମରିଲେ ହରି ।
ଧ୍ୟାନରେ ଜାଣିଲେ ହରି କମ୍ପନ୍ତେ ଆସନ
ତହୁଁ ଖଗପୃଷ୍ଠେ ବିଜେ ପ୍ରଭୁ ଭଗବାନ ।
ପାଣ୍ଡବେ ରହିଅଛନ୍ତି ମନୋହର ବନ
ତହିଁ ଯାଇଁ ପ୍ରବେଶିଲେ ପ୍ରଭୁ ଜନାର୍ଦ୍ଦନ ।
ଗଣ୍ଡୁକୀର ନଦୀତୀରେ ପବନର ଚାଟ
ଶାଳଗ୍ରାମ ଘେନି ଖେଳେ ହୋଇଣ ସନ୍ତୁଷ୍ଟ ।
ଖଗବର ପୃଷ୍ଠେ ଥାଇ ଦେଖି ମଧୁହାରୀ
ଗରୁଡ଼ ପୃଷ୍ଠୁ ଉତୁରି ଭୀମେ କୋଳକରି ।
ଭୀମକୁ କୋଳରେ ବସାଇଣ ନାରାୟଣ
ପୁଚ୍ଛନ୍ତି ଏମାନ କାହୁଁ ଆଣିଲୁ ତୁ ଭୀମ ।
ବ୍ରହ୍ମଶିଳାମାନ ତୁହି କେଉଁଠୁ ଆଣିଲୁ
ପାଦରେ ଗଡ଼ାଇ କାହିଁକିରେ ନାଟ ଖେଳୁ ।
ଭୀମ ବୋଲେ କେଉଁ ଶିଳା କିଏବା ଜାଣଇ
ଏକ ଆରେକ ପିଟନ୍ତେ ଅଗ୍ନି ବାହାରଇ ।
ପାଦରେ ଘଷିଲେ ଯାକୁ ଛାଡ଼ିଯାଏ ମଳି
ଏ କଥା ଶୁଣି ହସିଲେ ଦେବ ବନମାଳୀ ।
ଗୋବିନ୍ଦ ବୋଇଲେ ମୂର୍ଖଜନଙ୍କ ହସ୍ତରେ
ହୀରା ପଡ଼ିଲେ ପଥର ମନରେ ସେ କରେ ।
ରତ୍ନମଣି ରାମଚନ୍ଦ୍ର ଶିରେ ବାନ୍ଧିଦେଲେ
ପାଦରେ ବାନ୍ଧି ଗଉଡ଼େ ମଉନାଟ କଲେ ।
ଗୋବିନ୍ଦ ବୋଇଲେ ଏହା ଅନନ୍ତ ମୂରତି
ଭୀମ ବୋଲେ ଏଥେ ମୁହିଁ ନୃତ୍ୟ କରେ ନିତି ।
ଏ କଥା ଶୁଣି ହସିଲେ ପ୍ରଭୁ ହୃଷୀକେଶ
ବୋଇଲେ ଧରନ୍ତି ନାହିଁ ଦେବ ମୂର୍ଖଦୋଷ ।
ଏହା କହି ଭୀମହସ୍ତ ଧରି ବନମାଳୀ
ଯୁଧିଷ୍ଠି ଦେବଙ୍କୁ ଯାଇ କଲେ ନିଉଛାଳି ।
ଅନେକ ପ୍ରକାରେ ସ୍ତୁତି କରେ ବନମାଳୀ
ଧର୍ମ ଛାମୁରେ ଶୁତିଲେ ହୋଇ ଗଡ଼ଘାଲି ।
ଯୁଧିଷ୍ଠି ଦେବ ବହୁତ କଲ୍ୟାଣକୁ ବାଞ୍ଛି
ଉଠି କୋଳରେ ଧଇଲେ ଯାଇଣ ଶ୍ରୀବତ୍ସି ।
କୁଶଳବାର୍ତ୍ତା ପୁଚ୍ଛନ୍ତି ତାଙ୍କୁ ଦେବ ଧର୍ମ
କୃଷ୍ଣ ବୋଇଲେ ପାର୍ଥର ପୁତ୍ର ହେଲା ଜନ୍ମ ।
ତ୍ରୈଲୋକ୍ୟ ସୁନ୍ଦର ଅଟେ ସେ ନବକୁମାର
ରୂପ ଦେଖି ନାମ ଦେଲୁ ଅଭିମନ୍ୟୁ ତାର ।

ଶୁଣିଣ ସାନନ୍ଦ ହୋଇ ଧର୍ମଙ୍କର ସୁତ
ଗଣ୍ଡୁକୀ ତୀରରେ ଦାନ କଲେ ସେ ବହୁତ ।
କିରୀଟ ମୁକୁଟ ଅଛି ଅର୍ଜୁନର ମାଥ
ଦେଖିଣ ହରଷ ହେଲେ ପ୍ରଭୁ ଜଗନ୍ନାଥ ।
ବାବୁ ତୋହର ମୋହର ଅଟେ ଏକ ଆତ୍ମା
ଏ ମୁକୁଟ ନ ପାରନ୍ତି ପିନ୍ଧି ହରବ୍ରହ୍ମା ।
ଇନ୍ଦ୍ର ଗୋବିନ୍ଦ କେବଳ ପିନ୍ଧୁ ଆମ୍ଭେ ବେନି
ତୋତେ ଘେନି ହେଲୁ ଏବେ ଆମ୍ଭେ ଜଣ ତିନି ।
ନିର୍ବାତ କପଚ ମାରି ରଖିଲୁ ଏ ପୁର
ଅନ୍ୟ କି ପଦାର୍ଥ ଦେଲେ ତୋତେ ପୁରନ୍ଦର ।
ଅର୍ଜୁନ ବୋଇଲେ କଲେ ବହୁ ଅନୁରାଗ
ତୃପ୍ତ ହୋଇଣ ବୋଇଲେ ପାର୍ଥ ବର ମାଗ ।
ମୁଁ ବୋଇଲି ପିତା ଯେବେ ଏଡ଼େ ଅନୁଗ୍ରହ
କର୍ଣ୍ଣ ତହୁଁ କବଚ କୁଣ୍ଡଳ ଆଣି ଦିଅ ।
ଇନ୍ଦ୍ର ବୋଇଲେ ସ୍ମରିବୁ ତୋର କାର୍ଯ୍ୟ କାଳେ
ଆଣିଦେବି ସେ ପଦାର୍ଥ ତୋତେ ସେତେବେଳେ ।
ଶୁଣି ଗୋବିନ୍ଦ ବୋଇଲେ ମାଗିଲୁ ଯେ କାଳେ
ସେ ସଭାରେ ବସିଥିଲେ କେଉଁ ଦିଗପାଳେ ।
ପାର୍ଥ ବୋଇଲେ ନିର୍ବାତ କପଚକୁ ମାରି
ସାନନ୍ଦେ ଏତେ ଦେବତା ତହିଁ ଥିଲେ ପୂରି ।
ବ୍ରହ୍ମା ଇନ୍ଦ୍ର ରୁଦ୍ର ଚନ୍ଦ୍ର ଆବର ତପନ
ସର୍ବ ଦେବ ଥିଲେ ଅଗ୍ନି ପୁଣିହିଁ ପବନ ।
ଶ୍ରୀକୃଷ୍ଣ ବୋଇଲେ ଯେବେ ଥିଲେଟି ଆଦିତ୍ୟ
କର୍ଣ୍ଣ ଆଗରେ କହିବେ ଏଥିର ଚରିତ ।
ତୋର ନିମନ୍ତେ ମାଗିବେ ଯାଇଁ ତୋର ପିତା
କର୍ଣ୍ଣକୁ କହିବେ ନିଶ୍ଚେଁ ଆଦିତ୍ୟ ଦେବତା ।
କିପାଁ ନ ମାଗିଲୁ ତୁହି ଗୋପନର ସ୍ଥଳେ
ଏଡ଼େ ନିରାପଦ କଥା ଗଲା ଯେ ନିଷ୍ଫଳେ ।
ଯୁଧିଷ୍ଠି ବୋଇଲେ ଅଟେ ମହାଦାନୀ କର୍ଣ୍ଣ
ମାଗିଲେ ଅବଶ୍ୟ ତୋତେ ଦେବ ମଘବାନ ।
କୃଷ୍ଣ ବୋଇଲେ ମୋହର ବଚନ କରିବା
ଦେଉ ନ ଦେଉ କର୍ଣ୍ଣର ନିକଟକୁ ଯିବା ।
ଗୋବିନ୍ଦ ବୋଇଲେ କାଲି ମୁହିଁ ନିଶ୍ଚେଁ ଯିବି
ବ୍ରାହ୍ମଣ ରୂପ ଧରିଣ ଦାନ ମୁଁ ମାଗିବି ।
ଏକଗୋଟି ପୁତ୍ର ତାର ଯେ ବିଶିକେଶନ
ତାହାକୁ ମାରିଣ ମୋତେ ଦେବ ସେ ଭୋଜନ
ପୁତ୍ର ମାରିଣ ଭୋଜନ ଦେବ ମୋତେ ଯେବେ
କବଚ କୁଣ୍ଡଳ ନିଶ୍ଚେଁ ଦେବ ଇନ୍ଦ୍ର ତେବେ ।
ବ୍ରାହ୍ମଣ ରୂପ ଧରିଣ ଦେବ ଜନାର୍ଦ୍ଦନ
ଅଙ୍ଗଦେଶେ ପ୍ରବେଶିଲେ ଶ୍ରୀ ମଧୁସୂଦନ ।

ଆପଣାର ନିଜମୂର୍ତ୍ତି ପ୍ରଭୁ କରି ଗୋପ୍ୟ
ହୋଇଲେ ସେ ମହାବାହୁ ବ୍ରାହ୍ମଣ ସ୍ୱରୂପ ।
ତ୍ରିକଚ୍ଛ ବସନ ଲମ୍ବିଅଛି ଜୂଡ଼ା ଗୋଟି
ଶ୍ରୀବତ୍ସଲାଞ୍ଛନ ଚିହ୍ନ ଅଙ୍ଗେ ଦିଶେ ଫୁଟି ।
କନ୍ଧ ଦେଶରେ ଶୋଭଇ ପଇତା ଉତ୍ତରୀ
ଛଦ୍ମ ରୂପରେ ବିଜୟ ଦେବ ଚକ୍ରଧାରୀ ।
ତମ୍ବାବର୍ଣ୍ଣ ପରାୟେକ ଅଙ୍ଗ ଶୋଭାବନ
ରକ୍ତ କୁମୁଦ ପରାୟେ ବିରାଜେ ଲୋଚନ ।
ଅଠଚାଳିଶ ଲକ୍ଷଣେ ସେ ବିପ୍ର ଶରୀର
ଏମନ୍ତ ସ୍ୱରୂପେ ବିଜେ ଦେବ ଚକ୍ରଧର ।
ଛତାଧରି ଯାକିଛନ୍ତି କାଖେ ବେଦପୋଥି
ବାମେ ଗଡୁ ପାତ୍ରୀ କୁଶବଟୁ ଧରିଛନ୍ତି ।
ଡାହାଣରେ ଜପମାଳି ନାମକୁ ଉଚ୍ଚାରି
ରୁଦ୍ରାକ୍ଷ ତୁଳସୀମାଳ କଣ୍ଠେ ଛନ୍ତି ଭରି ।
ଅଧ୍ୟାନ ଗୋପ୍ୟାନ ଭାବେ ଦୋହରା ଆବର
ଶାସ୍ତ୍ର ପଢ଼ନ୍ତି ଛଦ୍ମେ ସେହି ବିପ୍ରବର ।
ଋକ ଯଜୁ ସାମ ପୁଣି ଅଥର୍ବାଦି ବେଦ
ଅଜପା ମହାମନ୍ତ୍ର ଗାୟତ୍ରୀ ମନ୍ତ୍ର ଭେଦ ।
ଆହେ ଚଇତନ୍ୟ ଶୁଣ ନାରାୟଣ ମାୟା
ନାନା କୌତୁକେ ହୁଅନ୍ତି ନାନାରୂପ କାୟା ।
ଆହାନିକ ସାତଘଡ଼ି ବେଳ ଗଲା ବଳି
ଶତେ ଭାର ସ୍ୱର୍ଣ୍ଣଦେଇ କର୍ଣ୍ଣ ଗଲା ଚଳି ।
ବୈତରଣୀ ନଦୀକୂଳେ କର୍ଣ୍ଣ ଅଙ୍ଗଦେଶ
ଗାଡ଼ରେ ପାଦ ପକାନ୍ତେ ପୃଥ୍ୱୀପାଏ ତ୍ରାସ ।
ଧୀରକରି କର୍ଣ୍ଣପାଦ ପକାଇବା ପାଇଁ
ଶତେକ ଭାର ସୁବର୍ଣ୍ଣ ନିତି ସେ ଦିଅଇ ।
ସେହି ଶତେଭାର ସ୍ୱର୍ଣ୍ଣ ଦାନ ଦିଏ ନିତି
ତେଣୁ ମହାଦାନୀ କର୍ଣ୍ଣ ପୃଥିବୀରେ ଖ୍ୟାତି ।
ଯୁକତେ ଶୁକଳପକ୍ଷ ମକର ଚଉଠି
ମଘା ନକ୍ଷତ୍ରକୁ ବେଳ ସାତଘଡ଼ି ଘଟି ।
ଭୌମବାରରେ ଶୋଭନ ନାମେ ଅଟେ ଯୋଗ
କର୍ଣ୍ଣ ଦ୍ୱାରେ ବିଜେକଲେ ଯାଇଣ ଶ୍ରୀରଙ୍ଗ ।
ଦ୍ୱାରରେ ବସି କରନ୍ତି ଦେବ ବେଦଧ୍ୱନି
ଯଜନ ଯାଜନ ବିଭୂଷିତ ବାକ୍ୟ ଘେନି ।
କର୍ଣ୍ଣ ଆଗେ ଜଣାଇଲା ଦୌବାରିକ ଚାର
ସ୍ୱାମୀ ବୁଭୁକ୍ଷିତ ଦ୍ୱିଜେ ବସିଅଛି ଦ୍ୱାର ।
ସିଂହାଦ୍ୱାରେ ରହି କରୁଅଛି ବେଦଧ୍ୱନି
ଆମ୍ଭଙ୍କୁ କହିଲେ ଜଣା କର୍ଣ୍ଣକୁ ଏ ବାଣୀ ।
ରାଧେୟ ବୋଇଲା ଆରେ ଆସୁ ଭିତରକୁ
କ୍ଷୁଧାର୍ତ୍ତ ବ୍ରାହ୍ମଣ କିଛି ଭୋଜ୍ୟ ଦେବା ତାକୁ ।
ଚାର ବୋଲେ ପଣ୍ଡା ଆଜ୍ଞା ହୋଇଲା ତୁମ୍ଭଙ୍କୁ
ନିଅବକାଶରେ ବିଜେ ଆସ ଭିତରକୁ ।
ବ୍ରାହ୍ମଣ ବୋଇଲା ମୁଁ କି କରିବି ଭିତରେ
କର୍ଣ୍ଣରାଜା ଆସୁକିନା ମୋହର ଛାମୁରେ ।
ଏତେ ବୋଲି ସାମବେଦ କରିଲେ ଗାୟନ
ଅବକାଶରେ କର୍ଣ୍ଣର କମ୍ପିଲା ଆସନ ।
କର୍ଣ୍ଣ ବୋଇଲା ବ୍ରାହ୍ମଣ ବଡ଼ କାଷ୍ଟାବନ୍ତ
ବେଦାଧ୍ୟୟନ କରନ୍ତେ କମ୍ପେ ମୋର ଗାତ୍ର ।
ଶ୍ରୀକରେ ରତ୍ନଝରୀଏ ଘେନିଣ ଆପଣ
ବ୍ରାହ୍ମଣ ଚରଣ ଯୁଗ କଲେ ପ୍ରକ୍ଷାଳନ ।
ଆହେ ପଣ୍ଡା ତୁମ୍ଭେ କର ବିଜୟ ଭିତରେ
ବ୍ରାହ୍ମଣ ବୋଇଲେ ଆମ୍ଭେ ଥିବୁ ଏହିଠାରେ ।
କର୍ଣ୍ଣ ବୋଲେ ଆଜ ମୋତେ କଟାଳ ନ କର
ଭୋଜନ କରି ଆଜକ ରୁହ ମୋ ମନ୍ଦିର ।
ସବୁ ସରିଛି ଭଣ୍ଡାରେ ମୋର କିଛି ନାହିଁ
ଏକଇ ବସନ ମାତ୍ର ପିନ୍ଧିଅଛି ମୁହିଁ ।
ଆଜ କିଛିହିଁ ଦେବାକୁ ମୋର ନାହିଁ କ୍ଷମ
କଷଣ ନ ଦିଅ ମୋତେ ନାଶଯିବ ଧର୍ମ ।
ଆଜକ ରହିଲେ ମୁହିଁ କାଲି ପ୍ରାତଃକାଳେ
ଶତେଭାର ସ୍ୱର୍ଣ୍ଣ ଦେବି ତୋତେ ଏକାବେଳେ
ଅନେକ ଦିନରୁ ମୁହିଁ ଦେଉଅଛି ଦାନ
ତୋ ପରାୟେ ନ ଦେଖିଲି ବେଦଜ୍ଞ ବ୍ରାହ୍ମଣ ।
ମୋର ଭାଗ୍ୟେ ଥିଲେ ସିନା ତୋତେ ଦେବି ଦାନ
ସାତଜନ୍ମ ବସାଇବ ସ୍ୱର୍ଗେ ମଘବାନ ।
ସୁଭାଗ୍ୟ କାଳ ତୋହର ଭେଟିଲୁଣି ମୋତେ
ଆଉ ଦାନ ମାଗିବାକୁ ନ ହୋଇବ ତୋତେ ।
ପଣ୍ଡାଏ ବୋଇଲେ ଦାନୀ ଶୂରବନ୍ତ କର୍ଣ୍ଣ
ରହିଲୁ ଆଗ କରିଣ ଦିଅ ତୁ ଭୋଜନ ।
ଯେମନ୍ତ ଆମ୍ଭର ତୁଷ୍ଟ ହୋଇବଟି ମନ
ତେମନ୍ତ କରିଣ ତୁହି ଦେବୁଟି ଭୋଜନ ।
ଦାତାକର୍ଣ୍ଣ ବୋଲେ ବିପ୍ର ତୋତେ ଯା ଅଣ୍ଟଇ
ଦେବି ମୁହିଁ ଏହି କଥା ସତ୍ୟ ଯେ କଲଇଁ ।
ସତ୍ୟ ସତ୍ୟ ଅଟେ ମୋର ସତ୍ୟ ତିନିବାର
ସତ୍ୟଭଗ୍ନ କଲେ ଦ୍ରୋହୀ ହେବି କରତାର ।
ମୁହିଁ ମହାରାଜା ତୁମ୍ଭେ ବ୍ରାହ୍ମଣ ଯେ ଗୋଟି
ସଂକଳ୍ପ କରିଣ ଦେବି ଯେତେ ତୋତେ ଅଣ୍ଟି ।
ଦକ୍ଷିଣାବର୍ତ୍ତକ ଶଙ୍ଖେ ଭରି ଜଳ ତିଳ
ସଂକଳ୍ପ କରାଇ ନେଲେ ଦେବକୀର ବାଳ ।
ବ୍ରାହ୍ମଣକୁ ଘେନି କର୍ଣ୍ଣ ବସିଲେ ଆସନ
ଚନ୍ଦ୍ରଶାଳାର ମନ୍ଦିରେ କରିବେ ରନ୍ଧନ ।

କନକ ନିର୍ମିତ ହାଣ୍ଡି ଯୋଗାଡ଼ କରିଲା
ଲକ୍ଷ୍ମୀବିଳାସ ତଣ୍ଡୁଳ ଛାମୁରେ ଥୋଇଲା ।
ନଡ଼ିଆ ମୁଗ କଦଳୀ ଆବର ଲବଣୀ
ଅଦା ପକ୍ୱଘୃତ ଆଦି ଯୋଗାଡ଼ରେ ଆଣି ।
ଅମୃତପାଣି କଦଳୀ ବାସ ଯେ ପଇଡ଼
ସାରୁ ମେଥି ଜୀରା ହେଙ୍ଗୁ ମରିଚ ଯେ ଗୁଡ଼ ।
ମହାସମ୍ଭର୍ବେ ଯୋଗାଡ଼ ଥୁଏ ବୀରମଣି
ବିଶିକେଶନ ଯୋଗାଡ଼ ଯୋଗାଇଲା ଆଣି ।
କର୍ଣ୍ଣ ବୋଇଲେ ଶୌଚ ହୋଇ ରାନ୍ଧହେ ପଣ୍ଡାଏ
ମୋ ଭୋଜନ ନାହିଁ ତୁମ୍ଭ ଭୋଜନର ଯାଏ ।
ବ୍ରାହ୍ମଣ ବୋଇଲେ ସାଧୁ ସାଧୁ କର୍ଣ୍ଣବୀର
ଅତିଥିକି ରଖି ଦ୍ୱାରେ ନ କରି ଆହାର ।
ବିପ୍ର ମୁଖ ଚାହିଁ କର୍ଣ୍ଣ ବୋଲଇ ବଚନ
ଏ ସବୁ ପଦାର୍ଥ ଦେଖି ନ ରୁଚେ କି ମନ ।
କିବା ଆମିଷ ଭୋଜନେ କର ଅଭିପ୍ରାୟ
ଦ୍ୱିଜ ବୋଲେ ସେ ଆମ୍ଭର ଅତିଶୟ ପ୍ରିୟ ।
ଆମିଷାନ୍ନ ଭୁଞ୍ଜିବାକୁ ବ୍ରହ୍ମା ଛନ୍ତି କହି
ଯେ ଆମିଷ ନ ଦିଅଇ ଜାଣ ଭୁଞ୍ଜେ ସେହି ।
ନୀର କ୍ଷୀରହିଁ ଆମିଷ ଆମିଷ ଚୌବେଦ
ଧ୍ୟାନ ଧାରଣା ଆମିଷ ନିରାମିଷ ପଦ ।
ହେ ରାଜା ଏତେ ପ୍ରକାରେ ଆମିଷ ବୋଲାଏ
ନ ଭୁଞ୍ଜିଣ ଦ୍ୱିଜବର ଅଛି ଅବା କିଏ ।
ଆମ୍ଭେ ଯେ କାଳରେ ଅଟୁ ନରସିଂହ ବେଦୀ
ତେଣୁ ଆମିଷ ଭୋଜନେ ମନ ହେବ ସିଦ୍ଧି ।
କର୍ଣ୍ଣ ବୋଲେ ଦ୍ୱିଜଙ୍କର ସେ ଭୋଜନ କାହିଁ
ଯେ ପ୍ରାଣୀ ପିଏ ଆମିଷୀ ସେ ଦ୍ୱିଜ କହଇ ।
କର୍ଣ୍ଣ ବୋଇଲା ପଣ୍ଡା ହେ କହନି ଏଥର
ତୁମ୍ଭ ନାମ ପିତା ନାମ କେଉଁ ଦେଶେ ଘର ।
ବ୍ରାହ୍ମଣ ବୋଇଲା ଶୁଣ ଆହୋ ଦାନୀ କର୍ଣ୍ଣ
ନିଶାଦ ବୋଲିଣ ଏକ ଗ୍ରାମ ଅଛି ଜାଣ ।
ଗୋପାଳ ପ୍ରଭୃତି ସର୍ବେ ତହିଁ ମିଶାମିଶି
ନକ୍ଷତ୍ର ଗୋତ୍ର ଆମ୍ଭର ମିଥୁନର ରାଶି ।
ବସୁଦେବ ପଣ୍ଡା ନାମେ ଅଟେ ଆମ୍ଭ ତାତ
ଦଇବକୀ ଅଟଇ ଯେ ଆମ୍ଭ ନିଜ ମାତ ।
ଚଇତନ କାଣ୍ୱ ଶାଖା ଅଟେ ଆମ୍ଭ ଧର୍ମ
କହ୍ନାଇ ପଣ୍ଡା ଅଟଇ ଆମ୍ଭ ଏକ ନାମ ।
କୁଳ ଗୋତ୍ର ବେଦମନ୍ତ୍ର ପୁଚ୍ଛାକଲୁ ମୋତେ
ଧନୁ କାଣ୍ଡରେ ଅଭ୍ୟାସ ଆମ୍ଭର ନିରତେ ।
ନୃସିଂହ ମନ୍ତ୍ର ପଢ଼ିଲୁ ଆହେ କର୍ଣ୍ଣ ଆମ୍ଭେ
ଆମିଷ ଭୋଜନ ଦେଇ ତୃପ୍ତକର ତୁମ୍ଭେ ।
କର୍ଣ୍ଣ ବୋଲେ ଜାଣିଲି ହେ ପଣ୍ଡା ମହାବାକ୍ୟ
ଦେବଇଁ ଆମିଷ ମୁହିଁ ନିକର ଅନେକ ।
ମାରିଆଣ ମୃଗ ଛେଳିରେ ବିଶିକେଶନ
ତୁଷ୍ଟ ହୋଇଣ ପଣ୍ଡାଏ କରନ୍ତୁ ଭୋଜନ ।
କୃଷ୍ଣଛାଗଳ ହରିଣ ଏକ ଏକ ମାରି
ଆମ୍ଭେ କେଳାଇ ରଖିଲେ ଅତି ଯତ୍ନକରି ।
ଆମ୍ବିଳ ଶାକର ଆଦି ଭଜା କିଛି କର
ସନ୍ତୋଷ ହୋଇ ଖାଇବେ ଯେହ୍ନେ ଦ୍ୱିଜବର ।
ତଥାଚ ତୃପ୍ତ ନୋହିଲେ ସେ ଦ୍ୱିଜ ଅତିଥି
ଆବର କି ଲୋଡ଼ା ବୋଲି ବୋଲେ କର୍ଣ୍ଣରଥୀ
ବ୍ରାହ୍ମଣ ବୋଇଲା ଆମ୍ଭ ଚିତ୍ତ ଯେଣେ ରାଜି
ନୃସିଂହ କବଚ ମୋର ନରମାଂସ ଭୁଞ୍ଜି ।
ଶୁଣିଣ ବିଷଣ୍ଣ ହେଲା କର୍ଣ୍ଣ ମହାରଥୀ
ଦ୍ୱିଜ ହୋଇ ନରମାଂସ ଭୁଞ୍ଜିବ କେମିତି ।
ଦ୍ୱିଜ ବୋଲେ ନରସିଂହ ହିରଣ୍ୟ ମାଇଲେ
ବକ୍ଷସ୍ଥଳ ବିଦାରିଣ ରକତ ପିଇଲେ ।
କହୁଁ କହୁଁ ଦ୍ୱିଜ ହେଲେ କୋପାନଳ ମୂର୍ତ୍ତି
ଦେଖିକରି କର୍ଣ୍ଣବୀର କଲା ମହାଭୀତି ।
ପୁଣି କର୍ଣ୍ଣ ବୋଲେ ତୁମ୍ଭେ ଶୁଣ ଦ୍ୱିଜବର
ବିନାଦୋଷେ କେହ୍ନେ ନର କରିବି ସଂହାର ।
ବ୍ରାହ୍ମଣ ବୋଇଲେ ତୁମ୍ଭେ ଶୁଣ ରାୟ କର୍ଣ୍ଣ
ଆମ୍ଭେ ମାଗିନାହୁଁ ଦେଇ ଲୋଡ଼ୁ ତୁ ଭୋଜନ ।
ଆଶାଦେଇଣ ଆମ୍ଭଙ୍କୁ ତୁ କରୁ ନିରାଶ
ସମସ୍ତ ଧର୍ମ ତୋହର ଯାଉଅଛି ନାଶ ।
ଆଶାଦେଇ ନ କରିବୁ ଯେବେ ତୁ ତୃପତି
ଆଉ କିସ ସେ ଆସିବ ତୋଠାକୁ ଅତିଥି ।
ମିଛେହେଁ ବୋଲାଉ ତୁହି ଦାନେ ଶୂରବନ୍ତା
ଆପେ ଆପେ କହୁ ନିଜ ଗଉରବ କଥା ।
ମୁହିଁ ଆଶା କଲି ଶୁଣି ତୋ ଖ୍ୟାତି ବଚନ
କ୍ଷୁଧାରେ ଶରୀର ମୋର ହୁଏ କମ୍ପମାନ ।
କର୍ଣ୍ଣ ବିଶିକେଶନକୁ ବୋଲଇ ଅନାଇଁ
ମାରିଆଣ ମନୁଷ୍ୟକୁ ଖାଉ ଏ ଗୋସାଇଁ ।
ବିଶିକେଶନ ବୋଇଲା କେତେକ ଅଣ୍ଟିବ
କେତେ ଜଣ ମାରିଲେ ତୋ ଉଦର ପୂରିବ ।
ଦ୍ୱିଜ ବୋଇଲେ ଅଣ୍ଟିବ ଜଣକର ମାଂସ
କହି ମାୟାକଲେ କେହି ନ ହୋଇଲେ ଦୃଶ୍ୟ ।
ଦୁଇଟି ପୁତ୍ର ତାହାର ଆବର ଭାରିଯା
ଆପଣାକୁ ଘେନି ପାଞ୍ଚଜଣ ଦେଖେ ରାଜା ।
ବ୍ରାହ୍ମଣ ବୋଇଲେ ଆମ୍ଭେ ଅତିଥି ସୁଜନ
କାହାରି ମାଂସ ଆମ୍ଭେ ଯେ ନ କରୁ ଭୋଜନ ।

ଅଛୁଆଁ ଅସୁର କଳା ଆବର ଅଜାତି
ତାହାର ମାଂସରେ ଆମ୍ଭେ ନୋହୁ ନାଁ ତୃପତି ।
ଆମ୍ଭଙ୍କୁ ଯଦ୍ୟପି ତୁମ୍ଭେ ଦେବ ହେ ଭୋଜନ
ତୋର ଏହି ପୁତ୍ର ଗୋଟି ମାରି ଦିଅ କର୍ଣ୍ଣ ।
ଏହାର ମାଂସରେ ପୂର୍ଣ୍ଣ ହେବ ମନୋବାଞ୍ଛା
ଶୁଣି କର୍ଣ୍ଣରାୟ ପଡ଼ି ହୋଇଗଲେ ମୂର୍ଚ୍ଛା ।
କୋଳ କରିଣ କୁମର ପିତା ଧରେ ଟୋଳି
କମଣ୍ଡଳରୁ ସିଞ୍ଚିଲେ ଜଳ ବନମାଳୀ ।
ସାଷ୍ଟାମ ହୋଇଣ କର୍ଣ୍ଣ କହେ ତାଙ୍କୁ ବାକ୍ୟ
ଆହୋ କହ୍ନାପଣ୍ଡା ତୁହି ଏଡ଼େ ଦୁଷ୍ଟଲୋକ ।
ବ୍ରାହ୍ମଣ ହୋଇଣ ତୁ ଅଟ ଦୈତ୍ୟର ସଦୃଶ
ସାମବେଦୀ ଦ୍ୱିଜ ହୋଇ ଲୋଡୁ ତୁ ଆମିଷ ।
ବେଦବନ୍ତ ଆଚାରୀ ତୁ ଏଡ଼େ ବଡ଼ ଲୋଭୀ
ତୋ ପାଇଁ କେମନ୍ତେ ମୁହିଁ ପୁତ୍ରକୁ ମାରିବି ।
ବ୍ରାହ୍ମଣ ବୋଇଲେ ତେବେ ଯାଉଅଛି କର୍ଣ୍ଣ
ମୁହିଁ ଅତିଥି ମୋତେ ତୁ ଯାଚିଲୁ ଭୋଜନ ।
ଉଠନ୍ତେ ବିଶିକେଶନ ଯାଇ କୋଳକରି
ବସ ପଣ୍ଡାଏ ପିତାଙ୍କୁ ଝିଙ୍ଗାସ ନ କରି ।
ଅନେକ ବିନୟେ ବିଶିକେଶନ ଯେ ବୋଲି
ବ୍ରାହ୍ମଣ ଚରଣ ଧରି ଶୁଏ ଗଡ଼ଘାଲି ।
କରପତ୍ର ଯୋଡ଼ିକରି ବୋଲଇ କୁମର
ସତ୍ୟ କରିଣ ନିସତ କାହିଁକି ପିଅର ।
ଦାନେ ଶୂର ନାମ ତୁହି ବୋଲାଉ ଶୟଳେ
କିପାଇଁ ନିସତ ହେଉ ଏ ମହୀମଣ୍ଡଳେ ।
ପୁତ୍ର ବୋଲି ଆହେ ତାତ ଆପଣେ ଯା କରି
ସତ୍ୟ ଭଗ୍ନ ପ୍ରାଣୀଙ୍କି ଯେ କାହିଁରେ ନ ବରି ।
ଭୋ ତାତ ମୋତେ ମାରିଣ ଦିଅ ତୁ ଭୋଜନ
ବ୍ରାହ୍ମଣ ତୃପ୍ତ ହୋଇଲେ ପାଇବା କାରଣ ।
କର୍ଣ୍ଣ ବୋଇଲା ତାହା ମୁଁ ଜାଣିଲିରେ ବାବୁ
ଅସୁର ରାଜାମାନଙ୍କୁ ମାଇଲି ମୁଁ ସବୁ ।
କେବଣ ରାଜ୍ୟର ରାଜା ଦ୍ୱିଜରୂପ ଧରି
କୂଟେ ବିନାଶି ଆସିଛି ସମରେ ନ ପାରି ।
କୁମର ବୋଇଲା ପିତା ଦ୍ୱିଜେ କିପାଁ ନିନ୍ଦୁ
ସତ୍ୟ ଉଚ୍ଚାରଣ କରି ଏବେ କିପାଁ କାନ୍ଦୁ ।
ବସିଲା କୁମର କୃଷ୍ଣାଜିନ ଛାଲ ପାରି
ପୂର୍ବ ମୁଖରେ ସୁମରେ ଶ୍ରୀହରି ଶ୍ରୀହରି ।
ବିଜେ କର୍ଣ୍ଣ କଟାରିକି କରେ ଘେନି କର୍ଣ୍ଣ
ହେ ପଣ୍ଡା କିପରି ପୁତ୍ର କରିବ ଛେଦନ ।
ରେ ଜଗଦ୍‌ବନ୍ଦ୍ୟ ସୁନ୍ଦର ମୋର ପୁତ୍ର ଗୋଟି
ଦେବ ବ୍ରାହ୍ମଣର ଭକ୍ତ କ୍ଷମା ସାଗରଟି ।

ବାବୁ ସର୍ବ ସୁଲକ୍ଷଣ ପର ଦୁଃଖେ ଦୁଃଖୀ
ଦୁଷ୍ଟ ଦାନବଙ୍କୁ ମାରି ତପୀ ଅଛୁ ରଖି ।
ମୋହର ପରାୟେ ପିତା ତୋହର ନ ହେଉ
ତୋ ପରାୟ ପୁତ୍ର ମୋତେ ସଦା ମିଳୁଥାଉ ।
ପୁତ୍ରର ଗୁଣ ସୁମରି କରେ ଖଡ଼୍‌ଗ ଘେନି
ବିଶିକେଶନକୁ ରାୟେ ପକାଇଲା ହାଣି ।
ଧର୍ମବସ୍ଛଳା ତୁଳସା କର୍ଣ୍ଣର ଭାରିଯା
ବିଶିକେଶନ ତାହାର ଅଟଇ ଆତ୍ମଜା ।
କାନ୍ଦଇ ସେ ମହାଦେଈ ମନର ବିକଳେ
ଅଜ୍ଞାନେ ପଡ଼ିଲା ଯାଇ ଦ୍ୱିଜ ପାଦତଳେ ।
ସୁକୁମାର ସୁନ୍ଦର ଏ ମୋହର ତନୟେ
ଏ ପୁତ୍ରକୁ ଖାଇ ତୃପ୍ତ ହୁଅ ହେ ପଣ୍ଡାଏ ।
ବ୍ରାହ୍ମଣ ବୋଇଲା ରାଣୀ ତୋ ଜୀବନ ସାଧୁ
ମାତାର ସମ୍ମତ କର୍ଣ୍ଣ ତୁହି କିପାଁ କାନ୍ଦୁ ।
କର୍ଣ୍ଣ ବୋଲେ ଜାତକରି ମୁଁ ପ୍ରତିପାଳିଲି
ଗୁଣବନ୍ତ କୁମରକୁ ସ୍ୱହସ୍ତେ ମାରିଲି ।
ବ୍ରାହ୍ମଣ ବୋଇଲା ସୂକ୍ଷ୍ମ ମାଂସ ବେଗେକେଳା
ସାନ ସାନ ଖଣ୍ଡକରି ମାଂସ କେଳାଇଲା ।
ଅନ୍ୟ ଲୋକ ଏ ମାଂସକୁ ନ ଛୁଇଁବ କର୍ଣ୍ଣ
ସାର୍ଥକ ହୋଇବ ତୋର ବ୍ରାହ୍ମଣ ଭୋଜନ ।
ବିକଳିତ ଆତ୍ମା ଅସାଷ୍ଟମ ଅଟୁ ରାୟେ
କାଟିଣ ମାଂସମାନଙ୍କୁ କର ଏକଠାୟେ ।
ଆମ୍ବିଳ ମହୁର ଆଦି ବ୍ୟଞ୍ଜନ ଯେ ଚାରି
ରାଣୀ ଏହା ରାନ୍ଧୁ ନିଜେ ବୋଇଲେ ମୁରାରି ।
ବ୍ରାହ୍ମଣ କ୍ଷତ୍ରିୟ ଆମ୍ଭେ ନୋହୁ ଭିନ୍ନାଭିନ୍ନ
ତୋ ରାଣୀ ରାନ୍ଧିଲେ ଆମ୍ଭେ କରିବୁ ଭୋଜନ
ଆମ୍ଭେ ଆସୁ ଆହନିକ କର୍ମ ସାରିକରି
କର୍ଣ୍ଣକୁ ଘେନି ବିଜୟ କଲେ ମଧୁହାରି ।
ଚାରିଜାତିର ତିଅଣ ରାଣୀ କରି ସଞ୍ଜା
ପୁତ୍ରର ମୁଣ୍ଡ ଗୋଟିକୁ ଲୁଚାଇଲା କଞ୍ଜା ।
ସନ୍ଧ୍ୟାଆଦି କରି ବେଗେ ଅଇଲେ ସେ ବେନି
ପାଦପଦ୍ମ ଧୌତକରି ବସିଲେକ ପୁଣି ।
ଛାମୁରେ ସେ ଖ୍ୟାଦ୍ୟଯାକ ଯୋଗାଇଲା ରାଣୀ
ଚାରିପତ୍ର ବାଡ଼ ଆଜ୍ଞା କଲେ ଚକ୍ରପାଣି ।
ଦ୍ୱିଜବରଙ୍କ ବଚନେ ସୁକୃତ ବସ୍ଛଳା
ଚାରିଠାବ କରି ସେହୁ ଖାଦ୍ୟକୁ ବାଢ଼ିଲା ।
ଏକ ପତ୍ରରେ ବସିଲେ ନିଜେ ହୃଷୀକେଶ
ବୋଇଲେ ତୁ କର୍ଣ୍ଣ ଏକ ପତ୍ରକରେ ବସ ।
କର୍ଣ୍ଣ ବୋଇଲେକ ପୋଡୁ ପୋଡୁ ମୋର ଆତ୍ମା
ନିଜ ସୁତକୁ ଭକ୍ଷିବି କେମନ୍ତେ ମହାତ୍ମା ।

ସ୍ୱଶରୀରୁ ଜାତକରି ହସ୍ତେ କଲି ନାଶ
ଚଣ୍ଡାଳ ପ୍ରାୟ କେମନ୍ତ କରିବି ତା ଗ୍ରାସ ।
ନ ବୋଲ ନ ବୋଲ ବିପ୍ର ଏସନ ବଚନ
ତୋର ବାକ୍ୟ ଶୁଣି ମୋର ହୃଦୟ ଦହନ ।
ହେ କହ୍ନାଇ ପଣ୍ଡା ତୋତେ ଦୈନି ଶତବାର
ତୁମ୍ଭେ ଏକା ଭୁଞ୍ଜ ମୋତେ କଟାଳ ନ କର ।
ବ୍ରାହ୍ମଣ ବୋଇଲା ଯେବେ ନ କରିବୁ ଗ୍ରାସ
ତୋ ପତ୍ନୀ ଭରିଛି ତେବେ ଏ ଖାଦ୍ୟରେ ବିଷ ।
ତୁହି ଭୁଞ୍ଜିବୁ ଆବର ତୋ ପତ୍ନୀ ଭୁଞ୍ଜିବ
ତେବେ ଯାଇକରି ଜାଣ ଆମ୍ଭ ଗ୍ରାସ ହେବ ।
ଠାବକରେ ବସେ କର୍ଣ୍ଣ ଠାବକରେ ରାଣୀ
ସାଧୁ ବୋଲିଣ ପ୍ରଶଂସା କଲେ ଚକ୍ରପାଣି ।
ହୃଦଗତରେ ପ୍ରଶଂସା କଲେ ବାସୁଦେବ
ବଇକୁଣ୍ଠ ଛଡ଼ା ତୋତେ ନାହିଁ ଅନ୍ୟ ଠାବ ।
ତହୁଁ ଯେ ରାଣୀ ବୋଇଲେ ଶୁଣ ହେ ପଣ୍ଡାଏ
ତୁମ୍ଭର ଶାସ୍ତ୍ରେ ଅଛି କି ଏମନ୍ତ କଥାଏ ।
ନାଶିଣ ପୁତ୍ରକୁ ଆପଣାର ନିଜ ହାତେ
ପିତା ମାତା ମାଂସ ତାର ଭକ୍ଷିବେ କେମନ୍ତେ ।
ଦ୍ୱିଜ ବୋଇଲେ କାମ୍ୟକ ଶ୍ରାଦ୍ଧ ଯେହୁ କରି
କାମ୍ୟକ ଶ୍ରାଦ୍ଧରେ ଶ୍ରାଦ୍ଧ ଭକତି ମୋହରି ।
କାମ୍ୟକ ଶ୍ରାଦ୍ଧରେ କରେ ଯେ ଗୋବିନ୍ଦ ଭକ୍ତି
ତୁମ୍ଭଙ୍କୁ କାରଣ ପିତୃ ଲୋକଙ୍କ ମୁକତି ।
ବ୍ରାହ୍ମଣ ବଚନ ଶୁଣି କର୍ଣ୍ଣ କଲା ଶୋକ
ଝର ଝର ହୋଇ ନେତ୍ରୁ ଝରିଲା ଲୋତକ ।
ତାହା ଦେଖି ରାଣୀ କହେ ନ କର କ୍ରନ୍ଦନ
ଆଗେ ବ୍ରାହ୍ମଣକୁ ନେଇ କରାଅ ଭୋଜନ ।
କଥାକୁ ନ ବୁଝି ସତ୍ୟ କଲ ଆଗ କରି
ଧର୍ମ ନାଶ ଯିବ ଦୁଃଖ ହୋଇଲେ ତୁମ୍ଭରି ।
ଆଉ କି ସେ ପୁତ୍ରଗୋଟି ପାଇବ ହେ ନାଥ
କ୍ରୋଧ କଲେ ଧର୍ମହାନି ଜାଣିଥା ନିଶ୍ଚିତ ।
ଯାହା ଆମ୍ଭର କପାଳେ ଲେଖିଅଛି ବିହି
ବିଷ୍ଣୁଙ୍କର ମାୟା ଏହି କେ ପାରିବ କହି ।
ତୁମ୍ଭେ ଦାନେଶ୍ୱର ବୋଲି ହୁଅନ୍ତେ ବିଦିତ
ଚିତ୍ତ ବିଢ଼ିବାକୁ ଏହା କଲେ ଜଗନ୍ନାଥ ।
ଶୋକ ସମ୍ବର ରାଜନ ଶାନ୍ତ କର ମତି
ବିପ୍ରକୁ ଭୁଞ୍ଜାଇ ଦୁହେଁ ଝାସିବା ଦହତି ।
ରାଣୀର ବଚନ ଶୁଣି କର୍ଣ୍ଣେ ହେଲେ ତୋଷ
ବ୍ରାହ୍ମଣ ବୋଇଲେ କର୍ଣ୍ଣ ଏକ ପତ୍ରେ ବସ ।
ରାଣୀ ଏକପତ୍ରେ ବସି କରିବ ଭୋଜନ
ଏବେ ଶରଣ ନେଇଣ ସେହି ଦୁଇ ସ୍ଥାନ ।

ରାଣୀ ବୋଇଲା ପତ୍ରେକ ମିଳିଲା ଆମ୍ଭଙ୍କୁ
ଆରେକ ପତ୍ର ପଣ୍ଡାଏ ଦେବ କି କାହାକୁ
ବ୍ରାହ୍ମଣ ବୋଇଲେ ରାଣୀ ଗୋପ୍ୟ କଲୁ କଥା
ତୋ ଭାବ ମୋତେ ଗୋଚର ନୋହିଲା ସର୍ବଥା
ଅଭାବ ଭୋଜନ ଆଉ ଅନାଚାର ଭୂମି
ଅକ୍ରିୟାବନ୍ତ ବ୍ରାହ୍ମଣ ତପୀ ନୀଚଗାମୀ ।
ଅନ୍ୟାୟ ସନ୍ତାନ ଆଉ ଦୋଚାରୀ ଭାରିଯା
ଗୁଣବନ୍ତ ଲୋକମାନେ କରିଥାନ୍ତି ତେଜ୍ୟା ।
ଶରୀର ମଧରେ ସାର ଯେଉଁ ମୁଣ୍ଡ ଗୋଟି
ତାହାକୁ ଗୋପନ କରି ରଖିଲୁ କପଟୀ ।
ରାଣୀ ବିଚାରଇ ଏହୁ ନୁହଇ ମାନବ
ଏହୁ ରୁଦ୍ର ବ୍ରହ୍ମା କିବା ହେବେ ବାସୁଦେବ ।
ଅଦୃଷ୍ଟକୁ ଜାଣିବାକୁ କେହୁ ହେବ କ୍ଷମ
କର୍ଣ୍ଣକୁ କଷ୍ଟ ପଡ଼ିଲା ରକ୍ଷାକର ଧର୍ମ ।
ବ୍ରାହ୍ମଣର ବଚନରେ କର୍ଣ୍ଣ ରାଜା କହି
ଅନୀତି ବଚନ କିପାଁ କହିଲୁ ଗୋସାଇଁ ।
ଆହେ କହ୍ନାଇ ପଣ୍ଡାଏ ତୋର ଆଗେ ମୁହିଁ
ପୁତ୍ର ଗୋଟି ମାରି ମାଂସ ଦେଲି ଯେ କେଳାଇ
ସମସ୍ତ ମାଂସ ଆଗେ ମୁଁ ଦେଲି ପ୍ରତି ପ୍ରତି
କିପାଇଁ ଦୂଷଣ ମୋତେ ଦେଲୁ ତୁ ଅତିଥି ।
ବ୍ରାହ୍ମଣ ବୋଇଲା ରାଜା ତୋର ଦୋଷ ନାହିଁ
ରାଣୀ ତୋର ଗୁପ୍ତଭାବେ ଅଛଇ ଲୁଚାଇ ।
ଗମ୍ଭୀରୀ ଭିତରେ ମୁଣ୍ଡ ଅଛଇ ଯେ ଥୋଇ
ଗର୍ଭଧାରୀ ହୋଇ ପୁତ୍ର ମୁରୁଛିବ କାହିଁ ।
ବେଗେ ରାଣୀ ଆଣି ଆମ୍ଭ ଆଗେ ମୁଣ୍ଡ ଛେଚ
କ୍ଷୁଧା ବଡ଼ ଲାଗୁଅଛି ଶୀଘ୍ର କର ପାକ ।
ଭିତର ଭୁବନୁ ରାଣୀ ଆଣି ମୁଣ୍ଡ ଗୋଟି
ବ୍ରାହ୍ମଣ ଛାମୁରେ କର୍ଣ୍ଣ ପୁତ୍ର ମୁଣ୍ଡ କାଟି ।
ଡରେ ରାଣୀ ପକ୍ୱ କରେ ମନେ ହୋଇ ତୁଷ୍ଟି
ନପୂଣ ବ୍ରାହ୍ମଣ ଯାଏ କୋପ କରି ଉଠି ।
ଆମ୍ବିଳା ପାଚକ ଭଜା ମହୁର ସେ କଲା
ଲୋଚି ଲୋଚି କରି ଚାରି ଠାବରେ ଥୋଇଲା
ଏକ ପତ୍ରରେ ବସିଲେ ସେ ଦ୍ୱିଜ ଆପଣ
ଆରେକ ପତ୍ର ଆବୋରି ବସେ ବୀରକର୍ଣ୍ଣ ।
ଅନ୍ୟ ପତ୍ରରେ ବସିଲେ ଅଙ୍ଗଦେଶ ରାଣୀ
ତିନି ପତ୍ରରେ ବସିଲେ ସେ ତିନି ପରାଣୀ ।
କର୍ଣ୍ଣ ବୋଇଲା ହେ ପଣ୍ଡା ବାକି ଅଛି ପତ୍ରେ
କିପାଇଁ ବାଢ଼ିଲ କିଏ ବସିବାକ ଏଥେ ।
ବିଶିକେଶନ ବସିବ ବୋଇଲେ ବ୍ରାହ୍ମଣ
କର୍ଣ୍ଣ ବୋଇଲେ ବାତୁଳ ହେଲ କି ଆପଣ ।

ବ୍ରାହ୍ମଣ ବୋଇଲେ ରାଣୀ ଘେନି ପାଣି ଝରି
ବିଶିକେଶନକୁ ଡାକ ତିନିଥର କରି ।
ରତ୍ନ ଝରି ଘେନି ରାଣୀ ହୋଇଲା ବାହାର
ଆସରେ ବିଶିକେଶନ ଡାକେ ତିନିବାର ।
ଅନାଥ ବାନ୍ଧବ ମୋର ରେ ସୁନ୍ଦର ବଳା
ଅଗାଧ ସମୁଦ୍ରେ ମୋର ବୁଡ଼ାଇଲୁ ଭେଳା ।
ଆରେ ଦୁଃଖୀର ସଙ୍ଗାଳୀ ଅନ୍ଧର ଲଉଡ଼ି
ଗଳାର ହାର ମୋହର କେଣେ ଗଲୁ ଛାଡ଼ି ।
ମୁଖେ ବସ୍ତ୍ର ଦେଇ ଡାକି କାନ୍ଦେ ମହାଦେଈ
ଅଶ୍ୱେକ ଚଢ଼ି କୁମର ମାତାକୁ ଭେଟଇ ।
ଅନେକ ଅଳଙ୍କାରରେ ଭୂଷଣ ତା କାୟେ
ଦିଶଇ ବିଶିକେଶନ କାର୍ତ୍ତିକର ପ୍ରାୟେ ।
ଅଶ୍ୱ ପୃଷ୍ଠରୁ ଓହ୍ଲାଇ ମାତା ପାଦେ ଲୋଟି
ମାତା ବୋଲେ କାହିଁ ଥିଲୁ ଅନ୍ଧ ଲଉଡ଼ିଟି ।
ସୁତ ବୋଲେ ଯାଇଥିଲି ଯମୁନାକୁ ଖେଳି
ମୋର କର୍ଣ୍ଣେ ସମ୍ଭାଇଲା ତୋହର ବୋବାଳି
କୋଳେ ଧରିଣ କୁମର ରାଣୀ ଗଲା ଚଳି
ବ୍ରାହ୍ମଣ ପାଦେ ପ୍ରଣାମ କରିଲାକ ବାଳୀ ।
ନିଜ ରୂପକୁ ଧଇଲେ ତହୁଁ ବନମାଳୀ
ରାଧେୟ ପ୍ରମାଣ କଲା କରି ନିଉଛାଳି ।
ମୋତେ ପରୀକ୍ଷା ନିମନ୍ତେ ବିଜେ ଦେବରାଜ
ଏହି ଜନମ ସୁଫଳ ହୋଇଲାକ ଆଜ ।
ହରି ବୋଇଲେ ନ ଯାଉ ପାପୀଲୋକ କତି
ଯହିଁ ଧର୍ମ କଷଣ ଯେ ଅଟଇ ଯୁକତି ।
ବିଶିକେଶନ ମାଇଲି ଯହିଁର ନିମନ୍ତେ
କୂଟ ବୁଦ୍ଧି ନ କରନ୍ତି ଭଲା ତ ଦଇତେ ।
ବିଶିକେଶନକୁ କୋଳେ ଧରି ଜଗନ୍ନାଥେ
ବୋଇଲେ ଏ ପୁତ୍ର ରହୁ ଆମ୍ଭର ପରତେ ।
ଯାବତ ଏ ଚନ୍ଦ୍ର ରବି ଏଥେ ରହିଥିବ
ଆମ୍ଭସଙ୍ଗେ ଚଣ୍ଡବଳୀ ଏହୁ ପାଉଥିବ ।
ଶୁଣିଣ ବିଶିକେଶନ କରିଲା ଦଇନୀ
ଚଳିଲେ ବୈନତେୟରେ ପ୍ରଭୁ ଚକ୍ରପାଣି ।
ଦ୍ୱାରକା ଭୁବନେ ଯାଇ ହୋଇଲେ ପ୍ରବେଶ
କର୍ଣ୍ଣବୀର ଧ୍ୟାନ କରେ ହୋଇଣ ହରଷ ।
ଶଙ୍ଖ ଚକ୍ର ଗଦାପଦ୍ମ ପ୍ରଭୁ ଚତୁର୍ଭୁଜ
ନୀଳୋତ୍ପଳ ବର୍ଣ୍ଣ ଜିଣି ବିରାଜଇ ତେଜ ।
ଧନ୍ୟ ମୁଁ ଦେଖିଲି ବ୍ରହ୍ମରୂପୀ ପୀତବାସ
ଯୋଗୀଜନମାନଙ୍କର ଅଟ ମତି ତୋଷ ।
ପରମବ୍ରହ୍ମ ପୁରୁଷ ତୁହି ସର୍ବ ଜିଣି
ଶୟଳ ସୋଦର ନାଥ ତୁହି ଚିନ୍ତାମଣି ।
ପରମବ୍ରହ୍ମ ପୁରୁଷ ତୁ ସର୍ବାଧିକାରୀ
କୋଟି ବ୍ରହ୍ମାଣ୍ଡର ତୁହି ଅଟୁ ଅଧିକାରୀ ।
ପରମବ୍ରହ୍ମ ପୁରୁଷ ଯୋଗୀହୃଦ ଚିନ୍ତା
ଚନ୍ଦ୍ର ଆଦିତ୍ୟର ତୁହି ଅଟୁ ଯେ ନିର୍ମାତା ।
ପରମବ୍ରହ୍ମ ପୁରୁଷ କରୁଣା ସାଗର
ପରମବ୍ରହ୍ମ ପୁରୁଷ କୂଟ ବୁଦ୍ଧି ତୋର ।
ଦର୍ଶନେ ଗତି ମୁକତି ପ୍ରସନ୍ନେ ନିର୍ବାଣ
ମୁହିଁ ନ ଜାଣିଲି ନାଥ ତୋ କୂଟାଚରଣ ।
ସ୍ୱାମୀ ମୋ ମସ୍ତକେ ରହୁ ତୋର ପାଦଗୋଟି
ନୀଳ କନ୍ଦରେ ଭେଟିଲି ହରିରୂପ ଗୋଟି ।
ଏରୂପେ ପଶ୍ଚାତେ କର୍ଣ୍ଣ କରିଲା ଦଇନୀ
ଶ୍ରୀକୃଷ୍ଣ ପାଦେ ଶରଣ ଶ୍ରୀ ଶାରଳା ମୁନି ।



## ହରିଶ୍ଚନ୍ଦ୍ର ମହାରାଜାଙ୍କ ଉପାଖ୍ୟାନ

ପୁଣି ପଚାରିଲେ ବୈବସ୍ୱତ ନୃପବର
ହେ ଅଗସ୍ତିମୁନି କହ ମୋତେ ଅତଃପର ।
ପଣ୍ଡୁପୁତ୍ରମାନେ ଥିଲେ ଗଣ୍ଡୁକୀର ତୀରେ
ପାକାସ୍ପର୍ଶ ହୋଇଥିଲେ କୃଷ୍ଣା ସେହିଠାରେ ।
ପୁଣି କେଉଁ କେଉଁ କଥା ହୋଇଲାକ ତହିଁ
ସେହି କଥା ଶୁଣିବାକୁ ମାନସ ବଳଇ ।
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ
କହୁଛି ସେ କଥା ଶୁଣ ନିବେଶି ମାନସ ।
ସପ୍ତମଦିନେ ଦ୍ରୌପଦୀ ଦେବୀ ମହାସତୀ
ଶୁଦ୍ଧସ୍ନାନ କରି କୃଷ୍ଣେ କରନ୍ତି ଭକତି ।
ଲକ୍ଷ୍ମୀ ନାରାୟଣ ଶିଳାପାଦୁକା ପିଅନ୍ତି
ଶୁକ୍ଳାମ୍ବର ନାମ ଶିଳା ମୁଦ୍ରାଦି ପ୍ରଭୃତି ।
ନାନାଦେବ ଶିଳାଙ୍କର ସ୍ନାହାନର ପାଣି
ପାନ କରେ ପୁରୋହିତ ସବୁ ଦେଲେ ଆଣି ।
ପାଣ୍ଡବକୁ ଅଭିଳାଷ ଦେଇ ମହାସତୀ
ପାଞ୍ଚଜଣଙ୍କ ରେତରେ ହେଲେ ଗର୍ଭବତୀ ।
ପଞ୍ଚ ବିଶ୍ୱଦେବା ପୂର୍ବପାପ ଖଣ୍ଡନାର୍ଥେ
ପାଞ୍ଚାଳୀ ଗର୍ଭେ ରହିଲେ ମୁକତି ନିମନ୍ତେ ।
ଅଗସ୍ତିଙ୍କୁ ପୁଚ୍ଛାକଲେ ବୈବସ୍ୱତ ମନୁ
ବିଶ୍ୱଦେବା ଶାପଗ୍ରସ୍ତ କେବଣ ବିଧାନୁ ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ସତ୍ୟଯୁଗେ ହରିଶ୍ଚନ୍ଦ୍ର ନାମେ ମହୀପତି ।
ମହାପ୍ରତାପୀ ଅଟଇ ସୂର୍ଯ୍ୟବଂଶ ରାଜା
ଶୈବ୍ୟା ବୋଲିଣ ତାହାର ଅଟଇ ଭାରିଯା ।
ବଳେ ବଳବନ୍ତ ସେହୁ ପ୍ରତାପୀ ନୃପତି
ସପତ ଦ୍ୱୀପେ ଅଟଇ ସେହୁ ଅଧିପତି ।

ଜମ୍ବୁଦ୍ୱୀପେ ମହୀପାଳ ହେଲା ଧର୍ମବଳେ
ଧର୍ମ ନ ଲଙ୍ଘଇ ସେହୁ କଉଣସି କାଳେ ।
ଆଜ୍ଞା ପାଇଣ ଚଳନ୍ତି ସର୍ବରାଜ୍ୟ ଲୋକେ
ଦୟାପୂର୍ଣ୍ଣ ନିର୍ଭୟତା ନାହିଁ ଯେ ଜଣେ କେ ।
ମହାଦାନୀ ଅଟଇ ଯେ ସେହି ହରିଶ୍ଚନ୍ଦ୍ର
ଦୁଃଖୀ ନାହିଁ ସମସ୍ତଙ୍କ ଅଛଇ ସମ୍ପଦ ।
ତାର ଦାନୀପଣ ଦେଖି ସୁରେଶ୍ୱର ତ୍ରାସି
ଚିନ୍ତେ ମୋ ପଦକୁ ମାଡ଼ି ନ ବସଇ ଆସି ।
ଦେବତାଙ୍କୁ ଘେନି ସଦା ଭାଳେ ସୁରଇନ୍ଦ୍ର
ବିଚାରି ବିଚାରି ଏକ ପାଇଲା ସେ ଛନ୍ଦ ।
ତହୁଁ ବିଶ୍ୱାମିତ୍ରେ ରାଇ ବୋଲେ ସୁରେଶ୍ୱର
ହରିଶ୍ଚନ୍ଦ୍ରର ସମ୍ପଦ ଯାଇ ନାଶ କର ।
ବାସବ ବଚନ ଶୁଣି ଗଲେ ବିଶ୍ୱାମିତ୍ର
ହରିଶ୍ଚନ୍ଦ୍ର ପୁରେ ଯାଇ ମିଳିଲେ ତ୍ୱରିତ ।
ବେଦ ଅଧ୍ୟୟନ କରେ ସିଂହଦ୍ୱାରେ ବସି
ଶବଦ ପାଇଣ ରାଜା ଭୟ ପାଇ ଆସି ।
ପାଦ ପଖାଳି ତାଙ୍କର କଲେ ତାଙ୍କୁ ପୂଜା
ବେଦ ଅଧ୍ୟୟନ ଶୁଣି ସତ୍ୟ କଲେ ରାଜା ।
ଆହେ ମୁନି ଶୁଣ ତୁମ୍ଭେ ମନେ ଯାହା ବାଞ୍ଛା
ଦେବି ମୁହିଁ ଏହିକ୍ଷଣି ଯା ତୁମ୍ଭର ଇଚ୍ଛା ।
ଡାହାଣା ବର୍ତ୍ତକ ଶଙ୍ଖେ ଜଳତିଳ ଭରି
ହରିଶ୍ଚନ୍ଦ୍ର ରାଜା ହସ୍ତେ ଦେଲେ ତପଚାରି ।
ଆପଣେ ମୁନି ପାତିଲେ ତହିଁ ତଳହସ୍ତ
ଉପର ହସ୍ତରେ ପାଣି ଦ୍ୟନ୍ତି ନରନାଥ ।
ମୁନି ବୋଲେ ସାକ୍ଷୀ ହୁଅ ଦିଗପାଳମାନେ
ହରିଶ୍ଚନ୍ଦ୍ର ଦେବ ଦାନ ତୁମ୍ଭ ବିଦ୍ୟମାନେ ।
ଶୁଣ ଶୁଣ ହେ ବରୁଣ ତାରା ଚନ୍ଦ୍ର ସୂର୍ଯ୍ୟ
ଦାନ ଦିଏ ହରିଶ୍ଚନ୍ଦ୍ର ଘେନୁଛି ମୁଁ ଆଜ ।
ମାଗ ମାଗ ଦ୍ୱିଜବର ବୋଲନ୍ତି ଯେ ରାୟେ
ତୋର ବେଦଧ୍ୱନି ଶୁଣି ଗାତ୍ର କମ୍ପ ହୁଏ ।
ଅନେକ ଦ୍ୱିଜଙ୍କ ବେଦ ଶୁଣିଅଛି ମୁହିଁ
ଏମନ୍ତ ବେଦଧ୍ୱନି ମୁଁ ଶୁଣିନାହିଁ କାହିଁ ।
ଏତେ ବୋଲି ଦ୍ୱିଜହସ୍ତେ ଛାଡ଼େ ପାତ୍ର ବାରି
ଋଷି ବୋଇଲେ ତୋହର ରାଜ୍ୟ ଆଦି କରି ।
ରଥ ଗଜ ଅଶ୍ୱ ତୋର ଯେତେକ ପଦାତି
ସବୁ ଛାଡ଼ିଣ ଏକ୍ଷଣି ଯିବୁ ନରପତି ।
ରାଣୀ ରାଜକୁମାର ତୁ ତିନିଜଣ ଛାଡ଼ି
ରାଜ୍ୟରୁ ବାହାର ହୁଅ ବଲ୍କଳ ପହୁଡ଼ି ।
ଦାନେ ଶୂରବନ୍ତ ଯେଣୁ ଅଟେ ମହାରାଜା
ବିଶ୍ୱାମିତ୍ର ଦାନେ ସବୁ କରିଦେଲେ ତେଜ୍ୟା ।

ଆହୋ ରାଜା ଦାନ ଦେଲ ତୁମ୍ଭେ ସତ୍ୟପଣେ
ରାଜ୍ୟରୁ ବାହାର ହୁଅ ତିନିହେଁ ଏକ୍ଷଣେ ।
ଶୈବ୍ୟାରାଣୀ ରୋହିତାଶ୍ୱ ରାଜନକୁ ଘେନି
ବୃକ୍ଷ ବଲ୍କଳ ପିନ୍ଧାଏ ବିଶ୍ୱାମିତ୍ର ମୁନି ।
ବିବସନ ହୋଇ ରାଣୀ ପୁତ୍ର ଆଉ ରାୟେ
ତିନିଜଣ ନବରରୁ ଚାଲିଯାନ୍ତି ପାୟେ ।
ବାଡ଼ିଏ ଘେନିଣ ମୁନି ଯାନ୍ତି ପଛକତି
ରାଜ୍ୟରେ ନ ରୁହ ବୋଲି ଡାକ ସେ ଛାଡ଼ନ୍ତି ।
ଚାଲି ନ ପାରଇ ସେହୁ ବାଳପୁତ୍ର ଗୋଟି
ଚାଲ ଚାଲ ବୋଲି ମୁନି ଯଷ୍ଟି ଏକ ପିଟି ।
ବଜ୍ର ସମାନ ପ୍ରହାର ବାଜିଲାକ ଯଷ୍ଟି
ମୂର୍ଚ୍ଛାଗତେ ପଡ଼ିଗଲା ସେ କୁମର ଗୋଟି ।
ଆହା ଆହା ପୁତ୍ର ବୋଲି କାନ୍ଦେ ରାଣୀ ଶୈବ୍ୟା
କେଉଁ ଦୋଷ କଲା ମୁନି ଏ ବାଳକ ଅବା ।
ଆରେ ଜଗଦ୍‌ବନ୍ଦନ ମୋ ବାଳପୁତ୍ର ଗୋଟି
ସୁକୁମାର ତୋ ଶରୀର ମହୀଯାଏ ଲୋଟି ।
ମୁହିଁରେ ନନ୍ଦନ ତୋର ଘେନେ କିନା ଉଣା
ବ୍ରାହ୍ମଣ ହୋଇ ଏ କୋପୀ ଏଡ଼େ ନିଉଛୁଣା ।
ବିଶ୍ୱାମିତ୍ର କୋପ କଲେ ରାଣୀ ବାକ୍ୟ ଶୁଣି
କୋପେ ଶୈବ୍ୟାକୁ ବାଡ଼ିଏ ପିଟିଲେ ସେ ପୁଣି
ବ୍ରାହ୍ମଣର କୋପ ଦେଖି ସର୍ବ ବିଶ୍ୱଦେବା
ବୋଇଲେ ମୁନିହୋଇଣ ଏଡ଼େ କୋପୀ ତୁ ବା
ଅକାରଣେ ଦଣ୍ଡଦେଉ ଏ ହରିଶ୍ଚନ୍ଦ୍ରକୁ
ଏହିପରି ନାଶକଲୁ ବଶିଷ୍ଠ ମୁନିଙ୍କୁ ।
ବିଶ୍ୱଦେବାଙ୍କ ବଚନେ କୋପରେ ପ୍ରଜ୍ୱଳି
ସେମାନଙ୍କୁ ଶାପ ଦେଲେ ମହାତପଶାଳୀ ।
ଆରେ ବିଶ୍ୱଦେବା ତୁମ୍ଭେ ଏଡ଼େ ଗର୍ବ ବହ
ଧାତୁବାଦ୍ୟ ତେଜିଣ ରେ ନରଜନ୍ମ ହୁଅ ।
ତାହାଙ୍କ କଥା ନ ଜାଣି ମୋର ଦୋଷ ବାଛ
କୁମ୍ଭୀପାକ ନର୍କେ ପଶି ଜାତ ହୁଅ ମଞ୍ଚ ।
ବିଶ୍ୱାମିତ୍ରଙ୍କ ଶାପରେ ସେ ବିଶ୍ୱଦେବାଏ
ବସିଲେ ମହାଚିନ୍ତାରେ କରି ମହାଭୟେ ।
ଅନାଥ ଜନର କଷ୍ଟ ନ ପାରିଲୁ ସହି
ଶାପ ପାଇଲୁ ପରର ଦୁଃଖେ ଦୁଃଖୀ ହୋଇ ।
ବିଶ୍ୱଦେବେ ବୋଲେ ରାଜା କଲା କେଉଁ ଦୋଷ
ତାଙ୍କ ଉପରେ ଧଇଲ ତୁମ୍ଭେ ଏଡ଼େ ରୋଷ ।
ବିଶ୍ୱାମିତ୍ର ବୋଇଲେ ଯେ ନିଜ ଆଦ୍ୟ କଥା
ବ୍ରହ୍ମର୍ଷି ଆସନେ ବସି ନ ଦେଲେ ବିଧାତା ।
ତିନିମନୁ ଯାଏ ମୁହିଁ ବସି ତପ କଲି
ବ୍ରହ୍ମର୍ଷି ହେବି ମୁଁ ନିରଞ୍ଜନଙ୍କୁ ମାଗିଲି ।

ସ୍ୱର୍ଗକୁ ଅଇଲି ସେହି ପୁରୁଷ ଆଜ୍ଞାରେ
ବ୍ରହ୍ମଋଷି ଭିଆଇଲି ବ୍ରହ୍ମାଙ୍କ ନଗରେ ।
ନିଦାଘ ପୁରୁଷମାନେ ଆଦିକର୍ତ୍ତା ବୋଲି
ଏଥିର ତଦନ୍ତ ମୁହିଁ ଜାଣି ନ ପାରିଲି ।
ସେ ବିଦ୍ୟାଧରଙ୍କୁ ଯେବେ ପାରିଥାନ୍ତି ବୋଧି
ତେବେ ଚରାଚର ମୋର ହୋଇଥାନ୍ତା ସାଧି ।
ଜାଣିପାରି ଗୋଡ଼ାଇଲି କପଟକୁ ଧରି
ସେ ପୁରୁଷ ପଳାଇଲେ ମୋତେ ଡରିକରି ।
ବହୁତ ବୁଲିଲେ ରଖି ନ ପାରିଲେ କେହି
ହରିଶ୍ଚନ୍ଦ୍ର ରାଜାଘରେ ଲୁଚିଲେ ସେ ଯାଇ ।
ମୋର ଭୟେ କେହି ତାଙ୍କୁ ନୋହିଲେ ସମକ୍ଷ
କେଉଁ ଦର୍ପେ ହରିଶ୍ଚନ୍ଦ୍ରେ ହେଲ ମୋ ବିପକ୍ଷ ।
ଅନେକ ମତେ ମାଗିଲି ମୁହିଁ ଏ ରାଜାକୁ
କେବେହେଁ ନ ଦେଲା ଏହି ଦୁଷ୍ଟ ଯେ ଆମ୍ଭଙ୍କୁ ।
ତିନିଲୋକ ମୋ ଚରଣେ କରନ୍ତି ବନ୍ଦନ
ପ୍ରତିଦ୍ୱନ୍ଦ୍ୱୀ ହେଲା ମୋର ଏ ଦୁଷ୍ଟ ରାଜନ ।
କେବଣ ପ୍ରକାରେ ୟାକୁ ନ ପାରିଲେ ଜିଣି
ଦୈବର ସଂଯୋଗ ଏକ ମିଳିଲାକ ପୁଣି ।
ଭୋଳେ ଦୟା ମୋତେ କଲା ରାଜା ହରିଶ୍ଚନ୍ଦ୍ର
ବୋଇଲା ଯାହା ମାଗିବୁ ଦେବି ବିପ୍ରଇନ୍ଦ୍ର ।
ଏକଦିନେ ଇନ୍ଦ୍ର ଦେବ ଆଜ୍ଞାଦେଲେ ମୋତେ
ହରିଶ୍ଚନ୍ଦ୍ରକୁ ରାଜ୍ୟରୁ କାଢ଼ ତୁ ତ୍ୱରିତେ ।
ତହୁଁ ଏହି ପରକାରେ ସୁବିଧା ପାଇଣ
ବେଦପାଠ କଲି ଆସି ହୋଇଣ ବ୍ରାହ୍ମଣ ।
ଦାନ ମୁଁ ମାଗନ୍ତେ ସତ୍ୟ କଲା ଏ ରାଜନ
ବୋଇଲା ଯାହା ମାଗିବୁ ତୋତେ ଦେବି ଦାନ
ରାଜ୍ୟଭାର ସିଂହାସନ ଭଣ୍ଡାରାଦି କରି
ସତ୍ୟକରି ଦେଲା ମୋତେ ଜଳତିଳ ଭରି ।
ତେଣୁ ନେଉଅଛି ୟାକୁ ବେଗେ ଘଉଡ଼ାଇ
ବିଦ୍ୟାଧରମାନେ ପୁଣି ନ ଯାନ୍ତି ପଳାଇ ।
ଏମନ୍ତ ମୋହର ମନେ ଅଛି ବଡ଼ ଦୁଃଖ
ତୁମ୍ଭମାନଙ୍କର ବାକ୍ୟେ ହେଲି ମୁଁ ବିମୁଖ ।
ବିଶ୍ୱଦେବା ବୋଲେ ଋଷି କୂଟବୁଦ୍ଧି କଲୁ
ଶୁଦ୍ଧଚିତ୍ତେ ହରିଚନ୍ଦନକୁ ନ ଜିଣିଲୁ ।
କେବଣ ଦୋଷରେ ଆମ୍ଭଙ୍କୁ ତୁ ପାରୁ ତେଜି
କିସ କରିବୁ ଆମ୍ଭେ ହେ କହ ତପୀ ହେଜି ।
ଆହୋ ଧର୍ମ ଶାସ୍ତ୍ର ଆମ୍ଭେ କରିବୁ ବିଚାର
ଆମ୍ଭଙ୍କୁ କୋପରେ ଶାପ ଦେଲୁ ଯେ ଅପାର ।
ଅଳପ ଦୋଷରେ ଦଣ୍ଡ ଦେଲ ଗୁରୁତର
ମୁକତି କାରଣ ଏବେ କହ ମୁନିବର ।
ବିଶ୍ୱାମିତ୍ର ବୋଲେ ସର୍ବ ବିଶ୍ୱଦେବା ଶୁଣ
ମର୍ତ୍ତ୍ୟଲୋକେ ନରଦେହ କରିବ ଧାରଣ ।
ସୋମବଂଶେ ଜାତ ହେବେ ପଣ୍ଡୁ ଦଣ୍ଡଧର
ତାଙ୍କର ହୋଇବ ପୁଣି ପାଞ୍ଚୋଟି କୁମର ।
ଦ୍ରୌପଦୀ ନାମରେ ହେବେ ତାହାଙ୍କ ବନିତା
ଦ୍ରୁପଦ ରାଜାର ସେହୁ ହୋଇବ ଦୁହିତା ।
ତାହାର ଉଦରେ ତୁମ୍ଭେ ପାଞ୍ଚ ହେବ ଜାତ
ପଞ୍ଚାଳ ନାମ ବହିବ ପାଣ୍ଡବଙ୍କ ସୁତ ।
ଯୁଧିଷ୍ଠିର ଭୀମ ଆଦି ସେହି ପଞ୍ଚଭ୍ରାତ
ସେହି ପାଞ୍ଚଇନ୍ଦ୍ର ହେବେ ତୁମ୍ଭର ଯେ ତାତ ।
କୌରବ ପାଣ୍ଡବ ନାମେ ହେବେ ବଂଶ ବେନି
ରାଜ୍ୟର ନିମନ୍ତେ ହେବେ ସେହୁ ଅନ୍ୟୋଅନି ।
ଆଦ୍ୟ ଦିନ ଭୀଷ୍ମଦେବ ସେନାପତି ହେବ
ଦଶଦିନାନ୍ତରେ ଶରଶଯ୍ୟା ସେ କରିବ ।
ତାହାର ଉତ୍ତାରୁ ଦ୍ରୋଣ ହେବେ ସେନାପତି
ବହୁତ ମାରି ମରିବେ ପାଞ୍ଚଦିନ ରାତି ।
ତଦପରେ ସେନାପତି ହେବ କର୍ଣ୍ଣବୀର
ମହାଘୋର ଯୁଦ୍ଧ ହେବ ତହୁଁ ପରସ୍ପର ।
ସେ ଦିନ ଦୁର୍ଯ୍ୟୋଧନର ଅଠାଣୋଇ ଭାଇ
ଭୀମ ମାରିଣ ତାହାଙ୍କୁ ଦେବ ଯେ ଶୁଆଇ ।
ଆରଦିନ ଭୀମ ଦୁଃଶା ହୋଇବ ସମର
ସମୟରେ ଭୀମ ଭୁଜ ଉପାଡ଼ିବ ତାର ।
ଦ୍ରୌପଦୀ ତାର ଶୋଣିତ କରିବ ସ୍ନାହାନ
ମୁକୁଳିତ କେଶ ତେବେ କରିବ ବନ୍ଧନ ।
ଶଲ୍ୟ ଶକୁନି ପଡ଼ିବେ ଆରଦିନ ରଣେ
ଶେଷ ଗଦା ଯୁଦ୍ଧ ହେବ ଅଷ୍ଟାଦଶ ଦିନେ ।
ଦୁଇଶ ବାସ୍ତରି କ୍ଷୌଣୀ ହତେ ଦୁର୍ଯ୍ୟୋଧନ
ରକତ ନଦୀରେ ଯାଇ ହୋଇବ ଗୋପନ ।
ପାଣ୍ଡବ ସତୁରୀ କ୍ଷୌଣୀ ସଇନ୍ୟ ମରିବେ
ରଣ ଜୟ କରି ତହୁଁ ସେ ପାଣ୍ଡବ ଯିବେ ।
ପାଣ୍ଡବ ପାଞ୍ଚଭାଇଙ୍କୁ ଘେନି ଦାମୋଦର
ପ୍ରବେଶ ହୋଇବେ ଯାଇ କୋଇନ୍ତା ଛାମୁର ।
କୁନ୍ତୀ ବୋଲିବେ ମାଇଲା କେ ଦୁର୍ଯ୍ୟୋଧନକୁ
ସନ୍ନିଧିକୁ ଆସୁ ଅର୍ଘ୍ୟ ଦେବି ମୁଁ ତାହାକୁ ।
ଶୁଣି ସର୍ବେ ପରସ୍ପର ହେବେ ଚାହାଁଚାହିଁ
ବୋଲିବେ ସେହୁ ମରିବା କେହୁ ଜାଣିନାହିଁ ।
ତହୁଁ ପୁତ୍ରକୁ ଅପାର କହିବେ ଧିକ୍କାରି
ଶୁଣି ରଣକ୍ଷେତ୍ରେ ଯିବେ ପ୍ରତିଜ୍ଞାକୁ କରି ।
ମାନଗୋବିନ୍ଦ ଲକ୍ଷ୍ମଣ ପୁତ୍ରେ ଭେଳାକରି
ସାତତାଳ ରକ୍ତନଦୀ ହୋଇଯିବ ପାରି ।

ସେ ଲକ୍ଷ୍ମଣ କୁମାରକୁ ଭୂମି ମଧ୍ୟେ ପୋତି
ଭୀଷ୍ମ ବୋଲେ ବ୍ୟାସସରେ ପଶିବ ନୃପତି ।
ମୃତପିଣ୍ଡ ଖୋଜିବେ ସେ ସବୁ ଓଲଟାଇ
ଦେଖିବେ ମାନଗୋବିନ୍ଦ ରାଜା ତହିଁ ନାହିଁ ।
ଭୀଷ୍ମଙ୍କୁ ପୁଚ୍ଛିଲେ ସେହୁ ତଥ୍ୟ ନ କହିବେ
ସହଦେବଙ୍କୁ ପଚାରି ବ୍ୟାସସରେ ଯିବେ ।
ସିଂହନାଦ ଘେନି ଭୀମ ତିନିରଡ଼ି ଦେବ
ଶୁଣି ଦୁର୍ଯ୍ୟୋଧନ ରାଜା କମ୍ପମାନ ହେବ ।
ଲକ୍ଷ୍ମୀ ନାରାୟଣୀଙ୍କୁ ସେ ପକାଇବ ପେଲି
ବ୍ୟାସସରୁ ବାହାରିବ ରେରେକାର ବୋଲି ।
ମାଲଯୁଦ୍ଧ ହେବ ତହୁଁ ଭୀମ ଦୁର୍ଯ୍ୟୋଧନ
ଭୀମ ଗଦାରେ ନୃପତି ଜାନୁ ହେବ ଭଗ୍ନ ।
ରାଜା ମୁକୁଟକୁ ଭୀମ ମର୍ଦ୍ଦିଦେବ ପାଦେ
ରଣଜୟୀ ପାଣ୍ଡବେ ଯେ ତହୁଁ ଯିବେ ହାଦେ ।
ପାଞ୍ଚାଳୀସୁତେ ନିଦ୍ରିତ ହୋଇବେ ପଲ୍ୟଙ୍କେ
ଦୁଇକ୍ଷୌଣୀ ବଳ ଜଗି ରହି କେ ନିଃଶଙ୍କେ ।
ଦୁର୍ଯ୍ୟୋଧନ ନିକଟକୁ ଆସି ଅଶ୍ୱତ୍ଥାମା
ମୋତେ ସେନାପତି କର ବୋଲିବ ମହାତ୍ମା ।
ଶୁଣି ତୃପତ ହୋଇବ ମାନଚକ୍ରବର୍ତ୍ତୀ
ଶାଢ଼ୀ ଦେଇଣ କରିବ ତହୁଁ ସେନାପତି ।
ଜଇନ୍ତା ନଗ୍ରେ ପଶିବ ଯାଇଣ ରାତିରେ
କର୍ଣ୍ଣ କଟାରୀକି ସେହୁ ଧରିଥିବ କରେ ।
ଧୃଷ୍ଟଦ୍ୟୁମ୍ନ ଅଟେ ତାର ପିତାର ବଇରୀ
ବଧ କରିବ ତାହାକୁ ମାରି ସେ କଟାରୀ ।
ତୁମ୍ଭେ ପାଞ୍ଚାଳୀକୁମର ଖଟେ ଥିବ ଶୋଇ
ସାତ ସାତ ବରଷର ତୁମ୍ଭେ ପାଞ୍ଚଭାଇ ।
ଅଜ୍ଞାନ ପଣରେ ମୋତେ କହି ହେଲ ଦୋଷୀ
ସେ ଦିନ ଶିରଚ୍ଛେଦନ ହେବ ବୋଲେ ଋଷି ।
ଅଶ୍ୱତ୍ଥାମାର ହସ୍ତରେ ହୋଇବ ଚ୍ଛେଦନ
ବାହୁଡ଼ି ଆସିବ ପୁଣି ଆପଣା ଭୁବନ ।
ବିଶ୍ୱଦେବା ପାଞ୍ଚଜଣ ବିଶ୍ୱାମିତ୍ର ଶାପେ
ଦ୍ରୌପଦୀ ଗର୍ଭେ ପଶିଲେ ବାଳକ ସ୍ୱରୂପେ ।
ପାଣ୍ଡବଙ୍କ ବନବାସ ହେବ ସାତବର୍ଷ
ପାଞ୍ଚାଳୀ ଗର୍ଭରେ ପାଞ୍ଚେ ହୋଇଲେ ପ୍ରବେଶ
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ପୁଣି ଯାହା କଲା ହରିଚନ୍ଦନ ନୃପତି ।
କଉଶିକର କୋପରେ ସେ ତିନିପରାଣୀ
ବନସ୍ତେ ପଶିଲେ ପୁତ୍ର ଘେନି ରାଜାରାଣୀ ।
ଅନେକ ବନ କନ୍ଦର ଭ୍ରମିଲେ ନୃପତି
ଫଳମୂଳ ପତ୍ର ଯାହା ପାଆନ୍ତି ଭୁଞ୍ଜନ୍ତି ।

ବୃକ୍ଷତଳରେ ରହିଲେ କରିଣ କୁଟୀର
ରାଜ୍ୟଭୋଗ ସୁଖ କଥା ନ କରି ବିଚାର ।
ଶୀତ ଖରା ବର୍ଷା ବନେ ସମସ୍ତେ ସହନ୍ତି
ପୁତ୍ର ପତ୍ନୀ ବ୍ୟତିରେକ ଆନ କେ ନାହାନ୍ତି ।
ଏ ବିଧିରେ ବଳେ ବନବାସ କରି ରହି
ରାଜା ଆଗେ ରାଣୀ ଦିନେ ପ୍ରବେଶ କରଇ ।
ଭୋ ରାଜନ ନଗ୍ରାଶ୍ରିତେ ଯାଇଣ ରହିବା
ଭିକ୍ଷା ମାଗି ପୁତ୍ରଟିକି ପାଳନ କରିବା ।
ଗ୍ରାମ ଥାଉଁ କିପାଁ ବନେ କଷ୍ଟକୁ ପାଇବା
ହରିଚନ୍ଦନ ବୋଇଲେ ଏହା ନ କହିବା ।
ଅପ୍ରୟୋଜନ ଲୋକର ମରଣହିଁ ସୁଖ
ଏ ମୋର ସୀମା କେମନ୍ତେ ମାଗିବାକ ଭିକ ।
ଚାଲ ଚାଲ ଏବେ ବନପଥେ ଆମ୍ଭେ ଯିବା
କାଶୀରେ ରହି ଦେହକୁ ରକ୍ଷା କରିଥିବା ।
ଅନ୍ତରୀକ୍ଷର ପୁରୁଷ ଛନ୍ତି ହୋଇ ଶ୍ରେଷ୍ଠ
ପୂର୍ବେ କହିଥିଲେ ମୋତେ ବ୍ୟାସମୁନି ଶ୍ରେଷ୍ଠ ।
ଈଶ୍ୱରଙ୍କ ତହିଁ ବ୍ରହ୍ମା କପୋଳ ଫିଟାଇ
ପୁଣ୍ୟତୀର୍ଥ ଅଶ୍ୱମେଧ ଘାଟ ଯେ ଅଟଇ ।
ସେ ମଣିକର୍ଣ୍ଣିକା ତୀର୍ଥେ ଦେହ ଯେ ଛାଡ଼ଇ
ଦେବତା ହୋଇଣ ସ୍ୱର୍ଗଭୁବନେ ବସଇ ।
ତଦନ୍ତରେ ରାଜା ହୋଇ ସେହୁ ହୁଏ ଜାତ
ଅନ୍ତର ନୁହନ୍ତି ତେଣୁ ଦେବ ଦଇବତ ।
ସେ ପୁରେ ମରିଲେ ସଖୀ ବହୁପୁଣ୍ୟ ପାଇ
ଅତଏବ ଚାଲ ତହିଁ ରହିବାକ ଯାଇ ।
ରାଜାର ବଚନ ଶୁଣି ବୋଧଗଲେ ରାଣୀ
ଚଳନ୍ତି ସେ ତିନିପ୍ରାଣୀ ବନମାର୍ଗେ ଜିଣି ।
କାହିଁ ନ ରହନ୍ତି କ୍ଷଣେ ନ କରି ବିଶ୍ରାମ
ପାଇଲେ ରହନ୍ତି ଅବା ମୁନିଙ୍କ ଆଶ୍ରମ ।
ଅତ୍ୟନ୍ତ ଦୁର୍ବଳ ଦେଖି ସେହି ସବୁ ଋଷି
ହରିଚନ୍ଦନ ରାଜାଙ୍କୁ ବଚନ ପ୍ରକାଶି ।
କେବଣ ମହାତ୍ମା ତୁହି ନ ପାରୁଛୁ ଚିହ୍ନି
ରାଜା ବୋଇଲେ କହନ୍ତେ କିସ ହେବ ମୁନି ।
ବାରାଣସୀକୁ ଯିବାକୁ ବାଟ ଏବେ କହ
ଶୁଣି ମୁନିଙ୍କର ଦୟା ବସିଲାକ ଦେହ ।
ପକ୍ଷକେ ଯାଇ ପ୍ରବେଶ ହେବୁ ବାରାଣସୀ
ଯୋଗବଳରେ ଆମ୍ଭଙ୍କୁ ଏହା ପୁଣି ଦିଶି ।
ସୂର୍ଯ୍ୟବଂଶେ ଜାତ ତୁହି ଅଟୁ ହରିଶ୍ଚନ୍ଦ୍ର
କୌଶିକ ମୁନିର ତୁଳେ କିପାଁ କଲୁ ଦ୍ୱନ୍ଦ୍ୱ ।
ତାର କୂଟକଥା ଜାଣି ନ ପାରିଲୁ ଭଲା
ମାୟାବଳେ ତୋ ସମ୍ପଦ ସକଳ ହରିଲା ।

ସେ ତୋହର ଅଇଶ୍ୱର୍ଯ୍ୟ ନ ପାରିଲା ଦେଖି
ଅକାରଣରେ ଅଇଲୁ ରାଜ୍ୟ ତୁ ଉପେକ୍ଷି ।
ଆମ୍ଭେ ବୋଲୁଅଛୁ ଏବେ ବାହୁଡ଼ି ଯାଅସି
ଶୁଣି ହରିଶ୍ଚନ୍ଦ୍ର ରାଜା ମନେ ହେଲେ ତ୍ରାସି ।
ଦେବାର ଧର୍ମ ମୋହର ନ ହୋଇବ ଆନ
ଏହି ଅନୀତି ନ କହ ମୋତେ ତପୋଧନ ।
ଏତେ କହି ସେ ଆଶ୍ରମ ରାଜା ତେଜିଗଲେ
କ୍ଷଣକରେ କାଶୀପୁରେ ପ୍ରବେଶ ହୋଇଲେ ।
ଦେଖିଲେ ସେ ପୁରମୟ ଧବଳର ଜ୍ୟୋତି
ନେତର ପତାଙ୍ଗ ଫରହରରେ ଉଡ଼ନ୍ତି ।
ମେଢ଼ ମଣ୍ଡପ ଦେଉଳ ଆବର ଅଟ୍ଟାଳୀ
ନୀଳମେଘେ ଦିଶେ ଯେହ୍ନେ ଶରତ ବିଜୁଳି ।
ମନମଥ ଜିଣିକରି ସର୍ବଜନ ମୂର୍ତ୍ତି
ଦିବ୍ୟବିଳାସିନୀ ନାରୀ ରଙ୍ଗେ ବିଳସନ୍ତି ।
ସରଳା ଶବଦ କରେ ତାଙ୍କ ବେନି ଭୁଜେ
ପାଦରେ ନୂପୁର ମଣି ରତନକୁ ଗଞ୍ଜେ ।
ସେହି ଦିବ୍ୟପୁର ଦେଖି ରାଜା ମନତୋଷ
ବିଚାର କରନ୍ତି ଏହି ବାରାଣସୀ ଦେଶ ।
ଏବେ ରେ ସଖି ବଞ୍ଚିବା କେଉଁପରି ଏଥ
ଭିକ୍ଷା ଆଚାର କରିବା ବୋଲେ ନରନାଥ ।
ବୃକ୍ଷ ବଲ୍‌କଳ ପିନ୍ଧିଣ ନଗରେ ପଶିବା
କେଉଁ ଭିକ୍ଷାକରି ଏତେ କାଳକୁ କ୍ଷେପିବା ।
ମଣ୍ଡପ କଣେ ରହିଲେ ରଜନୀ ଦିବସ
ସେ ନଗ୍ରେ ବୁଲି ବୁଲିଣ ଯହିଁ ମିଳେ ଯିସ ।
ସ୍ୱାମୀ ବିଶ୍ୱନାଥଙ୍କୁ ଯେ ତହୁଁ ଭାଗେ ଦ୍ୟନ୍ତି
ଦିନେ ଅଳସ ନ କରି ସବୁଦିନେ ଯାନ୍ତି ।
ଦଶାଶ୍ୱମେଧ ତୀର୍ଥରେ ନିତ୍ୟକର୍ମ ସାରି
ଏକଚିତ୍ତେ ସୁମରନ୍ତି ଦେବ ତ୍ରିପୁରାରି ।
ପୁଣିହିଁ ତପ ଦେଖନ୍ତେ ଦେବ ଧର୍ମଗଣ
ଯାଇଣ କହିଲେ ବିଶ୍ୱାମିତ୍ରଙ୍କ ଆଗେଣ ।
ଆସ ଆହେ କଉଶିକ ହରିଶ୍ଚନ୍ଦ୍ର ପାଶ
ଯେମନ୍ତେ ହୁଏ ତା ଧର୍ମ ପୁଣ କର ନାଶ ।
ଆସନ୍ତି ସେ ବିଶ୍ୱାମିତ୍ର କରି ମହାକୋପ
କାଶୀପୁରରେ ମିଳିଲେ ରାଜାର ସମୀପ ।
ବୋଇଲେ ରେ ରାଜା ଗୁପ୍ତେ ତପ କରୁ ଏଥ
ଦକ୍ଷିଣା ନ ଦେଉ ଏହା କେଉଁ ପୁରୁଷାର୍ଥ ।
ଦାନ ଦେଇ କି ନିମନ୍ତେ ଦକ୍ଷିଣା ନ ଦେଉ
ଧର୍ମର ଯେ ଫଳଶ୍ରୁତି ପାଇବୁ ତୁ କାହୁଁ ।
ମୋତେ ଭଣ୍ଡାଇଲୁ ତୁହି ମାୟାଦାନ ଦେଇ
ଦକ୍ଷିଣା ନ ଦେଉ ଯେବେ ତୋର ଲଜ୍ଜା ନାହିଁ ।
ଋଷିଙ୍କି ଭଣ୍ଡାଇବାର ନୁହଇ ଯୁକତି
ପୁନରପି ମୋହଠାରୁ ଫେରିନିଅ ପୃଥ୍ୱୀ ।
ଶୁଣି ରାଜା ଶିବ ଶିବ ବୋଲି କର୍ଣ୍ଣ ଛୁଇଁ
ବୋଲନ୍ତି ଧର୍ମ ନାଶିବି ଦେଲା ଦାନ ନେଇ ।
ବୋଲନ୍ତି ବିଶ୍ୱ ଦକ୍ଷିଣା ଅବା କାହୁଁ ଦେବି
ଲଜ୍ଜା ନିମନ୍ତେ ଦେହକୁ ଅବଶ୍ୟ ବିକିବି ।
ବିଶ୍ୱାମିତ୍ର ବୋଇଲେ ତୁ ବିକାହେବୁ କେତେ
ମୋ ଦକ୍ଷିଣା ଶୁଝିବୁ ତୁ କାହୁଁ ଅବା ମୋତେ ।
ତୋ ଭାରିଯା ପୁତ୍ର ତୁହି ହେଲେ ତିନିଜଣ
ବିକ୍ରୟ ହୋଇଲେ ଅବା ଶୁଝିବୁ ମୋ ଋଣ ।
ହରିଚନ୍ଦନ ପଚାରେ ଶୈବ୍ୟା ପାଶେ ଯାଇ
ତୋତେ ବିକିଣ ଦକ୍ଷିଣା ଏବେ ଶୁଝିବଇଁ ।
ରାଜାର ବଚନେ ରାଣୀ ଚାହେଁ ତାଙ୍କ ମୁଖ
ବୋଲେ ମୋତେ ବିକି ନାଥ ସତ୍ୟ ଧର୍ମ ରଖ ।
ଧର୍ମ ରଖିଥିଲେ ପ୍ରାଣୀ ହୁଅଇ ଜୀବିତ
ଲଜ୍ଜା କଲେ କି ହୋଇବା ବିକିବ ଉଚିତ ।
ରାଜା ବୋଇଲେ ହେ ମୁନି ରହ ଏକଦିନ
ମୋହର ପତ୍ନୀ ବିକିଣ ତୋତେ ଦେବି ଧନ ।
କଉଶିକ ବୋଧି ତହୁଁ ଗଲେ ନରସାଇଁ
ଶୈବ୍ୟା ଶିରେ ଢ଼ାଳ ଥୋଇ ତିରଣକୁ ଦେଇ ।
ଦାଣ୍ଡରେ ବୁଲନ୍ତି ନେଇ ଆପଣାର ସାଥେ
ଶୁକ୍ରଧ୍ୱଜ ନାମେ ବିପ୍ର ମିଳିଲାକ ପଥେ ।
ଅତିକ୍ଷୀଣ ବୃଦ୍ଧ ରୋଗ ପ୍ରବଳ ଶରୀର
କୁବେର ସମାନେ ଧନ ଅଛଇ ତାହାର ।
ସେ ବିପ୍ର ଦେଖି ରାଜାଙ୍କୁ ବଚନ ଯେ ପୁଛି
ଏ ସୁନ୍ଦରୀ ଶିର ଢ଼ାଳେ କୁଟା କିପାଁ ଅଛି ।
ରାଜା ବୋଇଲେ ବିପ୍ର ଏ ବିକ୍ରୟ ପଦାର୍ଥ
ତେଣୁ ଯେ ଶରଣ ଖୋସିଦେଲି ତାର ମାଥ ।
ବିପ୍ର ବୋଲେ ଏ ସୁନ୍ଦରୀ ଯୁବତୀ ଅଟଇ
ତୁ ମଧ କନ୍ଦର୍ପ ପ୍ରାୟ ଦିଶୁଅଛୁ ଥାଇ ।
କେବଣ ନିମନ୍ତେ ଯାକୁ ବିକ୍ରୟ କରିବୁ
ଏ ବାମା ତେଜି କେମନ୍ତେ ଦେହ ତୁ ଧରିବୁ ।
ବ୍ରାହ୍ମଣ ବୋଲଇ ତୁହି ଶୁଣ ଲୋ କାମିନୀ
ତୁ କିପାଁ ବିକ୍ରୟ ହେଉ ମୋ ଆଗେ କହନି ।
ପୁରୁଷ ବଶ ହୋଇବେ ଦେଖି ତୋର ରୂପ
ବୃଥା ନୁହଇଟି ଜାଣ ପୂର୍ବାର୍ଜିତ ପାପ ।
ଯେ ଅବା ତୋତେ କିଣିବ ଆଲୋ ଶୁଭ୍ରକେଶି
ଦିନରାତ୍ର ତାର ଟିକି ହେବୁ ତୁହି ଦାସୀ ।
ଶୈବ୍ୟା ବୋଲେ ମୋର ପ୍ରଭୁ ବିକିବେ ବୋଇଲେ
ଧର୍ମ ନାଶ ହେବ ମୋର ନାସ୍ତି ମୁଁ କରିଲେ ।

ଯେଣୁ ସେ ଭର୍ତ୍ତା ମୋହର ଦେହର କରତା
ସେ ଯାହା କହିବେ ନାହିଁ ମୋହର କ୍ଷମତା ।
ସ୍ୱାମୀଙ୍କୁ ପଚାରି ବିପ୍ର ମୋତେ ନିଅ କିଣି
ଏମନ୍ତ ବଚନ ଯହୁଁ କହେ ଶୈବ୍ୟାରାଣୀ ।
ରାଣୀ ବାକ୍ୟେ ବିପ୍ରଯାଏ ରାଜାଙ୍କର ପାଶେ
କୋମଳ ବଚନେ ତାଙ୍କୁ କହଇ ବିଶ୍ୱାସେ ।
ଯୁକତେ ଜାଣିଲୁ ଆମ୍ଭେ ପରନାରୀ ଏହୁ
ବଚନେ ପ୍ରବୋଧି ତାକୁ ବିକି ଲୋଡୁ ତହୁଁ ।
ଶୁଣ ରାଜା ବୋଲେ ମୋର ପ୍ରାଣର କାହାଣୀ
ସାକ୍ଷାତେ ପୁତ୍ରବତୀ ଏ କୁଳ ଉଦ୍ଧାରିଣୀ ।
ମୋର ଉପଯୋଗୀ ଏହୁ ଅଟେ ସଦାଦିନ
କୁତ୍ସିତ କୁବୁଦ୍ଧି ଧନେ ନାସ୍ତି ମୋର ମନ ।
ଶୁକ୍ରଧ୍ୱଜ ବୋଲେ ତହୁଁ ଶୁଣରେ ରାଉତ
ଧନ ଦେଇ ମୁଁ କିଣିବି ତୋର କି ସମ୍ମତ ।
ମଉନେ ରହିଣ ରାଜା ସନମତ କଲା
ତହୁଁ ବିପ୍ରବୋଲେ ମୂଲ୍ୟ କେତେ ଯେ ହୋଇଲା
ନୃପତି ବୋଇଲା ବିପ୍ର କି ପୁଚ୍ଛ ଆମ୍ଭଙ୍କୁ
ଯେତେ ଧନ ହେବ ଏହି ନାରୀର ତୁଲକୁ ।
ତୁମ୍ଭେ କି ନ ଜାଣ ମୁହିଁ କିସ ବା କହିବି
ଯଥାର୍ଥ ପ୍ରକାରେ ଧନ ଦେଲେ ମୁହିଁ ଦେବି ।
ଏ ପୁତ୍ରଗୋଟି ତାହାର ମାତାତୁଲେ ଥାଉ
ଦୁଇପଣ ମୂଲ୍ୟ ଧନ ଦିଅ ଆମ୍ଭେ ଯାଉଁ ।
ବ୍ରାହ୍ମଣ ବୋଇଲା ପୁତ୍ର ଏହା ସଙ୍ଗେ ଥାନ୍ତେ
ଉପହାସ କଥା ସିନା ପାଇବୁ ଜଗତେ ।
ଏଣୁକରି ଏହି କଥା ନୁହଇ ଉଚିତ
ଶୈବ୍ୟା ବୋଲେ ଯହିଁ ମାତା ତହିଁ ଥାଏ ସୁତ ।
ଅପୋଷକ ଲୋକ ଯାକୁ କିଣି ଧର୍ମ ପାଇ
ମାତା ପୁତ୍ରଙ୍କୁ ବ୍ରାହ୍ମଣ କିଣେ ଧନ ଦେଇ ।
ମାତା ପୁତ୍ରେ ଦୁହେଁଯାକ ହେଲେ ଅନ୍ୟସ୍ଥାନ
ତାହାଙ୍କୁ ବିକ୍ରୟ କରି ଶ୍ରୀହରିଚନ୍ଦନ ।
ବିଶ୍ୱାମିତ୍ରର ସନ୍ନିଧେ ଦେଲେ ନେଇ ଧନ
ଦେଖି ଅସନ୍ତୋଷ ହେଲେ ଗାଧିର ନନ୍ଦନ ।
ବଦୟନ୍ତି ବିଶ୍ୱାମିତ୍ର ଶୁଣ ନରନାଥ
ଏବେ ତୁ ବିକ୍ରୟ ହୋଇ ଧନ ଦେ ତୁରିତ ।
ହରିଚନ୍ଦନ ବୋଇଲେ ଶୁଣ ତପୋବନ୍ତ
ଆପଣାକୁ ଆପେ ବିକ୍ରି ହୋଇବି କେମନ୍ତ ।
କେ ମୋତେ କିଣିବ ମୁହିଁ ଯାଚଞ୍ଚା ହୋଇଲି
କ୍ଷଣକେ ରହ ହେ ମୁନି ନଗ୍ର ଆସେ ବୁଲି ।
ବ୍ରାହ୍ମଣଙ୍କୁ ବୁଝାଇଣ ନଗ୍ରରେ ବୁଲନ୍ତେ
ପ୍ରବଳ ନାମେ ଚଣ୍ଡାଳ ମିଳିଲାକ ପଥେ ।
କରେ ସୁରାଭାଣ୍ଡ ଆଉ ଗୋମାଂସର ଚର୍ବୀ
ନିଶା ଭୋଳେ ହଲି ହଲି ଚାଲେ ହୋଇ ଗର୍ବୀ ।
ରାଜାକୁ ଦେଖିଣ ସେହୁ ବଚନ ବୋଲଇ
କହ ମହାତମା ତୁମ୍ଭେ ବୁଲ କାହିଁପାଇଁ ।
ହରିଚନ୍ଦନ ବୋଇଲେ ଏ ରାଜ୍ୟ ଏସନ
ମୋତେ କିଣିବାକୁ କେହି ନୋହିଲେ ଭାଜନ ।
ଶୁଣି ଚଣ୍ଡାଳ ବୋଇଲା ଦେବି ମୁହିଁ ବିତ୍ତ
ଜାତିରେ ଚଣ୍ଡାଳ ମୁହିଁ ଅଟେ ଅମହତ୍ତ୍ୱ ।
ରାଜନ ବୋଇଲେ ତୁହି ନ ହେଉ ଚଣ୍ଡାଳ
ମୋତେ ଜଣାଯାଏ ଅଟୁ କେଉଁ ଦିଗପାଳ ।
ଚଣ୍ଡାଳ ବୋଇଲା ତହୁଁ କେତେ ଧନ ହେବ
ରାଜା ବୋଇଲେ ମୋ ମୂଲ୍ୟ ମୋ ସମ ହୋଇବ
ପଞ୍ଚବିଂଶ ପଳ ଶୁଦ୍ଧ ଦଗଧ କାଞ୍ଚନ
ମୋହର ସଦୃଶ ମୂଲ୍ୟ ଏତେ ବିଦ୍ୟମାନ ।
ଯଥାର୍ଥ ଉଚିତ ଯେବେ ଦେବୁ ତୁ ପ୍ରତ୍ୟକ୍ଷ
ଶୁଦ୍ଧ ସୁବର୍ଣ୍ଣ ଦେବୁ ତୁ ଜାଣ ଏକଲକ୍ଷ ।
ସେ ଚଣ୍ଡାଳ ଧନ ଦେଇ କିଣିଲା ରାଜାକୁ
ଶୁକ୍ରଧ୍ୱଜ କିଣେ ଯହୁଁ ସେ ମାତା ପୁତ୍ରକୁ ।
ତହୁଁ ବୋଲେ ଗୋ ସୁନ୍ଦରୀ ମୋ ଭୁଜକୁ ଧର
ସମ୍ଭାଳି ସୁଲକ୍ଷଣୀ ଲୋ ମୋତେ ନିଅ ଘର ।
ଏ ବସନ ଖଣ୍ଡ ମୋର ଘେନ ତୋର ହସ୍ତେ
ହରିଶ୍ଚନ୍ଦ୍ର ଦେଖି କରି ତାଡ଼େ ନିଜମାଥେ ।
ମାତାକୁ ଘେନି ଚଳନ୍ତି ତା ପୁତ୍ର ରୋହିତ
ମାତା ମାତା ବୋଲି ଧାଏଁ ତାହାର ପଶ୍ଚାତ ।
ମୋତେ ଛାଡ଼ିଣ ମାତା ଲୋ କେଣିକୁ ତୁ ଯିବୁ
ତୁ ଆଜ ବିଚ୍ଛେଦ ହେଲୁ କାରେ ମୋତେ ଦେବୁ
ଶୈବ୍ୟା ପ୍ରକାଶ କରଇ ପୁତ୍ର ମୁଖ ଚାହିଁ
ଆସ ବାବୁ ଯିବା ଆମ୍ଭ ପୂର୍ବ କର୍ମ ଯହିଁ ।
ଧନ ଦେଇ ବିପ୍ର ମୋତେ ନେଉଅଛି କିଣି
କିପାଇଁ ଆକୁଳ ହେଉ ଆରେ ପୁତ୍ରମଣି ।
କହି ଦଶଦିଶ ଚାହିଁ କାନ୍ଦଇ ଜନନୀ
ଉପ୍ରୋଧ ନ କରି ବିପ୍ର କହେ କଟୁବାଣୀ ।
ପୁତ୍ରରେ ଯେବେ ତୋ ପ୍ରୀତି ଯାଅ ଆନଠାରେ
ଧନ ବାହୁଡ଼ାଇ ଏବେ ଦିଅ ତୁ ସତ୍ୱରେ ।
କୃପଣେ ବ୍ରାହ୍ମଣ ଯହୁଁ କହିଲାକ ରାଗେ
ଶୋକେ ଶୈବ୍ୟାରାଣୀ କହେ ବ୍ରାହ୍ମଣର ଆଗେ ।
ଗର୍ଭରୁ ଜାତ କରି ମୁଁ କେମନ୍ତେ ମୂର୍ଚ୍ଛିବି
ପୁତ୍ରର ବିହୁନେ ନିଶ୍ଚେ ଶୋକରେ ମଜ୍ଜିବି ।
ଯାର ଧନଦ୍ରବ୍ୟ ନାହିଁ ସେହି ସେ ଚଣ୍ଡାଳ
ଯାବତ ଧର୍ମକୁ ସିନା ଧନ ଅଟେ ମୂଳ ।

ଶୈବ୍ୟା ରାଣୀର ବଚନ ଶୁଣି ଏ ପ୍ରକାର
ବ୍ରାହ୍ମଣ ଚଳିଲା ତହୁଁ ଆପଣା ନବର ।
ପଞ୍ଚବିଂଶପଳ ସ୍ୱର୍ଣ୍ଣ ତହୁଁ ରାୟେ ଘେନି
ଦେଇଣ କରିଲେ ତୋଷ ବିଶ୍ୱାମିତ୍ର ମୁନି ।
ବାହୁଡ଼ି ମିଳିଲେ ରାଜା ଚଣ୍ଡାଳର ଦ୍ୱାର
ଦେଖିଣ ଚଣ୍ଡାଳ ତାକୁ କହିଲା ଉତ୍ତର ।
ମୋହର ବଚନ ତୁମ୍ଭେ ଶୁଣ ହେ ମାନବ
ସମାର୍ଜ୍ଜନ କରି ଅନ୍ନ ଯାଇଣ ଖାଇବ ।
ହାଣ୍ଡିତଣ୍ଡୁଳ ନେଇଣ ସର ତଟେ ନିତି
ରାନ୍ଧିଣ ଆହର କରି ରଖ ତୋର ଜାତି ।
ଶ୍ମଶାନରେ ଅଧିକାର ଦେଲଇଁ ମୁଁ ତୋତେ
ମୃତପିଣ୍ଡ ଦହନରେ ଧନ ଦେବୁ ମୋତେ ।
ଦହନ ଉବୁରା କାଠ ସକଳ ରଖିବୁ
ପାଞ୍ଚରତି ସୁବର୍ଣ୍ଣ ଯେ ତାଙ୍କଠାରୁ ନେବୁ ।
ତହିଁରୁ ରତିଏ ତୋର କ୍ଷମେ ଲବେ ନେବୁ
ବାକୀ ଚାରିରତି ସ୍ୱର୍ଣ୍ଣ ମୋତେ ଆଣି ଦେବୁ ।
ତହିଁର ବେଭାର ସବୁ କହିଲିରେ ବାବୁ
ଆମ୍ଭାକୁ ସନ୍ତୋଷ କରି ରଖ ତୋର ବପୁ ।
ଦିବସେ ବରାହ ପଲ ଚରାଇ ବୁଲିବୁ
ରାତ୍ରକାଳେ ଶ୍ମଶାନକୁ ଜଗିଣ ରହିବୁ ।
କୁଡ଼ିଆ ଖଣ୍ଡିକ କରି ଶ୍ମଶାନରେ ରହି
ଚଣ୍ଡାଳର ଅନ୍ନ ଖାଇ ତୃପ୍ତ ତୋର ଦେହୀ ।
ନିତ୍ୟ ପ୍ରାତଃସ୍ନାନ କରି କରେ ଦେବପୂଜା
ବିଶ୍ୱନାଥକୁ ଦଇନୀ କରଇ ସେ ରାଜା ।
ଏହିପରି କରିବାର ନିତ୍ୟ ତାର ବ୍ରତ
ରହିଲା ରାଜା ହୋଇଣ ଚଣ୍ଡାଳର ଭୃତ୍ୟ ।
ଦୁଃଖରେ ପଡ଼ିଣ ମଧ ଆତ୍ମା ନୁହେଁ ଦହି
ଦୁଃଖକୁ ସୁଖ ପ୍ରାୟେକ କରିଣ ମଣଇ ।
ନମସ୍ତେ ହେ ଦିନକର କମଳ ଲୋଚନ
ଛାୟାର ବଲ୍ଲଭ ତୁମ୍ଭେ ଅନନ୍ତ ସମାନ ।
କଉତୁକେ ରଥେ ସପ୍ତଅଶ୍ୱ ଅଛ ଯୋଚି
କରୁଣା ବତ୍ସଳ ନାଥ ଜୟ ତୁ ବିରଞ୍ଚି ।
ଜୟ କମଳ ଲୋଚନ ତୁହି ପାରିକର
ଇଦଂଭୂତନାଥ ମୋତେ କର ପ୍ରତିକାର ।
ହରିଚନ୍ଦନ ବୋଲଇ ଶୁଣ ହେ ଅନନ୍ତ
ଚଣ୍ଡାଳ ଘରରେ ମୁହିଁ ହୋଇଲି ବିକ୍ରୀତ ।
ବ୍ରାହ୍ମଣ ଘରେ ରହିଲେ ପୁତ୍ର ପତ୍ନୀ ଏବେ
ଏ ଜନ୍ତୁ ଗୃହରେ ମଳ ନ ତେଜନ୍ତୁ କେବେ ।
ଏତେକ ମାଗଇ ତୋତେ ଗଗନ ବିହାରୀ
ତୋର ପ୍ରସାଦରେ ମୁହିଁ ହୋଇଲଇଁ ପାରି ।

ଅଗସ୍ତି ବୋଇଲେ ତୁମ୍ଭେ ଶୁଣ ମହୀପାଳ
ଆଦିତ୍ୟ ବରେ ବରାହ ନ ତେଜିଲେ ମଳ ।
ଏ ବିଧିରେ ହରିଶ୍ଚନ୍ଦ୍ର ଚଣ୍ଡାଳର ଭୃତ୍ୟ
ଦୃଢ଼ମନେ ସଦା ସେହୁ ସେବେ ବିଶ୍ୱନାଥ ।
ଏମନ୍ତେ ବିପ୍ରର ଘରେ ରହିଲେକ ରାଣୀ
ବାହାର ପାଇଟି କରେ ପରିଚାରୀ ଜାଣି ।
ପୁତ୍ରକୁ ଧରି ସନ୍ତାପ କରଇ ସେ ରାଣୀ
ସ୍ୱାମୀଠାରେ ସଦା ମନ ଦିବସ ରଜନୀ ।
ରୋହିତ କୁମର ବୋଲେ ମାତା ମୁଖ ଚାହିଁ
ମୋହର ପିଅର ଏବେ ରହିଛନ୍ତି କାହିଁ ।
ଜନନୀ ବୋଲନ୍ତି ସେହି ଆମ୍ଭଙ୍କୁ ବିକିଲେ
ଲଜ୍ଜାଭରେ କାହିଁଯାଇ ଗୁପତେ ରହିଲେ ।
ପୁତ୍ର ବୋଲଇ ଏଠାରୁ କେତେକାଳେ ଯିବା
ପିତାଙ୍କର ଭେଟ କେତେ ଦିନରେ ପାଇବା ।
ଜନନୀ ବୋଇଲା ପିତା ଯେବେ ଦେବେ ଧନ
ତେବେ ଯାଇ ଆମ୍ଭେ ଏଥୁ କରିବା ଗମନ ।
ଦେବ ପିତୃଗଣ ଯେବେ ଆସି ହେବେ ସାହା
ତେବେ ସେହି ଧନ ଦେଇ ପାରନ୍ତି ମୋ ନାହା
ମାତା ପୁତ୍ରଙ୍କ ବିଚାର ହେଲା ଏହି କଥା
ଗତ କଥାକୁ ସୁମରି ମନେ ନାହିଁ ବ୍ୟଥା ।
ଅତି ଦୁଃଖ ପାଇ ମଧ ଧର୍ମ ଅଛି ରଖି
ଦାସୀ ବୃତ୍ତିରେ ରହିଣ ଯେ ଶରଦମୁଖୀ ।
ବିଚାରେ କେତେକାଳରେ ଯିବ ଆମ୍ଭ କଷ୍ଟ
କର୍ତ୍ତାକୁ ଏ ସବୁ କଥା ଅଟଇ ନିକଟ ।
ଭୋ ଧର୍ମଦେବତା ଫେଡ଼ ଆମ୍ଭର କଷଣ
ଏହିରୂପେ ସଦାବେଳେ କରନ୍ତି ସ୍ମରଣ ।
ବହୁତ ଦୁଃଖ ସହିଣ ଧର୍ମକୁ ରଖିଲେ
ନିଜ ରାଜ୍ୟ ଛାଡ଼ି ଭୃତ୍ୟପଣରେ ଖଟିଲେ ।
ଯମ ଅଗ୍ନି ଘେନି ଇନ୍ଦ୍ର କରଇ ବିଚାର
ଏତେ ଦୁଃଖ ନ ଛାଡ଼ିଲେ ସତ୍ୟର ଆଚାର ।
ଆଉ କେଉଁ ରୂପେ ତାଙ୍କ ଧର୍ମ ହେବ ନାଶ
ତା ରୋହିତ କୁମରକୁ ସର୍ପକରୁ ଦଂଶ ।
ଏମନ୍ତ ବୋଲିଣ ଆଜ୍ଞା ଦେଲେ ପୁରନ୍ଦର
ଶୁଣି ଅଗ୍ନି ସର୍ପରୂପେ ହୋଇଲେ ବାହାର ।
ଶୈବ୍ୟାର କୋଳେ କୁମର ଅଛଇ ଯେ ଶୋଇ
ଅଚେଷ୍ଟା ନିଦ୍ରା ଅଳସ ଅଟେ ତାର ଦେହୀ ।
ଦ୍ୱିତୀୟ ଅନଳ ଜିଣି ଶୈବ୍ୟା ଅଙ୍ଗ ତେଜ
ତା ଦେଖି ଅଗ୍ନିଦେବତା ହୋଇଣ ଆଶ୍ଚର୍ଯ୍ୟ ।
କେମନ୍ତେ ଦଂଶିବି ବୋଲି ମନରେ ବିଚାରି
ଶୈବ୍ୟାରାଣୀର ତେଜକୁ ସହିଣ ନ ପାରି ।

ବାମଭୁଜର କନିଷ୍ଠ ଅଙ୍ଗୁଳି ଅଗ୍ରରେ
ବିଷପୂର୍ଣ୍ଣ କରି ଦଂଶେ ସେ ଅହି ବ୍ୟଗ୍ରରେ ।
ନିଦ୍ରାରୁ ଚେତିଣ ତହୁଁ ଉଠିଲା କୁମର
ବୋଲେ ଉଠି ମାତା ମୋର କର ପ୍ରତିକାର ।
କନିଷ୍ଠ ଅଙ୍ଗୁଳି ମୋର ପୋଡ଼ଇ ପ୍ରବଳ
ମୋହର ଶରୀର ପୁଣି ହେଉଛି ବିକଳ ।
କହୁଁ କହୁଁ ରୋହିତାଶ୍ୱ ହେଲା ଅଚେତନ
ପିଣ୍ଡରୁ ପ୍ରାଣ ତାହାର ହେଲା ବିସର୍ଜନ
ଶୈବ୍ୟାଦେବୀ ସେ ବିପ୍ରକୁ ବେଗରେ ଡାକିଲା
ଆହେ ଶୁକ୍ରଧ୍ୱଜ ପଣ୍ଡା ମୋ ପୁତ୍ରଟି ମଲା ।
ବାମଭୁଜର କନିଷ୍ଠ ଅଙ୍ଗୁଳିର କୋଣେ
ଜଳିଲା ଜଳିଲା ବୋଲି କହିଲା ଆପଣେ ।
ବ୍ରାହ୍ମଣ ପ୍ରଦୀପ ଘେନି ବେଗେ ଆସି ଦେଖି
ସର୍ପଦଂଶେ ପ୍ରାଣଗଲା ପିଣ୍ଡରୁ ଉପେକ୍ଷି ।
କାନ୍ଦଇ ଶୈବ୍ୟାସୁନ୍ଦରୀ ପୁତ୍ର କୋଳେ ଘେନି
ବାତୁଳ ପ୍ରାୟେକ ହୋଇ ବାହୁନି ବାହୁନି ।
ଶୁକ୍ରଧ୍ୱଜ ପଣ୍ଡା ବୋଲେ ପରିବାରୀ ରାଇ
ଯାଅ ଆଲୋ ଦାସୀମାନେ ୟାକୁ ଧର ଯାଇ ।
ରାଣୀ ବୋଇଲେ ଯେ ମୋତେ ନ ଛୁଅଁ ଗୋ କେହି
ମୁହିଁ ପଛେ ଘେନିଯିବି ପୁତ୍ର ଶବ ବହି ।
ଶୁଣିଣ ବିପ୍ର ବୋଲଇ ମନେ ହୋଇ ରୋଷ
ତେବେ ପୁତ୍ର ଘେନି ଚଳ ଶମଶାନ ଦେଶ ।
ଅନଳରେ ଦଗ୍ଧ କର ୟାକୁ ନେଇ ବେଗ
କେହିତ ନ ଯିବେ ବୋଲି ବୋଲୁ ତୋହ ସଙ୍ଗ ।
ଶୈବ୍ୟା ବୋଲେ ମୁହିଁ ଏକା ପୁତ୍ର ଘେନିଯିବି
ଏତେ ବୋଲିଣ ବାହାର ହେଲେ ଶୈବ୍ୟାଦେବୀ ।
ମେଘର ଘୋର ଅନ୍ଧାର ବୃଷ୍ଟି ବରଷଣ
ପଥ ଅଦୃଶ୍ୟ ନ ଦିଶେ ପୁଣି ଦିଗମାନ ।
ମହାନିଶାକାଳେ ସତୀ ଧାଏଁ ପୁତ୍ର ଘେନି
ବିଜୁଳି ତେଜରେ ପଥ ଦିଶଇ ଯେ ପୁଣି ।
ଶ୍ମଶାନରେ ପ୍ରବେଶିଲା ମୃତ ପୁତ୍ର ଘେନି
ଶୋକଭରରେ ସୁନ୍ଦରୀ କାନ୍ଦେ କରି ଧ୍ୱନି ।
ଆରେ ଆରେ ବାବୁ ମୋର ଦୁଃଖୀର ତନୟ
ଏ ଦୁଃଖ କାଳରେ ମୋତେ କଲୁ ନିରାଶ୍ରୟ ।
ଅନାଥ ବାନ୍ଧବ ଶୂରବର ମୋର ବଳା
ଅଗାଧ ସମୁଦ୍ରେ ମୋର ବୁଡ଼ାଇଲୁ ଭେଳା ।
ଗଳାର ହାର ମୋହର କେଣେ ଗଲୁ ଛାଡ଼ି
ଦୁଃଖୀର ସଙ୍ଖାଳି ତୁହି ଅନ୍ଧର ଲଉଡ଼ି ।
ଏକ ହୋଇ କିସ ଆଉ କରିବଇଁ ମୁହିଁ
ଶ୍ମଶାନରେ ମେଘବୃଷ୍ଟି ନିଶା ଘୋଟିଛଇଁ ।
ଶୋକବାଣୀ ଶୁଣି ହରିଚନ୍ଦନ ଯେ ଆସି
ଦେଖେ ମୃତପିଣ୍ଡ ଘେନି ଜଣେ ଅଛି ବସି ।
ପଚାରଇ କିଏ ତୁଲୋ ସଙ୍ଗେ କେହି ନାହିଁ
କେମନ୍ତେ ମଡ଼ା ପୋଡ଼ିବୁ ସ୍ତିରୀଲୋକ ହୋଇ ।
ଶୈବ୍ୟାରାଣୀ ବୋଇଲା ମୁଁ ଅଟଇ ପ୍ରବାସୀ
ବିପ୍ରଘରେ ବିକାହୋଇ ହୋଇଅଛି ଦାସୀ ।
ହରିଶ୍ଚନ୍ଦ୍ର ରାଜା ମୋର ପ୍ରାଣର ବଲ୍ଲଭ
ସେ ପ୍ରଭୁ କେଣିକି ଗଲେ ହାୟରେ ଦଇବ ।
ପୁତ୍ର ଭାରିଯାକୁ ଦେଖି ଶ୍ରୀହରିଚନ୍ଦନ
ବୋଇଲା ମୋହର ରାଣୀ କୁଳର ଭୂଷଣ ।
ରାଣୀ କହେ ପୁତ୍ର ମଲା ପନ୍ନଗ ଘାତରେ
ଶୁଣିଣ ହରିଚନ୍ଦନ କାନ୍ଦେ ଉଚ୍ଚସ୍ୱରେ ।
ତୁହି ଆଗୋ ଶୈବ୍ୟାରାଣୀ ଶୁଣ ମୋର ବାଣୀ
କି ବୁଦ୍ଧି କରିବି କହି କାନ୍ଦେ ନୃପମଣି ।
ରାଣୀ ବୋଇଲା ହେ ରାୟେ ଦୈବ ହେଲା ବାମ
ଶୁଣିଣ ଢ଼ଳି ପଡ଼ିଲେ ନୃପତି ଉତ୍ତମ ।
ଚେତି ସେ ପୁଣି ବୋଲଇ ବିଧାତା ବିଚାର
ଆଉ କେବଣ ପୌରୁଷ ଆମ୍ଭ ବର୍ତ୍ତିବାର ।
ଏତେ ବୋଲି କଲା ରାଜା ଅଗ୍ନି ଆରୋପଣ
ଅଗ୍ନିରେ ପଶିବା ପୁତ୍ର ସଙ୍ଗରେ ଯାଇଣ ।
ପୁତ୍ରସହ ଅନଳରେ ପଶିବା ଲୋଡ଼ନ୍ତେ
ମାତଳି ସହ ରଥରେ ମିଳେ ସୁରନାଥେ ।
ଆସ ଆସ ହରିଶ୍ଚନ୍ଦ୍ର ସ୍ୱର୍ଗେ ବେଗେ ଆସ
ମୁହିଁ ମହେନ୍ଦ୍ର ଅଇଲି ଜାଣ ତୋର ପାଶ ।
ପୁତ୍ର ସହିତେ ଲଭିଲୁ ତୁହି ପରଂଗତି
ଏମନ୍ତ ବାକ୍ୟ ବୋଇଲେ ଯହୁଁ ସୁରପତି ।
ରାଜା ବୋଇଲେକ ଶୁଣ ସହସ୍ର ଲୋଚନ
ରାଜ୍ୟ ଲୋକଙ୍କ ସହିତ ବସିବି ସ୍ୱର୍ଗେଣ ।
କରନ୍ତି ରାଜନ ଶୋକ ଦେବଙ୍କୁ ଦେଖିଣ
ଯେଣୁ ରାଜା ହରିଶ୍ଚନ୍ଦ୍ର ଧର୍ମପରାୟଣ ।
ଇନ୍ଦ୍ର ବୋଇଲେ ତୋହର ଶୋକ କାହିଁପାଇଁ
ପାଇଲୁ ଅମରପୁର ଶୁଣ ଶୈବ୍ୟାସାଇଁ ।
ଦେବଙ୍କ ପ୍ରସନ୍ନେ ପୁତ୍ର ପାଇଲା ଜୀବନ
ରାଜ୍ୟ ସହ ରାଜା କଲେ ସ୍ୱର୍ଗକୁ ଗମନ ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଏମନ୍ତ ହରିଶ୍ଚନ୍ଦ୍ରଙ୍କୁ ହେଲା ସ୍ୱର୍ଗଗତି ।
ଏ ଅଟେ ମହାଭାରତ ପୁରାଣ ପବିତ୍ର
ସଞ୍ଚିପି କହିବାକୁ ମୁଁ ନୁହଇ ଶକତ ।
ଗିରିଜା ନନ୍ଦିନୀ ଯେ ଶାରଳା ଚଣ୍ଡୀ ନାମ
ତାଙ୍କର ଦୟାରୁ କିଛି କହିଲି ପୁରାଣ ।

ରାତ୍ରେ ଯାହା କହନ୍ତି ତା ଦିନରେ ଲେଖଇ
ଏପରି ଦୟା କରିଲେ ମୋତେ ମହାମାୟୀ ।
ପୂର୍ବଜନ୍ମେ ସେବି ମୁହିଁ ହେଲି ପରିଚାର
ତେଣୁକରି ଦୟା ମନେ ହୋଇଲା ତାହାର ।
ପ୍ରସନ୍ନ ସାଧବୀ ମାଗୋ ଝଙ୍କଡ଼ର ବାସୀ
କଳିକାଳ ଧ୍ୱଂସିନୀ ଗୋ ଫେଡ଼ ମୋହପାଶୀ ।
ଏ ଭବସାଗରେ ମାଗୋ ପଡ଼ି ମୋହପାଶେ
ପାରହେବି ତବ ନାମ ନଉକା ବିଶେଷେ ।
ଲୋଭ ମୋହ କାମ କ୍ରୋଧ ମଦ ଯେ ମତ୍ସର
ଏଥୁ ତରିବାକୁ ତବ ନାମ ଆଦିମୂଳ ।
ଶ୍ରୀଚଣ୍ଡୀ ଶାରଳାର ମୁଁ ଜନ୍ମେ ଜନ୍ମେ ଦାସ
ଶୂଦ୍ରମୁନି ଶାରଳାର ଭବ ଦୁଃଖ ନାଶ ।

■■■

## ଯୁଧିଷ୍ଠିର ହରଣ

ବୈବସ୍ୱତ ମନୁ ଯେ ବିଲଙ୍କ ଦେଶ ରାଜା
ଅଗସ୍ତି ମୁନିଙ୍କ ପାଦତଳେ କଲା ପୂଜା ।
ଭୋ ମୁନି ଜାଣିଲି ବିଶ୍ୱଦେବାଙ୍କ ଜନମ
କୃଷ୍ଣା ଗର୍ଭେ ପ୍ରବେଶିଲେ ବିଶ୍ୱଦେବାଗଣ ।
ଏଥିର ଚରିତ ମୋତେ କହ ମହାମୁନି
ପାଣ୍ଡବେ ଥିଲେ ଗଣ୍ଡୁକୀ ନଦୀକୂଳେ ପୁଣି ।
ଏଥୁ ଅନ୍ତରେ କେବଣ ବନରେ ପ୍ରବେଶ
ଆବର କିସ କରିଲେ ଧର୍ମଙ୍କର ଶିଷ୍ୟ ।
କହନ୍ତି ଅଗସ୍ତି କୁମ୍ଭ ଋଷିର ତନୟ
ଶୁଣ ଏକମନେ ବୈବସ୍ୱତ ମନୁରାୟ ।
ପାଣ୍ଡବେ ଭ୍ରମିଲେ ଅରଣ୍ୟରେ ସାତବର୍ଷ
ଆବର ପାଞ୍ଚବରଷ ବୁଲିଲେ ଅବଶ୍ୟ ।
ଗଣ୍ଡୁକୀ ନଦୀର ତୀରେ କୃଷ୍ଣା ମହାସତୀ
ପାଣ୍ଡବଙ୍କ ବୀର୍ଯ୍ୟେ ବିଶ୍ୱଦେବାଏ ରହନ୍ତି ।
ଚଳିଲେ ପାଣ୍ଡବେ ଯେ ଗଣ୍ଡୁକୀ ନଦୀତୀରେ
ଭାଗ୍ୟବର ବନେ ବିଜେକଲେ ପଞ୍ଚବୀରେ ।
ସେହି ବନସ୍ତରେ ମହାସୁଖ ଦେଖିକରି
ଧର୍ମ ବୋଲେ ଏଥି ଥିବା ଚତୁର୍ମାସ୍ୟା ଚାରି ।
ପର୍ବତ ଉପରେ ସେହୁ ରଚି ପର୍ଣ୍ଣକୁଟୀ
ଦୃଢ଼କରି ଭିଆଇଲେ କୁଟୀ ଷଡ଼ଗୋଟି ।
ଏମନ୍ତ କାଳେ ମାତଳି ପେଷେ ମଘବାନ
ବୋଲେ ଘେନିଆସ ଯାଇ ବୀର ଅରଜୁନ ।
ନିର୍ବାତ କପଟ ପୁତ୍ର ହିରଣ୍ୟ କବଚ
କାଲି ମୋ ପୁରେ ବାହିବ ସର୍ବେ ତ ଜାଣିଛ ।
ଅର୍ଜୁନ ଅଇଲେ ଏହି ଅମର ରହିବ
ବାରତା ପାଇଲେ ପୁତ୍ରେ ମୋହର ଆସିବ ।

ପାଣ୍ଡବେ ଅଛନ୍ତି ଭାଗ୍ୟବରର ବନସ୍ତେ
କୁଟୀ କରିଛନ୍ତି ଧାତୁବାଦ୍ୟ ପରବତେ
ବାସବର ଆଜ୍ଞା ପାଇ ଚଳିଲା ମାତଳି
ପୁଷ୍ପକ ଯାନେ ପାଣ୍ଡବ ସନ୍ନିଧିରେ ମିଳି ।
ମାତଳିଙ୍କୁ ଦେଖିକରି ଦେବ ଧର୍ମ ସ୍ୱାମୀ
ଭାଇମାନଙ୍କୁ ଘେନିଣ ହେଲେ ପରଣାମି ।
ମାତଳି ବୋଇଲେ ଆଜ୍ଞାଦେଲେ ମଘବାନ
ଅମର ପୁରକୁ ଆଜ ଯିବ ଅରଜୁନ ।
ଧର୍ମ ବୋଇଲେ ଡାକନ୍ତି ତୋତେ ଜମ୍ଭଭେଦୀ
ଇନ୍ଦ୍ର ଦେବତାଙ୍କୁ ଆସ ଯାଇଣ ସମ୍ଭାଦି ।
ଯୁଧିଷ୍ଠିରଙ୍କ ଆଜ୍ଞାରେ ବୀରବର ପାର୍ଥ
ବିଜୟ କରିଲେ ଯାଇ ମାତଳିର ରଥ ।
ତହୁଁ ଦେବଦୂତ ରଥ ବାହିଲା ବହନ
ଅମର ସ୍ୱର୍ଗକୁ ଯାଇ ଭେଟେ ମଘବାନ ।
ଅର୍ଜୁନକୁ ଦେଖିକରି ହରଷ ମଘବା
ଆସ୍ଥାନ ତେଜି ଡାକିଲେ ଆସ ଆସ ବାବା
ବୃହସ୍ପତି ବୋଲେ କିପାଁ ଉଠ ମଘବାନ
ଅର୍ଜୁନ ପରା ତୋହର ଅଟଇ ନନ୍ଦନ ।
ଇନ୍ଦ୍ର ବୋଇଲେ ଉଠନ୍ତି ପୁତ୍ର ଗୁଣବନ୍ତେ
ଗୁଣବନ୍ତ ମନ୍ତ୍ରୀ ଯେହୁ ଆବର ପଣ୍ଡିତେ ।
କୁଳଶ୍ରେଷ୍ଠ ଗୁରୁଙ୍କର ଭେଟ ଯେତେବେଳେ
ଏହାଙ୍କୁ ଦେଖି ଆସନ ତେଜିବେ ସକଳେ ।
ଉଦ୍ଧାରଣ ପୁତ୍ର ଗୁଣବନ୍ତ ଜୟକାରୀ
ଏ ପୁତ୍ର ଗୁଣ ସୁମରି ଉଠୁ ତେଣୁକରି ।
ବାସବ ଚରଣେ ପାର୍ଥ ହେଲା ପରଣାମି
କୋଳରେ ଧରି ବିଜୟ କଲେ ଦେବସ୍ୱାମୀ ।
ଇନ୍ଦ୍ର ବୋଇଲେ ହିରଣ୍ୟକବଚ ବୋଲିଣ
ମୋ ପୁରେ ବାହିବ ସେହୁ କାଲିକି ଆସିଣ ।
ଅର୍ଜୁନ ବୋଇଲେ ଆସୁ ହିରଣ୍ୟର ଦଣ୍ଡ
ତୁମ୍ଭ ପ୍ରସାଦେ କିଞ୍ଚିତେ ଛେଦିବି ତା ମୁଣ୍ଡ ।
ରଜନୀ ପ୍ରଭାତ ହେଉଁ ସେ ଦୈତ୍ୟ ହିରଣ୍ୟ
ବୋଲେ ସାଜ ସାରଥି ହେ ମୋ ରଥ ସୁବର୍ଣ୍ଣ
ସାଜ ଶୁକ୍ରମନ୍ତ୍ରୀ ସୈନ୍ୟ ଅଶ୍ୱ ଗଜ ରଥ
ନାଶିବି ମୁଁ ଅମରକୁ ଯାଇ ସୁରନାଥ ।
ପିତାଙ୍କୁ ମୋହର ବଧ କଲା ସୁରଇନ୍ଦ୍ର
ଭାଙ୍ଗିବି ସ୍ୱର୍ଗପୁରକୁ ବୋଇଲା ନରେନ୍ଦ୍ରେ ।
ହିରଣ୍ୟ ଆଗରେ ଶୁକ୍ର ବୁଝାଇ କହିଲା
କିପାଁ ଦଣ୍ଡ ସାଜ ପାର୍ଥ ସ୍ୱର୍ଗପୁରେ ଗଲା ।
ତୋ ପିତା ନିର୍ବାତ ନାଶ ହେଲା ଯାହା ହସ୍ତେ
ଜାଣୁ ଜାଣୁ ତାର ପାଶେ ଯିବୁ ତୁ କେମନ୍ତେ ।

ହିରଣ୍ୟ କବଚ ବୋଲେ ସେ ଅର୍ଜ୍ଜୁନ କିଏ
ଶୁକ୍ରମନ୍ତ୍ରୀ ବୋଇଲେ ସେ ବାସବ ତନୟେ ।
ସୋମବଂଶୀକ ପାଣ୍ଡବ ସେହୁ ପଞ୍ଚଭ୍ରାତା
ଭୋଜରାଜାର ଦୁହିତା ଅଟେ ତାଙ୍କ ମାତା ।
ମାଳା ପରୀକ୍ଷା ନିମନ୍ତେ ଭୋଜର କୁମାରୀ
ଇନ୍ଦ୍ରଙ୍କୁ ସ୍ମରଣା କଲା ମନ୍ତ୍ର ଲୟକରି ।
ଇନ୍ଦ୍ର ଔରସେ କୋଇନ୍ତା ଗର୍ଭରୁ ଜନମ
ଅର୍ଜ୍ଜୁନ ବୋଲିଣ ଇନ୍ଦ୍ର ଦେଇଗଲା ନାମ ।
ତ୍ରୈଲୋକ୍ୟ ବିଜୟୀ ଧନୁର୍ବିଦ୍ୟାରେ କୁଶଳୀ
ଚରାଚରେ କେହି ନାହିଁ ତାହାଠାରୁ ବଳି ।
ସେମାନେ ପଣ୍ଡୁକୁଳରୁ ଉପଜାତ ହେଲେ
ତେଣୁ ପାଣ୍ଡବ ବୋଲିଣ ସମସ୍ତେ କହିଲେ ।
ପୂର୍ବେ ତୋର ପିତା ସ୍ୱର୍ଗେ ଦେଇଥିଲା ଧାଡ଼ି
ଜୀବନ ହରାଇଅଛି ଏହା ହାତେ ପଡ଼ି ।
ହିରଣ୍ୟ ବୋଇଲା ତୁମ୍ଭେ ମନ୍ତ୍ରୀ ପୁରାତନ
କେମନ୍ତେ ଜୟ କରିବା କହ ତା ବିଧାନ ।
ଶୁଣି ଶୁକ୍ରମନ୍ତ୍ରୀ ବୋଲେ ଶୁଣ ବୀରମଣି
ତୋ ପିତାକୁ ବଧକଲା ଏହି ଫାଲଗୁନି ।
ତୋ ପିତା ବଇରୀ ସିନା ଅଟେ ସବ୍ୟସାଚୀ
ତାକୁ ଜିଣିବାକୁ ତୋର କି କ୍ଷମତା ଅଛି ।
ତୋ ଯିବାର ଶୁଣି ଇନ୍ଦ୍ର ନେଇଛି ଡକାଇ
ଅର୍ଜ୍ଜୁନ ସ୍ୱର୍ଗଭୁବନେ ଏବେ ଅଛି ରହି ।
ଯୁଧିଷ୍ଠି ଭୀମ ନକୁଳ ସହଦେବ ଚାରି
ଭାଗ୍ୟବର ବନେ ଛନ୍ତି ସେ କୁଟୀର କରି ।
ଏତେବେଳେ ତ ଅର୍ଜ୍ଜୁନ ତାଙ୍କ ପାଶେ ନାହିଁ
ସେ ଚାରିଙ୍କି ଧରି ଆଣିପାରୁ ଯେବେ ତୁହି ।
ତେବେ ପାର୍ଥକୁ ସହଜେ ରଣରେ ଜିଣିବା
ସାଧିବୁ ପିତାର କାର୍ଯ୍ୟ ସକଳ ପାଇବା ।
ଶୁକ୍ରମନ୍ତ୍ରୀର ବଚନେ ଦୈତ୍ୟ କାମରୂପୀ
ଛଦ୍ମ ରୂପକୁ ଧରି ହେଲା ମହାତପୀ ।
ମସ୍ତକରେ ଜଟାଭାର ଶରୀରେ ବିଭୂତି
ଲଲାଟରେ ଚିତା କନ୍ଧେ ଯଜ୍ଞସୂତ୍ର ସ୍ଥିତି ।
କଷାବସନ କଣ୍ଠରେ ତୁଳସୀର ମାଳି
ସ୍ଫଟିକ କୁଣ୍ଡଳ ବେନି ବେନି କର୍ଣ୍ଣେ ଲୁଳି ।
ପ୍ରବନ୍ଧ କଟି କାଛେଣି ଅତି ଶୋଭା ଦିଶେ
କରମାଳ ଅଜପାର ମୁଦ୍ରାକୁ ପ୍ରକାଶେ ।
ସେ ପ୍ରପଞ୍ଚ ଛଦ୍ମରେ ହୋଇଅଛି ଯୋଗୀ
ପଦ୍ମଫଳରେ ରୁଦ୍ରାକ୍ଷ କରିଛି ସଂଯୋଗୀ ।
ପଶୁଚର୍ମ ପରିଧାନ କଙ୍କଣ ଯେ ଭୁଜେ
ବକ୍ଷସ୍ଥଳେ ଚିରକୁଟୀ ତାହାର ବିରାଜେ ।

ଏମନ୍ତ ସ୍ୱରୂପ ହୋଇ ସେ ମହାତପସ୍ୱୀ
ଯୁଧିଷ୍ଠିରଙ୍କ ସମୀପେ ପ୍ରବେଶିଲେ ଆସି ।
ଧାତୁବାଦ୍ୟ ପରବତେ ଛନ୍ତି ଚାରିଭାଇ
ଯାଜ୍ଞସେନୀ ଯାଇଛନ୍ତି ନଦୀକି ଗାଧୋଇ ।
ମିଳିଗଲା ଆସି ସେହି ମାୟାବୀ ପାମର
ଶିବ ଶିବ ବୋଲି ବସେ ଯୁଧିଷ୍ଠି ପାଶର ।
ସ୍ଫଟିକ-ପଥର ମୁଦ୍ରା ଲୁଳେ ବେନିକର୍ଣ୍ଣେ
ପଦ୍ମାସନରେ ବସିଲା ଯାଇ କୁଶାସନେ ।
ଚମତ୍କାର ପୁରୁଷକୁ ଦେଖିଣ ଯୁଧିଷ୍ଠି
ଆସ୍ଥାନ ତେଜ୍ୟା କରିଣ ଧାଡିକାରେ ଉଠି ।
ଦେବଧର୍ମ ଆସ୍ଥାନକୁ କରି ସମାର୍ଜ୍ଜନ
ଆଶ୍ରମ ପ୍ରତିଷ୍ଠା ହେଲା ବିଚାରନ୍ତ ମନ ।
ଏତେକାଳେ ଦେଖିନାହିଁ ଏମନ୍ତ ପୁରୁଷ
ଈଶ୍ୱରଙ୍କ ଚିହ୍ନ ବହି ଆମ୍ଭଙ୍କୁ ଅଦୃଶ୍ୟ ।
ନିର୍ମଳ ପୁରୁଷ ପ୍ରାୟ ମଉନରେ ବସେ
ଛଦ୍ମକୂଟରେ ସେହୁ ବାକ୍ୟ ନ ପ୍ରକାଶେ ।
ଶତେକ କୁଟୁମ୍ବ ଏକ ଅଭ୍ୟାଗତେ ସରି
ଶତେ ଅଶ୍ୱମେଧ ଯାଗେ ସେହୁ ନୁହେଁ ସରି ।
ଏକଶତ ବ୍ରାହ୍ମଣ ଯେ ଏକ ତପୋଧନୀ
ଏକଶତ ତପୀ ଭୁଞ୍ଜାଇ ଯେ ଏକମୁନି ।
ଶତେ ମୁନି ସରି ଅଟେ ଏକଇ ମହର୍ଷି
ଶତେ ମହର୍ଷିରେ ଏକ ଯୋଗ ଯେ ଅଭ୍ୟାସି ।
ବାବୁ ଅନେକ ପୁଣ୍ୟ ସେ ଭୋଗହୋଇ ଯୋଗୀ
ଜନ୍ମର ସୁଫଳ ଆଜ ଜନ୍ମେ ବଡ଼ ଭୋଗୀ ।
ଯୁଧିଷ୍ଠିର ବିଚାରିଲେ ଅତିଥି ଆଗତ
ଅନେକ ସାନନ୍ଦ ହୋଇ ହେଲେ କୃତକୃତ୍ୟ ।
ସମସ୍ୟା ନ ଦିଏ ଯୁଧିଷ୍ଠିଙ୍କୁ ସେ ପୁରୁଷ
ଭୋଜନ ସଞ୍ଚା ତାହାର କେମନ୍ତ ଅଭ୍ୟାସ ।
ବହୁ ଆୟାସେ ସମସ୍ୟା ନ ଦେଲା କିଞ୍ଚିତ
ଅନେକ ବିନୟ ପରେ ଦେଲା ସେ ସଙ୍କେତ ।
ଅଙ୍ଗୁଳିରେ କରେ ସେହୁ ଭୂମିରେ ଲିଖନ
କାଳେ କାଳେ ନାହିଁ ମୋର ଅନ୍ନର ଭୋଜନ ।
ବାବୁ ବୃନ୍ଦାହୋଳ ବୋଲି ଜାଣ ଲତା ଗୋଟି
ତାହାକୁ ଛେଦନ କଲେ ଜଳ ବୁହେ ଫୁଟି ।
ତାହାକୁ ପାଇଲେ ଅବା ମନ୍ଦାଏକ ପିଉ
ପିଣ୍ଡକୁ ରଖି ତୃପତି ଆମ୍ଭେ ହୋଇଥାଉ ।
ଯୁଧିଷ୍ଠି ଆଜ୍ଞା କରିଲେ ଯାଅ ବନସ୍ତକୁ
ବୃନ୍ଦାହୋଳ ଲତା କିଏ ପୁଚ୍ଛ କିରାତକୁ ।
ବଡ଼ ମହୌଷଧି ଏହୁ ଶ୍ରୀଗୁରୁ କହିଲେ
ସବୁଦିନେ ଭଲ ହେବ ତାହାକୁ ଚିହ୍ନିଲେ ।

ସ୍ୱାମୀଙ୍କ ବଚନ ଶୁଣି ଗଲେ ତିନିବୀରେ
ପଶିଲେ ଯାଇ ସେମାନେ ନିଗମ କନ୍ଦରେ ।
ବୁଲି ବୁଲିଣ ଲୋଡ଼ନ୍ତି ବୃନ୍ଦାହୋଳ ଲତା
କେହି ହୋଇ ଜଣେ ନାହିଁ ତାହାକୁ ଜାଣନ୍ତା ।
ତିନି ପାଣ୍ଡବେ ଚଳିଲେ ବନେ ବନେ ହେରି
ଦ୍ରୌପଦୀ ଯାଇଅଛନ୍ତି ନଦୀସ୍ନାନ କରି ।
ଦେଖେ ରାକ୍ଷସ ଯୁଧିଷ୍ଠି ହୋଇଗଲେ ଏକା
ଆକ୍ରୋଶି ବସିଲା ତହୁଁ ହୋଇଣ ନିଃଶଙ୍କା ।
କୋଥଳିରୁ କାଢ଼ିଲା ସେ ମାୟାର ବିଭୂତି
ଘେନ ରେ ବିଭୂତି ବୋଲି ଯାଚେ ମନ୍ଦମତି ।
ଆନନ୍ଦେ ଯୁଧିଷ୍ଠି ପାତିଦେଲେ କରସ୍ଥଳ
ହସ୍ତରେ ଘେନନ୍ତେ ସେହୁ ହୋଇଲେ ବାତୁଳ ।
ଆସନ ଘେନିଣ ଯୋଗୀ ଉଠନ୍ତେ ଗଗନ
ତାର ତୁଲେ ଯୁଧିଷ୍ଠିଙ୍କ ଉଡ଼ିଲା ଆସନ ।
ସେ ବିଭୂତି ମାୟାମନ୍ତ୍ର କ୍ଷମତା ବଳରେ
ଯୁଧିଷ୍ଠିର ଦୁରନ୍ତକ ଚଳନ୍ତି ଶୂନ୍ୟରେ ।
ପୁଣ୍ୟବଳରେ ଏମନ୍ତ ମହାତ୍ମାକୁ ଭେଟି
ମନରେ ଅତି ସାନନ୍ଦ ହୁଅନ୍ତି ଯୁଧିଷ୍ଠି ।
ଅଧାସ୍ୱର୍ଗେ ହୋଇଲେଣି ହରଷ ଅନେକ
ଆସ ଆସ ପିତା ବୋଲି ଡାକେ ଦୁରନ୍ତକ ।
ଘେନି ଯୁଧିଷ୍ଠିଦେବଙ୍କୁ ଗଲାକ ଅସୁର
ନେଇଣ ଭରିଲା ଯାଇଁ ହିରଣ୍ୟକ ପୁର ।
ନିରସ୍ତ୍ର ଭୁବନ ଦେଖି ବୋଇଲେ ଯୁଧିଷ୍ଠି
ଅଛନ୍ତି ଦୈତ୍ୟ ଦାନବ ବଳ କୋଟି କୋଟି ।
ରାକ୍ଷସ ଭୁବନ ଦେଖି ଧର୍ମର ତନୟ
ପଞ୍ଚଭୂତ ଆତ୍ମାରେ ପଶିଲା ମହାଭୟ ।
ରାକ୍ଷସ ଆକର୍ଷି ଧରେ ଯୁଧିଷ୍ଠିଙ୍କ ଭୁଜ
କରେ କୃପାଣ ଧରିଛି ସେ ରାକ୍ଷସରାଜ ।
ବିକଟ ମୁଖ ଖାଙ୍କର ଅଟେ ତାର କେଶ
ତାମ୍ରବର୍ଣ୍ଣ ପରାୟେକ ଦିଶେ ସେ ପୁରୁଷ ।
ଭୁଜ ଧରିଣ ପଚାରେ ତୁ ଅର୍ଜ୍ଜୁନ ଭ୍ରାତ
ସେହି ବଧ କଲା ପରା ମୋ ପିତା ନିର୍ଘାତ ।
ତୁହି ତ ଅଟୁ ମୋହର ପିତାର ବଇରି
ତୋ ଅର୍ଜ୍ଜୁନ ନ ପାଇଲି ମୁହିଁ ଖୋଜିକରି ।
ତିରଣ ପ୍ରାୟେ କାଟିବି ମୁଁ ତୋହର ମାଂସ
ଅଗ୍ନିରେ ପୋଡ଼ି ତୋ ବଳି କରିବଇଁ ଗ୍ରାସ ।
ବାମକରେ ଯୁଧିଷ୍ଠିଙ୍କ ଧରିଅଛି ଭୁଜ
ଦକ୍ଷିଣକରେ କଟାରୀ ଉଞ୍ଚାଏ ଦନୁଜ ।
ଶୁକ୍ର ବୋଇଲେ ହୋ ଶୁଣ ହିରଣ୍ୟ ପ୍ରତ୍ୟକ୍ଷ
ତୋହର ବଇରି ସିନା ଅଟେ ସହସ୍ରାକ୍ଷ ।
ଇନ୍ଦ୍ରର ବିବାଦୀ ହୋଇ ତୋର ପିତା ମଲା
ଏ ଧର୍ମରାଜାର ପୁଣ କେଉଁ ଦୋଷ ହେଲା ।
ଅନେକ ଯାଗ ଯଜ୍ଞ ଏ କଲେ ମହାବାହୁ
ପରକୁ ପ୍ରମାଦ ଚିନ୍ତା ଅଛି ଯାର କାହୁଁ ।
ତୋହର ପିତାକୁ ଯେବେ ମାଇଲା ଅର୍ଜ୍ଜୁନ
ବାସବ ଦେବତାର ସେ ଅଟଇ ନନ୍ଦନ ।
ଧର୍ମର ନନ୍ଦନ ଏହି ଅଟେ ନୃପବର
ବିଚାରେ ଦୋଷ ନୋହିଲା କଦାଚ ଏହାର ।
ତୁହି ମହାରାଜା ଅଟୁ କ୍ଷତ୍ରୀ ବଳବନ୍ତା
ସମରେ ସମ ନୁହଇ ବାସବ ଦେବତା ।
ବଇରୀ ଜିଣିଲେ ସିନା ତିନିପୁରେ ଯଶ
ଅନ୍ୟ ଲୋକକୁ ବିନାଶ କରେ କାପୁରୁଷ ।
ଅଜାତଶତ୍ରୁ ସେ ଅଟେ ତାହାକୁ ନ ମାର
ବନ୍ଦକରି ରଖ ଯାକୁ ଯତନେ ନବର ।
ଯାକୁ ବନ୍ଦୀକରି ପାର୍ଥ ଯିବ ଅପସରି
ଅର୍ଜ୍ଜୁନ ଘୁଞ୍ଚିଲେ ଇନ୍ଦ୍ର ରଣେ ନୁହେଁ ସରି ।
ଏହାକୁ ମାରିଲେ ପାର୍ଥ ହେବ କୋପାନ୍ୱିତ
ତୋ ବଂଶ ଗୋଡ଼ାଇ ସେହୁ କରିବ ନିପାତ ।
ତଦପରେ ନିଜ ପ୍ରାଣ କରିବ ସେ ନାଶ
ତୋ ବଂଶ ତ ବୁଡ଼ିଥିବ ହେବ କିସ ଯଶ ।
ଏହାକୁ ବନ୍ଦୀ କରିଣ ପେଷିଦିଅ ଦୂତ
ଅମର ଭୁବନରୁ ଯେ ଘୁଞ୍ଚିଯାଉ ପାର୍ଥ ।
ସନ୍ତୋଷ ହୋଇଲା ଦୈତ୍ୟ ମନ୍ତ୍ରୀର ବଚନେ
ଦୃଢ଼କରି ଯୁଧିଷ୍ଠିଙ୍କୁ ଥୋଇଲା ଯତନେ ।
ଧର୍ମ ପୁରୁଷଙ୍କୁ ସେହୁ ଦୃଢ଼କରି ବାନ୍ଧି
ଅନ୍ଧକାର ପୁରରେ ସେ ଥୋଇଲେ ନିର୍ବନ୍ଧି ।
ନିଶାଚରର ପୁରରେ ରହିଲେ ଯୁଧିଷ୍ଠି
ଧାର୍ମିକ ଜନ ଆପଦ ସିନା ଯାଏ ମେଣ୍ଟି ।
କହନ୍ତି ଅଗସ୍ତି ଶୁଣ ହେ ମନୁ ରାଜନ
ଯୁଧିଷ୍ଠି ଅସୁର ପୁରେ ରହିଲେ ବନ୍ଧନ ।
ତିନିଭାଇ ଏକତ୍ରରେ ଗଲେ ବନଦେଶ
ଅନନ୍ତ ନାଗ କୂଳରେ ଭେଟହେଲେ ବ୍ୟାସ ।
ବ୍ୟାସଙ୍କୁ ଦେଖି ତିନିହେଁ ପ୍ରଣାମ କରନ୍ତି
ବ୍ୟାସ ବୋଇଲେ ଯୁଧିଷ୍ଠି କିପାଇଁ ନାହାନ୍ତି ।
ଭୀମ ବୋଇଲେ ଅଇଲେ ଏକ ମହାଯୋଗୀ
ଯୁଧିଷ୍ଠି ଦେବଙ୍କୁ ବୃନ୍ଦାହୋଳ କ୍ଷୀର ମାଗି ।
ଆମ୍ଭେ ସେହି ଲତା ଖୋଜି ଅଇଲୁ ହେ ତିନି
ଯୁଧିଷ୍ଠି ଦେବ ଅଛନ୍ତି ସେ ତପୀଙ୍କୁ ଘେନି ।
ବ୍ୟାସ ବୋଇଲେ ରେ ବାବୁ ମନ୍ଦକୃତ୍ୟ କଲ
ଏବେ ତ ସୋମବଂଶକୁ ବୁଡ଼ାଇ ବସିଲ ।

ନିଶ୍ଚେଁ ଘେନିଗଲା ତାକୁ ଅସୁର କପଟୀ
ଆବର କି ଭେଟ କାହିଁ ପାଇବ ଯୁଧିଷ୍ଠି ।
ବହନ ଯାଅରେ ଛାଡ଼ି ଅଇଲ ଯେ କାହିଁ
ବ୍ୟାସ ବଚନେ ଧାଇଁଲେ ସେହି ତିନିଭାଇ ।
ସ୍ନାନକରି ଆସି ମିଳେ ଦ୍ରଉପଦୀ ସତୀ
ସ୍ୱାମୀଙ୍କୁ ନ ଦେଖି ଖୋଜେ ସେହୁ ଚଉକତି ।
ତିନିଭାଇ ଦଉଡ଼ିଣ ହୋଇଲେ ପ୍ରବେଶ
ଦୂରୁ ଅନାଇଁ ଦେଖିଲେ ଦ୍ରୌପଦୀ ବିରସ ।
ଧାଇଁଯାଇ ବୀରମାନେ ଉଠି ପର୍ବତରେ
ଦ୍ରୌପଦୀଙ୍କୁ ପଚାରନ୍ତି କାହାନ୍ତି ଠାକୁରେ ।
ଦ୍ରୌପଦୀ ବୋଇଲେ ଏହିଠାରେ ବସିଥିଲେ
ମୁହିଁ ନ ଦେଖିଲି ସେହୁ କେଉଁଆଡ଼େ ଗଲେ ।
ଅତି ଉଚ୍ଚସ୍ୱରେ ଡାକ ଦିଅଇ ମାରୁତି
ଭୋଦେବ ଯୁଧିଷ୍ଠି ଅଛ କେବଣର କତି ।
ନ ଦେଖି ସହଦେବଙ୍କୁ କରିଲା ସେ ପୁଚ୍ଛା
କର ଚାହିଁ ସହଦେବ ହୋଇଗଲା ମୂର୍ଚ୍ଛା ।
ନକୁଳ ପୁଚ୍ଛା କରଇ ହୋଇ କୋପଚିତ୍ତ
କହ ସହଦେବ ତୁହି ଏଥିର ଚରିତ ।
ପର୍ବତ ଉପରୁ ଭୀମ ଆକୁଳେ ଉତୁରି
ବୋଲେ କହ ତତ୍ତ୍ୱକଥା ମନସ୍ଥିର କରି ।
ସହଦେବ ବୋଲେ ତୁମ୍ଭେ ଶୁଣ ବୃକୋଦର
ବ୍ୟାସ ଯା ବୋଇଲେ ଶୁଣ ଆମ୍ଭର ଆଗର ।
ଆଜିଠାରୁ ସୋମବଂଶ ବୁଡ଼ିଲା ନିକର
ନିଷାଦ ପୁରେ ପଡ଼ିଲେ ଧର୍ମ ଦଣ୍ଡଧର ।
ସହଦେବ ବୋଲେ ଯେଉଁ କପଚ ନିର୍ବାତ
ବାସବ ବଚନେ ତାକୁ ନାଶକଲା ପାର୍ଥ ।
ହିରଣ୍ୟ କପଚ ନାମେ ତାହାର ତନୟେ
କାମରୂପୀ ଅସୁର ଯେ ଯୋଗୀରୂପ ହୁଏ ।
ଆମ୍ଭମାନଙ୍କୁ ବନସ୍ତେ ପେଷିଲା କପଟେ
ଏଣେ ଯୁଧିଷ୍ଠିଙ୍କି ହରିନେଲା ସେହୁ ଆଣ୍ଟେ ।
ନେଇଣ ବନ୍ଦିକରିଛି ହିରଣ୍ୟର ପୁରେ
ଶୁକ୍ର ରଖିଲେ ତାହାଙ୍କୁ ମାରିବା କାଳରେ ।
ମନ୍ତ୍ରୀ ବଚନେ ସକଳେ ପଡ଼ିଲେକ ଢ଼ଳି
ଆହା ନାଥ ନାଥ ବୋଲି ଛାଡ଼ିଲେ ଦୋବାଳି ।
ଦ୍ରୌପଦୀ କାନ୍ଦଇ ତହିଁ ପଡ଼ି ଭୂମି ଲୋଟି
ତ୍ରୈଲୋକ୍ୟ ବନ୍ଦନ ବୋଲି ତୁମ୍ଭ ନାମ ଗୋଟି ।
ଲକ୍ଷେ ନରପତି ଯାର ଚରଣେ ବନ୍ଦନ୍ତି
ଯାହା ପ୍ରସାଦେ ନହୁଷ ସ୍ୱର୍ଗକୁ ଗମନ୍ତି ।
ଯେହୁ ତ୍ରୈଲୋକ୍ୟ ଠାକୁର ଦେବ ଦଇତ୍ୟାରି
ସେହି ଆସି ଯା ଚରଣେ ପ୍ରଣିପାତ କରି ।
ସ୍ୱାମୀ ହସ୍ତ ସୁଖେ ଖେଳ ଖେଳିଲ ଯେ ପଶା
ରାଜ୍ୟଭାର ତେଜି ବନେ କରିଥିଲ ବସା ।
ଅଜାତ ଶତ୍ରୁ ବୋଲିଣ ତବ ନାମଗୋଟି
କର ଲେଉଟାନ୍ତେ ଯାର ଟଳେ ନବସୃଷ୍ଟି ।
ବହୁତ ଶୋକ କରଇ ପବନ ତନୟେ
ଦଶଦିଗ ଅନ୍ଧକାର ଦିଶେ ଦେବରାୟେ
ଅନୁବ୍ରତେ ଧର୍ମବାଞ୍ଛା ନାହିଁ କୂଟବୁଦ୍ଧି
ଆପେ ନାଶକଲୁ ଦେବ ସକଳ ସମୃଦ୍ଧି ।
ଭୋ ଦଇବ କରାଇଲୁ ତୁହି ବନବାସ
କଷ୍ଟରେ କଷ୍ଟ ଦେଇଣ କରୁ ତୁ ଝିଙ୍ଗାସ ।
ରାଜପୁତ୍ର ହୋଇକରି ପାଉ ଏ ଅବସ୍ଥା
ମୂର୍ଦ୍ଧାଫାଟି ଆମ୍ଭ ପ୍ରାଣ ଗଲେ ଭଲ ହୋନ୍ତା ।
ଭୀମ କୋପ କରନ୍ତେ ଯେ କମ୍ପଇ ଆକାଶ
ଏମନ୍ତକାଳେ ମିଳିଲେ ଆସି ବେଦବ୍ୟାସ ।
ପରାଶରଙ୍କ ନନ୍ଦନ ଦେଖି ପୁତ୍ର କଷ୍ଟ
ଆରେ ସହଦେବ ତୁ କି ନ ଜାଣୁ ଏ କୂଟ ।
ବ୍ୟାସ ପଚାରିଲେ ଦୈତ୍ୟ ନେଲା ଯୁଧିଷ୍ଠିଙ୍କି
ବିଚାରି ଜାଣିଲୁ କିନା ବଞ୍ଚିଅଛି ଟିକି ।
ମନ୍ତ୍ରୀ ବୋଲେ ସ୍ୱାମୀ ତାଙ୍କୁ ନାଶ କରୁଥିଲା
ଶୁକ୍ର ମହାଗୁରୁ ତାଙ୍କୁ ରକ୍ଷା କରାଇଲା ।
ଅନ୍ଧାର ଗମ୍ଭୀରୀଘରେ ପକାଇ କପାଟୀ
ବନ୍ଧନେ ରଖିଣ ଅଛି ଧରମ ଯୁଧିଷ୍ଠି ।
ବ୍ୟାସ ବୋଇଲେରେ କ୍ରୋଧ ନ କର ତୁ ଭୀମ
ଦ୍ରୌପଦୀଙ୍କି ସର୍ବେ ମିଳି କରାଅ ସାଷ୍ଟାମ ।
ଜୀବନରେ ନାଶ ଯେବେ କରନ୍ତାଣି ଦୈତ୍ୟ
ତାହା ହେଲେ ଅନାଥେ ଯେ ହୁଅନ୍ତା ସମସ୍ତ ।
ଧର୍ମ ଉଦିତ ହୋଇଲା ଯେବେ କଲା ରକ୍ଷା
ଶୁକ୍ରଙ୍କ ବଚନ ଯେଣୁ ନ କଲା ଉପେକ୍ଷା ।
ଆପଣେ ବ୍ୟାସ ଯେ ହୃଦଗତେ କଲେ ଧ୍ୟାନ
ସୁମରିଲେ କୃଷ୍ଣ ପରାଶରଙ୍କ ନନ୍ଦନ ।
ଦ୍ୱାରକାପୁରେ ଆସନ କମ୍ପେ ଦେବହରି
ଜାଣିଲେ ସେ ଜଗନ୍ନାଥ ହୃଦେ ଲୟକରି ।
ଗରୁଡ଼ ପୃଷ୍ଠରେ ଚଢ଼ି ତହୁଁ ଦେବରାୟେ
ଭାଗ୍ୟବର ବନସ୍ତକୁ କରିଲେ ବିଜୟେ ।
ଦ୍ୱାରକାରୁ ସେହି ବନ ନବସସ୍ର ଯୋଜନ
ବେନି ଘଡ଼ିରେ ମିଳିଲା ପକ୍ଷୀଙ୍କ ରାଜନ ।
ଅନନ୍ତନାଗ ପର୍ବତେ ହରି କଲେ ବିଜେ
ଦେଖି ତାଙ୍କୁ ବ୍ୟାସଦେବ ବିନୟରେ ମଜ୍ଜେ ।
ମହାକ୍ରୋଧ କଲେ ତିନି ପାଣ୍ଡବ ଦ୍ରୌପଦୀ
ସୋମବଂଶ ବୁଡ଼ିଲା ଭୋ ଦେବ ଶିରୀପତି ।

ଗୋବିନ୍ଦ ବୋଇଲେ ତୁମ୍ଭେ କ୍ରୋଧ ଶାନ୍ତି କର
ସହଦେବ କହିଲା ତ ଯେମନ୍ତ ବିଚାର ।
ହିରଣ୍ୟ କବଚ ଦୈତ୍ୟ ଯୋଗୀରୂପ ଧରି
ଯୁଧିଷ୍ଠିର ଦେବଙ୍କୁ ସେ ତହୁଁ ନେଲା ହରି ।
ମାରନ୍ତେ ରକ୍ଷା କରିଲା ତହୁଁ ଶୁକ୍ରମନ୍ତ୍ରୀ
ଯତନେ ବନ୍ଦୀ କରିଛି କରିଣ ବିଭ୍ରାନ୍ତି ।
କୃଷ୍ଣ ବୋଇଲେ ତେମନ୍ତ କରିବା ଉପାୟ
ଅର୍ଜ୍ଜୁନ ରହିଲା ଯାଇ ବାସବ ଆଳୟ ।
ଦ୍ୱନ୍ଦ୍ୱ କରିଲେ ଯୁଧିଷ୍ଠି ନୋହିବ ଜୀବିତ
ହିରଣ୍ୟ ପୁରକୁ କିଏ ଚଳିବ ଗୁପତ ।
ସହଦେବ ବୋଲେ ଶୁଣ ତା ପୁରର କଥା
ହିରଣ୍ୟାକ୍ଷୀ ଦେବୀ ତହିଁ ଅଛି ଉମା ଯଥା ।
ହିରଣ୍ୟ କବଚ ଯୁଧିଷ୍ଠିଙ୍କି ନେଲା ଧରି
ତାଙ୍କୁ ବଳି ଦେବାପାଇଁ ଅଛି ପଣ କରି ।
ତ୍ରିବିଧ କରିଣ ତହିଁ ଅଛି ଯନ୍ତ୍ରପାତି
ନିଶ୍ଚୟ ଗୋସାମଣୀଙ୍କୁ ଦେବ ଦୈତ୍ୟପତି ।
କରିବ ଯେ ଯୁଧିଷ୍ଠିର ଦେବଙ୍କୁ ସେ ନାଶ
ନ ପାଇଛି ବିପ୍ର ଜଣେ ଖୋଜିଣ ସଦୃଶ ।
ଭକ୍ଷିବ ପାଇଲେ ଭଲ ବିପ୍ର ହିରଣ୍ୟାକ୍ଷୀ
ସୋମବଂଶ ଉଦ୍ଧାରଣ କର ହେ ଶ୍ରୀବତ୍ସି ।
ଗରୁଡ଼ ବୋଇଲା ମୋର ବୁଦ୍ଧିଏ କରିବା
ମୁଁ ହିରଣ୍ୟପୁର ଯିବି ମୋତେ ଆଜ୍ଞାଦେବା ।
ଗରୁଡ଼କୁ ରାଇ ଆଜ୍ଞା ଦେଲେକ ଅଚ୍ୟୁତ
ହିରଣ୍ୟ ପୁରକୁ ତୁହି ଯିବାକୁ ସମର୍ଥ ।
ତୋର ବୁଦ୍ଧିରେ ଉପାୟ ମୁହିଁ ଚିନ୍ତାକରି
ପୁରେ ପଶି ଯୁଧିଷ୍ଠିଙ୍କି ଥାଅ ତୁ ଆବୋରି ।
ନାରାୟଣଙ୍କ ବଚନେ ସଜ ବଇନେତ
ସହଦେବ ଜାଣିଥିବ ମୋହର ଆଗତ ।
ମୁହିଁ ଭେଟିବି ଯେ କାଳେ ଯୁଧିଷ୍ଠି ଦେବଙ୍କୁ
ତୁମ୍ଭେମାନେ ଯିବ ତେବେ ରଣ କରିବାକୁ ।
ତୁମ୍ଭ ତହିଁକି ଯେ କାଳେ ବାହିବ ଅସୁର
ଯୁଧିଷ୍ଠିଙ୍କି ଘେନି ମୁହିଁ ହୋଇବି ବାହାର ।
ଶ୍ରୀକୃଷ୍ଣ ସୁମରି ଚଳେ ବିନତାର ସୁତ
ବ୍ରାହ୍ମଣର ରୂପ ଧରି ମିଳିଲା ତ୍ୱରିତ ।
ହିରଣ୍ୟ ପୁରର ଦ୍ୱାରେ କରିଲେ ବିଜୟେ
ବେଦ ଅଧ୍ୟୟନ କଲେ କରି ଯୋଗଲୟେ ।
ଦନୁଜେ ବୋଇଲେ ଯତ୍ନେ ଯେଉଁକଥା ଲୋଡ଼ି
ରାଜା ମଣୋହିକି ଯାର ମାଂସ ନେବା ପୋଡ଼ି
ଏକ ବ୍ରାହ୍ମଣକୁ ଧରି ସହସ୍ର ଦନୁଜ
ଧରି ଭେଟାଇଲେ ବେଗେ ନେଇ ଦୈତ୍ୟରାଜ

ସୁନ୍ଦର ବ୍ରାହ୍ମଣ ଦେଖି ବୋଇଲେ ଦଇତ
ଯାକୁ ମୋହି ଆଣିଛନ୍ତି ଜଗତର ମାତ ।
ହିରଣ୍ୟାକ୍ଷୀ ଦେଉଳରେ ଯାକୁ ନେଇ ଭର
ବିଚାରି ସେ ଆଦିମାତା କରନ୍ତୁ ଆହାର ।
ତହୁଁ ବ୍ରାହ୍ମଣ ଘେନିଣ ଗଲେ ସେ ଦର୍ପିଷ୍ଠ
ଦେବୀଙ୍କ ଦେଉଳେ ଭରି ଦେଲେ ସେ କପାଟ
ହିରଣ୍ୟାକ୍ଷୀ ସେ ଗ୍ରାମରେ ଦେବତୀ ଅଟଇ
ବ୍ରାହ୍ମଣ ଦେଖିଲେ ସେହୁ ଉସତ ହୁଅଇ ।
ନିତି ବ୍ରାହ୍ମଣ ଧରିଣ ଆଣନ୍ତି ଅସୁରେ
ସେହିମତି କପାଟକୁ ପାଡ଼ନ୍ତି ବାହାରେ ।
ବିଶ୍ୱରୂପରେ ଭକ୍ଷଇ ଅଭୟ କପାଳୀ
ବ୍ରାହ୍ମଣମାନଙ୍କୁ ଧରି ବେଗେ ଦିଏ ଗିଳି ।
ଯେତେବେଳେ ସେ ଅସୁର ଭରିଲେ ଦ୍ୱିଜକୁ
ଧାଇଁ ସେହି ହରିଣ୍ୟାକ୍ଷୀ ଧରିଲା ତାହାଙ୍କୁ ।
ଗରୁଡ଼ ଉପରେ ଯହୁଁ ପଡ଼ିଲାକ କ୍ଷେପି
ନିଜରୂପ ପ୍ରକାଶିଲେ ପକ୍ଷୀ ବିଶ୍ୱରୂପୀ ।
ଆକ୍ରୋଶୀ ହିରଣ୍ୟାକ୍ଷୀକୁ ଧରେ ବଇନତ
ହିରଣ୍ୟାକ୍ଷୀ ପଡ଼ିଯାଇ ହୋଇଲା ଅଚେତ ।
ଉତ୍ତାନଶାୟୀ କରିଣ ଦେବୀକ ସେ ପାଡ଼ି
ଅଣ୍ଟଘାତେ ବକ୍ଷସ୍ଥଳ ଦିଅଇ ବିଦାରି ।
ଭୟେ ହିରଣ୍ୟାକ୍ଷୀ ଦେବୀ ଘୋର ରଡ଼ିକରେ
ଭୁଞ୍ଜ ଆଗୋ ଶାକମ୍ଭରୀ ବୋଲନ୍ତି ଅସୁରେ ।
ଦେବୀ ବଳି ଭୁଞ୍ଜୁ ଭୟ ନ କର ପଣ୍ଡାଏ
ବିକଳ ହେଲେ କି ଆଉ ରକ୍ଷା ହେବ କାୟେ ।
ବକ୍ଷସ୍ଥଳକୁ ବିଦାରି ଗରୁଡ଼ ପ୍ରଚଣ୍ଡ
ଛିଣ୍ଡାଇ ମାଂସ ତାହାର କଲା ଖଣ୍ଡ ଖଣ୍ଡ ।
ନିଶ୍ଚେଷ୍ଟରେ ପଡ଼ିଗଲା ଦୈତ୍ୟ ଠାକୁରାଣୀ
ଦେଏ ଦେଏ ବୋଲିକରି ଡାକେ ପକ୍ଷୀମଣି ।
ହିରଣ୍ୟ କବଚ ବୋଲେ ଦ୍ୱିଜ ମାଂସ ଖାଇ
ଶରୀର ଜ୍ୱାଳା ହେବାରୁ ମାଗନ୍ତି ମଣୋହୀ ।
ଶୀତଳ ଦ୍ରବ୍ୟ ସହିତ ବହୁ ମାଂସମାନ
ବହୁତ ବହୁତ କରି ଦିଅରେ ବହନ ।
ଆଜ୍ଞା ପ୍ରମାଣେ ଚଳିଲେ ତହୁଁ ଯେ ଦାନବ
ଦେବୀ ଆଳୟେ ଭରିଲେ କୋଟି କୋଟି ଦ୍ରବ୍ୟ
ଭିତରେ ଗରୁଡ଼ ଥାଇ ଦେ ଦେ ବୋଲି ମାଗି
ତାହା ଶୁଣିଣ ଦାନବେ ପୂରାବନ୍ତି ବେଗି ।
ଆମ୍ବ ପଣସ କଦଳୀ ନଡ଼ିଆ ଖଜୁରି
ଛେନାପଣା ଅଧାମ ଯେ କନ୍ଦ ଆଦିକରି ।
କେନ୍ଦୁ ଖଜୁରି ଅମୃତଭଣ୍ଡା ଯେ ମହୁଲ
ଅମୃତପାଣି କଦଳୀ ନଡ଼ିଆ ପଇଡ଼ ।

ଶକଟେ ଭରି ଆଣିଲେ ଫଳ ପୁଷ୍ପମାନ
ଦେଉଳ ମଧ୍ୟେ ରଖିଲେ କରିଣ ଯତନ ।
କପାଟକୁ କିଳିକରି ହୋଇଲେ ବାହାର
ସୁଖରେ ଭୋଜନ କରେ ବିନତା କୁମର ।
ପୁଣ ପୁଣ ସେ ଗରୁଡ଼ ଡ଼ାକେ ମହାରୋଷେ
ଦେ ଦେ ବୋଲିଣ ଡାକଇ ଅତି ଅସନ୍ତୋଷେ ।
ଅସୁର ବୋଇଲେ କୁଳଦେବତୀ ଅତୃପ୍ତି
କିସ ଦେଇଣ ତାହାଙ୍କୁ କରିବି ତୃପତି ।
ହିରଣ୍ୟ ବୋଇଲା ଧର୍ମସୁତ ଅଛି ମାନି
ମୋହର ଛାମୁକୁ ଏବେ ତାକୁ ଆସ ଘେନି ।
ରାଜାଙ୍କର ଆଜ୍ଞା ପାଇ ଗଲେ କଉଣପେ
ଯୁଧିଷ୍ଠିର ନେଇଗଲେ ଅସୁର ସମୀପେ ।
ହିରଣ୍ୟ ବୋଇଲା ଯାକୁ ମାରଜନା କର
ବେଗରେ ନେଇଣ ଭର ଦେବୀ ଦେଉଳର ।
ଯୁଧିଷ୍ଠି ଦେବଙ୍କୁ ଦୈତ୍ୟ କରାଇ ମାର୍ଜନା
ଦେଉଳେ ଭରିଲେ ଖାଅ ନ କରି କଳ୍ପନା ।
ବ୍ରାହ୍ମଣରୁ ଅଧିକ ଏ ଖାଅ ଗୋସାମଣି
ନିର୍ବନ୍ଧେ କପାଟ କିଳି ବାହାର କିଳିଣୀ ।
ମହାଭୟରେ ଆକୁଳ ହୁଅନ୍ତି ଯୁଧିଷ୍ଠି
ସୁମରନ୍ତି ପିତାମାତା ନିଜ କର୍ମଗୋଟି ।
ସୁମରନ୍ତି ଯୁଧିଷ୍ଠିର ଶ୍ରୀ ଶ୍ରୀ ବାସୁଦେବ
ତବ ଆଶ୍ରୟରେ ସ୍ୱାମୀ ବଞ୍ଚନ୍ତି ପାଣ୍ଡବ ।
ଅନାଥ ହୋଇଲୁ ଆମ୍ଭେ ପାଞ୍ଚଗୋଟି ଭାଇ
ହିରଣ୍ୟପୁରରେ ନାଶ ଯାଉଅଛି ମୁହିଁ ।
ଆବର ଚାହିଁବି କରତିଣ ତୁମ୍ଭ ମୁଖ
ମହାଭୟ ଆତଙ୍କରୁ ଉଦ୍ଧର ଶ୍ରୀବତ୍ସ ।
ଯୁଧିଷ୍ଠିଦେବ ଆତଙ୍କ ମନ ସେହୁ ଜାଣି
ବିନତା ନନ୍ଦନ ତାଙ୍କୁ କହେ ଦୃଢ଼ବାଣୀ ।
ଗରୁଡ଼ ବୋଲେ ବିକଳ ନୁହ ହେ ଯୁଧିଷ୍ଠି
ଦେବୀଙ୍କି ମାଇଲି ମୁହିଁ ଖଗବର ଫୁଟି ।
ଦେଖିଲେ ଯୁଧିଷ୍ଠି ଦେବ ଖଗେଶ୍ୱର ରୂପ
ବିଚାର କରନ୍ତି ଦୈତ୍ୟ ହୋନ୍ତି ନାନାରୂପ ।
ଗରୁଡ଼ ବୋଇଲେ ମନେ ନ କର ହେ ଭ୍ରାନ୍ତି
ମୋତେ ପଠାଇଣ ଦେଲେ ଦେବ ଶିରୀପତି ।
ବ୍ରାହ୍ମଣ ରୂପରେ ମୁହିଁ ଅଇଲି ଏଥିକି
ବୁକୁ ବିଦାରିଲି ଆସି ଅସୁର ଦେବୀକି ।
ଦେଖ ଖଣ୍ଡ ଖଣ୍ଡ ହୋଇ ପଡ଼ିଅଛି ଦେବୀ
ଆନନ୍ଦେ ଯୁଧିଷ୍ଠି ଦେବ ଗରୁଡ଼କୁ ସେବି ।
ସହଦେବ ବୋଇଲା ଯେ ବ୍ୟାସଙ୍କର ଆଗ
ଏବେ ଚଳିଯାଅ ତୁମେ ଦେବଗୁରୁ ସ୍ୱର୍ଗ ।

ପୁଷ୍ପକଯାନ ଆରୋହୀ ବ୍ୟାସ୍ ବାସୁଦେବ
ଅମରପୁରେ ଯାଇଣ ଭେଟିଲେ ବାସବ ।
ବେଦବ୍ୟାସ ଶ୍ରୀପତିଙ୍କୁ ଦେଖି ମଘବାନ
ଅନେକମତେ ପୂଜିଲେ କରିଣ ଯତନ ।
ପାର୍ଥ ପ୍ରଣିପତ୍ୟ କଲା କୃଷ୍ଣ ପାଦତଳେ
ଆଲିଙ୍ଗନ କରି ହରି ବସାଇଲେ କୋଳେ ।
ଗୋବିନ୍ଦ ବୋଇଲେ ତୁମ୍ଭେ ଶୁଣ ଅରଜୁନ
ନିର୍ଶ୍ଚିନ୍ତରେ ରହିଅଛ ଅମର ଭୁବନ ।
ନିର୍ବାତ କପଚ ପୁତ୍ର ହିରଣ୍ୟ କପଚ
ଯୁଧିଷ୍ଠି ଦେବଙ୍କୁ ସେହି ହରିଲା ପ୍ରପଞ୍ଚ ।
ଯୋଗୀ ରୂପକୁ ଧରିଣ ବୃନ୍ଦାହୋଳ ମାଗି
ଭୀମଆଦି ତିନିଭାଇ ଖୋଜିଗଲେ ବେଗି ।
ଯୁଧିଷ୍ଠିଙ୍କୁ ଏକା ଦେଖି ଦେଲା ସେ ବିଭୂତି
ଆସନ ସହ ହରିଲା କରି ମାୟା ଗତି ।
ହରିଣ୍ୟଗର୍ଭ ପୁରରେ ମିଳିଲା ରାକ୍ଷସ
ବିଜେ କର୍ଣ୍ଣ କଟାରୀରେ କରୁଥିଲା ନାଶ ।
ଶୁକ୍ରମନ୍ତ୍ରୀର ବଚନେ ରଖିଲା ତାହାଙ୍କୁ
ନାଗପାଶ ବନ୍ଧନରେ ରଖିଛି ଧର୍ମଙ୍କୁ ।
ବିନତା ସୁତଙ୍କୁ ତହିଁ ପେଷିଲି ଗୁପତେ
ଆମ୍ଭେ ଯେ ତୋର ତହିଁକି ଅଇଲୁ ତ୍ୱରିତେ ।
ତାହା ଶୁଣି ଧନଞ୍ଜୟ ହୁଏ ଅସାଷ୍ଟମ
କୋଳ କରିଣ ଧଇଲେ ପୁରୁଷ ଉତ୍ତମ ।
ବୋଇଲେ ନ କର ଶୋକ ନୁହେଁ ଶୋକବେଳ
ଦଣ୍ଡ ସାଜି ଯିବା ଚାଲ ବୋଲେ ଆଖଣ୍ଡଳ ।
ବିଜେକଲେ ମଘବାନ ଐରାବତ ପିଠି
ବାସବଙ୍କ ପୁତ୍ର ତୁଲେ ଚଉଷଠି କୋଟି ।
ପାର୍ଥ ବାସୁଦେବ ବିଜେ ପୁଷ୍ପକ ବିମାନ
ଅର୍ଜ୍ଜୁନ ସାରଥି ହେଲେ ପ୍ରଭୁ ଭଗବାନ ।
ଅନେକ ବୀରତୂରର ଶବଦ ଶୁଭଇ
ସ୍ୱର୍ଗତେଜି ବାହାରିଲେ ଅତି ବେଗ ହୋଇ ।
ପୁଷ୍ପକ ରଥ ବାହାନ୍ତି ଦେବ ଚକ୍ରଧର
ଗଗନ ମାର୍ଗରେ ଚଳେ ପବନହୁଁ ଖର ।
ଦୁନ୍ଦୁଭିର ବାଦ୍ୟ ଶୁଭେ ଅତ୍ୟନ୍ତ ଗହନ
ସେ ନାଦ ଶୁଣି ଅସୁରେ ହେଲେ କମ୍ପମାନ ।
ଦେବଦତ୍ତ ଶଙ୍ଖ ଘେନି ବୀର ଫାଲଗୁନି
ଗାଢ଼ରେ ଚୁମ୍ବିଲେ ତାହା ଶ୍ରୀକରରେ ଘେନି ।
ସର୍ବ ଭୁବନ କମ୍ପିଲା ଶଙ୍ଖନାଦ ଘାତେ
ସୈନ୍ୟବଳ ସଜ କଲେ ଶୁଣିଣ ଦଇତେ ।
ଦାନବ ବୋଇଲେ ଏହୁ କାହାର ଶବଦ
ଉଲ୍କାପାତ ପରାୟେକ ଶୁଭେ ଘୋରନାଦ ।

ଶୁକ୍ର ବୋଲେ ଶୁଣ ବକ୍ର କପଟର ନୀତି
ସମସ୍ତ ଦଣ୍ଡ ଘେନିଣ ବିଜେ ସୁରପତି ।
ହିରଣ୍ୟ ବୋଇଲେ ମୁହିଁ ଯତ୍ନେ ଯାହା ଲୋଡ଼ି
ମୁଁ ସେ ଅମରପୁରକୁ ଦେଇ ଲୋଡ଼େ ଧାଡ଼ି ।
ଯାହା ଲୋଡ଼ଇ ତାହା ମୁଁ ପାଇଲି ଯତନେ
ଗର୍ଜି ବାହାର ହୋଇଲେ ଦୈତ୍ୟ ବଳମାନେ ।
ନବଲକ୍ଷ ଯୋଦ୍ଧା ପୁଣି ବହୁ ବଳବନ୍ତା
କରେ ମୁଦ୍‌ଗର ଘେନି ଧାମନ୍ତି ଦଇତା ।
ସନ୍ଧ୍ୟା ସମୟରେ ଯେହ୍ନେ ଧାମନ୍ତି ପର୍ବତେ
ଗର୍ଜି ଦୁରନ୍ତକ ବଳ ଉଠିଲେ ତୁରିତେ ।
କଡ଼ା ଘୁମୁରା ବାଜଇ ଆବର ଦାଉଣ୍ଡି
କାଦମ୍ବରୀ ପାନେ ନୃତ୍ୟ କଲେ ଚିତ୍ତମଣ୍ଡି ।
ମାର ମାର ଧର ଧର କରନ୍ତି ସେ ରାବ
ମହିଷା ଯୁଦ୍ଧରେ ଯେହ୍ନେ ଡାକଇ ଭୈରବ ।
ଲଲାଟେ ସିନ୍ଦୂର ଗଳେ ମନ୍ଦାରର ମାଳ
ନୃତ୍ୟ କରନ୍ତି ସକଳେ ହୋଇ ମତୁଆଳ ।
ଅସୁରବଳମାନଙ୍କୁ ଦେଖିଣ ଅଚ୍ୟୁତ
କି ଅବା ସମୁଦ୍ର ଉଠି ଆସଇ ପର୍ବତ ।
ଅର୍ଜୁନ ବୋଇଲା ସ୍ୱାମୀ ଦେଖିବା ସ୍ୱରୂପ
କିଞ୍ଚିତ ବଳ ଅଟନ୍ତି ଏହୁ କଉଣପ ।
ଶୁଣିଣ ଆନନ୍ଦ ହେଲେ କମଳାର ନାହା
ପାର୍ଥ ବୋଇଲେ ହେ ଦେବ ଯାନ ବେଗେ ବାହା ।
କମ୍ପାଇଲେ ନାରାୟଣ ବାହିଲେ ପୁଷ୍ପକ
ପାର୍ଥ ବୋଇଲେ ହେ ଦେବ ମୋ ପ୍ରତିଜ୍ଞା ଦେଖ ।
କରେ ଚାପକୁ ଧରିଣ ବାସବ ସନ୍ତତି
କାଳାନଳକୁ ଜିଣିଣ ବିରାଜଇ ଜ୍ୟୋତି ।
ସମସ୍ତ ଅସୁର ବାହାରିଲେ ସମରକୁ
ଗରୁଡ଼ ପୁଚ୍ଛା କରିଲେ ଯୁଧିଷ୍ଠି ଦେବଙ୍କୁ ।
ଧର୍ମର ନନ୍ଦନ ତୁହୋ ବସ ମୋର ପିଠି
ଇନ୍ଦ୍ର ଗୋବିନ୍ଦ ତହିଁକି ଯିବା ହେ ଯୁଧିଷ୍ଠି ।
ବୈନତେୟ ବାହନରେ ବିଜେ ଧର୍ମସୁତେ
ଭାଜିଲା ଦେଉଳ ପୁଣ ତାର ପକ୍ଷାଘାତେ ।
ଦେଖି ବିନତା ନନ୍ଦନ ହିରଣ୍ୟର ପୁର
ବାରସ୍ୱତୀପୁର ପ୍ରାୟେ ଦିଶଇ ବିସ୍ତାର ।
ବିନତା ନନ୍ଦନ ଚଳିଗଲା ଗଳଗାଜି
ଜଗତୀ ସହିତେ ସବୁ ପଡ଼ିଲାକ ଭାଜି ।
ଶତେକ ଯୋଜନ ଅଟେ ହିରଣ୍ୟର ପୁର
ବାଳ ଆଦିତ୍ୟ ପରାୟେ ଦିଶେ ତା ଭିତର ।
ମହା ତେଜୋମୟ ମୂର୍ତ୍ତି ହୋଇ ପରଚଣ୍ଡା
ଭାଙ୍ଗି ପକାଇଲେ ସବୁ କରି ମସିଗୁଣ୍ଡା ।

ଅନେକ ରାକ୍ଷସ ଥିଲେ ବିଷମ ଆକୃତି
ବିନତାସୁତ ମାରନ୍ତି ସବୁଙ୍କୁ ବିକୋଟି ।
ଅସୁରମାନଙ୍କ ପୁତ୍ର ଭରିଯା ସହିତେ
ଉଡ଼ିଲେ ପବନ ଗତି ଗରୁଡ଼ର ଘାତେ ।
କ୍ଷୀର ସମୁଦ୍ରେ ପଡ଼ିଲେ ସର୍ବେ ଯାଇ ଉଡ଼ି
ନବଦ୍ୱୀପ କମ୍ପିଯାଏ ଗରୁଡ଼ର ରଡ଼ି ।
ଗୋବିନ୍ଦ ବୋଇଲେ ଶୁଣ ତୁହି ରେ କିରୀଟି
ଅତି ନିକଟେ ଶୁଭଇ ପକ୍ଷୀରାଜ ପାଟି ।
ଶୁକ୍ର ବୋଇଲେ ତୁ ଶୁଣ ହିରଣ୍ୟ ନୃପତି
ବୁଡ଼ିଲା ଅସୁରକୁଳ ହେଲା ବିନଶ୍ୟତି ।
ଧର୍ମକୁ ପୃଷ୍ଠେ ବସାଇ ବିନତା ସନ୍ତତି
ମିଳିଲେ ଅର୍ଜୁନ ହରି ଯହିଁ ସୁରପତି ।
ନିଜ ପକ୍ଷ ଝାଡ଼ିଦ୍ୟନ୍ତେ ଗରୁଡ଼ ବଳିଷ୍ଠ
ହରିଣ୍ୟ ଗର୍ଭର ପୁର ସବୁ ହେଲା ନଷ୍ଟ ।
ଅସୁର ଅସୁରୀ ଥିଲେ ଯେତେ ତୋର ପୁରେ
ପକ୍ଷାଘାତେ ଉଡ଼ିଗଲେ ସେ ଅନେକ ଦୂରେ ।
କି ବୁଦ୍ଧି କରିବୁ ବକ୍ରକପଟର ନୀତି
ନିଶ୍ଚୟ କନ୍ଧୁ ତୋହର ଛାଡ଼ିଲା ବିଭୂତି ।
କଠୋର ସମୟ ଦେଖି ଶୁକ୍ର ମହାମନ୍ତ୍ରୀ
ହସ୍ତୀ ଏକ ଆରୋହିଣ ଛାଡ଼ି ଯେ ପଳାନ୍ତି ।
ହେ ଚଇତନ ହସ୍ତୀରେ ଚଢ଼ି ବୃହସ୍ପତି
ଐରାବତେ ଚଢ଼ିଛନ୍ତି ଦେବ ସୁରପତି ।
ପୁଷ୍ପକରେ ଆରୋହିଣ କରିଛି ଅର୍ଜୁନ
ଚଉଷଠି କୋଟି ତୁଲେ ବିଦ୍ୟାଧରମାନ ।
ଅସଂଖ୍ୟକ ବଳ ଦେଖି କରିଣ ଅସୁର
କରରେ ଧନୁ ଧରି ସେ ବିନ୍ଧିଲେକ ଶର ।
ଶ୍ରାବଣେ ଯେସନେ ବରଷନ୍ତି ନୀରଧାର
ଅନୁକ୍ଷଣେ ଧନୁ ଧରି ବରଷନ୍ତି ଶର ।
ଆକର୍ଷି ନାରାଚମାନ ବିନ୍ଧନ୍ତି ଗହଳ
ଉଭୟ ବଳ ମଧରେ ହେଲା ମହାଗୋଳ ।
ଉଭୟ ବଳର ସୈନ୍ୟ କଲେ ମହାଗୋଳ
ସମୁଦ୍ର ମନ୍ଥନେ ଯେହ୍ନେ ଜଳର କଲ୍ଲୋଳ ।
କୋଟି କୋଟି ଦୈତ୍ୟ ମିଶି ବିନ୍ଧନ୍ତି ଯେ ବାଣ
ଦୁଇପକ୍ଷ ସମକକ୍ଷ କେ ନୁହନ୍ତି ନ୍ୟୂନ ।
କୋପରେ ବଇନତେୟ ଧାମେ ଉଗ୍ରମୂର୍ତ୍ତି
ପକ୍ଷରେ ଯୁଧିଷ୍ଠି ରଖି ଦୈତ୍ୟଙ୍କୁ ନାଶନ୍ତି ।
ବଜ୍ରଶକ୍ତକୁ ପ୍ରହାର କଲେ ସୁରପତି
ଅସ୍ତ୍ର ଜ୍ୱାଳାରେ ଅସୁର ପଡ଼ିଯାନ୍ତି କ୍ଷିତି ।
ବାତ ବିଘାତେ ଯେସନେ ଲୋଟେ ରମ୍ଭାବନ
ତେସନେ ଲୋଟି ପଡ଼ନ୍ତି ଅସୁର ସଇନ ।

ବାୟବ୍ୟ ଶର ମାରନ୍ତେ ଥାଇ ସବ୍ୟସାଚି
ଅସୁର ବଳ ପଡ଼ିଲେ ହୋଇ ଲୋଚି ଲୋଚି ।
ପୁଣିହିଁ ଗନ୍ଧର୍ବାଶର ମାରି ଫାଲଗୁନି
ଛେଦି ପକାଇଲେ ବେଗେ ଅସୁର ସଇନି ।
ଏକ ଏକ ନାରାଚକେ ଶତସେନା ଫୁଟି
ଏକ ଉପରେ ଆରେକ ପଡ଼ିଯାଏ ଲୋଟି ।
ପୁଣି ଦନୁଜେ ବିନ୍ଧନ୍ତି ସୁତୀକ୍ଷ୍ଣ ନାରାଚ
ମହାଗରିଷ୍ଠ ସେମାନେ ଅଟନ୍ତି ଦନୁଜ ।
ନିର୍ଭୟେ ଦନୁଜ ସର୍ବେ ତିଳେ ନାହିଁ ଭୟ
ବଜ୍ର ପରାୟେ ଅଟଇ ତାହାଙ୍କର କାୟ ।
ତାଙ୍କୁ ନାଶ କରିବାକୁ ଅଟଇ କିରୀଟି
ଯାହାର ଶରାଘାତରେ ଗିରି ଯାଏ ଫୁଟି ।
ଏକ ନାରାଚ ମାରନ୍ତି ଦଶ ଅବା ବିଂଶ
ଯୋଜନକ ଓସାରରେ ଲୋଟିଲେ ରାକ୍ଷସ ।
ସୁର ଅସୁରଙ୍କ ବଳ ହୋଇ ଏକରୁଣ୍ଡ
ଅହୋବଳ ରଣରେ ସେ କମ୍ପାନ୍ତି ବ୍ରହ୍ମାଣ୍ଡ ।
ଦଶସସ୍ର ରଥୀ ମାଝି ବିନତାର ସୁତ
ଯୁଧିଷ୍ଠିଙ୍କୁ ଘେନି ମିଳେ ଶ୍ରୀକୃଷ୍ଣ ଅଗ୍ରତ ।
ପୁଷ୍ପକ ରଥୁଁ ଉତୁରି ପାର୍ଥ ଭଗବାନ
ପ୍ରଣିପାତ କଲେ ଯାଇ ଯୁଧିଷ୍ଠି ଚରଣ ।
ପୁଷ୍ପକ ବିମାନେ ପାର୍ଥ ଯୁଧିଷ୍ଠିଙ୍କୁ ନେଲେ
ଗରୁଡ଼ ପୃଷ୍ଠରେ କୃଷ୍ଣ ବିଜୟ କରିଲେ ।
ପାର୍ଥ ବିଜୟ ବାସବ ପୁଷ୍ପକର ରଥେ
ମାତଳି ସାରଥି ତାକୁ ବାହେ ତୋଷଚିତ୍ତେ ।
କୌମୋଦକୀ ଗଦା ଶଙ୍ଖ ଚକ୍ର କରେ ଧରି
ଅନେକ ଅସୁରବଳ ନାଶିଲେ ଶ୍ରୀହରି ।
ଅନେକ ନାରାଚ ଘେନି ବିନ୍ଧିଲେ ଦଇତେ
ସମସ୍ତ ବିଅର୍ଥ ହୁଏ ଗରୁଡ଼ ଆଘାତେ ।
ରଣେ ଅପଚୟ ଯହୁଁ ହୋଇଲେ ଅସୁର
ଲକ୍ଷେ ନାରାଚ ବିନ୍ଧିଲେ ଅର୍ଜୁନ ଉପର ।
ନିଷ୍କମ୍ପ ଯୋଦ୍ଧା ଅଟଇ ବୀର ଧନଞ୍ଜୟ
ନିରପେକ୍ଷ ବଳ ଦେଖି ନାହିଁ ତାର ଭୟ ।
ଅର୍ଜୁନ ଅଟେ ପ୍ରଳୟ ଅଗ୍ନିର ସମାନ
ଅସୁରବଳ ତା ତୁଲେ ଅଟନ୍ତି ତିରଣ ।
ଅନିବାର୍ଯ୍ୟ ସମର ଯେ କରଇ ବିବସ୍ଥ
ତୀକ୍ଷ୍ଣମୁନା ଶରାଘାତେ ମଲେ ଲକ୍ଷ ଲକ୍ଷ ।
ଅସମ୍ଭାଳ ହୋଇ ଦୈତ୍ୟ ପଳାଇଲେ ଭାଜି
ଦେଖି ହରିଣ୍ୟକବଚ ଉଠେ ଗଳଗାଜି ।
କୋଦାଳ ଅସ୍ତ୍ରକୁ ତାର ଧରିଅଛି କରେ
ବ୍ରହ୍ମାଣ୍ଡ କମ୍ପଇ ତାର ଗର୍ଜନ ଘାତରେ ।
କୋଦାଳ ବୁଲାଏ ଦୈତ୍ୟ ଅତି କୋପଭରେ
ପ୍ରହାର କରିଲା ନେଇ ଅର୍ଜୁନ ଉପରେ ।
ବାୟବ୍ୟ ଶରକୁ ଘେନି ବୀର ଫାଲଗୁନି
ଅସୁର କୋଦାଳ ଅସ୍ତ୍ର ପକାଇଲା ହାଣି ।
ଶୂନ୍ୟହସ୍ତ ହୋଇ ବଜ୍ର କବଚର ନାତି
ମୁଥେକ ପ୍ରହାର କଲା ବୀରବର ଧାତି ।
ଅର୍ଜୁନ ରଥ ମାତଳି ଘୁଞ୍ଚାଇଣ ନେଲା
ନବ ନିଶିକୋନ୍ତ ଘେନି ଅର୍ଜୁନ ମାଇଲା ।
ବଜ୍ର କୋନ୍ତ ପଡ଼ିବାରୁ ଅସୁର ଶରୀରେ
ଉତ୍ତାନ ଭାବେ ପଡ଼ିଲା ଯାଇଣ ମହୀରେ ।
ପୁଣି ନୀଳଚକ୍ର କୋପେ ମାରି ଧନଞ୍ଜୟ
ବେନି ଖଣ୍ଡ କରିଦେଲା ଅସୁରର କାୟ ।
ସମରେ ନିଧନ ବଜ୍ର କବଚର ନାତି
ସାଧୁ ଧନଞ୍ଜୟ ବୋଲି ବୋଲେ ବେଦପତି ।
ନାରାଚ ମାରନ୍ତି ଧାଇଁଯାଇ ବିଦ୍ୟାଧରେ
ରାଜା ଅଭାବେ ପଳାନ୍ତି ସକଳ ଅସୁରେ ।
ବେଢ଼ିଣ ଗନ୍ଧର୍ବମାନେ ଅସୁରଙ୍କୁ ମାରି
ଖଡ଼ଗ କୁନ୍ତ ଯେ ଗଦା ନାରାଚ ପ୍ରହାରି ।
ଦୁରନ୍ତକ ବଳ ଯହୁଁ ହୋଇଲେ ନିଧନ
ହିରଣ୍ୟଗର୍ଭ ପୁରକୁ କଲେ ନାଶପାନ ।
ଯୁଧିଷ୍ଠିର କୋଳେ ଧରି ଅମର ବିଡ଼ୋଜା
ଅମର ସ୍ୱର୍ଗପୁରରେ କଲେ ଦିବ୍ୟପୂଜା ।
ସଭାରେ ଯୁଧିଷ୍ଠିଦେବ କହିଲେ ବାରତା
ବୁଝି ନ ପାରିଲୁ ଆମ୍ଭେ ଅସୁରର କଥା ।
ଯୋଗୀ ସ୍ୱରୂପରେ ତାର ବିକାଶଇ କାୟ
ଈଶ୍ୱରଙ୍କ ରୂପ ଦେଖି କରିଲୁ ବିନୟ ।
ଆହାରକୁ ମାଗିଲା ସେ ବୃନ୍ଦାହୋଳ ପାଣି
ତିନିଭାଇ ଗଲେ ମୋର ସେ ପଦାର୍ଥ ଆଣି ।
ବିଭୂତି ଗୁଡ଼ାଏ ଦେଲା ମୋର କରସ୍ଥଳେ
ଆସନ ଘେନି ଗମିଲୁ ଗଗନ ମଣ୍ଡଳେ ।
ଅନେକ କୂଟ କରିଲା ହରିଣ୍ୟର ପୁରେ
ମାରି ଲୋଡ଼ନ୍ତେ ରଖିଲେ ଶୁକ୍ରମନ୍ତ୍ରୀ ମୋରେ
ସଭାରେ କହନ୍ତି ଦେବ ଅମର ତନୟ
ଦେବଙ୍କ ଦୁର୍ଲ୍ଲଭ ଅଟେ ଗରୁଡ଼ ଉପାୟ ।
ସବୁ ଚରିତ କହିଲେ ଧର୍ମର ଯୁଧିଷ୍ଠି
ଅମରୁ ମେଲାଣି ଦେଲେ ତହୁଁ ପରମେଷ୍ଠୀ ।
ଜଗନ୍ନାଥ ବିଜେ କଲେ ଗରୁଡ଼ ବାହନେ
ପ୍ରବେଶ ହୋଇଲେ ଯାଇ ଦ୍ୱାରକା ଭୁବନେ ।
ଅର୍ଜୁନଙ୍କୁ ସଙ୍ଗେ ଘେନି ବିଜୟ ଯୁଧିଷ୍ଠି
ଭାଗ୍ୟବର ବନେ ହେଲେ ମନେ ଲଭି ତୁଷ୍ଟି ।

ତିନିଭାଇ ଆସି ହେଲେ ପାଦେ ପରଣାମି
ସବୁ ଚରିତ କହିଲେ ଧର୍ମଦେବ ସ୍ୱାମୀ ।
ରହିଲେ ପାଣ୍ଡବେ ତହିଁ ବର୍ଷା ଚାରିମାସ
ଯୁଧିଷ୍ଠି ହରଣ ହେଲା ଏହିଠାରେ ଶେଷ ।
ନମସ୍ତେ ଗିରିଜା ମାଗୋ ମହେଶ ମୋହିନୀ
ତବ ପ୍ରସାଦେ ଭାରତ ଲେଖେ ମୋ ଲେଖନୀ
ସ୍ୱପନରେ ଯାହା ମୋତେ ଦିଅ ଉପଦେଶ
ସେହି କଥାକୁ ଲେଖଇ ମୋର ନାହିଁ ଦୋଷ ।
ଏହିପରି ଦୟା ମୋତେ କରିଥାନ୍ତି ଦେବୀ
ପୂର୍ବଜନ୍ମେ ପରିଚାର ହୋଇଥିଲି ସେବି ।
ତେଣୁକରି ଦୟା ମୋତେ ହୋଇଥାଏ ସଦା
ଜନ୍ମେ ଜନ୍ମେ ଏହିପରି ଥାଉ ଗୋ ଶାରଦା ।
ପ୍ରସନ୍ନା ସାଧବୀ ମାଗୋ ଝଙ୍କଡ଼ ବାସିନୀ
ଫେଡ଼ ମୋହର କଷଣ ଜଗତ ଜନନୀ ।
ଏ ଭବସାଗରେ ପଡ଼ି ଯାଉଅଛି ଭାଷି
ପାରିହେବି ତୁମ୍ଭ ନାମ ନଉକାରେ ବସି ।
ଲୋଭ ମୋହ କାମ କ୍ରୋଧ ଏ ଆଦି ସକଳ
ଏଥୁ ତରିବାକୁ ଶକ୍ତି ତୁମ୍ଭର କେବଳ ।
ଶ୍ରୀଚଣ୍ଡୀ ଶାରଳା ଘେନ ଏହି ନିବେଦନ
ଶାରଳା ଦାସକୁ ମାଗୋ କର ମୁକ୍ତି ଦାନ ।

■ ■ ■

## ଯୁଧିଷ୍ଠିରଙ୍କୁ ଧର୍ମବକର ପ୍ରଶ୍ନ

ପଚାରନ୍ତି ବୈବସ୍ୱତ ମନୁ ନୃପବର
ହେ ଅଗସ୍ତି ମୁନି ଘେନ ନିବେଦନ ମୋର ।
ଯୁଧିଷ୍ଠି ହରଣ କଥା କରିଲ ପ୍ରକାଶ
ଏଥୁଅନ୍ତେ କିସ କଲେ ଧର୍ମଙ୍କର ଶିଷ୍ୟ ।
ସେହି କଥା ଶୁଣିବାକୁ ବଳଇ ମାନସ
କହନ୍ତି ଅଗସ୍ତି ତୁମ୍ଭେ ଶୁଣ ହେ ନରେଶ ।
ଭାଗ୍ୟବର ବନସ୍ତର ଗିରିଶିଖ ଦେଶ
ରହିଲେ ପାଣ୍ଡବମାନେ ବର୍ଷା ଚାରିମାସ ।
ବର୍ଷା ଅନ୍ତେ ଶୀତ ଆସି ହୁଅନ୍ତେ ପ୍ରବେଶ
ବିଛା ମାସ ଶୁକ୍ଳପକ୍ଷ ପୂର୍ଣ୍ଣମୀ ଦିବସ ।
ଗୁରୁବାର ମୃଗଶିରା ନକ୍ଷତ୍ର ପ୍ରସ୍ଥାନେ
ବିଜୟ ପାଣ୍ଡବେ ମନୋହର ନାମେ ବନେ ।
ବୁଲି ଦେଖନ୍ତି କୌଶିକ ଗଙ୍ଗାନଦୀ ତୀର
ବାଞ୍ଛାବଟ ଦେଖି ତହିଁ କରିଲେ କୁଟୀର ।
ତହିଁ ରହିଲେ ନିଶ୍ଚିନ୍ତେ ସେହି ପାଞ୍ଚଭାଇ
ଲୋମଶ ମହାମୁନିଙ୍କି ଦେଖିଲେ ସେ ତହିଁ ।
ଲୋମଶଙ୍କ ଚରଣରେ କରିଲେ ପ୍ରଣାମ
କଲ୍ୟାଣ ବାଞ୍ଛା କରିଲେ ସେ ମୁନି ଉତ୍ତମ ।

ବୋଇଲେ ଲୋମଶ ମୁନି ଶୁଣ ଯୁଧିଷ୍ଠିର
ବନେ ଆସିବାରୁ ଭେଟ ପାଇଲୁ ତୁମ୍ଭର ।
ଏହି ବାଞ୍ଛାବଟ ବୃକ୍ଷ ଅଟେ ମହାକଳ୍ପ
ମନୋବାଞ୍ଛା ପୂର୍ଣ୍ଣକରେ ଯେ କରେ ସଂକଳ୍ପ ।
ପୁଣି ଧର୍ମ ବାଞ୍ଛା କରି ନମିଲେ ବଟକୁ
ପ୍ରସନ୍ନ ହୁଅ ଅନାଦି ମହାତ୍ମା ଆମ୍ଭଙ୍କୁ ।
ଯେମନ୍ତେ ସୁବିଧା କ୍ରମେ ଆମ୍ଭେ ରହୁ ବନ
ତେମନ୍ତ ପ୍ରକାରେ ରଖ ହେ ବଟରାଜନ ।
ମନ ବଚନ କର୍ତ୍ତବ୍ୟେ ଆନ ନାହିଁ ମୋର
କେମନ୍ତେ ସୁବିଧା କ୍ରମେ ରହିବୁ ବନର ।
ଆଠବରଷ ବନରେ ହୋଇଲା ଅତୀତ
ପ୍ରସନ୍ନ ହେବୁ ପ୍ରମାଦ ହେଲେ ଉପସ୍ଥିତ ।
ଅନେକ ସ୍ତୁତି ବଚନେ ବୋଲନ୍ତି ଯୁଧିଷ୍ଠି
ପ୍ରତ୍ୟକ୍ଷରେ କଳ୍ପରାଜ ତୁମ୍ଭ ନାମ ଗୋଟି ।
ଶୁଦ୍ଧଚିତ୍ତେ ତୁମ୍ଭ ପାଦେ କରିଥିବା ସେବା
ଏଥେ ଅନୁଗ୍ରହ କରି ଆଜ୍ଞା ଦେଉଥିବା ।
ଅରିଷ୍ଟ ଆପଦ ଅପରାଧ ଆଦି କରି
ତୁମ୍ଭର ଦର୍ଶନେ ସର୍ବ କଷ୍ଟ ହେବୁ ପାରି ।
ବଟକୁ ଅନେକ ସ୍ତୁତି କଲେ ଦେବ ଧର୍ମ
ଶତ ସହସ୍ର ବାର ସେ କଲେକ ପ୍ରଣାମ ।
ଜୟ ଜୟ ବାଞ୍ଛାବଟ ଦୟା କରିଥିବୁ
ଶୂଦ୍ରମୁନି ଶାରଳାକୁ ଗତିମୁକ୍ତି ଦେବୁ ।
ଶୁଣ ବୈବସ୍ୱତ ମନୁ କହନ୍ତି ଅଗସ୍ତି
ବଟକୁ ସ୍ତୁତି କରିଲେ ଯୁଧିଷ୍ଠି ନୃପତି ।
ଲୋମଶ ବୋଇଲେ ତାଙ୍କୁ ବହୁ ପୁରୁଷାର୍ଥ
ରାଜ୍ୟ ତେଜି ବନେ କିପାଁ ବୁଲ ପଞ୍ଚଭ୍ରାତ ।
ବାବୁ ଇଚ୍ଛାକର ସୁଖଭୋଗ ରାଜପଦ
ପୁଣି ଆମ୍ଭ ବିଚାରକୁ ଅଟେ ବଡ଼ ମନ୍ଦ ।
ଧର୍ମନନ୍ଦନ ମୁନିଙ୍କୁ କଲେ ବହୁ ପୂଜା
ପୁଣି ସେ ମୁନି କହନ୍ତି ଶୁଣ ଧର୍ମରାଜା ।
ବିପଦ ସମୟେ ଯେବେ ବଟବୃକ୍ଷ ପାଇ
ସୂର୍ଯ୍ୟ ଥିବାଯାଏ ସଙ୍ଗେ ତା ଛାଇ ଗୋଡ଼ାଇ ।
ଆଦିତ୍ୟ ଅସ୍ତ ହୋଇଲେ ସେହୁ ହୁଏ ଲୋପ
ତେସନ ସମ୍ପଦେ ହୁଏ ସଦୃଶ ବିପାକ ।
ପଦକରେ ନିଧି ପଦକରେ ହୁଏ ବୁଦ୍ଧି
ତୁ ବ୍ରହ୍ମବେତ୍ତା ମୁଁ ତୋତେ କିସ ସେ ସମ୍ପାଦି ।
ଅବଶ୍ୟ ପ୍ରାଣୀମାନଙ୍କୁ ହୁଏ ସୁଖ ଦୁଃଖ
ସମ୍ପଦ ଥିଲେ ବିପଦ ନ ଆସଇ ପାଖ ।
ବିପଦ ବେଳେ ସମ୍ପଦ କେଉଁଠାରେ ଥାଇ
ସମ୍ପଦ ବେଳରେ ସେହି କେବେ ନ ଆସଇ ।

ସ୍ୱାମୀ ଜନ୍ମ ସୁଫଳେ ମୁଁ ଭେଟିଲଇଁ ତୋତେ
ଲୋମଶ କହିଲେ ରାଜା ଧନ୍ୟ ତୋ ଜୀବିତେ
ପାଣ୍ଡବମାନଙ୍କୁ ଘେନି ଚଳିଲେ ଲୋମଶ
ବନରେ ଭେଟିଲେ ମୁନି ଭରଦ୍ୱାଜ ଶିଷ୍ୟ ।
ଧର୍ମନନ୍ଦନ ମୁନିଙ୍କି କରି ବହୁ ପୂଜା
ଭୂମିଷ୍ଠ ପ୍ରଣାମ କରି ସେବାକଲେ ରାଜା ।
ଭରଦ୍ୱାଜ କହୁଛନ୍ତି ଯୁଧିଷ୍ଠିଙ୍କି ଦେଖି
ସେବିଲ ଗହନ ବନେ ତୁମ୍ଭେ ପଉଲସ୍ତି ।
ଧାର୍ମିକ ବିବେକୀ ତୁହି ଅଟୁ ଭାଗ୍ୟବନ୍ତ
ଆପଣେ ତରି ତାରିଲ ଯେ ପିତୃଲୋକନ୍ତ ।
ଶତକୋଟି ତୀର୍ଥ ଏହି ଭୁବନେ ଯେ ଅଛି
ଆପଣେ ଫଳଶ୍ରୁତି ଏଠାରେ ହୋଇଅଛି ।
ଦୈତ୍ୟମାନଙ୍କୁ ଆମ୍ଭର ଲାଗୁଅଛି ଭୟେ
ତେଣୁ ଯାଇ ନ ପାରୁଛୁ ବହୁ ଦୂର ଯାଏ ।
ତୁମ୍ଭର ସଙ୍ଗରେ ଏବେ ଭ୍ରମିବୁ ସମସ୍ତ
ତୀର୍ଥମାନ କରି ଆମ୍ଭେ ହୋଇବୁ ମୁକତ ।
ଏମନ୍ତ ବଚନ ଯହୁଁ କହିଲେକ ଧର୍ମ
ଲୋମଶ ଭରଦ୍ୱାଜ ଯେ ଗଲେ ନିଜାଶ୍ରମ ।
ଚଇତ୍ର ଶୁକ୍ଳ ଦଶମୀ ପୁଣି ଗୁରୁବାର
ମଘା ନକ୍ଷତ୍ରର ଭୋଗ ଅଟେ ସେ ଦିନର ।
ସୁରଦେବ ନାମ ଅଟେ ଆଉ ଏକ ବନ
ତହିଁ ଯାଇ ବିଜେ କଲେ ପଣ୍ଡୁର ନନ୍ଦନ ।
ଯୁଧିଷ୍ଠି ବିଜେ କରିଲେ ଧର୍ମ ପରବତ
ଜଳ ନାହିଁ ବୋଲିଣ ଯେ କରନ୍ତି ବ୍ୟକତ ।
ଜଳ ଖୋଜି ଆଣ ସନ୍ଧ୍ୟା କରିବା ଯୁକତେ
ଭୀମକୁ ବୋଇଲେ ଜଳ ଆଣ ଯା ତୁରିତେ ।
ସ୍ୱାମୀଙ୍କର ଆଜ୍ଞାପାଇଁ ଚଳଇ ପାବନି
ଜଳଖୋଜି ଖୋଜି ଗଲା ଯୋଜନ ଯେ ତିନି ।
ଗିରି କନ୍ଦର ବନସ୍ତ ବହୁ ଭ୍ରମି ଭ୍ରମି
ଜଳ ନ ପାଇଣ ଭୀମ ହେଲା ମହାଶ୍ରମୀ ।
ଅନ୍ଧକ ସରୋବର ସୁଦେବ ଗିରିତଳ
ପନ୍ଦର କ୍ରୋଶ ବିସ୍ତାରେ ରହିଅଛି ଜଳ ।
ଅତି ଦୂରୁ ଜଳ ଦେଖି ହୋଇଣ ସନ୍ତୋଷ
ସେହି ସରୋବର ପାଶେ ହୋଇଲା ପ୍ରବେଶ ।
ସେ ସରୋବର ଅଟଇ ଯୋଜନେ ବିସ୍ତୀର୍ଣ୍ଣ
ଅଛଇ ଶିମୂଳିବୃକ୍ଷେ ମଧ୍ୟେ ବିଦ୍ୟମାନ ।
ସେହି ବୃକ୍ଷର ଡାଳରେ ଅଛି ବକଟାଏ
ଅତି ସୁସଞ୍ଚ ଧବଳ ବର୍ଣ୍ଣ ତାର କାୟେ ।
ଭୂତ ଭବିଷ୍ୟତ କଥା ସେ ଭଲ ଜାଣଇ
ବେଦମନ୍ତ୍ର ପୁରାଣାଦି ସବୁ ବଖାଣଇ ।

ଧର୍ମବକ ବୃକ୍ଷେ ଥାଇ ଡାକକୁ ଦିଅଇ
ମାତ୍ର ଶ୍ରମେ ବୃକୋଦର ପଡ଼ିଲାକ ଡେଇଁ ।
ରହ ରହ ପଥୁକୀ ରେ ନ ପିଅ ଏ ଜଳ
ଭକ୍ଷଣେ ଦୁଃଖ ପାଇବୁ ମନେ ତୁହି ଭାଳ ।
ଆହୋ ମହାତ୍ମା ଏ ଜଳ ତୁ କେବେ ପିଅନା
କ୍ଷଣେ ବିଶ୍ରାମି ମୋହର ବାକ୍ୟ ଶୁଣ କିନା ।
ଜାଣି କରି ମହାତମା ପିଅ ପଛେ ପାଣି
ଆହୋ ରହ ତୋତେ ମୁହିଁ କହେ ଏକବାଣୀ ।
ମୋହର ବଚନ ହେଳା ନ କରସି ତୁହି
ପକ୍ଷୀ ହୋଇ ମୋର ଚିତ୍ତେ ଦୟା ଯେ ଅଛଇ ।
ମୋହର ବଚନେ ତୁ ନ ପିଅ ଏହୁ ଜଳ
ପଡ଼ିବୁ ଆପଦେ ତୁହି ମୋର ବୋଲ କର ।
ଏ ଗଙ୍ଗାର ପାଣି ପିଇବେଣି ଲକ୍ଷେ ଜନ
ମୋହର ଦେଖୁ ଦେଖୁ ସେ ହେଲେଣି ନିଧନ ।
ପାପ ଜଳ ଅଟେ ଏହା ନ ପିଅ ପଥିକ
ମୋର ଦେଖୁ ଦେଖୁ ମଲେ ବ୍ରାହ୍ମଣ ଅନେକ ।
ଭୀମସେନ ବୋଇଲା ହୋ ମୁହିଁ ତ ତୃଷାର୍ତ୍ତୀ
ଗଙ୍ଗା କିସ ଦୋଷୀ ଏହା ସଦା ବଦୟନ୍ତୀ ।
ଧର୍ମବକ କଥା ଭୀମ କଲା ହେୟ ଜ୍ଞାନ
ସେ ପାଣି ପିଅନ୍ତେ ଅନ୍ଧ ହୋଇଲା ବହନ ।
ପିଇବା ମାତ୍ରକେ ଭୀମ ପଡ଼େ ମହୀଲୋଟି
ନିଜପ୍ରାଣ ବିସର୍ଜିଣ ହୋଇଲା ନିଶ୍ଚେଷ୍ଟି ।
ଭୀମସେନର ଉଛୁର ଦେଖିଣ ଯୁଧିଷ୍ଠି
ବୋଇଲେ ବହନ ଯାଅ ତୁହି ରେ କିରୀଟି ।
ବହୁତ ବିଳମ୍ବ ହେଲା ଭୀମ ତ ନଇଲା
ପାଣି ନ ପାଇଲା କିବା ପ୍ରମାଦ ପଡ଼ିଲା ।
ସ୍ୱାମୀଙ୍କର ଆଜ୍ଞା ପାଇ ଚଳେ ଫାଲଗୁନି
ବନେ ବୁଲି ବୁଲି ଗଲା ସେ ଯୋଜନ ତିନି ।
ପ୍ରବେଶ ହୋଇଲା ପାର୍ଥ ଅନ୍ଧକ ବନସ୍ତେ
ପୁଣିହିଁ ଉଠିଲା ଯାଇ ଅନ୍ଧକ ପର୍ବତେ ।
ନିରୀକ୍ଷଣ କରି ପାର୍ଥ ତହୁଁ କଲା ଦୃଷ୍ଟି
ଦକ୍ଷିଣ ଭାଗ ଜଳରେ ପଶିଲା କିରୀଟି ।
ସେ ବକ ବୋଇଲା ତୁହି କ୍ଷଣେ ରହ ରହ
ପାଣି ନ ପିଅ ସମସ୍ୟା ମୋତେ ଆଗ ଦିଅ ।
ତୋହର ଅତି ସୁନ୍ଦର ସୁକୁମାର କାୟେ
ପ୍ରତ୍ୟକ୍ଷରେ ଦିଶୁ ତୁହି ବିଦ୍ୟାଧର ପ୍ରାୟେ ।
ହତ୍ୟା ବିବାଦୀ ଅଟଇ ଏହି ସରୋବର
ଗୋ ବ୍ରାହ୍ମଣ ନାଶ କରେ ଦୟା ନାହିଁ ତାର ।
ଏ ପାଣି ପିଇଲେ ବେନି ଚକ୍ଷୁଯାଏ ଫୁଟି
କୂଳକୁ ଉଠିଲେ ପୁଣି ପ୍ରାଣ ଯାଏ ତୁଟି ।

ବ୍ରହ୍ମହତ୍ୟା ଦୋଷେ ଏହୁ ଅଟେ ମହାପାପୀ
ମୁଁ ସତ୍ୟ କହିଲି ପାଣି ନ ପିଅ କଦାପି ।
ଅର୍ଜ୍ଜୁନ ବୋଇଲେ ଆଗେ ମୁଁ ପାଣି ପିଇବି
ତଦନ୍ତରେ ତୋହ ସଙ୍ଗେ ବଚନ ଭାଷିବି ।
ତୃଷା କାତରରେ ପାର୍ଥ ପିଇଲା ଆକ୍ରୋଶି
ବେନିଚକ୍ଷୁ ଫୁଟିଗଲା କିଛିହିଁ ନ ଦିଶି ।
କୂଳକୁ ଉଠନ୍ତେ ପୁଣି ଯାଏ ମହୀଲୋଟି
ପୂର୍ବ କୂଳେ ଭୀମସେନ ପଶ୍ଚିମେ କିରୀଟି ।
ଭୀମ ଅର୍ଜ୍ଜୁନର ଧର୍ମ ନ ପାଇ ବୃତ୍ତାନ୍ତ
ବିଳମ୍ବ ଦେଖି ଯୁଧିଷ୍ଠି ହୋଇଲେ ଚକିତ ।
ଆରେ ବାବୁ କିଛିଦୂର ଯାଅ ତୁ ନକୁଳ
ଭୀମାର୍ଜ୍ଜୁନ ଗଲେ ଆସି ଆହନିକ ବେଳ ।
ଧାମଇଁ ନକୁଳ ପବନର ବେଗେ ବନେ
ସଂକେତ ଗୋଡ଼ାଇ ଯାଇ ହେଲା ସେହି ସ୍ଥାନେ
ନକୁଳ ପ୍ରବେଶ ଯାଇ ଉତ୍ତର ପ୍ରଶସ୍ତେ
ପରିଶ୍ରମେ ଜଳ ଖାଇ ଧାମଇଁ ତୃଷାର୍ତ୍ତେ ।
ସେ ଧର୍ମବକ ବୋଇଲା ରହ ରହ ବାବୁ
ବଡ଼ ଦୋଷୀ ଜଳ ଏହୁ ପିଇଲେ ମରିବୁ ।
ଗୋ ବ୍ରାହ୍ମଣ ଆଦିକରି ଯେ ପାଣି ପିଅନ୍ତି
ଏଥିରେ ସଂଶୟ ନାହିଁ ସେମାନେ ମରନ୍ତି ।
ଏଥିର ଚରିତ ତୋତେ କହିଲଇଁ ବାବୁ
ତୋହର ଇଚ୍ଛାରେ ଜଳ ପିଇଲେ ମରିବୁ ।
ନକୁଳ ବୋଇଲେ ମୋର ପୋଡିଯାଏ କାୟେ
ଆଗକରି ପିଏ ମୁହିଁ ପାଣିରୁ ମନ୍ଦାଏ ।
ବକର ବଚନ ତାର ହୃଦେ ନ ପଶିଲା
ପାଣି ପିଅନ୍ତେ ତାହାର ନେତ୍ର ଫୁଟିଗଲା ।
କୂଳକୁ ଆସନ୍ତେ ପଡ଼ି ମଲା ମୁହଁ ମାଡ଼ି
ଶରୀର ବିସର୍ଜିଲା ତା ଆତ୍ମା ଗଲା ଛାଡ଼ି ।
ତିନୋଟି ସୋଦର ଯହୁଁ ନଇଲେ ବାହୁଡ଼ି
ଯୁଧିଷ୍ଠିର ଦେବ ସ୍ୱଂୟ ପର୍ବତରୁ ଗଡ଼ି ।
ଅଗ୍ରତରେ ସହଦେବ ଚଳଇ ବହନ
ପ୍ରବେଶ ହୋଇଲେ ଯାଇ ସରୋବର ସ୍ଥାନ ।
ଶ୍ରମେ ଯାଇ କରି ଡେଇଁ ପଡ଼ିଲେକ ଜଳେ
ଧର୍ମବକ ଡାକେ ଜଳ ପିଇବାର ବେଳେ ।
ନ ପିଅ ତୁ ଏହି ଜଳ ଅଟେ ଅତି ମନ୍ଦ
ଯାକୁ ପିଇଲେ ମରିବୁ ହୋଇ ତୁହି ଅନ୍ଧ ।
ତୃଷାରେ ଆକୁଳ ହୋଇ ନ ଶୁଣିଲା ବାଣୀ
ଆକ୍ରୋଶିଣ ସହଦେବ ପିଇଲା ସେ ପାଣି ।
ଜଳ ପିଅନ୍ତେ ତାହାର ଚକ୍ଷୁ ଗଲା ଫୁଟି
ପଡ଼ିଲା ସେ ମୂର୍ଚ୍ଛାଗତ ହୋଇ ମହୀଲୋଟି ।

ଆପଣେ ଧର୍ମ ଯୁଧିଷ୍ଠି ପର୍ବତରେ ଥିଲେ
ଚାରିଭାଇଙ୍କ ବିଳମ୍ବ ଦେଖିଣ ଚଳିଲେ ।
ପାଦଚିହ୍ନ ଦେଖି ଦେଖି ବେଗେ ଗଲେ ଚଳି
ସେ ଅନ୍ଧକ ସରୋବର ନିକଟରେ ମିଳି ।
ଜଳ ଦେଖି ପିଇବାକୁ କରିଲେ ସେ ମନ
ଧର୍ମବକ ବୋଲେ ଜଳ ନ କର ତୁ ପାନ ।
ସେ ବକ ବୋଲଇ ତହୁଁ ଶୁଣରେ ପୁରୁଷ
ଦେଖ ଚାରିକୂଳେ ଚାରିଜଣ ହେଲେ ନାଶ ।
ଗୋ ବ୍ରାହ୍ମଣ ପଶୁ ପକ୍ଷୀ ଚଣ୍ଡାଳାଦି କରି
ଏ ଜଳକୁ ଯେ ପିଇବ ଯାଆନ୍ତି ସେ ମରି ।
ନ ମାନିଣ ଯେହୁ ଅବା ଏ ଜଳ ପିଅଇ
କୂଳକୁ ଉଠିବା ମାତ୍ରେ କ୍ଷଣେ ନ ଜୀଅଇ ।
ଗୋ ବ୍ରାହ୍ମଣ ହତ୍ୟାଠାରୁ କିଏ ବଡ଼ ଦୋଷ
ଏହା କହି ତୁମ୍ଭେ ଯାଇ ତେବେ ଜଳେ ପଶ ।
ଯୁଧିଷ୍ଠି ବୋଇଲେ ଯେହୁ ବିଶ୍ୱାସଘାତକି
ଭୋଜନ ଦେଇ ଯେ ଜନ ନାଶଇ ପ୍ରାଣୀକି ।
ନିଜେ ନ ଦିଏ ଯେ ଦିଏ ତାକୁ ପୁଣି ବାରେ
କରିଥିବାର କୀର୍ତ୍ତିକୁ ଯେହୁ ପୁଣ ହରେ ।
ନିଜେ ଧର୍ମ ନ କରିଣ ପରଧର୍ମ ବାରି
ବ୍ରହ୍ମହତ୍ୟା ଦୋଷଠାରୁ ଏହି ଅଟେ ଭାରୀ ।
ଏତେକ କହିଣ ତହୁଁ ଦେବ ଧର୍ମସୁତ
ଜଳ ଛୁଇଁବାକୁ ସେହୁ ବଢ଼ାଇଲେ ହସ୍ତ ।
ଦେଖି ଧର୍ମବକ ବୋଲେ ରହ ରହ ବାବୁ
ପାଣି ପିଇଲେ ଏକ୍ଷଣି ନିଶ୍ଚେ ନାଶଯିବୁ ।
ଆହେ ମହାତମା ରାଜା କାହିଁ ହୋଇ ବଶ
ଭଣ୍ଡାରକୁ ବିଂଧ୍ୱସିଣ ପୃଥ୍ୱୀ କରେ ନାଶ ।
ପୁଣି ବକ ବୋଲଇ ସେ କାମ ଧର୍ମ ଗାଈ
ଯୁଧିଷ୍ଠି ବୋଇଲେ ତାହା ନୁହଇ ନୁହଇ ।
ରାଜା ହୋଇ ଯେବେ କି ସେ ସର୍ବକରେ ଗ୍ରାସ
ବ୍ରହ୍ମହତ୍ୟା ଦୋଷେ ଦୋଷୀ ହୁଅଇ ଅବଶ୍ୟ ।
ଧର୍ମବକ ବୋଇଲା ସେ କାମଦୁହାଁ ଗାଈ
ଯୁଧିଷ୍ଠି ବୋଇଲେ ବକ ସେ କଥା ନୁହଇ ।
କାମଦୁହାଁ ଧେନୁ ଯେବେ ହୋଇଥିବ ସେହି
ରାତ୍ର ଦିବସରେ ଦୁଧ ଅବଶ୍ୟ ଦିଅଇ ।
ଆହେ ବକ ଶୁଣ ତୁମ୍ଭେ ହୋଇ ସାବଧାନ
ବିଦ୍ୟା ହିଁ ଅଟଇ ସାର ନ ସରେ ସେ ଧନ ।
ବକ ବୋଇଲା ସେ ଯଦି ବୈତରଣୀ ନଦୀ
ବନସ୍ତହୁଁ ଗହନ କେ କହ ତା ସମ୍ବାଦି ।
ଯୁଧିଷ୍ଠି ବୋଇଲେ ବନ କିସ ଯେ ଗହନ
ଯାଉଁ ଯାଉଁ ଶେଷ ହୋଇ ଯାଆନ୍ତି ସେମାନ ।

ଶାସ୍ତ୍ର ବୋଲି କରିଣ ଯେ ଯେଉଁ ପାଠଗୋଟି
ସରି ତ ନ ଯାଇ ସେହୁ ଗହନ ବନଟି ।
ଧର୍ମବକ ବୋଇଲା ମୁଁ କହଇ ତୁମ୍ଭଙ୍କୁ
କେ ମଇତ୍ର ବୋଲିବଟି ଏ ବନବାସକୁ ।
ଯୁଧିଷ୍ଠି ବୋଇଲେ ତହୁଁ ଶୁଣ ଆହେ ବକ
ମଇତ୍ର ଅଟେ ବିଦେଶେ ବିଦ୍ୟାର ବିବେକ ।
ଧର୍ମବକ ବୋଲେ ତୁହି ବିବେକୀ ପଣ୍ଡିତ
ଗୃହକୁ ମଇତ୍ର କିଏ କହିବାକ ସତ ।
ଯୁଧିଷ୍ଠି ବୋଇଲେ ସୁଲକ୍ଷଣା ଭାଗ୍ୟବତୀ
ଗୃହକୁ ମଇତ୍ର ଅଟେ ଆପଣା ଯୁବତୀ ।
ବକ ପୁଣି ପୁଚ୍ଛାକରେ ଧର୍ମ ଯୁଧିଷ୍ଠିଙ୍କି
କିଏ ସେ ମଇତ୍ର ଅଟେ ସକଳ ବ୍ୟାଧିକି ।
ଯୁଧିଷ୍ଠି ଦେବ ବୋଇଲେ ବଚନରେ ବୋଧି
ବ୍ୟାଧିକି ମଇତ୍ର ଅଟେ ଜାଣ ମହୌଷଧି ।
ତୃଷାରେ ଯୁଧିଷ୍ଠି ପିଇ ଲୋଡ଼ନ୍ତି ଯେ ପାଣି
ବକ ବୋଲେ କ୍ଷଣେ ରହ ପିଇବୁ ଏକ୍ଷଣି ।
ବକ ବୋଲଇ ନାନାଦି ପାତକ ମାନଙ୍କୁ
କିଏ ସେ ମଇତ୍ର ଅଛି କହି ଦେ ତାହାକୁ ।
ଯୁଧିଷ୍ଠି ଦେବ ବୋଇଲେ ଅନ୍ୟ ମିତ୍ର ନାହିଁ
ଧର୍ମ କରିଥିବା ପ୍ରାଣୀ ମିତ୍ର ଅଟେ ସେହି ।
ଧର୍ମବକ ବୋଇଲେ କେ ଆପଦେ ରହଇ
ଯୁଧିଷ୍ଠି ବୋଇଲେ ଯେ ପାର୍ବତୀ ସୁମରଇ ।
ବକ ବୋଲେ ପ୍ରମାଦରୁ କେ କରେ ମୁକତି
ନୃପ ବୋଲେ ଧର୍ମ ଥିଲେ ତୁଟଇ ଦୁର୍ଗତି ।
ତୃଷାରେ ଯୁଧିଷ୍ଠି ପିଇ ଲୋଡ଼ନ୍ତି ଯେ ପାଣି
ଧର୍ମବକ ବୋଲେ ବାବୁ ପିଇବୁ ଏକ୍ଷଣି ।
ପୁଣି ଧର୍ମବକ ବୋଲେ ଆକାଶ ମଣ୍ଡଳ
କେତେକ ବିସ୍ତାର ଅଟେ କେତେ ପରିମଳ ।
ଯୁଧିଷ୍ଠି ବୋଇଲେ ଦେବ ବଚନ ପ୍ରକାଶ
ଚାରିଅଙ୍ଗୁଳି ପ୍ରମାଣ ଅଟଇ ଆକାଶ ।
ଧର୍ମବକ ବୋଲେ ପୁଣ ଆହେ ମହାତମା
କେତେ ଚରଣ ହୁଅଇ ପୃଥ୍ୱୀଦେବୀ ସୀମା ।
ଯୁଧିଷ୍ଠି ଦେବ ବୋଇଲେ ତୁ ଅଟୁ ଧାର୍ମିକ
ପୃଥ୍ୱୀ ମାପ କଲେ ହେବ ବେନି ଯେ ପାଦକ ।
ଧର୍ମବକ ବୋଲେ କହ କିଏ ସେ ବିଦେଶୀ
ଷଡ଼ଋତୁ ବରଷା ଯେ କେତେ ଧାର ବର୍ଷି ।
ଶୁଣ ଆହେ ମହାତମା ଜ୍ଞାନ ନିରାକାର
ପୃଥିବୀର ମଧ୍ୟେ ବରଷଇ ନବଧାର ।
ଧର୍ମବକ ବୋଲେ ତୁମ୍ଭେ ଶୁଣ ହେ ପୁରୁଷ
କେତେ ନକ୍ଷତ୍ର ଉଦୟ ହୁଅଇ ଆକାଶ ।

ଧର୍ମବକ ବଚନରେ ଯୁଧିଷ୍ଠି ବୋଇଲେ
ଗଗନେ ଦ୍ୱି ଲକ୍ଷ ତାରା ଯୁଧିଷ୍ଠି କହିଲେ ।
ଏତେ କହି ନୃପ ପିଇ ଲୋଡ଼ନ୍ତି ଯେ ପାଣି
ବକ ବୋଲେ ପିଇବୁ ତୁ ରହ ଏହିକ୍ଷଣି ।
ପୁଣି ଧର୍ମବକ ବୋଲେ ଏହି ତିନିପୁରେ
କେତେ ଦ୍ୱାର କହ ବାବୁ ମୋହର ଆଗରେ ।
ଯୁଧିଷ୍ଠି ବୋଇଲେ ଧର୍ମବକର ଆଗର
ସଚରାଚର ମଧ୍ୟରେ ଅଛି ଦଶଦ୍ୱାର ।
ନବଦ୍ୱାର ଆତଯାତ ଦ୍ୱାରେ ଅଛି ଗୋପ୍ୟ
ଧର୍ମବକକୁ କହିଲେ ଯୁଧିଷ୍ଠିର ନୃପ ।
ଧର୍ମବକକୁ କହିଲେ ଶୁଣ ହୋ ବଚନ
କାହିଁ ଥାଏ ସତ୍ୱ ରଜ ତମ ଆଦିମାନ ।
ଯୁଧିଷ୍ଠି ବୋଇଲେ ସତ୍ୱ ଅଟନ୍ତି ଆକାଶେ
ତମୁ ରୁଦ୍ର ଜାତ ସେହୁ ମଧ୍ୟସ୍ୱର୍ଗେ ବସେ ।
ରଜୁ ଜାତ ବିଷ୍ଣୁ ସେହୁ ବସନ୍ତି ପାତାଳେ
ବ୍ରହ୍ମଧର୍ମ କର୍ମ ଏହି ତ୍ରିସନ୍ଧ୍ୟାର କାଳେ ।
ପ୍ରାତଃକାଳେ ବ୍ରହ୍ମଅଙ୍ଗେ ଥାନ୍ତି ବାସୁଦେବ
ସନ୍ଧ୍ୟାକାଳରେ ବସନ୍ତି ଏକା ସଦାଶିବ ।
ଧର୍ମବକ ବୋଇଲା ହେ ଶୁଣିମା ପୁରୁଷ
କେତେଛଡ଼ା କ୍ଷିତ୍ୟପ୍‌ତେଜ ବାୟୁଯେ ଆକାଶ
ଯୁଧିଷ୍ଠିଦେବ ବୋଇଲେ ସେ କାଳପୁରୁଷ
ଅକ୍ଷୟ ଅବ୍ୟୟ ପୁଣି ଅଟେ ଅବିନାଶ ।
ଷଟପଦ୍ମ ଆଦି ନାଥ ନ ମିଳଇ ଧ୍ୟାନ
ଭାବ ତତ୍ୱ ଜନ୍ମ ତାର ଚକ୍ଷୁରୁ ଆଧାନ ।
ଏ କର୍ମ ପୁରୁଷ ଜନ୍ମ ଅଟେ ସୁଧାବଳେ
ଅଜପା ଲକ୍ଷଣ ଏହୁ ଅଟେ ତଦକାଳେ ।
ମହାଯୋଗର ଲକ୍ଷଣ ଏଥୁ କରି ଜାଣ
ଦୈବ କର୍ତ୍ତୃକ ଭ୍ରମଇ ଅଗୋଚର ଆନ ।
ନ ପାଇ ନ ଥାଇ ନାସ୍ତି ଉଦେ ଅବା ଅସ୍ତ
ନାହିଁ ନିଦ୍ରା କି ମୈଥୁନ ନାହିଁ ଦିବା ରାତ୍ର ।
ଅବ୍ୟକତ ବେଳ ହୁଏ ଲୋହିତ ବରଣ
ସବ୍ୟକତ ବେଳ ଶୁଦ୍ଧ ସ୍ଫଟିକର ବର୍ଣ୍ଣ ।
ଦୂରନ୍ତକ ବେଳ ଧର୍ମଲୋକେ ନରେ ବସି
ବେନି ସନ୍ଧ୍ୟାକାଳେ ପୁଣି ସାକାର ପ୍ରକାଶି ।
ମହାତ୍ମା ଦିବ୍ୟଭୁବନେ ନିରାଲମ୍ବ ମଯେ
କଳ୍ପଶେଷ କରଇ ସେ ସବୁଙ୍କରି କାୟେ ।
ଆକାଶରେ ଶିର ହୃଦଗତେ ମଧ୍ୟପୁରୀ
ପାଦଦେଶକୁ ପାତାଳ ବୁଝ ତୁ ବିଚାରି ।
ଅଭୟ ଯେ ଅପଚୟ ଅଦେହ ଅଲେଖ
ଅବିଶ୍ରାମ ଭୁବନ ଏ ହେତୁକରି ଦେଖ ।

ଆହେ ବକ ବ୍ରହ୍ମଙ୍କର ନାହିଁ ଜାତି ମୂର୍ତ୍ତି
ଚିହ୍ନ ବର୍ଣ୍ଣ ନାହିଁ ପୁଣି ଆକାଶକୁ ଜ୍ୟୋତି ।
ଜାଣି ଶୁଣି ସଂସାରରେ ହେଉଛନ୍ତି ବଣା
କାହାର ଯେ ବଶ ନୁହେଁ ଏ ସବୁ ଘଟଣା ।
ବୀଜ ପତନ ନୋହିଲେ ଅଙ୍ଗ ନୁହେ କ୍ଷୀଣ
କାଳକାମ ବଞ୍ଚନ୍ତି ଯେ ସେହି ମହାଜନ ।
ବକ ବୋଇଲା ମହାତ୍ମା ତୋର ଅଛି ଧର୍ମ
ପାଣି ପୁଟେ ପିଅ ଶାନ୍ତି ହେଉ ଅଙ୍ଗଶ୍ରମ ।
କିଞ୍ଚିତେ ପାତକ ଥିଲେ ନ ଭକ୍ଷିବୁ ପାଣି
ଧର୍ମ ଥିଲେ ବର୍ତ୍ତି ପାପେ ମରିବୁ ଏକ୍ଷଣି ।
ଧର୍ମଙ୍କୁ ସ୍ମରଣ କରି ଧର୍ମଙ୍କ ତନୟେ
ଆକ୍ରୋଶିଣ ପାନ କଲେ ପାଣିରୁ ପୁଟିଏ ।
ଶାନ୍ତ ହେବାଯାଏ ସେହୁ ପାନ କଲେ ପାଣି
ତହୁଁ ସେଠାରୁ ଉଠିଲେ ଧର୍ମ ନୃପମଣି ।
କିଞ୍ଚିତେ ଧର୍ମ ଥିବାରୁ ନ ହୋଇଲେ ଅନ୍ଧ
ଶରୀର ହୁଅନ୍ତେ ସୁସ୍ଥ ହେଲେ ସେ ଆନନ୍ଦ ।
ଧର୍ମବକ ବୋଇଲା ଯେ ତୋର ନାମଗୋଟି
କଳ୍ପନାରେ ଜାଣିଲି ମୁଁ ତୁ ଅଟୁ ଯୁଧିଷ୍ଠି ।
ଯୁଧିଷ୍ଠି ବୋଇଲେ ତୁହି ଅତ୍ୟନ୍ତ ବିବେକ
ମୁହିଁ ଯୁଧିଷ୍ଠିର ଅଟେ ଶୁଣ ଧର୍ମବକ ।
ସ୍ନାନ ଜଳପାନ କରି ଅଙ୍ଗ ହେଲା ଶାନ୍ତି
ଦେଖିଲେ ସେ ମୃତ ହୋଇ ପଡ଼ିଛି ମାରୁତି ।
ଯୁଧିଷ୍ଠି ବୋଇଲେ ଶୁଣ ଆହେ ଧର୍ମବକ
ମୋର ଭାଇ ଚାରୋଟିକି ମରଣରୁ ରଖ ।
ଯୁଧିଷ୍ଠି ଦେବଙ୍କୁ ଧର୍ମବକ ପୁଚ୍ଛା କରି
ଚାରିପାଖେ ପଡ଼ିଛନ୍ତି ମୃତ ଭାଇ ଚାରି ।
ମମ ବଚନ ନ କରି ଶ୍ରମେ ଜଳ ଭକ୍ଷି
ମରିଅଛନ୍ତି ତାହାଙ୍କୁ କେ ପାରିବ ରଖି ।
ଚାରିଘାଟରେ ଦେଖିଲେ ଭାଇ ଚାରିଗୋଟି
ପାର୍ଥକୁ ଧଇଲେ କୃଷ୍ଣା ନକୁଳେ ଯୁଧିଷ୍ଠି ।
ଭୀମସେନ ସମୀପରେ ନେଇ ଶୁଆଇଲେ
ସହଦେବଙ୍କୁ ନେଇଣ ଏକଠାବ କଲେ ।
ବୋଇଲେ ଭୋ ବକ ତୁମ୍ଭେ ଧାର୍ମିକ ଯୁଗତେ
ମୋର ଚାରି ସୋଦରଙ୍କୁ ବଞ୍ଚାଅ କେମନ୍ତେ ।
ବକ ବୋଇଲା ବଞ୍ଚିବେ କାହୁଁ ଚାରିଜଣ
ଦୁଇଗୋଟି ଜୀଆଇଁବା ମିଥ୍ୟା ନୁହେଁ ଜାଣ ।
କେ ତୋର ସୋଦର କେହୁ ହୃଦକୁ ଅଭିନ୍ନ
ସେ ଦୁହିଁଙ୍କୁ କୋଳେ ଧର ପାଆନ୍ତୁ ଜୀବନ ।
ଯୁଧିଷ୍ଠି ବୋଇଲେ ବକ ତ୍ରାହି କର ମୋତେ
ଏ ଚାରିଭାଇ ମୋହର ବର୍ତ୍ତନ୍ତି ଯେମନ୍ତେ ।
ବକ ବୋଇଲା ସତ ମୁଁ କହୁଛି ଯୁଧିଷ୍ଠି
ତୋ ସଖା ପାଇଁ ଜୀବିତ କରିବୁଁ ଦ୍ୱିଗୋଟି ।
ଆମ୍ଭର ତହୁଁ କିଞ୍ଚିତ ଆୟୁ କାଢ଼ିଦେବୁ
ତେବେ ଯାଇ ତୋ ସୋଦର ଜୀଆଇଁ ପାରିବୁ
ଯୁଧିଷ୍ଠିଙ୍କ ମୁଖ ଚାହିଁ ବୋଲନ୍ତି ପାର୍ବତୀ
ଅର୍ଜ୍ଜୁନକୁ କୋଳେ ତୋଳି ଦେବ ଶୀଘ୍ରଗତି ।
ଯୁଧିଷ୍ଠି ବୋଇଲେ ଏହା ଅମହତ ବାଣୀ
ପରେ ପରମାର୍ଥ କଲେ ନିଜକର୍ମ ଜାଣି ।
ଏତେକ କହିଣ ତହୁଁ ଦେବ ଧର୍ମସୁତ
ଦ୍ରୌପଦୀକୁ କହିଲେ ଯା ନୁହଇ ଯୁକତ ।
ବୈମାତ୍ରୀ ମାଦ୍ରୀଦେବୀଙ୍କ ପରଲୋକ କାଳେ
ନକୁଳ ସହଦେବକୁ ଦେଲେ ମୋର କୋଳେ ।
ବୋଇଲେ ମୋହର ଏହି ବେନିପୁତ୍ର ଗୋଟି
ତୋତେ ସମର୍ପଣ ମୁହିଁ କଲଇଁ ଯୁଧିଷ୍ଠି ।
ଏତେ ବୋଲିଣ ପୁତ୍ରକୁ ଦେଇଗଲେ ମୋତେ
ମୁହିଁ ସେହି ଧର୍ମ ଅବା ଲଙ୍ଘିବି କେମନ୍ତେ ।
ମରନ୍ତୁ ପଛକେ ଭୀମ ଅର୍ଜ୍ଜୁନାଦି ଭ୍ରାତ
ଏହା କହି ଉଠାଇଲେ ମାଦ୍ରୀ ଦୁଇସୁତ ।
ଧର୍ମବକ ପଚାରଇ ଚାହିଁ ଯୁଧିଷ୍ଠିଙ୍କି
ଏ ଦୁହେଁ ତୋର ସୋଦର ଯଥାର୍ଥରେ ଟିକି ।
ଯୁଧିଷ୍ଠି ବୋଇଲେ ତୁମ୍ଭେ ଶୁଣ ହୋ ଧାର୍ମିକ
ଏ ଦୁହେଁ ଅଟନ୍ତି ମୋର ଆତ୍ମାରୁ ଅଧିକ ।
ଧର୍ମବକ ବୋଇଲେ ଯେ ଉଠନ୍ତୁ ଏ ବେନି
ତତ୍‌କ୍ଷଣେ ଉଠିଲେ ବେନି ନିଜ ପ୍ରାଣଘେନି ।
ଯେସନେ ଚେତି ଉଠନ୍ତି ନିଦ୍ରାଗତ ପ୍ରାଣୀ
ସାଷ୍ଟାମ ହୋଇ ବସିଲେ ନିଦ୍ରାଭଙ୍ଗ ଜାଣି ।
ଧର୍ମବକ ବୋଇଲା ତୁ ପୁରୁଷ ଉତ୍ତମ
ସୁଲକ୍ଷଣ ପୁରୁଷ ତୁ ପ୍ରତ୍ୟକ୍ଷରେ ଧର୍ମ ।
ସୁକୁମାର ସୁନ୍ଦର ଯେ ତୋ ଶରୀର ଗୋଟି
ମନୁଷ୍ୟ ପରାୟେ ତୋତେ ନ ବୁଝିଲି ମୁଁ ଟି ।
ବହୁତରୂପେ ପ୍ରଶଂସା ଧର୍ମବକ କରି
ବୋଲେ ସେ ଦୁଇଜଣକୁ ଧର କୋଳକରି ।
ସାବତ ହିଂସାକୁ ତୁମ୍ଭେ ନ ଧଇଲ ମନ
ନିଶ୍ଚୟ ଅଟୁ ତୁ ଧର୍ମପୁରୁଷ ଉତ୍ତମ ।
ଯେବେ ତୋହର ସୁଚିନ୍ତେ ଏସନ ବିଚାରି
ସେ ଦୁଇ ମହାତମାଙ୍କୁ ତୋଳ ବେଗକରି ।
ଶୁଣି ଯୁଧିଷ୍ଠି ଧଇଲେ ତହୁଁ ସେ ଦୁହିଙ୍କୁ
ବକ ବୋଲେ ପରମାୟୁ ହେଉରେ ତୁମ୍ଭଙ୍କୁ ।
ତହୁଁ ଭୀମ ଅରଜୁନ ଉଠିଲେ ଯେ ଚେତି
ଦେଖିଣ ସାନନ୍ଦ ହେଲେ ଧର୍ମ ନରପତି ।

ଧର୍ମବକ ବୋଇଲେ ତୁ ଅଟୁ ମୋର ଅଂଶୀ
ମୋହର ପାଖକୁ ବାବୁ ପାରିବୁ କି ଆସି ।
ଯୁଧିଷ୍ଠି ବୋଇଲେ ଏହୁ ଅକଳନ୍ତା ପାଣି
ଏ ଦୁର୍ଗମକୁ କେମନ୍ତେ ମୁହିଁ ଯିବି ଜିଣି ।
ଧର୍ମବକ ବୋଲେ ତୋର ଯେବେ ଅଛି ଧର୍ମ
ପାପେ ମଗ୍ନଥିଲେ ସିନା ପାଇ ଉତକର୍ମ ।
ଶୁଣ ଯୁଧିଷ୍ଠିର ତେବେ ପୂର୍ବ ଏକ କଥା
ତୋତେ ଯେ କହିବୁ ସତ୍ୟଯୁଗର ବାରତା ।
ସତର ଲକ୍ଷ ଅଠାଶୀ ସହସ୍ର ବରଷ
ସତ୍ୟଯୁଗ ପରମାୟୁ ବୁଝ ତୁ ମାନସ ।
ତାହାର ନବଲକ୍ଷ ଯେ ନଉବର୍ଷ ଅନ୍ତେ
ସେ ବିଷୟ ହୋଇଥିଲା କହିଦେବୁ ତୋତେ ।
ମାଧୁର୍ଯ୍ୟ ବୋଲି କରିଣ ଏକ ସତ୍ୟଯୁଗେ
ସହସ୍ର ମୁଖରେ ବ୍ରହ୍ମା ବସିଥିଲେ ସ୍ୱର୍ଗେ ।
ପଦ୍ମ ପର୍ଣ୍ଣନାରାୟଣ ତେବେ ଉତପତ୍ତି
ଶତମୁଖ ଶିବ ହଟକେଶ୍ୱରାଧିପତି ।
ପଞ୍ଚାଶବଦନ ଇନ୍ଦ୍ର ସ୍ୱର୍ଗେ ଅଧିକାରୀ
ସଉରୀ ନାମଧେୟର ତହିଁ ବାଟେଶ୍ୱରୀ ।
ସେ ଇନ୍ଦ୍ରକାଳେ ପୃଥିବୀ ଅଟେ ପରିମିତି
ନବଲକ୍ଷ ନଉସସ୍ର ଯୋଜନରେ ସ୍ଥିତି ।
ବଳୀ ବେଣୁ ମାନଧାତା ପୁଣି ଜାନୁଘଣ୍ଟ
ପୁରୁରବା ହରିଶ୍ଚନ୍ଦ୍ର ନରପତି ଶ୍ରେଷ୍ଠ ।
ସୂର୍ଯ୍ୟବଂଶେ ରାଜା ଦକ୍ଷ ପ୍ରଜାପତି ନାତି
ଇକ୍ଷ୍ୱାକୁ ନାମରେ ହୁଏ ତାହାର ସନ୍ତତି ।
ସେହି ଇକ୍ଷ୍ୱାକୁ ମହିମା ଶୁଣ ଧର୍ମରାୟେ
ବଶିଷ୍ଠଙ୍କୁ ସଙ୍ଗେ ଘେନି କୁରୁରାଜ ପୋଏ ।
ଆକାଶ ଗଙ୍ଗାର କୂଳେ ପ୍ରବେଶ ହୋଇଲେ
ଆପଣା ଇଚ୍ଛାରେ ସେହୁ ସଂକଳପ କଲେ ।
ଅନୁକ୍ଷଣେ ଯାତ୍ରୀମାନେ ଯେତେବେଳେ ମାଗି
ରାଜ୍ୟଭାର ସିଂହାସନ ଦାନ ପରିତ୍ୟାଗୀ ।
ଯେହ୍ନେ ସଂକଳ୍ପ କରଇ ତେହ୍ନେ ଦିଏ ଦାନ
ଚଉଦ ଭୁବନେ ତାକୁ କେ ନୁହେ ସମାନ ।
ମଧ ଭୁବନରେ ଯେତେ ଦୁଷ୍ଟ ରକ୍ଷ ଥିଲେ
ତାହାଙ୍କୁ ସମାର୍ଜି ରାଜା ସବୁଙ୍କୁ ନାଶିଲେ ।
ସେ ଇକ୍ଷ୍ୱାକୁ ରାଜ୍ୟରେ ସେ ରାକ୍ଷସ ପିଶାଚ
ଦୁଷ୍ଟପଣ ଛାଡ଼ି ସର୍ବେ ହୋଇଲେକ ତୋଷ ।
ସପତ ଦ୍ୱୀପର ମଧ୍ୟେ ଏକ ଚକ୍ରବର୍ତ୍ତୀ
କନ୍ଦମୂଳ ଖାଇ ମନ କରେ ସେ ତୃପତି ।
ରଥ ଗଜ ପଦାତିକ କେହି ନାହିଁ ତୁଲେ
ନବଦ୍ୱୀପକୁ ଭ୍ରମଇଁ ଦିନକର ଭଲେ ।

ସମସ୍ତ ଦେଶେ ଯେ ଆଜ୍ଞା ଦେଲେ କୁରୁରାଜା
ଯେ ଯଶ ଅର୍ଜିବେ ଦୁଇ ରାଶି ଖାଇ ପ୍ରଜା ।
ରାଜା ଧନ ଭଣ୍ଡାରରେ ସମର୍ପିବ ନାହିଁ
କନ୍ଦମୂଳ ଆହାରେ ସେ ବନେ ଖାଇ ରହି ।
ଚାଷରେ ଯେତେକ ପ୍ରଜା ଅରଜନ୍ତି କୃଷି
କିଛି ନ ଦେଇ ଖାଆନ୍ତି ସେହୁ ଦୁଇରାଶି ।
ପ୍ରଜାମାନଙ୍କର ଘରେ ସୁବର୍ଣ୍ଣ ଛାଉଣୀ
ମୁକୁତା ମାଣିକ୍ୟ ହୀରା ଉପରେ ଖଞ୍ଜଣି ।
ଅଳକା ଭୁବନ ଯେହ୍ନେ ଦିଶଇ ଆକାଶେ
ସପ୍ତଦ୍ୱୀପଯାକ ସ୍ୱର୍ଣ୍ଣମୟ ପୁର ଦିଶେ ।
ସେ ରାଜା ଭାରିଯା ନାମ ନୀରବତୀ ରାଣୀ
ସୁନ୍ଦରୀ ଯୁବତୀ ରୂପେ ଲକ୍ଷ୍ମୀସମା ଜାଣି ।
ଅକ୍ଳେଶେ ସମୁଦ୍ରଜଳେ ଯାଏ ସେହୁ ଚାଲି
ନବଲକ୍ଷ ଯୂଣ ଯାଇ ନ ତିନ୍ତେ ଅଙ୍ଗୁଳି ।
ଏମନ୍ତେ କ୍ଷୀର ସମୁଦ୍ର ଯାଏ ସେହୁ ଚାଲି
କେଉଁରୂପେ ପୁଣ୍ୟବତୀ ଅଟଇ ସେ ବାଳୀ ।
ଲବଣ ସୁରା ଘୃତ ଯେ ଇକ୍ଷୁ ପରିଯନ୍ତେ
କ୍ଷୀର ସମୁଦ୍ରରୁ ନୀର ଆଣଇ ନିଶ୍ଚିନ୍ତେ ।
ଦେଖ ବାବୁ ଯୁଧିଷ୍ଠିର ଇକ୍ଷ୍ୱାକୁ ଭାର୍ଯ୍ୟାକୁ
ସତ୍ୟଯୁଗେ ନବସସ୍ର ବର୍ଷ ହେଲା ତାକୁ ।
ସତ୍ୟଯୁଗେ ରାଜ୍ୟ କଲା ନଲକ୍ଷ ବରଷ
ପତି ପତ୍ନୀ ବେନିଙ୍କର ଯୁବା ଯେ ବୟସ ।
ଶୁଣ ହେ ଯୁଧିଷ୍ଠି ଦେବ ଶାସ୍ତ୍ରେ ଯାହା ଭଣି
ନକ୍ଷତ୍ର ହୋଇ ରହିଲେ ପତି ପତ୍ନୀ ବେନି ।
ଧର୍ମବକ ବୋଲେ ଶୁଣ ଯୁଧିଷ୍ଠିର ରାୟେ
ଧର୍ମଥିଲେ ଚାଲିଆସ ତୁ ମୋହର ଯାଏ ।
ଚାରି ସମୁଦ୍ର ମଧରେ ରାଣୀ ଯାଏ ଚାଲି
କ୍ଷାର କ୍ଷୀର ଇକ୍ଷୁ ସୁରା ଦଧି ଯାକୁ ବୋଲି ।
ତୁହି ଯେ ମହାଧାର୍ମିକ ଅଟୁ ଧର୍ମରାୟେ
କିପାଇଁ ତୁ ନ ଆସୁଛୁ କରୁଅଛୁ ଭୟେ ।
ସମସ୍ତ ଧର୍ମ ତୋହର ଜାଣିବା ଏଠାଇଁ
ଆମ୍ଭର ଯାଏ ଯଦ୍ୟପି ଆସିପାରୁ ତୁହି ।
ଧର୍ମବକର ବଚନେ ଦେବ ଧର୍ମସୁତ
ଜଳର ଭିତରେ ଯାଇ ପଶିଲେ ତ୍ୱରିତ ।
ଶିଉଳି ପତ୍ରରେ ଦେବ ଦୁଇପାଦ ଦେଇ
ଧର୍ମ ବକର ସମୀପେ ମିଳିଲେ ସେ ଯାଇ ।
ଯୁଧିଷ୍ଠି ଦେବ ପୁଚ୍ଛନ୍ତି ଶୁଣ ଧର୍ମବକ
ପକ୍ଷୀ ଜନ୍ତୁହୋଇ ତୁମ୍ଭେ ଏଡ଼େକ ବିବେକ ।
ଅନନ୍ତ ରୂପ ଧରୁ ତୁ କେବଣ ମହାତ୍ମା
କିଏ ତୁହି ହରିହର କୁବେର କି ବ୍ରହ୍ମା ।

ସତ୍ୟବର ଧାର୍ମିକ ତୁ ବୋଲି ବାକ୍ୟସିଦ୍ଧି
ପକ୍ଷୀ ମାତ୍ରକ ହୋଇଣ ତୋର ଏଡ଼େ ବୁଦ୍ଧି ।
ଧର୍ମବକ ବୋଇଲା ତୁ ଶୁଣ ମୋର ବାକ୍ୟ
ତୁ ମହାଜ୍ଞାନୀ ମହତ୍ତ୍ୱ ଅଟୁ ହୋ ଧାର୍ମିକ ।
ରୂପାନ୍ତର ହୋଇ ତୁହି ରହିଅଛୁ ଏଥ
ତୋର ଆଗେ କହୁଅଛି ଶୁଣ ବାକ୍ୟ ସତ୍ୟ ।
ଶୁକ୍ଳାମ୍ବର ପୁରୁଷ ଯେ ଧରମ ଦେବତା
କୋଇନ୍ତା ନାମରେ ଭୋଜରାଜାର ଦୁହିତା ।
ଦୁର୍ବାସାଙ୍କଠାରୁ ପାଇଥିଲା ମନ୍ତ୍ରମାଳି
ମନ୍ତ୍ର ଜପି ସୁମରଣା କଲା ମୋତେ ବାଳୀ ।
ଯୁକତେ ଧର୍ମ ପୁରୁଷ ଅଟେ ନିରାକାର
ମହାମନ୍ତ୍ର ଡରେ ମୁହିଁ ହୋଇଲି ଆକାର ।
କୋଇନ୍ତାଙ୍କ ତୁଲେ ମୋର ହୋଇଲା ପୀରତି
ସମ୍ଭର୍ବେ ପୁତ୍ରେକ ତହିଁ ହୋଇଲୁ ଉତ୍ପତ୍ତି ।
ଏମନ୍ତ କଥା ପୂର୍ବରୁ ରହିଛି ଆମ୍ଭର
ଶୁଣି ସାନନ୍ଦ ହୋଇଲେ ଦେବ ଯୁଧିଷ୍ଠିର ।
ବୋଇଲେ ମୁଁ ତୁମ୍ଭ ସୁତ କୁନ୍ତୀ ଜ୍ୟେଷ୍ଠପୁତ୍ର
ଭୀମାର୍ଜ୍ଜୁନ ସହଦେବ ଆମ୍ଭେ ଚାରିଭ୍ରାତ ।
ଧର୍ମବକ ବୋଇଲା ମୁଁ ଜାଣେ ସର୍ବକଥା
ଅରଣ୍ୟେ ଆସିବ ବୋଲି ଜାଣିଛି ବାରତା ।
ବାରବରଷ ବନରେ କରିବ ଭ୍ରମଣ
ଅବଶ୍ୟ ଭେଟିବ ଅନ୍ଧ ସରରେ ଆସିଣ ।
ତେଣୁକରି ଆସି ମୁହିଁ ଏଥେ ଅଛି ବସି
ଏ ତୀର୍ଥର ମହିମା ତୁ ଶୁଣ ସୋମବଂଶୀ ।
ବାବୁ ଅଜ୍ଞାନେ ଏଥେ ଯେ ଜଳପାନ କରି
ବେନିଚକ୍ଷୁ ଅନ୍ଧ ହୋଇ ଅବଶ୍ୟ ସେ ମରି ।
ଯେବେ ଶରୀରେ ଅବଶ୍ୟ ଥିବଟି ଆୟୁଷ
ଏ ଜଳ ପିଅନ୍ତେ ମୃତ୍ୟୁ ହେବ ଧର୍ମଶିଷ୍ୟ ।
ବାବୁ ତୁମ୍ଭପାଇଁ ମୁହିଁ ପଥ ଅଛି ଚାହିଁ
ତବ ନିଜ କର୍ମେ ଏଥି ଅଛଇ ଯେ ମୁହିଁ ।
ମୁହିଁ ଧର୍ମଦେବ ତୁହି ଶୁଣରେ ଯୁଧିଷ୍ଠି
ଧବଳ ବକରୂପରେ ରହିଅଛି ଏଠି ।
ଯୁଧିଷ୍ଠି ଦେବ ବୋଇଲେ ଶୁଣ ଆହେ ପିତ
ଏହି ସରୋବର କଥା ବଡ ଆଚମ୍ବିତ ।
ଆନ ଜଳ ପାନକଲେ ଦେହ ହୁଏ ପୁଷ୍ଟ
ଏ ଜଳ ପିଅନ୍ତେ କିପାଁ କାୟା ହୁଏ ନଷ୍ଟ ।
ଏ ଜଳ ପିଅନ୍ତେ କିପାଁ ବେନି ଚକ୍ଷୁ ଯାଇ
ଏହାର କାରଣ କିସ ନ ପାଇଲି ମୁହିଁ ।
କୂଳକୁ ଉଠିଲେ ପୁଣି ତୁଟିଯାଏ ଆୟୁ
ସଙ୍ଗେ ସଙ୍ଗେ ଛାଡ଼ିଯାଏ ଅଙ୍ଗୁ ପ୍ରାଣବାୟୁ ।

ଏଥିର କାରଣ ମୋତେ କୁହ ଆହେ ପିତଃ
ସେହି କଥା ଶୁଣିବାକୁ ବଳଇ ମୋ ଚିତ୍ତ ।
ଧର୍ମବକ ବୋଇଲେ ଏ ତ୍ରେତାଯୁଗ କଥା
କହୁଅଛି ସାବଧାନେ ଶୁଣ ହେ ବାରତା ।
ସୂର୍ଯ୍ୟବଂଶେ ଥିଲେ ଦଶରଥ ନରପତି
ତାହାଙ୍କର ହୋଇଥିଲେ ଚାରୋଟି ସନ୍ତତି ।
ରାମ ଲକ୍ଷ୍ମଣ ଭରତ ପୁଣି ଶତ୍ରୁଘନ
ପିତା ସତ୍ୟ ପାଳି ରାମ ଚଳିଗଲେ ବନ ।
ରାମ ସଙ୍ଗେ ସୀତା ଗଲେ ଆବର ଲକ୍ଷ୍ମଣ
ବନେ ବିଚରଣ କଲେ ଯାଇ ତିନିଜଣ ।
ବନେ ବୁଲି ଫଳ ମୂଳ କରନ୍ତି ଆହାର
ଏହିରୂପେ କିଛିଦିନ ଗଲା ଯେ ତାହାର ।
ନାନାବନ ବୁଲି ଗଲେ ଗୋଦାବରୀ ତୀରେ
ପଞ୍ଚବଟୀ ବନ ବୋଲି ଅଛଇ ସେଠାରେ ।
ସେ ବନେ ରହିଲେ କରି କୁଟୀର ନିର୍ମାଣ
ସୂର୍ପଣଖା ଅସୁରୁଣୀ ଭେଟିଲା ଆସିଣ ।
ରାମରୂପ ଦେଖି ସେହୁ ହେଲା ଅତି ଭୋଳ
ରାମ ନାରୀ ହେବାପାଇଁ କରିଲା କଟାଳ ।
ରାମ ଏ କଥାରେ ଯହୁଁ ହୋଇଲେ ଅମତ
ସୀତା ଗିଳିବାକୁ ତହୁଁ ହୋଇଲା ଉଦ୍ୟତ ।
ତହୁଁ ରାମ କୋପମନେ କରିଲେ ଆଦେଶ
ଲକ୍ଷ୍ମଣ ତା ନାସାକର୍ଣ୍ଣ କରିଲେ ବିନାଶ ।
ଖର ଦୂଷଣକୁ ଯାଇଁ କରିଲା ଗୁହାରି
ଆସିଲେ ଚଉଦସସ୍ର ସୈନ୍ୟ ଘେନିକରି ।
ଶ୍ରୀରାମ ସେ ଦୈତ୍ୟବଳ କରି ନିସୂଦନ
ତହୁଁ ଅସୁରୁଣୀ ଗଲା ଲଙ୍କାକୁ ବହନ ।
ଦଶମଥାର ଆଗରେ ସବୁ କହେ ଯାଇ
ତହୁଁ ସେ ଆସି ସୀତାଙ୍କୁ ନେଲାକ ଚୋରାଇ ।
ଖୋଜି ଖୋଜି ଦୁଇଭାଇ କରିଲେ ଗମନ
ଋଷ୍ୟମୂକେ ଭେଟ ହେଲା ସୁଗ୍ରୀ ହନୁମାନ ।
ସୁଗ୍ରୀ ସଙ୍ଗେ ମିତ୍ରହୋଇ ବାଳିକି ମାଇଲେ
ତହୁଁ କିଷ୍କିନ୍ଧ୍ୟାରେ ତାକୁ ନରପତି କଲେ ।
ମର୍କଟ ଘେନି ସାଗର ପଥରରେ ବାନ୍ଧି
ଲଙ୍କାକୁ ଯାଇଁ ତା ଗଡ଼ କରିଲେ ସେ ବନ୍ଦୀ ।
ବହୁତ ସମର ହେଲା ରାବଣ ସହିତ
ପ୍ରଥମେ ବଧିଲେ ତାର ପୁତ୍ର ଇନ୍ଦ୍ରଜିତ ।
ସମର କରି ରାବଣ ଯାଏ ବାର ବାର
କୁମ୍ଭକର୍ଣ୍ଣ ଦୈତ୍ୟ ଅଟେ ଅନୁଜ ତାହାର ।
ବଡ଼ଇ ପ୍ରତାପୀ ସେ ଦୈତ୍ୟ ମହାବୀର
ରାମଚନ୍ଦ୍ର ତୁଲେ କଲା ବିଷମ ସମର ।

କୋପରେ ଶ୍ରୀରାମଚନ୍ଦ୍ର ଛେଦିଲେ ତାଶିର
କଟାମୁଣ୍ଡ ଗିଳିଯାଏ ଅନେକ ବାନର ।
ପୁଣି ଶ୍ରୀରାମ ନାରାଚ ପୂରାଇ କୋଦଣ୍ଡ
ସେହି ଶରେ ଚିରିଦେଲେ ଅସୁରର ମୁଣ୍ଡ ।
ପବନ ଶର ପେଷିଲେ ତହିଁ ରଘୁ ସାଇଁ
ତହୁଁ ଫାଳେ ଅନ୍ତରୀକ୍ଷେ ନେଲେ ସେ ଉଡାଇ ।
ବାୟବ୍ୟ ଶରର ଘାତେ ସେ କପାଳ ଉଡ଼େ
ଲଙ୍କା ଗଡ଼ରୁ ଆସିଣ ଏତେ ଦୂରେ ପଡ଼େ ।
କୁମ୍ଭକର୍ଣ୍ଣର କପାଳ ଏହି ସରୋବର
ସେ ଧର୍ମବକ କହନ୍ତି ଶୁଣ ଯୁଧିଷ୍ଠିର ।
ଅସୁର କପାଳ ଏହୁ ଦିଶେ ଗଙ୍ଗାପାଣି
କାଳାନଳ ପ୍ରାୟ ଏହୁ ପଶନ୍ତି ନ ଜାଣି ।
ଏ ବନର ପାଞ୍ଚକ୍ରୋଶେ ନାହିଁ କାହିଁ ଜଳ
ତୃଷାର୍ତ୍ତରେ ପାନ କରି ମରନ୍ତି ସକଳ ।
ଚକ୍ଷୁ ଫୁଟିଯାଏ ପୁଣି ନିଜ ପ୍ରାଣ ତୁଟି
କୂଳକୁ ଉଠିଲାକ୍ଷଣି ପଡ଼େ ମହୀ ଲୋଟି ।
ଗୋ ବ୍ରାହ୍ମଣ ଆଦିକରି ଚାରିଖାନି ଜନ୍ତୁ
ଏଥେ ଜଳପାନ କଲେ ଅବଶ୍ୟ ତ ମୃତ୍ୟୁ ।
ସଂସାରଜନ ପ୍ରାଣୀଙ୍କ ଏ ଅବସ୍ଥା ଦେଖି
ବକରୂପେ ବସିଅଛି ସମସ୍ତ ଉପେକ୍ଷି ।
ଏ ଜଳ ପାନ କରନ୍ତେ ନିରୋଧେ ଅବଶ୍ୟ
କଥା ନ ଶୁଣନ୍ତି ଯେହୁ ପ୍ରାଣେ ହ୍ୱନ୍ତି ନାଶ ।
ଯୁଧିଷ୍ଠି ବୋଇଲେ ଏହା କେହ୍ନେ ହେବପାର
ଧର୍ମବକ ବୋଇଲେ ଯେ ଅଛି ପ୍ରତିକାର ।
ଭାଇ ଭାରିଯା ଘେନିଣ ଏଥେ ସ୍ନାନକର
ପବିତ୍ର ହେବ ଏ ଜଳ ଦୋଷ ଯିବ ପାର ।
ଭୀମାର୍ଜ୍ଜୁନ ସହଦେବ ଆବର ନକୁଳ
ସ୍ନାହାନ କଲେ ଅଗାଧ ସେ ଗଭୀର ଜଳ ।
ଦ୍ରୌପଦୀ ଯୁଧିଷ୍ଠି ଦୁହେଁ ସ୍ନାନ କଲେ ଯାଇ
ଧର୍ମବକ ସ୍ନାନ କଲେ ପୁଣି ଦୟାବହି ।
ବକରୂପ ତେଜି ହେଲେ ତହୁଁ ତେଜୋବ୍ରହ୍ମ
ବହୁ ଉପଦେଶ ଦେଲେ ପାଣ୍ଡବଙ୍କୁ ଧର୍ମ ।
ସେ ଧର୍ମ ଦେବତା ତହୁଁ ଲିଙ୍ଗରୂପ ହୋଇ
ସେ କପାଳେଶ୍ୱର ତୀର୍ଥେ ରହିଲେକ ଯାଇ ।
ସେ ମହାଶମ୍ଭୁ ଦେବତା ବିଜୟ ସମ୍ଭର୍ବା
ପୂଜା କରନ୍ତି ଯୁଧିଷ୍ଠି ନିତ୍ୟ କରି ସେବା ।
ଜୟ ଜୟ ନିରଞ୍ଜନ ଜୟ ନିରାକାର
ଜୟ ସାଧନ ପୁରୁଷ ତୁହି କରତାର ।
ଶୁଦ୍ଧ ସ୍ଫଟିକ ପଟଳ ଦିଶ ହରନାଥ
ଶତ ସହସ୍ର ଲୟରେ ଭାଗ୍ୟ ପରମାର୍ଥ ।
ଜଗଜ୍ଜନମୋହନ ତୁ ପୃଥ୍ୱୀଜନ ଚିନ୍ତା
ନବତନ ଲିଙ୍ଗ ମୋର ହୃଦୟ କରତା ।
ନମୋନମ ଧର୍ମଦେବ ନିରାଲମ୍ବ ଦେହୀ
ନମୋନମ ଧର୍ମ ତୁହି ଅଟୁ ସର୍ବଗ୍ରାହୀ ।
ନମୋ ଶ୍ରୀଧର୍ମଦେବତା ଧୈର୍ଯ୍ୟବନ୍ତ ଗୁଣ
ଜାତ ଅନ୍ତ ମଧ୍ୟେ ତୁହି ସର୍ବଗ୍ରାହୀ ପ୍ରାଣ ।
ନମୋ ନମୋ ଶ୍ରୀ ହିରଣ୍ୟପୁର ଗର୍ଭବାସୀ
ଅଖଣ୍ଡିତ ବ୍ରହ୍ମାଣ୍ଡରେ ତୁହି ବ୍ରହ୍ମରାଶି ।
ତୋ ଦିବ୍ୟ ଲୋଚନ ନାଥ ନମସ୍ତେ ନମସ୍ତେ
ତୁ ଦେବ ଦୁଃଖୀଙ୍କ ଦୁଃଖ ହରୁଥାଉ ନିତ୍ୟେ ।
ଜନ୍ମରୁ ମୂରୁଖ ମୁହିଁ ନ ପଢ଼ିଲି କିଛି
ଦେବୀଙ୍କ ଅନୁଗ୍ରହେ ଯା କିଛି ଜାଣିଅଛି ।
ସେହିବଳେ ଶ୍ରୀଭାରତ ଲେଖିଲି ମୁଁ ହାଦେ
କୃପାକରି ହୀନଜନ ନମୁଅଛି ପାଦେ ।
ତବ ଚରଣରେ ଲୟ ଥାଉ ଦୃଢ଼ଭାବେ
ଶାରଳା ଦାସ କପାଳ ଈଶ୍ୱରଙ୍କୁ ସେବେ ।



## ଗୌତମୀ ତୀର୍ଥରେ ବଳୀବେଲାଳ କର୍ତ୍ତୃକ କୌରବମାନଙ୍କର ପରାଜୟ ଓ ପାଣ୍ଡବମାନେ ତାହାଙ୍କୁ ଉଦ୍ଧାର କରିବାକୁ ଯାଇ ନିଜେ ସଙ୍କଟାପନ୍ନ ଏବଂ ବେଲାବଳୀ ଦ୍ୱାରା ମୁକ୍ତ

କହନ୍ତି ଅଗସ୍ତି ଶୁଣ ମନୁ ମହାରଥା
ଏ ବିଷ୍ଣୁ ପୁରାଣ ବନପର୍ବର ବାରତା ।
ଯୁଧିଷ୍ଠିର ବନବାସ ନବ ବର୍ଷାନ୍ତରେ
ମଧ୍ୟନ୍ତ ବୋଲି କରିଣ ଏକ ସମୟରେ ।
ଭାଦ୍ର କୃଷ୍ଣ ଅମାବାସ୍ୟା ପୁଣି ଚନ୍ଦ୍ରବାର
ମଘାନକ୍ଷତ୍ରର ଭୋଗ ଥିଲା ସେ ଦିନର ।
ଅଶ୍ଳେଷା କକଡ଼ାଚନ୍ଦ୍ର ଦଶଦଣ୍ଡ ରାତି
ମଘା ସିଂହରେ ବସିଲେ ଯାଇ ବୃହସ୍ପତି ।
ଗଙ୍ଗା ଯମୁନା ସରଯୁ ଶୁକଳ ଗଉରୀ
ପୁଣ୍ୟତୋୟା କାବେରୀ ବୈଦ୍ରଣୀ ଗୋଦାବରୀ
ପୁଲକୀ ସୁବର୍ଣ୍ଣଭଦ୍ରା ଯେ ପାପନାଶିନୀ
ମଣିକର୍ଣ୍ଣିକା ଅନନ୍ତ ପାତାଳବାସିନୀ ।
କୃଷ୍ଣଭଦ୍ରା ରୁଦ୍ରଭଦ୍ରା କାଶୀ କଉଶିକ
ଭବାନୀ ମାଧବୀ ପଦ୍ମା ଗୋମତୀ ହଳିକ ।
ବିରାଇ କାକ ବାରାହୀ ପୁଣି ହୃତମୁଦ୍ରା
ଗୋମତୀ ଗଣ୍ଡୁକୀ ପ୍ରଭା ତମସା ସୁଭଦ୍ରା ।

ହେମକେଦାର ନେପାଳୀ ପୁଣି ପଶୁପତି
ଆକାଶ ବିନ୍ଧ୍ୟବାସିନୀ ଆଉ ଭାଗ୍ୟବତୀ ।
କୃଷ୍ଣବେଣୀ ବିଷ୍ଣୁବେଣୀ କାମିନୀ କାମାକ୍ଷୀ
ମାତଳୀ ମାତଙ୍ଗିନୀ ଯେ ଅଭୟା ପିଙ୍ଗାକ୍ଷି ।
ଦାମନ୍ତି ଦମନ୍ତି ଚନ୍ଦ୍ରଭାଗା ନୀଳୋତ୍ପଳା
ସୁତା ଗଙ୍ଗା ସୁତଗଙ୍ଗା ସତ୍ୟଙ୍ଗା ମେଖଳା ।
କାବେରୀ କୋଦାସନି ଯେ ଆବର ଉତ୍ତମ
ପ୍ରାଚୀତଟ ଏହାଙ୍କର ସାଗର ସଙ୍ଗମ ।
ଉତ୍ତର ପଶ୍ଚିମକୂଳେ ମହୋଦଧି କୁଣ୍ଡ
ରୋହିଣୀ ଚନ୍ଦ୍ରଭାଗା ଯେ କାନ୍ତି ନାଭିଖଣ୍ଡ ।
କୋଟିଏ ତୀର୍ଥକୁ ଘେନି କ୍ଷେତ୍ରାଦି ପୁଷ୍କର
ବିଜେ ମେଖଳା ଆକାଶଗଙ୍ଗାର ଶିଖର ।
ସେହି କୋଟିତୀର୍ଥ ଘେନି ଆସୁଛନ୍ତି ଭ୍ରମି
ଯହିଁ ପୁଣ୍ୟତୀର୍ଥ ଅଛି ସେଠାରେ ବିଶ୍ରାମି ।
ବୃହସ୍ପତି ବସିଲେ ଯେ ମଘାସିଂହ ରାଶି
ଗଉତମୀ ତୀର୍ଥେ ବିଜେ କରିଲେ ସେ ଆସି ।
ବ୍ରହ୍ମା ଦଇବତ ଦେବ ଆଉ ଚନ୍ଦ୍ର ସୂର୍ଯ୍ୟ
ବିଶ୍ୱେଦେବା ସପ୍ତମନୁ ପୁଣି ଗ୍ରହରାଜ ।
ପବନ କୁବେର ଚନ୍ଦ୍ର ସୂର୍ଯ୍ୟ ମଘବାନ
ବୃହସ୍ପତିଙ୍କ ବଚନେ କଲେ ଯାଇଁ ସ୍ନାନ ।
ଦେବଲୋକ ସନକାଦି ପୁଣି ପିତୃଲୋକ
ସପ୍ତଦ୍ୱୀପ ସାଗରର ସର୍ବ ବୃନ୍ଦାଅର୍କ ।
ଗନ୍ଧର୍ବ କିନ୍ନର ନାଗଲୋକ ସ୍ନାନକରି
ବିଦ୍ୟାଧରଙ୍କ ମେଳରେ ସର୍ବ ଅପସରୀ ।
ଆକାଶକୁ ଚଳିଗଲେ ସର୍ବ ବୃନ୍ଦାଅର୍କେ
ତୀର୍ଥ ସ୍ଥାନର ଶବଦ ପୂରେ ନରଲୋକେ ।
ପାତ୍ରମାନେ ଜଣାଇଲେ ତାଙ୍କର ପ୍ରଜାଙ୍କୁ
ସର୍ବଦେଶେ ରାଜାଗଲେ ଗୌତମୀ ତୀର୍ଥକୁ ।
ଏମନ୍ତ ଯୋଗରେ ସ୍ନାନ ଯେବେ କରିପାରି
ଦ୍ୱାଦଶ ବରଷ ପାପ ଯିବ ଛାଡ଼ିକରି ।
ସେ ତୀର୍ଥର କୂଳେ ଯେହୁ କରେ ପିଣ୍ଡଦାନ
ଏକାବନ ପୁରୁଷ ଯେ ପାଆନ୍ତି ଭୋଜନ ।
ସେ ତୀର୍ଥରେ ଏକାବେଳେ ଯେହୁ ପିଣ୍ଡଦିଏ
ଆନ ଶ୍ରାଦ୍ଧ ନ କରିବ ବାରବର୍ଷ ଯାଏ ।
ମିତ୍ରବଂଶ ସ୍ୱକୁଟୁମ୍ବ ମାତୃକୁଳମାନ
ଯେତେ ନାମ ଧରିବ ସେ ମୁକତି କାରଣ ।
କ୍ଷୟଯାନ୍ତି ଇହଜନ୍ମ ନାନା ପାପମାନେ
ଏହିପରି କହିଥାନ୍ତି ସର୍ବ ବିଜ୍ଞଜନେ ।
ଏହି ପ୍ରକାରେ ବଚନ ଚତୁର୍ଦ୍ଦିଗେ ଜାଣି
ଦଣ୍ଡକରେ ବାହାରିଲେ ସର୍ବ ନୃପମଣି ।

ଉତ୍ତରୁ ଚାରିଶସସ୍ର ଅଇଲେ ନୃପତି
ପଶ୍ଚିମୁଁ ଚାରିସହସ୍ର ଦ୍ୱିଗୁଣା ଆସନ୍ତି ।
ପୂର୍ବଦିଗୁଁ ଏକଉଣା ସାତସସ୍ର ରାୟେ
ଦକ୍ଷିଣ ଦିଗରୁ ତିନିସହସ୍ର ରାଜାଏ ।
ପାତାଳ ସ୍ୱର୍ଗରୁ ରାଜା ଆସନ୍ତି ବାସୁକୀ
ଅଷ୍ଟକୁଳା ନାଗଘେନି ଆସେ ତୀର୍ଥ ଦେଖି ।
ପନ୍ଦରପଦ୍ମ ପାତାଳପୁର ନାଗବଳ
ଶଙ୍ଖ ପଦ୍ମ କ୍ରୋଟରକ ଅନନ୍ତ ପିଙ୍ଗଳ ।
କୁଳିକ ତକ୍ଷକ ଆଦି ଘେନି ନାଗବଳ
ସର୍ବେ ଗୌତମୀ ତୀର୍ଥରେ ଆସିହେଲେ ମେଳ
ସମଦଣ୍ଡକୁ ଘେନିଣ ରାଜା ଦୁର୍ଯ୍ୟୋଧନ
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ବିଦୁରାଦି କର୍ଣ୍ଣ ।
ଅଷ୍ଟାଦଶ ଅକ୍ଷୌହିଣୀ ସୈନ୍ୟ ଘେନି ତୁଳେ
ମାହେନ୍ଦ୍ର ବେଳରେ ଯାଇଁ ପ୍ରବେଶ ହୋଇଲେ
ନାଗବଳ ଘେନି ତହିଁ ଥିଲେ ଯେ ବାସୁକୀ
ଦୁର୍ଯ୍ୟୋଧନ ଥାଟ ଆସି ମିଳିଲା ତହିଁକି ।
ଆଗୁଆଣୀ ଥାଟେ ଥିଲେ ଦୁଃଶାସନ ବଳୀ
ଆରେ ନାଗ ଆଡହୁଅ ବୋଲି କରେ କଳି ।
ଦୁର୍ଜ୍ଜୟ ଦୁଃଶାସନ ଯେ ପଡ଼ିଲେକ ମାଡ଼ି
ଭୟେ ନାଗବଳ ଯହୁଁ ପଳାଇଲେ ଛାଡ଼ି ।
ନାଗମାନଙ୍କର ଭଗ୍ନ ଦେଖି ମହାନାଗ
ନାଗଙ୍କୁ ଆବୋରି ସେହି ଚଳିଲାକ ବେଗ ।
ନିରାବର୍ଣ୍ଣ ନିରାଯୁଦ୍ଧ ଐରା ବିରାଭବ
କମଳ ପାବନି ଆଉ ଶ୍ରୀଅନନ୍ତ ଦେବ ।
ଏ ନାଗକୁମାରମାନେ ଦୁଃଶାସନେ ଭେଟି
ବୋଇଲେ ମାନବ କିପାଁ ଆସୁ ନାଗ ପିଟି ।
ଧାଇଁଲେ କୁମର ଆର୍ଦ୍ରାବଳୀ ଶର ଘେନି
ତାହା ଦେଖିଣ ଭାଙ୍ଗିଲେ କୌରବ ସଇନି ।
ଦୁଃଶାସନ ଧାଇଁଯାଇଁ ପିଟେ ଗଦାବର
ବାଜନ୍ତେ କମଳନାଗ ପଡ଼ିଲା ମହୀର ।
କମଳ ପଡ଼ନ୍ତେ ଭାଜିଗଲେ ନାଗମାନେ
ବିରାଜ ନାଗ ଦୁଃଶାକୁ ମାଇଲା ବହନେ ।
ଗାନ୍ଧାରୀନନ୍ଦନ ଅଟେ ମହାବଳବନ୍ତା
ନାଗବଳ ପଡ଼ିଗଲେ ତହିଁ ଅଗଣନ୍ତା ।
ଶୋଷକ ନାମରେ ତହୁଁ ଏକ କାଳସର୍ପ
ଦୁଃଶାସନକୁ ଓଗାଳେ କରି ମହାଦର୍ପ ।
ଦେଖି ଗାନ୍ଧାରୀନନ୍ଦନ ଗଦାବର ପିଟେ
ତେଢ଼େ ମହାଦର୍ପ ସର୍ପ ମହୀତଳେ ଲୋଟେ ।
ଶୋଷକ ପଡ଼ନ୍ତେ ଭାଙ୍ଗିଗଲେ ନାଗବଳ
ପଳାଇ ଯାଆନ୍ତେ ନାଗେ ହୋଇଲେ ବିକଳ ।

ଦେଖି ମହାବଳୀ ନାଗେ ଆସି କଲେ ଗୋଳ
ଗଦା ଘାତରେ ଲୋଟିଲେ ସର୍ବ ମହୀସ୍ଥଳ ।
ନାଗବଳ ଉଠନ୍ତେ ଯେ ହୋଇ ଗଳଗାଜି
କୁରୁବଳ ପଳାଇଲେ ତହୁଁ ରଣ ଭାଜି ।
ଦୁଃଶାସନ ଶକୁନି ଯେ କର୍ଣ୍ଣ ଅଶ୍ୱତ୍ଥମା
ଦୁର୍ଜ୍ଜୟ ଦୁରନ୍ତ ଶଲ୍ୟ ଆଉ କୃପବ୍ରହ୍ମା ।
ଏହି ମହାଯୋଦ୍ଧାମାନେ ଅଟନ୍ତି ଗରିଷ୍ଠ
ଆରେଆରେ ବୋଲି ନାଗ ତୁଲେ ହେଲେ ଭେଟ
ଆର୍ଦ୍ରାବଳି ଧନୁ ଧରି ଅତି କୋପକରି
ବିନ୍ଧିଲା ତକ୍ଷକ ସର୍ପ ଆକର୍ଣ୍ଣ ଓଟାରି ।
ତକ୍ଷକ ଶର ବିନ୍ଧନ୍ତେ କୌରବର ବଳ
ପିଟନ୍ତି ନାଗଙ୍କ ଶିରେ ଧରିଣ ମୂଷଳ ।
ଅସମ୍ଭାଳ ହୋଇ ପୁଣି ଭାଜିଗଲେ ନାଗ
ତକ୍ଷକ ଡାକଇ ଅତି ହୋଇଣ ବିରାଗ ।
ଆରେ ବାବୁ ନାଶଗଲେ ଏବେ ନାଗକୁଳ
କେ ପାରିଲେ ରଖ ଆସି ସରିଲା ସକଳ ।
ବଳୀବେଲାଳ ବୋଲିଣ ନାଗୁଣୀର ପୁତ୍ର
ବୀର ଭୀମସେନ ଅଟେ ଯାର ନିଜ ତାତ ।
ଶରଧା କରି ଭୀମକୁ କଉରବେ ନେଲେ
ଭୋଜନରେ ବିଷ ଭରି ତାକୁ ଖୁଆଇଲେ ।
ସୁପକ୍ୱ ଦ୍ରବ୍ୟ ପାଇଣ ଭୁଞ୍ଜାଇ ମାରୁତି
ଭୋଜନେ ରତି ସଂଗ୍ରାମେ ସଦା ସେ ଅତୃପ୍ତି ।
ଆହାର ଷାଠିଏ ପୌଟି ଅଟଇ ବେଳକୁ
ଏରୂପେ ତ୍ରିଷଠି ପୌଟି ହୁଅଇ ଦିନକୁ ।
କଣ୍ଠଯାଏ ପୂର୍ଣ୍ଣକରି ଭୀମ ଭୁଞ୍ଜେ ବସି
ପୁରଞ୍ଜନ ପଣ୍ଡା ବିଷଲଡୁକୁ ପରଷି ।
ଅତି କ୍ଷୁଧାବଳେ ତାକୁ ଭୁଞ୍ଜାଇ ପାବନି
ବିଷର ଜ୍ୱାଳାରେ ଢଳି ପଡ଼ିଲା ତକ୍ଷଣି ।
ଭୀମସେନ ମଲା ତହିଁ ବିଷଲଡୁ ଖାଇ
କେ ନ ଜାଣୁ ଯମୁନାକୁ ଦେଲେ ସେ ପକାଇ ।
ନାଗୁଣୀଏ ଜଳକ୍ରୀଡ଼ା କରି ଆସିଥିଲେ
ଅନଙ୍ଗ ପ୍ରାୟେ ପୁରୁଷ ସେମାନେ ଦେଖିଲେ ।
ସେ ମୃତପିଣ୍ଡ ଗୋଟିକୁ ଦେଖି ନାଗବାଳୀ
ପାତାଳ ପୁରକୁ ତାକୁ ଘେନିଗଲା ଚଳି ।
ଅନନ୍ତ ନାଗ ଛାମୁରେ କଲେ ନେଇ ବାଳୀ
ଅନେକ ଯତନ କଲେ ତାକୁ ସର୍ବେ ମିଳି ।
ଅମୃତ ଆଣି ତାହାକୁ ଯହୁଁ ଖୁଆଇଲା
ବିଷଜ୍ୱାଳା ଛାଡ଼ିଯାଇ ଜୀବନ ପାଇଲା ।
ଜଳଅନ୍ଧାର ପୁରରେ ରହେ ଭୀମସେନ
ବେଲାବଳୀ ରହିଲା ତା ଭାରିଯା ହୋଇଣ ।

ଅମୃତ ନବକୁଣ୍ଡ ଯେ ପିଏ ଭୀମବର
ଯୁଧିଷ୍ଠିର ସୁମରନ୍ତେ ହୋଇଲା ବାହାର ।
ସେ ବେଲାବଳୀ ନାଗୁଣୀ ଥିଲା ଗର୍ଭବତୀ
ଭୀମବୀର୍ଯ୍ୟରୁ ପୁତ୍ରେକ ହେଲେ ଉତପତ୍ତି ।
ପୁତ୍ରକୁ ଦେଖି ନାଗୁଣୀ ସାନନ୍ଦ ହୋଇଲା
ବଳୀବେଲାଳ ବୋଲିଣ ତାର ନାମ ଦେଲା ।
ଆଠ ବରଷର ସେହି ଅଟଇ କୁମର
ଯାତ୍ରା ଦେଖିବ ବୋଲିଣ ଆସିଛି ସଙ୍ଗର ।
ନାଗବଳମାନେ ଯହୁଁ ହୋଇଲେ ନିରେଖ
ପୁଣି ତକ୍ଷକ ଡାକିଲା ବାବୁ ରଖ ରଖ ।
ତାହା ଶୁଣିଣ ହରଷ ନାଗୁଣୀର ବାଳ
ଗଜରିପୁ ପ୍ରାୟ ତାର ତେଜ ଅନର୍ଗଳ ।
ବାମ ଭୁଜରେ ଧଇଲା ଦୁଃଶାସନ ବାଳ
ମୂର୍ତ୍ତି ଦେଖି ସ୍ତମ୍ଭୀଭୂତ ଗାନ୍ଧାରୀର ବାଳ ।
ଦକ୍ଷିଣ କରରେ ପୁଣି ମୁଥେକ ମାଇଲା
ମୋହେ ପଡ଼ିଯାଇ ଦୁଃଶା ରକ୍ତ ବାନ୍ତି କଲା ।
ଦୁଃଶାକୁ ପକାଇ ପୁଣି ଧଇଲା କୁମର
ମୁଥେକ ପ୍ରହାର କଲା ହୃଦୟ ଉପର ।
ଗାନ୍ଧାରୀ ନନ୍ଦନ ତହୁଁ ପଡ଼େ ମହୀଲୋଟି
ରାହୁ ତେଜ ପ୍ରାୟ ସୁତ ତହିଁ ଗଲା ଘୋଟି ।
ଶକୁନି ଉପରେ ଗଦା ପିଟିଲା ତୁରିତ
ରଥ ତେଜିଣ ଶକୁନି ହୁଏ ମୋହଗତ ।
ହସ୍ତେ ଏକ ଧନୁ ଧରି ମହାବୀର କର୍ଣ୍ଣ
ବିନ୍ଧିଲା ନାରାଚମାନ ହୋଇ କୋପମନ ।
ଟେଳା ପଡ଼ଇ ଯେସନେ ପର୍ବତ ଉପରେ
ତେସନ ନାରାଚ ପଡ଼େ ବେଲାଳ ଶରୀରେ ।
କର୍ଣ୍ଣ ରଥେ ଗଦା ନେଇ ପିଟିଲା ପ୍ରଚଣ୍ଡା
କର୍ଣ୍ଣ ରଥ ଭାଜିଯାଇ ହେଲା ମସିଗୁଣ୍ଡା ।
ରେ ରେକାର କରି ପୁଣ ମାଇଲାକ ମୁଥ
କର୍ଣ୍ଣବୀର ଲୋଟିଯାଇ ହେଲା ମୋହଗତ ।
କର୍ଣ୍ଣ ପଡ଼ିଯିବା ଦେଖି ଧାଏଁ ଅଶ୍ୱତ୍ଥାମା
ଦ୍ରୋଣ ମହାରଥୀ ଶଲ୍ୟ ଆଉ କୃପବ୍ରହ୍ମା ।
ଏହି ତିନି ମହାରଥୀ ଏକମୁଖ ହୋଇ
ବେଲାଳ ଉପରେ ଶର ପହୁଡ଼ିଲେ ନେଇ ।
ଅତି କୋପରେ ଧାମଇଁ ନାଗୁଣୀର ବାଳ
ମହାମତ୍ତ ଜିଣି ସେହୁ ଦିଶେ ଅନର୍ଗଳ ।
ବୀର ଅଶ୍ୱତ୍ଥାମା ରଥ ଧଇଲା ଆକର୍ଷି
କୃପର ରଥଉପରେ ପିଟେ ବାଳଶିଷି ।
ସେହି ଦୁଇରଥ ଭାଙ୍ଗି ହୋଇଗଲା ଚୂନା
ଗର୍ଜ୍ଜେ କୁମର ପ୍ରତିଜ୍ଞାବନ୍ତ ମହାସେନା ।

କୃପ ଅଶ୍ୱତ୍ଥାମା ଦୁହେଁ ଗଦା ଧରି ଉଠି
ବଳିବେଲାଳ ଉପରେ ଆକର୍ଷିଣ ପିଟି ।
ଦେଖିଣ କୁମରମଣି ପାତେ ବାମଅଙ୍ଗ
ସେହି ବେନିଗଦା ଭାଜି ପଡ଼େ ଭୂମିଭାଗ ।
ଗଦାଭଗ୍ନ ଦେଖିକରି ପଳାଇଲେ ବେନି
ବଳୀବେଲାଳ ଧାଇଁଲା ଗଦା କରେ ଘେନି ।
କୃପଙ୍କ ଉପରେ ନେଇ କଲାକ ପ୍ରହାର
କୃପ ମୂର୍ଚ୍ଛାଗତ ହୋଇ ପଡ଼ିଲେ ସେଠାର ।
ମୂର୍ଚ୍ଛାରେ ପଡ଼ିଲେ ମଧ ଭରଦ୍ୱାଜ ନାତି
ଜୟ ଶଙ୍ଖ ବଜାଇଲା ଭୀମର ସନ୍ତତି ।
ଦେଖିଲା ସେ ଶଲ୍ୟବୀର ପଳାବନ୍ତି ଘୁଞ୍ଚି
ମହାକୋପେ ଗୋଡ଼ାଇଲା ନାଗୁଣୀର ବସି ।
ରେ ରେ କରିଣ ଶଲ୍ୟକୁ ମାଇଲାକ ମୁଥେ
ବଜ୍ରାଘାତ ପ୍ରାୟ ପଡ଼େ ଶଲ୍ୟ ହୃଦଗତେ ।
ପଡ଼ି ଶଲ୍ୟଙ୍କ ମୁଖରୁ ବହଇ ରୁଧିର
ଅନ୍ୟ ରଥେ ଚଢ଼ିଗଲେ ସେଠାରୁ ସତ୍ୱର ।
ଦେଖି ବଳୀବେଲାଳକୁ ପଳାଇଲେ ବଳ
ଗୋଡ଼ାଇ ଗଦା ପିଟଇ ନାଗୁଣୀର ବାଳ ।
ଦଣ୍ଡଭଗ୍ନ ଦେଖିକରି ଭୀଷ୍ମ ଦ୍ରୋଣ ଉଠି
ପଚାଶ ଲକ୍ଷ ସୈନ୍ୟଙ୍କୁ ଘେନିଗଲେ ଘୋଟି ।
ଗହ ଗହ ନାଦେ ପାଞ୍ଚକ୍ଷଉଣୀ ପଦାତି
କୁମରଙ୍କୁ ବେଢ଼ିଗଲେ ତ୍ରିଅର୍ବୁଦ ରଥୀ ।
ହସ୍ତରେ ବଳୀବେଲାଳ ଧରି ବଜ୍ରଦଣ୍ଡ
କାଳଚକ୍ର ପ୍ରାୟେ ନେତ୍ର ବୁଲାଏ ପ୍ରଚଣ୍ଡ ।
କଳାମେଘରେ ଯେସନେ ଦିଶଇ ବିଜୁଳି
ଯେହି ସଦୃଶେ କୁମର ତେଜ ଦିଶେ ଝଳି ।
ଧାମଇଁ ବଳୀବେଲାଳ ଭୀଷ୍ମ ଦ୍ରୋଣ ଦେଖି
ଯମ ଆସିଲା କି ଯମରାଜ୍ୟକୁ ଉପେକ୍ଷି ।
ଲୋହିତ ବର୍ଣ୍ଣର ଗଦା ଧରିଣ ବୁଲାଇ
ଏଡ଼େ ବଡ଼ଥାଟ ଦେଖି କିଛି ଭୟ ନାହିଁ ।
ଭୀଷ୍ମ ବୋଲେ ଦ୍ରୋଣ ଏହୁ କାହାର ସନ୍ତତି
ପ୍ରତ୍ୟକ୍ଷେ ଦିଶୁଅଛି ଏ ଭୀମର ଆକୃତି ।
ଧାଇଁବା ଚାଲିବା ସର୍ବ ଭୀମ ଠିଆଠାଣି
ପ୍ରତିଜ୍ଞା କରଇ ଭୀମ ପ୍ରକୃତିକୁ ଜିଣି ।
ଭୀଷ୍ମ ବୋଲେ ଦ୍ରୋଣ ଏ ଯେ ଏମନ୍ତ ନୁହଇ
ଘଟୋତ୍କଚେ ଦେଖିଅଛ ଯଜ୍ଞର ସ୍ଥାନେହିଁ ।
ଦୈତ୍ୟଙ୍କର ମନ୍ଦିରରେ ଥାଏ ସେ ନିୟତ
ସେହୁ କାହିଁ ମିଳିବଟି ଏହାଙ୍କ ସଙ୍ଗତ ।
ଅସୁର ବଂଶରେ ଜାତ ହୋଇଅଛି ଜାଣ
ଥାଆନ୍ତି ତାର ସଙ୍ଗତେ ବହୁ ଦୈତ୍ୟଗଣ ।
ଆନ କେହୁ ହେବ ଅବା ଏ ପୁରୁଷ ଜାଣ
ତାହାଙ୍କ ସଙ୍ଗେ ଥାଆନ୍ତି ପୁଣ ଦୈତ୍ୟଗଣ ।
ଆନ କେହୁ ହେବ ଅବା ଏ ପୁରୁଷ ଜାଣ
ମନୁଷ୍ୟ ଶରୀର ଆଉ ନାଗମୁଖ ପୁଣ ।
ଅହିବର ଶିରେ ଦେଖ ସପ୍ତଗୋଟି ଫଣି
କରନ୍ତି ଯେ ନାଗମାନେ ଶିରରେ ଭ୍ରମଣି ।
ବୁଝିବା ତଥ୍ୟ କାହାର ନନ୍ଦନ ଏ ଜାଣ
ବିଚାର କରନ୍ତି ଏସନକ ଭୀଷ୍ମ ଦ୍ରୋଣ ।
ଭୀଷ୍ମ ଦ୍ରୋଣ ଦୁହେଁ ଏହ୍ନେ ବିଚାରୁ ବିଚାରୁ
ମାଇଲା ତିନିସହସ୍ର ରାଜା ମହାମେରୁ ।
ଭୀଷ୍ମ ଦ୍ରୋଣ ଧାଇଁଲେ ଯେ କୋପେଗଳଗାଜି
ତାହା ଦେଖି ନାଗବଳ ପଳାଇଲେ ଭାଜି ।
ଆରେ ରହ ରହ ବୋଲି କୌରବଙ୍କୁ ହାକି
କୁଞ୍ଜର ପଳାଏ ଯେହ୍ନେ ସିଂହମୂର୍ତ୍ତି ଦେଖି ।
କୁମର ଗଦାଏ ଧରି ରହିଅଛି ହସ୍ତେ
କାଳ କୃତାନ୍ତକ ପ୍ରାୟ ଦେଖନ୍ତି ସମସ୍ତେ ।
ଦ୍ରୋଣବୋଇରେ ଗାଙ୍ଗେୟ ଯାକୁଦେଖ ଦେଖ
ଭୀମପରି ବିଶ୍ୱରୂପ ଦେଖାଏ ପ୍ରତ୍ୟକ୍ଷ ।
ଏମନ୍ତ ବିଚାରୁଛନ୍ତି ଦ୍ରୋଣ ଭୀଷ୍ମରଥୀ
ଭୀଷ୍ମରଥେ ଗଦା ପିଟେ ନାଗୁଣୀ ସନ୍ତତି ।
କାର୍ତ୍ତିକ ପରାୟ ଦିଶେ ବୀରବର ଜେନା
ଭୀଷ୍ମର ରଥେ ପଡ଼ନ୍ତେ ରଥ ହେଲା ଚୂନା ।
ସନ୍ନିଧିରେ ରଥଗଜ କିଛିହିଁ ନ ପାଇ
ଦ୍ରୋଣଙ୍କ ରଥେ ଉଠିଲେ ଭୀଷ୍ମଦେବ ଯାଇ ।
ବେନିରଥୀ ସୁସ୍ଥ ହୋଇ ବସି ଏକରଥେ
ବିନ୍ଧନ୍ତି ନାରାଚମାନ ପବନୁ ତୁରିତେ ।
ନାଗୁଣୀ ପ୍ରସନ୍ନେ ଯାର ଅଟେ ବଜ୍ରକାୟ
ଅନନ୍ତଙ୍କ ଅନୁଗ୍ରହେ ଯେ ଅଟେ ନିର୍ଭୟ ।
ବଜ୍ରେ ନିର୍ମିତ ହୋଇଛି ଯାହାର ଶରୀର
ଦେବଅସ୍ତ୍ରମାନ ପଡ଼ି ହେଉଅଛି ଚୂର ।
ଦ୍ରୋଣ ମାଇଲେ ତାହାକୁ ବଡ଼ଶକ୍ତି ଘେନି
କୁମର ଶରୀରେ ପଡ଼ି ହୁଏ ତେଜହାନି ।
ଅଗ୍ନିଶରକୁ ପେଷିଲେ ଧରିଣ ଗାଙ୍ଗବ
ମୁଖ ବିସ୍ତାରି କୁମର ଭରିଲା ତା ଗର୍ଭ ।
ଦେଖି ନ ସ୍ଫୁରଇ କିଛି ସେହି ବେନିରଥୀ
ନାଗୁଣୀପୁତ୍ର ପ୍ରହାରେ ଅମୋଘ ଶକତି ।
ଦ୍ରୋଣଙ୍କର ରଥ ଭାଜି ହୋଇଗଲା ଚୂନା
ବିରଥୀ ହୋଇ ପଡ଼ିଲେ ତହୁଁ ବେନି ସେନା ।
ଅଭେଦକବଚ ମାରେ ସେ ବଳୀବେଲାଳ
ରକ୍ତବାନ୍ତି କଲେ ପଡ଼ି ଦ୍ରୋଣ ଗଙ୍ଗାବାଳ ।

ପୁଣି ରୋଷଭରେ ଧାଇଁ ଗଦା ଧରି ପିଟି
ପଡ଼ିଲେ ଯୋଦ୍ଧାଏ ହସ୍ତୀ ଅଶ୍ୱପୃଷ୍ଟେ ଲୋଟି ।
ଭାଙ୍ଗିଗଲେ ସୈନ୍ୟବଳ ନ ରହି ସମର
କୋନ୍ତ ଲାଙ୍କି ଅସିପତ୍ର ହୋଇଗଲେ ଚୂର ।
ବଳୀବେଲାଳ ଯାହାକୁ ପ୍ରହାରେ ଚାପୋଡ଼େ
ପଡ଼ଇ ସେ ଧୂଳି ହୋଇକରି ସେହିଠାରେ ।
କୌରବ ସଇନିଗଣ ପାଇ ମହାଦୁଃଖ
ପଳାଇଲେ ସୈନ୍ୟମାନେ ହୋଇଣ ବିମୁଖ ।
ଦୂତେ ଦେଖିକରି ତାହା ମାନଚକ୍ରବର୍ତ୍ତୀ
ବିଜେ ଦୁର୍ଯ୍ୟୋଧନ ଅଶ୍ୱତ୍ଥାମା ଶଲ୍ୟରଥୀ ।
ସତୁରି ସତୁରି ଭାର ଗଦା ବେନି ହସ୍ତେ
ସଇନ୍ୟ ସମ୍ଭାଦି ରାଜା ଧାମେ ଉର୍ଦ୍ଧ୍ୱଗତେ ।
ହସ୍ତୀର ଉପରେ ଚଢ଼ି ରାଜା ଧାର୍ତ୍ତରାଷ୍ଟ୍ରି
ବଳୀବେଲାଳ ଉପରେ ଗଦା ନେଇ ପିଟି ।
ଗଦା ପିଟନ୍ତେ ଧାମଇଁ ସେ କୁମରମଣି
ଆକର୍ଷି ବଳୀବେଲାଳ ପାତି କର ବେନି ।
ଦୁର୍ଯ୍ୟୋଧନ ହସ୍ତୁ ଗଦା ନେଲାକ ଛଡ଼ାଇ
ମାନଗୋବିନ୍ଦ ଉପରେ ପିଟିଲାକ ନେଇ ।
ଗଦା ବିଘାତେ ହସ୍ତୀର କୁମ୍ଭ ଗଲା ଭାଜି
ପଡ଼ିଲା ଗିରି ସମାନ ହସ୍ତୀ ଗଳଗାଜି ।
ସାଧୁ ସାଧୁ କୁମର ରେ ଉଠିଲାକ ଧ୍ୱନି
ସାଧୁ ସାଧୁ ତୋର ପିତା ସାଧୁ ତୋ ଜନନୀ ।
ପାଦଗତିରେ ପଳାଏ ଦୁର୍ଯ୍ୟୋଧନ ବେଗେ
ଭୂରିଶ୍ରବା ଜୟଦ୍ରଥ ଓଗାଳିଲେ ଆଗେ ।
ସେହି ତିନିରଥୀ ଏକ ହୋଇଣ ଯୁଝନ୍ତି
କୁମରର ଉପରକୁ ନାରାଚ ପେଷନ୍ତି ।
ଏ ତିନିଯୋଦ୍ଧା ଅଟନ୍ତି ଅତି ମହାବଳୀ
ଆକାଶ ଘୋଟିଲା ତାଙ୍କ ବାଣ ଜ୍ୱାଳାବଳି ।
ସେହି ନାରାଚ ପଡ଼ନ୍ତେ ନିର୍ଭୟ କୁମର
ଗାଲତୁରୀ ଦେଇ ଉଭା ଠିଆଠାଣି ତାର ।
କାଳଚକ୍ରର ପରାୟ ବୁଲେ ବେନି ଆଖି
ଗର୍ଜି ଉଠେ ଭୂରିଶ୍ରବା ସୋମଦତ୍ତ ଦେଖି ।
ଦୁଃଶାସନ ବେନି ଗଦା ଧରିଥିଲା ହସ୍ତେ
ସେ ଗଦା ଛଡ଼ାଇ ପିଟେ ଭୂରିଶ୍ରବା ରଥେ ।
ପର୍ବତ ପ୍ରାୟେକ ଗଦା ପିଟିଲା ପ୍ରଚଣ୍ଡ
ଭୂରିଶ୍ରବାଙ୍କର ରଥ ହେଲା ମସିଗୁଣ୍ଡ ।
ପୁଣି ଗଦାଏ ପିଟିଲା ହୋଇ କୋପାନ୍ୱିତ
ଭୂରିଶ୍ରବାଏ ପଡ଼ିଲେ ହୋଇ ମୋହଗତ ।
ସୋମଦତ୍ତଙ୍କ ରଥକୁ ଧରି ମହାବଳ
ବାହ୍ଲିକ ରଥରେ ନେଇ ପିଟେ ଅନର୍ଗଳ ।

ଭାଜି ବେନିରଥ ତହିଁ ହୋଇଗଲା ଚୂନା
ତ୍ରାସେ ଅସାଷ୍ଟମ ହେଲେ କୁରୁବଳ ସେନା ।
ଭୂରିଶ୍ରବା ବାଲମୀକ ରାୟ ସୋମଦତ୍ତ
ତିନିଜଣ ପଡ଼ିଗଲେ ହୋଇଣ ମୂର୍ଚ୍ଛିତ ।
ଏହି ରଥୀମାନେ ଯହୁଁ ସମରେ ପଡ଼ିଲେ
ମାନଗୋବିନ୍ଦ ଦୂରରୁ ଯାଇଣ ଦେଖିଲେ ।
ଅଶୀଖର୍ବ ରଥୀ ଘେନି ଉଠେ ନରପତି
ବଳୀବେଲାଳ ବେଢ଼ିଲେ ଯାଇ ଶୀଘ୍ରଗତି ।
ଅବିଶ୍ରାମ ଯୁଦ୍ଧ କଲେ ତହିଁ ସର୍ବଯୋଧୀ
କୁମରର ଉପରକୁ ନିରନ୍ତରେ ବିନ୍ଧି ।
ବଜ୍ର ପଡ଼ି ନ ଭେଦଇ ଯାହାର ଶରୀର
ଶର ପଡ଼ି ତା ଅଙ୍ଗରେ ହେଉଛନ୍ତି ଚୂର ।
ବଳୀବେଲାଳ ଯାହାକୁ ମାରଇ ଚାପୋଡେ
ମୋହେ ଅସାଷ୍ଟମ ସେହୁ ସେହିଠାରେ ପଡ଼େ ।
ପଳାଇଲେ ସୈନ୍ୟମାନେ ହୋଇଣ ବିମୁଖ
କଉରବ ସୈନ୍ୟମାନେ ହୋଇଲେ ନିରେଖ ।
ଦୂରରୁ ଦେଖିଲା ତାହା ମାନଚକ୍ରବର୍ତ୍ତୀ
ଚଢ଼ିଣ ଆସିଲା ଏକ ମଦମତ୍ତ ହସ୍ତୀ ।
ସତୁରି ସତୁରି ଭାର ବେନିଶଦା ହସ୍ତେ
ସୈନ୍ୟ ସମାର୍ଜ୍ଜନ କରି ଧାଏଁ କୋପଚିତ୍ତେ ।
ହସ୍ତୀର ଉପରେ ଥାଇ ରାଜା ଧାର୍ତ୍ତରାଷ୍ଟ୍ରି
ବଳୀବେଲାଳ ଉପରେ ଗଦା ନେଇ ପିଟି ।
ଗଦା ପଡ଼ିବାର ଦେଖି ସେ କୁମରମଣି
ଆକର୍ଷି ବଳୀବେଲାଳ ପାଦେ ବେନିପାଣି ।
ଦୁର୍ଯ୍ୟୋଧନ ବେନି ଗଦା କରେ ଥିଲା ଧରି
ତାର ହସ୍ତରୁ କୁମର ଧରିଲା ଓଟାରି ।
ସେହି ଗଦାକୁ ଧରିଣ କୋପଭରେ ପିଟେ
ତେତେବଡ଼ ହସ୍ତୀ ପଡ଼ି ଗଡ଼ି ମହୀଲୋଟେ ।
ଅଶ୍ୱେକ ଆରୋହି ପୁଣି ଘୁଞ୍ଚି ନରବର
ପଳାଇ ପଶିଲା ଯାଇ ବନସ୍ତ ଭିତର ।
ବିହରେ କୁମରମଣି ଥାଟରେ ନିଃଶଙ୍କା
ଅଷ୍ଟାଦଶ କ୍ଷୌଣୀ ବଳ ମଛିଲା ସେ ଏକା ।
ତ୍ରେତାଯୁଗେ ପର୍ଶୁରାମ ଯେହ୍ନେ ମହାବଳୀ
ବଳୀବେଲାଳର ତେଜ ତହୁଁ ଗଲା ବଳି ।
ସତ୍ୟଯୁଗରେ ଯେମନ୍ତେ କେତୁକା ମଙ୍ଗଳ
ସେହି ପ୍ରକାରେ ଅଟଇ ନାଗୁଣୀର ବାଳ ।
ଅସିପତ୍ର ଆନ ଅସ୍ତ୍ର ଅଙ୍ଗରେ ନ ଭେଦେ
ତେଣୁ ନିଃଶଙ୍କାରେ ଭ୍ରମେ ରଣେ ଅପ୍ରମାଦେ ।
ବଜ୍ରଶକତି ଯା ଅଙ୍ଗେ ପଡ଼ି ହୁଏ ଚୂର
ଦୁଃସହ ଦୁର୍ଜୟ ସେହୁ ମହାବଳିୟାର ।

କେହି ରହି ନ ପାରନ୍ତି ତାହାର ଛାମୁରେ
ମହା ମହା ଯୋଦ୍ଧାମାନେ ପଳାଇଲେ ଡରେ ।
ଦଶନଖ ଭରି ମୁଖେ ଶରଣ କେ ମାଗି
ନିରାପକ୍ଷ ଶରଣ ସେ ଅଟେ ପରିତ୍ୟାଗୀ ।
ବାତାଘାତେ ଯେଉଁରୂପେ ଝଡ଼େ ପକ୍ୱଫଳ
ନାଗୀପୁତ୍ରଘାତେ ସୈନ୍ୟ ଲୋଟେ ମହୀସ୍ଥଳ ।
ସୈନ୍ୟ ପଳାଇ ପଶିଲେ ଗହନ କାନନ
ଏକା ଯାଉଛି ପଳାଇ ରାଜା ଦୁର୍ଯ୍ୟୋଧନ ।
ଗୋଡ଼ାଏ ଗଦାବରକୁ ବୁଲାଇଣ ହସ୍ତେ
ଅଶ୍ୱରୁ ଡେଇଁଣ ରାଜା ପଳାଏ ନିସତେ ।
ତାଡ଼ ତୋଡ଼ର ବଳୟ ବାହୁଟି କଙ୍କଣ
ଅନର୍ଘମଣି ମୁକୁଟ ଶୋହେ ଲଲାଟେଣ ।
ହାର କୁଣ୍ଡଳ କେୟୂର ଭାଲେ ସୀମନ୍ତିନୀ
ଦେଖିଣ ବିଚାର କରେ ସେ କୁମରମଣି ।
ବିଦ୍ୟାଧର ପରାୟେ ତ ଏହା ରୂପ ଦିଶି
ଏବେ ଏହାକୁ ପ୍ରାଣରେ ପକାଇବି ନାଶି ।
ଏତେ ବିଚାରି ଧାଇଁଲା ସେ ବଳୀବେଲାଳ
ଧାତିକାରେ ଧରେ ଯାଇ ଦୁର୍ଯ୍ୟୋଧନ ବାଳ ।
ଅସିପତ୍ର ଧରି ସେହି ଦୃଢ଼ଭାବେ ପିଟି
ଭାଜିଗଲା ସେହି ଅସ୍ତ୍ର ତିଳେହେଁ ନ କାଟି ।
ତିନିଯୋଜନ ପର୍ଯ୍ୟନ୍ତ ପଶିଲେ ସଇନି
ଚଳଇ ବଳୀବେଲାଳ ଦୁର୍ଯ୍ୟୋଧନ ଘେନି ।
କର୍ଣ୍ଣବୀର ଦୁଃଶାସନ ଆବର ଶକୁନି
ହାବୁଡ଼େ ପଡ଼ନ୍ତେ ନେଲା ଯାଙ୍କୁ ସଙ୍ଗେ ଘେନି ।
ବେଳାଉଳ ବୋଲିକରି ଏକଇ ବନସ୍ତ
ତା ଭିତରେ ଯାଉଅଛି ନାଗୁଣୀର ସୁତ ।
ଶୁଣ ବୈବସ୍ୱତ ମନୁ ଅଗସ୍ତି ବଦନ୍ତି
ଗୌତମୀ ତୀର୍ଥୁ ପାଣ୍ଡବମାନେ ଆସୁଛନ୍ତି ।
ଆଗରେ ପଥ କଢ଼ାଇ ଆସଇ ପାବନି
ବଳୀବେଲାଳ ଯାଉଛି ଚାରିଜଣ ଘେନି ।
ଯୁଧିଷ୍ଠି ଛାମୁରେ ଯାଇ ଏ ବାରତା କହେ
ସ୍ୱାମୀ ହେ ଶୁଣ ଅପୂର୍ବ କଥା ଏକ କହେ ।
ବଡ଼ ବଳବନ୍ତ ଏକ ବାଲୁତ ତନୟେ
ମହାରଥୀ ଚାରିଜଣ ବାନ୍ଧିକରି ନିଏ ।
ଦୁର୍ଯ୍ୟୋଧନ ଦୁଃଶାସନ କର୍ଣ୍ଣହିଁ ଶକୁନି
ଚାରିଙ୍କୁ ବନ୍ଧନ କରି ଯାଉଅଛି ଘେନି ।
ରଥ ଗଜ ଅଶ୍ୱ ସୈନ୍ୟ କିଛି ନାହିଁ ସଙ୍ଗେ
ପବନଗତି ପରାୟେ ଯାଉଅଛି ବେଗେ ।
ଶୁଣିଣ ଯୁଧିଷ୍ଠି ଦେବ ଉଠିଗଲେ ବେଗେ
ଡେଇଁ ପଡ଼ିଲେ ସେ ନଦୀତୀରର ତଡ଼ାଗେ ।
ଯୁକତରେ ସିଂହମାସ ବରଷାର କାଳ
ବଢ଼ିଣ ଅଛି ସେ ନଦୀ ଘୋଟି ଦୁଇକୂଳ ।
ଯୁଧିଷ୍ଠି ଗମନ୍ତେ ପାଣି ହେଲା ବକ୍ଷସ୍ଥଳ
ବୋଲେ ଯାଅ ଭୀମାର୍ଜ୍ଜୁନ ଭାଇଙ୍କୁ ସମ୍ଭାଳ ।
ଭୀମସେନ ବୋଲେ ଏତ ଅଗୋଚର କଥା
ଏଡ଼େ ଶତ୍ରୁକୁ ତୋହର ଅଟେ ଏତେ ବ୍ୟଥା ।
ଯେତେକ କଷ୍ଟ ଦେଲେଣି ସେମାନେ ଆମ୍ଭଙ୍କୁ
ଆନଜନ ନାଶ କରେ ହେ ଦେବ ତାହାକୁ ।
କିପାଇଁ ହେ ଦେବ ତୁମ୍ଭେ ଛାଡୁଛ ବୋବାଳି
ପରେ ନାଶଯାନ୍ତୁ ଏବେ ଯାଉ ଆମ୍ଭ ଶଳୀ ।
ଯୁଧିଷ୍ଠି ଦେବ ବୋଇଲେ ନୁହଇ ଏମନ୍ତ
ସେମାନେ ଆମ୍ଭ ସୋଦର ଅଟନ୍ତି ନିୟତ ।
କର୍ଣ୍ଣ ତୁ ଯାହାକୁ ବୋଲୁ ସେ ଆମ୍ଭର ଜ୍ୟେଷ୍ଠ
ଆମ୍ଭର ଦେଖନ୍ତେ ସେହୁ ହେବ କିରେ ନଷ୍ଟ ।
ଦୁର୍ଯ୍ୟୋଧନ ଆଦି ଚାରି ବନ୍ଧନେ ପଡ଼ିଲେ
ଭୀଷ୍ମ ଦ୍ରୋଣ ଛନ୍ତି ଟିକି ପରାଣରେ ଭଲେ ।
ଅଠାଶୋଇ ଭାଇ ସର୍ବେ ହୋଇଲେଣି ନଷ୍ଟ
ଏ ଦୁହେଁ ମଲେ ଅନାଥ ହେବ ଧୃତରାଷ୍ଟ୍ର ।
ସୋଦର ହୋଇଣ ଯେବେ ଆମ୍ଭର ବଇରି
ଅନ୍ୟହସ୍ତରୁ ଉଦ୍ଧରି ଆପେ ପଛେ ମରି ।
ବାବୁ ସର୍ବଦା ପ୍ରାଣୀଙ୍କି ରାଗ ନୁହେଁ ଭଲ
ସର୍ବଦା ନଦୀ ବୁହେ କି ହୋଇ ସମତୁଲ ।
ବିପଦୁଁ ପ୍ରାଣୀ ଯେ ରଖେ ଧନ୍ୟ ତା ମହିମା
ସେହି ପରମ ପଣ୍ଡିତ ଅଟଇ ମହାତ୍ମା ।
ଏ ବିପଦୁଁ ପାରୁ ଯେବେ ତାହାଙ୍କୁ ଉଦ୍ଧରି
କୃତାର୍ଥ ହୋଇବ ଜାଣ ଜୀବନ ଆମ୍ଭରି ।
ବାବୁ ମୋର ବୋଲ କର ରେ ଭୀମ ଅର୍ଜ୍ଜୁନ
ନକୁଳ ସହଦେବାଦି ଯାଅରେ ବହନ ।
ଶୁଣି ବାହାନାଦେ ଗଲେ ସେ ଚାରି ବଳିଷ୍ଠ
ଧାତିକାରେ ନଦୀପାର ହେଲେ ଧର୍ମଚାଟ ।
ଆରେ ଆରେ ବୋଲି ଗଦା ଅସ୍ତ୍ରମାନ ତୋଳି
ଯାଇ ବଳୀବେଲାଳକୁ ବାଟରେ ଓଗାଳି ।
ଦେଖିଣ ବିଚାର କରେ ସେ କୁମରମଣି
ନେବା ଚାରିଙ୍କି ବାନ୍ଧିଲା ଶାଳବୃକ୍ଷେ ଆଣି ।
ବଳୀବେଲାଳ କୋପରେ ଉପାଡ଼ିଣ ବୃକ୍ଷ
ବୁଲାଇ ଭୀମସେନକୁ ପିଟିଲା ପ୍ରତ୍ୟକ୍ଷ ।
ସେହି ବେନିବୃକ୍ଷ ପଡ଼ି ଭୀମସେନ ମାଥେ
ଭାଙ୍ଗି ଚୂର ହୋଇଯାଇ ପଡ଼େ ଭୂମିଗତେ ।
ଭୀମସେନ ଗଦାବର ବୁଲାଇଣ ପିଟି
ବଳୀବେଲାଳ ପାତିଲା ବେନିକର ଗୋଟି ।

ଭୀମସେନର ସେ ଗଦା ଉଛୁଡ଼ି ଘେନିଲା
ବାଉନ ଭାରର ଗଦା ଧରି ବୁଲାଇଲା ।
ଦେଖିଣ ଭୀମସେନକୁ ନ ସ୍ଫୁରଇ କିଛି
ଏକାଗଦା ଘେନି ଉଭା ପବନର ବସି ।
ଗଦାବରକୁ ବୁଲାଇ ସେ ବଳୀବେଲାଳ
ଭୀମସେନକୁ ପିଟିଲା କ୍ଷତ୍ରୀ ଅନର୍ଗଳ ।
ପିତାପୁତ୍ରର ସମର ବଢ଼େ ରଣରଙ୍ଗ
ଗଦାପ୍ରହାରରେ କ୍ଷୀଣ ନୁହେଁ ତାର ଅଙ୍ଗ ।
ତର୍ଜନ୍ତି ଗର୍ଜନ୍ତି ବାଦ୍ୟ କରି ଗାଲତୁରୀ
ପୁଣି ବୃକ୍ଷେ ପିଟା ପିଟି ହୁନ୍ତି ମରାମରି ।
ଏମନ୍ତ ସମୟବେଳେ ଧାଇଁଲା ନକୁଳ
ବନ୍ଧନରୁ ଫେଇଦେଲା ଧୃତରାଷ୍ଟ୍ର ବାଳ ।
ଦୁଃଶାସନ ଦୁର୍ଯ୍ୟୋଧନ କର୍ଣ୍ଣ ଯେ ଶକୁନି
ନାଗପାଶ ବେଗେ କାଟେ ତୀକ୍ଷ୍ଣ ପର୍ଶୁଘେନି
ବନ୍ଧନରୁ ଫିଟିଗଲେ ଯହୁଁ ଚାରିଜଣ
ପଳାଇ ପଶିଲେ ଯାଇ ଗହନ ବିପିନ ।
ବନ୍ଧନୁ ଫିଟିଲେ ଯେହ୍ନେ ନ ରହନ୍ତି ଜନ୍ତୁ
ସେହିମତି ପଳାଇଲେ ରଖି ପ୍ରାଣହେତୁ ।
ଥୋକାଏ ଦୂରରେ କର୍ଣ୍ଣ ଚାହିଁଲା ଲେଉଟି
ଚାଲ ହୋ ମଇତ୍ର ବୋଲି ବୋଲେ ଧାର୍ତ୍ତରାଷ୍ଟ୍ରି
ଶକୁନି ବୋଇଲା ଚୋରି କରିଲାର ଠାରେ
ବେଗେ ପଳାନ୍ତି ପଦାର୍ଥ ପଡ଼ିଲେ ହାତରେ ।
କାର୍ଯ୍ୟ ଯହିଁପାଇଁ ତହିଁ ନ ରହନ୍ତି କ୍ଷଣେ
ଏମନ୍ତ ହୋଇଣ ଅଛି ଶାସ୍ତ୍ରର ପ୍ରମାଣେ ।
ଏହା ଜାଣି ନ ପାରନ୍ତି ଯେବଣ ମନୁଷ୍ୟ
ପ୍ରମାଦ ପଡ଼ଇ ତାକୁ ଅବଶ୍ୟ ଅବଶ୍ୟ ।
ଶକୁନି ବୋଇଲା ତହିଁ ତୀର୍ଥ କଲାଭୂଇଁ
ପିଣ୍ଡଦାନ ଦେଇ ତହିଁ ରହି ନ ଯୋଗାଇ ।
ଯେତେ ସୈନ୍ୟ ଆସିଥିଲେ ତୀର୍ଥର ସ୍ନାହାନେ
ନିଜ ମନ୍ଦିରେ ମିଳିଲେ ସର୍ବେ ପାଞ୍ଚଦିନେ ।
ଯେତେ ସୈନ୍ୟ ଶିରଛେଦ ହୋଇ ପଡ଼ିଥିଲେ
ସେମାନେ ପଡ଼ିଅଛନ୍ତି ସର୍ବେ ଚାଲିଗଲେ ।
ବାହୁଡ଼ିଲେ ସେ ଚାରିହେଁ ସ୍ନାହାନ ନ କରି
ପ୍ରବେଶ ହୋଇଲେ ଯାଇଁ ହସ୍ତିନା ନଗରୀ ।
ଦଣ୍ଡ ଭଗ୍ନ ଦେଖିକରି ପୁରଜନ ଭାଳି
ପାଞ୍ଚକଟକ ମଧରେ ପଡ଼େ ହାଲହୁଲି ।
ଭୀଷ୍ମ ଦ୍ରୋଣ କହିଲେ ଯେ ଶୁଣ ଧୃତରାଷ୍ଟ୍ର
ଭୋଦେବ କୁରୁନାଥକୁ ପଡ଼ିଲା ସଙ୍କଟ ।
ତୀର୍ଥଯାତ୍ରା କରିବାକୁ ଚଳନ୍ତେ ସଇନି
ନାଗରାଜା ଯାଉଥିଲା ନାଗବଳ ଘେନି ।
ଆଗୁଆଣୀ ଥାଟରେ ଯେ ଥିଲା ଦୁଃଶାସନ
ଗୋଡ଼ାଇ ମାଇଲା ସେହି ନାଗବଳ ସୈନ୍ୟ ।
ନାଗଙ୍କର ବଳେ ଏକପୁତ୍ର ଆସିଥିଲା
ସେ କୁମର ଆସି ଆମ୍ଭ ସୈନ୍ୟ ନିପାତିଲା ।
ଶରୀର ବଜ୍ର ତାହାର ଯୁକତେ ଅଟଇ
ବିନ୍ଧିଲେ ନ ଫୁଟେ ହାଣିଲେ ସେ ନ ଛିଡ଼ଇ ।
ବଡ଼ ପ୍ରମାଦ ପଡ଼ିଲା ହୋଇଲା ସମର
ବହୁତ ସୈନ୍ୟ ଆମ୍ଭର ମାରି କଲା ଚୂର ।
ଆମ୍ଭେ ପଡ଼ିଲୁ ତାହାର ଗଦାବର ଘାତେ
କୃପ ଅଶ୍ୱତ୍ଥାମା ଶଲ୍ୟ ଶକୁନି ସହିତେ ।
ଦୁର୍ଯ୍ୟୋଧନ ଦୁଃଶାସନ କର୍ଣ୍ଣ ଯେ ଶକୁନି
ଚାରିଙ୍କୁ ବନ୍ଧନ କରି ବେଗେ ଗଲା ଘେନି ।
ଆମ୍ଭେମାନେ ସମସ୍ତେ ଯେ ମୋହେ ପଡ଼ିଥିଲୁ
ରାତ୍ର ଅବଶେଷେ ଆମ୍ଭେ ଚେତନା ପାଇଲୁ ।
ଅସମ୍ଭାଳ ହୋଇ ସମସ୍ତେ ଯେ ପଳାଇଲୁ
ରାଜାଙ୍କର ହାନିଲାଭ ନେତ୍ରେ ନ ଦେଖିଲୁ ।
କି ଅବା ସେ ନାଶକର କି ଅବା ସେ ଧର୍ମ
ଉବୁରିବା ତାର ମୁଖୁଁ କାହିଁ ବା ସଂଗ୍ରାମ ।
ବାସଭଗ୍ନ ପକ୍ଷୀ ଯେବେ ଆତଙ୍କେ ପଳାଇ
ନିରେଖ ହୋଇଲୁ ଦୁର୍ଯ୍ୟୋଧନେ ବନ୍ଦୀ ହୋଇ
ଶୁଣି ମୂର୍ଚ୍ଛାଗତ ହେଲା ଅମ୍ବିକାର ସୁତ
ଅନ୍ତଃପୁରରେ ରୋଦନ ହେଲା ଅପ୍ରମିତ ।
ପାଞ୍ଚଦିନ ପରିଯନ୍ତେ କାନ୍ଦୁଥାନ୍ତି ନାରୀ
ଏମନ୍ତ ସମୟ ଯାଇଁ ମିଳିଗଲେ ଚାରି ।
ଦେଶାଉର ଜଣାଇଲା ଅନ୍ଧର ଅଗ୍ରତ
ଦୁର୍ଯ୍ୟୋଧନ ହସ୍ତିନାରେ ହେଲେ ଉପସ୍ଥିତ ।
ପ୍ରବେଶ ଇନ୍ଦ୍ରପ୍ରସ୍ଥରେ ସେହି ଚାରିଜଣ
ନ କର ବିଳାପ ସ୍ଥିର ହୁଅ ନୃପରାଣ ।
ଦେଶାଉରର ବାରତା ଶୁଣି ଧୃତରାଷ୍ଟ୍ର
ଚିନ୍ତା ଛାଡ଼ି ମନେ ହେଲେ ବହୁତ ସେ ତୁଷ୍ଟ ।
ଭୀଷ୍ମ ଦ୍ରୋଣ ଯାଇ ତାଙ୍କୁ ଆଣିଲେ ପାଛୋଟି
ଆସ୍ଥାନରେ ବିଜେକଲେ ଯାଇଁ ଧାର୍ତ୍ତରାଷ୍ଟ୍ରି ।
ଦୁର୍ଯ୍ୟୋଧନ କୋଳକରି ଧଇଲେ ଗାଙ୍ଗବେ
ବୋଇଲେ ସେ ଆପଦରୁ ତରିଲ କି ଭାବେ ।
ଶୁଣି ସେ ସଭା ମଧରେ କହଇ ଶକୁନି
ଆମ୍ଭ ଚାରିଜଣଙ୍କୁ ସେ ଯାଉଥିଲା ଘେନି ।
ଆମ୍ଭଙ୍କୁ ଘେନିଣ ଗଲା ପଞ୍ଚାଶ ଯୋଜନ
ସେହି ବାଳକର ବଳ ଅତି ଅକଥନ ।
ପାଣ୍ଡବ ଭେଟ ପଡ଼ିଲେ ଘୋର ଅରଣ୍ୟରେ
ଭୀମ ଅର୍ଜ୍ଜୁନ ପଶିଲେ ତା ସଙ୍ଗେ ସମରେ ।

ବଡ଼ବଳବନ୍ତ ଅଟେ ସେ ବାଳକୁମର
ନକୁଳ ଫେଡ଼ିଲା ଏଣେ ବନ୍ଧନ ଆମ୍ଭର ।
ସେମାନେ ବାଳକ ସଙ୍ଗେ କରୁଛନ୍ତି ରଣ
ପ୍ରାଣ ବିକଳରେ ଆମ୍ଭେ ତେଜିଲୁ ସେ ବନ ।
ଅନ୍ଧ ବୋଇଲା ପାଣ୍ଡବେ ବଡ଼ ଯଶକାରୀ
ତୋର ନିମନ୍ତେ ସେମାନେ ଦ୍ୱନ୍ଦ୍ୱକୁ ଆଚରି ।
ବିଦୁର ବୋଇଲା କିପାଁ ଅନୀତି କରିଲ
ସମର ସରିବାଯାଏ କିପାଁ ନ ରହିଲ ।
ପାଣ୍ଡବେ ଅଟନ୍ତି ଯେଣୁ ସକଳ ଜିଣନ୍ତା
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ କେ ଅଛି ସାମରଥା ।
ପାଣ୍ଡବେ ଥିଲେ ତୁମ୍ଭଙ୍କୁ ନ ଥିଲା ପ୍ରମାଦ
ବିଚାରି ପାରିଲ ନାହିଁ ଏମନ୍ତ ସମ୍ବାଦ ।
ଶକୁନି ବୋଇଲା କେହି ନ ଜାଣେ ତା ଭାବ
ହେ ବିଦୁର କେଉଁ ସୁଖ ଦେଉଛି ପାଣ୍ଡବ ।
ପାଣ୍ଡବେ ଜିଣିଲେ ଆମ୍ଭଙ୍କୁ ଯେ ନାହିଁ ଯଶ
ଭୀମ ହାରିଲେ ଆମ୍ଭଙ୍କୁ କରିଥାନ୍ତା ନାଶ ।
ବହୁତ ଝିଙ୍ଗାସ ଆମ୍ଭେ କଲୁ ପାଣ୍ଡବଙ୍କୁ
ସମର କରନ୍ତେ ସେହୁ ମାରନ୍ତେ ରାଜାକୁ ।
ଆମ୍ଭ ଦେହେ ନ ପଡ଼ି ରହିଲା ପାଣ୍ଡବଙ୍କୁ
କେଵଣ ଭାବରେ ଆମ୍ଭେ ଆବୋରିବୁ ତାଙ୍କୁ ।
କେବଣ ଭାବେ ସେ ଫେଡ଼ିଦେଲେ ଆମ୍ଭ ଫାଶ
କେବେହେଁ ସେ ପାଣ୍ଡବଙ୍କୁ ନାହିଁଟି ବିଶ୍ୱାସ ।
ଆମ୍ଭର ଗତଧର୍ମ ଅଟଇ ପୁଣ୍ୟମାନ
କେବଳ ପ୍ରାଣ ପାଇଲୁ ଭେଟ ଦେବଧର୍ମ ।
ସମସ୍ୟା କହିଣ ବୋଧ କରିଲା ଶକୁନି
ସମସ୍ତଙ୍କୁ ତୁନିକଲା କହି କୂଟବାଣୀ ।
ଧନ୍ୟ ଶକୁନି ଜୀବନ ଅଟେ ତୋର ଧନି
କହିଲୁ ସ୍ୱରୂପ ବୃତ୍ତାନ୍ତ ଯେ ମନ୍ତ୍ରୀ ମଣି ।
ଏହାଙ୍କ ମଲେ ଯୋଗାଇ ପାଣ୍ଡବଙ୍କ କାର୍ଯ୍ୟ
ରାଜା ଅଇଲେ ସୁଫଳ ହେଲା ଆମ୍ଭ ରାଜ୍ୟ ।
ତୁହି ମହାପଣ୍ଡିତ ଯେ ମନ୍ତ୍ରୀ ଗୁଣନିଧି
ସୋମବଂଶ ରକ୍ଷାକଲା ଶକୁନିର ବୁଦ୍ଧି ।
ଅଗସ୍ତି ପୁଚ୍ଛାକଲେ ଯେ ବୈବସ୍ୱତ ମନୁ
ପାଣ୍ଡବଙ୍କୁ କିସ କଲା ନାଗୁଣୀର ସୂନୁ ।
ଶୁଣିବାକୁ ଅଲୌକିକ ଦେଖିବା ଅପୂର୍ବ
ବାକ୍ୟ ବିସ୍ତାରିଣ କହ ହେ ମୁନିପୁଙ୍ଗବ ।
ବଦନ୍ତି ଅଗସ୍ତି ଶୁଣ ମନୁ ନୃପରାୟେ
ଅନେକ ସମର କଲା ନାଗୁଣୀ ତନୟେ ।
ଭୀମସେନ ପ୍ରହାରିଲା ଗଦା ଧରି ହସ୍ତେ
ଦେଖିଲା ବଳୀବେଲାଳ ଧଇଲା ତୁରିତେ ।

ଆରେ ଆରେ ବୋଲିକରି ଭୀମକୁ ପ୍ରହାରି
ହସ୍ତୁଁ ବାନଭାର ଗଦା ନେଲାକ ଉଚ୍ଛୁଡ଼ି ।
ସେହି ଗଦା ବୁଲାଇଣ ଆକର୍ଷିଣ ପିଟି
ଭୀମଦେହେ ପଡ଼ି ରକ୍ତ ହୋଇଲାକ ବୃଷ୍ଟି ।
ପୁଣିହିଁ ଚେତି ଉଠିଣ ପବନର ବଳା
ଦୁଇ ହସ୍ତରେ ଧଇଲା ଗିରି ବଜ୍ରଶିଳା ।
ପିଟେ ବେଲାଳ ଉପରେ ସେହି ବଜ୍ରଶିଳା
ଅଙ୍ଗେ ପଡ଼ି ତାହାର ଯେ ଭଗ୍ନ ହୋଇଗଲା ।
ଗଦା ପଡ଼ି ଭୀମସେନ ହେଲା ଅସାକ୍ଷମ
ପଡ଼ିଲା ଉତ୍ତାନଶାୟୀ ହୋଇ ବୀର ଭୀମ ।
ଭୀମକୁ ହାଣିବାପାଇଁ ବିଜୟ କ୍ରୋଧରେ
ଆରେ ଆରେ ବୋଲି ଯାଇଁ ପାର୍ଥ ଓଗାଳିଲେ
ଗୁଣ ଟଙ୍କାର କରିଣ ବୀର ଫାଲଗୁନି
ବଳୀବେଲାଳ ଉପରେ ଶର ବିନ୍ଧେ ଘେନି ।
ପଞ୍ଚବାଣ ଧରି ମାରେ ସୁଭଦ୍ରାର ନାହା
ଦେଖିଣ ବଳୀବେଲାଳ ପାତିଦେଲା ହିୟା ।
ନିର୍ଘାତ ନାରାଚ ପାର୍ଥ ମାରନ୍ତେ ପହୁଡ଼ି
ଅଧେବାଜି ଦୁଇଖଣ୍ଡ ହୋଇ ପଡ଼େ ଝଡ଼ି ।
ପର୍ବତ ଉପରେ ପଡ଼େ ଯେହ୍ନେ ବଜ୍ର ବାଣ
ଶରୀର କମ୍ପଇ ତେହ୍ନେ ଷୋଡ଼ଶ ପଞ୍ଚାଣ ।
ସହସ୍ର ନାରାଚ ପୁଣି ପାର୍ଥ ଦେଲେ ପେଷି
ବଳୀବେଲାଳ ହୃଦରେ ପଡ଼ି ହୁଏ ଧ୍ୱଂସି ।
ଦୁଇ ବାହୁକୁ ପେଷିଲା ଦୁଇସସ୍ର ଶର
ହୃଦୟକୁ ବିନ୍ଧିଲା ସେ ସହସ୍ର ପନ୍ଦର ।
ସହସ୍ର ନାରାଜ ନେଇ ପେଷିଲା କଣ୍ଠକୁ
ଦୁଇସହସ୍ର ପେଷିଲା ତା ଦୁଇ ପାଦକୁ ।
ଏକା ଥରକେ କରିଲା ଏତେକ ସନ୍ଧାନ
ପଡ଼େ ନାରାଚ କୁମର ଅଙ୍ଗରେ ଯାଇଣ ।
ଗିରିବର ସମାନରେ ଉଭା ମହାବଳୀ
ସବୁ ଶର ଅଙ୍ଗେ ପଡ଼ି ହୋଇଗଲା ଧୂଳି ।
ଦେଖିଣ ବିଷାଦ ଚିତ୍ତ ହେଲା ସବ୍ୟସାଚୀ
ବିଚାରେ ମୋର ନାରାଚେ ନ ହୋଇଲା କିଛି ।
ମନ୍ଦରଗିରି ଫୁଟଇ ମୋ ଶର ଆଘାତେ
ତାହାଠାରୁ ଗୁରୁତର ଦେଖିଲି ଯୁକତେ ।
ଦ୍ୱାଦଶମୁନା ବାବଲ ତୂଣେ ବସାଇଲା
ସେ ନାରାଚେ ଇନ୍ଦ୍ରଜିତ ତ୍ରେତାଯୁଗେ ମଲା ।
ସେହି ଶରକୁ ଅର୍ଜ୍ଜୁନ ପେଷେ କୋପକରି
ଅଗ୍ନି ଚହଟି ଉଠିଲା ହୃଦେ ପଡ଼ିକରି ।
ଭୂମିରେ ପଡ଼ି ସେ ଶର ହେଲା ଶତଚୂର୍ଣ୍ଣ
କ୍ଷତ୍ରୀ ମଧ୍ୟେ ଧନ୍ୟ ଧନ୍ୟ ପ୍ରଶଂସେ ଅର୍ଜ୍ଜୁନ ।

ଏମନ୍ତ ଲକ୍ଷଣେ ଜାତ କଲା ତୋ ଜନନୀ
ଯେହୁ ତୋର ପିତା ସେହି ତିନିପୁରେ ଧନ୍ୱୀ ।
କୋପଭର ହୋଇ ପୁଣି ଯୁଧିଷ୍ଠି ସୋଦର
ବିନ୍ଧଇ ଯେ ବଜ୍ରସମ ପରବତ ଶର ।
ବାୟୁବେଗେ ସେ ପର୍ବତ ଅଇଲା ଉଡ଼ିଣ
ପଡ଼ି ବେଲାଳ ହୃଦରେ ହୋଇଗଲା ଚୂର୍ଣ୍ଣ ।
ସମରେ ଅର୍ଜ୍ଜୁନ ଯହୁଁ ହୋଇଲା ବିରସ
ବେଲାଳ ବୋଇଲା ଗୁରୁମୁଖ ଅସ୍ତ୍ର ପେଷ ।
କୋପେ ଅର୍ଜ୍ଜୁନ ପେଷିଲା ତହୁଁ ଅଗ୍ନି ବାଣ
ଯେତେ ଚରାଚର ଦହ୍ୟ କରିବ ଏକ୍ଷଣ ।
ନ୍ୟୂନତେଜ ହୋଇଗଲା ଆକାଶ ମାର୍ତ୍ତଣ୍ଡ
ଦେଖିଣ ବଳୀବେଲାଳ ପାତିଦେଲା ତୁଣ୍ଡ ।
ଯାହାର ଶରୀର ଯାକ ଅଟେ ଅଗ୍ନି ମୟ
ଅନଳଶରକୁ ତାର କିସ ଅଛି ଭୟ ।
ସେହି ଶର ଆସି ତାର ମୁଖରେ ସମ୍ଭାଏ
ତାହା ଦେଖି ସ୍ତମ୍ଭୀଭୂତ ହେଲା ଧନଞ୍ଜୟେ ।
କତୁରୀଶର ପେଷିଣ ନାଗୁଣୀ ନନ୍ଦନ
ଗାଣ୍ଡୀବ ଧନୁର ଗୁଣ କରିଲା ଛେଦନ ।
ଅକ୍ଷୟ ଧନୁର ଗୁଣ ଯହୁଁ ହେଲା ଛେଦ
ବିଚାରେ ବାସବସୁତ ପଡ଼ିଲା ପ୍ରମାଦ ।
ତହୁଁ ଶୂନ୍ୟ ହସ୍ତ ହୋଇ ବାସବର ଶିଷ୍ୟ
ବିଚାରଇ ଏବେ ମୁହିଁ ନିଶ୍ଚେଁ ଗଲି ନାଶ ।
ଧାଇଁଲା ବଳୀବେଲାଳ ବିକ୍ରମ ମୂରତି
ଅର୍ଜ୍ଜୁନର କେଶ ଯାଇ ଧଇଲା ତଡ଼ତି ।
ବାମକରରେ ଅର୍ଜ୍ଜୁନ ବୀର କେଶ ଧରି
ଦକ୍ଷିଣ କରରେ ଭୀମସେନକୁ ଓଟାରି ।
ଦୁଇ ଭାଇ କେଶ ଧରି ନାଗୁଣୀର ବାଳ
ବିଜୟ କଲା ଆପଣା ଭୁବନ ପାତାଳ ।
ପାତାଳ ଗଙ୍ଗା କୂଳରେ ବସାଇ ଦୁହିଙ୍କି
କଟାରି ଧରିଣ ହୋଇ କୋପାନଳ ମୂର୍ତ୍ତି ।
ପାତାଳବାସିନୀ ବୋଲି ଦେବୀ ଅଛି ତହିଁ
ତାଙ୍କୁ ବଳିଦେବ ବୋଲି ବସାଇଛି ନେଇ ।
ବିଜେ କର୍ଣ୍ଣକଟାରୀ ଯେ ଘେନିଅଛି ହସ୍ତ
ଦକ୍ଷିଣ ହସ୍ତେ ଧରିଛି ଦୁହିଙ୍କର ଗାତ୍ର ।
ବିଜେ କଟାରୀ ଉଞ୍ଚାଇ ବୋଲେ ମହାରଥୀ
ସୁମର ମାନବା ଇଷ୍ଟଦେବତା ତୋ ଏଥି ।
ଲକ୍ଷଣ ଗୁଣ ଦେଖିଣ ବିଚାରେ ତନୟ
ଦୁହେଁ ତ ଦିଶନ୍ତି ମୋତେ ବିଷ୍ଣୁତେଜ ପ୍ରାୟ ।
ମାରିବି କି ନ ମାରିବି ବିଚାରେ ତନୟେ
କଟାରୀ ଧରି ବୋଲଇ ଶୁଣ ମାନବାୟେ ।
ନିଶ୍ଚୟେ ପୂରିଲା ମାନବାରେ ତୁମ୍ଭ କାଳ
ମୋହର ଶତ୍ରୁକୁ ଫେଡ଼ି ମୋର ସଙ୍ଗେ ଗୋଳ ।
ତିରଣ ପ୍ରାୟେ କାଟିବି ଆଜି ତୁମ୍ଭ ମାଂସ
ପିତାମାତା ସୁମରରେ ପୂରିଲା ଆୟୁଷ ।
କହଇ କଟାରୀ କରେ ଧରି ବେଲାବଳୀ
ଜଳକ୍ରୀଡ଼ା ପାଇଁ ଆସେ ନାଗର ଦୁଲାଳୀ ।
ପାତାଳୁଁ ବାହାର ହୋଇ ସେ ନାଗ ଦୁହିତେ
ନାଗୁଣୀ ବଳ ସହିତେ ଆସେ ତୋଷଚିତ୍ତେ ।
ଗୌତମୀ ତୀର୍ଥକୁ ସେହୁ ଆସେ ଅବଗାହି
ଅନେକ ନାରୀ ତା ସଙ୍ଗେ ଅଛନ୍ତି ଗୋଡ଼ାଇ ।
ପାତାଳ ଗଙ୍ଗାକୂଳରେ ପୁତ୍ରକୁ ଭେଟିଲେ
ପୁତ୍ରକୁ ଦେଖି ସେ ନାଗବାଳୀ ଚାହିଁଦେଲେ ।
ବେନି ପୁରୁଷକୁ ଦେଖି ବିଚାରଇ ବାଳୀ
କିପାଇଁ ନନ୍ଦନ ଏହାଙ୍କର ତୁଲେ କଳି ।
ନାଗବାଳୀ ଦେଖିଲା ସେ ଭୀମସେନ ମୁଖ
ସ୍ୱାମୀର ବଦନ ପ୍ରାୟେ ଦିଶଇ ପ୍ରତ୍ୟକ୍ଷ ।
ତହୁଁ ସନ୍ନିଧିକୁ ଯାଇ ଚିହ୍ନିଲା ନାଗୁଣୀ
ବୋଲେ ରହ ବେଲାଳରେ କାରେ ଯାଉ ହାଣି
ଭୀମସେନ ଚରଣରେ ବାଳୀ ଯାଇ ନମି
ବୋଲେ ତୋ ଆପଦଘେନେ କାହିଁଥିଲ ସ୍ୱାମୀ
ଆରେ ବଳୀବେଲାଳ ଏ ତୋର କେଉଁକଥା
ସ୍ୱାମୀକି ଦେଉ ତୁ ମୋର ଏଡ଼େକ ଅବସ୍ଥା ।
ମୂର୍ଖ ବୁଦ୍ଧି ନନ୍ଦନରେ କଲୁ ତୁ ନ ଜାଣି
କେଉଁ ପାପବୁଦ୍ଧି ତୋର ଲୋଡ଼ୁ ପିତୃହାଣି ।
ଆରେ ରେ ମୂର୍ଖ ନନ୍ଦନ ତୁ କୁଳନାଶନ
ମୋ ସ୍ୱାମୀକି ନାଶିବାକୁ କରିଅଛୁ ମନ ।
ଆରେ ରେ କୁମର ହସ୍ତୁଁ କେଶ ଛାଡ଼ି ତୁହି
ପିତା ପାଦେ ଲମ୍ବମାନ ହୁଅ ତୁହି ଯାଇ ।
ମାତାର ବଚନ ଶୁଣି ଛାଡ଼ି କରବାଳ
ଏ ମୋ ତାତ ମାନବ ଗୋ ବଡ଼ ଯେ ଚଣ୍ଡାଳ ।
ବେଲାବଳୀ ବୋଇଲା ଏ ତୋର ନିଜ ପିତା
ସ୍ୱାମୀର ଚରଣତଳେ ହୁଅରେ ପ୍ରଣତା ।
ଶସ୍ତ୍ରର ବିଘାତେ ମୋହ ହୋଇଥିଲା ଭୀମ
ନାଗୁଣୀର ଦର୍ଶନେ ସେ ହୋଇଲା ସାଷ୍ଟାମ ।
ପୁତ୍ର ଭର୍ତ୍ତା ଦେବରକୁ ଘେନି ନାଗବାଳୀ
ଜଳଅନ୍ଧାରି ପୁରରେ ଯାଇ ବେଗେ ମିଳି ।
ବହୁ ସମ୍ଭାରେ ଅମୃତ କରାଇ ଆହାର
କରାଏ ନାଗୁଣୀ ପଶି ଅନେକ ସମ୍ଭାର ।
ଭୀମ ଅର୍ଜ୍ଜୁନଙ୍କୁ ତହିଁ ଭୋଜନ କରାଇ
ସନ୍ତୋଷ କରି ବସାଏ ତହୁଁ ଦୁଇଭାଇ ।

ହେ ସ୍ୱାମୀ ମୋହର ଦୋଷ କରିବ ମାର୍ଜିତ
ସେ କାଳେ ତୁମ୍ଭ ଔରସୁ ହୋଇଅଛି ଜାତ ।
ଗଲାବେଳେ ତୁମ୍ଭେ ମୋତେ ଯାଇଥିଲ କହି
ପୁତ୍ର ହେଲେ ଦୁଇ ନାମ ଦେବୁ ତୁ ମିଶାଇ ।
ତୁମ୍ଭେ ଅଟ ମହାବଳୀ ମୁହିଁ ବେଲାବଳୀ
ବଳୀବେଲାଳ ୟା ନାମ ଦେଲି ଆଜ୍ଞାପାଳି ।
ଏହୁ ତୋହର ନନ୍ଦନ ମୁହିଁ ତୋର ନାରୀ
ଏହାର ଦୋଷକୁ ନାଥ ନ ଧର ବିଚାରି ।
ଏହାକହି ଭୀମପାଦେ ମାତା ପୁତ୍ରନମି
ବୋଇଲା ମୋ ଅପରାଧ କ୍ଷମାକର ସ୍ୱାମୀ ।
କୁମର ବୋଲେ ନ ଜାଣେ ମୁହିଁ ପିତା ବୋଲି
ବାଳ ବୁଦ୍ଧିରୁ ଅନେକ ଦୋଷ ମୁହିଁ କଲି ।
ତୁହି ଅଟୁ ପିତା ମୋର ନ ଚିହ୍ନିଲୁ ମୋତେ
ଦଇବ ଉପାୟ ହୁଏ ଏସନକ କୃତ୍ୟେ ।
ନ ଜାଣିଣ ପିତା ମୁହିଁ କଲି ବଡ ଦୋଷ
କ୍ଷମା ଦିଅ ପୁତ୍ରକୁ ନ ବହି ମନେ ରୋଷ ।
ପୁତ୍ର ପତ୍ନୀର ଭକତି ଦେଖି ପଣ୍ଡୁ ବାଳ
କୋଳେ ଧଇଲେ ପୁତ୍ରକୁ ହୋଇ କୁତୁହଳ ।
ମୁଖରେ ଚୁମ୍ବନ ଦେଇ ବୋଲେ ବୃକୋଦର
ପରହସ୍ତେ ପରାଜୟ ନାହିଁ ରେ ଆମ୍ଭର ।
ଯଦି ଅବା ପୁତ୍ରବୋଲି ନ ଜାଣିଲି ତୋତେ
ପରାଜିତ ହୋଇନାହିଁ ମୁହିଁ ପରହସ୍ତେ ।
ମୋର ପୁତ୍ର ହୋଇ ମୋତେ କରିଲୁ ତୁ ଜୟ
ଏଥିରେ ଆମ୍ଭର ଯଶ ଦେଲା ରେ ତନୟ ।
ପୁତ୍ର ଯେବେ ଗୁଣବନ୍ତ ହୁଏ ପିତା ଠହୁଁ
ତାହାଠାରୁ ପୁଣ୍ୟକଥା ଅଛି କାହିଁ ଆଉ ।
ଏହିରୂପେ ହେଲା ପିତା ପୁତ୍ରଙ୍କର କଥା
ସବୁଦୂର ହେଲା ଯାହା ଥିଲା ମନୋବ୍ୟଥା ।
ବଳୀବେଲାଳ ବୋଇଲା ଶୁଣ ଆହେ ତାତ
ପ୍ରଥମରେ କଲା ଯେହୁ ଆସି ଦ୍ୱନ୍ଦ୍ୱ ଜାତ ।
ପୁଣି ଯାହାକୁ ବାନ୍ଧିଲି ଶାଳବୃକ୍ଷେ ଆଣି
ସେହି ଚାରିଜଣ କିଏ ନ ପାରିଲି ଜାଣି ।
ବାବୁରେ ପ୍ରଥମେ ଯାକୁ କରିଲୁ ବନ୍ଧନ
ତାହାର ନାମ ଅଟଇ ବୀର ଦୁଃଶାସନ ।
ପୁଣି ଯାହା ଶିରେ ଥିଲା ଅନର୍ଘ ମୁକୁଟ
ସେହୁ ଦୁର୍ଯ୍ୟୋଧନ ଜାଣ ହସ୍ତିନାର ରାଟ ।
ତାର ପଛେ ଥିଲା ଯେହୁ ଅତ୍ୟନ୍ତ ସୁନ୍ଦର
ଦୁର୍ଯ୍ୟୋଧନ ମିତ୍ର ସେହୁ ନାମ କର୍ଣ୍ଣବୀର ।
ସର୍ବ ପଶ୍ଚାତରେ ବାନ୍ଧି ରଖିଲୁ ଯାହାକୁ
ଶକୁନି ମନ୍ତ୍ରୀ ବୋଲିଣ ବୋଲନ୍ତି ତାହାକୁ ।
ଯାହା ପୁଚ୍ଛାକଲୁ ତୁହି ଶୁଣରେ କୁମର
ସେମାନେ ଅଟନ୍ତି ସବୁ ଆମ୍ଭର ସୋଦର ।
ପୁଣିହିଁ କୁମର ପୁଚ୍ଛେ ଭୀମକୁ ଅନାଇଁ
ଯେହୁ ମୁକୁଳାଇ ଦେଲା ସେ କିଏ ଅଟଇ ।
ଭୀମସେନ ବୋଇଲେ ସେ ମୋର ସାନଭାଇ
ଏକାମାତା ଗର୍ଭୁଜାତ ଆମ୍ଭେ ପାଞ୍ଚଭାଇ ।
ଆମ୍ଭର ଜ୍ୟେଷ୍ଠ ସୋଦର ଯୁଧିଷ୍ଠିର ଜାଣ
ତାହାଙ୍କର ସାନ ଅଟୁ ଆମ୍ଭେ ଚାରିଜଣ ।
ବାବୁରେ ମୋର କନିଷ୍ଠ ଅଟେ ଏ ଅର୍ଜ୍ଜୁନ
ଧନୁ ମୁଖରେ ପୃଥିବୀ ଧରେ ଷୋଳଦିନ ।
ଆପଣା ପୁରେ ଉତ୍ସବ କରି ନାଗରାଜା
ନାଗବାଳୀ ବିଭାଦେଲେ ଆପଣା ଆତ୍ମଜା ।
ଏହା ଔରସରୁ ଜାତ ନାଗାର୍ଜ୍ଜୁନ ସୁତ
ତୋ ପ୍ରାୟ ରଣେ ଆମ୍ଭଙ୍କୁ କଲା ପରାଜିତ ।
ଅନେକ ପ୍ରଶଂସା କରି ବୋଇଲେ ଅର୍ଜ୍ଜୁନ
ଆନ ହସ୍ତେ ପରାଜୟ ନୋହିଛୁ ନନ୍ଦନ ।
ଆମ୍ଭର ପୁତ୍ର ଯଦ୍ୟପି ଆମ୍ଭଙ୍କୁ ଜିଣିଲା
ଏହାଠାରୁ କିସ ଯଶ ଆଉ ଅଛି ଭଲା ।
ଅନେକ ଉତ୍ସବମାନ କରାଇ ନାଗୁଣୀ
ସ୍ୱାମୀର ମସ୍ତକେ ଅର୍ଘ୍ୟ ପୁଣି ଦେଲା ଆଣି ।
ଆଠଦିନ ଭୀମସେନ ସେ ସ୍ଥାନରେ ରହି
ଅନନ୍ତ ନାଗକୁ ବିଦା ମାଗଇ ଯେ ଯାଇ ।
ବୋଲେ ଆମ୍ଭେ ଏ ସ୍ଥାନରେ ନ ପାରିବା ରହି
ଭାଇ ଆମ୍ଭର ଆମ୍ଭଙ୍କୁ ଥିବେ ବାଟ ଚାହିଁ ।
ନାଗୁଣୀକୁ ସମର୍ପଣ କରିଦେଇ ବାଳ
ବୋଲେ ଆମ୍ଭ ଆୟୁ ଘେନି ବର୍ତ୍ତ ଚିରକାଳ ।
ତୁହି ବର୍ତ୍ତିଥିଲେ ଯଶ ଅଛଇ ଆମ୍ଭର
ଏହା କହି ପାତାଳରୁ ହୋଇଲେ ବାହାର ।
ମାଦ୍ରୀ ଦୁଇ ସୁତ ଗଲେ ସମରୁ ପଳାଇ
ଯୁଧିଷ୍ଠିର ଦ୍ରୌପଦୀଙ୍କି କହିଲେ ସେ ଯାଇଁ ।
ସେ ବାଳକ ଦୁହିଙ୍କର କେଶ ଧରି ହସ୍ତେ
ଅନ୍ତରୀକ୍ଷ ଘେନିଗଲା ସେହୁ ଜଳପଥେ ।
ଯୁଧିଷ୍ଠିଦେବ ବୋଇଲେ ହେଲା ବିପରୀତ
ଅର୍ଜ୍ଜୁନକୁ ଜିଣିବାକୁ କେବା ସାମରଥ ।
ପୃଥିବୀ ଧରିବାକୁ କେ ହୋଇବ ଭାଜନ
ସମରେ ଜିଣିଲା ଯେହୁ ଇନ୍ଦ୍ର ତ୍ରିଲୋଚନ ।
ଏ ମଧ୍ୟପୁରୀ ରାଜାଏ କେ ନୁହନ୍ତି ସରି
ଯାହାର ଧନୁ ଧରନ୍ତେ କମ୍ପେ ତିନିପୁରୀ ।
ବିକଳରେ ଯୁଧିଷ୍ଠିର ବିଚାରନ୍ତି ମନ
ଏମନ୍ତ କାଳେ ମିଳିଲେ ଭୀମ ଅରଜୁନ ।

ନଦୀକୂଳେ ଯୁଧିଷ୍ଠିର ଦ୍ୱିଭାଇଙ୍କୁ ଦେଖି
ଧାଡିକାରେ ଉଠିଲେ ଯେ ଆସନ ଉପେକ୍ଷି ।
ଭୀମ ପାର୍ଥ କଲେ ତାଙ୍କ ପାଦେ ନିଉଛାଳି
ଧର୍ମ ବୋଇଲା ବୃଥାରେ ଉପୁଜିଲା କଳି ।
କାହାର ତନୟ ସେହୁ ଏଡ଼େ ସାମରଥ
ମେରୁ ଚାଳନେ ଆୟାସ ନୋହିଲା କିଞ୍ଚିତ ।
ଅର୍ଜ୍ଜୁନ ବୋଇଲେ ଦେବ ଶୁଣ ସାବଧାନେ
ବଳୀବେଲାଳ ବୋଲି ଯେ ଭୀମଙ୍କର ନାନେ ।
ବାଳୁତ ପୁତ୍ରହୋଇ ସେ ମହାବଳବନ୍ତା
ତିନିଲୋକ ଜିଣିବାକୁ ଅଟେ ସାମରଥା ।
ଭୀମେ ପଚାରିଲେ ଦେବ ଜାଣୁ କି ଏ କଥା
ଭୀମ ବୋଲେ ସହଦେବ ଜାଣେ ଏ ବାରତା ।
ଜାଣ କି ହୋ ସହଦେବ ପୁଚ୍ଛନ୍ତି ଯୁଧିଷ୍ଠି
କେଉଁପରି ଅଟେ ସେହୁ ଭୀମପୁତ୍ର ଗୋଟି ।
ଜାଣି କିପାଁ ତୁନି ହୋଇ ଥାଉ ମନ୍ତ୍ରୀବର
ଆମ୍ଭର ବିରସେ କିପାଁ ହରଷ ତୁମ୍ଭର ।
ସହଦେବ ବୋଲେ ପଚାରିଲେ ମୁଁ କହଇ
ସାବଧାନେ ଶୁଣ ଆହୋ ଧର୍ମରାଜ ସାଇଁ ।
ସହଦେବ ବୋଲେ ଦେବ ଶୁଣ ଏକଦିନେ
ଭୀମେ ବିଷଲଡ୍ଡୁ ଖୁଆଇଲେ କୁରୁମାନେ ।
ମିଷ୍ଟାନ୍ନ ଭୋଜନ କଲେ ଭୀମ କଉତୁକେ
ବିଷଲଡ୍ଡୁ ପରଷିଲେ ଭୋଜନ ଉଦକେ ।
ଭୋକବେଳେ କଉତୁକେ ଭୁଞ୍ଜି ଭୀମସେନ
ପଡ଼ିଗଲେ ଅସାଷ୍ଟମେ ହୋଇ ଅଚେତନ ।
ଦେଖିଣ ହରଷ ହେଲେ କଉରବ ବଳେ
ବାନ୍ଧିକରି ପକାଇଲେ ଯମୁନାର ଜଳେ ।
ନାଗ ତୋତେ ଖାଉବୋଲି ଭସାଇଲେ ଜଳେ
ବେଲାବଳୀ ଆସିଥିଲା ନାଗୁଣୀଙ୍କ ମେଳେ ।
ନାଗରାଜାଙ୍କର ସେଟି ଅଟଇ ଯେ କନ୍ୟା
ଅନେକ ନାଗୁଣୀ ଥିଲେ ନ ଯାଇ କଳନା ।
ସୂର୍ଯ୍ୟକନ୍ୟା ନଦୀରେ ଯେ ଭାସନ୍ତି ପାବନି
ଏମନ୍ତ ସମୟେ ତାଙ୍କୁ ଦେଖିଲା ନାଗୁଣୀ ।
ଗୁଣବନ୍ତ ବୋଲି ତାକୁ ନ କଲେ ଯେ ନାଶ
ସମସ୍ତ ନାଗୁଣୀ ତହୁଁ ମିଳି ତାର ପାଶ ।
ଭୀମସେନ ଠାକୁରଙ୍କୁ ବେଲାବଳୀ ଦେଖି
ମୋହେ ବଶ ବୋଇଲା ସେ ବେଲାବଳୀ ସଖୀ
କୋଳାଗ୍ରତ କରି ତାଙ୍କୁ ଧଇଲା ତରୁଣୀ
ଭୀମସେନେ ଖୁଆଇଲା ଅମୃତ ସେ ପୁଣି ।
ନାଗୁଣୀର ତୁଳେ ସେହୁ କଲେ ଯେ ପୀରତି
ଏହାଙ୍କର ବୀର୍ଯ୍ୟେ ସେହି ପୁତ୍ର ଉତପତ୍ତି ।
ଭୀମସେନ ଅଟନ୍ତି ଯେ ମହା ବଳଶାଳୀ
ବେଲାବଳୀ ନାଗୁଣୀ ଯେ ନାଗର ଦୁଲାଳୀ ।
ମହାଧାର୍ମିକା ଅଟଇ ପୁଣି ସେ ନାଗୁଣୀ
ପିତା ମାତା ଦୁହିଙ୍କର ନାମ ଦେଲା ପୁଣି ।
ସେହି କୁମରର ନାମ ବଳୀ ଯେ ବେଲାଳ
ତାହାର ହସ୍ତରେ ଦେବ ହେଲୁ କସ ତୁଳ ।
ତାହା ଶୁଣି ଆନନ୍ଦିତ ହୋଇଲେ ଯୁଧିଷ୍ଠି
ବୋଇଲେ କୁଳଚନ୍ଦ୍ରମା ସେହି ପୁତ୍ର ଗୋଟି ।
ପୁଣି ଅର୍ଜ୍ଜୁନ କହନ୍ତି ଶୁଣ ଧର୍ମମଣି
ତିନିପୁରେ ଅଗୋଚର କୁମର କାହାଣୀ ।
ତାହାର ହାତେ ଲାଞ୍ଛିତ ହେଲେ କଉରବ
ସେ ଅପମାନ କହିଲେ କେଭେ ନ ସରିବ ।
ଜୟ ରାମ କଉଶିକ ମାନ ଉଦ୍ଧାରଣ
ତାଡ଼କା ଅସୁରୀ ଦର୍ପ ଧ୍ୱଂସିଲ ଆପଣ ।
ମହାପୁରୁଷ ଶାପରେ ହେଲେ ପତ୍ନୀଭ୍ରଷ୍ଟ
ପତ୍ନୀ ହରଣେ ରାବଣ ହେଲା ପ୍ରାଣେ ନଷ୍ଟ ।
ପାଦେ ଲାଗନ୍ତେ ପାଷାଣ ହୋଇଗଲା ନାରୀ
ଗୌତମ ଭାରିଯା ଯେହୁ ଅହଲ୍ୟା ସୁନ୍ଦରୀ ।
କୋଦଣ୍ଡ ଧାରଣ ପ୍ରଭୁ ରଘୁକୁଳରାଣ
ମିଥିଳାରେ ଶିବଧନୁ ଭାଙ୍ଗିଲ ଆପଣ ।
ଶିବଧନୁ ଭଗ୍ନ ଶୁଣି ପର୍ଶୁରାମ କୋପ
କିଞ୍ଚିତ ମାତ୍ରକେ ଧ୍ୱଂସ କଲେ ତାଙ୍କ ଦର୍ପ ।
ବାଳୀ ଗର୍ବଗଞ୍ଜନ ହେ କମଳଲୋଚନ
ଯୋଗୀଜନମାନଙ୍କର ହୃଦୟ ରଞ୍ଜନ ।
ନମସ୍ତେ ନମସ୍ତେ ନାଥ ଶ୍ରୀ ମଧୁସୂଦନ
ପାଷାଣ୍ଡ ଦଳନ ତୁମ୍ଭେ ଅଗତି ଶରଣ ।
ଧର୍ମବାଟ ଶାସ୍ତ୍ର ମୁଁ ଯେ କିଛି ନ ଜାଣଇ
ଶ୍ରୀରାମର ନାମ ଗୋଟି କେବଳ ଭାବଇ ।
ମୋହର ଏ ଶୁଭ ବାକ୍ୟ ଶ୍ରୀରାମର ନାମ
ଶୂଦ୍ରମୁନି ଶାରଳାର ସହସ୍ର ପ୍ରଣାମ ।



## ଗୌତମୀ ତୀର୍ଥରେ ଅହଲ୍ୟା ଦ୍ରୌପଦୀ କଥୋପକଥନ ଓ ହନୁମାନ ଜନ୍ମ ବୃତ୍ତାନ୍ତ ଏବଂ ଦ୍ରୌପଦୀର ପଞ୍ଚପୁତ୍ର ଜନ୍ମ

ଅଗସ୍ତିଙ୍କୁ ପୁଚ୍ଛାକଲେ ବୈବସ୍ୱତ ମନୁ
କୃଷ୍ଣା ଗର୍ଭେ ବିଶ୍ୱନାଥ ଥିଲେ ହୋଇ ସୁନୁ ।
ତୁମ୍ଭେ ଯେ ବୋଇଲ ବିଶ୍ୱାମିତ୍ରଙ୍କର ଶାପେ
ପଞ୍ଚ ବିଶ୍ୱଦେବା କଥା ହୋଇଲା କିରୂପେ ।

ଦ୍ରୌପଦୀ ଦେବୀଙ୍କ ଗର୍ଭେ ଛନ୍ତିଟିକି ରହି
ଏଥିର ଚରିତ ମୁନି କହିବା ବୁଝାଇ ।
ମନୁ ବଚନେ କହନ୍ତି ଘଟରଷିସୁତ
ଶୁଣ ମନୁ ପୁରୁଷ ତୁ ତାହାର ଚରିତ ।
ପାଣ୍ଡବେ ଯାଇଣ ଥିଲେ ତୀର୍ଥ ଗଉତମୀ
ଗୌତମ ଆଶ୍ରମେ ଗଲେ ତହୁଁ ଦେବ ସ୍ୱାମୀ ।
ଉଦ୍ଦାଳ ଚ୍ୟବନ ପୁଣି ଗଉତମ ଦେଖି
ବେଗେ ଉଠିଲେ ସେମାନେ ଆସନ ଉପେକ୍ଷି ।
ମୁନିଙ୍କ ପାଦେ ନମିଲେ ଯାଇ ଧର୍ମ ସୁତ
ଅନେକ କଲ୍ୟାଣ କଲେ ସର୍ବ ତପୋବନ୍ତ ।
ଅହଲ୍ୟା ଆନନ୍ଦ ହେଲେ ଦ୍ରୌପଦୀଙ୍କୁ ଦେଖି
ବହନ ଅଇଲେ ଦେବୀ ଆସନ ଉପେକ୍ଷି ।
ଯାଜ୍ଞସେନୀଙ୍କୁ ଦେଖିଣ ସେହି ମାହେଶ୍ୱରୀ
ଭକ୍ତି ଦେଖି ରହିଲେ ସେ ଅତ୍ୟାଦର କରି ।
ମକର ମାସରେ ଦେବୀ ହେଲେ ରଜୋବତୀ
ତୁଳମାସ କୃଷ୍ଣପକ୍ଷ ଦଶମୀର ତିଥି ।
ଉତ୍ତରଭାଦ୍ର ନକ୍ଷତ୍ର ପଣ୍ଡିତ ବାସର
ପାକାସ୍ପର୍ଶ ହେଲେ ଦେବୀ ଶୁଣ ନୃପବର ।
ତୈତିଳ ନାମେ କରଣ ପ୍ରୀତିନାମେ ଯୋଗ
ସିଂହମାସ କୃଷ୍ଣପକ୍ଷେ ହୋଇଲେ ତନୁଜ ।
ଗୌତମୀ ତୀର୍ଥ କରିଣ ଅଇଲେ ଅଞ୍ଜନୀ
ତାଙ୍କୁ ଦେଖି ପ୍ରଣିପାତ କଲେ ଯାଜ୍ଞସେନୀ ।
ଅହଲ୍ୟା ବୋଇଲେ ଏହୁ ମୋ ଦୁହିତା ସତ୍ୟ
ମୋପ୍ରତି ବିକୃତ ସଦା କରିଥାଏ ଚିତ୍ତ ।
ଦ୍ରୌପଦୀ ବୋଇଲେ ମାଗୋ ଶୁଣ ମହାଦେବୀ
ସଂଜାତ ଦୁହିତା ହୋଇ କିପାଇଁ ଅଭାବି ।
ଅହଲ୍ୟା ବୋଇଲେ ମାଗୋ କହେ ଆଦ୍ୟକଥା
ମୋର ରୂପ ଦେଖି ଇନ୍ଦ୍ର ସୂର୍ଯ୍ୟ ଯେ ଦେବତା ।
ଲୋଭଗ୍ରସ୍ତ ହୋଇ ମନେ ସଦା ରହିଥାନ୍ତି
କୌଣସି ମତରେ ମୋତେ ପାଇ ନ ପାରନ୍ତି ।
ଜଗତମୋହିନୀ ମୁହିଁ ସୁନ୍ଦର ପଣରେ
ମୋର ପ୍ରାଣ କାଢ଼ି ମୁନି ରଖନ୍ତି କାନିରେ ।
ମୋ ମୃତପିଣ୍ଡ ଗୋଟିକୁ ଏହାକୁ ଜଗାଇ
ତପସ୍ୟାକୁ ଚଳିଯାନ୍ତି ମୁନି ବିଦା ହୋଇ ।
ତୁଳମାସ କୃଷ୍ଣପକ୍ଷ ଦଶମୀର ତିଥି
ପଣ୍ଡିତବାର ଅଶ୍ୱିନୀ ନକ୍ଷତ୍ରର ସ୍ଥିତି ।
ତୈତିଳ ନାମେ କରଣ ବିଷ୍କୁମ୍ଭର ଯୋଗ
ସେ ଦିନ ଗୌତମ ଗଲେ ତୀର୍ଥ ଯେ ପ୍ରୟାଗ ।
ଶୂନ୍ୟ ବାସରେ ପଶିଲେ ମଘବା ଆଦିତ୍ୟ
ଇନ୍ଦ୍ର ପ୍ରାଣ ହୋଇ ପଶେ ମୋର ହୃଦଗତ ।

ଏମନ୍ତ ଚରିତ କଲେ ସେହୁ ବେନି ଦେବ
ଆଦିତ୍ୟ ଦେବତା ହେଲା ମୋ ସଙ୍ଗେ ସଂଶ୍ରବ
ପୁଣି ଇନ୍ଦ୍ର ଆଦିତ୍ୟ ଯେ ଆସି ଆରଦିନ
ଆଦିତ୍ୟ ମୋ ହୃଦେ ପଶି ହୋଇଲା ଜୀବନ ।
ଇନ୍ଦ୍ରଦେବତା ମୋ ସଙ୍ଗେ କରିଲା ଶୃଙ୍ଗାର
ଏହିରୂପେ ପାଞ୍ଚଦିନ କଲେ ସେ ବିହାର ।
ମୁହିଁ ଗର୍ଭବତୀ ହେଲି ଦୁହିଁଙ୍କ ରେତରେ
ଦୁଇଟି କୁମର ହେଲା ଦଶମ ମାସରେ ।
ଗଉତମ ନ ଜାଣନ୍ତି ଏ ସବୁ ବିଷୟ
ସୋମତିଳା ଯବତିଳା ନାମ ଦେଲେ ଦ୍ୱୟ ।
ସମ୍ପୂର୍ଣ୍ଣ ପାଞ୍ଚ ବରଷ ହେଲେ ବେନି ଶିଷି
ଏକଦିନେ ଅର୍କତୀର୍ଥେ ଗଲେ ମହାରଷି ।
ସୋମତିଳା ଯବତିଳା ଦୁହିତା ଅଞ୍ଜନୀ
ସଙ୍ଗରେ ଗୋଡ଼ାଇ ଯାନ୍ତେ ଘେନିଗଲେ ମୁନି ।
ନିତ୍ୟକର୍ମ ସାରି ତହୁଁ ଆସନ୍ତେ ବାହୁଡ଼ି
ତପ୍ତବାଲିରେ ପୁତ୍ରଙ୍କ ପାଦ ଗଲା ପୋଡ଼ି ।
ତା ଦେଖି ବିଚାର କରି ତହୁଁ ତପୋନିଷ୍ଠୀ
କାଖେ ବସାଇଲେ ନେଇ ପୁତ୍ର ବେନି ଗୋଟି ।
ଅଞ୍ଜନା ବୋଇଲା ପିତା କାଖେ ଘେନ ମୋତେ
ଶୁଣି ମୁନି ଗାଳିଦେଲେ ଅସନ୍ତୋଷ ଚିତ୍ତେ ।
ଅଞ୍ଜନୀ ବୋଇଲା ତହୁଁ ତୋର ପରା ମୁନି
ଜାରଜାତକା ପୁତ୍ରକୁ କାଖେ ଅଛୁ ଘେନି ।
ମୁଁ ତୋର ଔରସେଜନ୍ମ ମୋତେ କରୁ ତ୍ୟକ୍ତ
ଶୁଣି ଗଉତମ ରଷି ହେଲେ ସ୍ତମ୍ଭୀଭୂତ ।
ବୋଇଲେ କି କଥାବୋଲୁ ମୋତେଲୋ ଅଞ୍ଜନୀ
ଅହଲ୍ୟା ପ୍ରାଣ ଅଞ୍ଚଳେ ସଦା ଥାଏ ଘେନି ।
ପରପୁରୁଷକୁ ଚୋରି କଲା ସେ କେମନ୍ତେ
ଏ କଥା ଆଶ୍ଚର୍ଯ୍ୟ ମଣେ ତୋହର କହନ୍ତେ ।
ମୁହିଁ ଜାଣଇଁ ମୋହର ଅଟନ୍ତି ଏ ବତ୍ସ
ତୋ କଥା ଆଜ ବୁଝିବି ସତ କିବା ମିଛ ।
ପରୀକ୍ଷାରେ ଉବୁରିବେ ଯେବେ ପୁତ୍ରବେନି
ତୋତେ ଭସ୍ମ କରିଦେବି ଆଜ ଲୋ ଅଞ୍ଜନୀ ।
ପୁଣିହିଁ ବାହୁଡ଼ି ଗଲେ ସମୁଦ୍ରର କୂଳ
କୋପେ ଦୁଇ କୁମରଙ୍କ ଧରି ଦୁଇଚୂଳ ।
କୁମରଙ୍କୁ ଫିଙ୍ଗିଦେଲେ ମୁନି ହୋଇ କ୍ରୋଧୀ
ବେନି କୁମର ପଡ଼ିଲେ ଅଗାଧ ବାରିଧି ।
ରଷି ବୋଇଲେ ଯେବେ ମୋ ଔରସରୁ ଜାତ
ଏ ରୂପରେ ଆସି ଧର୍ମ ହେଉ ପରାପତ ।
ପର ପୁରୁଷରେ ଯେବେ ହୋଇଥିବେ ଜାତ
ତେବେ କୁମର ରେ ହୁଅ ମର୍କଟର ଗାତ୍ର ।

ଏମନ୍ତ ବଚନ କହି ସେ ପରମ ଯୋଗୀ
ପୁଣି ଡାକିଲେ ଆସ ରେ ତୁମ୍ଭେମାନେ ବେଗି ।
ମର୍କଟ ସ୍ୱରୂପ ହୋଇ ସେହି ବେନିବାଳେ
ଆସିକରି ଉଭାହେଲେ ସମୁଦ୍ରର କୂଳେ ।
ବାହାର ହେଲେ କୁମ୍ଭରେ କପିରୂପ ଧରି
ତାଙ୍କୁ ଦେଖିଣ ଆଶ୍ଚର୍ଯ୍ୟ ହେଲେ ତପଚାରୀ ।
ସରଯୁ ରାଜାର ପୁତ୍ର ଖଡ୍‌ଗଦ ନୃପତି
ତାହାକୁ ସମର୍ପି ଦେଲେ ସେ ବେନି ସନ୍ତତି ।
ଅଞ୍ଜନୀକୁ ଗଉତମ ଘେନିଛନ୍ତି କାଖେ
ପ୍ରବେଶ ହୋଇଲେ ନିଜ ମଢ଼ିଆର ପାଖେ ।
କୋପକରି ଗଉତମ ବୋଇଲେ ଆମ୍ଭଙ୍କୁ
ପର ପୁରୁଷରେ ମାତି ପୁତ୍ର କଲୁ ଦେଖୁ ।
ସବୁ ଚରିତ କହିଲେ ତହୁଁ ମହାମୁନି
ମୁଁ ବୋଇଲି ଏହା କଲୁ ମୋତେ ଲୋ ଅଞ୍ଜନି ।
ତୋହର ପ୍ରସାଦେ ମୋତେ ହେଲା ଏଡ଼େ ଦୁଃଖ
ତୋର ପୁତ୍ର ହେଲେ ହେଉ ମାଙ୍କଡ଼ର ମୁଖ ।
କପଟରେ ଦିଗପାଳେ କରିଲେ ଦୂଷିତ
ପରେ ପରାଭବୀ ତୁହି ହୁଅ ସେହିମତ ।
ବଦନ୍ତି ଅହଲ୍ୟା ଦେବୀ ଶୁଣ ଗୋ ଦ୍ରୌପଦୀ
ଅଞ୍ଜନା ମୋହର ଅଟେ ଏମନ୍ତ ବିବାଦୀ ।
ଅଞ୍ଜନୀ ବୋଇଲେ ମୋତେ ମହାଗୁରୁ ଶାପ
ବାଳଭାବେ କହିଲି ମୁଁ ଏମନ୍ତ ସ୍ୱରୂପ ।
ପୁରୁଷ ତେଜିଲି ମୁହିଁ ନ ହୋଇବି ବିଭା
ନିଗମରେ ନିରାକାରେ କଲି ଯାଇ ସେବା ।
ବିବାହ ହୋଇଲେ ସିନା ହେବ ମୋର ଭର୍ତ୍ତା
ଭର୍ତ୍ତା ହୋଇଲେ ହୋଇବ ସେହି ବୀର୍ଯ୍ୟଦାତା
ବୀର୍ଯ୍ୟ ସମ୍ଭବରୁ ପୁଣି ହୋଇବ ସନ୍ତାନ
ଗୃହ ଉପେକ୍ଷି ବସିଲି ଯାଇ ଘୋରବନ ।
କାଶୀନଦୀ ତୀରେ ଅଛି ହରଙ୍କ ଉଦ୍ୟାନ
ତହିଁଯାଇ ବସିଲି ମୁଁ କରି ଯୋଗାସନ ।
ନିରାହାରରେ ବସିଲି ସକଳ ଉପେକ୍ଷି
କୋମଳ କମଳପତ୍ର କେବଳହିଁ ଭକ୍ଷି ।
ଦେହ କଦର୍ଥନା ହୁଏ ବହୁତ ନିରାଶେ
ପଚିଶ ପ୍ରକୃତି ପଞ୍ଚମନର ସକାଶେ ।
ଚୌରାଅଶୀ ନାଡ଼ୀ ଶିଶୁମ୍ନା ପଞ୍ଚଭାବ
ନିଶ୍ଚଳେ ବସି ସୁମରେ ମୁହିଁ ବାତଦେବ ।
ଅନୁଗ୍ରହ ଅନୁସରି ପବନ ଉଜାଣି
ଷଡ଼ରତୁ ବଞ୍ଚିଲି ମୁଁ ପ୍ରଭୁ ଗୁଣ ଗୁଣି ।
ଅଣାକାର ନିରାକାର କରିଣ ଭାବନା
ନିରାଶେ ବସିଲି ତନୁ କରି ବଜ୍ରସେହ୍ନା ।

ଅହଲ୍ୟା ବୋଇଲେ ଶୁଣ ଦ୍ରୁପଦ ଦୁହିତେ
ଏମନ୍ତେ ବସିଲା ଲକ୍ଷେବର୍ଷ ପରିଯନ୍ତେ ।
ଶରୀର ମିଳାଇ ଗଲା ଚଢ଼େ ଉଇପୋକ
ଅସ୍ଥିମାଳା କିଛି ନାହିଁ ହୋଇଲା ବୁଦେକ ।
ଲକ୍ଷେକ ବରଷ ପୁଣି ହୋଇଲାକ ବୁଦା
ଫୁଟି ବାହାରିଲା ପୁଣି ଦେହ ହୋଇ ଶୋଧା ।
ନଖ ମୁଖ ନାସିକା ସେ ଚରଣ ଦିଓଟି
ସେ ବୁଦା ବିଦାରି ପୁଣି ବାହାରିଣ ଫୁଟି ।
ମହାଶମ୍ଭୁ ହେଲା ଯହୁଁ ସେ କନ୍ୟାର କାୟେ
ଜଳ ଅନଳ ଅମ୍ବରେ ଅତୁଟ ସେ ହୁଏ ।
ତିନିଲକ୍ଷ ବରଷ ସେ ହୋଇଲା ନିଶ୍ଚଳ
ଏହିରୂପେ ବହିଗଲା ପୁଣି କେତେକାଳ ।
ଆବର ଲଭିଲା ସେହୁ ମାହେଶ୍ୱରୀ ନାମ
ଶୂନ୍ୟରେ ଗମିଣ ସେହୁ ହେଲା ମହାବ୍ରହ୍ମ ।
ଏହାର କେତେକ କାଳ ପୁଣି ବହିଯାଏ
କପିଳାସ ତେଜି ହର ବନକୁ ବିଜୟେ ।
ଧନୁମାସ ଶୁକ୍ଳପକ୍ଷ ଅଟଇ ପଞ୍ଚମୀ
ଶ୍ରବଣା ନକ୍ଷତ୍ରେ ବନକ୍ରୀଡ଼ାରେ ସେ ଭ୍ରମି ।
ହିମ ସମୟରେ କାକେ ଦିଶନ୍ତି ସୁନ୍ଦର
କାକରୂପ ଧଇଲେ ଯେ ତହିଁ ଦେବହର ।
ପାର୍ବତୀଦେବୀ ଛଦ୍ମରେ ହେଲେ ସେହିକାୟେ
ସେରୂପ ରମଣ ଇଚ୍ଛା କଲେ ଦେବରାୟେ ।
ରମଣ କରନ୍ତେ ଅଙ୍ଗୁ ପଡ଼େ ମହାବୀର୍ଯ୍ୟ
ତହିଁରୁ ଜାତ ହୋଇଲା ଗୋଟିଏ ଆତ୍ମଜ ।
ଶୁକ୍ଳ ଶରୀର ସ୍ଫଟିକ ପ୍ରାୟ ତାର ପିଣ୍ଡ
ତେଣୁ ସେହି କାକ ନାମ ଦେଲେ ସେ ଭୂଷଣ୍ଡ ।
ଅଣ୍ଡ ଖସନ୍ତେ ଯେ ପୁତ୍ର ହୋଇଲାଟି ଜନ୍ମ
ତେଣୁକରି ଭୂଷଣ୍ଡଟି ଦେଲେ ତାର ନାମ ।
ଦ୍ୱିତୀୟେ ପଶିଲେ ଦେବ ଯାଇ ସରୋବରେ
କ୍ରୀଡ଼ା ଆରମ୍ଭିଲେ ତହୁଁ ହଂସ ପରକାରେ ।
ହଂସ ହଂସିନୀ ରୂପରେ କ୍ରୀଡ଼ାକଲେ କାଶୀ
ସେ ବୀର୍ଯ୍ୟେ ଜାତ ହୋଇଲା ଶୁକ୍ଳମୁଖୀ ହଂସୀ
ସେ ପକ୍ଷୀ ହୋଇଲା ଭୂତ ଭବିଷ୍ୟତଜ୍ଞାତା
ଜାଣି ପାରିଲା ସକଳ ସୃଷ୍ଟିର ବାରତା ।
ଧାତା ବିଜୟ କରିଲେ ଯାଇ ତାର ପିଠି
ତହୁଁ ମରାଳ ବୋଲିଣ ହେଲା ନାମଗୋଟି ।
ବନସ୍ତେ ବିଜୟ କଲେ ପୁଣିହିଁ ସୁଢଳେ
ଭ୍ରମୁଥାନ୍ତି ନାନାରସେ ବନେ କୁତୂହଳେ ।
ଭଲ୍ଲୁକ ରୂପ ଧଇଲେ ଦେବ ପଶୁପତି
ତୁମ୍ଭେ ଏହିରୂପ ଧର ଶୁଣ ଗୋ ପାର୍ବତୀ ।

ସ୍ୱାମୀଙ୍କର ବଚନ ଯେ ଅଟେ ଅଲଙ୍ଘିତ
ସ୍ତିରୀରୂପ ତେଜି ହେଲେ ଭଲ୍ଲୁକୀର ମତ ।
ଶୃଙ୍ଗାରାନ୍ତେ ତେଜ୍ୟାକଲେ ରେତ ମହାଦେବ
ତହିଁରୁ ଜନମଲାଭ କରିଲା ଜାମ୍ବବ ।
ବନଜୀବ ହୋଇ ସେହୁ ହୋଇଲା ଧାର୍ମିକ
ଅପାଠରେ ପାଠାଭ୍ୟାସ କରିଲା ଅନେକ ।
ଚାରିବେଦ ଷଟକାବ୍ୟ ପୁଣି ଚୌଦବିଦ୍ୟା
ବାଆଷଠି ଯୋଗ ଆଉ ଚୌରାଅଶୀ ମୁଦ୍ରା ।
ଯୁଗାନ୍ତକ ପୁରୁଷ ସେ ହେଲା କୋଟିକଳ୍ପ
ରାମ ଅବତାରେ ମନ୍ତ୍ରୀପଣରେ ଅମାପ ।
ରାମ ବହୁ ଅବତାରେ ସେହୁ ଥାଇ ବର୍ତ୍ତି
ରାମାୟଣ ଯୁଦ୍ଧକଲେ ରାମ ସଙ୍ଗେ ମାତି ।
ଏହିରୂପେ ବନକ୍ରୀଡ଼ା ହର କରିଗଲେ
ଦେଖନ୍ତି ସେ ସଦାନନ୍ଦ ମର୍କଟରୁ ପଲେ ।
ବାନର ରୂପ ଧଇଲେ ତହୁଁ ପଶୁପତି
କେତେ ରୂପ ଧର ପ୍ରଭୁ ବୋଲନ୍ତି ପାର୍ବତୀ ।
ମହାକାମ ଆରତରେ ବୋଲନ୍ତି ସେ କାଶୀ
ବିମୁଖ ନୁହଁ ସଙ୍ଗାତ ବୋଇଲେ ଆଶ୍ୱାସି ।
ସ୍ୱାମୀ ବିରହ ବେଳରେ ନାରୀ ନ ଉପେକ୍ଷେ
ପୁରାଣାଦିମାନଙ୍କରେ ବହୁପାପ ଲେଖେ ।
ଲାଜ ଭୟ ତେଜ୍ୟାକରି ହୋଇଲେ ମର୍କଟୀ
ମର୍କଟରୂପେ ସଙ୍ଗମ ହୋଇଲେ ଧୂର୍ଜ୍ଜଟୀ ।
ମର୍କଟର ରୂପ ତେଜ ବିଷମ ମହିମା
ନ ସହି ପାରିଲେ ରେତ ପତନରେ ଉମା ।
ପାର୍ବତୀ ବୋଇଲେ ସ୍ୱାମୀ ତୋ ରେତର ତେଜ
ଗର୍ଭରେ ପଡ଼ିଲେ ମୁହିଁ ହୋଇବି ଦହିଯ୍ୟ ।
କଣିକାମାତ୍ରେ ପଡ଼ନ୍ତେ ମୂର୍ଚ୍ଛାଗଲେ ସତୀ
ପୁଣି କଣିକାଏ ଆସି ପଡ଼ିଲାକ କ୍ଷିତି ।
ପୃଥିବୀରେ ପଡ଼ି ସୁଦ୍ଧା ନାଶ ସେ ନୋହିଲା
ପର୍ବତ ବନ କନ୍ଦର ସମସ୍ତ ଘୋଟିଲା ।
ତହୁଁ ଉପୁଜିଲା କାଚ ସ୍ଫଟିକ ମାରାଗ
ଆବର ପାରା ଗନ୍ଧକ ଅଷ୍ଟଧାତୁ ଭାଗ ।
ଶ୍ୱେତ ପଦାର୍ଥର ମୂଳେ ଆଉ ଶ୍ୱେତଦୂବ
ଶ୍ୱେତ ପଦାର୍ଥ ଯେତେକ ଉପୁଜିଲା ସର୍ବ ।
ଆବର କଣିକାଏ ଯେ ପଡ଼ନ୍ତେ ଚହଲିଂ
ଟଳଟଳ ହୋଇଣ ଯେ କମ୍ପେ ବସୁନ୍ଧରୀ ।
ପୃଥିବୀ ବୋଇଲେ ଦେବ ରଖ ବିଶ୍ୱନାଥ
ଏହି ମହାରସେ ମୁହିଁ ହେବି ରସାଗତ ।
ମାଡ଼ିଲା ଏ ବୀର୍ଯ୍ୟ ବାରଯୁଣ ପରିଯନ୍ତେ
ବସ୍ତାଧାରେ ଧଇଲେ ତା କରେ ବିଶ୍ୱନାଥେ ।

ମହାରସ ଅର୍ଦ୍ଧେକ ସେ କରେ ଛନ୍ତି ଧରି
କାହାକୁ ତା ଦେବା ବୋଲି ମନରେ ବିଚାରି ।
ବିଚାରି ବୋଇଲେ ବାୟୁ ଅଟେ ଅପୁତ୍ରକ
ଏଣୁକରି କାରଣ ସେ ପାଇବ ଅନେକ ।
ପ୍ରଚଣ୍ଡ ବାୟୁ ହକାରି ସେ ପରମ ଯୋଗୀ
ସେ ବୀର୍ଯ୍ୟ ତାହାକୁଦେଲେ ଦେବେନେଇ ବେଗି
ବୋଇଲେ ମୋକ୍ଷଗତି ତୁ ପାଇବୁ ମରୁତ
ପବନ ବୋଇଲା ମୁହିଁ ହୋଇଲି କୃତାର୍ଥ ।
କରେ ଧରି ବାୟୁବୋଲେ ମୁଁ କାହାକୁ ଦେବି
ଏ ମହାବୀର୍ଯ୍ୟକୁ ନେଇ କାରେ ସମର୍ପିବି ।
ମାତା ଶାପେ ତପ କରେ ସେ ନାରୀ ଅଞ୍ଜନା
ବାୟୁଆହାରୀ ପ୍ରତ୍ୟକ୍ଷେ ଅଟେ ଅନ୍ନପୂର୍ଣ୍ଣା ।
ବିଚାର କରି ସାନନ୍ଦ ହୋଇଲା ମରୁତ
ସେ ମହାଧାତୁକୁ ଦେଲା ଅଞ୍ଜନାର ହସ୍ତ ।
ଗଉତମ କହିଥିଲେ ପବନ ଦେବକୁ
ପକ୍ୱଦ୍ରାକ୍ଷା ଦେଉଥିବୁ ମୋର ଦୁହିତାକୁ ।
ପବନକୁ ଅଞ୍ଜନୀ ଯେ ଚାହିଁଥାଏ ପୁଣି
ଅଷ୍ଟଦିନରେ ପଦାର୍ଥେ ଦେଇଯାଏ ଆଣି ।
ତାହାକୁ ଭକ୍ଷଣ କରି ତୃପ୍ତ କରେ ମନ
ସନ୍ନିଧେ ପ୍ରବେଶ ଆସି ହୋଇଲା ପବନ ।
ଶୁଣୁଛନ୍ତି ଦ୍ରୌପଦୀ ଯେ କହନ୍ତି ଅହଲ୍ୟା
ପବନ ଯେ ସେ ଅକ୍ଷୟ ବୀର୍ଯ୍ୟ ଘେନିଗଲା ।
ପୁରୁଷ ମୁଖକୁ ସେହୁ ନ ଚାହେଁ କିଞ୍ଚିତେ
ଚକ୍ଷୁ ବୁଜି କର ମେଲି ନିଅଇ ସେ ନିତ୍ୟେ ।
ଅଞ୍ଜନୀର କରେ ନେଇ ଦିଅନ୍ତେ ମରୁତ
ଧାତିକାରେ ମାହେଶ୍ୱରୀ କଲେ ଗର୍ଭଗତ ।
ଈଶ୍ୱରଙ୍କ ମହାରେତ ଗର୍ଭେ ପଡ଼ିକରି
ଉଦରେ ପଡ଼ିବାମାତ୍ରେ ତାହା ହେଲା ଭାରୀ ।
ଗର୍ଭରେ ପଶି ସେ ରେତ ବୁଲିଲାକ ଅତି
ବିଚାରେ ପବନ କଲା ମୋଠାରେ ଅନୀତି ।
ତହୁଁ ତପସ୍ଥାନ ଛାଡ଼ି ଦେବୀ ଉଠି ବେଗେ
ବିଜେ କରିଲେ ମନ୍ଦରଗିରି ଶିଖ ସ୍ୱର୍ଗେ ।
କର ଯୋଡ଼ିଣ ବୋଲଇ ମନ୍ଦର ପର୍ବତ
ତୋ ପୁତ୍ର ପଡ଼ନ୍ତେ ମୁହିଁ ହେବି ରସାଗତ ।
ବିଚାରୀ ସୁନ୍ଦରୀ ତହୁଁ ଚଳେ ମେରୁଗିରି
ମେରୁରେ ଉଠିଲା ଗର୍ଭ ଅତିଶୟ ଭାରୀ ।
ଅନେକଦିନ ପର୍ଯ୍ୟନ୍ତ ପ୍ରସବ ନୋହିଲା
ଗର୍ଭେ ଥାଇଣ କୁମର ବାୟୁକୁ କହିଲା ।
ମାତା ଜନନେନ୍ଦ୍ରିୟରେ ବାଜିବ ମୋ ମର୍ମ
ସେ ପଥେ ମୁହିଁ କେମନ୍ତେ ହୋଇବି ଜନମ ।

ପବନ ଦେବତା ଯାଇଁ କହିଲା ହରଙ୍କୁ
ଈଶ୍ୱର ବଜ୍ର କାଛଟା ଦେଲେ ଯେ ତାହାକୁ ।
ଈଶ୍ୱର ବୋଇଲେ ଖାଉ ରମ୍ଭାଫଳେ ଭରି
ଏହାକୁ ପିନ୍ଧି କୁମର ଗର୍ଭୁ ଆସୁ ତରି ।
ଈଶ୍ୱରଙ୍କ ଆଜ୍ଞା ଘେନି ଚଳିଲା ପବନ
ଅଞ୍ଜନାକୁ ଦେଲେ ସେହୁ କଲେ ଭକ୍ଷପାନ ।
ବଜ୍ର-କାଛଟା ଦେଖିଣ ବେଗେ ସେ କୁମର
କଟି ତଟରେ ବାନ୍ଧିଲା କରି ଦୃଢ଼ତର ।
ତୁଳମାସ କୃଷ୍ଣପକ୍ଷ ଅମାବଇ ତିଥି
ଅର୍କବାର ସେହିଦିନ ନକ୍ଷତ୍ର ଯେ ସ୍ୱାତୀ ।
ବାଳବ ନାମେ କରଣ ଶୁଭ ନାମେ ଯୋଗ
ସୋମଗୃହେ ବୃହସ୍ପତି ଚାରିଭାଗେ ଭୋଗ ।
ସେ ଦିନ ରାତ୍ର ଛବିଶ ଦଣ୍ଡର ଉତ୍ତାରେ
ଚନ୍ଦ୍ର ସପ୍ତମ ଗୃହରେ ଭୋଗ ସେ ଦିନରେ ।
ମାହେନ୍ଦ୍ର ଯୋଗର ବେଳା ରାତ୍ରିର ପାହାନ୍ତି
ଶୁଭରେ କୁମରମଣି ହେଲେ ଉତପତ୍ତି ।
ଚୌଷଠି ଯୋଜନ ସେହୁ ମେରୁ ଗିରିସ୍ଥଳ
କୁମର ପଡ଼ନ୍ତେ ହେଲା ସେହୁ ଟଳ ମଳ ।
କପିମୁଖ କପିଦେହ ଲାଙ୍ଗୁଳ ଗୋଟାଏ
ଦେଖଇ ଅଞ୍ଜନୀ ଦଧିବାମନର ପ୍ରାୟେ ।
ଦେଖିଣ ଅଞ୍ଜନୀ ତହୁଁ ମନରେ ବିଚାରେ
ଗୁରୁଜନଙ୍କର ଶାପ କେ ଅନ୍ୟଥା କରେ ।
ଏତେ କଷ୍ଟେ ଶାପ ପାର ନ ହୋଇଲା ମୋତେ
ଗୁରୁଙ୍କ ଶାପ ମେଣ୍ଟିବ କେ ଅଛି ଜଗତେ ।
ଅଞ୍ଜନୀ ବିଚାର କରେ ସେ ମର୍କଟ ଦେଖି
କୁମରକୁ ତେଜ୍ୟାକରି ଯିବି ମୁଁ ଉପେକ୍ଷି ।
ପୁଣି ଦୃଷ୍ଟି କରଇ ସେ କୁମର ବର୍ଣ୍ଣକୁ
ବଜ୍ର କାଛଟା ଶୋଭଇ ତା କଟି ଭାଗକୁ ।
ଏମନ୍ତ ଦେଖିଣ ସେହୁ ଉଠିବା ସମୟେ
ମାତାର ମୁଖକୁ ଚାହିଁ ସେ କୁମର କହେ ।
ଜାତକରି ମୋତେ ଏବେ ଯାଉ ତେଜ୍ୟାକରି
ଏହୁ କେବଣ ବିଚାର ମନରେ ତୋହରି ।
ଜାତକରି ନ ପାଳିବୁ ଯେବେ ଆଗୋ ମାତ
ବାଳୁତ ଅବସ୍ଥା ମୋର ବଞ୍ଚିବି କେମନ୍ତ ।
ମୋତେ ଯେବେ ନିର୍ଦ୍ଦୟ ତୁ ହେବୁ ମହାଦେବୀ
ମାତା ପିତା ନ ଥିଲେ ମୁଁ କାହାକୁ ସେବିବି ।
ଅଞ୍ଜନା ବୋଲେ ତୁ ଅଟୁ ପବନର ବସ୍ତ
ପବନ ବଳେ ତୁ ରଙ୍ଗ ଫଳମାନ ଭକ୍ଷ ।
ଏହି ବନ କନ୍ଦରରେ ତୁହି ଥାଅ ବାବା
ବଜ୍ରକାଛେଟି ଚିହ୍ନିଲେ କରିବୁଂ ତୁ ସେବା ।

କର୍ଣ୍ଣେ ଅମୃତକୁଣ୍ଡଳ ତହୁଁ ଦେଲେ ବେନି
ଅମର ହୁଅ ତୁ ବର ବିହିଲେ ଅଞ୍ଜନୀ ।
ପ୍ରଚଣ୍ଡ ପବନ ଏହୁ ଦିଶେ ରଙ୍ଗବର୍ଣ୍ଣ
ସେହି ଜାତକଲା ରେତ କରିଣ ପ୍ରଦାନ ।
ତେଣୁ ଅଞ୍ଜନା ପୁତ୍ରକୁ ବୋଲେ ଅତି ରାଗେ
ସେହି ରଙ୍ଗଫଳ ଏବେ ଭକ୍ଷ ତୁହି ବେଗେ ।
ଏମନ୍ତ ଶୁଣି ମରୁତ ହୋଇ ଖରତର
ପଳାଇ ଗଲା ହୋଇଣ ଚକ୍ଷୁରୁ ଅନ୍ତର ।
ରଜନୀ ପ୍ରଭାତେ ପୁଣି ଉଦେ ଦିନକର
ଛାୟାର ବଲ୍ଲଭ କ୍ଷୀର ସମୁଦ୍ରୁ ବାହାର ।
ଅରୁଣ ପ୍ରକାଶେ ଦିଶେ ଅତି ରଙ୍ଗବର୍ଣ୍ଣ
ବିମ୍ବଫଳ ପ୍ରାୟ ଦିଶେ ତାହାର କିରଣ ।
ଚୌଷଠି ଯୁଣ ଉଚ୍ଚ ତା ଲକ୍ଷେଯୁଣ ଦୂର
ଆଧାର ଲୋଭେ ଦଣ୍ଡକେ ଡେଇଁଲା କୁମର ।
ସର୍ବେ ଦିନକର ଅଟେ ସେହି ପୁତ୍ରଗୋଟି
ପରାକ୍ରମ ବଳେ ଯାଇ ଆଦିତ୍ୟକୁ ଘୋଟି ।
ରାହୁ ପରାୟେକ ମଣି ଛାୟାର ବଲ୍ଲଭ
ରଥ ଛାଡ଼ି ପଳାଇଲେ ତହୁଁ ସୂର୍ଯ୍ୟଦେବ ।
ଯାଇଣ ମିଳିଲେ ସେହୁ ଇନ୍ଦ୍ରର ଭୁବନ
ବୋଇଲେ ଶୁଣିମା ହେଉ ସହସ୍ର ଲୋଚନ ।
ଆହେ ପୁରନ୍ଦର ଅଟ ସ୍ୱର୍ଗେ ମହାବାହୁ
ମୁଖ ବିସ୍ତାରିଣ ମୋତେ ଲାଗିଲାକ ରାହୁ ।
ଆଦିତ୍ୟ ବଚନ ଶୁଣି କୋପରେ ମଘବା
ଐରାବତରେ ଚଢ଼ିଲେ ତହୁଁ ସୁରଦେବା ।
ଶ୍ରୀଭୁଜେ ଧଇଲେ ନେଇ ବଜ୍ରର ଶକତି
ଅଷ୍ଟରତନେ ଭୂଷଣ ହୋଇ ଶଚୀପତି ।
ପାରିଜାତକର ପୁଷ୍ପ ଆଭରଣ କାୟେ
ଆଦିତ୍ୟ ବଚନ ଶୁଣି ଧାଏଁ ସୁରରାୟେ ।
ଅମର ତେଜିଣ ଇନ୍ଦ୍ର ଆସନ୍ତେ ତୁରିତ
ସୂର୍ଯ୍ୟରଥେ ଥାଇ ଦେଖେ ଅଞ୍ଜନାର ସୁତ ।
ଅଷ୍ଟରତ୍ନରେ ଭୂଷଣ ଦେବ ମଘବାନ
ଯୁକତେ ଦିଶନ୍ତି ସେହୁ ଲୋହିତ ବରନ ।
ପାଟଳୀପୁଷ୍ପ ପରାୟେ ରଙ୍ଗ ସୁରପତି
ସିନ୍ଦୂରର ରଙ୍ଗ ଦିଶେ ଐରାବତ ହସ୍ତୀ ।
ଆଦିତ୍ୟ ରଥରେ ଥାଇ ଦେଖେ ହନୁମାନ
ଆହାର ପ୍ରାୟ ମଣିଣ କ୍ଷେପିଲା ବହନ ।
ମୁଖକୁ ବିସ୍ତାର କରି ଚଳେ ମହାବଳୀ
ଐରାବତ ଗଜ ସହ ଲୋଡ଼ଇ ସେ ଗିଳି ।
ଏମନ୍ତ କଠୋର ଦେଖି ଦେବ ସୁରପତି
ହନୁମନ୍ତ ଉପରକୁ ପ୍ରହାରେ ଶକତି ।

ବାସବର ବିଘାତରେ ମୂର୍ଚ୍ଛାଗଲା ହନୁ
ପବନ କୋଳ କରିଣ ଧଇଲାକ ସୂନୁ ।
ପବନ ବୋଇଲା ଶିବ ଅନୁଗ୍ରହ କଲା
ଇନ୍ଦ୍ର ଅବିଚାରେ ମୋର ପୁତ୍ରକୁ ମାଇଲା ।
ଏହା କହିଣ ପବନ ସର୍ବ ନିରୋଧିଲା
ସଚରାଚର ପବନ ଯୋଗୁଁ ନାଶଗଲା ।
ସମସ୍ତେ ବ୍ୟାକୁଳଭାବେ ହୁଅନ୍ତି ଦଗଧି
ବ୍ୟାକୁଳ ହୁଅନ୍ତି ପୁଣି ସର୍ବ ବିବୁଧାଦି ।
ସ୍ଥାବର ଜଙ୍ଗମ ପୁଣି କୀଟାଦି ପତଙ୍ଗ
ବାୟୁ ଅଭାବେ ବୁଡ଼ିଲା ସବୁଙ୍କର ଅଙ୍ଗ ।
ଚାରିଖାନି ଚୌରାଅଶୀ ଜୀବ ଆଦିକରି
ସମସ୍ତେହେଁ ପଡ଼ିଗଲେ ପବନ ନିବାରି ।
ମରୁତ ଦେବତା ତହୁଁ ନିରୋଧ ସମସ୍ତ
ଠାବେ ଠାବେ ଲୋଟିଗଲେ ହୋଇ ମୋହଗତ
ଜଳଜନ୍ତୁମାନେ ଗଲେ ଜଳି ଉପୁଚାଇ
ଦିଗପାଳେ ବ୍ରହ୍ମାଆଗେ କହିଲେକ ଯାଇ ।
ତୁହି ଚରାଚର ନାଥ ସୃଷ୍ଟିର କରତା
ତୁମ୍ଭେହିଁ କର୍ମକାଣ୍ଡର ବିହନ୍ତା ବିଧାତା ।
ପବନ ଯୋଗେ ସମସ୍ତେ ନାଶଗଲେ ଜାଣ
ଶୁଣି ହଂସ ବାହନରେ କଲେ ଆଗମନ ।
ପବନ ସନ୍ନିଧେ ଯାଇ ବିଜେ ବେଦବର
ପୁଚ୍ଛନ୍ତି ସୃଷ୍ଟି ତୁ ନାଶୁ ଏ କେଉଁ ବିଚାର ।
ବାୟୁବୋଲେ ରୁଦ୍ରଦେବ ପୁତ୍ରେ ମୋତେଦେଲା
ଇନ୍ଦ୍ରଦେବତା ମୋହର ସେ ପୁତ୍ର ମାଇଲା ।
ଆବର ଜୀବନେ ମୋର କିସ ପ୍ରୟୋଜନ
ବେଳେ ବେଳେ ବହୁ ଦୁଃଖ ଦିଏ ମଘବାନ ।
ତୁମ୍ଭେ କି ନ ଜାଣ ଆହେ ଜଗତର ପିତା
ସ୍ମର ସତ୍ୟଯୁଗେ ହେଲା ଯେଉଁ ଯେଉଁ କଥା ।
ଶୁଣ ଗୋ ଦ୍ରୌପଦୀ ପୁଣି କହନ୍ତି ଅହଲ୍ୟା
ପ୍ରଜାପତିର ଷାଠିଏ ଦୁହିତା ହୋଇଲା ।
ଦକ୍ଷପ୍ରଜାପତିଙ୍କର ଷାଠିଏ କୁମାରୀ
ଦେବଙ୍କୁ ପ୍ରଦାନ କଲେ ବିଚାରି ବିଚାରି ।
ଉମା ନାମେ ଏକ କନ୍ୟା ଈଶ୍ୱରଙ୍କୁ ଦେଲା
ହେମା ଦୁହିତା ପରମ ଯୋଗିନୀ ହୋଇଲା ।
ବ୍ରହ୍ମାଙ୍କୁ ଆଣି ପ୍ରଦାନ କରିଲା ସାବିତ୍ରୀ
ରତ୍ନାକର ରାଜାକୁ ଯେ ଦେଲା ନୀରବତୀ ।
କୁବେରକୁ ସଂପ୍ରଦାନ କଲା ହାରାବତୀ
ବୈଶ୍ୱାନରେ ସ୍ୱାହା ସ୍ୱଧା ଦୁଇଟି ଦୁହିତୀ ।
ଆଦିତ୍ୟ ଦେବତାଙ୍କୁ ସେ ଛାୟାଦାନ କଲା
ବିଶ୍ୱଦେବାଙ୍କୁ ପନ୍ନଗ କନ୍ୟା ସମର୍ପିଲା ।
ଚନ୍ଦ୍ରେ ଦେଲା ସତାଇଶ କୁମାରୀଙ୍କୁ ଧରି
କାମୁକ ପୁରୁଷ ବୋଲି ଦେଲା ସେ ବିଚାରି ।
ଅଶ୍ୱିନୀ ଦ୍ୱିଜା କୃତ୍ତିକା ବିଶାଖା ରୋହିଣୀ
ଆର୍ଦ୍ରା ପୁନର୍ବସୁ ପୁଷ୍ୟା ଉତ୍ତରାଫାଲ୍‌ଗୁନୀ ।
ମୃଗଶିରା ହସ୍ତା ଚିତ୍ରାଆବର ଅଶ୍ଳେଷା
ପୂର୍ବାଫାଲଗୁନୀ ସ୍ୱାତୀ ମୂଳା ଶତଭିଷା ।
ଉତ୍ତରଭାଦ୍ରପଦ ଯେ ପୂର୍ବଭାଦ୍ର ପଦ
ସତାଇଶ କନ୍ୟାସହ ବହୁତ ସମ୍ପଦ ।
ଚନ୍ଦ୍ରଦେବତାଙ୍କୁ ଦକ୍ଷ କରିଲେ ବରଣ
ସେ କନ୍ୟାମାନଙ୍କୁ ତାଙ୍କୁ କଲେ ସମର୍ପଣ ।
ତନୁ ଭାନୁ ମେଧା ଧୃତି ଶ୍ରୁତି ସିଦ୍ଧି ବୁଦ୍ଧି
ସ୍ମୃତି ମତି କାନ୍ତି ଦଶ ଧର୍ମଦେଲେ ବୋଧି ।
କାଳ ଅନଳ ରୂପସୀ ଧନ୍ଦଜା ଗୃହିକା
ଶଙ୍ଖତୋଳା ବିରୂପାକ୍ଷୀ ସୁରେଖା ସରୋଜା ।
ସିଂହିକା ଦିତି ଅଦିତି କଦ୍ରୁ ଯେ ବିନତା
ଏ ତେର କନ୍ୟା କାଶ୍ୟପେ ଦେଲେ ଦକ୍ଷଦାତା
ହରିତା କନ୍ୟା ବିହନ୍ତା ପୁରୁଷକୁ ଦେଲା
ଏଗାର କ୍ୱାଇଁଙ୍କୁ କନ୍ୟା ଅଣଷାଠି ହେଲା ।
ହେମାକନ୍ୟା ତ ପରମା ଯୋଗ୍ନୀ ହୋଇଥିଲା
ବିବାହ ନୋହି ଶୃଙ୍ଗାର ରସ ନ ଇଚ୍ଛିଲା ।
ଏଥୁ ଉତପତ୍ତି ହେଲେ ଚରାଚରଗଣ
ଯାହାଠାରୁ ଯେହୁ ହେଲେ କହୁଅଛି ଶୁଣ ।
ଦିତି ତହୁଁ ଜନ୍ମ ହେଲେ ସର୍ବ ଦେବଗଣ
କଦ୍ରୁ ଠାରୁ ନାଗମାନେ ଜନ୍ମ ହେଲେ ପୁଣ ।
ବିନତାଠାରୁ ସକଳ ପକ୍ଷୀଏ ହୋଇଲେ
ଗରୁଡ଼ ମଧ ତାଙ୍କର ସୁତ ଜାଣ ଭଲେ ।
ସିଂହିକାଠାରୁ ଅସୁରେ ଜନମ ହୁଅନ୍ତି
କାଳାଠାରୁ କାଳଲୋକ ହେଲେ ଉତପତ୍ତି ।
ଧନ୍ଦଜାଠାରୁ ଜନ୍ମିଲେ ନାମ ହେମବନ୍ତ
ଏହାଠାରୁ ଜନମିଲେ ସକଳ ପର୍ବତ ।
ବସ୍ଥାଠାରୁ ଉପୁଜିଲେ ଚାରିପାୟ ଗଣ
ଅରିଷ୍ଟ ଅରିଷ୍ଟ ଜାତ ହୋଇଲେକ ପୁଣ ।
ଗନ୍ଧର୍ବିଠାରୁ ଜାତ ହେଲେ ଗନ୍ଧର୍ବ ସକଳ
ସୁରଭୀରୁ ଜାତ ହେଲେ ସକଳ ଗୋକୁଳ ।
ଏ କନ୍ୟାଙ୍କ ତହୁଁ ହେଲେ ସର୍ବେ ଉତପତ୍ତି
ଛପନକୋଟି ଜୀବଙ୍କୁ କଲେ ଏହିମତି ।
ବ୍ରହ୍ମା ଆଗରେ ମରୁତ ଏମନ୍ତ କହିଲା
ଅଦିତି ଦେବୀର ପୁତ୍ର ଜାତ ନ ହୋଇଲା ।
ଛାଡ଼ିଲା ନିଜର ବାସ ସ୍ୱାମୀପ୍ରତି ଆଶା
ଛାଡ଼ିଲା ସେ ସ୍ନେହଭଙ୍ଗୀ ବନେ କଲା ବସା ।

ମନ ପବନେ କର୍ତ୍ତବ୍ୟେ ପଞ୍ଚଭୂତ ଲୟେ
ନିରାଶେ ବସି ଅଜପା ମନ୍ତ୍ରକୁ ଯେ ଧାୟେ ।
ରହିଲା ସେ ମାହେଶ୍ୱରୀ ଅତ୍ୟନ୍ତ ନିରାଶେ
ଲକ୍ଷେ ବରଷ ବସିଲା ସେହୁ ଉପବାସେ ।
ନାରୀକଷ୍ଟେ ନିରଞ୍ଜନ ହୋଇ ଦୟାନ୍ୱିତ
ଶୂନ୍ୟେ ଶବ୍ଦ କଲେ ବର ଘେନ ତୋ ବାଞ୍ଛିତ ।
ଅଦିତି ବୋଲେ କଶ୍ୟପ ଋଷି ପ୍ରିୟବତୀ
ସବୁର ପୁତ୍ର ଜାତ ମୋ ନୋହିଲା ସନ୍ତତି ।
ଏକପୁତ୍ର ଦେବ ମୋତେ ହେ ଜଗତ ପିତା
ତିନିଲୋକରେ ନ ଥିବେ ତାହାକୁ ଜିଣନ୍ତା ।
ନିରଞ୍ଜନ ଆଜ୍ଞା କଲେ ପୁତ୍ର ହେବ ଜାତ
କୋଟିଯୁଗେ ତାକୁ କେହୁ ନୋହୁ ସମରଥ ।
ବର ପାଇଣ ଅଦିତି ଗଲେ ନିଜପୁରେ
ପୁଣିହିଁ ବସିଲେ ଆସି କଶ୍ୟପ ସଙ୍ଗରେ ।
କଉତୁକରେ ପୁଛିଲେ ତାଙ୍କୁ ତାଙ୍କ ପତି
ନିରଞ୍ଜନ ସେବି କିସ ମାଗିଲୁ ଅଦିତି ।
ଅଦିତି ବୋଇଲେ ସ୍ୱାମୀ ମୋର ପୁତ୍ର ନାହିଁ
ପୁତ୍ରେକ ପାଇଲି ମୁହିଁ ନିରଞ୍ଜନ ଧାୟି ।
ପୁଣି ମାଗେ ନିରଞ୍ଜନ ଜଗତନାଥଙ୍କୁ
ଦେବ ଦୈତ୍ୟ କେହି ସମ ନୋହିବେ ପୁତ୍ରକୁ ।
କଶ୍ୟପ ସାନନ୍ଦ ହେଲେ ଏହି କଥା ଶୁଣି
କଥା ହେଉଁ ହେଉଁ ଆସି ପାହିଲା ରଜନୀ ।
ପରମ ପୁରୁଷ ସେହି କଶ୍ୟପଙ୍କ ବୀର୍ଯ୍ୟ
ଅଦିତି ଗର୍ଭେ ରହିଲା ଏକଇ ଆତ୍ମଜ ।
ଦିତି ବିଚାରିଲେ ତୁମ୍ଭେ ଶୁଣ ହେ କଶ୍ୟପ
ଅଦିତି ବର ମାଗିଣ ଆସେ କେଉଁରୂପ ।
କଶ୍ୟପ ବୋଲେ ମାଗିଣ ସେହୁ ଏକପୁତ୍ର
ବଳେ ଜିଣିବ ସେ ଦେବ ଅସୁର ସହିତ ।
ଶୁଣିଣ ବିରସ ଚିତ୍ତ ହୋଇଲାକ ଦିତି
ବୋଲେ ମୋ ପୁତ୍ରକୁ ହିଂସା କରିବ ଅଦିତି ।
ସାବତ ଜନନୀ ହିଂସା ଅଛି ଚିରକାଳ
ମୋର ପୁତ୍ର କେଉଁପରି ବଞ୍ଚାଇବ କାଳ ।
ମୋର ପୁତ୍ର ଅମରରେ ପାଏ ଇନ୍ଦ୍ର ପଦ
ମନେ ମନେ ସଦା ମୋତେ ଚିନ୍ତିବ ପ୍ରମାଦ ।
ଏହିରୂପେ ଗର୍ଭ ଆସି ହେଲା ତିନିମାସ
ଲୁଦୁବୁଦୁ ତା ଶରୀରେ ଅତିହିଁ ଆଳସ୍ୟ ।
ଇନ୍ଦ୍ରଦେବଙ୍କୁ ବସାଇ ଭାଳେ ଦେବୀ ଦିତି
ତୋତେ ପ୍ରମାଦ ଚିନ୍ତେ ତୋ ମାଉସୀ ଅଦିତି ।
ଭଉଣୀ ହୋଇଣ ମୋର ଏଡ଼େ ହିଂସା ତାର
ତୋ ସମ୍ପଦ ହରିବାକୁ କଲାଣି ବିଚାର ।
ଦିତି ବୋଇଲା ବାବୁ ରେ ବୁଦ୍ଧି ଏକ କର
ପ୍ରେତଆତ୍ମା ହୋଇ ପଶ ଯାଇ ତା ଉଦର ।
ଇନ୍ଦ୍ରକୁ ବୁଝାଇ ପୁଣି କହିଲାକ ଦିତି
ତୁଣ୍ଡ ବିସ୍ତାରିଣ ସେହୁ ଶୋଇଥାଏ ରାତି ।
ଗର୍ଭରେ ପଶିଲା ଇନ୍ଦ୍ର ତହୁଁ ପ୍ରେତରୂପେ
ସ୍ଥୂଳନାଳେ ପଶେ ରକ୍ତପିଣ୍ଡୁଳା ସମୀପେ ।
ବିଜେ କର୍ଣ୍ଣକଟାରୀକୁ ଧରି ପୁରୁହୂତ
ସାତଖଣ୍ଡରେ କାଟିଲା ପିଣ୍ଡୁଳା ତୁରିତ ।
ପୁଣି ବାହାର ହୋଇଲା ସେହୁ ପ୍ରେତରୂପେ
ବାରତା ଜଣାଏ ଯାଇ ମାତାର ସମୀପେ ।
ରକ୍ତ ପିଣ୍ଡୁଳାକୁ ସାତଖଣ୍ଡ କରି କାଟି
ନିଶ୍ଚିନ୍ତେ ରହିଲେ ଇନ୍ଦ୍ରପଦେ ଯୁଗ ଗୋଟି ।
ନିରାକାରଙ୍କ ଆଜ୍ଞାରେ ନାଶ ସେ ନୋହିଲା
ସାତମୂର୍ତ୍ତି ହୋଇ ପୁଣି ଗର୍ଭେ ଡାକଦେଲା ।
ନାଶ ନୋହି ସାତଖଣ୍ଡ ରାବ ସେ ଦିଅଇ
ପାଖେ ବସି ଦିତି ଅଦିତିକୁ ପଚାରଇ ।
ପେଟ ଆଉଁଷନ୍ତେ ଦିତି ଜାଣେ ସାତପୁତ୍ର
ଧ୍ୟାନରେ ଜାଣିଲା ମନ୍ଦ ହୋଇଲା ମୋତେ ତ ।
ଗୁପତେ ହକାରି ପୁଣି ବୋଲଇ ଇନ୍ଦ୍ରକୁ
ବାବୁ ସାତଗୋଟି ଶତ୍ରୁ ହୋଇଲା ତୁମ୍ଭଙ୍କୁ ।
ଶୁଣ ଇନ୍ଦ୍ର ଏବେ ପଶ ଅଦିତିର ଗର୍ଭେ
ତିରଣ ପ୍ରମାଣ କରି କାଟିଆସ ଏବେ ।
ମାତାର ବଚନ ପାଇ ଚଳେ ସସ୍ର ଯୋନି
ଅଦିତି ଶୟନବେଳେ ଯୋଗ ଯାଏ ଜାଣି ।
ଉତ୍ତାନ ହୋଇ ଶୋଇବ ଯେବେ ଗର୍ଭବତୀ
ଅବଶ୍ୟ ପ୍ରମାଦ ପଡ଼େ ବୋଲନ୍ତି ଅଗସ୍ତି ।
ଅତି ଆଳସ୍ୟେ ଶୋଇଛି ଅଦିତି ସୁନ୍ଦରୀ
ଉଠି ବସି ନ ପାରଇ ଗର୍ଭ ବଡ଼ଭାରୀ ।
ଅଦିତି ଗର୍ଭରେ ଇନ୍ଦ୍ର ପଶିଲା ଗୁପତେ
ତିରଣ ପ୍ରମାଣେ କାଟେ ନିର୍ଦ୍ଦୟତା ଚିତ୍ତେ ।
ଖଣ୍ଡକକୁ ସାତଖଣ୍ଡ କରିଣ କାଟିଲା
ଏ ବିଧିରେ ଅଣଚାଶ ଖଣ୍ଡ ଯେ ହୋଇଲା ।
ପ୍ରେତରୂପରେ ବାହାରି ପୁଣି ଆଖଣ୍ଡଳ
ମାତାକୁ କହେ ଏ ଘାନ୍ତି ହୋଇଲି ନିଶ୍ଚଳ ।
ଶୁଣ ଚଇତନ ଏବେ ଏହି ରସ ବାଣୀ
ଚିର ହୋଇଣ ରହିଲା ଏ କଥା ଧରଣୀ ।
ନିରଞ୍ଜନଙ୍କର ଆଜ୍ଞା ଅନ୍ୟଥା ନୋହିଲା
ଅଣଚାଶ ପୁତ୍ର ହୋଇ ଜନମ ଲଭିଲା ।
ପବନ ବୋଇଲା ତୁମ୍ଭେ ଶୁଣ ବେଦବର
ଅଣଚାଶ ଖଣ୍ଡ କଲ ମୋ ଏକ ଶରୀର ।

ଅଣଚାଶ ମୂର୍ତ୍ତି ଧରି ମୁଁ ହେଲି ଉତ୍ପତ୍ତି
ଇନ୍ଦ୍ର ସିନା କଲା ମୋତେ ଏମନ୍ତ ଦୁର୍ଗତି ।
ଏତେ ଦଣ୍ଡ ଦେଇ ସୁଦ୍ଧା ଦୟା ସେ ନ କଲା
ଏବେ ଆଜ ଜନ୍ମ ହେଲା ପୁତ୍ରକୁ ମାଇଲା ।
ଆବର ଜଗତେ ମୋର କିସ ପ୍ରୟୋଜନ
ପିତାମହ ବୋଇଲା ମୁଁ ଜାଣଇ ଏମାନ ।
ବହ ଏବେ ରେ ମରୁତ ତିନିପୁର ବର୍ତ୍ତୁ
ଦଣ୍ଡେ ନ ବହିଲେ ଆଉ ସର୍ବେ ହେବେ ମୃତ୍ୟୁ ।
ସୁଲଳିତ ଗତିକରି ବହନ୍ତେ ପବନ
ଏହିକ୍ଷଣି ତୋର ପୁତ୍ର ପାଇବ ଜୀବନ ।
ବେଦପତିଙ୍କ ବଚନେ ଜୀବନ୍ୟାସ ବହି
ମଳୟ ବାତେ ଉଠିଲେ ସର୍ବେ ଜୀବ ପାଇ ।
ବୃକ୍ଷ ପଲ୍ଲବିଲା ହେଲା ଫଳ ପୁଷ୍ପମାନ
ତିନିପୁର ଲୋକମାନେ ପାଇଲେ ଜୀବନ ।
ହନୁମନ୍ତକୁ କୋଳରେ ଧରି ବେଦବର
ବୋଇଲେ ମୋ ଆୟୁ ଘେନି ବର୍ତ୍ତରେ କୁମର ।
କଳ୍ପ କଳ୍ପ ଥାଅ ତୁହି ହୋଇ ଚିରଜୀବୀ
ଏହି ଶରୀରରେ ଥିବୁ କେତେକାଳ ଭୁବି ।
ମହା ପ୍ରଳୟରେ ତୋର ଶରୀର ନ ତୁଟୁ
ତ୍ରିଦଶ ଯେ ବର ଦେଲେ ଦୋଷ କୃତ ହଟୁ ।
ଇନ୍ଦ୍ର ବୋଇଲେ ମାଇଲି ମୁଁ ବଜ୍ରଶକତି
ଆଙ୍ଗୁଁ ବଜ୍ର ବାଣ ହେଉ ପବନ ସନ୍ତତି ।
ଈଶ୍ୱର ବୋଇଲେ ହୁଅ ତୁ ପରମ ଯୋଗୀ
ଯୁଗ କଳ୍ପ ଚନ୍ଦ୍ର ତୋର ହେଉଥାଉ ଭୋଗୀ ।
ଜପା ଅଜପା ଯେ ଷଟ କାବ୍ୟ ଜପ ମନ୍ତ୍ରେ
ସ୍ତମ୍ଭନ ମୋହନ ଆଦି ପ୍ରାପ୍ତ ହେଉ ତୋତେ ।
ବସୁଧା ବୋଇଲେ ତୋର ଲାଙ୍ଗୁଳେ ମୁଁ ଥିବି
ମନେ ଯେତେ ବିଚାରିବୁ ତେତେଦୂର ଯିବି ।
ଚନ୍ଦ୍ର ସୂର୍ଯ୍ୟ ବୋଲେ ଆମ୍ଭେ ବେନିନେତ୍ରେ ଥିବୁ
ଦିବ୍ୟଚକ୍ଷୁରେ କୋଟିଏ ଭୁବନ ଦେଖିବୁ ।
ଅଶ୍ୱିନୀକୁମାର କହେ ଅଉଷଧିମାନ
ଧରଣ ଧାରଣ ପୁଣି ବଶ୍ୟ ଉଚ୍ଚାଟନ ।
ଅନେକ ବିଦ୍ୟା କରଣ ମାରଣ ପ୍ରଭୃତି
ଗ୍ରହକୂଟ ଆଦି ଶିକ୍ଷା ଦେଲେ ବୃହସ୍ପତି ।
ମହାପଣ୍ଡିତ ହୁଅ ତୁ ନ ସାଧିଣ ବିଦ୍ୟା
ବ୍ରହ୍ମଜ୍ଞାନ ପ୍ରାପ୍ତହୁଅ ସଦା ମିଳୁ ସୁଧା ।
ମୃଦୁ ରସକୁ କହିଲେ ଦେବ ବିଶ୍ୱାବସୁ
ଅଦୃଶ୍ୟ ପଦାର୍ଥ ସବୁ ଇଚ୍ଛା କଲେ ଦିଶୁ ।
ଭୂତ ଭବିଷ୍ୟତ କଥା ହେଉ ପରାପତ
ଅଶୀଲକ୍ଷ ଗ୍ରନ୍ଥ ଜାଣ ପବନର ସୁତ ।

ଆରୋଗ୍ୟ ଶରୀର ହୁଅ ରୋଗହିଁ ନ ପୀଡୁ
କାଳ କାମ ବାଧା ମୋହ ମୃତ୍ୟୁ ତୋତେ ଛାଡୁ
ଶୁକ୍ରଦେବ କହିଲେ ଯେ ଏହିକଥା ମାନ
ମହାନ ଆରୋଗ୍ୟ ତୁହି ହୋଇବୁ ନନ୍ଦନ ।
ଋକ ଯଜୁ ସାମ ଅଥର୍ବ ଯେ ଚାରିବେଦ
ପିତାମହ କହିଦେଲେ ହୋଇଣ ଆନନ୍ଦ ।
ମହାକ୍ଷତ୍ରୀ ପଣ୍ଡିତ ତୁ ଅଟୁ ମହାଯୋଗୀ
ମହାମନ୍ତ୍ର ମନ୍ତ୍ରକାଳ ହୁଅ ତୁହି ଭୋଗୀ ।
ଅକ୍ଷୟ ଅବ୍ୟୟ ତୁହି ହୁଅ ହୋ ଅନାମ
ତ୍ରେତାଯୁଗେ ଅବତାର ହୋଇବେ ଶ୍ରୀରାମ ।
ସବୁଙ୍କ ଆୟୁଷ ପ୍ରାପ୍ତ ହେଉ ତୋତେ ଏଣେ
ତେତିଶକୋଟି ଦେବତା ମଧ୍ୟେ ତୁହି ଜଣେ ।
ତ୍ରିଦଶ ଦେବତା ହୋଇ ସର୍ବେ ଦେଲେ ବର
କୋଟିକଳ୍ପ ଆୟୁଷ ଯେ ହୋଇବ ତୋହର ।
ଅହଲ୍ୟା କହିଲେ ଶୁଣ ଆଗେ ଯାଜ୍ଞସେନି
ସେହି ହନୁମନ୍ତ ମାତା ଅଟେ ଏ ଅଞ୍ଜନୀ ।
ପୁତ୍ର ଜାତକରି ଆସେ ପୁଣି ମୋର ପୁର
କୋପେ ଚାହିଁଦେଲି ଭସ୍ମ ହେଲା ଯା ଶରୀର ।
ପାଉଁଶ ହୋଇକରି ଏ ସତ୍ୟଯୁଗେ ଥିଲା
ତ୍ରେତାଯୁଗେ ଆସି ଜୀବ ପ୍ରାପତ ହୋଇଲା ।
ଶ୍ରୀରାମ ଲକ୍ଷ୍ମଣ ସୀତା ଏହି ତିନି ପ୍ରାଣୀ
ଗଉତମୀ ତୀର୍ଥେ ଗଉତମ ତାଙ୍କୁ ଆଣି ।
ସୀତା ଶ୍ରୀରାମ ହୋଇଲେ ଆମ୍ଭର ଆଶ୍ରମେ
ପଥର ଗୋଟିକ ପାଦେ ମାଡ଼ିଲେ ଶ୍ରୀରାମେ ।
ମୋହର ଶରୀର ଶାପେ ଭସ୍ମ ହୋଇଥିଲା
ଶ୍ରୀରାମ ଚରଣ ଲାଗି ଗତିକି ଲଭିଲା ।
ଶୁଣ ଆଗୋ ଦ୍ରଉପଦୀ ଅହଲ୍ୟା କହିଲା
ତେଣୁକରି ଅଞ୍ଜନାର ଅପ୍ରୀତି ହୋଇଲା ।
ପବନ ସୁତର ତୁମ୍ଭେ ଅଟ ହେ ଘରଣୀ
ମୋର ଭାଗ୍ୟେ ତୁମ୍ଭେ ଏଥେ ଆସିଅଛ ପୁଣି ।
ଅହଲ୍ୟା ଏମନ୍ତ କହି ଦ୍ରୌପଦୀକି ନେଲେ
ଗଉତମୀ ତୀର୍ଥେ ଯାଇ ପିଣ୍ଡଦାନ ଦେଲେ ।
ଦ୍ରୁପଦ ରାଜାଙ୍କର ସେ ଅନେକ ପୁରୁଷ
ପିଣ୍ଡ ଦାନରେ ସମସ୍ତେ କଲେ ସ୍ୱର୍ଗବାସ ।
ବ୍ୟାସ ବଶିଷ୍ଠ ମାର୍କଣ୍ଡ ପୁଣି ବାଲମୀକ
ଜନକ ଦୁର୍ବାସା ଆଉ ମୁନି ସଉନକ ।
ଉଦ୍ଦାଳକ ବିଶ୍ୱଦେବା ପୁଣି ବିଶ୍ୱାମିତ୍ର
ବିଭାଣ୍ଡକ ଋଷ୍ୟଶୃଙ୍ଗ ଭାଣ୍ଡକ ସହିତ ।
ଏ ସର୍ବଋଷି ପ୍ରବେଶି ଯୁଧିଷ୍ଠିଙ୍କ ଆଗେ
ତାଙ୍କୁ ସ୍ନାନ କରାଇଲେ ମହାତୀର୍ଥ ଯୋଗେ ।

ସେ ସୁଲଭ ମହା ତୀର୍ଥେ କଲେ ପିଣ୍ଡଦାନ
ଯେମନ୍ତେ ଶାସ୍ତ୍ରମାନଙ୍କେ ଅଛଇ ବିଧାନ ।
ପଣ୍ଡୁ ରାଜାଠାରୁ ପୁରୁରବା ପରିଯନ୍ତେ
ଏକନବଇ ପୁରୁଷ ତୃପତ ସମସ୍ତେ ।
ଗୌତମୀ ତୀର୍ଥର ଅଟେ ମହିମା ବହୁତ
ପିଣ୍ଡକାଳେ ପିତୃଲୋକେ ହୋଇ ଉପସ୍ଥିତ ।
ଗଉତମୀ ତୀର୍ଥେ ଥିଲେ ସକଳ ମହର୍ଷି
ଦ୍ରଉପଦୀ ଦଶମାସ ହେଲେ ଗର୍ଭବାସୀ ।
ବନ୍ଦାପନାର ସମ୍ଭାର କଲେ ପାଞ୍ଚଭାଇ
ଗଉତମ ଆଶ୍ରମରେ ରହିଲେ ସେ ଯାଇ ।
ସିଂହମାସର ଅନ୍ତରେ କନ୍ୟାର ପ୍ରବେଶ
ଦ୍ରୌପଦୀ ଦେବୀର ପୂର୍ଣ୍ଣ ହେଲା ଦଶମାସ ।
କନ୍ୟାମାସର ଅନ୍ତରେ ତୁଳର ପ୍ରବେଶ
ପ୍ରଥମର କୃଷ୍ଣପକ୍ଷ ହୋଇଗଲା ଶେଷ ।
ଭୌମବାର ରୋହିଣୀ ଯେ ହୋଇଛି ସେଦିନ
ଦ୍ରୌପଦୀ ଅଙ୍ଗ ଆଳସ୍ୟ ବେଳ ମଧମାନ ।
ଦ୍ରୌପଦୀ ଅଙ୍ଗ ଆଳସ୍ୟ ଦେଖି ସେହି ଦିନ
ଶୁକମୁନି ଜଇମିନି ବଇଶମ୍ପାୟନ ।
ଦ୍ରୌପଦୀଙ୍କୁ ଶୁଣାଇଲେ ପୁରାଣର ଧ୍ୱନି
ଏମନ୍ତେ ପ୍ରବେଶ ଆସି ହୋଇଲା ରଜନୀ ।
ଭାଳୁ ଭାଳୁ ହେଲା ଚତୁର୍ଦ୍ଦଶ ଘଡ଼ି ରାତି
ଧନୁଲଗ୍ନ ବେଳେ ସୁତେ ହେଲା ଉତପତ୍ତି ।
ସୁରବର ଆକର୍ଷଣ ପରାୟେକ ମୁଷ୍ଟି
ଅତିଶୋଭା ପ୍ରତ୍ୟକ୍ଷରେ ଯେସନେ ଯୁଧିଷ୍ଠି ।
ଆଉ କ୍ଷଣକେ କୁମରେ ପୁଣି ଅବତାର
ପ୍ରତ୍ୟକ୍ଷେ କନ୍ଦର୍ପ ପ୍ରାୟ ଯେହ୍ନେ ବୃକୋଦର ।
ଆବର କ୍ଷଣକେ ଏକ ପୁତ୍ର ଜାତହୁଏ
ନୀଳେନ୍ଦି ଲୋଚନ ତାର କୃଷ୍ଣଙ୍କ ପରାୟେ ।
ଅତି ଶୋଭାବନ ଅଟେ ସେହି ନବବସି
ସର୍ବଗୁଣେ ସୁନ୍ଦର ଯେ ରୂପେ ସବ୍ୟସାଚୀ ।
ଆବର କ୍ଷଣକେ ପୁଣି ପୁତ୍ର ଜାତ ହେଲା
ନକୁଳର ବର୍ଣ୍ଣଚିହ୍ନ ପରାୟେ ଦିଶିଲା ।
ପୁଣିହିଁ ଗୋଟିଏ ପୁତ୍ର ହେଲା ଉତପତ୍ତି
ମନ୍ତ୍ରୀ ଚୂଡ଼ାମଣି ସହଦେବର ମୂରତି ।
ଏମନ୍ତେ ପାଞ୍ଚାଳୀଙ୍କର ପାଞ୍ଚପୁତ୍ର ଜାତ
ପଞ୍ଚପାଣ୍ଡବଙ୍କର ଯେ ସ୍ୱରୂପ ସଞ୍ଚିତ ।
ପୁତ୍ର ଦେଖି ସାନନ୍ଦିତ ହେଲେ ପାଞ୍ଚଭାଇ
ଅହଲ୍ୟା ଯେ ଅରୁନ୍ଧତୀ ଅଞ୍ଜନା ବନ୍ଦାଇ ।
ଗଉତମ ଆଶ୍ରମରେ ସନ୍ନିଧିରେ ରହି
ବହୁ ଆନନ୍ଦ ଉତ୍ସବ କଲେ ପାଞ୍ଚଭାଇ ।

ପୁତ୍ରଙ୍କୁ ପ୍ରତିପାଳିଣ ତହିଁ ପଞ୍ଚଭ୍ରାତେ
ସେଠାରେ ରହିଲେ ପାଞ୍ଚମାସ ପରିଯନ୍ତେ ।
ଦ୍ରୁପଦ ଗୌତମୀ ତୀର୍ଥେ ବିଜେ କରିଥିଲେ
ଯୁଧିଷ୍ଠି ତାହାଙ୍କୁ ଦେଖି ବହୁସେବା କଲେ ।
ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ଦୁହିଙ୍କ ସହିତ
ପଞ୍ଚଭ୍ରାତ ବିନୟରେ କହିଲେ ବହୁତ ।
ଦ୍ରୁପଦ ବୋଇଲେ ଶୁଣ ଆହେ ଧର୍ମରାୟେ
ମୋ ରାଜ୍ୟରେ ରହ ବନବାସ ଶେଷଯାଏ ।
ଯୁଧିଷ୍ଠି ବୋଇଲେ ତୁମ୍ଭେ ଶୁଣ ଦେବ ତାତ
ଅନେକମତେ ତିଆରି କହେ କୁରୁନାଥ ।
ଆମ୍ଭେ ଯାହା ଅର୍ଜିଅଛୁ ଲଙ୍ଘିବୁ କେମନ୍ତେ
ଆମ୍ଭେ ଲଙ୍ଘିଲେ ପୃଥିବୀ ଯିବ ରସାଗତେ ।
ଅଷ୍ଟବର୍ଷ ବଞ୍ଚିଲୁଣି ଆସି ବନବାସେ
ଅନେକ ତୀର୍ଥ ଭ୍ରମିଲୁ ଥାଇ ବନଦେଶେ ।
ବ୍ୟାସ ବୋଇଲେ କଟାଳ ନ କର ଦ୍ରୁପଦ
ୟାଙ୍କ ବନବାସେ ସର୍ବଧର୍ମ ହେବ ସାଧ ।
ପାଣ୍ଡବଙ୍କ ବନବାସେ ସ୍ୱର୍ଗ ରକ୍ଷାହେଲା
ନିର୍ବାତ ମାରି ଅର୍ଜୁନ ଦେବଙ୍କୁ ରଖିଲା ।
ବ୍ୟାସ ବଚନେ ଦ୍ରୁପଦ ସନ୍ତୋଷ ହୋଇଲେ
ପୁତ୍ରଙ୍କୁ ଘେନିଣ ଚାଲ କନ୍ୟାଙ୍କୁ ବୋଇଲେ ।
ପୁଣିହିଁ ମୁନି ବୋଇଲେ ଶୁଣ ମହୀପାଳ
ପାଞ୍ଚପୁତ୍ରଙ୍କୁ କେବଳ ଘେନି ପ୍ରତିପାଳ ।
ଦ୍ରୁପଦ ବୋଇଲେ ତେବେ ଥାନ୍ତୁ ଆମ୍ଭ ତହିଁ
ବନସ୍ତେ କିପାଇଁ ଥିବେ ପୁତ୍ରେ ଦୁଃଖପାଇ ।
ପୁଣି ପୁଚ୍ଛିଲେ ରାଜନ ତପୋଧନ ଶୁଣ
ପୁତ୍ରଙ୍କର କିସନାମ ଦେଇଛ ଆପଣ ।
ବ୍ୟାସ ବୋଇଲେକ ତହୁଁ ଶୁଣ ନୃପୋତ୍ତମ
ଯେଉଁରୂପେ ଯାହାଙ୍କର ହୋଇଅଛି ନାମ ।
ଚନ୍ଦ୍ରକେଶରୀ ହୋଇଲା ଯୁଧିଷ୍ଠିଙ୍କ ସୁତ
ବୀରକେଶରୀ ଯା ନାମ ଭୀମଠୁଁ ସମ୍ଭୂତ ।
ନରକେଶରୀ ବୋଲିଣ ଅର୍ଜୁନ କୁମର
ମହାକେଶରୀ ଯେ ପୁତ୍ର ଅଟେ ନକୁଳର ।
ତୈଲୋକ୍ୟକେଶରୀ ବୋଲି ସହଦେବ ସୁତ
ପାଞ୍ଚନାମ ଏ ବିଧିରେ ପାଞ୍ଚପୁତ୍ର ଖ୍ୟାତ ।
ପାଣ୍ଡବଙ୍କୁ ପ୍ରବୋଧିଣ ସେ ଦ୍ରୁପଦ ରାଜା
ପାଞ୍ଚାଳୀ ପୁତ୍ରଙ୍କୁ ନେଲେ ବଜାଇଣ ବାଜା ।
ନିଜ ନବରେ ପ୍ରବେଶ ହେଲେ ନରନାଥ
ଅନେକ ଉତ୍ସବ କରି ପାଳିଲେ ପୁତ୍ରନ୍ତ ।
ଜୟ ରାଜୀବଲୋଚନ ଜୟ ଚକ୍ରପାଣି
ଅନନ୍ତ କୋଟି ବ୍ରହ୍ମାଣ୍ଡେ ତୁହି ଶିରୋମଣି ।

କଉସ୍ତୁଭ ମଣି ଶୋଭାପାଏ ତୋର ବକ୍ଷେ
ଶୟଳ ଜନ ତାରଣ ତୁ ଅଟୁ ପ୍ରତ୍ୟକ୍ଷେ ।
ସର୍ବଗୁଣେ ସୁଲକ୍ଷଣ ତୁ ପରମ ବନ୍ଧୁ
ଅନାଥର ନାଥ ପ୍ରଭୁ ତୁ କରୁଣାସିନ୍ଧୁ ।
ଚରଣ ପଙ୍କଜେ ନମେ ମୁଁ ତୋହର ଦାସ
ଶୂଦ୍ର ମୁନି ଶାରଳାର ପୂରାଅ ମାନସ ।



## ଯୁଧିଷ୍ଠିରଙ୍କ ଅରଣ୍ୟସ୍ଥିତ ନାନା ସ୍ଥାନର ଦେବଦର୍ଶନ ଓ ସୁଷେଣ ଏବଂ କର୍ଣ୍ଣ ଜନ୍ମର ବିବରଣ

ବଦନ୍ତି ଅଗସ୍ତି ଘଟ ଋଷିଙ୍କର ସୁତ
ଭବିଷ୍ୟତଜ୍ଞାତା ଯେହୁ ପରମ ପଣ୍ଡିତ ।
ବିଲଙ୍କ ଦେଶର ରାଜା ବୈବସ୍ୱତ ମନୁ
କାଳ ବଞ୍ଚାଇଲେ ସେହୁ ସପତମ ମନୁ ।
ଭାରିଯା ତ୍ୟାଗୀ ପୁରୁଷ ସେ ପରମଯୋଗୀ
ସହସ୍ର ବର୍ଷେ ପାଇଲେ ଦଶ ପୁତ୍ର ଭୋଗି ।
ସୁରସ ଅଟେ ଏ ଆରଣ୍ୟକ ପର୍ବ କଥା
ଏହାକୁ ଶୁଣିଲେ ଦୁଃଖ ଯାଏଟି ସର୍ବଥା ।
ପାଞ୍ଚଭାଇ ଗଉତମ ତୀର୍ଥରେ ରହିଲେ
ଅଠାଶୀ ସହସ୍ର ଋଷି ରହିଛନ୍ତି ତୁଲେ ।
ତହିଁ ବିଜେ କଲେ ଧର୍ମ ଦେବ ନୃପମଣି
ସ୍ନାନ ସାରି ପିତୃପିଣ୍ଡ ଦେଲେ କୃଷ୍ଣାବେଣୀ ।
ତ୍ରିଅମ୍ବକ ନାଥଙ୍କୁ ଯେ ଭେଟିଲେ ଯୁଧିଷ୍ଠି
ଦେଖନ୍ତି ସେ ନାରାୟଣ ପୁରୁଷେ ଅଭୀଷ୍ଟୀ ।
ଯୁଧିଷ୍ଠି ବୋଇଲେ ତୁମ୍ଭେ ଶୁଣ ହେ ଲୋମଶେ
ଦେବତା ସ୍ୱରୂପ ବର୍ଣ୍ଣ କିଛି ତ ନ ଦିଶେ ।
ଲୋମଶ ବୋଇଲେ ତୁମ୍ଭେ ଶୁଣ ସାବଧାନେ
ବାହୁଡ଼ିଲେ ରାମଚନ୍ଦ୍ର ମାରି ଦଶାନନେ ।
ତ୍ରିଅମ୍ବକ ନାମଧେୟ ଏକଇ ପର୍ବତ
ପୂତ ଧାରା ଗଙ୍ଗା ଆସି ହୋଇଲେ ଗୁପତ ।
ନିତ୍ୟକର୍ମ ସାରି ରାମ ସେହି ପରବତେ
ଲକ୍ଷ୍ମଣେ ବୋଇଲେ କାଶୀ ଦେଖିବା ନିମନ୍ତେ ।
ଲକ୍ଷ୍ମଣ ବୋଇଲେ ସ୍ୱାମୀ କରୁଛି ମୁଁ ଠାବ
ଯତ୍ର ଜୀବାଦି ବସନ୍ତ ତତ୍ର ତତ୍ର ଶିବ ।
ବଡ଼ ଏ ଅରଣ୍ୟ ଘୋର ତ୍ରିଅମ୍ବକ ପୁରୀ
ବିଲ୍ୱବଣ ଏମାନଙ୍କେ ଅଛଇ ବିସ୍ତାରି ।
ଲକ୍ଷ୍ମଣ ବିଚାର କରେ ଏ ବନ ବିସ୍ତାର
ଅଦାରା ଅବୀର୍ଯ୍ୟେ ଦେବ ବିଜୟେ ତ୍ରିପୁର ।
ପ୍ରବେଶିଲା ଲକ୍ଷ୍ମଣ ଯେ ଶ୍ରୀରାମଙ୍କ କତି
ବିଲ୍ୱପତ୍ର ମେଞ୍ଚା ତୋଳି ଆଣଇ ସୌମିତ୍ରି ।
ଶ୍ରୀରାମ ଯେ ନିତ୍ୟକର୍ମ ଆଦି ସାରି ଆସି
ଲୟ କରି ପୂଜା କରୁଛନ୍ତି ଦେବ କାଶୀ ।
ଅନେକ ବିନୟେ ତାଙ୍କୁ କଲେ ବହୁସ୍ତୁତି
ଶ୍ରୀରାମ ପୂଜନ୍ତେ ଗଲେ ସେହି ସ୍ୱର୍ଗଗତି ।
ପତ୍ର ଆଡ଼ିଆଇ ତହୁଁ ଦେଖନ୍ତେ ସେ ସ୍ୱାମୀ
ହିରଣ୍ୟଗର୍ଭ ଗର୍ତ୍ତେକ ସେ ପାତାଳଗାମୀ ।
ଶ୍ରୀରାମ ବୋଇଲେ ହର ତୁ ଏ ବନପତି
ଏବେ ଏଥେ ବିଜେକର ହୋଇ ତୋଷମତି ।
ମହାବାକ୍ୟ ପାଇଣ ଯେ ସୁରରାଜ ନାଥ
ନାରାୟଣ ମୂର୍ତ୍ତିଧରି ବିଜେ କଲେ ଏଥ ।
ଶଙ୍ଖ ଚକ୍ର ଗଦାପଦ୍ମ ହେଲେ ଚତୁର୍ଭୁଜି
ନିକେ ରଘୁନାଥ ଯାଇ ହସ୍ତେ ଥିଲେ ପୂଜି ।
ବୋଇଲେ ଶମ୍ଭୁ ଦେବତା ହୁଅ ଚାରିଯୁଗେ
ଏହିରୂପରେ ବିଖ୍ୟାତ ହେଲା ମଧ ସ୍ୱର୍ଗେ ।
ରାମ ବୋଇଲେ ଏଠାରେ ଶର ଏକ ଥୁଅ
ଆଜ୍ଞା ପାଇ ଶର ପୋତେ ସୁମିତ୍ରାର ପୁଅ ।
ବନକ୍ରୀଡ଼ା କରୁ କରୁ ଏ ସ୍ୱରୂପ ହୁଏ
କୁବେର ସମାନ ହୋଇ ଏଥେ ପୂଜା ପାଏ ।
ମନ୍ତ୍ରେ ଲକ୍ଷ୍ମଣ ତାହାର କଲେ ଅଭିଷିକ୍ତ
ନାମ ହୋଇଲା ତାହାର ତ୍ରିଅମ୍ବକନାଥ ।
ବାଳକ ବୃଦ୍ଧ ତରୁଣ ହୁଏ ତିନିକାଳେ
ଲୋମଶ ବୋଲେ ତ୍ରିଶାଖା ବାଟ ସବୁକାଳେ ।
ଶ୍ରୀରାମ ଲକ୍ଷ୍ମଣ ସୀତା ତିନି ଶାଖା ଅଛି
ସଂସାରକୁ ଅଗୋଚର ଗୋପ୍ୟରେ ରହିଛି ।
ଶୁଣି ସାନନ୍ଦ ହୋଇଣ ତହୁଁ ଧର୍ମ ରାଜା
ଆପଣା ଶ୍ରୀହସ୍ତରେ ଯେ କଲେ ତାଙ୍କୁ ପୂଜା ।
ଦ୍ୱିତୀୟ ରାମ ପ୍ରତ୍ୟକ୍ଷେ ଏହୁ ନାରାୟଣ
ଭକତଜନମାନଙ୍କୁ କରିବେ କାରଣ ।
ଯୁଧିଷ୍ଠିଙ୍କ ଉପଗତେ ବୋଲେ ଚାପଧାରୀ
ତୁମ୍ଭେ ହେ ଧର୍ମ ଏଠାରେ ରହ ଦିନଚାରି ।
ବହୁ ମୃଗ ମାରି ଆମ୍ଭେ ଦେଉଥିବୁ ଏଥେ
ତୃପତ ହୋଇବ ତୁମ୍ଭେ ଋଷିଙ୍କ ସହିତେ ।
ଯୁଧିଷ୍ଠିରେ ରଖାଇଲେ ସେ ଆଦର କରି
ଆପଣେ ସେ ଗଲେ ହରନାଥ ମୃଗମାରି ।
ବନସ୍ତେ ପଶି ମାରନ୍ତି ନାନା ଖାଦ୍ୟଜୀବ
ଗଣ୍ଡା ପାଞ୍ଚୋଟି ବନ୍ଧନ କଲେ ସେହି ଦେବ ।
ଯୁଧିଷ୍ଠିଙ୍କି କହିଲେ ସେ ଆସି ବେଗକରି
ବନ୍ଧନକଲୁ ଉତ୍ତରଭାଗେ ଗଣ୍ଡା ଚାରି ।
ଯୁଧିଷ୍ଠିଦେବ ବୋଇଲେ ସୋଦରମାନଙ୍କୁ
ଏହିବାଟେ ଯାଅ ତୁମ୍ଭେ ଉତ୍ତର ବନକୁ ।

ଚଳିଗଲେ ଚାରିଭାଇ ଉତ୍ତରକୁ ସର୍ବେ
ଦେଖିଲେ ପଡ଼ିଅଛନ୍ତି ତହୁଁ ବହୁ ଜୀବେ ।
ଗଣ୍ଡା ଚାରିଗୋଟି ତହିଁ ବୃକ୍ଷେ ଲାଗିଛନ୍ତି
ଅଦଉଡ଼ି ବନ୍ଧନରେ ଚଳି ନ ପାରନ୍ତି ।
ଏମନ୍ତ ଦେଖି ଆଶ୍ଚର୍ଯ୍ୟ ପଣ୍ଡୁ ଚାରି ପୁତ୍ରେ
ଭାର କରିଣ ମିଳିଲେ ସେହି ପରବତେ ।
ଋଷିଙ୍କୁ ଚାହିଁ ବୋଇଲେ ଦେବ ଧର୍ମସୁତ
ଏହି ଦେବତାଙ୍କ ଅଟେ ମହିମା ବହୁତ ।
ଶୁଣ ଯୁଧିଷ୍ଠିର ମୁହିଁ ସ୍କନ୍ଦବନ ପତି
ହରନାଥ ନାମ ମୋର ଅଟଇ ସମ୍ପ୍ରତି ।
କାଳିମୁଖୀ ବାନର ମୋ ଦଶ ପଦ୍ମ ହୁଏ
ଦିଶନ୍ତି ସେମାନେ ଜମ୍ବୁ ଫଳର ପରାୟେ ।
ସୀତା ହରାଇଣ ରାମ ବୁଲୁଥିଲେ ବନ
ମୋତେ ତ ଭେଟିଲେ ବନେ ଅଞ୍ଜନାନନ୍ଦନ ।
ବହୁ କଷ୍ଟ ସହିକରି ରାମେ କରି ସେବା
ସପ୍ତଶାଳ ବନ୍ଧାଇଲି ମୁହିଁ ହେତୁ ଦେବା ।
ବାଳି ବଧି ସୁଗ୍ରୀବକୁ କରିଲେ ରାଜନ
ଅଙ୍ଗଦକୁ ଯୁବରାଜ୍ୟ କରିଲେ ସ୍ଥାପନ ।
ପର୍ବତମାନ ଉପାଡ଼ି ବାନ୍ଧିଲୁ ବାରିଧି
ସିନ୍ଧୁପାରି ହୋଇ ଦୈତ୍ୟ ସଗୋତ୍ରରେ ଛେଦି ।
ରାବଣକୁ ବଧି ବିଭୀଷଣେ ଦେଇ ପାଟ
ବନ୍ଧ କାଟି ଉତ୍ତରକୁ ଅଇଲେ ଯେ ଥାଟ ।
ମହୋଦଧି କୂଳେ ଆଜ୍ଞା କରିଲେ ହନୁକୁ
ଏଣିକି ଆସି ନ ଦେବ ଅସୁର କୁଳକୁ ।
କାବେରୀ ନଦୀକୂଳରେ ରହି ଶତବଳୀ
ମହାଶମ୍ଭୁ ହେଲା ତାକୁ ଦେଲେ ଜପମାଳି ।
ସୁଷେଣ ରହିଲେ ଯାଇ ଶ୍ରୀଗିରି ପର୍ବତେ
ମଲ୍ଲିକା-ଅର୍ଜ୍ଜୁନ ନାମ ଦେଲେ ସେ ଯୁଗତେ ।
ତାରକ ମନ୍ତ୍ର ଜପିଣ ସାଧିଲା ସେ ବ୍ରହ୍ମ
କୃଷ୍ଣାବେଣୀ ନଦୀକୂଳେ ଶୟ୍ୟାକଲେ ରାମ ।
ଶୁଣ ତୁମ୍ଭେ ଯୁଧିଷ୍ଠିର ଏସନ ଉପାମ
ଏହି ଠାରେ ଥିବା ନରନାଥ ନାମ ଗ୍ରାମ ।
ମୁହିଁ ନରନାଥ ହେଲି ତ୍ର୍ୟମ୍ବକ ମୂରତି
ବେଣ୍ଟ କଉତୁକେ ରାମ ଛାଡ଼ିଦେଲେ ଏଥି ।
ଯୁଧିଷ୍ଠି ବୋଇଲେ ମୋତେ ହୁଅ ତୁ ପ୍ରସନ୍ନ
ତୋ ପ୍ରସନ୍ନରେ ଘେନିଲେ ଭକ୍ତି ରଘୁନାନ ।
ତହୁଁ ତ୍ରିଅମ୍ବକ ନାଥ ପ୍ରସନ୍ନ ହୋଇଲା
ଯୁଧିଷ୍ଠି ଦେବଙ୍କୁ ଏକଗୋଟି ଧନୁ ଦେଲା ।
ଧମଣା କାଠର ଧନୁ କଣ୍ଠାବାଂଶ ଗୁଣ
ଫିରିକି ନାରାଚ ଗୋଟି କରିଲେ ଅର୍ପଣ ।

ବହୁ ଉପଦେଶ ଦେଇ ତ୍ରିଅମ୍ବକ ନାଥ
ସେହି ଧନୁଶର ଗୋଟି ଦେଲେ ପାର୍ଥହସ୍ତ ।
ବୋଇଲେ ଏଥେ ବସାଇ ନାରାଚ ଗୋଟିଏ
ଦେଖିଲେ ଦୃଶ୍ୟ ହୁଅଇ ବନଜନ୍ତୁ ଚୟେ ।
ଆଶ୍ରମେ ଥାଇ ବିନ୍ଧିବୁ ଯେବେ ଏକ ଶର
ଯେତେଦୃଶ୍ୟ ହେବେ ତେତେ ମରିବେ ସେଠାର
ଏ ବ୍ରହ୍ମବିଦ୍ୟା ପାଇଣ ବୀର ଅରଜୁନ
ପ୍ରସନ୍ନ ଦେବଙ୍କୁ ଦେଖିଥାନ୍ତି ନିତିଦିନ ।
ନାରାଚେ ଶର ପୂରାଇ ଦେଖିଲେ ବିଭହ
ବନର ଜନ୍ତୁ ସକଳ ତାଙ୍କୁ ହେଲା ଦୃଶ୍ୟ ।
ସେଠାରେ ବିଜୟ କଲେ ଋଷିଙ୍କର ମେଳେ
ଶ୍ରୀଗିରି ପର୍ବତେ ଯାଇ ପ୍ରବେଶିଲେ ହେଳେ ।
ଦେଖିଲେ ପାତାଳଗଙ୍ଗା ତହିଁ କରି ସ୍ନାନ
ଦେଖିଲେ ଗିରିଶିଖରେ ମଲ୍ଲିକା ଅର୍ଜ୍ଜୁନ ।
ଅନେକ ଭକତିସହ ବିଜେ ଦେବ ସ୍ୱାମୀ
ଶବଦେ ଶୁଭିଲା ତହିଁ ହୋଇ ଶୂନ୍ୟଗାମୀ ।
ଯୁଧିଷ୍ଠିର ଆହନିକ ସାରି ସୀତା କୁଣ୍ଡେ
ଶ୍ରୀଗିରି ପର୍ବତେ ଭେଟ ହେଲେ ମାରକଣ୍ଡେ ।
ସୁଦେବଙ୍କର ନନ୍ଦନ କଶ୍ୟପଙ୍କ ନାତି
ଦେଖିଣ ଯୁଧିଷ୍ଠି ତାଙ୍କୁ ହୋଇଲେ ପ୍ରଣତି ।
ମାର୍କଣ୍ଡ ବୋଇଲେ ବାବୁ ଧର୍ମ ଅର୍ଥ ଅଛି
ପର୍ବତେ ମଲ୍ଲିକାର୍ଜ୍ଜୁନ ଦେଖି ମନେ ବାଞ୍ଛି ।
ଯୁଧିଷ୍ଠିରି ପଚାରିଲେ କହ ଏହା କଥା
ପୂର୍ବେ ଏହୁ ଥିଲେ କେହୁ କେବଣ ଦେବତା ।
ମାର୍କଣ୍ଡ ବୋଇଲେ ତୁମ୍ଭେ ଶୁଣ ଧର୍ମରାୟେ
ରାବଣକୁ ମାରି ରାମ ଏଠାକୁ ବିଜୟେ ।
ରାମ ଯହୁଁ ଦେଖିଲେ ଏ ସୁସଞ୍ଜ ପର୍ବତ
ବୋଇଲେ ସୁଷେଣ ରାଜପଦ ଦେବା ଏଥ ।
ଶ୍ରୀରାମ ବିଜୟ କଲେ ଯେବଣ ସ୍ଥାନରେ
ସେ ସ୍ଥାନ ହେଲା ବିଜୟ ନଗର ନାମରେ ।
ସୁଷେଣ ବୋଇଲେ ମୁହିଁ କଲି କେଉଁ ଦୋଷ
ସଦା ମୋହର ବିଚାର ଖଟିଥିବି ପାଶ ।
ଏମନ୍ତ ପ୍ରଭୁଙ୍କର ମୁଁ ତେଜିବି ବଦନ
ଏତେ ବୋଲି ଗିରିଶିଖେ ବସିଲା ସୁଷେଣ ।
ଶ୍ରୀରାମଙ୍କୁ ସୁମରିଣ ଛାଡ଼େ ନିଜ ପ୍ରାଣ
ଏମନ୍ତ ସମୟରେ ଯେ ରାମଚନ୍ଦ୍ର ରାଣ ।
ରଜନୀ ଅର୍ଦ୍ଧକାଳରେ ଡାକିଲେ ହନୁକୁ
ବୋଇଲେ ତୁ ଅଭିଷେକ କର ସୁଷେଣକୁ ।
ଉତ୍ସବ ସାରିଣ ଆମ୍ଭେ ହୋଇବୁଟି ବିଜେ
ଶ୍ରୀଗିରି ପର୍ବତେ ତାଙ୍କୁ କରିବାଟି ରାଜେ ।

ସ୍ୱାମୀଙ୍କ ବଚନ ଶୁଣି ଚଳେ ହନୁମନ୍ତ
ଧାଡିକାରେ ଉଠିଲେ ସେ ଶ୍ରୀଗିରି ପର୍ବତ ।
ହନୁମନ୍ତ ଡାକଦିଏ ସୁଷେଣ ସୁଷେଣ
ଦେଖିଲା ଶରୀରେ ତାର ଆଉ ନାହିଁ ପ୍ରାଣ ।
ଦେଖି ହନୁ ବୋଲେ ତୁହି ପରମ ପବିତ୍ର
ରାମ ଆଜ୍ଞା କରିଥିଲେ ରାଜା ହବୁ ଏଥ ।
ଏହା କହି ପର୍ବତକୁ ମାଇଲା ସେ ନାତେ
ନାତେକ ମାରନ୍ତେ ସେହି ହୋଇଗଲା ଗାତେ ।
ତହିଁର ଭିତରେ ଭରେ ସେହି ମୃତପିଣ୍ଡ
ଉପରେ ଘୋଡ଼ାଇ ଦେଲା କନକର ଦଣ୍ଡ ।
ମଲ୍ଲିକା ପୁଷ୍ପଗୁଡ଼ିଏ ତା ଉପରେ ଥୋଇ
କୃଷ୍ଣାଜିନ ଛାଲ ପାଡ଼େ ତହିଁପରେ ନେଇ ।
ଶ୍ରୀରାମଚନ୍ଦ୍ର ସେଠାରେ ନିତ୍ୟକର୍ମ ସାରି
ବିଜୟ କରିଲେ ଆସି ପର୍ବତ ଶ୍ରୀଗିରି ।
କୃଷ୍ଣାଜିନ ଛାଲେ ଯାଇ ବସିଲେ ଶ୍ରୀପତି
ବୋଇଲେ ସୁଷେଣ କାହିଁ ଡାକ ରେ ମାରୁତି ।
ହନୁମନ୍ତ ବୋଲେ ତହୁଁ ଶ୍ରୀରାମଙ୍କ ଆଗ
ଭୋ ଦେବ ସୁଷେଣମନ୍ତ୍ରୀ ପ୍ରାଣ କଲା ତ୍ୟାଗ ।
ଦେଖିଲି ତା ମୃତପିଣ୍ଡ ଏଥେ ଥିଲା ପଡ଼ି
ଗାତ ଖୋଳି ତାକୁ ପୋତି ଛାଲ ଅଛି ପାଡ଼ି ।
ସୁଷେଣ ଆସ ଡାକନ୍ତେ ପୁଣି ରଘୁମଣି
ସ୍ୱାମୀଙ୍କଆଗେ ଲକ୍ଷ୍ମଣ କହେ ଯୋଡ଼ି ପାଣି ।
ସ୍ୱାମୀ ହନୁ ଯେତେବେଳେ ରାତ୍ରରେ ଅଇଲା
ଗତପ୍ରାଣ ସୁଷେଣକୁ ପର୍ବତେ ଦେଖିଲା ।
ଶ୍ରୀରାମ ବୋଇଲେ ତାର ମୃତପିଣ୍ଡ କାହିଁ
ହନୁ ବୋଇଲା ପର୍ବତେ ପୋତିଲି ଗୋସାଇଁ ।
ହନୁମାନ ବଚନରେ ଶ୍ରୀରାମ ବିସ୍ମରି
ଲକ୍ଷ୍ମଣକୁ ବୋଇଲେ ସେ ବଡ଼ ଉପକାରୀ ।
ମୃତସୈନ୍ୟଙ୍କୁ ଜୀଆଇଁ ଦୁଃଖେ ସାହା ହେଲା
ଭୋଗକାଳେ ଛାଡ଼ିକରି ଏବେ ଚାଲିଗଲା ।
ଏହା କହି କହିଲେ ସେ କାହିଁ ତାର ଶବ
ଲକ୍ଷ୍ମଣ ବୋଇଲେ ଏହିଠାରୁ ଉଠ ଦେବ ।
ରାମ ଉଠନ୍ତେ ଲକ୍ଷ୍ମଣ ଛାଲକୁ କାଢ଼ିଲେ
ମଲ୍ଲିକା ଫୁଲଗୁଡ଼ିକ ଆଡ଼େଇଣ ଦେଲେ ।
ଦେଖିଲେ ଲିଙ୍ଗେକ ତହିଁ ହୋଇଛି ଉତ୍ପତ୍ତି
ବାଳଆଦିତ୍ୟ ପରାୟେ ଦିଶେ ତାର ଜ୍ୟୋତି ।
ମଲ୍ଲିକାଅର୍ଜ୍ଜୁନ ନାମ ଦେଲେ ଦେବରାଜା
ବହୁତ ପୁଷ୍ପ ଘେନିଣ ରାମ କଲେ ପୂଜା ।
ମଲ୍ଲି ମଣ୍ଡି କୃଷ୍ଣାଜିନ ଦିଅନ୍ତେ ଘୋଡ଼ାଇ
ମଲ୍ଲିକାଅର୍ଜ୍ଜୁନ ନାମ ଦେଲେ ରଘୁସାଇଁ ।
ତାରକଜ୍ଞାନ କହିଣ ଗଲେ ରଘୁମଣି
ବୋଇଲେ ଅଗତିଲୋକ ଗତି ହେବେ ଗୁଣି ।
ଅର୍ଜ୍ଜୁନେ ପ୍ରସନ୍ନ ହେଲେ ସେହି ହରଦେବ
ବୋଇଲେ ମାଗ ତୁ ବର ପାଣ୍ଡବ ପାର୍ଥିବ ।
ଅର୍ଜ୍ଜୁନ ବୋଇଲେ ସ୍ୱାମୀ ତବ ପାଦବ୍ରହ୍ମ
ତୋହର ସଙ୍ଗତେ ଥିବା ଏ ମୋହର ନାମ ।
ତାହା ଶୁଣି ମହାଦେବ କଲେ ସତବାକ୍ୟ
ମଲ୍ଲିକାଅର୍ଜ୍ଜୁନ ନାମ ଦେଲେ ତ୍ରିଅମ୍ବକ ।
ଋଷିମାନେ ଶୁଣିକରି ଅତିତୋଷ ହୋଇ
ମଲ୍ଲିକାଅର୍ଜ୍ଜୁନ ନାମେ ଶ୍ରୀଗିରିରେ ରହି ।
ତୁଳମାସେ ପାଣ୍ଡବେ ଯେ ରହିଲେ ସେ ବନେ
ତହୁଁ ବାହାରିଲେ ଶୁକ୍ଳପଞ୍ଚମୀର ଦିନେ ।
ସୁବର୍ଣ୍ଣତୋୟାରେ ସ୍ନାନକରି ସର୍ବମୁନି
ଯୁଧିଷ୍ଠି ଭୋଜନ ଦେଲେ ହୋଇଣ ଦଇନୀ ।
ତହୁଁ ବିଜେ କରିଗଲେ ପାଣ୍ଡବେ ପଞ୍ଚାଳେ
ପ୍ରବେଶ ହୋଇଲେ ସରସ୍ୱତୀ ନଦୀକୂଳେ ।
ରହିଲେ ପାଣ୍ଡବମାନେ କୁଣ୍ଡଳି ପର୍ବତ
ଲୋମଶ ବୋଇଲେ କର୍ଣ୍ଣ ଜାତ ହେଲା ଏଥ ।
ଦୁର୍ବାସା କୋନ୍ତଭୋଜଙ୍କ ରାଜ୍ୟ ମଧ୍ୟେ ଥିଲେ
କୁନ୍ତୀ ଅନେକ ପ୍ରକାରେ ସେବା କରିଥିଲେ ।
ଦୁର୍ବାସା କୁନ୍ତୀକୁ ଦେଲେ ଏକ ଜପମାଳ
ବୋଇଲେ ଯାକୁ ବାଞ୍ଛିବୁ ଆସିବ ସେକାଳ ।
ଅବିବାହୀକାଳେ ବିଦ୍ୟା ପରୀକ୍ଷା ନିମନ୍ତେ
ଆଦିତ୍ୟଙ୍କୁ ସୁମରିଲେ ଏହି ପରବତେ ।
ମହାଋଷିଙ୍କର ମନ୍ତ୍ର ମେଣ୍ଟଣ ନ ଗଲା
ଅରଜକାଳେ କୁନ୍ତୀଙ୍କୁ ଆଦିତ୍ୟ ରମିଲା ।
ଦିଗପାଳମାନଙ୍କର ଅମୋଘ ଯେ ରେତ
କର୍ଣ୍ଣପଥେ ପୁତ୍ର ଏକ ହୋଇଲା ସମ୍ଭୂତ ।
କର୍ଣ୍ଣ ବୋଲି ନାମ ଦେଲେତାକୁ ଦିନକର
ଅଭେଦ କ୍ଷୌଣରେ ଚାହିଁ କର୍ଣ୍ଣର ଶରୀର ।
ତାଳୁରେ ଭରିଲେ ନେଇ ଅଭେଦ ଛଉରି
ଅମୃତ କୁଣ୍ଡଳ ବେନି କର୍ଣ୍ଣେ ଦେଲେ ଭରି ।
ଆଦିତ୍ୟ ବୋଇଲେ ପୁଣି ଶୁଣ ଗୋ କୋଇନ୍ତା
ଜପାମାଳା ପ୍ରସାଦରେ ଦେବେ ହେବେ ଭର୍ତ୍ତା ।
ଧର୍ମ ପ୍ରଭଞ୍ଜନ ଇନ୍ଦ୍ର ଅଶ୍ୱିନୀକୁମାରେ
ମୋତେ ନେଇ ଷଡ଼ଭର୍ତ୍ତା ଅଛି ଲଲାଟରେ ।
ବିଭା ହେବୁ ସୋମବଂଶ ପଣ୍ଡୁ ନରପତି
ଅଢ଼ାଇ ପଙ୍କ୍ତି କପାଳେ ଲେଖେ ପ୍ରଜାପତି ।
ଦିଗପାଳଙ୍କ ଔରସେ ହେବ ପାଞ୍ଚସୁତ
କର୍ଣ୍ଣ ମିଶିଣ ଏମନ୍ତେ ହେବ ଷଡ଼ଭ୍ରାତ ।

ଅମୃତ କୁଣ୍ଡଳ ଏହା ଶ୍ରବଣରେ ଥିବ
ସମରେ ପଡ଼ିଲେ ଏଥୁ ଅମୃତ ଝରିବ ।
ଅମୃତ ଝରି ପଶିବ ଯାଇଣ ମୁଖରେ
ପ୍ରାଣ ପାଇଣ ଉଠିବ ପୁତ୍ର ଧାତିକାରେ ।
ବଜ୍ର ଛଉରି ଲେପନ କଲୁ ଯା ଶରୀର
ସହସ୍ରେକ ରଶ୍ମି ତେଜ ହେବ ୟା ଶରୀର ।
ଦେବ ଶସ୍ତ୍ରମାନ ବାଜି ଅଙ୍ଗେ ହେବ ଚୂର୍ଣ୍ଣ
ସମରେ ଏହାକୁ କେହି ନୋହିବ ସମାନ ।
ଅଲଙ୍ଘିତ ବର ତାକୁ ବିହିଲେ ବିରଞ୍ଚି
ଜଳ ସ୍ଥଳ ଅନଳରେ ନାହିଁ ମୃତ୍ୟୁଗତି ।
ଅର୍ଜ୍ଜୁନ ବୋଇଲେ ଶୁଣ ହେ ମୁନି ଲୋମଶେ
ନିର୍ବାତକପଚ ବଧ କଲି ମୁଁ ଆକାଶେ ।
କିରୀଟ ମୁକୁଟ ଇନ୍ଦ୍ର ବାନ୍ଧିଲେ ମୋ ଶିର
କୋଳେ ବସାଇ ବୋଇଲେ ପାର୍ଥ ମାଗ ବର ।
ବୋଇଲି ମୁଁ ଆନ ବରେ କାର୍ଯ୍ୟ ନାହିଁ ପ୍ରଭୁ
କର୍ଣ୍ଣଠୁଁ କୁଣ୍ଡଳ ବଜ୍ର ଛୌରୀ ଆଣିଦେବୁ ।
ଇନ୍ଦ୍ର ବୋଇଲେ ବାବୁରେ ସୁମରିବୁ ଯେବେ
କର୍ଣ୍ଣଠାରୁ ଆଣିଦେବି ତୋତେ ମୁହିଁ ତେବେ ।
ଜୟ ତୁ ନାରାୟଣୀ ଗୋ ଅଭୟା ହିଙ୍ଗୁଳା
ଝଙ୍କଡ଼ପୁର ବାସିନୀ ଶ୍ରୀଚଣ୍ଡୀ ଶାରଳା ।
ଜନ୍ମେ ଜନ୍ମେ ମୁହିଁ ମାଗୋ ଅଟେ ତୋର ଦାସ
ଅପଣ୍ଡିତ ଅଟେ ଶାସ୍ତ୍ର ନାହିଁ ମୋ ଅଭ୍ୟାସ ।
ତବ କୃପାବଳେ ମାଗୋ ଲେଖେ ମୁଁ ଭାରତ
ବନପର୍ବ ଚରିତ ଯେ ହେଉଛି ଉକତ ।
ଶ୍ରୀପଦ ପଙ୍କଜେ ମୋର ଏତିକି ଦଇନୀ
ମୋକ୍ଷଗତି ଦିଅ ମାଗୋ ମାଗୋ ଶୂଦ୍ରମୁନି ।



## ଦ୍ରୌପଦୀ ହରଣ ଜନିତ ପାଣ୍ଡବ ମାନଙ୍କଠରୁ ଅପମାନିତ ହୋଇ ଜୟଦ୍ରଥର ତପସ୍ୟା

ଅଗସ୍ତିଙ୍କୁ ପଚାରିଲେ ମନୁ ନରପତି
ଯାହା ଶୁଣାଇଲ ମନୁ ହେଲି ମୁଁ ତୃପତି ।
ଦ୍ରୌପଦୀ ହରଣପାଇଁ ରାଜା ଜୟଦ୍ରଥ
ପାଣ୍ଡବେ ଯେ ଅପମାନ ଦେଲେ ତ ବହୁତ ।
ପାଣ୍ଡବଙ୍କ ଭୃତ୍ୟବୋଲି ଶିରେ ଚିତା କୁଟି
ଜାନୁତଳେ ଗଳାଇଲେ କରି ସାତବେଣ୍ଟି ।
ଅପମାନ ପାଇ ରାଜା ରାଜ୍ୟକୁ ନ ଗଲା
ପାଣ୍ଡବେ ଜିଣିବ ବୋଲି ଈଶ୍ୱରେ ସେବିଲା ।
ଏଥୁ ଅନନ୍ତରେ ପୁଣି ହେଲା କେଉଁ କଥା
ତାହା ଶୁଣିବାକୁ ଇଚ୍ଛା ହେ ମୁନି ବକତା ।

ବଦନ୍ତି ଅଗସ୍ତି ଶୁଣ ହେ ମନୁ ପୁରୁଷ
ତୁ ଯାହା ପୁଚ୍ଛିଲୁ ଶୁଣ ସେହି ଦିବ୍ୟରସ ।
କାଶୀନଦୀ ତୀରେ ହର ଉଦ୍ୟାନର ବନ
ତହିଁ ବସି ଜୟଦ୍ରଥ କରେ ଜପ ଧ୍ୟାନ ।
ଉର୍ଦ୍ଧ୍ୱରେତା ତପେ ସେ ଯେ ସେବେ ବିଶ୍ୱନାଥ
ଅନାହାରେ ରହେ ବାରବର୍ଷ ପରିଯନ୍ତ ।
ପୁଣି ରକ୍ତ ମାଂସ ସେହୁ ପକାଇଲା କାଟି
ଅଗ୍ନି ଆରୋପଣ କରି ଦେଲାକ ଆହୁତି ।
ଧନୁମାସ ଶୁକ୍ଳପକ୍ଷ ପୂର୍ଣ୍ଣମୀର ଦିନ
ଭୃଗୁବାର ପୁଷ୍ୟା ତହିଁ ଅଛି ବିଦ୍ୟମାନ ।
ବାଳବ ନାମେ କରଣ ଆୟୁନାମେ ଯୋଗ
ମକର ସଂକ୍ରାନ୍ତିଠାରୁ ତିନିଦିନ ଭୋଗ ।
ଜୟଦ୍ରଥ ରହେ ଅତି କଷ୍ଟେ ତପକରି
ଦେଖି ବିଜେ ବିରୂପାକ୍ଷ ଯୋଗୀବେଶ ଧରି ।
ଶୀତାଂଶୁ ମଉଳି ଶୋଭା ଦିଶଇ ପ୍ରକଟି
କର୍ଣ୍ଣେ କୁଣ୍ଡଳ କାନ୍ଧରେ ଅଛି ଚିରକୁଟି ।
ଶରୀରରେ ବିଲେପନ ହୋଇଛି ବିଭୂତି
ପଶୁଚର୍ମର କୌପୀନ ଶୋଭା ପାଏ ଅତି ।
ଡମ୍ବରୁ ବାଦନ ନାଗରାଜା ଶୋହେ ହୃଦ
ଧାତିକାରେ ବିଜେ କଲେ ସ୍ୱାମୀ ସଦାନନ୍ଦ ।
କରେ କରମାଳ ବ୍ୟାଘ୍ର ଚର୍ମରେ ଭୂଷଣ
ବିଜେ ବିରୂପାକ୍ଷ ଯୋଗୀ ରୂପକୁ ଧରିଣ ।
ତପ ଧ୍ୟାୟି ଜୟଦ୍ରଥ ଅଛି ଅସାଷ୍ଟମୀ
ଉପରେ ଅମୃତ ସିଞ୍ଚିଦେଲେ ଦେବ ସ୍ୱାମୀ ।
ସାଷ୍ଟାମ ହୋଇଣ ବୋଲେ ସିନ୍ଧୁ ଦେଶ ରାୟେ
ଅଦଭୂତେ ଯୋଗୀ କାହୁଁ କରିଲୁ ବିଜୟେ ।
ଭୂତ ପୁରୁଷ ତୁ ହୋଇ ତପୀ ତପ ଗଞ୍ଜୁ
ଦୁଃଖରେ ଅର୍ଜିଲା ତପ କିପାଁ ମୋର ଭାଙ୍ଗୁ ।
ସଦାନନ୍ଦ ବୋଇଲେ ତୁ କାରେ କରୁ ଜପ
ଜୟଦ୍ରଥ ବୋଲେ ମୋର ଈଶ୍ୱରଙ୍କୁ ତପ ।
ସଦାନନ୍ଦ ବୋଇଲେ ମୁଁ ସେହି ବିଶ୍ୱବାସୀ
ତୋ କଠୋର ତପ ଦେଖି ଆସିଅଛି ତୋଷି ।
ଜୟଦ୍ରଥ ବୋଲେ ତହୁଁ ତୁମ୍ଭେ ଯେବେ ହର
ପ୍ରତୀତ ହୋଇବ ମୋର ନିଜରୂପ ଧର ।
ଜୟଦ୍ରଥର ବଚନେ ଦେବ ଶୂଳପାଣି
ନିଜରୂପ ପ୍ରକାଶିଲେ ତହୁଁ ସେହିକ୍ଷଣି ।
ଦକ୍ଷିଣେ ଗିରିଜା ଛନ୍ତି ବାମେ ଦେବରୂପ
ଦକ୍ଷିଣରେ ସଦାନନ୍ଦ ବଚନ ସ୍ୱରୂପ ।
ପଛକୁ ବଦନ ଅଇଶାନ୍ୟ ମୁଖ ଶୋଭା
ଆଗରେ ପିଙ୍ଗଳରୂପ ଅଟେ ମହାଦେବା ।

ମଧ୍ୟେ ପୁଣି ପ୍ରଭୁ ଘୋର ବଦନ ବିକାଶି
ପାଞ୍ଚଗୋଟି ବଦନରେ ବିଜେ ଦେବ କାଶୀ ।
ପଞ୍ଚମାଥେ ଅଛି ତାଙ୍କ ଜଟା ପାଞ୍ଚଗୋଟି
ପଞ୍ଚଦଶ ଲୋଚନ ଯେ ତାଣ୍ଡବ ଭ୍ରୁକୁଟୀ ।
ପଞ୍ଚଜଟ ଭେଦି ବହେ ଗଙ୍ଗା ତିନିମୂର୍ତ୍ତି
ପଞ୍ଚବଦନ ତାଙ୍କର ଶୋଭା ଦିଶେ ଅତି ।
ବହଇ ଯେ ମହାତେଜଭରେ ଧବଳାଙ୍ଗୀ
ଆକାଶବାହିନୀ ସୀତା ଅଙ୍ଗର ସୌଭାଗୀ ।
କଣ୍ଠେ କାଳକୂଟ ବିଷ ଦିଶେ ନୀଳବର୍ଣ୍ଣ
ହୃଦଗତରେ ବାସୁକୀ ଫେଣା ଲମ୍ବମାନ ।
ଏମନ୍ତ ସ୍ୱରୂପେ ବିଜେ ଦେବ ସଦାନନ୍ଦ
ନବଲକ୍ଷ ଡମ୍ବରୁ ଯେ ଶୋଭେ ତାଙ୍କ ସଙ୍ଗ ।
ଶିରରେ ଜାହ୍ନବୀ ହୃଦଦେଶେ ଦେବୀ ଉମା
ନାଭିରେ ବାରାହୀ ଦେବୀ ବିଜେ ରୁଦ୍ରବାମା ।
ପାଦେ ବସୁନ୍ଧରା ଶୋଭା କରଇ କପାଳୀ
ମହା ପ୍ରଳୟେ ଭ୍ରମଇ ଶୀତାଂଶୁ ମଉଳି ।
ଏମନ୍ତ ସ୍ୱରୂପ ଶୁଦ୍ଧ ସ୍ଫଟିକର ରଙ୍ଗ
ଶ୍ରୀଭୁଜରେ ଶୋଭାକରେ ଡମ୍ବରୁଖଟ୍ୱାଙ୍ଗ ।
କୋଟିଏ ସିଂହର ବଳ ଯେ ପିନାକ ଧନୁ
ଅକ୍ଷୟ ତୂଣୀରେ ପୁଣି ଜଡ଼ିଅଛି ତନୁ ।
ଗଣପତି କାର୍ତ୍ତିକେୟ ନନ୍ଦୀ ଯେ ପ୍ରକାଶି
ଜୟଦ୍ରଥ ଦେଖେ ଏହିରୂପେ ବିଶ୍ୱବାସୀ ।
ଚରଣ ପଖାଳିକରି ଶୁଏ ପ୍ରଳମ୍ୱିତେ
ଜୟଦ୍ରଥ ବୋଲେ ଦେବ ବର ଦିଅ ମୋତେ ।
ସତ୍ୟ କରି ବର ଦେବୁ ପ୍ରାପତ ହୋଇବ
ନୋହିଲେ ଏ ପ୍ରାଣ ଏହିଠାରେ ନାଶଯିବ ।
ଈଶ୍ୱର ବୋଇଲେ ମୋର ତିନିବାର ସତ୍ୟ
ତୁ ଯାହା ମାଗିବୁ ତୋତେ ହୋଇବ ପ୍ରାପତ
ଜୟଦ୍ରଥ ବୋଲେ ତହୁଁ ଯୋଡ଼ି ବେନିପାଣି
ମୋହର କଥାକୁ ଦେବ ଶୁଣ ଶୂଳପାଣି ।
ସ୍ୱାମୀ ହେ ଗୁରୁଦେବା ବ୍ରାହ୍ମଣ ସୋଦର
ଆବର ହିଁ ବୃଦ୍ଧଜନ ମାତା ବା ପିଅର ।
ଭୋଜନ ଶୟନ ପୁଣି ଯେ ନିଗମ ଭୂମି
ଏସ୍ଥାନେ ମିଛ କହିଲେ ହୁଅନ୍ତି ନର୍କଗାମୀ ।
ମୁଁ ଗଲି ପାଣ୍ଡବଙ୍କର ନାରୀ ଚୋରି କରି
ବହୁତ ଶାସ୍ତି ବିହିଲେ ସେହୁ ମୋତେ ଧରି ।
ତାହାଙ୍କର ଧନୁକୁ ମୋ ଗଳଦେଶେ ଭରି
ବୁଲାଇଲେ ଅନ୍ତରୀକ୍ଷେ ହେଲି ମୃତପରି ।
ବହୁତ ପ୍ରହାର କଲେ ହୋଇଣ ନିର୍ଦ୍ଦୟ
ଦ୍ରୋହ କରିଅଛି ବୋଲି କହେ ଛକି ଭୟ ।
ଚିତା କୁଟିଦେଲେ ମୋତେ ଧରି ତାଙ୍କ ବଳେ
ପାଣ୍ଡବଙ୍କ ଭୃତ୍ୟ ବୋଲି ଲେଖିଲେ କପାଳେ
ଲକ୍ଷେ ରାଜା ରଣେ ମୋତେ ନ ହୁଅନ୍ତି ସରି
ପାଣ୍ଡବ ଜିଣିବି ବର ଦିଅ ତ୍ରିପୁରାରି ।
ଦେବଶର ମୋ ଅଙ୍ଗରେ ନ କରିବ ବାଧା
କ୍ଷତ୍ରିୟ କୁଳରେ ମୁହିଁ ହେବି ମହାଯୋଦ୍ଧା ।
ପିନାକ ସମାନ ଧନୁ ମୋତେ ଏକ ଦେସି
ଯେଉଁ ଶରେ ପାଣ୍ଡବଙ୍କୁ ପାରିବି ବିନାଶି ।
ଈଶ୍ୱର ବୋଇଲେ ତେବେ ବର ଦେବା ସତ
ଅର୍ଜ୍ଜୁନକୁ ଛାଡ଼ି ତୁହିଁ ଜିଣ ଚାରିଭ୍ରାତ ।
ଅର୍ଜ୍ଜୁନ ସମାନ ମୁହିଁ ନୁହେଁ ସମଯୋଧୀ
ମୋର ବୋଲେ ଅର୍ଜ୍ଜୁନକୁ ନ ପାରିବୁ ସାଧି ।
ଶୁଣ ଜୟଦ୍ରଥ ଏକ ତହିଁର ବିଷୟ
କିରାତ ବେଶରେ ବନେ ଥିଲା ଧନଞ୍ଜୟ ।
ମୋହର ଗୋଟିଏ ଗଣ୍ଡା ବୁଲୁଥିଲା ବନେ
ତାହାକୁ ମାଇଲା କରି ଶରର ସନ୍ଧାନେ ।
କୋପରେ ଧାଇଁଲି ମୁହିଁ କରେ ଧନୁ ଧରି
ଅନେକ ଯୁଦ୍ଧ ହୋଇଲା ତାହାର ମୋହରି ।
ଯୁଦ୍ଧେ ମୁହିଁ ନୋହିଲିଟି ତାର ସମସରି
ଶେଷେ ତାକୁ ବୁଝାଇଲି କଥା ଏହିପରି ।
ନ ମାରି ତୁ ରକ୍ଷାକଲୁ ଆରେ ବୀର ପାର୍ଥ
ତୋତେ ମୁହିଁ ବର ଦେବି ମାଗ ମୋର ସତ୍ୟ
ପାର୍ବତୀ ବୋଇଲେ ହର ଯେଉଁ ବର ଦେବ
ସୁଚିତ୍ତରେ ଦେଲେ ତାହା ପ୍ରାପତ ହୋଇବ ।
ସରୋବରେ ପଶି ମୁହିଁ ସ୍ନାହାନ କରନ୍ତେ
ପାର୍ବତୀ ଅର୍ଜ୍ଜୁନେ ରାଇ କହିଲେ ଏମନ୍ତେ ।
ରକ୍ଷାକଲୁ ବାବୁ ତୁହି ଆମ୍ଭର ଅଗ୍ରତେ
ଅଲୌକିକ ବରଅଛି ଦେବଙ୍କ କି ତୋତେ ।
ବିଷ୍ଣୁ ଯେ ପବନ ଅଗ୍ନି ହୋଇଲେ ନାରାଜ
ତେଣେ ତ୍ରିପୁରକୁ ବଧ କଲେ ଦେବରାଜ ।
ସେହି ଶସ୍ତ୍ର ମାଗ ବୋଲି ବୋଇଲେ ପାର୍ବତୀ
ଅର୍ଜ୍ଜୁନ ମାଗନ୍ତେ ମୁହିଁ ଦେଲି ସେ ଝଟତି ।
ମୁହିଁ ବିଚାରିଲି ଏହା ଜାଣିଲା କେମନ୍ତେ
ପାର୍ବତୀ କହିଲେ ଅବା ଅର୍ଜ୍ଜୁନ ଅଗ୍ରତେ ।
ଯଦି ଦିଆଇଲା ମୋର ପାଶୁପତ ଶର
ମୁହିଁ ଦିଆଇଲି ଯାର ଅସ୍ତ୍ର ଯେବା ସାର ।
ଈଶ୍ୱର କହିଲେ ପାର୍ବତୀଙ୍କ ସନ୍ନିଧିରେ
ତୁମ୍ଭେ ଏହାକୁହିଁ ଦେବଟିକି ଏକ ବରେ ।
ଅର୍ଜ୍ଜୁନକୁ ବର ଯାଚିଲେ ଯେ ଆଦିନାରୀ
ଈଶ୍ୱର ବୋଇଲେ ତୁମ୍ଭେ ଆସ ସ୍ନାନ କରି ।

ଆଦିନାରୀ ଯେତେବେଳେ ସ୍ନାନ କରି ଗଲେ
ଅର୍ଜ୍ଜୁନକୁ ମହାଦେବ ସେ କାଳେ କହିଲେ ।
ଅଗ୍ନିରୁ ବାହାର ହେଲା ଦିବ୍ୟ ମହାତେଜେ
ପଞ୍ଚସସ୍ର ଧନୁବଳ ଧଇଲେକ ଭୁଜେ ।
ଅନଳୁ ଜାତ ଅକ୍ଷୟ ଯେଉଁ ତୂଣ ବେନି
ଦେବତାଏ ଶସ୍ତ୍ରହୀନ ମହାତେଜ ଘେନି ।
ସେହି ତୂଣେ ଶସ୍ତ୍ର ହୋଇ ପଶିଲେ ବୃନ୍ଦାର୍କେ
ଶସ୍ତ୍ର ସବୁ ନ ସରନ୍ତି ବିନ୍ଧନ୍ତେ ବର୍ଷକେ ।
ସେହି ବେନି ତୂଣ ତୁହି ମାଗ ହୋ ଅର୍ଜ୍ଜୁନ
ସ୍ନାନ ସାରି ପାର୍ବତୀ ଯେ ଅଇଲେ ବହନ ।
ପାର୍ବତୀ ବୋଇଲେ ବର ମାଗ ଅରଜୁନ
ଅକ୍ଷ ତୂଣ ବେନି ମୋତେ ଦେବ ହେ ବହନ ।
ଶୁଣିଣ ବିରସ ତହୁଁ ବୋଇଲେ ପାର୍ବତୀ
ତୋହର ସେ ଜ୍ଞାନ ନାହିଁ ବୋଲେ ପଶୁପତି ।
ତୋଷରେ ସେ ଅର୍ଜ୍ଜୁନକୁ ଦେଲେ ଦେବଶର
ପାର୍ବତୀ ବୋଇଲେ ମନ୍ଦ କଲେ ଦେବ ହର ।
ତ୍ରଇଲୋକ୍ୟ ଜେତା ହେଲା ପାର୍ଥ ଧନୁର୍ଦ୍ଧର
ଆପଣାର ବଳବୀର୍ଯ୍ୟେ ଯାଚିଦେଲେ ଶର ।
ଈଶ୍ୱର ବୋଇଲେ ଦେବୀ ନ କଲୁ କି ତୁହି
ମୋର ପାଶୁପତ ଶର ଦିଆଇଲୁ ନେଇ ।
ଏହା ତୁମ୍ଭେ ନ କହିଲ ଯେବେଟି ଆମ୍ଭଙ୍କୁ
କେଭେ ନ ଜିଣିବ ତୁମ୍ଭେ ବୀର ଅର୍ଜ୍ଜୁନକୁ ।
ଈଶ୍ୱର ବୋଇଲେ ଶୁଣ ଆହେ ଜୟଦ୍ରଥ
ଅର୍ଜ୍ଜୁନକୁ କେହି ଆମ୍ଭେ ନୋହୁ ସାମରଥ ।
ଆମ୍ଭେ ନ ଜିଣିବୁ ତୁ ବା ଜିଣିବୁ କେମନ୍ତ
ଅର୍ଜ୍ଜୁନ ମହିମା ହାଦେ ଅଟଇ ଏମନ୍ତ ।
ଦ୍ୱାରକାରେ ଜିଣିଲା ସେ କୃଷ୍ଣ କାମପାଳେ
ସୁଭଦ୍ରାକୁ ଅର୍ଜ୍ଜୁନ ଯେ ଘେନିଗଲା ବଳେ ।
ଅଗ୍ନିଦେବଙ୍କ ଖଣ୍ଡିଲା ଲୁଦୁବୁହୁ ବ୍ୟାଧି
ଖାଣ୍ଡବ ଦହନେ ଗଲେ ହାରି ଅମରାଧି ।
ହିରଣ୍ୟକ୍ଷୀ ବ୍ରହ୍ମାକୁ ସେ ଧରି ଗିଳୁଥିଲା
ବିହିକି ରଖିଣ ପାର୍ଥ ରାକ୍ଷସୀ ବଧିଲା ।
ରାଜସୂୀ ଯଜ୍ଞେ ବିଜୟେ କରିଣ ପାତାଳେ
ନବଦ୍ୱୀପ ସପ୍ତସିନ୍ଧୁ ଧରି ଧନୁହୁଳେ ।
ସୁଗନ୍ଧିକା ହରଣରେ ହନୁମନ୍ତ ବୀର
ପାର୍ଥକୁ ହାରିଛି ଶରେ ବାନ୍ଧିଲା ସାଗର ।
ଉତ୍ତରଦିଗ ବିଜୟେ ସବ୍ୟସାଚୀ ଗଲା
ଜଗନ୍ଜିତା ଜମାଗୋଷ୍ଠେ ବାନ୍ଧିଣ ଆଣିଲା ।
ଧନଞ୍ଜୟର ମହିମା ନ ସରେ କହନ୍ତେ
ମୁଁ ସମ ନୁହେଁ ଯାକୁ ତୁ ଜିଣିବୁ କେମନ୍ତେ ।

ଅନେକ ଦୈତ୍ୟକୁ ବଧ କରିଅଛି ସେହି
ହରିହର ଯୁଦ୍ଧ କରି ହେଲେ ପରାଜୟୀ ।
ଅର୍ଜ୍ଜୁନ ମହିମା ହାଦେ ନ ସରେ କହନ୍ତେ
ଆମ୍ଭେ ସରି ନୋହୁ ତୁହି ଜିଣିବୁ କେମନ୍ତେ ।
ଅର୍ଜ୍ଜୁନ ବୀର ଯେବେ ନ ଥିବେ ସମରରେ
ଚାରି ପାଣ୍ଡବେ ଜିଣିବୁ ତୁହି ଅକ୍ଲେଶରେ ।
ଜୟଦ୍ରଥକୁ ଏମନ୍ତ ବର ଦେଲେ ହର
ଅର୍ଜ୍ଜୁନ ଶରେ ଛିଡ଼ିବ ଜାଣ ତୋର ଶିର ।
ତାହାର ସହିତେ ତୁହି ନୋହିବୁ ବିବାଦୀ
ତେବେ ଜାଣ ଆମ୍ଭ ବର ନିଶ୍ଚେ ହେବ ସିଦ୍ଧି ।
ଜୟଦ୍ରଥ ବୋଲେ ଯେବେ ପାର୍ଥରେ ମରିବି
ମୋର ପିତା ହସ୍ତେ ଶିର ପଡୁ ଭସ୍ମ ହେବି ।
ଈଶ୍ୱର ବୋଇଲେ ତୋର ହେଉ କାର୍ଯ୍ୟସିଦ୍ଧି
ପାର୍ଥ ସଙ୍ଗେ ତୁହି କେବେ ନୋହିବୁ ବିବାଦୀ ।
ଏହି ବର ଦେଇ ଶିବ ଗଲେ ଅନ୍ତର୍ଦ୍ଧାନେ
ସିନ୍ଧୁ ଦେଶେ ଜୟଦ୍ରଥ ଗଲା ତୋଷମନେ ।
ଜୟଦ୍ରଥ ପିତା ନାମ ସୁରଥ ନୃବର
ପୁତ୍ରେ ରାଜ୍ୟ ଦେଇ ହେଲା ସେହୁ ଦେଶାନ୍ତର
ତପେ ବସିଲା ସେ ଯାଇ ଉଦ୍ରାଙ୍କୁର ତୀରେ
ଆସନ ଶୁଦ୍ଧି କରିଣ ବସିଲା ତପରେ ।
ବହୁ କଷ୍ଟେ କାମ କ୍ରୋଧ ତେଜି ବାୟୁ ଭକ୍ଷି
ବହୁଭୂତେ ଲୟକରି ଭଜେ ଅଷ୍ଟଆଖି ।
ଶୁଣ ହୋ ଜୟଦ୍ରଥର ଚରିତ ଏମନ୍ତ
ପାଣ୍ଡବେ ବିବାଦୀ ହେଲା ସିନ୍ଧୁ ନରନାଥ ।
ହସ୍ତିନା ସଭାକୁ ପୁଣି ଗଲା ଜୟଦ୍ରଥ
ପାଣ୍ଡବ ଭୃତ୍ୟ ବୋଲିଣ ଚିତା ତାର ମାଥ ।
ଅନେକ ଝିଙ୍ଗାସ କରି କହିଲେ କୌରବେ
ଜାନୁତଳେ ଗଳାଇଣ ଛାଡ଼ିଲେ ପାଣ୍ଡବେ ।
ଧିକ ଜୟଦ୍ରଥ ତୋର ଜୀବନ ସମର୍ଥ
ଜୟଦ୍ରଥ ବୋଲେ ମୁହିଁ ରଖିବି ତୁମ୍ଭନ୍ତ ।
ଈଶ୍ୱରଙ୍କୁ ସେବାକରି ପାଇଅଛି ବର
ଅର୍ଜ୍ଜୁନକୁ ଛାଡ଼ି ଚାରିଭାଇ ମୋ ଭାଗର ।
ଶୁଣି କଉରବେ ତାକୁ କଲେ ଗଉରବ
ବୋଇଲେ ଭୀମକୁ ଡର ଆଉ କେ ଜିଣିବ ।
ତୁ ଯେବେ ସମରେ ଜିଣି ପାରିବୁ ଭୀମକୁ
ଆଉ ସମାନ ନୋହିବ ଜାଣ କେ ଆମ୍ଭଙ୍କୁ ।
ଉପହାସ ମାନ ତହୁଁ ସର୍ବେ କଲେ ତେଜ୍ୟା
ମହାରଥୀ ସମାନରେ ତାକୁ କଲେ ପୂଜା ।
ଶୁଣ ହେ ରାଜନ ଜୟଦ୍ରଥର ଏ ରୀତି
ବର ପ୍ରାପ୍ତ ହୋଇ ନିଜ ରାଜ୍ୟେ କଲା ସ୍ଥିତି ।

କୁରୁଙ୍କ ସହିତେ ତାର ହେଲା ସଖ୍ୟଭାବ
ଶୁଣ ଆହେ ବୈବସ୍ୱତ କହେ ମନୁଦେବ ।
ଜୟ ଜୟ ଜଗନ୍ନାଥ ନୀଳାଚଳ ବାସୀ
ବାରାନିଧି ତଟେ ପ୍ରଭୁ ସ୍ୱରୂପ ପ୍ରକାଶି ।
ମୋହଠାରେ ସଦା କୃପା ଥାଉ ଶିରୀପତି
ଶାରଳାଦାସ ଅନ୍ତିମେ ମାଗେ ଗତିମୁକ୍ତି ।

■ ■ ■

## ମୁଦ୍‌ଗଲ ଋଷି ସଗର ରାଜା ହୋଇ ଜନ୍ମ ଓ ସଗରଙ୍କ ଷାଠିଏ ସହସ୍ରପୁତ୍ର କପିଳ ଋଷିଙ୍କ କ୍ରୋଧାନଳରେ ଦହନ

ଏଥୁଅନ୍ତେ ବୈବସ୍ୱତ ମନୁ ନରନାଥ
ଅଗସ୍ତିଙ୍କୁ ପୁଚ୍ଛାକଲେ ଯୋଡ଼ି ବେନିହସ୍ତ ।
ହେ ମୁନି ଏହା ଉତ୍ତାରୁ ହେଲା କେଉଁ କଥା
ସେ ସର୍ବ ବିଷୟ କହି ଫେଡ଼ ମନୁବ୍ୟଥା ।
ରାଜାର ବିନୟ ବାକ୍ୟ ଶୁଣି ମୁନିବର
ବୋଇଲେକ ଏକମନେ ଶୁଣ ଦଣ୍ଡଧର ।
ପାଣ୍ଡବେ ଯେ ରହିଛନ୍ତି କୁଣ୍ଡଳୀ ପର୍ବତେ
ଅଠାଶୀ ସହସ୍ର ଋଷି ଅଛନ୍ତି ସଙ୍ଗତେ ।
ସେମାନଙ୍କୁ ଫଳମୂଳ ବହୁ ଯୋଗାଇଲେ
ସେହି ଠାବରୁ ପାଣ୍ଡବେ ବିଜେ କରିଗଲେ ।
ଚଳନ୍ତି ପାଞ୍ଚପାଣ୍ଡବେ ନଇର୍ଋତ କୋଣେ
ପ୍ରବେଶ ହୋଇଲେ ଯାଇଁ ଗୟାବଟ ସ୍ଥାନେ ।
ବହଇ ଗଙ୍ଗାଯମୁନା ଆଉ ସରସ୍ୱତୀ
ତ୍ରିବେଣୀ ସଙ୍ଗମେ ଏକ ମୂର୍ତ୍ତିରେ ବହନ୍ତି ।
ଯୁଧିଷ୍ଠି ଦେବ ଦେଖିଣ ଅତି ତୋଷଚିତ୍ତେ
ମାରକଣ୍ଡ ଋଷିଙ୍କି ଯେ ପୁଚ୍ଛନ୍ତି ଏକାନ୍ତେ ।
ବଡ଼ ଆଶ୍ଚର୍ଯ୍ୟ ମଣୁଛି ଆହୋ ମାରକଣ୍ଡ
ତିନି ନଦୀ ବହୁଛନ୍ତି ହୋଇ ଏକରୁଣ୍ଡ ।
ଏକନଦୀ ବହଇ କି ତିନିଧାର ମୂର୍ତ୍ତି
ସଙ୍ଗମ ହୋଇ ପଶ୍ଚିମେ ବହେ ସରସ୍ୱତୀ ।
କେଉଁ ତୀର୍ଥ ଏହା ଅଟେ କହ ମାରକଣ୍ଡେ
ପବିତ୍ର ସ୍ଥାନର ପ୍ରାୟେ ଦିଶଇ ବ୍ରହ୍ମାଣ୍ଡେ ।
ମାରକଣ୍ଡ ବୋଇଲେକ ଶୁଣ ଯୁଧିଷ୍ଠିର
ଏହି ଅଟେ ବାରାଣସୀ କ୍ଷେତ୍ରମଧ୍ୟେ ସାର ।
ପୂର୍ବର ଯେ ବାଣୀ ଆମ୍ଭେ କହିବା ବିଶେଷି
ଏକମନେ ଶୁଣ ତୁମ୍ଭେ ପଣ୍ଡୁରାଜା ଶିଷି ।
ଏଥିର ମହିମା କହେ ତୁମ୍ଭର ଆଗର
ଏ ତୀର୍ଥ ମହିମା ତୁମ୍ଭେ ଶୁଣ ଯୁଧିଷ୍ଠିର ।
ସଉରୀ ସତ୍ୟଯୁଗରେ କଶ୍ୟପଙ୍କ ଗୋତ୍ର
କଶ୍ୟପଙ୍କ ସୁତ ସୁମନ୍ତକ ପୁରୋହିତ ।
ଉଦ୍ଧାଳକ ତପୋବନ୍ତ ସୁମନ୍ତକ ସୁତ
ଏହାର ପୁତ୍ର ହୋଇଲା ନାମ ଅଜମିତ୍ର ।
ଅଜମିତ୍ରର କୁଣ୍ଡଳ ନାମେ ପୁତ୍ର ହେଲା
ସ୍ଥୂଳଋଷି କୁଣ୍ଡଳଙ୍କ ନନ୍ଦନ ହୋଇଲା ।
ସ୍ଥୂଳଋଷିର ନନ୍ଦନ ଅନନ୍ତ ବ୍ରାହ୍ମଣ
ଅନନ୍ତର ପୁତ୍ର ନାମ ମୁଦୁଗଲ ଜାଣ ।
ପନ୍ଦର ଦିବସେ ସେହି ବେଳେକ ଭୁଞ୍ଜଇ
ଶକଟ ବାଟରେ ବସି ଧାନ ସାଉଁଟଇ ।
ପନ୍ଦରଦିନେ ବେଳେକ ଆହାର ସେ ସଞ୍ଚି
ତାହା ଦ୍ୱାଦଶୀରେ ଖାଇ ରହୁଥାଇ ବଞ୍ଚି ।
ପୁନଶ୍ଚ ସାଉଁଟୁ ଥାଇ ଦ୍ୱାଦଶୀ ପର୍ଯ୍ୟନ୍ତେ
ଏହିରୂପେ କଠୋରରେ ଚଳଇ ନିରତେ ।
ଏହିପରି ଚୌରାନବେ ଅୟୁତ ବରଷ
ବାରାଣସୀ ପୁରେ ରହି କଲା ସେ ହବିଷ୍ୟ ।
ଉତ୍କଳ ପୁରରେ ତାର ଅଟେ ନିଜ ବାସ
ସେହିଠାରୁ ବାରାଣସୀ ପଞ୍ଚସସ୍ର କ୍ରୋଶ ।
ଚଳେ ମୁଦୁଗଲ ଋଷି ସଂକଳପ ମନେ
ନଗ୍ର ତେଜିଣ ପଶିଲା ସେହୁ ଘୋରବନେ ।
ଯାଉଁ ଯାଉଁ ମିଳିଲା ସେ ଉଜାଣି ବନସ୍ତେ
ଘର ଗ୍ରାମ ନାହିଁ ନଦୀ ବହେ ଏକପଥେ ।
ତା ମଧ୍ୟେ କଣୟ ବୋଲି ଏକଇ ବନସ୍ତ
ସେ ବନ ଭିତରେ ଅଛି କଣୟ ପର୍ବତ ।
ସେ ପର୍ବତ ତଳେ ବାରାଣସୀ ବାଟ ପୁଣି
ମେନକା ଥାଇଟି ତହିଁ ପରଦାରାୟଣୀ ।
ନନ୍ଦକୀ ନାମରେ କନ୍ୟା ତା ହିରଣ୍ୟକେଶୀ
ଦିଶେ ରୂପ ତାର କିବା ରମ୍ଭାର ସଦୃଶୀ ।
ବିଚିତ୍ର ମନ୍ଦିରେ କରିଥାଇ ସେ ଆସନ
ଶଏଯୁଣ ପରିଯନ୍ତେ ନାହିଁ ଘର ଗ୍ରାମ ।
ମହାରଣ୍ୟ ଭିତରେ ଯେ ତାହାଙ୍କ ଆଶ୍ରମ
ତପୀଙ୍କର ଭାଙ୍ଗେ ସେହୁ ସବୁ ଧର୍ମ କର୍ମ ।
ସେହି କାଳରେ ରାଜନ ଅଟଇ ଯଯାତି
ସପ୍ତସିନ୍ଧୁ ନବଦ୍ୱୀପେ ସେହୁ ଚକ୍ରବର୍ତ୍ତୀ ।
ଦୈତ୍ୟ ଭୂତ ପିଶାଚଙ୍କ ଉପଦ୍ରବ ନାହିଁ
ଦୁଷ୍ଟେ ଚୌର୍ଯ୍ୟବୃତ୍ତ କଲେ ନ ବର୍ତ୍ତନ୍ତି କେହି
ସେ ରାଜ୍ୟେ ବ୍ୟାଘ୍ର ଭାଲୁଙ୍କ ନାହିଁ ଉପଦ୍ରବ
ଯେ ଯାହା ଇଚ୍ଛାଏ ସୁଖେ ରହିଛନ୍ତି ସର୍ବ ।
କେହି କାରେ ଅମାନ୍ୟ ନ କରେ ରାଜ ତେଜେ
ବାହୁବଳେ ତ୍ରିଭୁବନ ପାଳେ ମହାରାଜେ ।

ନିଖର୍ବବନେ ରହିଛି ସେ ହିରଣ୍ୟକେଶୀ
ପ୍ରୟାଗ କାଶୀର ଲୋକେ ମହାକୂଟ ଭାଷୀ ।
ତେରଯୂଣ ପରିଯନ୍ତେ ଘର ଗ୍ରାମ ନାହିଁ
ଶ୍ରମେ ତୀର୍ଥବାସୀ ତାର ଆଶ୍ରମେ ରହଇ ।
ବିଚିତ୍ର ସୁସଞ୍ଚ ଅଟେ ତାର ପୁର ଗୋଟି
ଚନ୍ଦନ ଛେରା କର୍ପୂରେ ବାସଇ ଚହଟି ।
ତାର ଘରେ ଯେଉଁ ଜନ ବିଶ୍ରାମଇ ପୁଣି
ସୁଖେ ତୀର୍ଥ କରେ ତାର ଦୁଃଖ ନୋହେ ଜାଣି
ଶ୍ରମେ ଯେବେ ବସଇଟି ତାହାର ପିଣ୍ଡାରେ
ଯାଇ ନ ପାରଇ ଆଉ କାଶୀ କ୍ଷେତ୍ରବରେ ।
ମହାଶ୍ରମ ପାଇ ସେହି ମୁଦ୍‌ଗଲ ବ୍ରାହ୍ମଣ
ବିଶ୍ରାମ ନେଲା ଯାଁ ତା ପିଣ୍ଡାରେ ବସିଣ ।
ଦେଖିଣ ସାନନ୍ଦ ହେଲା ସେ ହିରଣ୍ୟକେଶୀ
ରତ୍ନାଝରିରେ ସଲିଳ ପୂରାଇଣ ଆସି ।
ମୁଦୁଗଲ ପଣ୍ଡାଙ୍କର ଚରଣ ପଖାଳି
ବସନେ ପୋଛିଲା ତାଙ୍କ ଚରଣଙ୍କୁ ବାଳୀ ।
ଫୁଲ ଚନ୍ଦନେ କରିଲା ତାଙ୍କ ପାଦପୂଜା
ଯତ୍ନେ ଖଟାଇଲା ନେଇ ବହୁ ପରିଚର୍ଯ୍ୟା ।
ମୁଦୁଗଲ ବ୍ରାହ୍ମଣକୁ ପଚାରେ ଗଣିକା
ଏ ଘୋର ଅରଣ୍ୟେ କିପାଁ ଯାଉଥିଲ ଏକା ।
ଏଥୁ ଏଣିକି ଯିବାକୁ ଦୁର୍ଗମ ଏ ଭୂମି
ବ୍ୟାଘ୍ର ଭାଲୁ ଭୟ ଏଣେ କେହ୍ନେ ଯିବ ଗମି ।
ଭଲ କରିଲ ଏଥକୁ ଅଇଲ ପଣ୍ଡାଏ
ପାଇବା ପର୍ଯ୍ୟନ୍ତ ସଙ୍ଗ ରହ ଏହିଠାଏ ।
ବିନୟ ବଚନ କହି ହୋଇ ପରଣାମି
ଭୁଲାଇ ରୁହାଇଲା ସେ ଦ୍ୱିଜକୁ ଛଦ୍ମମି ।
ବହୁ ଅଳଙ୍କାର ପିନ୍ଧି ସେ ହିରଣ୍ୟକେଶୀ
ଏରୁଣ୍ଡିରେ ପାଦ ଦେଇ ଚାହେଁ ହସି ହସି ।
ଲଳିତ କରିଣ କହେ ଓଢ଼ଣି ସେ ଦେଇ
ସୁବର୍ଣ୍ଣ ଚୂଡ଼ୀ ହସ୍ତରେ ଥିବାର ଦେଖାଇ ।
ମାତାକୁ ବୋଲଇ ଆଲୋ ଫୁଟାହରିବେଳେ
ଅକାରଣେ କେତେକରି ବଧାଉ କଟାଳେ ।
ବାହରେ ନ ଥାନ୍ତୁ ସେ ଆସନ୍ତୁ ଭିତରକୁ
ପରମାଦ ହେଲେ ହତ୍ୟା ଲାଗିବ ଆମ୍ଭଙ୍କୁ ।
ଏଥେ ରହିଛନ୍ତି ବ୍ୟାଘ୍ର ଭଲ୍ଲୁକ ବହୁତ
ଭିତରକୁ ଆସ ଏବେ ସୂର୍ଯ୍ୟହେଲା ଅସ୍ତ ।
ପଣ୍ଡାଏ ଚାହିଁଲେ ସେହି ଗଣିକାର ମୁଖ
ଭେଦିଲା ମରମେ ତାଙ୍କ କାମର ଶାୟକ ।
ଭୁବନ ମୋହିନୀ ଛଡ଼ା କେହି ନାହିଁ ପାଶେ
ମୁଦ୍‌ଗଲ ପଣ୍ଡା ଚଳିଲେ ତା ବାକ୍ୟେ ହରଷେ
ରତ୍ନଦିହୁଡ଼ି ଗୋଟିଏ ଆଣିଲା ଛାମୁକୁ
ପଣ୍ଡାଙ୍କ ହାତ ଧରିଣ ନେଲା ଭିତରକୁ ।
ମଧ ଅଗଣାକୁ ନେଇ ବାସଜଳ ଆଣି
ରତ୍ନପିଢ଼ାରେ ତାହାଙ୍କୁ ବସାଇ ସିହାଣୀ ।
ତିଳ ଅଏଁଳା ତାହାଙ୍କ ଶରୀରେ ବୋଳିଲା
ସୁଗନ୍ଧ ତଇଳେ ତାଙ୍କ କେଶ ସାମଳିଲା ।
ରତ୍ନଗରାରେ ପନୀର ନୀର ଘେନି ଢାଳି
ଅଙ୍ଗ ପଖାଳିଲା ଯତ୍ନେ ପଣ୍ଡାର ସେ ବାଳୀ ।
ପାଟ ବସନେ ତାହାଙ୍କ ଅଙ୍ଗ ଦେଲା ପୋଛି
ଆଲଟ ଗୋଟିଏ ଧରି ଧୀରେ ଧୀରେ ବିଞ୍ଚି ।
କଷାବସନ ତାହାର ଦେଲା ପାଲଟାଇ
ଦେବାଙ୍ଗ ବସନ ଆଣି ପିନ୍ଧାଇଲା ନେଇ ।
ଚନ୍ଦନ ଲେପନ କଲା ତାଙ୍କ ଦେହଗୋଟି
ଫୁଲେ ମଣ୍ଡାଇଲା ବାସ ଉଠଇ ଚହଟି ।
ମୃଗମଦ କସ୍ତୁରୀକୁ ଦ୍ୟନ୍ତେ ଅଙ୍ଗେ ଲେପି
ତପୀବ୍ରତ ଛାଡ଼ିଗଲା ହେଲା କାମରୂପୀ ।
ହଂସୁଲୀ ତୁଳିରେ ନେଇ ବସାଇ ପଣ୍ଡାଙ୍କୁ
ସୁଗନ୍ଧପୁଷ୍ପେ ବନ୍ଧନ କଲା ତା କେଶକୁ ।
ପାଟ ଖଣ୍ଡୁଆ ବିଛଣା ନେତର ମୁଚୁଳି
ଚନ୍ଦ୍ରାତପ ଟାଣି ସିଞ୍ଚି କର୍ପୂରର ଧୂଳି ।
ତହିଁରେ ବସାଇ ତାକୁ କଲା ସୁଖଭୋଗୀ
ବେଶ ଭୂଷଣ ଦିଅନ୍ତେ ହେଲା ଦେହେ ଲାଗି ।
ହୀରା ଜଡ଼ିତ ମୁକୁତା ମାଣିକ୍ୟର ମାଳି
ଦ୍ୱିଜଗଳେ ଲମ୍ବାଇଲା ଆଣି ସେହି ବାଳୀ ।
ହୃଦେ ପଦକ ହସ୍ତରେ ମୁଦ୍ରିକା କଙ୍କଣ
ବାହୁଟି ତାଡ଼ ତୋଡ଼ରେ କରିଲା ଭୂଷଣ ।
ଅପାର ଅଷ୍ଟରତ୍ନରେ ମଣ୍ଡିଲା ତା କାୟେ
ଦିଶେ ମୁଦୁଗଲ ପଣ୍ଡା ନରପତି ପ୍ରାୟେ ।
କରେ ଏକ ଅର୍ଘ୍ୟ ଘେନି ସେ ହିରଣ୍ୟକେଶୀ
ପଣ୍ଡାଙ୍କର ଶିରେ ତାହା ବନ୍ଦାଇଲା ଆସି ।
ମାନିନୀ ରୂପ ଧରିଣ ପ୍ରଣାମ କରିଲା
ପଣ୍ଡାଙ୍କ ଭୋଜନକୁ ସେ ସଞ୍ଚା ଆଣିଦେଲା ।
ହାଣ୍ଡିଯେ ତଣ୍ଡୁଳ ମୁଗ ଆଉ ରମ୍ଭାପତ୍ର
ଦଧି ଶାକର ସଙ୍ଗରେ ଦୁଧ ଗୁଆଘୃତ ।
ପଣ୍ଡାଙ୍କର ସନ୍ନିଧିରେ ଥୋଇଲାକ ନେଇ
ରାନ୍ଧଣା ବିଧାନ ଏବେ କରନ୍ତୁ ଗୋସାଇଁ ।
ପଣ୍ଡାଏ ବୋଇଲେ ଆମ୍ଭେ ଅଟୁ ପକ୍ଷଭୋଜି
ବେଶ୍ୟା ବୋଲେ ବାତୁଳ କି ହେଲ ସୁଖତେଜି
ସର୍ବଦା ପ୍ରାଣୀମାନଙ୍କୁ ନୁହଇ ଯେ ଦୁଃଖ
ସବୁବେଳେ ପ୍ରାଣୀଙ୍କର ନ ଥାଇଟି ସୁଖ ।

ସଦା ସମ୍ପଦ ବିପଦ ନ ଘଟଇ ଆସି
କାଳବଶେ ପ୍ରାଣୀ ତାହା ଭୋଗ କରେ ବସି ।
ଦିବସେକ ହୋଇ ପୁଣି ରାତ୍ରେକ ହୁଅଇ
ସମ୍ପଦ ବିପଦ ଜାଣ ଏମନ୍ତ ଅଟଇ ।
ଦୁଃଖକାଳ ଗଲା ସୁଖ ଭୋଗ କର ଏବେ
ବେଳ ଜାଣି ଭୋଗ କର ଏବେ ଇଚ୍ଛାଭାବେ ।
ଜାଣ ଆମ୍ଭେ ଦେବସ୍ତିରୀ ଅଟୁ ଅଭିଶାପୀ
ଦୂଷିତ ନ ହୋଇ ବନେ ରହିଛି ଅଦ୍ୟାପି ।
ପୁରୁଷେ ପ୍ରୀତି କରିବି ନାହିଁ ଏ ନିମନ୍ତେ
ସର୍ବଦ୍ୱନ୍ଦ୍ୱ ତେଜ୍ୟାକରି ପଶିଲି ବନସ୍ତେ ।
ଆମ୍ଭର କଷଣ ଦେଖ ଦଇବ ଲିଖିତ
ମୁଦୁଗଲ ପଣ୍ଡାଙ୍କର ହୋଇଲୁ ଆଶ୍ରିତ ।
ହେ ପଣ୍ଡା ତୁମ୍ଭ ବଦନ ଚାହେଁ ଯେତେବେଳେ
ସତୀତ୍ୱ ଗଲା ଦୂଷିତା ହେଲି ସେତେବେଳେ ।
ଭୋ ଦୈବ ପୁରୁଷ ତୁହି ଏହି କୃତ୍ୟ କଲୁ
ଧିକ ପୋଡୁ ପୋଡୁ କିପାଁ ସ୍ତିରୀ ଜନ୍ମ ଦେଲୁ ।
ବହୁ ବହୁ ବିଳପଇ ସେ ହିରଣ୍ୟକେଶୀ
କୋଳକରି ଧଇଲେକ ପଣ୍ଡା ଉଠିଆସି ।
ଆକର୍ଷିଣ ଦ୍ୱିଜବର ସେ ଚାରୁହାସିନୀ
ପଲ୍ୟଙ୍କ ଉପରେ ତାଙ୍କୁ ବସିଲେକ ଘେନି ।
ରହ ରହ ପ୍ରିୟସହି ଶୋକ କିପାଁ କରୁ
ପଶିଲୁ ତୋ କଥାରେ ତୋ ମନବାଞ୍ଛା ପୂରୁ ।
ରାନ୍ଧିଦିଅ ଅନ୍ନ ଆମ୍ଭେ କରିବୁ ଭୋଜନ
ତୋର ଏ ବଚନ ଶୁଣି ବଇକୁଳ୍ୟ ମନ ।
ଛାଡ଼ିଲେ ପଣ୍ଡା ପକ୍ଷକ ଭୋଜନର ବ୍ରତ
ବେଶ୍ୟା ରନ୍ଧନ ଭୁଞ୍ଜିଣ ତୋଷକଲେ ଚିତ୍ତ ।
ଆଚମନ ସାରିଣ ସେ ବସିଲେ ଆସନେ
ତାମ୍ବୁଳ ଖୁଆଇ ଦେଲା ତାହାଙ୍କୁ ଯତନେ ।
ଦିବ୍ୟପଲ୍ୟଙ୍କ ଉପରେ ପୁଷ୍ପ ଶେଷ ପାଡ଼ି
କର୍ପୂରର ଧୂଳି ନେଇ ତାପରେ ଛିଞ୍ଚାଡ଼ି ।
ମାଣିକ୍ୟ ଦୀପ ଜଳଇ ପଲ୍ୟଙ୍କ ଚୌକତି
ଶୟନକରି ବ୍ରାହ୍ମଣ ତୋଷ କଲା ମତି ।
ପରିବାରୀମାନେ ତହିଁ ଅନ୍ୟସ୍ଥାନେ ଗଲେ
ହିରଣ୍ୟକେଶୀ ତାହାଙ୍କ ସଙ୍ଗରେ ଉଠିଲେ ।
ଧାତିକାରେ ଦ୍ୱିଜ ବୋଲେ ରହ ପ୍ରିୟବତୀ
ଦ୍ରହସିତ ବେଶ୍ୟାହସ୍ତ ଧଇଲା ତଡ଼ତି ।
କୋଳକରି ଧଇଲା ସେ ହିରଣ୍ୟ କେଶୀକି
ମୁଖେ ଚୁମ୍ବନ ଦେଇଣ ଭାଷଇ ବାଣୀକି ।
ମିଛେ ମିଛେ ଘୁଞ୍ଚି ଘୁଞ୍ଚି ସୁନ୍ଦରୀ ଚଳଇ
ମୃଦୁଗଲ ପଣ୍ଡା ତାର ଅଞ୍ଚଳ ଝିଙ୍କଇ ।
ମାୟାରେ ହିରଣ୍ୟକେଶୀ ସ୍ମରେ ଶିବ ଶିବ
ଲୋଭ ନ କର ପଣ୍ଡା ମୋ ଧର୍ମ ନାଶଯିବ ।
ମୁଦ୍‌ଗଲ ବୋଲେ ମୁଁ ତପୀ ତୁମ୍ଭେ ତପିଆଣୀ
ଦୁଇକୁଳ ଅନାଚାରୀ ଏବେ ହୋଇଲୁଣି ।
ସ୍ୱଦାରାଏ ଯତି ଆଉ ସ୍ୱପୁରୁଷେ ସତୀ
ଶାସ୍ତ୍ରରେ ଲେଖାଅଛି ଯେ ଏସନ ଉକତି ।
ଶୁଣ ଚଇତନ ଦ୍ୱିଜେ ବାରାଣସୀ ଗଲେ
ସବୁ ଆଶା ଛାଡ଼ି ମୁକ୍ତି ପଥରେ ପଶିଲେ ।
ଏରୂପେ ମୁଦ୍‌ଗଲ ସେହି ବେଶ୍ୟାକୁ କହିଲେ
ସେ ଚତୁରୀ ନାରୀ ଲଜ୍ଜା ପାଇଣ ରହିଲେ ।
ପୁରୁଷ ବଳ କଲେ କି ସ୍ତିରୀ ଯିବ ବଳି
ବିଡ଼ମ୍ବନା କଲେ ଧର୍ମ ତେଜି ତପଶାଳୀ ।
ହିରଣ୍ୟକେଶୀକି ପଣ୍ଡା କହିଲେ ଏ ଗିର
ଜପମନ୍ତ୍ର ବ୍ରତପଣ ସରିଲା ମୋହର ।
ବିଶେଷରେ ସେ ଗଣିକା ଅଟଇ ଚତୁରୀ
ବ୍ରାହ୍ମଣ ତୁଲେ ବହୁତ କହେ ହସି କରି ।
ମୁଖେ ମୁଖ ଦେଇ ଚୁମ୍ବଦ୍ୟନ୍ତେ ଅନର୍ଯ୍ୟାପ
ମୁଦ୍‌ଗଲ ବୋଲେ ଆମ୍ଭର କି ଛାର ଗୋ ତପ
କେଶବାସ ମ୍ଳାନ ବଡ଼ ଉପବାସ ଦୁଃଖ
ମର୍ତ୍ତ୍ୟମଣ୍ଡଳେ ଜନ୍ମିବା ଅଟେ ଏଡ଼େ ସୁଖ ।
ରଙ୍ଗରସର ସୁସ୍ୱାଦୁ ସୁକୃତର ଭୋଗୀ
ଏଡ଼େ ସୁଖ ତେଜି କିସ ସାଧୁଥାନ୍ତି ଯୋଗୀ ।
ବେଶ୍ୟାରସ ମହାରସ ପାଇଣ ବ୍ରାହ୍ମଣ
ପୋଡୁ ତପ ଜପ ମୋର ପ୍ରାଣ ଅକାରଣ ।
ଅନେକ ରସରଙ୍ଗ ସେ ଦିଅଇ ନାଗରୀ
ବ୍ରାହ୍ମଣେ ଭୁଞ୍ଜାଏ ପାନ ଚରବଣ କରି ।
ବେଶ୍ୟା ଉଚ୍ଛିଷ୍ଟ ଭୁଞ୍ଜିଲା ବ୍ରାହ୍ମଣ ମୁଦ୍‌ଗଲ
ତପୋଧନ ହୋଇ ବେଶ୍ୟାଭାବେ ହେଲା ଭୋଳ
ସରିଲା ଜାତି ସ୍ୱଧର୍ମ ପ୍ରେମ କୁତୂହଳେ
ମଜ୍ଜି କାମରସେ ଦ୍ୱିଜ ଫାନ୍ଦରେ ପଡ଼ିଲେ ।
ହେଳାରେ ମୁଦୁଗଲଙ୍କ ତପ ଗଲା ନାଶ
କାମରସେ ବୁଡ଼ିବାରୁ ସର୍ବ ହେଲା ଧ୍ୱଂସ ।
ବେଶ୍ୟା ଭାବରେ ପଶଇ ଯେବଣ ପୁରୁଷ
ଧର୍ମନାଶ ଯାଏ ଶେଷେ ହୁଏ ନର୍କେ ବାସ ।
ଏଡ଼େ ଧର୍ମୀ ପକ୍ଷକେ ଯେ ବେଳେକ ଭୁଞ୍ଜଇ
କାମଲାଳସେ ଦ୍ୱିଜ ସେ ସମସ୍ତ ତେଜଇ ।
କାମ ବୋଲିକରି ଅଟେ ଯେଉଁ ମାୟାପଣ
ପଡ଼ିଲା ମଦନ ଭୋଳେ ମୁଦ୍‌ଗଲ ବ୍ରାହ୍ମଣ ।
ବେଶ୍ୟା ବୋଲେ ସବୁସୁଖ ଆହାର ବିହାରେ
ଏହାଛଡ଼ା ଆଉ କିସ ଅଛି ଏ ସଂସାରେ ।

ଏଡ଼େ ସୁଖ ଛାଡୁଥିଲ ତୁମ୍ଭେ ଅକାରଣ
ଏବେ ମୋହର ବଚନ ମନ ଦେଇ ଶୁଣ ।
ସ୍ନାନ ଶଉଚ ହୋଇଣ ଆଜ ଦେବି ରାନ୍ଧି
ସୁସ୍ୱାଦୁ ସୁପକ୍ୱ ହେବ ସେହୁ ନଳବିଧି ।
କୃଟପଶାରେ ପକାଇ ତପ କଲେ ନଷ୍ଟ
ଭୁଞ୍ଜିଲେ ମୋର ରାନ୍ଧଣା ହୋଇବ ସନ୍ତୁଷ୍ଟ ।
ରାନ୍ଧିବାଢ଼ିଣ ତୁମ୍ଭଙ୍କୁ ପରଷିବି ମୁହିଁ
ଏଡ଼େ ସୁଖ ତେଜୁଥିଲ ତୁମ୍ଭେ କାହିଁପାଇଁ
ମୁଦ୍‌ଗଲପଣ୍ଡା ବୋଇଲେ ପଡ଼ିଲି ତୋହସ୍ତେ
କଲି ସନମତ ରାନ୍ଧି ଭୁଞ୍ଜାଅ ତୁ ମୋତେ ।
ଧାତିକାରେ ଶୌଚହୋଇ ସେ ହରିଣ୍ୟକେଶୀ
ସୁପକ୍ୱ ସୁସ୍ୱାଦୁ ରାନ୍ଧି ଦ୍ୱିଜକୁ ପରଷି ।
ଭୁଞ୍ଜାଇ ପ୍ରେମରେ ସେହି ମୁଦ୍‌ଗଲ ବ୍ରାହ୍ମଣ
ଦିନେ ସେ ବେଶ୍ୟା ବସିଣ ଦ୍ୱିଜ ସନ୍ନିଧାନ ।
ଏକପତ୍ରରେ ଭୋଜନ କରିଲେକ ବେନି
ପଣ୍ଡାଙ୍କର ତୁଣ୍ଡେ ଦେଲା ଗଣ୍ଡାଏକ ଘେନି ।
ବେଶ୍ୟା ହସ୍ତରେ ଭୁଞ୍ଜିଣ ଗଲା ସବୁଧର୍ମ
ବହୁ ଆୟୁ ଥିଲେ ଅଳ୍ପେ ଘେନିଯାଏ ଯମ ।
ତିନି ବରଷରେ ତହିଁ ମୁଦୁଗଲ ମଲେ
ବାନ୍ଧି ଯମଦୂତେ ତାକୁ ଯମପାଶେ ନେଲେ ।
ଅନେକ ଅବସ୍ଥାମାନ ଦେଲେ ବ୍ରାହ୍ମଣକୁ
ଯମ ବୋଇଲେ ତାହାକୁ ନ ଆଣ ଛାମୁକୁ ।
ଧାର୍ମିକେ ବୋଇଲେ ଭଲ ଦ୍ୱିଜ ଏ ଅଟଇ
ଆପଣ ବିଚାର କର ପାପପୁଣ୍ୟ ଦୁଇ ।
ମୁଦୁଗୁଲ ବହୁକଷ୍ଟେ ବ୍ରତ ସାଧୁଥିଲା
ପକ୍ଷକରେ ବେଳେ ଅନ୍ନ ଭୁଞ୍ଜେ ରଷିବଳା ।
ଏଡ଼େବଡ଼ ବ୍ରତାଚାରୀ ଜ୍ଞାନ ହେଲା ଧ୍ୱଂସ
ଶୁଣି ଯମରାଜା ତାକୁ ଡକାଇଲେ ପାଶ ।
ବ୍ରାହ୍ମଣକୁ ଘେନି ଯମଗଣ ଗଲେ ଧ୍ୱଂସି
ଯମ ଆଜ୍ଞାପାଇ ଦ୍ୱିଜେ ଅଗ୍ରେ ଘେନିଆସି ।
ଯମ ବୋଇଲା ହୋ ସତ ଏଡ଼େକ ବ୍ରାହ୍ମଣ
ବେଶ୍ୟା ସହବାସେ ନାଶ କଲା ବଡ଼ପଣ ।
ଯମ ବୋଇଲା ବ୍ରାହ୍ମଣ ଜନ୍ମ ଏହିକ୍ଷଣି
ଜାତିସ୍ମର ହୋଇବ ଏ ଜନ୍ମିଲେ ଧରଣୀ ।
ଦୂତଙ୍କୁ ବୋଇଲେ ତହୁଁ କାଳ ଦଣ୍ଡଧର
ପଣ୍ଡାଙ୍କୁ ଜାତ କରାଅ ଶୃଗାଳୀ ଗର୍ଭର ।
ଶୃଗାଳ ହୋଇଣ ଜନ୍ମ ଏ ମର୍ତ୍ତ୍ୟଭୁବନ
ଗୋମାଂସ ଭକ୍ଷଣ କରୁ ଏହି ପ୍ରତିଦିନ ।
ନାଶକର ବଚନରେ କାଳ ଯେ ବିକାଳ
ଧାତିକାରେ ଧଇଲେ ଯେ ବ୍ରାହ୍ମଣର ବାଳ ।
ବ୍ରାହ୍ମଣ ବୋଇଲା ମୁହିଁ ଅଟେ ବଡ଼ଦୋଷୀ
ଏଥିରୁ ତରିବି କେହ୍ନେ ଏ ଆଜ୍ଞା ଦିଅସି ।
ଧର୍ମପୁରୁଷ ବୋଇଲେ କରିଛୁ ଯେମନ୍ତ
ଏ ପାପରୁ ପ୍ରାୟଶ୍ଚିତ୍ତ ଶିବାଗର୍ଭେ ଜାତ ।
ପୂର୍ବେ କରିଅଛୁ ତୁହି କିଛି ବ୍ରତାଚାର
ସେ ହେତୁ ଜନ୍ମ ଲଭିବୁ ହୋଇ ଜାତିସ୍ମର ।
ଏହିକ୍ଷଣି ମର୍ତ୍ତ୍ୟପୁରେ ଯାଇ ଜନ୍ମ ହୁଅ
ଜ୍ଞାନ ଲଭିବୁ ଯେ କାଳେ ମୁକତିକୁ ପାଅ ।
ଯମବାକ୍ୟେ ମୁଦୁଗଲ ସେଠାରୁ ଅଇଲା
ଶୃଗାଳୀ ଗର୍ଭରୁ ସେହୁ ମଞ୍ଜେଜାତ ହେଲା
ଗଣ୍ଡୁକୀ ତୀରରେ ଅଛି ଗୋପାଳୀ ପର୍ବତ
ସେ ନଦୀ ଉତ୍ତରେ ଅଛି ସେ ଗିରି ପ୍ରଶସ୍ତ ।
ବ୍ୟାଧେକ ନାମରେ ତହିଁ ଏକଇ ଶୃଗାଳ
ତାହାର ଭାରିଯା ନାମ ଅଟଇ ଅପାଳ ।
ତାହାର ଗର୍ଭେ ବ୍ରାହ୍ମଣ ଜନମିଲେ ପୁଣି
ଜାତିସ୍ମର ହୋଇଲା ସେ ଯମଆଜ୍ଞା ଘେନି ।
ବାଳୁତକୁ ଦେଖିଣ ସେ ଜାଣିଲା ଶୃଗାଳ
ମହାପଣ୍ଡିତ ପଣେ ଏ ଜାତ ବିପ୍ରବାଳ ।
ଶୃଗାଳ ବୋଇଲା ତୁହି ଯାକୁ କ୍ଷୀର ନ ଦେ
ଭଲବିପ୍ର ଜନ୍ମିଛି ଏ ଶାପ ପାଇ ହାଦେ ।
ମଘଦେଶ ରାଜା ଆଜ ନାମେ ନରନାଥ
ସାତପଦ୍ମ ଧେନୁ ତାର ବସ୍ଥା ଅପ୍ରମିତ ।
ଦୁହାଁଳ ପଦ୍ମେ ବରଡ଼ ବେନିପଦ୍ମ ଗାଈ
ନବଲକ୍ଷ ଅଣ୍ଡିର ଯେ ତିନିଖର୍ବ ମାଈ ।
ଏତେକ ଧେନୁ କଟକେ ଛନ୍ତି ତାର ମାଡ଼ି
କେବଳ କୋମଳ ଦୁବ କରନ୍ତି ବିହଡ଼ି ।
ପ୍ରଥମ ଚେର ଗୋପାଳ ଦୁହେଁ ଭ୍ରମେ ପଡ଼ି
ସ୍ରୋତପରି ବହିଯାଏ ବେଳ ସାତଘଡ଼ି ।
ସେ କ୍ଷୀରକୁ ବନଜୀବେ କରନ୍ତି ଆହାର
ତହୁଁ ଶୃଗାଳ ତାହାକୁ ଦିଏ ନେଇ କ୍ଷୀର ।
ବ୍ୟାଧେକ ଶୃଗାଳ ତାକୁ ଯତ୍ନେ ପ୍ରତିପାଳି
ଏହି ରୂପରେ ବିପ୍ରକୁ ପାଳେ ଦୁଇଓଳି ।
ସାରସା କାଳ ବୋଲିଣ ପୁତ୍ର ନାମ ଦେଲା
ଦିନକୁ ଦିନ ସେ ପୁତ୍ର ଅନେକ ବଢ଼ିଲା ।
ଗୋରସ ଆହାରେ ବର୍ତ୍ତେ ସେହି ପ୍ରତିଦିନ
ସମୟେ ତେଜିଲା ମାତା ପିତା ବେନିଜନ ।
ତାହାକୁ ଉପେକ୍ଷି ଗଲେ ତାର ତାତ ମାତ
ଆପଣା ଇଚ୍ଛାରେ ସେହି ବଢ଼ଇ ନିଶ୍ଚିନ୍ତ ।
ବିଷ୍ଣୁ ଭଦ୍ରା ବୋଲିକରି ଏକ ନଦୀଗୋଟି
ଶିବପାଳ ପର୍ବତୁଁ ସେ ଆସୁଅଛି ଫୁଟି ।

ବୁଲୁ ବୁଲୁ ଦିନେ ସେହି ସାରସା ଶୃଗାଳ
ଯାଇଣ ରହିଲା ବିଷ୍ଣୁ ଭଦ୍ରା ନଦୀକୂଳ ।
ସେହି ନଦୀକୂଳେ ଅଛି ବୃକ୍ଷନାମେ ନଗ୍ରେ
ବାମଦେବ ଆଚାର୍ଯ୍ୟର ଘର ସେହିଲାଗେ ।
ସେ ବାମଦେବ ବ୍ରାହ୍ମଣ ଅଳ୍ପାୟୁ ହୋଇଲା
ଭର୍ତ୍ତା ବିନାଶେ ବ୍ରାହ୍ମଣୀ ଦୋଚାରୁଣୀ ହେଲା
ତାହାର ଘର ନିକଟେ ଶୂଦ୍ର ଏକ ଥିଲା
ତାହାର ସଙ୍ଗମେ ସେହି ଗର୍ଭବତୀ ହେଲା ।
ଲଜ୍ଜିତେ ବ୍ରାହ୍ମଣୀ ରହି ନ ପାରିଣ ଘରେ
ଦିଗମ୍ବରୀ ହୋଇ ସେହୁ ବୁଲଇ ବନରେ ।
ବ୍ରାହ୍ମଣୀ ଭାଳଇ ଭର୍ତ୍ତା ନାଶ ହେଲେ ମୋର
ମତିଭ୍ରମେ ପରେ ମୁହିଁ କରାଇଲି ଜାର ।
କାହାମୁଖ ଅନାଇବି ତେଜିବି ଏ ପ୍ରାଣ
ଛାଡ଼ିବି ଶରୀର ମୋର ଏହି ବନସ୍ତେଣ ।
ବ୍ୟାଘ୍ର ଭାଲୁ ଦେଖି ମୋତେ ଯାନ୍ତି ଅପସରି
କେହି ନ ଭକ୍ଷନ୍ତି ମୋତେ ହେବାରୁ ଦୋଚାରୀ
ଏମନ୍ତ ଭାଳଇ ବନେ ରହିଣ ଯୁବତୀ
କାଳେ ଜନମିଲା ତାର ଏକଇ ଦୁହିତୀ ।
ଲଜ୍ଜାରେ ବ୍ରାହ୍ମଣୀ ତାକୁ ମେଲିଦେଲା ଜଳେ
ବୃଷାଳ ନଗ୍ରେ ଲାଗିଲା ଯାଇଁ ରାତ୍ରିକାଳେ ।
ତହିଁ ସାରସା ଶୃଗାଳ ଗଲା ପାଣି ଖାଇ
ଦେଖିଲା କୁମାରୀ ଏକ ଜଳରେ ଭାସଇ ।
ସେହି ସାରସା ଶୃଗାଳ ଆଣି ସେ କୁମାରୀ
ମଳୟ ବନସ୍ତ ନଗ୍ରେ ପାଳେ ଯତ୍ନକରି ।
ଆପଣେ ଯାଇଣ କ୍ଷୀର ଆଣେ ବେଗକରି
ତାକୁ ଆହାର ଦେଇଣ ପାଳେ ଯତ୍ନକରି ।
ବିସ୍ତାର କରିଣ ସେହି ଖାତଟିଏ ଖୋଳି
ତା ମଧ୍ୟେ ରଖି ନିଶ୍ଚିନ୍ତେ ପାଳଇ ଦୁଲାଳୀ ।
ଦଇବେ ବ୍ରାହ୍ମଣୀ ଗର୍ଭୁ ସେହୁ ଉତପତ୍ତି
ବଡ଼ ସୁନ୍ଦରୀ ଦ୍ୱିତୀୟା ଚାନ୍ଦ ପରି ଜ୍ୟୋତି ।
ତାହାକୁ ଶୃଗାଳ ନିତ୍ୟ ପାଳଇ ଯତନେ
ଶ୍ରଦ୍ଧାରେ ପାଳଇ ତାକୁ ପୂର୍ବକୃତ ଜ୍ଞାନେ ।
ମଳୟ ଦେଶର ରାଜା ଯେ ମଳୟସେନ
ସେ ବନରେ ମୃଗୟାକୁ କରଇ ଗମନ ।
ବିଛାମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ତିଥି
ଚନ୍ଦ୍ରରେ ଉତ୍ତରଭାଦ୍ର ନକ୍ଷତ୍ର ଯୁକତି ।
ସେ ବାଳୀ ଖାତୁ ବାହାରି ତାପୁଅଛି ଖରା
ବାଳ ଅର୍କ ପ୍ରାୟ ତେଜ ବିଶେ ଅତି ତୋରା ।
ହସ୍ତୀପୃଷ୍ଠେ ଥାଇ ଦେଖି ମଳୟ ନୃପତି
ପବନୁ ବେଗ କରିଣ ଚଳାଇଲା ହସ୍ତୀ ।
ଦେଖି ଧାଡିକାରେ ବିଳେ ପଶିଲା ସୁନ୍ଦରୀ
ମଳୟସେନ ଆପଣା ମନ୍ତ୍ରୀକି ପଚାରି ।
ବଡ଼ ସୁନ୍ଦରୀ କନ୍ୟାଏ ଦେଖିଲି ମୁଁ ଏଥ
ମୋହରି ଦେଖନ୍ତେ ବିଳେ ପଶିଗଲା ସେତ ।
ମନ୍ତ୍ରୀ ଲୋକ ବରଗାଇ ମରାଏ ସାବେଳି
ବିଳ ଗଭୀର ପର୍ଯ୍ୟନ୍ତ ଗଲେ ଖୋଳି ଖୋଳି ।
ତାଳେକ ଗଭୀର ଖୋଳି ଦେଖିଲେ ସୁନ୍ଦରୀ
ଶରଦଚନ୍ଦ୍ର ବଦନ ସୁବର୍ଣ୍ଣ ହୁଁ ଝଳି ।
ଦେଖିଣ କୋଳେ ଧରିଣ ତାହାକୁ ନୃପତି
ଚଳିଲା ନିଜ ରାଜ୍ୟକୁ ହରଷିତ ମତି ।
ତା ଦେଖି ଶୃଗାଳ ବୋଲେ ତୁହି ମହାରାଜା
ତପୀକୁଳ ରଖି ଦୁଷ୍ଟଜନ ଦର୍ପ ଗଞ୍ଜା ।
ତୁ ମହା ଧାର୍ମିକ ରାଜା ତୋର ବାହୁବଳେ
ଧର୍ମ ଆଶ୍ରିତେ ତୋ ପ୍ରଜା ବର୍ତ୍ତନ୍ତି ସକଳେ ।
ତୁ ଧର୍ମ ଲଙ୍ଘିଲେ ଆନ କେ କରିବ ରକ୍ଷା
ପ୍ରଦାନ କରିବି କନ୍ୟା ତୋତେ ମୋର ଇଚ୍ଛା ।
ରାଜା ହୋଇଣ ତୁ ଯେବେ ହେଲୁ ଲୋଭକାରୀ
ତୋତେ ନିଶ୍ଚୟ ପ୍ରଦାନ କରିବି କୁମାରୀ ।
ନୃପତି ବୋଇଲା ଏହା କହିଲୁ ଉଚିତ
ଶୃଗାଳ ବୋଲେ ନ ଜାଣେ ବିଭାର ଚରିତ ।
ତଳହସ୍ତ ପାତ ମୁହିଁ ଦେବି ମହୀପାଳ
ଉପର ହସ୍ତରେ ଦେଲା ସାରସା ଶୃଗାଳ ।
ଭୋ ଦୈବ ପୁରୁଷ ଚନ୍ଦ୍ର ସୂର୍ଯ୍ୟ ତୁମ୍ଭେ ଜାଣ
କନ୍ୟାଦାନ କରିବାରେ ଯେତେକ କାରଣ ।
ଏ କନ୍ୟା ଦାନରେ ମୋତେ ଦିଅନ୍ତୁ ମୁକତି
ବିହନ୍ତା ପୁରୁଷ ତୁମ୍ଭେ ସକଳ ଜାଣନ୍ତି ।
ଏ କନ୍ୟା ଦାନରେ ଯେତେ ହେବ ଫଳଶ୍ରୁତି
ବିଚାର କରି ଆପଣ ଦେବ ମୋତେ ଗତି ।
ଶୂନ୍ୟରୁ ଶବଦ ହେଲା କଲୁ ମହାଧର୍ମ
ଏଥିକି କହିବା ତୋତେ କର ସେହି କର୍ମ ।
ଏହାର ସୀମା ଯେତେକ ପର୍ଯ୍ୟନ୍ତ ରହିଛି
କିଛି ନ ଖାଇଲେ ତୋତେ ଫଳଶ୍ରୁତି ଅଛି ।
ଆହୋ ଚୈତନ୍ୟ ସାରସା କନ୍ୟାଦାନ ଦେଇ
ବିନୟଭାବ ହୋଇଣ ରାଜାଙ୍କୁ ପୁଚ୍ଛଇ ।
ହୋରାଜା ମୁଁ କନ୍ୟା ଗୋଟି ତୋତେ ସମର୍ପିଲି
ତୋ ତଳ ହସ୍ତେ ଉପର ହସ୍ତ ମୁହିଁ ଦେଲି ।
କନ୍ୟା ଗୋଟିକ ମୋ ପ୍ରତିପାଳି ମହୀପତି
କନ୍ୟାଦେଇ ଶରଣ ମୁଁ ପଶିଲି ତୋ କତି ।
ଦାନ ଦେବାପାଇଁ ମୁହିଁ ନୁହଇ ଭାଜନ
ତୁମ୍ଭେ ଅଟ ମହୀପତି ପୃଥିବୀ ଧାରଣ ।

ତୋହର ରାଜ୍ୟରେ ମୁଁ ନଥିବି ମହୀନାଥ
ନ ଖାଇବି ଏ ରାଜ୍ୟରୁ ଜଳ ମୋର ସତ୍ୟ ।
ତହୁଁ ସାରସା ଶୃଗାଳ କନ୍ୟାଦାନ ଦେଇ
ବାହାର ହୋଇ ସେ ଗଲା ରାଜ୍ୟରେ ନ ରହି
ଚଳଇ ଶୃଗାଳ ସେହି ଗହନ ବିପନେ
ମଳୟ ବସନ୍ତ ରାଜ୍ୟୁ ଲକ୍ଷେକ ଯୋଜନେ ।
ଭୋଜନ ନ କଲା ଅନ୍ନ ପାଣି ସେ ଶୃଗାଳ
ବତ୍ରିଶଦିନ ନ ଭୁଞ୍ଜି ହୋଇଲା ଦୁର୍ବଳ ।
ଶରୀର ଆଶକତେ ସେ ଚାଲିଣ ନ ପାରି
ଗୋମତୀ ନଦୀତୀରରେ ପ୍ରାଣ ସେହୁ ହାରି ।
ଯମର ଅଗ୍ରତେ କଲେ ଦୂତ ତାକୁ ନେଇ
ବିଚାର କରିଣ ତାକୁ ବୋଲେ ଜନ୍ତୁସାଇଁ ।
ଆରେ ଶୃଗାଳ ତୁ ମର୍ତ୍ତ୍ୟପୁରେ ରହିଥିଲୁ
କି କି ଧର୍ମ କି କି ତୀର୍ଥବ୍ରତ ତୁହିକଲୁ ।
ଶୃଗାଳ ବୋଇଲା ମୁହିଁ ଅଟେ ପଶୁଜାତି
ନାନା ଅନାଚାରେ ଆମ୍ଭେ ବଞ୍ଚୁଥାଉଁ ନିତି ।
ଚିତ୍ରଗୁପ୍ତ ବୋଇଲେ ହେ ଏକ ଧର୍ମ କଲା
କନ୍ୟାଏ ପୋଷି ମଳୟ ନୃପେ ଦାନ ଦେଲା ।
ତାର ରାଜ୍ୟେ ନ ରହିଣ ନ ଖାଇଲା ପାଣି
ଆଶ୍ଚର୍ଯ୍ୟ ମଣିଲା ତାହା ନାଶକର ଶୁଣି ।
ପରମ ସାନନ୍ଦ ହୋଇ ବୋଲେ ନାଶକର
ତୁ ଏବେ ଶୃଗାଳ ସୂର୍ଯ୍ୟବଂଶେ ଅବତର ।
ସଗର ନାମରେ ତୁହି ହୁଅ ନରପତି
ଜମ୍ବୁଦ୍ୱୀପ ମଧ୍ୟେ ହୁଅ ରାଜଚକ୍ରବର୍ତ୍ତୀ ।
ଆହେ ଯୁଧିଷ୍ଠିର ଶୁଣ କହନ୍ତି ମାର୍କଣ୍ଡ
ତ୍ରିବେଣୀ ଗଙ୍ଗାର ଏହି ଆଦି ଜନ୍ମଖଣ୍ଡ ।
ଦିଲୀପ ନାମେ ଇକ୍ଷ୍ୱାକୁବଂଶ ନରପତି
ତାହାର ଭାରିଯା ନାମ ଅଟେ ସୁରବତୀ ।
ତାହାର ଗର୍ଭେ ସେ ଯାଇ ହୋଇଲା ଜନମ
ଅତ୍ୟନ୍ତ ସୁନ୍ଦରବଳା ଅତି ଅନୁପମ ।
ଶ୍ରଦ୍ଧାଭରେ ପିତାମାତା ଏହି ନାମ ଦେଲେ
ସଗର ବୋଲିଣ ତାକୁ କୌତୁକେ ଡାକିଲେ ।
ବଡ଼ ସୁନ୍ଦର ପ୍ରାକର୍ମେ ଅଟେ ବଳବନ୍ତା
କ୍ଷିତି ମଧ୍ୟରେ ହୋଇଲା ସେ ବଡ଼ ଶକତା ।
ଦେଖିଣ ସାନନ୍ଦ ହେଲେ ଦିଲୀପ ନୃପତି
ଆପେ ଥାଉଁ ତାକୁ ରାଜ୍ୟେ କଲେ ନରପତି ।
ଜାତିସ୍ମର ହୋଇ ଜାଣେ ସେ ସକଳ କଥା
ପୂର୍ବରେ ଶୃଗାଳ ମୁହିଁ ହୋଇଥିଲି ଯଥା ।
ଏକ କନ୍ୟା ଦାନ ଦେଉଁ ତାହାର ଏ ଫଳେ
ନରପତି ପଦ ମୋତେ ମିଳିଲା ଏକାଳେ ।

ମୁଁ ଏବେ ଧାତାକୁ ନିତ୍ୟ ଦୁଃଖିତେ ସେବିବି
ଷାଠିଏ ସହସ୍ର କନ୍ୟା ତାହାଙ୍କୁ ମାଗିବି ।
ସ୍ୱର୍ଗରେ ବସିବି ମୁହିଁ ଇନ୍ଦ୍ରର ସମାନ
ଏମନ୍ତ ଭାଳିଣ ମନେ ସଗର ରାଜନ ।
ଧନ ରାଜ୍ୟଭାର ଆଦି ସବୁ କରି ତେଜ୍ୟା
ହିମାଳୟ ପର୍ବତରେ ତପକଲା ରାଜା ।
ଜଳ ଆହାର ତେଜିଣ ତପେ ହୋଇ ମଗ୍ନ
ହୃଦ ମଧ୍ୟରେ ଚିନ୍ତଇ ଚତୁର ଆନନ ।
ଷାଠିଏ ସହସ୍ର ବର୍ଷ ତପକରି ତହିଁ
ବ୍ରହ୍ମାଙ୍କୁ ମନ ମଧ୍ୟରେ ସଦା ଚିନ୍ତୁଥାଇ ।
ତା କଠୋର ତପ ଦେଖି ଦେବ ବେଦପତି
ମରାଳ ବାହନେ ବିଜେକଲେ ରାଜା କତି ।
ଅଚେତ ଦେଖି ସିଞ୍ଚନ୍ତେ କମଣ୍ଡଳୁ ପାଣି
ସାଷ୍ଟାମ ହୋଇ ବସିଲେ ସଗର ନୃପଣି ।
ସଗରେ ପୁଚ୍ଛେ ଅଇଲ କାହୁଁ ଦ୍ୱିଜବର
ଦୁଃଖେ ଅର୍ଜିଲା ତପକୁ ଭାଙ୍ଗିଲ ମୋହର ।
ତା ବାକ୍ୟେ ବ୍ରହ୍ମାବୋଇଲେ ଆମ୍ଭେ ଅଟୁଧାତା
ବହୁତ କଟାଳ କରି କିପାଁ କଲୁ ଚିନ୍ତା ।
କରପତ୍ର ଯୋଡ଼ିକରି ବୋଲଇ ସଗର
ତୁହି ଯେବେ ପିତାମହ ନିଜରୂପ ଧର ।
ବେନି ନୟନେ ଦେଖିଲେ ତୋର ନିଜରୂପ
ମାଗିବି ବର ଖଣ୍ଡିବ ଥିବା ମୋର ପାପ ।
ତତକ୍ଷଣେ ନିଜରୂପ ଧରି ପଦ୍ମଯୋନି
ବେଦମନ୍ତ୍ର ଅଧ୍ୟୟନ କଲେ ସେହିକ୍ଷଣି ।
ଡାହାଣ ଭାଗରେ ଯେଉଁ ମୁଖ ଶୋଭାବନ
ସେ ବଦନେ ସାମବେଦ କଲେ ଅଧ୍ୟୟନ ।
ବାମେ ଯେବଣ ବଦନ ତାଙ୍କର ପ୍ରକାଶି
ସେହି ବଦନରେ ଦେବ ଋକବେଦ ଭାଷି ।
ପଛ ବଦନେ ଅଥର୍ବ ବେଦକୁ ବଖାଣି
ସମ୍ମୁଖ ବଦନରେ ଯଜୁର୍ବେଦକୁ ଗୁଣି ।
ପଇତା ପୁସ୍ତକ ବାମ କନ୍ଧରେ ଉତ୍ତରୀ
ଗଡୁପାତ୍ରୀ ସ୍ରୁବ ସ୍ରୁଚ ଜପାମାଳି ଧରି ।
ଏମନ୍ତ ସମୟେ ଇନ୍ଦ୍ରଦେବତା ଯେ ଭାଳି
ନିଶ୍ଚୟ ସଗର ରାଜା ବସିବ ମୋ ସ୍ଥଳି ।
ମହା କଷ୍ଟରେ ଧାତାକୁ କଲା ସେହୁ ସେବା
ସଗରକୁ ବର ଦେବ ପିତାମହ ଦେବା ।
ନିଶ୍ଚୟ ସମ୍ପଦ ମୋର ନେଲା ଜାଣ ସେହି
ଏତେ ବୋଲି ବିଚାରଇ ଶଚୀଦେବୀ ସାଇଁ ।
ଐରାବତ ଆରୋହିଣ ଗଲା ବଜ୍ରଧର
ତ୍ୱରିତେ ମିଳିଲା ଆସି ଧାତାର ଛାମୁର ।

ଶବଦ କରଇ ଶୂନ୍ୟେ ଥାଇ ବଜ୍ରଧର
ଜୟ ପିତାମହ ବାରେ ମୋର ବୋଲ କର ।
ଶୁଣ ପିତାମହ ତଥ୍ୟବାଣୀ ଯେ ମୋହର
ତୋତେ ବହୁ କଟାଳିଲା ନୃପତି ସଗର ।
ତୁ ଯେ ପିତାମହ ଶୁଣ ପୂର୍ବର ଉତ୍ତର
ଇନ୍ଦ୍ରପଦେ ବସି ଇଚ୍ଛା କରିଛି ସଗର ।
ଦୁହିତା ଗୋଟିଏ ଦେଇ ହୋଇଲା ନୃପତି
ଏବେ ମାଗିବ ଷାଠିଏ ସହସ୍ର ଦୁହିତୀ ।
ପ୍ରସନ୍ନ ହେଲେ ପାଇବ ସେ ପରମପଦ
କଦାଚିତେ ତାକୁ ବର ନ ଦିଅ ଅସାଧ ।
ମୋହର ବିନୟ ତୁହି ଘେନ ବେଦପତି
ଦୁହିତା ବର ନ ଦିଅ ତାକୁ କଦାଚିତି ।
ବିଧାତା ବୋଇଲେ ମୋତେ ମାଗିବ ସେ ଯାହା
କଠୋର କରି ମାଗିଲେ ଦେବଇଁ ମୁଁ ତାହା ।
ମୋହର ବାକ୍ୟ କେବେହେଁ ଅନ୍ୟଥା ନୁହଇ
ତୋହର ଏଥକୁ କିସ ଉପାୟ ଅଛଇ ।
ଇନ୍ଦ୍ରବୋଲେ ଯେବେ ତୋର ମନ ମୋରେ ଶୁଦ୍ଧି
ତୋହର ସୁଚିତ୍ତ ହେଲେ ମୋର ଅଛି ବୁଦ୍ଧି ।
ଇନ୍ଦ୍ର ବୋଇଲେକ ମୁହିଁ ପଶିବି ତା ଗର୍ଭେ
ତୋହର ସୁଦୟା ମୋତେ ଥାଉ ଆଦି ଦେବେ
ଇନ୍ଦ୍ରର ବଚନେ ବ୍ରହ୍ମା ହୋଇଲେକ ତୋଷ
ବୋଇଲେ ଇନ୍ଦ୍ରକୁ ଚାହିଁ ରାଜା ଗର୍ଭେ ପଶ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ମନୁରାୟେ
ସଗରଗର୍ଭେ ପଶିଲେ ଇନ୍ଦ୍ର ଦେବତାଏ ।
ପିତାମହ ବୋଇଲେ ସେ ସଗରକୁ ଚାହିଁ
ମାଗସି ଇଚ୍ଛାବର ତୋ ମନେ ଇଚ୍ଛା ଯହିଁ ।
ପିତାମହଙ୍କ ବଚନେ ସଗର ନୃମଣି
କହଇ ଗର୍ଭରେ ଥାଇ ଇନ୍ଦ୍ର କୂଟବାଣୀ ।
ସରସ୍ୱତୀ ଦେବୀ ତାର କଣ୍ଠ ନିରୋଧିଲା
କନ୍ୟା ମାଗିବାକୁ ତାର ବାକ୍ୟ ନ ସ୍ଫୁରିଲା ।
ଦେବତାମାନଙ୍କ ମାୟା ଏସନ ଭିଆଣ
ସଗର ନୃପତି ବାକ୍ୟ ନିରୋଧିଲେ ଜାଣ ।
ଷାଠିସହସ୍ର କନ୍ୟାଙ୍କୁ ତେତିକି ନନ୍ଦନ
ହେଉ ବୋଲି ସତ୍ୟକଲେ ଚତୁର ବଦନ ।
ପିତାମହ ସତ୍ୟେଜଳ କାଢ଼ି କମଣ୍ଡଳୁ
ସଗର ରାଜାକୁ ଦେଲେ ବ୍ରହ୍ମମନ୍ତ୍ର ଚଳୁ ।
ଯେଉଁ ବାଞ୍ଛାକଲୁ ମନେ ହେଉ ତୋତେପ୍ରାପ୍ତ
ମହାବଳୀ ହୋଇ ହେଉ ଷଠିସସ୍ର ପୁତ୍ର ।
ଏହି ବର ଦେଇ ଧାତା ହେଲେ ଅନ୍ତର୍ଦ୍ଧାନ
ସଗର ହୃଦୁଁ ଅନ୍ତର ସହସ୍ର ଲୋଚନ ।
ସଗରର ମନ୍ତ୍ରୀ ବୋଲେ କି କରିଲୁ ରାୟେ
ଦୁହିତା ନ ମାଗି ତୁହି ମାଗିଲୁ ତନୟେ ।
ସଗର ଡାକ ଦିଅଇ ଶୁଣ ବେଦବର
କୁମରରେ କାର୍ଯ୍ୟ ଦେବ ନାହିଁ ଯେ ମୋହର
ଲକ୍ଷ ଯୋଜନରେ ଯାଇ ହେଲେଣି ବିଧାତା
ଶ୍ରବଣେ ସେ ନ ଶୁଣିଲେ ସଗର ବାରତା ।
ଯାହା ସେ ଶ୍ରୀମୁଖେ ଆଜ୍ଞା ଦେଲେ ବେଦପତି
ସଗର ରାଜାର ପତ୍ନୀ ହେଲେ ଗର୍ଭବତୀ ।
ନବମାସ ଶେଷ ଦଶମାସ ପରବେଶ
ଚୈତ୍ରମାସ କୃଷ୍ଣପକ୍ଷ ଅମାସ୍ୟା ଦିବସ ।
ସୌରୀବାର ସେହିଦିନ ନକ୍ଷତ୍ର ରେବତୀ
ନାଗକରଣ ବିଷ୍କୁମ୍ଭ ଯୋଗ ଅଧିପତି ।
ସେ ଦିନ ରାଣୀ ପ୍ରସବ କଲାକ ତାହାର
ପୁତ୍ରରୂପ ଚିହ୍ନ ନାହିଁ ତୁମ୍ବିର ଆକାର ।
ମୁଦୁସୁଲୀମାନେ ଯାଇ କହିଲେ ରାଜାଏ
ତୁମ୍ବରାଣୀ ପ୍ରସବିଲେ ତୁମ୍ବି ଯେ ଗୋଟାଏ ।
ଦେଖିକରି ବଇରାଗ ହେଲେ ନୃପମଣି
ମୂଦୁସୁଲୀଙ୍କି ବୋଇଲେ ପକାଅ ହେ ହାଣି ।
ରାଜା ବାକ୍ୟେ ହାଣିଲେକ ଦାସୀ ଗଳଗାଜି
ସେ ତୁମ୍ବି ଗୋଟାରେ ଥିଲା ଷାଠିସସ୍ର ମଞ୍ଜି ।
ଭୂମିରେ ପଡ଼ନ୍ତେ ତାର ବିକାଶିଲା ତେଜ
ହାତଗୋଡ଼ ମୁଖ ଷାଠିସହସ୍ର ଆତ୍ମଜ ।
ସହସ୍ର ପୁର.କରିଣ ବେଢ଼ିଲେ ମାତାକୁ
କ୍ଷୀରପାନ ଏବେ ମାତା ଦିଅ ଗୋ ଆମ୍ଭଙ୍କୁ ।
ମାତା ବୋଇଲେ ସରବେ ମୋର ବେନିକୁଚ
କାହୁଁ କ୍ଷୀର ଦେବି ତୁମ୍ଭେ ଷାଠିସସ୍ର ବଚ୍ଛ ।
ଜନକ ତୁମ୍ଭର ତପେ ଧାତାଙ୍କୁ ସେବିଲା
ଧାତାଙ୍କର ଅନୁରାଗେ ତୁମ୍ଭଙ୍କୁ ପାଇଲା ।
ତୁମ୍ଭେମାନେ ଯାଇ କହ ପିତାଙ୍କ ଆଗରେ
ସେହି ଆଧାର ଦେବେଟି ତୁମ୍ଭର ମୁଖରେ ।
ମାତାଠାରୁଏ ନିରାଶ ବାଣୀ ଶୁଣିକରି
ଯାଇ ପିତାକୁ ବେଢ଼ିଲେ ସସ୍ରପୁର କରି ।
ଜାତ କରାଇଲ ପିତା ଦିଅ ଖାଇବାକୁ
ମାତା ପଠାଇଣ ଦେଲା ତୁମ୍ଭର ପାଶକୁ ।
ସିନ୍ଧୁଘୋଷ ପ୍ରାୟେ ଶୁଭେ ତାଙ୍କ ମୁଖ ନାଦ
ତାହା ଶୁଣିଣ ସଗର ହୋଇଲା ବିଷାଦ ।
ଏ ସମୟେ କେହି ପିତା କେଶକୁ ଝିଙ୍କନ୍ତି
କେହି ବସନ ଝିଙ୍କିଣ ଉଲଗ୍ନ କରନ୍ତି ।
ଆମ୍ଭଙ୍କୁ ଆହାର ତୁମ୍ଭେ ଦିଆଅ ସତ୍ୱର
କ୍ଷୁଧାରେ ପୋଡ଼ିଯାଉଛି ଆମ୍ଭର ଉଦର ।

ପୁତ୍ରଙ୍କୁ ରାଗେ ସଗର କରନ୍ତି ଭର୍ତ୍ସନା
ଆହାର କାହୁଁ ଦେବି ମୁଁ ମାଟି ଭକ୍ଷ କିନା ।
ବିଚାରନ୍ତି ପୁତ୍ରମାନେ ମାତା ନ ପୋଷିଲା
ପିତା ଅନ୍ନ ନ ଦେଇଣ ମାଟି ଖା ବୋଇଲା ।
ପିତା ବଚନ ସେମାନେ ନିରାଧାର କରି
ଷଠିସସ୍ର ଭ୍ରାତ ଆକର୍ଷିଲେ ବସୁନ୍ଧରୀ ।
ପୂର୍ବେ ପଶିଲେ ସଗର ନୃପତି ନନ୍ଦନ
ପୃଥ୍ୱୀ ବିଦାରି କରନ୍ତି ମୃତ୍ତିକା ଭକ୍ଷଣ ।
ନବଲକ୍ଷ ଯୋଜନ ଯେ ଜମ୍ବୁଦ୍ୱୀପ ପୃଥ୍ୱୀ
ଷାଠିଏ ସହସ୍ର ଭାଇ ଭକ୍ଷଣ କରନ୍ତି ।
ଦିନେ ତ୍ରିବେଳ ଭୋଜନ କରନ୍ତି ସେ ନିତ୍ୟେ
ଭକ୍ଷିଲେ ଷାଠିଏସସ୍ର ବର୍ଷ ପରିଯନ୍ତେ ।
ପୂରୁବ ପଶ୍ଚିମ ଆଉ ଉତ୍ତର ଦକ୍ଷିଣ
ମୃତ୍ତିକା ଭକ୍ଷଣ କରନ୍ତି ସେ ଚତୁଷ୍କୋଣ ।
ଚୌଦିଗ ଭୂମି ଭକ୍ଷନ୍ତି ଷାଠିସସ୍ର ଭାଇ
ନଖରେ ଆମ୍ପୋଡ଼ିଣ ସେ ଆସୁଛନ୍ତି ମହୀ ।
ଚଉଦିଗରେ ବେଢ଼ିଣ ଯେତେକ ବସିଲେ
ବାରିଧି ହୋଇଲା ତାହା ସମୁଦ୍ର ଘେନିଲେ ।
ଆଧାର ନିମିତ୍ତେ ଭକ୍ଷିଲେ ସେ ତିନିକୋଣ
ଚୌଦିଗ ସମୁଦ୍ର ହେଲା ଡାକିଲେ ବରୁଣ ।
ନଖରେ ବିଦାରିଣ ଯେ ଆସୁଛନ୍ତି ଖାଇ
ତାହାଙ୍କ ନଖ ଆମ୍ପୋଡ଼ା ନଦୀ ଖାଲ ହୋଇ ।
ଭକ୍ଷିଲେ ପୃଥିବୀ ଚଉଦିଗ ଏହିମତେ
ଜମ୍ବୁଦ୍ୱୀପ ଭକ୍ଷି ସେ ଯେ ଆସନ୍ତି ଯୁକତେ ।
ଜମ୍ବୁଦ୍ୱୀପକୁ ସମାନ ନୁହେଁ ଆନ ଦ୍ୱୀପ
ଦେବତାଙ୍କର ଭୋଗ୍ୟାଦିପୁର ଏ ସ୍ୱରୂପ ।
କଠୋର ଦେଖିଣ ସେହି ଜଗଜ୍ଜନ ପିତା
ପାରେଶ୍ୱର ଦେବଙ୍କୁ ସେ କହିଲେ ଏ କଥା
ସଗର ରାଜା ଷାଠିଏ ସହସ୍ର ଯେ ପୁତ୍ର
ଜମ୍ବୁଦ୍ୱୀପ ପୃଥିବୀକୁ କରୁଛନ୍ତି ହତ ।
ଭକ୍ଷନ୍ତି ବସୁଧା ଆଧାରର ଲୋଭକରି
ଚତୁର୍ଦ୍ଦିଗଯାକ ଭକ୍ଷିଯାନ୍ତି ବସୁନ୍ଧରୀ ।
ହେ ଚୈତନ୍ୟ ଧାତା ବାକ୍ୟ ଶୁଣି ବେଦବର
ହୋଇଲେ କପିଳଋଷି ରୂପେ ଅବତାର ।
ବାରିଧି ତଟରେ ଥିଲେ କପିଳ ଯେ ମୁନି
ମହାଯୋଗେଶ୍ୱର ବସିଛନ୍ତି ଯୋଗ ଘେନି ।
ନାସିକାରେ ଅହିମାନେ କରିଛନ୍ତି ବାସ
ପବନ ଭକ୍ଷୁଅଛନ୍ତି ସ୍ୱରୂପ ପ୍ରକାଶ ।
ସ୍ଫଟିକର ତେଜପରି ଦିଶଇ ଶରୀର
ମସ୍ତକରେ ଶୋଭାପାଏ ଲମ୍ବ ଜଟାଭାର ।
ମହାଯୋଗେ ବସିଲେ ଯେ ନିଶ୍ଚଳ ଆସନ
ଏଥୁ ଅନନ୍ତରେ ଶୁଣ ବିଲଙ୍କ ରାଜନ ।
ସମୟେକ ଇନ୍ଦ୍ରଦେବ ଗଲେ ଅନ୍ତର୍ଦ୍ଧାନେ
ସଗର ଯଜ୍ଞଅଶ୍ୱକୁ ଆଣିଲେ ଗୋପନେ ।
କପିଳ ଋଷିଙ୍କ ପଛେ ଥିଲେ ସେ ରଖାଇ
ସଗର ପୁତ୍ର ଖୋଜିଣ କାଳେ ଥିଲେ ଯାଇ ।
କପିଳ ମହାଋଷିଙ୍କ ସନ୍ନିଧିରେ ଭେଟି
ଦେଖିଲେ ତପୀଙ୍କ ପଛେ ଯଜ୍ଞଅଶ୍ୱ ଗୋଟି ।
ଷାଠିଏ ସହସ୍ର ପୁତ୍ର ଦେଖିଲେ ସେ ଆସି
ବୋଇଲେ ତସ୍କର ଏହୁ ଛଦ୍ମମ ତପସ୍ୱୀ ।
ଦିବସେ ତପସ୍ୱୀ ରାତ୍ରେ ତସ୍କରର ଧର୍ମ
ଏହାକୁ ମାଇଲେ କିଛି ନୋହିବ ଅଧର୍ମ ।
ଏତେ ବୋଲି ଜଟାଧରି ଆଣିଲେ ଉଛୁଡ଼ି
କିଏ ଯାଇ ତାହାଙ୍କର ପାଦକୁ ଘୋଷାଡ଼ି ।
କେ ଧକା ମାରଇ କେହୁ ମାରେ ବିଧା ମୁଥ
ଅପାର ସାହାଯ୍ୟ କରି ଦେବ ରମାନାଥ ।
ଅତ୍ୟନ୍ତ କଟାଳେ ଚାହିଁଦ୍ୟନ୍ତେ କୋପାନଳେ
ସୋମ ସୂର୍ଯ୍ୟାନଳ ବିକାଶିଲା ତାଙ୍କ ଡୋଳେ
ସେହି ତେଜ ପଡ଼ିଲାକ ତାହାଙ୍କ ଉପରେ
ଷାଠିଏ ସହସ୍ର ପୁତ୍ର ନାଶଗଲେ ଖରେ ।
ଠାବେ ଠାବେ କୁଢ଼ କୁଢ଼ ଭସ୍ମ ଜମାହେଲା
ପୂର୍ବ ଦକ୍ଷିଣ ଉତ୍ତର ଦିଗେ ଦେଖାଗଲା ।
ପ୍ରଖରେ ଜଳିଲେ ଯହୁଁ ଷାଠିସସ୍ର ପୁତ୍ରେ
ଜୀବତମସ୍ୟ ଅନଳେ ହୁଅଇ ଯେମନ୍ତେ ।
ଅପ୍‌ସରୀମାନଙ୍କୁ ସେହୁ ବିଭା ହୋଇଥିଲେ
ଦକ୍ଷିଣମୂର୍ତ୍ତି ହୋଇଣ ସ୍ଥାନକୁ ଅଇଲେ ।
ଛଟପଟ ହୋଇବାର ଦେଖି ସର୍ବ ବାଳୀ
ପୋଡୁଥିବା ସ୍ଥାନେ ଯାଇ ସର୍ବେ ହେଲେ ମେଳି
ଭସ୍ମ ଭିତରେ ଥାଇ ସେ ବୋଲନ୍ତି ପୁରୁଷ
କପିଳ ଋଷି ଆମ୍ଭଙ୍କୁ ଦେଲେ ଏତେ କ୍ଳେଶ ।
ଶୁଣିଣ ସୁନ୍ଦରୀମାନେ ବହୁଶୋକ କଲେ
ସେହି ଅନଳ ମଧ୍ୟରେ ସମସ୍ତେ ପଶିଲେ ।
ପୁରୁଷମାନେ ସେଠାରେ ଭସ୍ମ ହେଉଥିଲେ
ସେହି ଅନଳେ ନାରୀଏ ପଡ଼ି ଭସ୍ମହେଲେ ।
ହେ ଦୟାସାଗର ହରି କମଳାବଲ୍ଲଭ
ଶାରଳଦାସେ ଅନ୍ତିମେ ମୁକତି କରିବ ।



## ଭଗୀରଥଙ୍କ ଜନ୍ମ ଓ ଗଙ୍ଗାଙ୍କୁ ଆଣି ପିତୃଗଣଙ୍କୁ ଉଦ୍ଧାର କରିବା

ଏଥୁ ଅନନ୍ତରେ ଶୁଣ ମନୁ ନରପତି
ଏ ଉତ୍ତାରୁ ଯାହା ହେଲା ସ୍ଥିରକରି ମତି ।
ସଗରର ଯେଉଁ ପୁତ୍ର ଥିଲା ଅଂଶୁମାନ
ଦିଲୀପ ନାମେ ତାହାର ହୋଇଲା ନନ୍ଦନ ।
ଅଂଶୁମାନ ଦିଲୀପଙ୍କୁ ଦେଇ ରାଜ୍ୟଭାର
ତପେ ବଳାଇଣ ମତି ଗଲେ ସ୍ୱର୍ଗପୁର ।
ତହିଁ ଉତ୍ତାରୁ ଦିଲୀପ ହୋଇ ମହୀପାଳ
ଧର୍ମରେ ପାଳିଲେ ନିଜ ପରଜା ସକଳ ।
ଗଙ୍ଗାଙ୍କୁ ଆଣିବାପାଇଁ ତପ କରି ଗଲେ
ଗଙ୍ଗାଙ୍କୁ ନ ପାଇ ସେହି ଜୀବନ ହାରିଲେ ।
ଦିଲୀପ ରାଜନ ଯହୁଁ ଗଲେ ସ୍ୱର୍ଗଲୋକ
ରାଜା ବିହୀନେ ଅଯୋଧ୍ୟା ହେଲା ଅରାଜକ ।
ଏହା ଜାଣି ଇନ୍ଦ୍ର ଆଦି ଚିନ୍ତିତ ହୋଇଲେ
ଏକତ୍ରିତ ହୋଇ ସର୍ବେ ଧାତାଙ୍କୁ କହିଲେ ।
ଧାତା ଶିବଙ୍କୁ କହିଲେ ବେଗେ ତୁମ୍ଭେଯାଅ
ଦିଲୀପ ଦୁଇରାଣୀଙ୍କୁ ପୁତ୍ରବର ଦିଅ ।
ଶୁଣି ଶିବ ଦିଲୀପଙ୍କ ରାଣୀପାଶେ ଗଲେ
ପୁତ୍ରବତୀ ହୁଅ ବୋଲି ବର ତାଙ୍କୁ ଦେଲେ ।
ଶୁଣି ରାଣୀଏ କହିଲେ ଏମନ୍ତ ବଚନ
ବିଧବା ଆମ୍ଭେ କିପରି ହୋଇବ ନନ୍ଦନ ।
ଶିବ କହିଲେକ ଋତୁକାଳେ ଦୁଇଜଣ
ରତିକଲେ ଜଣକର ହୋଇବ ନନ୍ଦନ ।
ଏହି ବର ଦେଇ ଶିବ ଅନ୍ତର୍ଦ୍ଧାନ ହେଲେ
କେତେ ଦିନେ ଦୁଇରାଣୀ ଋତୁସ୍ନାନ କଲେ ।
ଶିବଙ୍କ ଆଦେଶେ ଦୁଇରାଣୀ କଲେ ରତି
ରତି କରନ୍ତେ ଗୋଟିଏ ହେଲା ଗର୍ଭବତୀ ।
ଦଶମାସ ଅନ୍ତେ ହେଲା ପ୍ରସବର କାଳ
ମାଂସପିଣ୍ଡ ପରି ଜନ୍ମହେଲା ଏକବାଳ ।
ସେ ପୁତ୍ର ଧରି କାନ୍ଦିଲେ ସେହି ଦୁଇରାଣୀ
ଏହି ପୁତ୍ରଲାଗି ବର ଦେଲେ ଶୂଳପାଣି ।
ଅସ୍ଥିନାହିଁ ମାଂସପିଣ୍ଡ ଧରି ହେଉନାହିଁ
ଏ ପୁତ୍ର ଦେଖି ହସିବେ ସାହୀ ପଡ଼ିଶାହିଁ ।
ସେ ପୁତ୍ର ଫିଙ୍ଗିବା ପାଇଁ ବିଚାରନ୍ତି ମନେ
ଶୂନ୍ୟବାଣୀ ହେଲା ତାକୁ ପାଳ ଅତି ଯତ୍ନେ ।
ନିଶ୍ଚୟ ସଦ୍‌ଗତି ହେବ ତୁମ୍ଭଙ୍କୁ ଏ ପୁତ୍ର
ଯତନେ ପାଳ ଯା ନାମ ହେଉ ଭଗୀରଥ ।
ଏମନ୍ତ ଶୂନ୍ୟରୁ ଶବ୍ଦ ଯହୁଁ ସେ ଶୁଣିଲେ
ଅତିଯତ୍ନେ ବେନିପ୍ରାଣୀ ପୁତ୍ରକୁ ପାଳିଲେ ।
ଏକ ପୁତ୍ରକୁ ପାଳନ୍ତି ସ୍ନେହେ ବେନିମାତ
କୋଳେ ଧରି ହେଉଥାନ୍ତି ଅତ୍ୟନ୍ତ ଦୁଃଖିତ ।
ତିନିବର୍ଷ ବସାଇଲେ ଚରଣକୁ ଧରି
ପିଠି ପିଞ୍ଜରାରେ ତୈଳ ମରଦନ କରି ।
ଦ୍ୱାଦଶବର୍ଷେ ଚଳାନ୍ତି ଧରି ପୁତ୍ର ହାତ
ଗୋଡ଼ ଲଡ଼ ଲଡ଼ ଚାଲି ନ ପାରଇ ପୁତ୍ର ।
ପିତା ବୀର୍ଯ୍ୟ ଅସ୍ଥି ମାତା ରଜ ଅଟେ ମାଂସ
ଏହା ମିଳନରେ ହୁଏ ସ୍ୱରୂପ ପ୍ରକାଶ ।
ବୀର୍ଯ୍ୟର ବିହୀନେ ସେ କି କୁମର ଉତ୍ପତ୍ତି ।
ତେଣୁ ଚାଲିବାକୁ ତାର ନୁହଇ ଶକତି ।
ବିଂଶ ବରଷ ଚଳାନ୍ତେ କରି ଟେକାଟେକି
ବକ୍ରଗତିରେ ଚାଲୁଁ ସେ ହସନ୍ତି ତା ଦେଖି ।
ମୀନମାସ କୃଷ୍ଣପକ୍ଷ ରବିବାର ଚୌଠି
ସ୍ୱାତୀ ନକ୍ଷତ୍ରକୁ ବେଳ ଅଟେ ସାତଘଟି ।
ଅଷ୍ଟବକ୍ର ଆସୁଛନ୍ତି ସଗରଙ୍କ ପୁରୀ
ଭଗୀରଥ ଚାଲିଛନ୍ତି ବକ୍ରଗତି କରି ।
ତାହା ଦେଖି ତପୋବନ୍ତ ବିଚାରନ୍ତି ଚିତ୍ତେ
ଆମ୍ଭଙ୍କୁ ଦେଖି ଟାହୁଲି କରେ ଗର୍ବଚିତ୍ତେ ।
ମୋତେ ଦେଖି ଚାଲୁଥିବ ଯେବେ ଏ ଏମନ୍ତ
ସର୍ବଦା ଏହି ପ୍ରକାରେ ହେଉ ଏହା ଗାତ୍ର ।
ସ୍ୱଭାବେ ଏହି ପ୍ରକାରେ ହେଉ ଏହା କାୟ
ଏରୂପ ତେଜିଣ ହେଉ କନ୍ଦର୍ପ ପରାୟ ।
ମହାତ୍ମାଙ୍କର ବଚନ ହେଲା କାର୍ଯ୍ୟସିଦ୍ଧି
ପରମ ମୌଷଧିବାକ୍ୟ ଗଲା ତାର ବ୍ୟାଧି ।
ନିଷ୍କଳଙ୍କ ଚନ୍ଦ୍ରତୁଲ୍ୟ ଦେଖାଗଲା କାୟ
ଅଭିନବ ସୁନ୍ଦର ସେ କାମଦେବ ପ୍ରାୟ ।
ପୁତ୍ରକୁ ଦେଖି ସାନନ୍ଦ ହେଲେ ତାଙ୍କ ମାତ
ବାବୁ ଏଡ଼େ ସୁନ୍ଦର ତୁ ହୋଇଲୁ କେମନ୍ତ ।
ଭଗୀରଥ ବୋଲେ ମାତା ତୁମ୍ଭଠାରୁ ଗଲି
ଦାଣ୍ଡରେ ପୂର୍ବ ଚାଲିବା ପରି ଚାଲୁଥିଲି ।
ଅଷ୍ଟବକ୍ର ଋଷିଙ୍କୁ ମୁଁ ବାଟରେ ଦେଖିଲି
ତାହାଙ୍କ କୃପାରୁ ମାତ ବିପଦୁଁ ତରିଲି ।
ସାନନ୍ଦ ହୋଇଲେ ମାତା ପୁତ୍ରେ ଦେଖିକରି
ତାହାଙ୍କ ଆନନ୍ଦ ମୁଖେ କେହୁ କହିପାରି ।
ଏଥୁଅନ୍ତେ ବାଜୀପୃଷ୍ଠେ ଚଢ଼ି ଭଗୀରଥ
ମୃଗ ଶମ୍ବର ଶିକାରେ ଭ୍ରମଇ ବନସ୍ତ ।
ମାତାଏ ବୋଇଲେ ଦିନେ ସବୁଦିଗେ ଯିବୁ
ପୂର୍ବଦିଗକୁ କେବେ ନ ଯିବୁ ମୋର ବାବୁ ।
ମାତାର ବଚନ ମାନି ଭ୍ରମେ ତିନିଦିଗେ
ଦୁଷ୍ଟ ଦାନବଙ୍କୁ ମାରେ ରାଜ୍ୟରକ୍ଷା ଯୋଗେ

ଅସୁର ମାରି ମୁନିଙ୍କୁ କରଇ ସେ ରକ୍ଷା
କଲ୍ୟାଣ କରନ୍ତି ମୁନି ପୂରୁ ମନୋବାଞ୍ଛା ।
ଦିନେକ ମନେ ବିଚାର କଲେ ଭଗୀରଥ
ପୂର୍ବେ ଯିବା କେଉଁ କେଉଁ କଥା ଅଛି ଏଥ ।
କେବଣ ବିଚାର କରି ବାରନ୍ତି ଯେ ମାଏ
ଆଜ ଯିବି ମୁଁ ଅବଶ୍ୟ ପୂର୍ବଦିଗ ଯାଏ ।
ଅଶ୍ୱେକ ଆରୋହି ଧରି ହସ୍ତରେ କୃପାଣ
ବୈଶାଖ କୃଷ୍ଣଚଉଠି ସୌରୀବାର ଦିନ ।
ପୂର୍ବଦିଗେ ଭଗୀରଥ ଗମନ କରଇ
ଦୁଷ୍ଟ ଦାନବଙ୍କ ଭୟ ସେ ଦିଗରେ ନାହିଁ ।
ମହା ପରିମଳ ଅଟେ ସେ ଦିଗର ଭୂମି
ଭଗୀରଥ ହୃଷ୍ଟମନେ ଯାଏ ଭ୍ରମି ଭ୍ରମି ।
ଏହିରୂପେ ଯାଆନ୍ତେ ସେ ପୂର୍ବର ଦିଗକୁ
ଦେଖି କୁଢ଼ କୁଢ଼ ହୋଇଥିବା ପାଉଁଶକୁ ।
ଦେଖିଣ କୁମରମଣି ବିଚାରଇ ମନ
କିମ୍ପାଁତ କାରଣେ ଏହୁ ହୁଅନ୍ତି ଦହନ ।
କୁମରମଣି କରରେ ଘଟଟିଏ ଧରି
ସେ ଅଗ୍ନିରେ ପକାଇଲା ଜଳ ଆଣିକରି ।
ପାଣି ପକାନ୍ତେ ନ ଲିଭି ଅନଳ ଜଳଇ
କପିଳ ଋଷିଙ୍କୁ ଭଗୀରଥ ପଚାରଇ ।
ଏମାନେ କେଉଁ କାରଣେ ହୁଅନ୍ତି ଦହନ
ଋଷି ବୋଇଲେ ଏ ସର୍ବ ସଗର ନନ୍ଦନ ।
ମୃତ୍ତିକା ଖାଇଲେ ଖୋଳି ଏହି ତିନିକୋଣ
ପୂର୍ବ ଦକ୍ଷିଣ ଆଦିକୁ ଘେନିଲା ବରୁଣ ।
ଯହୁଁ ସେମାନେ ଆମ୍ଭରେ କଲେ ଅପରାଧ
କୋପେ ଶାପଦେଲୁ ସର୍ବେ ହୁଅନ୍ତି ଦଗଧ ।
ଭଗୀରଥ ପଚାରିଲେ କେହ୍ନେ ହେବେ ପାର
ବିଚାରି କହ ଏଥିକି କିସ ପ୍ରତିକାର ।
କପିଳ ବୋଇଲେ ସର୍ବେ ଦହନ ହୁଅନ୍ତି
ଯାଙ୍କ ବଂଶେ ଭଗୀରଥ ହୋଇଛି ଉପୃତ୍ତି ।
ସେ ପୁତ୍ର ଆକାଶୁ ଗଙ୍ଗା ଆଣିବଟି ଯେବେ
ତ୍ରିଧାରେ ବହିଲେ ଏଥେ ସେମାନେ ତରିବେ
କପିଳ ବଚନେ ତହୁଁ ଫେରିଯାଇ ବତ୍ସା
ମାତାଙ୍କ ସନ୍ନିଧେ ମିଳି ତାଙ୍କୁ କଲା ପୁଚ୍ଛା ।
ନ କରିବି ମୁହିଁ ଆଜି ସ୍ନାହାନ ଭୋଜନ
ପୁତ୍ରମୁଖୁଁ ମାଏ ଶୁଣି ଏସନ ବଚନ ।
କି ନିମନ୍ତେ କହ ବାବୁ ତୋର ଦୁଃଖଚିତ୍ତ
ଭଗୀରଥ ବୋଲେ ଶୁଣ କହୁଛି ଉଚିତ ।
ମୁକ୍ତିହେତୁ ପିତାମାତା ଉପୁଜାନ୍ତି ପୁତ୍ର
ମାତା ପିତାରେ ସେ ପୁତ୍ର ହୁଏ ଅଭକତ ।
ସେମାନଙ୍କ ପରି ମୁହିଁ ହୋଇଲି ଗୋ ମାତ
ଦହିଯ୍ୟ ହ୍ମନ୍ତି ଦେଖିଲି ତାତଙ୍କର ତାତ ।
ସେମାନଙ୍କ ଦହନରେ କିସ ହେବି ସୁଖୀ
ଆତ୍ମା ବିସର୍ଜିବି ମୁହିଁ ତାଙ୍କ ଦୁଃଖ ଦେଖି ।
ଉଠି ଭଗୀରଥ ନମି ମାତାଙ୍କର ପାଏ
ପିତୃକାର୍ଯ୍ୟ କରିବି ମୁଁ ଆଜ୍ଞାଦିଅ ମାଏ ।
ଏଥୁ ଅନନ୍ତରେ ଶୁଣ ମନୁ ଦଣ୍ଡଧାରି
ଦେବପୁର ନଗ୍ର ରାଜା ଯେ ପଦ୍ମକେଶରୀ ।
ପଦ୍ମା ନାମରେ ତାହାର ଥିଲା ଯେ କୁମାରୀ
ତାହାଙ୍କୁ ଭଗୀରଥକୁ ଦେଲା ବିଭାକରି ।
ବିବାହ ଅନ୍ତେ ଗୃହରେ ଗଲା କିଛିଦିନ
କାକୁସ୍ଥ ନାମରେ ହେଲା ଏହାଙ୍କ ନନ୍ଦନ ।
ପୁତ୍ର ଜନମ ହୁଅନ୍ତେ କରିଣ ସଂକଳ୍ପ
କପିଳ ଋଷିଙ୍କୁ କଲା ପାଞ୍ଚବର୍ଷ ତପ ।
କପିଳ ଋଷି ଯାଚିଲେ ତାହାକୁ ଯେ ବର
ଭଗୀରଥ ବୋଲେ ପିତାମହେ କର ପାର ।
କପିଳ ବୋଇଲେ ଗଙ୍ଗା ଆଣିପାରୁ ଯେବେ
ନିଶ୍ଚେଁ ଏମାନେ ଉଦ୍ଧାର ପାଇବେଟି ତେବେ
ଭଗୀରଥ ବୋଲେ ନିଶ୍ଚେଁ ଗଙ୍ଗାଙ୍କୁ ଆଣିବି
କ୍ଷୁଧା ପିପାସାରେ ଯେହ୍ନେ ପୀଡ଼ା ନ ପାଇବି ।
ପିତୃଙ୍କୁ ମୁକ୍ତ କରିବି ଯେ କାଳ ପର୍ଯ୍ୟନ୍ତେ
ତେତେଦିନ ଯାଏ ଆୟୁ ଦିଆଯାଉ ମୋତେ ।
କପିଳ ବୋଇଲେ ଯାହା କରୁଅଛୁ ଇଚ୍ଛା
ସେ କାର୍ଯ୍ୟ ସଫଳ କର ପୂରୁ ତୋର ବାଞ୍ଛା ।
କପିଳ ଋଷିଙ୍କ ଆଜ୍ଞା ମାଗି ଭଗୀରଥ
ସେଠାରୁ ପ୍ରସ୍ଥାନ କଲେ କରି ପ୍ରଣିପାତ ।
ପଶ୍ଚିମ ମୂରତି ହୋଇ କୁମର ଚଳଇ
ବହୁରାଜ୍ୟ ବନଗିରି ଜିଣିଯାଏ ସେହି ।
ମେରୁ ମେଖଳିରେ ଯାଇ ହେଲା ଉପସ୍ଥିତ
ଧାର୍ମିକ ହେତୁ ମିଳିଲା ତହିଁ ଭଗୀରଥ ।
ମେରୁ ମେଖଳିରେ ତପ କଲାକ ଅଭ୍ୟାସ
ନିର୍ଘାତକୁ ମନାଇଲେ ସପତ ବରଷ ।
ନିର୍ଘାତ ବୋଇଲେ କିସ ଅଛି ତୋର କାର୍ଯ୍ୟ
ଭଗୀରଥ ବୋଲେ ଶୁଣ ଆହେ ଗିରିରାଜ ।
ଗଙ୍ଗା ଦେବୀଙ୍କୁ ମୁହିଁ ଯେ ଆକାଶରୁ ନେବି
ମୋହର ପିତାମାନଙ୍କୁ ଉଦ୍ଧାର କରିବି ।
ଗିରି ବୋଲେ ସହିବୁ କି ଗଙ୍ଗାର ଆର୍ଦ୍ଧୋଳି
ମୁଁ ସହି ନ ପାରି ବିଭାଦେଲଇଁ ତ୍ରିଶୂଳି ।
ଈଶ୍ୱରଦେବଙ୍କ ତହିଁ ଗଙ୍ଗା ଏବେ ଅଛି
ତାହାଙ୍କ ପାଶକୁ ଯାଇ କହିଦିଅ ପୁଚ୍ଛି ।

ତାଙ୍କ ବାକ୍ୟେ ଭଗୀରଥ ଗଲେ କଇଳାସ
ତାହାଙ୍କୁ ତପେ ସେବିଲା କୋଡ଼ିଏ ବରଷ ।
ଈଶ୍ୱର ବୋଇଲେ ଏବେ ମାଗ ଇଚ୍ଛାବର
ଭଗୀରଥ ବୋଲେ ଗଙ୍ଗା ଦିଅ ମୋ ସଙ୍ଗର ।
ଈଶ୍ୱର ବୋଇଲେ ଗଙ୍ଗା ଥିଲା ମୋର ତହିଁ
ଅପାର ଅର୍ଦ୍ଧୋଳି ତାର ନ ପାରିଲି ସହି ।
ବିମୁଖ ହୋଇ ଦେଲି ମୁଁ ବ୍ରହ୍ମା କମଣ୍ଡଳେ
ଧାତାଙ୍କୁ ମାଗି ତୁ ନିଅ ମଧ ଭୂମଣ୍ଡଳେ ।
ଶିବବାକ୍ୟେ ଭଗୀରଥ କୈଳାସୁ ଚଳିଲେ
ଚଉଦ ବରଷ ତପେ ବ୍ରହ୍ମାଙ୍କୁ ସେବିଲେ ।
ପ୍ରସନ୍ନ ହୋଇ ବୋଇଲେ ତାଙ୍କୁ ପିତାମହ
ବର ମାଗି ଘେନ କେଉଁକାର୍ଯ୍ୟ ତୋର କହ ।
ଭଗୀରଥ ବୋଇଲାକ କପିଳଙ୍କ ଶାପେ
ଷାଠିସସ୍ର ପିତା ଦହ୍ୟ ହେଉଛନ୍ତି ଆପେ ।
ଏବେ ମୋର ବାକ୍ୟଘେନି ଆହେ ପିତାମହ
ଗଙ୍ଗାଙ୍କୁ ମୋ ସଙ୍ଗେ ଦିଅ କରି ଅନୁଗ୍ରହ ।
ବ୍ରହ୍ମା ବୋଇଲେ ଆମ୍ଭଙ୍କୁ ଶିବ ଦେଇଥିଲେ
ମୁହିଁ ତାହାକୁ ରଖିଣ ଥିଲି କମଣ୍ଡଳେ ।
ଆଜ୍ଞାପାଇ କମଣ୍ଡଳେ ଖୋଜଇ ନୃପତି
ଦେଖେ କମଣ୍ଡଳୁ ବହୁଗୁଣ ଦୀର୍ଘପ୍ରତି ।
ସଚରାଚର ପୃଥିବୀ ତା ମଧ୍ୟେ ଦେଖିଲା
ଚବିଶ ବରଷେ ତାହା କଳି ନ ପାରିଲା ।
କମଣ୍ଡଳୁ ବୋଲେ କିସ ଲୋଡୁ ଭଗୀରଥ
ବୋଲେ ଭଗୀରଥ ଗଙ୍ଗା ଦିଅ ମୋ ସଙ୍ଗତ ।
କମଣ୍ଡଳୁ ବୋଲେ ଗଙ୍ଗା ମୋର ତହିଁ ଥିଲେ
ପନ୍ନଗ ସତ୍ୟଯୁଗରେ ବାମନ ହୋଇଲେ ।
ସେକାଳେ ପାଦେକ ତାଙ୍କ ମେଦିନୀ ସେ ପୂରି
ଅନେକ ପାଦ ଆକାଶ ଗଲା ଘୋଟିକରି ।
ନାଭିପଦ୍ମରୁ ଯେବଣ ପାଦ ପ୍ରକାଶିଲେ
ସେହି ପାଦରେ ବଳିକି ପାତାଳେ ଚାପିଲେ ।
ସେ ମୂରତି ଦେଖି ଦେବେ ଗଲେତାଙ୍କ ଲାଗେ
ବ୍ରହ୍ମା ମଧ ଯାଇଥିଲେ ମୋତେ ଘେନି ସଙ୍ଗେ
ମୋତେ ନିଉଡ଼ନ୍ତେ ଗଙ୍ଗା ମୋରତହୁଁ ଗଲେ
ବାମନଙ୍କ ନଖ କୋଣେ ଯାଇଣ ରହିଲେ ।
ବାରସ୍ୱତୀ ଭୁବନରେ ଅଛନ୍ତି ବାମନ
ତାଙ୍କୁ ମାଗ ଗଙ୍ଗା ଦେବେ ସେ ହୋଇ ପ୍ରସନ୍ନ
କମଣ୍ଡଳ ବଚନରେ ଭଗୀରଥ ଗଲେ
କଠୋର ତପସ୍ୟା କରି ବିଷ୍ଣୁଙ୍କୁ ସେବିଲେ ।
ପାଞ୍ଚବର୍ଷ ତପ କରୁ ତୋଷେ ନାରାୟଣ
ପ୍ରସନ୍ନ ହୋଇ ବୋଇଲେ ବର ମାଗି ଘେନ ।
ଭଗୀରଥ ବୋଲେ ମମ ପିତୃକାର୍ଯ୍ୟ ଅର୍ଥେ
ଗଙ୍ଗାନେବାକୁ ଆସିଛି ତୁମ୍ଭର ଅଗ୍ରତେ ।
ଗଙ୍ଗାଙ୍କୁ ମୋ ସଙ୍ଗେ ଦେଲେ ସେହୁଯିବେ ତରି
ପରମ ପୁରୁଷ ନାଥ ଦିଅ ଦୟା କରି ।
ବିଷ୍ଣୁ ବୋଇଲେ ମୋ ପାଦେ ବ୍ରହ୍ମାଦେଲେ ଢାଳି
ରହିଥିଲେ ସେହି ମୋର କନିଷ୍ଠ ଅଙ୍ଗୁଳି ।
ଶୁଣି ଭଗୀରଥ ନମେ ବିଷ୍ଣୁଙ୍କ ଚରଣେ
ନଖକୋଣେ ଖୋଜେ ଗଙ୍ଗା ପିତୃଙ୍କ କାରଣେ
ଅନେକ ଯୋଜନ ସେହି ପାଦର ଆକୃତି
ପଞ୍ଚଦଶ ବର୍ଷେ ତାର ନ ପାଇଲା ସ୍ଥିତି ।
କନିଷ୍ଠ ଅଙ୍ଗୁଳି ବୋଲେ ଆହେ ପୁଣ୍ୟବାନ
କେଉଁ କଥା ତୁମ୍ଭେ ଆସି କର ଅନ୍ୱେଷଣ ।
ଭଗୀରଥ ବୋଲେ ମୁହିଁ ଗଙ୍ଗାଙ୍କୁ ଲୋଡ଼ିଛି
ନଖକୋଣେ ଛନ୍ତି ବୋଲି କହିଲେ ଶ୍ରୀବତ୍ସି ।
ଅଙ୍ଗୁଳିବୋଲେ ବାମନ ଗଲେ ମେରୁ ସଭା
ଓହ୍ଲାଇ ଆସନ୍ତେ ଗଙ୍ଗା ରହିଲେରେ ବାବା ।
ଗଙ୍ଗା ରହିଣ ଅଛନ୍ତି ମେରୁର ମେଖଳେ
ବଣା ହୋଇଣ ଜାହ୍ନବୀ ରହିଲେ ସେ ବିଳେ ।
ଆଉ ଅନ୍ୟସ୍ଥାନେ ଗଙ୍ଗା ନ ପାଇବୁ ତୁହି
ଏବେ ଆଣ ତାକୁ ମେରୁ ମେଖଳକୁ ଯାଇ ।
ଶୁଣି ଭଗୀରଥ ଗଲା ସେ ମେରୁ ମେଖଳେ
ଭ୍ରମିଣ ଲୋଡ଼ଇ ତହିଁ ଅତ୍ୟନ୍ତ ବିକଳେ ।
ଅବିଶ୍ରାମେ ବୁଲି ଖୋଜେ ମେରୁର ଆକ୍ରାନ୍ତ
ତହିଁ ଖୋଜିଲା ପନ୍ଦର ବରଷ ପର୍ଯ୍ୟନ୍ତ ।
ଦେଖଇ ମେରୁ ମେଖଳେ ଗଙ୍ଗା ଛନ୍ତି ପଡ଼ି
ଜାହ୍ନବୀଙ୍କି ବୋଇଲେ ସେ ବେନି କରଯୋଡ଼ି
ତାହାଙ୍କୁ ସେବିଲା ନବ ବରଷ ପର୍ଯ୍ୟନ୍ତେ
ଗଙ୍ଗା ବୋଇଲେ ବିନୟ କରୁ କି ନିମନ୍ତେ ।
ଭଗୀରଥ ବୋଲେ ମାତା ଧବଳାଙ୍ଗୀ-ଶୁଣ
ପାଇଲି ତୁମ୍ଭଙ୍କୁ ବହୁ ଲଭିଣ କଷଣ ।
ସୂର୍ଯ୍ୟବଂଶରେ ସଗର ନାମେ ଥିଲା ରାୟେ
ତାହାର ହେଲେ ଷାଠିଏ ସହସ୍ର ତନୟେ ।
ପୃଥ୍ୱୀ ଖୋଳି ମାଟି ଖାନ୍ତେ ସେ କପିଳ ଋଷି
କ୍ରୋଧେ ଶାପ ଦେଲେ ସର୍ବେ ହୁଅ ଭସ୍ମରାଶି
ତେଣୁ ମାତ ତୁହି ମଧ ଭୁବନକୁ ଯିବୁ
ମୋ ପିତାମାତାଙ୍କୁ ମାତ କାରଣ କରିବୁ ।
ଶୁଣିଣ ଜାହ୍ନବୀ ଦେବୀ ବଚନ ପ୍ରକାଶି
ମେରୁ ମେଖଳୁଁ କେମନ୍ତେ ନେବୁ ତୁ କହସି ।
ତୁହି ଯେବେ ମୋତେ ନେବୁ ମଧ ଭୁବନକୁ
ଐରାବତ ଗଜ ଆଣ ମାଗି ବାସବକୁ ।

ମେରୁ ମେଖଳରେ ମେରୁ ଚଉଦନ୍ତ ମାରୁ
ତେବେ ଭଗୀରଥ ମୋତେ ମର୍ତ୍ତ୍ୟନେଇ ପାରୁ
ଶୁଣିଣ ସାନନ୍ଦ ହେଲା ସଗରର ନାତି
ଇନ୍ଦ୍ରଙ୍କୁ ଲୟ କରିଲା କରିଣ ଭକତି ।
ଚୌଦ ବରଷେ କମ୍ପିଲା ଇନ୍ଦ୍ରଙ୍କ ଆସନ
ବିଜେ କରିଣ ବୋଇଲେ କିମ୍ପାଁ କରୁ ଧ୍ୟାନ ।
ଭଗୀରଥ ବୋଲେ ମୋତେ ଅନୁଗ୍ରହ କର
ଅଇରାବତ ହସ୍ତୀକି ଦିଅ ଏକଥର ।
ମେରୁ ଫୁଟାଇଲେ ସେହୁ ଚଉଦନ୍ତ ମାରି
ତେଣୁ ଗଙ୍ଗାଙ୍କୁ ମୁଁ ନେଇ ଯିବି ମଧ୍ୟପୁରୀ ।
ଇନ୍ଦ୍ର ବୋଇଲେ ତୁ ଶୁଣ ଆରେ ବାଳଯତି
ଐରାବତ ହସ୍ତୀ ନୋହେ ମୋର ବଶବର୍ତ୍ତୀ ।
ତାହାରି ପାଶକୁ ଏବେ ବେଗେ ତୁହି ଚଳ
ମଣାଇ ତାହାକୁ ନିଅ ବୋଲୁଁ ଆଖଣ୍ଡଳ ।
ଶୁଣି ଭଗୀରଥ ତହୁଁ ଚଳିଲା ବହନ
ତପେ ବସି ଐରାବତ କରିଲାକ ଧ୍ୟାନ ।
ପାଞ୍ଚବର୍ଷେ ଐରାବତ ପ୍ରସନ୍ନ ହୋଇଲା
ଭଗୀରଥେ ବର ମାଗ ବୋଲିଣ କହିଲା ।
ଭଗୀରଥ ବୋଲେ ଦୁଃଖୁଁ ତାର ଐରାବତ
ଗଙ୍ଗାଙ୍କୁ ଆବୋରି ଅଛି ମେରୁ ବଳବନ୍ତ ।
ଚଉଦନ୍ତ ମାରିବୁ ତୁ ମେରୁର ମେଖଳେ
ଚାରିମୂର୍ତ୍ତି ହୋଇ ଗଙ୍ଗା ବାହାରିବେ ହେଳେ ।
ଶୁଣି ଐରାବତ ଚଳେ ମେରୁର ସମୀପେ
ଦେଖଇ ମେରୁ ମେଖଳେ ଗଙ୍ଗା ଛନ୍ତିଗୋପ୍ୟେ
ଐରାବତକୁ ଦେଖିଣ ବୋଲେ ଧବଳାଙ୍ଗୀ
ଆହେ ମହାନାଗ ତୁହି ଦନ୍ତ ମାର ବେଗି ।
ମୁହିଁ ଗମନ କରିବି ମଧ୍ୟ ଭୁବନକୁ
ଭଗୀରଥ ନେବ ପିତୃଗଣେ ତାରିବାକୁ ।
ଗଜ ବୋଲେ ତୁ ପଡ଼ିଛୁ ଏଥେ ବଶାହୋଇ
ଅମାର୍ଗେ ପଡ଼ିଲୁ ତୋତେ ପୁଚ୍ଛନ୍ତା କେ ନାହିଁ ।
ଅପୂର୍ବ ହୋଇ ପଡ଼ିଛୁ ତୁ ମେରୁମେଖଳେ
ଅନେକ ପୂଜା ପାଇବୁ ମଞ୍ଚର ମଣ୍ଡଳେ ।
ମୁହିଁ ଅନିମିତ୍ତେ ସିନା ପାଇବଇଁ କଷ୍ଟ
ଦାନ୍ତ ପ୍ରହାରେ ପରାସ ହେବ ମୋର ଓଷ୍ଠ ।
ମୁହିଁ ମାଗିବି ପଦାର୍ଥେ ଦେବୁ ଯେବେ ମୋତେ
ସତ୍ୟରେ କହ ମାଗିବି ତେବେ ତୋ ଅଗ୍ରତେ
ଜାହ୍ନବୀ ବୋଇଲେ ମୋର ତିନିବାର ସତ୍ୟ
ଯାହା ମାଗିବୁ ମାଗ ତା ଏବେ ଐରାବତ ।
ଗଜରାଜ ବୋଲେ ମୋତେ ଏହି ବର ଦିଅ
ଆଗେ ଧବଳାଙ୍ଗୀ ତୁହି ମୋର ଭାର୍ଯ୍ୟା ହୁଅ ।
ଗଙ୍ଗା ବୋଇଲେ ମାଗିଲୁ ଏହି ବର ଗୋଟା
ବାଳୁତ କାଳରୁ ମୁହିଁ ଅଟେ ବଡ଼ ଦୁଷ୍ଟା ।
ଦେବାଧିଦେବଙ୍କ ରାଜା ଅଟନ୍ତି କପାଳୀ
ସହି ନ ପାରିଲେ ସେହି ମୋହର ଆର୍ଦ୍ଦୋଳୀ
ବ୍ରହ୍ମା କମଣ୍ଡଳେ ନେଇ ଦେଲେ ଯବ ତିଳ
ସେ ନେଇ ଢାଳିଲା କାଳେ ବିଷ୍ଣୁ ପାଦତଳ ।
ବାମନ ସହି ନ ପାରି ମୋହର ଆର୍ଦ୍ଦୋଳୀ
ବଶାକରି ଛାଡ଼ିଗଲେ ଏଥେ ବନମାଳୀ ।
ତୁ ଯେବେ ମୋର ଆର୍ଦ୍ଦୋଳୀ ପାରିବୁଟି ସହି
କିପାଁ ତୋହର ଭାରିଯା ନ ହୋଇବି ମୁହିଁ ।
ଐରାବତ ବୋଲେ ଯେବେ ତୋହର ଆର୍ଦ୍ଦୋଳି
ନ ସହିଲେ ଗୃହ ମଧ୍ୟେ ପାରିବା କି ଚଳି ।
ଯେତେ ଆର୍ଦ୍ଦୋଳୀ କରିବୁ ଗଙ୍ଗା ମୋତେ ତୁହି
ସବୁ ଆର୍ଦ୍ଦୋଳୀ ତୋହର ସହିବଇଁ ମୁହିଁ ।
ଗଙ୍ଗା ବୋଲେ ନ ପାରିବୁ ସହି ଐରାବତ
ଏକବାର ସହିଲେ ତୁ ହେବୁ ପ୍ରିୟ ମତ ।
ଚାରି ଦାନ୍ତକୁ ମାରିଣ କାଢ଼ିବୁ ଯେ କାଳେ
ଉଭା ହୋଇଥିବୁ ମେରୁ ପର୍ବତର ତଳେ ।
ଈଶ୍ୱର ଦେବ ଶିରରେ ଧରିଥିଲେ ମୋତେ
ସେହି ସହି ନ ପାରିଣ ତେଜିଲେ ତୁରିତେ ।
ମୋ ଦର୍ପ ସହି ପାରିବୁ ଯେବେ ଗଜରାଜା
ଅବଶ୍ୟ ହୋଇବି ମୁହିଁ ତୋହର ଭାରିଯା ।
ଶୁଣି ଐରାବତ ଗଜ କରି ମହାରୋଷ
ପଛକୁ ଘୁଞ୍ଚିଗଲା ଯେ ଯୁଣ ପଞ୍ଚଦଶ ।
କଣ୍ଠ ଗର୍ଜନ କରିଣ ଧାଇଁ ମହାନାଗ
ଚଉଦନ୍ତ ମେରୁପରେ ମାଇଲା ସେ ବେଗ ।
ଷାଠିଏ ଯୋଜନ ମେରୁ ମେଖଳାରେ କଣ୍ଟି
ଐରାବତ ଦନ୍ତଘାତେ ଗିରି ଗଲା ଫୁଟି ।
ମହାବିଶ୍ୱରୂପ ଧରି ଉଚ୍ଛୁଡ଼ନ୍ତେ ଦନ୍ତ
ପର୍ବତ କମ୍ପିଲା କମ୍ପିଗଲା ଦିଗସାତ ।
ସିନ୍ଧି ଆନ୍ଦୋଳନ ପ୍ରାୟେ ଶୁଭିଲା ଗଗନେ
ମହାନାଦରେ ତ୍ରାସିଲେ ବୃନ୍ଦାରକମାନେ ।
ଉଚ୍ଛୁଡ଼ି ଚଉଦନ୍ତକୁ କାଢ଼େ ଗଜଗାଜି
ତିନିଦନ୍ତ କାଢ଼ିଲା ସେ ଦନ୍ତେ ରହେ ଭାଜି ।
ବୈବସ୍ୱତ ମନୁ କଲେ ଅଗସ୍ତିଙ୍କୁ ପୁଚ୍ଛା.
ବଡ଼ ଆଶ୍ଚର୍ଯ୍ୟ କହିଲେ ଶୁଣିବାକୁ ଇଚ୍ଛା ।
ଅଗସ୍ତି ବୋଇଲେ ତୁହି ଅଟୁ ମହାଜ୍ଞାତା
ଏକମନେ ଶୁଣ ଏହା ଆଦିଅନ୍ତ କଥା ।
ମୁନିବ୍ୟସନ ବୋଲିଣ ଏକ ସତ୍ୟଯୁଗେ
ଅମର ନାମରେ ଇନ୍ଦ୍ର ବସଇ ସେ ସ୍ୱର୍ଗେ ।

ସେହି ଭୁବନ ଗୋଟିକ ଅତି ଅନୁପମ
ସେହି ପୁର ଆୟତନ ଲକ୍ଷେକ ଯୋଜନ ।
ପୂର୍ବଦ୍ୱାରେ ବସେ ନନ୍ଦିକେଶ ମହାବଳ
ଦକ୍ଷିଣ ଦ୍ୱାରେ ଗଣେଶ ଛନ୍ତି ଦ୍ୱାରପାଳ ।
ଉତ୍ତର ଦ୍ୱାରରେ ଚଣ୍ଡ ପ୍ରଚଣ୍ଡ ବସନ୍ତି
ଦକ୍ଷିଣ ଦ୍ୱାରେ ଜଗନ୍ତି ଜୟନ୍ତ ଜୟନ୍ତୀ ।
ସତ୍ୟଯୁଗେ ନବଲକ୍ଷ ବରଷ ଅନ୍ତରେ
ବିଶ୍ୱାବସୁ ନାମରେ ଯେ ଏକ ସମ୍ବତ୍ସରେ ।
କୁମ୍ଭ ଶୁକ୍ଳ ଶଉରୀ ବାର ଯେ ସପ୍ତମୀ
ସେଦିନ ବେଳ ହୋଇଛି ନବଘଡ଼ି ପୁଣି ।
ଜୟନ୍ତକ ଅଜୟନ୍ତ ବେନି ଦ୍ୱାରପାଳ
ବିକ୍ରମ ଦେଖାଇ ଦୁହେଁ ଆରମ୍ଭିଲେ ଗୋଳ ।
ଜୟନ୍ତକ ବୋଲେ ମୁହିଁ ବଳେ ଅଟେ ଶ୍ରେଷ୍ଠ
ଅଜୟନ୍ତ ବୋଲେ ମୁହିଁ ତୋଠାରୁ ଗରିଷ୍ଠ ।
ବୋଲାବୋଲି ହୋଇ ଦୁହେଁ ହେଲେ ଅନ୍ୟୋଅନି
ରାଗରେ ବୁଲାନ୍ତି ଦୁହେଁ ଶୂଳେ ଶୂଳେ ଘେନି ।
ନାରଦ ବୋଇଲେ ତୁମ୍ଭେ ଦୁହେଁ ମହାବଳୀ
ପ୍ରାକର୍ମ ଦେଖାଇ ଦୁହେଁ କିପାଁ କର କଳି ।
ଯେବେ ପ୍ରାକର୍ମ ବହିଛି ତୁମ୍ଭେ ଶରୀରରେ
ଶୂଳ ନେଇ ମାର ତୁମ୍ଭେ ମେରୁ ମେଖଳରେ ।
ମେରୁମେଖଳ ଫୁଟିବ ଯାହାର ତ୍ରିଶୂଳେ
ସେ ବଳିଷ୍ଠ ବୋଲାଇବ ଏ ମହୀମଣ୍ଡଳେ ।
ତେବେ ଜାଣିବା କାହାର ଅଛି କେତେ ବଳ
ନାରଦ ବାକ୍ୟେ ଜୟନ୍ତା ଧଇଲା ତ୍ରିଶୂଳ ।
ଦକ୍ଷିଣ ହସ୍ତେ ସବଳେ ତ୍ରିଶୂଳ ଉଠାଇ
ମେରୁମେଖଳେ ପ୍ରହାର କଲାକ ନିଠାଇ ।
ଚଉଷଠିଯୂଣ ସେହି ମେରୁର ମେଖଳ
ଏକାଥରକେ ଫୁଟାଇ କାଢ଼ିଲା ତ୍ରିଶୂଳ ।
ବାକୀ ଚାରିଗୁଣ ଆଉ ଫୁଟିବାକୁ ଥିଲା
ଐରାବତ ଚଉଦନ୍ତ ସେ କାଳେ ମାଇଲା ।
ତିନିଦନ୍ତ ମାଇଲା ସେ ତ୍ରିଶୂଳ ଘାତରେ
ଦନ୍ତେକ ପଶେ ଗିରିର ନିଦାନ ସ୍ଥାନରେ ।
ସେ ଦାନ୍ତ ଗୋଟିକ ଭାଙ୍ଗି ଭିତରେ ରହିଲା
ଅନ୍ୟ ତିନିଗୋଟି ଦାନ୍ତ ବାହାର ହୋଇଲା ।
ତିନିଗୋଟି ଦନ୍ତ କଲା ଯେବଣ ଗହ୍ୱର
ସେହିବାଟେ ଗଙ୍ଗାଦେବୀ ହୋଇଲେ ବାହାର
ଯେତେବେଳେ ଗଙ୍ଗାଦେବୀ ବାହାର ହୋଇଲେ
ଶତେ ଯୋଜନୁଁ ସେ ଗଜ ଉପରେ ପଡ଼ିଲେ ।
ଗଙ୍ଗା ଯମୁନା ଆବର ସରସ୍ୱତୀ ତିନି
ତ୍ରିଧାରେ ବହିଲେ ହୋଇ ପ୍ରଖର ବାହିନୀ ।
ଯମୁନା ସରସ୍ୱତୀ ଏ ହୋଇ ବିଶ୍ୱରୂପୀ
ଅଇରାବତର କଟି ମେଖଳରେ ବ୍ୟାପି ।
ମଧ୍ୟେ ବାହାର ହୋଇଲେ ଦେବୀ ସୁରେଶ୍ୱରୀ
ଗଜଉପରେ ବସିଣ ଗଲେ ଶାକମ୍ଭରୀ ।
ଯେଉଁ ସମୟେ ବହିଲେ ସେହି ତିନିମୂର୍ତ୍ତି
ତାହାଙ୍କ ଗର୍ଜନଘାତେ କମ୍ପିଗଲା ପୃଥ୍ୱୀ ।
ମେରୁରୁ ବାହାର ଗଙ୍ଗା ବହେ ଗଳଗାଜି
ମହାନାଗ ଐରାବତ ପଡ଼ିଲା ନିମଜ୍ଜି ।
ତାଙ୍କ ତରଙ୍ଗ ଘାତରେ ଉତ୍ତାନ ହୋଇଲା
ଦଶଯୋଜନ ପର୍ଯ୍ୟନ୍ତ ସେହୁ ଭାସିଗଲା ।
ପଶ୍ଚିମଭାଗେ ସେ ଯାଉଁ ପ୍ରଥମେ ଲାଗିଲା
ହସ୍ତିନା ନାମେ କଟକ ସେ ସ୍ଥାନେ ବସିଲା ।
ଉତ୍ତର ଦିଗେ ଲାଗିଲା ପୁଣି କରିବର
ଯମପ୍ରସ୍ଥ ନାମେ ତହିଁ ବସିଲା ନଗର ।
ଦକ୍ଷିଣ ଭାଗରେ ଯାଇ ପୁଣି ସେ ଲାଗିଲା
ବାରୁଣାବନ୍ତ ନାମରେ ତହିଁ ରାଜ୍ୟ ହେଲା ।
ପୁଣି ମଧ୍ୟରେ ଲାଗିଲା ଇନ୍ଦ୍ରର ବାହନ
ଇନ୍ଦ୍ରପ୍ରସ୍ଥ ନାମେ ତହିଁ ବସିଲା ଭୁବନ ।
ପୁଣି ଭାସିଣ ଲାଗିଲା ଯାଇ ପୂର୍ବଦିଗେ
ଜୟନ୍ତା ନଗର ହେଲା ବାରାନିଧି ଲାଗେ ।
ଭାସି ଭାସି ପାଞ୍ଚସ୍ଥାନେ ଯହୁଁ ସେ ଲାଗିଲା
ସେହି ପାଞ୍ଚସ୍ଥାନ ପଞ୍ଚକଟକ ହୋଇଲା ।
ସେ କଟକ ବେଢ଼ି ଗଙ୍ଗା ତ୍ରିଧାରେ ବହନ୍ତି
ଆଗେ ଚାଲି ଭଗୀରଥ ପଥ କଢ଼ାଅନ୍ତି ।
ମହାଘୋରବନେ ଗଙ୍ଗା ପ୍ରଖରେ ବହନ୍ତି
ପୃଥ୍ୱୀ ବେଢ଼ି ପଞ୍ଚବଟୀ ବନରେ ମିଳନ୍ତି ।
ପଞ୍ଚବଟୀରେ ତ୍ରିନଦୀ ପ୍ରବେଶିଲେ ଆସି
ତହିଁ ତପ କରୁଛନ୍ତି ଜହ୍ନୁ ମହାଋଷି ।
ଗଙ୍ଗାଦେବୀ ଆସୁଛନ୍ତି ଋଷିଙ୍କ ଛାମୁର
ଦେଖିଣ ମହର୍ଷି ପାତିଦେଲେ ନିଜ କର ।
ଶୁଣ ଆହେ ଯୁଧିଷ୍ଠିର ବଦନ୍ତି ମାର୍କଣ୍ଡ
ତପୋବଳ ପ୍ରାକର୍ମରେ ମହାଭୁଜଦଣ୍ଡ ।
ଯେତେବେଳେ ସେ ଦକ୍ଷିଣଭୁଜ ଦେଲେ ପାତି
ସେ ହସ୍ତେ ରହିଲେ ଗଙ୍ଗାଆଦି ସରସ୍ୱତୀ ।
ତିନିସହସ୍ର ଯୋଜନ ମାଡ଼ି ଯେଉଁ ଧାର
ବହୁଥିଲା ସେ ରହିଲେ ଋଷିଙ୍କର କର ।
କରେ ଧରି ଋଷିବର ଚଳୁ ତାହା କଲେ
ଚଳୁ କରନ୍ତେ ଜାହ୍ନବୀ ପେଟରେ ରହିଲେ ।
ଗଙ୍ଗା ବିଶ୍ରାମିଲେ ଯହୁଁ ଋଷି ଗର୍ଭଗତେ
ଦେଖି ଭଗୀରଥ ହେଲେ ବିକଳ ଯେ ଚିତ୍ତେ ।

ଅନେକ ବିକଳ ହେଲା ବାଳୁତ ତନୟ
ଗଙ୍ଗାଙ୍କୁ ସେ ନ ଦେଖିଣ ବିକଳ ହୃଦୟ ।
ଦୁଃଖେଣ ମନାଇଁ ମୁହିଁ ଆଣିଲି ଜାହ୍ନବୀ
କେବଣ ମହାତମା ଯେ ମୋତେ ପରାଭବୀ ।
ଏତେ ବୋଲି ଭାଗୀରଥ ଚାହିଁଲା ଲେଉଟି
ବଟତଳେ ବସିଛନ୍ତି ଜହ୍ନୁ ତପୋନିଷ୍ଠୀ ।
ମୋତେ ତୁହି କିପାଁ ସେବା କରୁ ବାଳବସି
ଭଗୀରଥ ବୋଇଲା ମୁଁ ଗଙ୍ଗାଙ୍କୁ ଆଣିଛି ।
ମୋହର ପିତା ଯେ ହେଉଅଛନ୍ତି ଦହନ
ଅନେକମତେ ଖଟିଲି ମୁଁ ଦେବତାମାନ ।
ଏଗାରଶତ ବର୍ଷେ ମୁଁ ଆଣିଲି ଗଙ୍ଗାଙ୍କୁ
ତୁ ଏବେ ମହାରଷି ହେ ଗ୍ରାସକଲୁ ତାଙ୍କୁ ।
ଜହ୍ନୁ ରଷି ବୋଇଲେ ତୁ ବାଳକ ଅଜ୍ଞାନ
ଗର୍ଭରେ ପଡ଼ିଣ ଗଙ୍ଗା ହୋଇଲାଣି ଜୀର୍ଣ୍ଣ ।
ଆଉ ଗଙ୍ଗାଙ୍କୁ ପାଇବୁ କାହୁଁ ବାଳ ତୁହି
ଭଗୀରଥ ବୋଲେ ରକ୍ଷା କର ହେ ଗୋସାଇଁ
ଅନେକମତେ ମୁଁ ସେବି ଆଣିଲି ଗଙ୍ଗାଙ୍କୁ
ତୁ ବାଟେ ଭଗ୍ନ ଚିନ୍ତିଲୁ କହିବି କାହାକୁ ।
ଏବେ ମୋତେ କାରଣ ତୁ କର ତପୋବନ୍ତ
ପିତୃ କାର୍ଯ୍ୟ କରି ଉଦ୍ଧାରିବି ମୁଁ ତାହାନ୍ତ ।
ଜହ୍ନୁ ରଷି ବୋଇଲେ ତୁ କଲୁରେ କଟାଳ
ଗଙ୍ଗାଙ୍କୁ ଦେଖି ଭକ୍ଷିଲୁ ଶୀଘ୍ରେ ଆମ୍ଭେ ଜଳ ।
ଭଗୀରଥ ବୋଲେ ଦିଅ ନ ଦେଲେ ନୁହଇ
ତୋ ଉପରେହତ୍ୟାଦେବି ନଦେଲେ ଗୋସାଇଁ
ଜହ୍ନୁ ବୋଇଲେ ତାହାକୁ ଖୋଜିବା ଯୁକତେ
କେଉଁଠାରେ ରହିଅଛି ସେ ଗଙ୍ଗା ଗୁପତେ ।
ଖୋଜିଲେ ସକଳ ସ୍ଥାନମାନ ତପଚାରୀ
ଅନ୍ତପୁଟି ଖୋଜନ୍ତେ ସେ ଅତି ଯତ୍ନକରି ।
ଦେଖିଲେ ମହାତ୍ମା ଅଛି ମଳଦ୍ୱାରଗତେ
ଦେଖିଲେ ମନ୍ତ୍ର ପ୍ରମାଣେ ଅଛି ତପୋବନ୍ତେ ।
ମଳଦ୍ୱାରେ ବାହାରିଲେ ହେବ ଅପବିତ୍ର
ବୋଲନ୍ତି ଏସନ ବିଚାରିଣ ତପୋବନ୍ତ ।
ମୂତ୍ରନାଳେ ବାହାରିଲେ ମାତୃହର ଦୋଷ
କଣ୍ଠୁ ବାହାର ହୋଇଲେ ହୋଇବ ଉଚ୍ଛିଷ୍ଟ ।
ନୟନପଥରେ ଯେବେ କରିବି ବାହାର
ଲୋତକ ବୋଲି ତାହାକୁ କହିବେକ ନର ।
ନାସିକାରେ ବାହାରନ୍ତେ ସିଙ୍ଗାଣି ପ୍ରକଟି
ଜାନୁର ମୂଳେ ମହର୍ଷି ତିନିରେଖା କାଟି ।
ଗଙ୍ଗା ବାହାର ହୋଇଲେ ତିନିଧାର ଫୁଟି
ସେ ଗଙ୍ଗାଙ୍କୁ ମହାମୁନି ବଚନ ପ୍ରକଟି ।

ଜହ୍ନୁ ବୋଇଲେ ଗଙ୍ଗା ତୁ ଯିବୁଟି ମଞ୍ଚକୁ
ବାଞ୍ଛା ଗୋଟିକି ସଂକଳ୍ପ କରିବ ତୁମ୍ଭଙ୍କୁ ।
ସ୍ନାହାନ କରିବେ ଯେବେ ଲୋକ ଧର୍ମଚିତ୍ତେ
ଜାହ୍ନବୀନାମ ମୁଖରେ ବୋଲିବେ ସେ ତୋତେ
ଗଙ୍ଗା ବୋଇଲେ ଏକଥା ମୋର ସତ୍ୟ ସତ୍ୟ
ଆଜହୁଁ ଜାହ୍ନବୀଗଙ୍ଗା ମୋ ନାମ ଯଥାର୍ଥ ।
ସେହିଠାରୁ ଆସଇ ଯେ ଗଙ୍ଗା ଅତିବେଗେ
ଆସଇ ବନ ପର୍ବତ ଘୋଟି ମଧ୍ୟସ୍ୱର୍ଗେ ।
ଶୁଣ ଆହେ ଯୁଧିଷ୍ଠିର ବଦନ୍ତି ମାର୍କଣ୍ଡେ
ଆକାଶୁଁ ବାହାର ଗଙ୍ଗା ସ୍ନାନେ ପାପଖଣ୍ଡେ ।
ମେରୁ ମେଖଳୁ ବାହାର ଗଙ୍ଗା ତିନିଧାର
ବେଢ଼ିଣ ବହଇ ସେହି ପାଞ୍ଚୋଟି ରାଜ୍ୟର ।
କରୁଥିଲେ ଜହ୍ନୁ ରଷି ହୃଦେ ସେ ବିହାର
ପୁଣି ଜାନୁବାଟେ ତହୁଁ ହୋଇଲେ ବାହାର ।
ପୂର୍ବରୂପ ଧରି ଗଙ୍ଗା ସେଠାରୁ ବାହୁଡ଼ି
ବନଗିରି କନ୍ଦରାକୁ ଆସୁଅଛି ମାଡ଼ି ।
ଅସ୍କନ୍ଦ ବୋଲିଣ ଅଛି ଗୋଟିଏକ ଗ୍ରାମ
ଗଙ୍ଗା ଘେନି ଭଗୀରଥ ଚଳେ ଅବିଶ୍ରାମ ।
ଅଚଳହାଣ୍ଡି ଗୋଟିଏ ମୁଣ୍ଡେ ବହିଆଣି
ଗଙ୍ଗା ଆସନ୍ତେ ପାତିଲା ହାଣ୍ଡି ଶୁଣ୍ଡିଆଣୀ ।
ବଣା ହୋଇ ତିନିନଦୀ ପଶିଲେକ ତହିଁ
ସେ ସୁରାହାଣ୍ଡି ଅସୀମ ଦୁର୍ଗନ୍ଧ ଗନ୍ଧାଇ ।
ସେ ଗନ୍ଧ ସହି ନ ପାରି ହୁଅନ୍ତେ ଆଉଟି
ରହିଲେ ତହିଁ ଗଙ୍ଗାଙ୍କ ତିନିଧାର ଗୋଟି ।
ଭଗୀରଥ ଶୁଣ୍ଡିଆଣୀ ପାଶରେ ମିଳିଣ
ଷଡ଼ବର୍ଷ ସେବାକଲା ବିନୟ ଭାବେଣ ।
ଭଗୀରଥ ବୋଲେ ମାତ ତୁହି ଅଟୁ ସତୀ
ତୋ ସୁରାଭାଣ୍ଡରେ ଗୋପ୍ୟ ହେଲେ ତିନିମୂର୍ତ୍ତି
ପିତୃଗଣଙ୍କୁ ତାରିବି ତୋହର ପ୍ରସାଦେ
ଅନୁଗ୍ରହେ ତୁହି ମାତ ତାହାକୁ ଛାଡ଼ିଦେ ।
ଗଙ୍ଗାଙ୍କୁ ବୋଇଲା ତହୁଁ ସୁରା ଶୁଣ୍ଡିଆଣୀ
ଅନେକ ତୀର୍ଥେ ମର୍ତ୍ତେ ତୁ କରିବୁ ଭ୍ରମଣି ।
ଯେତେଦିନ ଯାଏ ତୁମ୍ଭେ ମର୍ତ୍ତ୍ୟପୁରେ ଥିବ
ସୁରାସୁରୀ ଗଙ୍ଗା ବୋଲି ନାମ ବୋଲାଇବ ।
କୁବେର ରହିଣ ଥିବ ସଦା ମୋର ଆଳେ
ଦରିଦ୍ର ମୁହିଁ ନୋହିବି ଜାଣ କେତେବେଳେ ।
ଶୁଣ୍ଡିଆଣୀ ଏହି ବର ଗଙ୍ଗାଙ୍କୁ ମାଗିଲା
ସୁରାହାଣ୍ଡି ଗୋଟିକି ସେ ତହୁଁ ଭାଙ୍ଗିଦେଲା ।
ସୁରାହାଣ୍ଡି ମଧୁ ଗଙ୍ଗା ବାହାରି ସେକ୍ଷଣ
ତିନିଧାରରେ ବହିଲେ ମାଡ଼ି ଘୋରବନ ।

ବୋଇଲେକ ଗଙ୍ଗା ତୁହି ଶୁଣ ଭଗୀରଥ
ତୁହି ଆଗେ ଚାଲ ଆମ୍ଭେ ଯିବୁ ତୋ ପଶ୍ଚାତ
ଅପାର ଦୁଃଖ ତୁହିରେ ପାଇଲୁ କୁମର
ତୁ ଆଗେ ନ ଚାଲିଲେଟି ହେବୁ ହରବର ।
ଭଗୀରଥ ବୋଲେ ଶୁଣ ତୁ ଜଗତମାତା
ତୋର ଆଗେ ଚାଲିବାକୁ ମୁହିଁ କି ଶକତା ।
ଗଙ୍ଗା ବୋଇଲେ ତୁ ମୋତେ ଆବୋରି ନ ନେଲେ
ତୁହି ଅଲଗା ହୁଅନ୍ତେ ମୋତେ ବନ୍ଧୀକଲେ ।
ତୁ ଆଗେ ଥିଲେ ତୋପଛେ ଥିବୁ ଯେ ଗୋଡ଼ାଇ
ତୁହି ଆଗ ନୋହିଲେ ଯେ ଆମ୍ଭେ ଯିବୁକାହିଁ ।
ଭଗୀରଥ ବୋଲେ ମୁହିଁ ଜାଣିବି କେମନ୍ତେ
ବନଗହନ ଅଟଇ ଏ ଦୁର୍ଗମ ପଥେ ।
ନଦୀ ପର୍ବତ ବୃକ୍ଷରେ ଅଦୃଶ୍ୟ ହେବଇଁ
କେମନ୍ତ ପଛରେ ମାତା ଆସିବୁ ଗୋଡ଼ାଇ ।
ଗଙ୍ଗା ବୋଇଲେରେ ତୁହି କର କମ୍ବୁଧ୍ୱନି
ତୋର ପଛେ ଯିବୁ ଆମ୍ଭେ ସେହି ନାଦ ଶୁଣି ।
ଆଗେ ଯାନ୍ତି ଭଗୀରଥ ପଛେ ସୁରଧୂନି
ଯାଉଅଛନ୍ତି କମ୍ବୁର ସ୍ୱର ଶୁଣି ଶୁଣି ।
ତିନିକୁଢ଼ ହୋଇ ଜଳେ ଯେ ସ୍ଥାନେ ବହନି
ଭଗୀରଥ ପ୍ରବେଶିଲେ ଜାହ୍ନବୀଙ୍କି ଘେନି ।
ସେ ଅନଳ ତିନିକୁଢ଼ ବୁଲୁ ଭଗୀରଥ
ଗଙ୍ଗାହିଁ ଗୋଡ଼ାଇଛନ୍ତି ତାହାଙ୍କ ପଶ୍ଚାତ ।
ଏମାନେ ମୋହର ପିତୃ ବୋଲେ ଭଗୀରଥ
ଏହାଙ୍କୁ ଶୀତଳ କର ତୁ ଜଗତମାତ ।
ଗଙ୍ଗାବୋଲେ ଯେଣେ ଯିବୁ ମୁଁ ତେଣିକି ଯିବି
ତୋହର ନ ଗଲେ ମୁହିଁ ବାହୁଡ଼ି ଆସିବି ।
ଯେ ଯାହାର କାର୍ଯ୍ୟ ସେହି ପଢ଼େ ଭାଗୀରଥୀ
ସେହି ଲୋକ ଆଗରେ ଯେ ଝାସିବା ଯୁକତି ।
ଭଗୀରଥ ବୋଇଲେ ଗୋ ରକ୍ଷାକର ମୋତେ
ଗଙ୍ଗା ବୋଇଲେ ଅକ୍ଷୟ ବର ଦେବି ତୋତେ
ଯେତେକ ଲୋକ ସ୍ନାହାନ କରିବେ ଏ ଜଳେ
ଭାଗୀରଥୀ ଗଙ୍ଗା ବୋଲି ଚିନ୍ତିବେ ସେକାଳେ
କୋଟିଏ ତୀର୍ଥର ଅଟେ ଯେତେ ଫଳଶ୍ରୁତି
ସ୍ନାନବେଳେ ଯେ କହିବ ଗଙ୍ଗା ଭାଗୀରଥୀ ।
ତହୁଁ ଶତଗୁଣ ଫଳ ଅବଶ୍ୟ ଲଭିବ
ଆମ୍ଭର ଏହି ବଚନ ଅଟଇଟି ଧ୍ରୁବ ।
ଗଙ୍ଗାଙ୍କ ବଚନେ ତହୁଁ ସଗରର ନାତି
ଯାଇଣ କପିଳ ଋଷି ଚରଣେ ନମନ୍ତି ।
ମୁହିଁ ଝାସୁଅଛି ଏବେ ପିତୃଙ୍କ ସଙ୍ଗତେ
ଏଥିକି ଯେ ଫଳଶ୍ରୁତି ରହିଅଛି କେତେ ।
ସେ ଫଳ ପ୍ରାପତ ମୋତେ କରିବ ମହାତ୍ମା
ଦିଗପାଳ ତୁଳେ ତୁମ୍ଭେ ସାକ୍ଷୀ ହୁଅ ବ୍ରହ୍ମା ।
ଜୟ ଜୟ ଜାହ୍ନବୀ ଗୋ ନିର୍ଘାତ ନନ୍ଦିନୀ
ଜୟ ଜୟ ଜାହ୍ନବୀ ଗୋ ପବିତ୍ର କାରିଣୀ ।
ଜୟ ଜୟ ଜାହ୍ନବୀ ଗୋ ରୁଦ୍ରର ମଉଳି
ଜୟ ଜୟ ଜାହ୍ନବୀ ଗୋ ତୋ ରୂପ ଧବଳୀ ।
ଜୟ ଜୟ ଜାହ୍ନବୀ ଗୋ ଆକାଶ ବାହିନୀ
ଦୁସ୍ତର ପାପରୁ ମାତ ତୁହି ଉଦ୍ଧାରିଣୀ ।
ପାପବିମୋଚନୀ ମାତ ତୁହି ପୁଣ୍ୟନିଧି
ଅନାଦି ଅପର୍ଣ୍ଣା ତୁହି ବାଞ୍ଛା କରୁ ସିଦ୍ଧି ।
ପ୍ରଳୟ କାଳରେ ମାଗୋ ତୁହି ଶେଷରୂପୀ
ମହା ପ୍ରଳୟରେ ଯାଉ ଗଗନକୁ କ୍ଷେପି ।
ଚନ୍ଦ୍ର ସୂର୍ଯ୍ୟ ବ୍ରହ୍ମା ଇନ୍ଦ୍ର ଦେବ ଶୂଳପାଣି
ସର୍ବ ଭୂତେଶ୍ୱରୀ ମାଗୋ ସର୍ବ ସଂହାରିଣୀ ।
ପ୍ରଳୟକାଳେ ସବୁଙ୍କୁ ଗର୍ଭରେ ସଂହରୁ
କାଳଭୋଗ ଶେଷେ ପୁଣି ତାଙ୍କୁ ଜାତକରୁ ।
ଚରାଚରଙ୍କର ତୁହି ଜୀବର ତୋଷିଣୀ
ଯାବତ ଜୀବନ ମାତ ତୁହି ସେ କାରିଣୀ ।
ଯେ ଯେଉଁ ପାତକମାନ ଅଜ୍ଞାନେ କରନ୍ତି
ତୋ ଜଳେ ସ୍ନାନ କରନ୍ତେ ଦେଉ ତୁ ମୁକତି ।
ଯାବତ କାଳରେ ମାତ ତୁହି ଅଟୁ ସତ୍ୟ
ତାରିଣୀ କାରିଣୀ ମାଗୋ ଉଦ୍ଧରୁ ସମସ୍ତ ।
ସଂସାରୁ ଦୁଷ୍କୃତ ମାତ ତୁହି ଯେ ଛଡ଼ାଉ
ଶିବ ହିତେ ତାଙ୍କ ଶିରେ ସର୍ବଦା ତୁ ଥାଉ ।
ସ୍ଥାବର ଜଙ୍ଗମ କୀଟ ଜୀବ ଚାରିଖାନି
ତୋହର ସଞ୍ଚଳା ସିନା ଜଗତ ଜନନୀ ।
ମକରବାହିନୀ ମାଗୋ ନିଦ୍ରା କାଳ କାମ
ଏ ସବୁକୁ ମାତ ତୁହି କରିଛୁ ଦମନ ।
ମାନବ କୁଳେ ଜନମ ମହାପାପୀ ମୁହିଁ
ମୋତେ ତ ଉଦ୍ଧାର କର ମାତ କୃପାମୟୀ ।
ବେଦମନ୍ତ୍ର ଅଧ୍ୟୟନେ ତୁହି ସିଦ୍ଧଦାତ୍ରୀ
ଏହିରୂପେ ଭଗୀରଥ କଲା ବହୁ ସ୍ତୁତି ।
ଭଗୀରଥ ସ୍ତବେ ତୁଷ୍ଟ ହୋଇ ଗଙ୍ଗାମାତ
ବୋଇଲେ ତୋ ମନୋବାଞ୍ଛା ସିଦ୍ଧହେଉ ସୁତ
ସେ ଜାହ୍ନବୀ ଦେବୀଙ୍କର ପାଦେ କରି ଆଶ
ବନପର୍ବରେ କହଇ ଶ୍ରୀ ଶାରଳା ଦାସ ।

■ ■ ■

## ସୁରେଶ୍ୱରୀ ଗଙ୍ଗା ଶ୍ରୀରାମଙ୍କ ଅଙ୍ଗ ସ୍ପର୍ଶକରି ପବିତ୍ର ହେବା

ଏଥୁଅନ୍ତେ ବୈବସ୍ୱତ ମନୁ ନୃପରାଣ
ଅଗସ୍ତି ମୁନିଙ୍କ ପାଦେ କରିଣ ପ୍ରଣାମ ।

ବୋଇଲେ ଏଥି ଉତ୍ତାରୁ କହ କିସ ହେଲା
ଭଗୀରଥ ଗଙ୍ଗା ଆଣି କେଉଁଆଡ଼େ ଗଲା ।
ଅଗସ୍ତି କହିଲେ ଶୁଣ ମନୁ ନୃପବର
ମାରକଣ୍ଡ କହୁଛନ୍ତି ଯୁଧିଷ୍ଠି ଆଗର ।
ଭଗୀରଥ ଗଙ୍ଗା ନାମ ହୃଦେ ସୁମରିଲା
ପୁଣି ଅନଳକୁ ସେହୁ ପ୍ରଦକ୍ଷିଣ କଲା ।
ଅନଳ ମଧ୍ୟକୁ ଯହୁଁ ପଡ଼ିଲାକ ଡେଇଁ
ତିନିଆଡୁ ତିନି ନଦୀ ମେଳ ହେଲେ ତହିଁ ।
ସରସ୍ୱତୀ ଯମୁନା ସେ ଗଙ୍ଗା ତିନିଧାର
ସଙ୍ଗତ ହୋଇ ପୂରିଲେ ସାଗର ମଧ୍ୟର ।
ଘୋର ଗର୍ଜନ ନାଦରେ ସେଠାରେ ବୁଲିଲେ
ତା ଉପରେ ପକ୍ଷୀ ଉଡ଼ି ଯାଇ ନ ପାରିଲେ ।
ସଗର ରାଜାର ଷଷ୍ଟି ସହସ୍ର କୁମର
ଅନଳ ଜ୍ୱାଳାରୁ ମୁକ୍ତ ହୋଇଲେ ସତ୍ୱର ।
ସୂର୍ଯ୍ୟବଂଶ ରାଜାଙ୍କର ଯେତେ ପାପ ଥିଲା
ଭଗୀରଥ ପୁଣ୍ୟେ ତାହା କ୍ଷୟ ହୋଇଗଲା ।
ମାରକଣ୍ଡ ବୋଇଲେକ ଶୁଣ ତୁ ଯୁଧିଷ୍ଠି
ସୁପୁତ୍ର ହେଲେ ବିକାଶେ କୁଳ କୀର୍ତ୍ତିଗୋଟି ।
ତୁହି ଯେ ସୁପୁତ୍ର ବାବୁ ସାତ ସୋମବଂଶେ
ପଣ୍ଡୁରାଜା ବ୍ରହ୍ମହତ୍ୟା ଖଣ୍ଡିଲୁ ବିଶେଷେ ।
ଯେବଣ ମହାଯଜ୍ଞ ତୁ କରିଲୁ ଯୁଧିଷ୍ଠି
ଦେବଙ୍କୁ ଦୁର୍ଲ୍ଲଭ ନରେ ଅଶ୍ରୁତି ଅଦୃଷ୍ଟି ।
ଏବେ ରାଜ୍ୟ ଭୋଗକର ବନବାସ ତେଜି
ଧର୍ମର ଆଶ୍ରୟ ନିଅ ଅଧର୍ମ ବରଜି ।
ଆମ୍ଭଙ୍କୁ ଯେବଣ ଜନ୍ ବାରେ ପାରେ ତୋଷି
ଆମ୍ଭ କଲ୍ୟାଣେ ସେ ହୁଏ ବଇକୁଣ୍ଠ ବାସୀ ।
ଅଠାଶୀ ସହସ୍ର ଋଷି ତୋ ସଙ୍ଗେ ଅଛନ୍ତି
ମନ ତୋଷିଣ ଭୋଜନ ଦେଉ ତାଙ୍କୁ ନିତି ।
ଆମ୍ଭେ ଯେ ତୃପ୍ତ ହୋଇଲୁ ତୋର ଭକ୍ତିମାନେ
ଅନ୍ତିମେ ସ୍ୱଦେହ ଘେନି ବସ ସୁରସ୍ଥାନେ ।
ବାବୁ ଏ ଗଙ୍ଗା ଯମୁନା ସରସ୍ୱତୀ ତିନି
ସୁରାଭାଣ୍ଡେ ପଶନ୍ତେ କେ ନ ଛୁଇଁଲେ ପାଣି ।
ଦେବଋଷି ରାଜଋଷି ଅଷ୍ଟାଦଶ ବଂଶେ
ଗଙ୍ଗାଙ୍କୁ କେ ନ ଛୁଅନ୍ତି ସରାଭାଣ୍ଡ ଦୋଷେ ।
ତ୍ରେତୟା ଯୁଗର କଥା ଶୁଣ ଯୁଧିଷ୍ଠିରେ
ଦଶରଥ ଲୁଚିଥିଲେ ପର୍ଶୁରାମ ଡରେ ।
ଅପୁତ୍ରକ ଦୋଷେ ତାକୁ ପର୍ଶୁ ନ ମାଇଲେ
ଯହୁଁ ତାର ଚାରିପୁତ୍ର ଜନମ ହୋଇଲେ ।
ତାଙ୍କୁ ମଧ୍ୟ ପର୍ଶୁ ଡରେ କଲାକ ଗୁପତ
ଅନ୍ତଃପୁରୁ ବାହାର ନ କଲେ ଦଶରଥ ।

ପାତ୍ର ଅମାତ୍ୟ ଏ ଆଦି ଜାଣନ୍ତି କେବଳ
ଗୁପ୍ତେ ସାତବର୍ଷ କଲେ ତାଙ୍କୁ ମହୀପାଳ ।
ଧନୁ ଶୁକ୍ଳ ତ୍ରୟୋଦଶୀ ଦିବା ଗୁରୁବାର
ପୁଷ୍ୟା ନାମରେ ନକ୍ଷତ୍ର ଭୋଗ ସେ ଦିନର ।
ବାଣିଜ୍ୟ ନାମେ କରଣ ଶୁଭ ନାମେ ଯୋଗ
ମକର ସଙ୍କରାନ୍ତିକି ତିନିଦିନ ଭୋଗ ।
ସେହିଦିନ କଉଶିକ ବିଶ୍ୱାମିତ୍ର ଯତି
ବଦରିକା ଆଶ୍ରମରେ ସନ୍ଧ୍ୟା କରୁଛନ୍ତି ।
ମୁନିବର ଇଷ୍ଟଦେବେ କରୁଛନ୍ତି ଲୟ
ପଡ଼ିଲା ଛାମୁରେ ଆସି ଏକଗୋଟି ହୟ ।
ବଡ଼ ଚୋଖାର ଅଟଇ ସେହି ତୁରଙ୍ଗମ
ତା ଅଙ୍ଗେ ସଜା ହୋଇଛି ନାନା ଅସ୍ତ୍ରମାନ ।
ଛେଲ ନାରାଚ ସାବେଳି ଚକ୍ର ଅସିପତ୍ର
ଯଷ୍ଟି ଲାଙ୍ଗିଆ ଯେ ଦ୍ରୋଣ ନବନିଶି କୁନ୍ତ ।
ଗଦା ମୁଦୁଗର ଫଳା ଆବର କୋଦଣ୍ଡ
କୁଠାର ବାବଲ ଶର ପରଶୁ ଯେ କାଣ୍ଡ ।
ବଜ୍ର ଶକତି ଆବର ଅମୋଘ ଶକତି
ବ୍ରହ୍ମଶକତି ଏପରି ଶକ୍ତି ନାନା ଜାତି ।
ଆବର ଅଛି କୋଦାଳ ନାମେ ବ୍ରହ୍ମବାଣ
ନାଗପାଶ କାଳପାଶ ତାଡ଼ଣ ଫୋଡ଼ଣ ।
କୁହୁକା ପର୍ବତ ତୀକ୍ଷ୍ଣମୁନା ଅଗ୍ନିଶର
ମୋହଶର ମନଭେଦୀ ଅକ୍ଷୟ ତୂଣୀର ।
ଏହି ଅସ୍ତ୍ରମାନଙ୍କରେ ହୋଇଣ ଭୂଷଣ
ଅକସ୍ମାତେ ଆସି ହେଲା ମୁନି ସନ୍ନିଧାନ ।
ଚାରି ଚରଣ ଧବକ ଧଳା ମୁଖ କାୟ
ଧବଳ ଅଟଇ ଲାଞ୍ଜ ସେ ଧବଳମୟ ।
ସୁବର୍ଣ୍ଣ ପରାୟେ ଅଟେ ବେନି ଆଖି ତାର
ଚୌରାଶୀ ଲକ୍ଷଣେ ଯୁକ୍ତ ସେହି ଅଶ୍ୱବର ।
ସେ ହୟକୁ ପୃଥିବୀରେ ତୁଳନା ତ ନାହିଁ
ତାକୁ ଦେଖି ବିଶ୍ୱାମିତ୍ର ବିଚାର କରଇ ।
ଅଶ୍ୱକୁ ଲୟ କରିଣ କି ବିଚାରୁଅଛି
ଦେଖିଲେ ଆକାଶୁ ଏକ ଖଡ଼ଗ ଆସୁଛି ।
ଖଡ଼୍‌ଗ ତେଜେ ଆଦିତ୍ୟର ତେଜଯାଏ ବୁଡ଼ି
ପୃଥ୍ୱୀ ରସାଗତ ହେବ ଭୂମିରେ ସେ ପଡ଼ି ।
ବିଶ୍ୱାମିତ୍ର ଧର ବୋଲି ହେଲା ଦୈବବାଣୀ
ଏ ଖଡ଼ଗ ପଡ଼ିଲେ କି ରହିବ ଧରଣୀ ।
ଯୁକତେ ସେ ବିଶ୍ୱାମିତ୍ର ପୃଥ୍ୱୀ ଅଧିପତି
ଜନମ କାଳରୁ ସେହି ଅଟଇ ଯେ କ୍ଷତ୍ରୀ ।
ଚଉଷଠି ବିନ୍ଧାଣ ସେ ଜାଣେ ଗଣ୍ଡି ମୁଠି
ନ ପଡୁ ଧଇଲେ ସେହି ଖଡ଼ଗକୁ ଉଠି ।

ଏ ସମୟେ ପୁନରପି ହେଲା ଦୈବବାଣୀ
ଖଡ୍‌ଗ ଅଶ୍ୱ ଘେନି ମୁନି ଯାଅ ଏହିକ୍ଷଣି ।
ଦଶରଥ ଘରେ ଜାତ ଶ୍ରୀରାମ ଲକ୍ଷ୍ମଣ
ଅଶ୍ୱରେ ବସାଇ ତାଙ୍କୁ ବେଗକରି ଆଣ ।
ଶ୍ରୀରାମ ହାତରେ ବଧ କରାଅ ତାଡ଼କୀ
ତୁମ୍ଭମାନଙ୍କର ଯଜ୍ଞ ସେ ପାରିବେ ରଖି ।
ଗାଧିନନ୍ଦନ ସନ୍ତୋଷେ ଶୂନ୍ୟବାଣୀ ଶୁଣି
ତପ ତ୍ୟାଗ କରିଣ ସେ ଉଠିଲେ ସେକ୍ଷଣି ।
ଆକାଶ ଅଶ୍ୱେ ବସନ୍ତେ ଯାଇ ମୁନିବର
ଧୀରେ ଧୀରେ ଚାଲିଲା ଯେ ସେହି ହୟବର
ହୟରେ ଚଢ଼ି ଅଯୋଧ୍ୟା ହେଲେ ପରବେଶ
ପଳାନ୍ତି ସେ ନଗ୍ରଲୋକ ପାଇ ତାଙ୍କ ତ୍ରାସ ।
ପରବେଶ ହେଲେ ଋଷି ରାଜା ସିଂହଦ୍ୱାରେ
ଦେଖିଣ ପାତ୍ର ଅମାତ୍ୟେ ଲୁଚିଲେ ଭୟରେ ।
ସତ୍ୱରେ ଭିତରେ ଯାଇ ପଶେ ଦ୍ୱାରପାଳ
ଦଶରଥ ନୃପତିଙ୍କି କହିଲା ସକଳ ।
ସ୍ୱାମୀ ଗାଧିର ନନ୍ଦନ ଯେହୁ ବିଶ୍ୱାମିତ୍ର
ଖଡ୍‌ଗ ଏକ ହସ୍ତେ ଧରି ଦ୍ୱାରେ ଉପସ୍ଥିତ ।
ଶୁଣି ଦଶରଥ ପିଣ୍ଡୁ ପ୍ରାଣ ଗଲା ଛାଡ଼ି
ଚାର ପୁଣି କହେ ଏକ ଅଶ୍ୱଛନ୍ତି ଚଢ଼ି ।
ଚୌରାଶୀ ଲକ୍ଷଣେ ପୂର୍ଣ୍ଣ ଅଟେ ସେହି ହୟ
ଶୁଣି ସ୍ତମ୍ଭୀଭୂତ ହେଲେ ଅଯୋଧ୍ୟାର ରାୟ ।
ବିଚାରଇ ଦଶରଥ ପୁତ୍ର ଜନ୍ମଜାଣି
ପର୍ଶୁରାମ ପେଷିଛନ୍ତି ଏ କ୍ଷତ୍ରିଙ୍କୁ ପୁଣି ।
ଖଡ୍‌ଗ ଧରି ଆସିଛନ୍ତି ଛେଦିବେ ମୋ ଶିର
ପୁତ୍ରଙ୍କୁ ମାରିବେ କିବା ରାଜ୍ୟ ନେବେ ମୋର
ମନ୍ତ୍ରୀ ବୋଇଲା ଭୋଦେବ ଚାଲ ଯିବା ବେଗ
ବିଳମ୍ବ ହୋଇଲେ ମୁନି ହୋଇବେ ଯେ ରାଗ
ଆପଣେ ଯେ ଅର୍ଘ୍ୟ ଘେନି ପ୍ରବେଶି ସତ୍ୱରେ
ପଡ଼ିଲା ସେ ବିଶ୍ୱାମିତ୍ର ମୁନିଙ୍କ ପୟରେ ।
ତୟା ପ୍ରାୟ ରଙ୍ଗ ଚକ୍ର ପ୍ରାୟେ ବୁଲେ ଆଖି
ରାଜା ବୋଲେ ଭୟ କଲି ତୁମ୍ଭଙ୍କୁ ମୁଁ ଦେଖି ।
ତପୀ ହୋଇ କି କାରଣେ କରେ ଖଡ୍‌ଗ ଧର
ଲକ୍ଷଣବନ୍ତ ଅଶ୍ୱେକ ଚଢ଼ିଛ ଆବର ।
ମୁନି ବୋଇଲେ ନ ଜାଣୁ ତୁହି ଆମ୍ଭ କଥା
ଏ ମହୀମଣ୍ଡଳେ ଆମ୍ଭେ କ୍ଷତ୍ରୀ ବଳବନ୍ତା ।
ବଶିଷ୍ଠଙ୍କ ବିବାଦରେ ହେଲୁ ତପୋଧନୀ
କ୍ଷତ୍ରୀପଣେ ଆମ୍ଭ ସମ କେ ଅଛି ଅବନୀ ।
ଦଶରଥ ବୋଲେ ରାଜା ହୋଇ ହେଲେ ଋଷି
ଖଡ୍‌ଗ ଧରି ମୋ ପାଶକୁ କିପାଁ ଅଛ ଆସି ।

ବିଶ୍ୱାମିତ୍ର ବୋଲେ ଶୁଣ ସୂର୍ଯ୍ୟବଂଶ ରାଣ
ଏ ଖଡ୍‌ଗ ଅଶ୍ୱ ଦେବାକୁ ଆସିଅଛୁ ଜାଣ ।
ଶୁଣିଣ ସାନନ୍ଦ ହେଲେ ଅଯୋଧ୍ୟାର ପତି
ବିଶ୍ୱାମିତ୍ରଙ୍କୁ ପୂଜିଲା କରି ଅତି ଭକ୍ତି ।
ସ୍ୱର୍ଣ୍ଣ ପିଢ଼ାରେ ବସାଇ ଅର୍ଘ୍ୟ ଦେଲେ ପୁଣ
ରତ୍ନବସ୍ତ୍ର ନଟିକାଳ ସୁଗନ୍ଧ ଚନ୍ଦନ ।
ବହୁମତେ ଦଶରଥ ହୋଇଣ ବିନୟୀ
ଶତସସ୍ର ପ୍ରଣମିଲେ ମୁନିପାଦେ ଶୋଇ ।
ମୋର ଭୁବନେ ପଡ଼ିଲା ତବ ପାଦରଜ
ନିସ୍ତରିଲି ନିସ୍ତରିଲି ଆହେ ଋଷିରାଜ ।
ସୌଭାଗ୍ୟ ଦିବସ ଆଜ ମୋହର ଅଟଇ
ଆପଣଙ୍କୁ ଦେଖି ନେତ୍ର ପବିତ୍ର କଲଇଁ ।
କଲ୍ୟାଣ ବାଞ୍ଛା କରିଣ ତାଙ୍କୁ ମହାଯତି
ସ୍ୱର୍ଣ୍ଣ ପିଢ଼ାରେ ଆସନ ଦେଲା ନରପତି ।
କୁଶଳ ବାରତା ପଚାରନ୍ତି ମହାମୁନି
ପଡ଼ିଲା ତୁମ୍ଭର ମୋହପୁରେ ପାଦବେନି ।
ଏଣୁ ମିଳିଲାକ ମୋତେ ସମସ୍ତ ଐଶ୍ୱର୍ଯ୍ୟ
ନିସ୍ତରିଲି ନିସ୍ତରିଲି ବୋଲନ୍ତି ସେ ରାଜ ।
ମହାସୁଖୀ ହୁଅ ବୋଲି ବୋଇଲେ କୌଶିକ
ନିର୍ବିଘ୍ନରେ ପାଳ ତୁହି ଅଯୋଧ୍ୟା କଟକ ।
ପୁଣି ରାଜାଙ୍କୁ ଚାହିଁଣ ପଚାରନ୍ତି ଯତି
କ୍ଷେମେଣ ବର୍ତ୍ତିଛନ୍ତି ନା ତୋର ପୁତ୍ର ପୁତ୍ରୀ ।
ଦଶରଥ ବୋଲେ ସର୍ବ କୁଶଳ ମୋହର
ଏକଇ ଦୁହିତା ମୋର ଜାଣ ମୁନିବର ।
ଦୁହିତାର ଛଡ଼ା ପୁତ୍ର ମୁନି ମୋର ନାହିଁ
ଅପୁତ୍ରକ ହୋଇ ପୁତ୍ର ପାଇବି ମୁଁ କାହିଁ ।
ଭୋ ମୁନି ଗୋଟିଏ ପୁତ୍ରଯେବେ ମୋର ଥାନ୍ତା
ପର୍ଶୁରାମ କି ମୋହର ଜୀବନ ରଖନ୍ତା ।
ଅନେକ ପ୍ରବୋଧ ଯହିଁ କଲା ଦଶରଥ
ହୋଇଲେ ଅତି ଆନନ୍ଦ ଶୁଣି ବିଶ୍ୱାମିତ୍ର ।
ବିଶ୍ୱାମିତ୍ର ବୋଇଲେକ ଶୁଣ ଦଶରଥ
ତୁହି ତ ମିଥ୍ୟା କହିଲୁ ମୋହର ଅଗ୍ରତ ।
ପୁତ୍ର ନାହିଁ ବୋଲି ତୁ ଯେ କହିଲୁ ନୃପତି
ଆମ୍ଭଠାରେ ଲୁଚାଉ ତୁ କେବଣ ଯୁକତି ।
ଶ୍ରୀରାମଚନ୍ଦ୍ର ଲକ୍ଷ୍ମଣ ତୋର ବେନିସୁତ
ତାହାଙ୍କୁ ଆଣ ରାଜା ତୁ ମୋହର ଅଗ୍ରତ ।
ତୋହର ପୁତ୍ରଙ୍କୁ ଦେଖିବାକୁ ଆମ୍ଭ ଶ୍ରଦ୍ଧା
ରାମ ନାମ ସୁମରନ୍ତେ ଛାଡ଼େ ପାପ ବାଧା ।
ଦଶରଥ ବୋଲେ ମୋର ଏଡ଼େ ଭାଗ୍ୟକାହିଁ
ଶ୍ରୀରାମ ପ୍ରାୟେ ମୁଁ ପୁତ୍ର କାହୁଁ ପାଇବଇଁ ।

ବିଶ୍ୱାମିତ୍ର ବୋଇଲେ ତୁ ଭଣ୍ଡି ଲୋଡୁ ମୋତେ
ଆକାଶ ବାଣୀ ଶୁଣିଣ ଆସିଅଛୁ ଏଥେ ।
ଦେବତାଏ ଏ ଅଶ୍ୱକୁ ଦେଲେ ପଠିଆଇ
ଶ୍ରୀରାମ ଲକ୍ଷ୍ମଣ ଆଣ ଏ ଅଶ୍ୱେ ବସାଇ ।
ଆଉ ତୁମ୍ଭେ ଦେଖ ଏହି ଆକାଶ ଖଡ଼ଗ
ଶ୍ରୀରାମ ଏହା ଧରିବେ ଶୁଣ ମହାଭାଗ ।
ରାମ ଲକ୍ଷ୍ମଣ ଆସନ୍ତୁ ଋଷିଯଜ୍ଞ ରଖି
ବାଟେ ଭେଟହେଲେ ବଧ କରିବେ ତାଡ଼କୀ ।
ଆମ୍ଭେ ନେଇଯାଇ ତାକୁ ବଧ କରାଇବୁ
ପୁଣି ରାମ ଲକ୍ଷ୍ମଣଙ୍କୁ ଏଥି ଛାଡ଼ିଯିବୁ ।
ମୁନି ବୋଇଲେ ଶ୍ରୀରାମ ଅଛନ୍ତି ଯେ ସତ
ପର୍ଶୁରାମ ଭୟେ ତାଙ୍କୁ କରିଛୁ ଗୁପତ ।
ଯେବେ ତୁହି ରାମଚନ୍ଦ୍ର ନ ଦେବୁଟି ଭଲେ
ତୋହର ପୁର ଦହନ କରିବୁ କୋପରେ ।
ମୋହର ତୁଲେ ଅପ୍ରୀତି ହୋଇଲେ ବଶିଷ୍ଠ
ଶତେକ ପୁତ୍ର ତାହାର କଲି ପ୍ରାଣେ ନଷ୍ଟ ।
ବ୍ରହ୍ମାଙ୍କର ତୁଲେ ମୁହିଁ ହୋଇଲି ବିବାଦୀ
କ୍ଷଣକରେ ନବସୃଷ୍ଟି କଲଇଁ ସମ୍ପାଦି ।
କରାଇବି ମୁହିଁ ତୋର ପୁତ୍ରେ ବିଦ୍ୟାଦାନ
ଶୁଣି ଭୟରେ କାତର ହୋଇଲା ରାଜନ ।
ବିଶ୍ୱାମିତ୍ର ବୋଇଲେ ହୋ ଡରୁଛ କାହିଁକି
ପର୍ଶୁରାମଠାରୁ ଆମ୍ଭେ ରକ୍ଷାକରୁ ନିକି ।
ଦଶରଥ ରାଜା ବୋଲେ ତୁମ୍ଭ ପ୍ରାୟ ଋଷି
ଅନୀତି କଥା କହୁଛ କି କହେ ଭରସି ।
ପୁଣି ବୋଇଲେ ମୋ ଚାରିପୁତ୍ର ଥିଲେ ପୂର୍ବେ
ଚନ୍ଦ୍ରବୋଲେ ନାଶକଲା ଏକଇ ଗନ୍ଧର୍ବେ ।
ଏବେ ଋଷ୍ୟଶୃଙ୍ଗ ମୁନି ମହାଯଜ୍ଞ କଲେ
ଦୁଇଗୋଟି ପୁତ୍ର ମୋତେ ଦୟାକରି ଦେଲେ ।
ତାହାଙ୍କର ବଳେ କାହିଁ ଯଜ୍ଞ ହୁଏ ରଖି
ବାଳୁତକୁ ଦର୍ପେ ସାଧ୍ୟ ହେବ କି ତାଡ଼କୀ ।
ବିଶ୍ୱାମିତ୍ର ବୋଇଲେକ ଦିଅ ତୁ ଶ୍ରୀରାମ
ସେହି ସ୍ୱୟଂ ବିଷ୍ଣୁ ଦୈତ୍ୟ ନିଧନେ ଜନମ ।
ଶୁଣି ଦଶରଥ ତହୁଁ ଗଲେ ଅନ୍ତଃପୁରେ
ଭରତ ଶତ୍ରୁଘ୍ନେ ଆଣି ଦେଲେ ମୁନିବରେ ।
ମୁନି ବୋଇଲେ ରେ ପୁତ୍ର କହ ତୁମ୍ଭେ ସତ
ତୁମ୍ଭେ ଅଟ କି ଲକ୍ଷ୍ମଣ ରାମ ବେନି ଭ୍ରାତ ।
କହନ୍ତି ମୁନିଙ୍କ ଅଗ୍ରତରେ ବେନିଭାଇ
ଆମ୍ଭ ନାମ ଭରତ ସେ ଶତ୍ରୁଘ୍ନ ଅଟଇ ।
ଆମ୍ଭ ଜ୍ୟେଷ୍ଠଭ୍ରାତ ନାମ ଅଟଇ ଶ୍ରୀରାମ
ଆବର ତାଙ୍କ ସାନୁଜ ଅଟନ୍ତି ଲକ୍ଷ୍ମଣ ।

ବୋଇଲେ ଦଶରଥଙ୍କୁ ଚାହିଁ ବିଶ୍ୱାମିତ୍ର
ଆମ୍ଭଠାରେ କିପାଁ ମାୟା କଲୁ ନରନାଥ ।
ଦଇବେ ହୋଇଅଛନ୍ତି ଚାରିପୁତ୍ର ଜାତ
ବେଗେ ଶ୍ରୀରାମ ଲକ୍ଷ୍ମଣ ଆଣ ବେନିଭ୍ରାତ ।
ମୁନିଙ୍କୁ ନିଷ୍ଠୁର ଦେଖି ସେହି ନରମଣି
ରାମ ଲକ୍ଷ୍ମଣଙ୍କୁ ସନ୍ନିଧିରେ ଦେଲେ ଆଣି ।
ହରଷ ହୋଇଲେ ଦେଖିକରି ବିଶ୍ୱାମିତ୍ର
ଏହି ସେହି ନିରାକାର ବିଷ୍ଣୁ ଜଗନ୍ନାଥ ।
କହିଲୁ ଆମ୍ଭଙ୍କୁ ଗୋପ୍ୟକରି ରାଜା ତୁହି
ଜୀବ ମୋର ନେଲ ତୁମ୍ଭେ ଦଶରଥ କହି ।
ପିଣ୍ଡ ମୋ ରହିଲା ସାହା ନେଇ ବିଶ୍ୱାମିତ୍ର
ଆକୁ ବେନିଆଖି ଅନ୍ଧ ହୋଇଲା ଅଦ୍ଭୂତ ।
ବିଶ୍ୱାମିତ୍ର ବୋଲେ ରାଜା ଶୋକ ନ କରିବା
ତୋ ତହୁଁ ବେଶୀ କରିବୁ ଏହାଙ୍କର ସେବା ।
ଅନେକ ପ୍ରକାରେ ଦଶରଥଙ୍କୁ ବିନୋଇ
ନେଲେ ମୁନି ଶ୍ରୀରାମ ଲକ୍ଷ୍ମ ବେନିଭାଇ ।
ବେନି କୁମରଙ୍କୁ ତହୁଁ ଅଶ୍ୱରେ ବସାଇ
ଅଯୋଧ୍ୟା ତେଜିଣ ମୁନି ଗଲେକ ଚଳାଇ ।
ବନେ ଗମନ୍ତେ ତ୍ରିପଥ ବାଟେକ ପାଇଲେ
କେଉଁପଥେ ଯିବା ବିଶ୍ୱାମିତ୍ର ପଚାରିଲେ ।
ଶ୍ରୀରାମ ବୋଇଲେ ମୁନି ନିକଟେ ଯେ ପଥ
ସେହି ପଥରେ କଢ଼ାଅ ବେଗେ ତପୋବନ୍ତ ।
ବିଶ୍ୱାମିତ୍ର ବୋଲେ ଯେବେ ଯିବା ସେହି ପଥେ
ତାଡ଼କୀ ଅସୁରୀ ଓଗାଳିବ ଯେ ବନସ୍ତେ ।
ସଳଖ ବାଟରେ ଗଲେ ସାତଦିନେ ଯିବା
ତାଡ଼କୀ ଦେଖିଲେ ପୁଣି ଯାଇ ନ ପାରିବା ।
ଗଙ୍ଗାତୀରେ ତୀରେ ଯେବେ ଯିବା ବାମଭାଗେ
ମାସକେ ପ୍ରବେଶ ହେବା ଋଷିଙ୍କର ଯାଗେ ।
ସେ ଗଙ୍ଗାକୂଳରେ ବାବୁ ଭୟ ନାହିଁ କିଛି
ପୂର୍ବବାଟେ ଗଲେ ତାଡ଼କୀର ଭୟ ଅଛି ।
ଶ୍ରୀରାମ ବୋଇଲେ କିପାଁ ଯିବା ଗଙ୍ଗାପଥେ
ଆମ୍ଭଙ୍କୁ ଆଣିଛ ମୁନି ତାଡ଼କୀ ନିମନ୍ତେ ।
ତାଡ଼କୀକୁ ବଧକରି ଯିବା ନିଜ ରାଜ୍ୟ
ନିରାପଦେ ମୁନିମାନେ କରନ୍ତୁ ଯେ ଯଜ୍ଞ ।
ବିଶ୍ୱାମିତ୍ର ଭାଳେ ଏବେ ପାଇଲି ଶ୍ରୀରାମ
ନିଶ୍ଚୟ ଏ ରଘୁନାଥ ପୁରୁଷ ଉତ୍ତମ ।
ପୁଣି ବିଚାରନ୍ତି କାଳେ ଦଶରଥ କୂଟେ
ଏହା ଯଦ୍ୟପି ଶିଖାଇ ଥିବେ ବେନିଚାଟେ ।
ଆକାଶୁଁ ଗଙ୍ଗାଙ୍କୁ ଭଗୀରଥ ଥିଲା ଆଣି
ସୁରାସୁରୀ ବୋଲି କେହି ନ ଛୁଅନ୍ତି ପାଣି ।

ଶ୍ରୀରାମ ସ୍ପର୍ଶନେ ଗଙ୍ଗା ଦୋଷ ଯିବ ପାର
ସ୍ୱରୂପ ପରୀକ୍ଷା ଆମ୍ଭେ ବୁଝିବା ଏଠାର ।
ଏତେ ବୋଲିକରି ମୁନି ହୋଇଲେ ବାହାର
ପ୍ରବେଶ ହୋଇଲେ ଯାଇ ଦ୍ୱିଦଣ୍ଡ ଭିତର ।
ଦେଖିଲେ ଗଙ୍ଗା ଯମୁନା ତ୍ରିଧା ସରସ୍ୱତୀ
ସଙ୍ଗମ ହୋଇଅଛି ଯେ ପଶ୍ଚିମ ମୂରତି ।
ମୁନି ବୋଇଲେ ଏ ଗଙ୍ଗା ମଧ୍ୟେ ପଶି ସ୍ନାନ
କର ଗଙ୍ଗା ମୁକ୍ତ ହେଉ ହେଉ ତୋର ଧର୍ମ ।
ଶୁଣ ଆହେ ଯୁଧିଷ୍ଠିର ମାର୍କଣ୍ଡ ବୋଇଲେ
ମୁନି ବାକ୍ୟେ ରାମ ଗଙ୍ଗାଜଳେ ସ୍ନାନ କଲେ ।
ରାମ ସ୍ନାନ କରୁ ଗଙ୍ଗା ହୋଇଣ ପବିତ୍ର
ମକର ବାହନେ ବସି ମିଳିଲେ ତୁରିତ ।
ନତଶିରେ ରହି ମାତ ବହୁ ସ୍ତୁତି କଲେ
ରାମଙ୍କ ଚରଣେ ନମି ଅନ୍ତର ହୋଇଲେ ।
ଏମନ୍ତ ପୂର୍ବରୁ ଜାଣ ହୋଇଛି ଯୁଧିଷ୍ଠି
ସେଦିନୁ ଏହାର ନାମ ରାମଘାଟ ଗୋଟି ।
ଶ୍ରୀରାମ ସ୍ନାହାନ ଏଥେ କଲେ ଯେତେବେଳେ
ଆକାଶରୁ ଆସି ସ୍ନାନ କଲେ ଦିଗପାଳେ ।
ରାଜର୍ଷି ଦେବର୍ଷି ବ୍ରହ୍ମଋଷି ଆଦିକରି
ସର୍ବେ ସ୍ନାନକଲେ ସୁଖେ ପାନକରି ବାରି ।
ଶ୍ରୀରାମଘାଟ ଯାନାମ ଦେଇଛନ୍ତି ସୁର
ସ୍ନାନକଲେ ମୁକ୍ତି ହେବେ ଚାରିଯୁଗେ ନର ।
ପୁଣି ମାର୍କଣ୍ଡ ବୋଲନ୍ତି ଶୁଣ ଯୁଧିଷ୍ଠିର
ବାଞ୍ଛାବଟ ଅଛି ଏହି ତ୍ରିବେଣୀର ତୀର ।
ତୁ ଏବେ ସ୍ନାହାନ କର ଏଥେ ଧର୍ମରାୟ
ଖଣ୍ଡ ତୋର ଦୋଷକୃତ ପାପ ଯାଉ କ୍ଷୟ ।
ଶୁଣି ଧର୍ମ ସ୍ନାନକରି ପିଣ୍ଡଦାନ କଲେ
ପିତୃଙ୍କୁ ତୋଷି ଦେବଙ୍କୁ ହୃଦେ ସୁମରିଲେ ।
ସେଠାରେ ମାଧବ ମୂର୍ତ୍ତି କରି ଦରଶନ
ତହିଁ ସୁଖେ ରହି କଲେ ମାଘମାସ ସ୍ନାନ ।
ଯେତେ ଯେତେ ପାପମାନ ଥିଲା ସୋମବଂଶେ
ସମସ୍ତ ପାପ ଖଣ୍ଡିଲେ ଧର୍ମ ବନବାସେ ।
ଶ୍ରୀମହାଭାରତ ବନପର୍ବ ସୁଧାରସ
ଶ୍ରବଣ କରି ହେ ନରେ କଳିମଳ ଧ୍ୱଂସ ।
ମୁଁ କିସ ବର୍ଣ୍ଣିବି ମୋର ନାହିଁ ଯେ ଅଭ୍ୟାସ
ପାଇଛି ମୁଁ ମାତ ଅନୁଗ୍ରହେ ସଦଭ୍ୟାସ ।
ତେଣୁ ସେ ମାତା ଚରଣେ ସହସ୍ର ପ୍ରଣାମ
କରୁଛି ଶ୍ରୀ ଶୂଦ୍ରମୁନି ଶାରଳା ଅଧମ ।



## ନିକୁମ୍ଭ ଦୈତ୍ୟର ବଧ ଓ ହାରାବତୀ ସହିତ ଅର୍ଜ୍ଜୁନର ବିବାହ

ଏଥୁ ଅନନ୍ତରେ ପୁଣି ମନୁ ନରପତି
ଅଗସ୍ତି ମୁନିଙ୍କ ପାଦେ କରିଣ ପ୍ରଣତି ।
ବେନି କରଯୋଡ଼ି ତାଙ୍କୁ ହୋଇଣ ବିନୟ
ପୁଚ୍ଛାକଲେ କହ ଏବେ ମୁନି ମହାଶୟ ।
ଏହା ଉତ୍ତାରେ ହୋଇଲା କେଉଁ କେଉଁ କଥା
ତବ ମୁଖୁ ଶୁଣି ମନୁ ଖଣ୍ଡିବଇଁ ବ୍ୟଥା ।
ଅଗସ୍ତି କହିଲେ ଶୁଣ ମନୁ ନୃପରାଣ
ଏ ଉତ୍ତାରେ ଯାହା ହେଲା ଶୁଣ ଦେଇ ମନ ।
ସେହି ରାମଘାଟତୀରେ ଥିଲେ ଯୁଧିଷ୍ଠିର
ଦିନେ ଚାରି ସହୋଦର କହିଲେକ ଗିର ।
ଆଜି ଆମ୍ଭର ପଡ଼ିବ ପିତୃଶ୍ରାଦ୍ଧ ଦିନ
ତୁମ୍ଭେମାନେ ବନୁ ଯାଇ ଗଣ୍ଡା ମାରି ଆଣ ।
ଯୁଧିଷ୍ଠିରଙ୍କ ବଚନେ ଗଲେ ଚାରିଭ୍ରାତେ
କିରାତ ରୂପେ ବିହରି ଖୋଜନ୍ତି ବନସ୍ତେ ।
ଅର୍ଜ୍ଜୁନ ବୀର ଚଳିଲେ ପଶ୍ଚିମ ପ୍ରଦେଶେ
ସେହି ଦିଗରୁ ଭବାନୀ ବହିକରି ଆସେ ।
କେତେଦୂର ତାର ତୀରେ ଅଛଇ ପର୍ବତ
ତହିଁ ଉପରେ ବିଜୟ କାମାକ୍ଷାଈ ମାତ ।
ପ୍ରତ୍ୟକ୍ଷେ ସେ ମାହେଶ୍ୱରୀ ଜଗତ ଜନନୀ
ଅନାଦି ଅପର୍ଣ୍ଣା ବାଞ୍ଛାଫଳ ପ୍ରଦାୟିନୀ ।
ସେଠା ଭବାନୀ ଗଙ୍ଗାରେ ସ୍ନାନକରି ପାର୍ଥ
କାମାକ୍ଷୀ ଦେବୀଙ୍କି ସ୍ତୁତି କରିଲେ ବହୁତ ।
ମଧୁବନ ତୋଟା ଦେଖି ତାର ପଛକତି
ବହୁ ଦ୍ରାକ୍ଷାଫଳ ପାଚି ପଡ଼ିଅଛି କ୍ଷିତି ।
ଆମ୍ବ ପଣସ କଦଳୀ ଆଉ ନାରିକେଳ
ସରାଗେ ଭୁଞ୍ଜାଇ ତାହା ବାସବର ବାଳ ।
ଭୋଜନ ଶେଷେ ଆଳସ୍ୟ ହେଲା ତା ଶରୀର
ସୁଗନ୍ଧ ସୁଶୀତଳ ଯେ ବହଇ ସମୀର ।
ବିଶେଷେ ଫଗୁଣ ମାସ ବୃକ୍ଷ ଛାୟା ପାଇ
ନିଦ୍ରା ଆକର୍ଷନ୍ତେ ପାର୍ଥ ପଡ଼ିଲେକ ଶୋଇ ।
ପ୍ରତ୍ୟକ୍ଷେ ଅଭୟା ସେହି ଅଟନ୍ତି କାମାକ୍ଷୀ
ଶୋଇଲେ ପାର୍ଥ ତାହାଙ୍କ ପାଦେ ଧ୍ୟାନ ରଖି ।
କାଞ୍ଚନଗର ଅଟଇ ତହିଁକି ନିକଟ
ବସେ ସେ ଭବାନୀ ଗଙ୍ଗା ସରିତର ତଟ ।
ନିକୁମ୍ଭ ଅସୁର ସେହି ପୁରେ ଅଧିକାରୀ
ସେ କାଞ୍ଚନଗରେ ଅଛି ସୁଖେ ବାସକରି ।

ବଡ଼ ପ୍ରତାପୀ ଅଟଇ ନିକୁମ୍ଭ ଦଇତ
ରାହୁର ବଂଶରେ ସେହି ହୋଇଅଛି ଜାତ ।
ରାହୁର ପୁତ୍ର ଅଟଇ ଦୈତ୍ୟ ଶମ୍ଭୁରାଣ
ଶମ୍ଭୁରାଣର କୁମର ଅଟେ ବଜ୍ରବାଣ ।
ବଜ୍ରବାଣର କୁମର ଅଟେ ଦଶାସୁର
ଜପାସୁର ଅଟଇ ଯେ ଏହାର କୁମର ।
ସୁଦାସର ଅଟଇ ଯେ ହିରଣ୍ୟ କୁମର
ଜପାସୁରର କୁମର ସୁଦାସ ଅସୁର ।
ହିରଣ୍ୟର କୁମର ଯେ ଅଟେ ଲମ୍ବାସୁର
ଲମ୍ବାସୁର ନନ୍ଦନ ଯେ ଅଟେ ଲୋହାସୁର ।
ଲୋହାସୁର ପୁତ୍ର ଅଟେ ଦୈତ୍ୟ ଆରାଧିକ
ଆରାଧିକର କୁମର ଅଟେ ଅଜପାକ ।
ଅଜପାକର ନନ୍ଦନ କୁମ୍ଭକ ରାକ୍ଷସ
ନିକୁମ୍ଭ ଅସୁର ଅଟେ ଏ ରାକ୍ଷସ ଶିଷ୍ୟ ।
ସିଂହିକାର ପୁତ୍ର ସେହୁ ବାସବ ଅଇରି
ସଦା ଧାଡ଼ି ଦେଇଥିଲା ଅମର ନଗରୀ ।
କକଡ଼ା ଶୁକଳ ପକ୍ଷ ଦଶମୀର ତିଥି
ଭୃଗୁବାର ସେହିଦିନ ନକ୍ଷତ୍ରଟି ସ୍ୱାତୀ ।
ସେ ଦିନ ନିକୁମ୍ଭ ଦୈତ୍ୟ ସ୍ୱର୍ଗେ ଧାଡ଼ିଦେଲା
ଇନ୍ଦ୍ର ତା ସଙ୍ଗରେ ବହୁ ସମର କରିଲା ।
ସମରେ ହାରିଲେ ତାକୁ ଦେବ ମଘବାନ
ଅମରକୁ ଜୁରକଲା ତହୁଁ ଯାତୁଧାନ ।
ରମ୍ଭାର ଦୁହିତା ନାମ ଅଟେ ହାରାବତୀ
ରମ୍ଭାଠାରୁ ସସ୍ରଗୁଣ ତାର ତେଜ କାନ୍ତି ।
ତାହାକୁ ଧରି ପୁଷ୍ପକ ବିମାନ ଆରୋହି
କାମାକ୍ଷୀଦେବୀଙ୍କ ପାଶେ ଉତୁରିଲା ଯାଇ ।
ଦେବୀଙ୍କୁ ପ୍ରଣାମ କରି ଚଳିଲା ଦଇତ
ତହୁଁ କାଞ୍ଚନଗ୍ରେ ଯାଇ ହେଲା ଉପସ୍ଥିତ ।
ପରିମଳ କରି ତହିଁ ମେଢ଼େକ ତୋଳାଇ
ହାରାବତୀକି ତହିଁରେ ରଖାଇଲା ନେଇ ।
ଅସୁରୁଣୀ ମୁଦୁସୁଲୀ ଜଗିଲେ ତାହାକୁ
ହାରାବତୀ ନ ଦିଅଇ ପ୍ରୀତି ଅସୁରକୁ ।
ନ କରଇ ଅସୁରର ସଙ୍ଗ ହାରାବତୀ
କାମାକ୍ଷୀଦେବୀ ଦର୍ଶନ କରିଯାଏ ନିତି ।
ସେହିଦିନ ହାରାବତୀ ପୁଷ୍ପକ ଆରୋହୀ
କାମାକ୍ଷୀ ଦେବୀଙ୍କ ପାଶେ ଯାଉଥିଲା ସେହି
ସେ ପର୍ବତ ପାଖେ ହ୍ୱନ୍ତେ ରମ୍ଭାର ନନ୍ଦିନୀ
ଦେଖଇ ସେଠାରେ ଶୋଇଅଛି ଫାଲ୍‌ଗୁନି ।
ବେଗେ କାମାକ୍ଷୀ ଦର୍ଶନ କରିଣ ଅଇଲା
ଅର୍ଜ୍ଜୁନଙ୍କ ନିକଟରେ ପ୍ରବେଶ ହୋଇଲା ।
ନିଦେ ଅଚେତନ ଛନ୍ତି କୁନ୍ତୀଙ୍କ ତନୟ
ଦିଶେ ସ୍ୱରୂପ ତାଙ୍କର ଅନଙ୍ଗର ପ୍ରାୟ ।
ବିମାନୁ ଓହ୍ଲାଇକରି ଭାଳଇ ଯୁବତୀ
କେବଣ ପୁରୁଷ ଦିଶେ ଅପୂର୍ବ ମୂରତି ।
କେଉଁଠାରୁ ଅଇଲା ଏ ରଥେ ଅଦଭୂତେ
କେଡ଼େ ସୁଫଳ ଦିବସ ମିଳେ ଆଜ ମୋତେ ।
ଅର୍ଜ୍ଜୁନଙ୍କର ନିକଟେ ବସିଣ ଯୁବତୀ
ଶରୀରକୁ ଆଶ୍ୱାସନା କରେ ହାରାବତୀ ।
ବୋଲେ ହେ ସୁନ୍ଦର ତୋର ଜୀବ ଧନି ଧନି
ବୁଡ଼ିଣ ମଦନଶରେ ଆରତକାମିନୀ ।
ନିଦେ ଅଚେତନ ପାର୍ଥ ବଦନକୁ ତୋଳି
ଆକର୍ଷିଣ ବେନିଭୁଜେ ତୋଳିଲାକ ବାଳୀ ।
ଉଠାଇ ବସିଲା ନେଇ ବିମାନେ କୋଳରେ
ଧୀରେ ଚଳାଇଲା ନିଜ ମନ୍ଦିର ଦିଗରେ ।
ତେବେ ଅର୍ଜ୍ଜୁନଙ୍କ ନିଦ୍ରା ନୋହିଲା ଭଗନ
ଆପଣା ମେଢ଼ ନିକଟେ ମିଳିଲା ଯାଇଣ ।
ଅଗମ୍ୟ ବନସ୍ତେ ତାର ଅଛଇ ମନ୍ଦିର
ପାର୍ଥକୁ ନେଇଣ ମିଳେ ମେଢ଼ର ଭିତର ।
କୋଳକରି ବିମାନରୁ ଓହ୍ଲାଇ ଯୁବତୀ
ଆପଣା ପଲ୍ୟଙ୍କ ପରେ ଶୁଆଇଲା ଧାତି ।
ଜାନୁପରେ ଶିର ରଖି ନିରୋପି ବଦନ
ଏକାଳେ ଚେତା ପାଇଲା ବୀର ଅରଜୁନ ।
ଦେଖଇ ଭୁବନ ଗୋଟି ଚିତ୍ରମୟ ପୁରୀ
ଅଳକା ଭୁବନ ତାକୁ ନୋହିବ ଯେ ସରି ।
ସେ ପୁରେ ମଣି ମାଣିକ୍ୟ ମୁକ୍ତା ପନ୍ତି ପନ୍ତି
ଦେଖି ବିଚାର କରଇ ପାର୍ଥ ମହାମତି ।
କେଉଁ ଦଇତର ଏହି ଅଟଇ ନଗରୀ
ମୁହିଁ ଆସିଥିଲି ବନେ ଗଣ୍ଡାଜୀବ ମାରି ।
ଏଥେଁ କିପରି ଅଇଲି ଭାଳେ ସବ୍ୟସାଚୀ
ପାଶରେ ଦେଖିଲା ଏକ ଯୁବତୀ ବସିଛି ।
ସର୍ବ ଅଳଙ୍କାରେ ଯୁକ୍ତ ତ୍ରୈଲୋକ୍ୟ ମୋହିନୀ
ଦେଖି ତାହାକୁ ବୋଲଇ ବୀର ଫାଲଗୁନି ।
ମା ଗୋ ତୁହି କା ଦୁହିତା କାର ପ୍ରିୟବତୀ
ବନରୁ ହରି ଆଣିଲୁ ତୋର କିସ ମତି ।
ଅସମ୍ଭବ ପୁର ଯିବାପାଇଁ ନାହିଁ ବାଟ
ଚଉପାଶେ ବେଢ଼ିଛନ୍ତି ଅସୁରର ଥାଟ ।
ମୁହିଁ ଆସିଥିଲି ଗଣ୍ଡା ମାରିବା ନିମନ୍ତେ
ତୁ ଏଥକୁ ମାଗୋ ମୋତେ ଆଣିଲୁ କେମନ୍ତେ
ବହନ ଫେଡ଼ିଦିଅ ଗୋ କବାଟ କିଳିଣୀ
ମୋହର ବାସକୁ ମୁହିଁ ଯିବି ଏହିକ୍ଷଣି ।

ଅର୍ଜ୍ଜୁନ ବଚନ ଶୁଣି ବୋଲେ ହାରାବତୀ
ପ୍ରତ୍ୟକ୍ଷେ ଦେଖିଲି ତୋର ମଦନ ମୂରତି ।
କୋଟିଏ ଚନ୍ଦ୍ରମା ସମ ତୋହର ବଦନ
ଦେଖି ତୋତେ ହେଲି ମୁହିଁ କାମେ ଅଚେତନ
କେଉଁ ଦେଶୁ ଅଇଲୁ ତୁ କେ ତୋ ପିତାମାତା
ତୋ ରୂପ ଦେଖି ମଦନେ ହେଲି ବିରହିତା ।
ସ୍ୱର୍ଗ ଭୁବନୁ ଆଣିଲା ମୋତେ ଏ ଦଇତ
ଏହିଠାରେ ଆଣି ମୋତେ ରଖିଛି ଗୁପତ ।
ବୈଶାଖ ମାସ ତୃତୀୟା ରବିବାର ଦିନ
ଏ ଦିନ ଅସୁର ମୋତେ ହୋଇବ ପ୍ରଦାନ ।
ମୁହିଁ ସେବା କରିଗଲି କାମାକ୍ଷୀ ଦେବୀଙ୍କି
ମଦନେ ଆରତ ହେଲି ତୋତେ ତହିଁ ଦେଖି ।
ନିଦେ ଅଚେତନ ହୋଇ ଶୋଇଥିଲୁ ତୁହି
ତୋତେ ଦେଖି ଦେବୀପାଶେ ଜଣାଇଲି ମୁହିଁ
ଅନେକ ଭକ୍ତିରେ ସେବାକଲି ମୁଁ କାମାକ୍ଷୀ
ସେହୁ ମୋତେ ବର ଦେଲା ମନେ ବାଛି ବାଛି
ଅସୁର ସମ୍ପଦ ବାବୁ ଯୋଗ ନାହିଁ ମୋତେ
ସେ ମାହେଶ୍ୱରୀ ପ୍ରଦାନ କରିଛନ୍ତି ତୋତେ ।
ତୋହର ମୋହର ଯେବେ ବିଭାଯୋଗ ଅଛି
ପ୍ରସନ୍ନେ ଏ ବର ମୋତେ ଦେଇଛି କାମାକ୍ଷୀ ।
ଅର୍ଜ୍ଜୁନ ବୋଇଲେ ଶୁଣ ରମ୍ଭାର ତନୟା
ରାଜାର ଦୁହିତା ତୁହି ନ କର ଗୋ ଏହା ।
ମୋହଠାରେ ସୁନ୍ଦରୀ ତୁ ନ ବଳାଅ ଆଶ
ମହାକାଳ ଫଳ ଦେଖି ନ ବଳା ମାନସ ।
ଶୁକପକ୍ଷୀ ପ୍ରାୟ ହେବ ତୋର ମୋର ପ୍ରୀତି
ସ୍ୱପ୍ନ ଭୋଜନ ପାଇ ହେଉଛୁ ତୃପତି ।
ଅଜ୍ଞାତକୁଳଶୀଳରେ ପ୍ରୀତ ହେବ କାହିଁ
ଅଭାବେ ଭାବ ବଢ଼ାଉ କହ କାହିଁପାଇଁ ।
ମୁହିଁ ଅପାରଗ ପୁଣି ଅଟେ ହୀନଜାତି
ପର ସ୍ତିରୀ ଶୃଙ୍ଗାରେ ମୋ ନ ବଳଇ ମତି ।
ଯେହୁ ମୋହର ପତି ସେ ପୃଥିବୀର ରାୟେ
ମୋହ ଛାରକୁ କିପାଇଁ ଇଚ୍ଛାକରୁ ମାୟେ ।
ପରଦାର ଶୃଙ୍ଗାର ଗୋ ନୁହଇ ଯୁକତି
ସ୍ୱଦାରାୟେ ଯତି ଆଉ ସ୍ୱପୁରୁଷେ ସତୀ ।
ସୁଭଦ୍ରାର ଅଟଇ ଯେ ମୁହିଁ ନିଜ ପତି
ସତ୍ୟ ଲଙ୍ଘିଲେ ମୋହର ହେବ ନର୍କଗତି ।
ପରପୁରୁଷ ପିତା ମୋ ପରସ୍ତିରୀ ମାତା
ପରଧନକୁହିଁ ଇଚ୍ଛା ନ କରେ ସର୍ବଥା ।
ଅର୍ଜ୍ଜୁନ କଠୋର ଦେଖି ହାରାବତୀ ହସି
ଧାଡିକାରେ ସୁନ୍ଦରୀ ଯେ ଧଇଲା ଆକର୍ଷି ।
ପରିହାସ କରି ପାର୍ଥ କୋଳେ ଯାଇ ବସି
ହେ ସୁନ୍ଦର ତୋଠାରେ ମୁଁ ବଡ଼ ଅଭିଳାଷୀ ।
ଭୁଜେ ଭୁଜ ଭିଡ଼ି ବାଳୀ ଦିଅଇ ଚୁମ୍ବନ
ବିନୟେ ବୋଲେ ହେ ନାଥ ରଖ ମୋ ଜୀବନ
ଅର୍ଜ୍ଜୁନ ବୋଇଲେ ତୁ ଗୋ ଶୁଣ ସୁଲକ୍ଷଣୀ
ଅକାରଣେ ଆଉ ମୋତେ ନ କହ ଏ ବାଣୀ ।
ଆଉ କଟାକ୍ଷ ନ କର ମୋ ସଙ୍ଗତେ ବାଳୀ
ମୁହିଁ ତୋହର ନୁହଇ ମନର ହିଆଳୀ ।
ଶିମୂଳୀ ଫୁଲକୁ କି ଗୋ ଦେଖିଲୁ ସୁରଙ୍ଗ
ବିଦାରିତ ହୁଏ ବୃକ୍ଷ କୋଳ କଲେ ଅଙ୍ଗ ।
ବୋଲେ ସୁନ୍ଦରୀ ଶିମୂଳୀବୃକ୍ଷ ହୁଅ ମୋତେ
ମୋ ଶରୀର ବିଦାର ତୁ ତୋର ନଖଦନ୍ତେ ।
ଅର୍ଜ୍ଜୁନ ବୋଲେ ପାମରୀ ତୁହି ମନ୍ଦ ଅଟୁ
ମୁହିଁ କ୍ଷତ୍ରିବର ତୁ ମୋ ମନକୁ ନ ଘଟୁ ।
ଶୁଣୁଅଛି ତୋତେ ହରି ଆଣିଲା ଅସୁର
ଦାନବଭୋଗ ତୁ ମୋର ଛୁଉଁଛୁ ଶରୀର ।
ଯେତେକ କଥା ତୁ କହୁ କାରଣ ନୁହଇ
ତୋ ଦେହ ଛୁଅନ୍ତେ ବହୁ ପାତକ ଅଛଇ ।
ଅର୍ଜ୍ଜୁନ ବଚନ ଶୁଣି ବୋଲେ ହାରାବତୀ
ପୁରୁଷସିଂହ ହୋଇ ତୁ ଏଡ଼େ ମନ୍ଦମତି ।
ପାଷାଣ ତରଳିପଡ଼େ ମୋର ରୂପ ଦେଖି
ମୋପରି ସୁନ୍ଦରୀକି ତୁ ଦେଉଛୁ ଉପେକ୍ଷି ।
ଧିକ ଧିକ ହେଉ କିନା ତୋର ବଳବୀର୍ଯ୍ୟ
ହୀନ ଜୀବନ ତୋହର ଅଟଇ ନିର୍ଲ୍ଲଜ ।
ଧିକ ଧିକ ହେଉ ତୋର ଏହି କ୍ଷତ୍ରୀବୃତ୍ତ
ଧିକ ଧିକ ହେଉ କିନା ତୋର ତାତମାତ ।
ହେ ରାଜା ଏମନ୍ତକାଳେ ନିକୁମ୍ଭ ଦଇତ
ହାରାବତୀ ଭୁବନର ଦ୍ୱାରେ ଉପଗତ ।
ଅନ୍ଧାରି ବିଜୟ କରି ଆସିଲାକ ସେହି
ମଣିମା ମଣିମା ଡାକ ପଡ଼ିଲାକ ତହିଁ ।
ହାରାବତୀ ବୋଲେ ଏବେ ନାଶଗଲୁ ପ୍ରାଣେ
ଦାନବ ଆସିଲା ତୋତେ ବଧିବ କୃପାଣେ ।
ମୁହିଁ ଏହିକ୍ଷଣି ଯେବେ ରାବ ଉଚ୍ଚେ ଦେବି
ପୁଂସେକ ଘରେ ପଶିଛି ବୋଲିଣ ବୋଲିବି ।
ଅନ୍ତଃପୁରେ ଆସି ମୋତେ ଧରୁଅଛି ବଳେ
ଏ କଥା କହିବି ଯେବେ ଭକ୍ଷିବ ଚଣ୍ଡାଳେ ।
ଏବେ ମୋ ସଙ୍ଗତେ ଯେବେ କରିବୁ ପୀରତି
ତୋତେ ଯେହ୍ନେ ଲୁଚାଇବି ନ ଦେଖିବ ଏଥି ।
ଏମନ୍ତ ବିଦ୍ୟାଟି ଅଛି ଜାଣ ମୋର ତହିଁ
ଉଲ୍‌କା ବିଦ୍ୟାକଲେ ତୋତେ ନଦେଖିବ କେହି

ରଣକଲେ ତୋତେଦେବି ମୁହିଁ ବହୁ ଅସ୍ତ୍ର
ମୋର ସଙ୍ଗେ ପ୍ରୀତି କଲେ ହେବୁ ଚିରାୟୁଷ ।
ମୋହିନୀ ବିଦ୍ୟାରେ ତୋତେ ବାନ୍ଧି ରଖିଅଛି
ଦେଖାଯିବ କେମନ୍ତେ ତୁ ଯିବୁ ମୋତେ ମୂର୍ଚ୍ଛି ।
ମୋପରି ସୁନ୍ଦରୀ ତୋତେ ହୋଇଛି ପ୍ରାପତ
ଦେଖୁଦେଖୁ ଚଣ୍ଡାଳ ତୁ ଛାଡୁଛୁ ଅମୃତ ।
ସୁଭୋଜନ ମିଳିଅଛି ଭୁଞ୍ଜ କିନା ତୁହି
ପ୍ରାପତ ନିଧିକି ପାଦେ ଏଡ଼ାଉ କିପାଇଁ ।
ଏହିରୂପେ ହାରାବତୀ ବିନୟେ କହିଲା
ଏକାଳେ ନିକୁମ୍ଭ ଦ୍ୱାରେ ହାତକୁ ମାଇଲା
ରାଗେ ଅର୍ଜ୍ଜୁନକୁ ବାଳୀ ଧରି ବିଶ୍ୱରୂପେ
ପକାଇଦେଲା ନେଇଣ ତାକୁ ଜୀର୍ଣ୍ଣକୂପେ ।
ସେ ଜୀର୍ଣ୍ଣକୂପେ ଏକାଶୀ ତାଳ ଯେ ଗଭୀର
ଅଗାଧ ଗଭୀର ଯାଇ ପଡ଼େ ପାର୍ଥବୀର ।
କପାଟେ ପକାଇଦେଲା ବ୍ରଜର କିଳିଣୀ
ନିଶ୍ଚିନ୍ତେ ଶୋଇଲା ପୁରେ ଯାଇ ବିରହିଣୀ ।
ଏକାଳେ ନିକୁମ୍ଭ ଧରି ବିଜୟ କଟାରୀ
ମେଢ଼ ନିକଟକୁ ଗଲା ସେହି ବେଗକରି ।
ବଜ୍ରକିଳିଣୀ ନିଗୂଢ଼ ଯନ୍ତ୍ର ପଡ଼ିଅଛି
ଗମ୍ଭିରାରେ ବିରହିଣୀ ଯୁବତୀ ଶୋଇଛି ।
ଡାକେ କପାଟ ଫିଟାଅ ଆଲୋ ମୃଦୁସୁଲି
ଡରେ ସମସ୍ୟା ନ ଦିଏ ତହିଁ କେଉଁ ବାଳୀ ।
ନିକୁମ୍ଭ ବୋଲେ ଅଇଲି ରାତ୍ରେ ବିଜେକରି
ହାରାବତୀକି ଦେଖିବି ଅଛଇ କିପରି ।
ମୃଦୁସୁଲୀଏ ବୋଇଲେ ନ ଫେଡ଼ିବୁ ଦ୍ୱାର
ତୁମ୍ଭେ କିଏ ସେ ଆମ୍ଭଙ୍କୁ ନୁହଇ ଗୋଚର ।
ନିକୁମ୍ଭ ଦନୁଜ ବୋଲେ ମୁଁ ତୁମ୍ଭ ଗୋସାଇଁ
ଏରୂପେ ଡାକେ କପାଟେ ହସ୍ତକୁ ବାଡ଼େଇ ।
ଦାସୀଏ କହିଲେ ଆମ୍ଭ ପ୍ରଭୁ ନିଶାକାଳେ
ଏଠାକୁ ବିଜେ କରିବ କିପାଁ ଏତେବେଳେ ।
ନିକୁମ୍ଭ ବୋଲେ ଅନ୍ଧାରୀ ବିଜେକଲି ମୁହିଁ
ହାରାବତୀ କି କରୁଛି ଦେଖାଅ ଲୋ ନେଇ ।
ମୃଦୁସୁଲୀ ବୋଲେ ଦ୍ୱାର ନ ଫେଡୁ ଏକାଳେ
ଠାକୁରାଣୀ ଯେ କୋପିବେ କବାଟ ଫେଡ଼ିଲେ
ନିଶ୍ଚୟ ଯେବେ କି ତୁମ୍ଭେ ବିଜେକଲ ରାୟେ
ସେହି ଦ୍ୱାରେ ରହିଥାଅ ପ୍ରଭାତର ଯାଏ ।
ନିଶିରେ ଦ୍ୱାର ଫେଡ଼ିବା ହୋଇନାହିଁ ଆଜ୍ଞା
ତାଙ୍କ ଆଜ୍ଞାକୁ କେମନ୍ତେ କରିବୁ ଅବଜ୍ଞା ।
ନିକୁମ୍ଭବୋଲେ ଯେବେ ନ ଫେଡ଼ିବ ଗୋ ଦ୍ୱାର
ପ୍ରଭାତେ କାଟିବି ନିଶ୍ଚେଁ ସମସ୍ତଙ୍କ ଶିର ।

ତାହା ଶୁଣିକରି ତୁନି ହେଲେ ପରିଚାରୀ
ବାହୁଡ଼ି ନିକୁମ୍ଭ ଗଲା ଆପଣାର ପୁରୀ ।
ରଜନୀ ପ୍ରଭାତେ ରାଜା ବିଜୟ ଆସ୍ଥାନେ
ଛାମୁରେ ମିଳିଲେ ଯାଇ ମୃଦୁସୁଲୀମାନେ ।
ରାଜା ବୋଲେ ରାତ୍ରେ ଦ୍ୱାର କିପାଁ ନ ଫେଡ଼ିଲ
ରାତ୍ରେ ମୁଦ ନ ଭାଙ୍ଗିବ ବୋଲିଣ କହିଲ ।
ଦାସୀଏ କହିଲେ ଏବେ ଆସନ୍ତୁ ଆପଣ
ହାରାବତୀ ରଜୋବତୀ ହୋଇଛନ୍ତି ଜାଣ ।
ନିକୁମ୍ଭ ବୋଲେ ସେ ହେତୁ ଦ୍ୱାର ନ ଫେଡ଼ିଲ
ଯାହା କରିଅଛ ତାହା ମୋହପକ୍ଷେ ଭଲ ।
ଯୁକତେ ସୁନ୍ଦରୀ ହୋଇଥିଲା ରଜୋବତୀ
ତାକୁ ଦେଖି ମୁହିଁ ଧୈର୍ଯ୍ୟ ଧରି ନ ପାରନ୍ତି ।
ଯେବେ କି ତା ସଙ୍ଗେ ମୁହିଁ ମାତନ୍ତି ସେକାଳେ
ସର୍ବପୁଣ୍ୟ ନାଶଯାନ୍ତା ମୋର ତେତେବେଳେ
ଏମନ୍ତ କହି ନିକୁମ୍ଭ ଆନନ୍ଦିତ ଚିତ୍ତେ
ଅନେକ ପ୍ରସାଦ ଦେଲା ତାହାଙ୍କୁ ଶ୍ରୀହସ୍ତେ ।
ମୃଦୁସୁଲୀମାନଙ୍କୁ ସେ ବହୁ ପ୍ରଶଂସିଲା
ହାରାବତୀ ପୁରକୁ ସେ ବିଜେ କରିଗଲା ।
କନ୍ୟା ମନ୍ଦିରେ ନିକୁମ୍ଭ ହୋଇଲା ପ୍ରବେଶ
ଦେଖିଲା ନାନାଳଙ୍କାରେ ହୋଇଅଛି ବେଶ ।
ଅନେକମତେ ବଳାଏ କରି ସେ ସୁରତି
ବଚନେ ପ୍ରବୋଧ ତାକୁ କଲା ହାରାବତୀ ।
ବହୁ ରତ୍ନ ଅଳଙ୍କାରମାନ ତାକୁ ଦେଲା
ଭିତରୁ ଅସୁର ବିଜେ କରିଣ ଅଇଲା ।
କିଛିଦୂର ହାରାବତୀ ପାଶରୁ ଆସଇ
ପୁଣି ଲେଉଟି ବୋଇଲା ମନୁଷ୍ୟ ଗନ୍ଧାଇ ।
ନରଗନ୍ଧ ଗନ୍ଧାଇଲେ ସଲଇ ମୋ ଜିହ୍ୱା
କେବଣ ଜାତି ପୁରୁଷ ପୁରେ ଅଛି ଅବା ।
ବାହୁଡ଼ି ନିକୁମ୍ଭ ଦୈତ୍ୟ ପଶିଲା ଭିତରେ
ହସ୍ତେ ଦୀପାବଳି ଘେନି ଲୋଡ଼େ ନିରନ୍ତରେ ।
ଛିଦ୍ରେ ନ ଛାଡ଼ିଣ ଲୋଡୁଅଛି ସର୍ବପୁରୀ
ଲେଉଟାଇ ଖୋଜଇ ସେ ଦ୍ୱାର ଆଦିକରି ।
ହାରାବତୀ ବୋଲେ ଯେବେ ଅପ୍ରତେ ତୋହର
ମୁହିଁ ତ ମାନୁଷୀ ମୋତେ କର ଯେ ଆହାର ।
ଶିବ ଶିବ କହି ମୁଖେ ନିକୁମ୍ଭ ରାକ୍ଷସ
ନିଜ ଭୁବନରେ ଯାଇ ହୋଇଲା ପ୍ରବେଶ ।
ଏଥୁଅନ୍ତେ ବେଶଭୂଷା ହୋଇଣ ସୁନ୍ଦରୀ
ଜୀର୍ଣ୍ଣକୂପ ସମୀପରେ ମିଳେ ଯାଇକରି ।
ବୋଲେ ବିନୟେ ପାର୍ଥକୁ ଶୁଣ ମୋର ବାଣୀ
ଜୀର୍ଣ୍ଣକୂପେ ଥାଇ ପାର୍ଥ ତା ବୋଲ ନ ଶୁଣି ।

ହାରାବତୀ ବୋଲେ ପଡ଼ିଅଛୁ ଜୀର୍ଣ୍ଣକୂପେ
ଏଡ଼େବଡ଼ କ୍ଷତ୍ରୀ ହୋଇ ସ୍ତିରୀମାତ୍ର ଦର୍ପେ ।
ଏବେ ମୋ ସଙ୍ଗେ ଶୃଙ୍ଗାର କର ଆସି ସ୍ୱାମୀ
ଦଶନଖ ମୁଖେ ଭରି ହୁଏ ପରଣାମି ।
ତୁହି ଯେ ବୋଲାଉ ମୁହିଁ ଶରଣ ରଖନ୍ତା
ତୁ ଯେ ବୋଲାଉ ମୁଁ ଦୁଃଖୀ ଦୁଃଖ ଉଦ୍ଧାରନ୍ତା
ଜୀର୍ଣ୍ଣକୂପରୁ ବାହାର କରିବି ତୁମ୍ଭଙ୍କୁ
ପଛରେ ଉପେକ୍ଷା କାଳେ କରିବୁ ଆମ୍ଭଙ୍କୁ ।
ଅର୍ଜ୍ଜୁନ ବୋଇଲା ଏଥୁ ନିଅ ମହାମାୟୀ
ଜୀର୍ଣ୍ଣକୂପେ ପକାଇଲୁ କେଉଁ ଦୋଷପାଇଁ ।
ହାରାବତୀ ବୋଇଲା ତୁ ମୋହର ଅପ୍ରୀତି
ଏବେ ବାହାର୍ କରିବି ଦେବୁ କି ତୁ ରତି ।
ପାର୍ଥ ବୋଇଲେ ଫିଙ୍ଗିଲୁ ମୋତେ ଜୀର୍ଣ୍ଣକୂପ
ବିଶ୍ୱାସଘାତକୀ ହୋଇ ଅରଜିଲୁ ପାପ ।
ଏଥୁ ପଛେ ବାହାର ତୁ ନ କର ଯୁବତୀ
ତୋହର ତୁଲେ ମୋହର ନୋହିବ ପୀରତି ।
ରାଗରେ ବଚନ ତହୁଁ ବୋଇଲା ସୁନ୍ଦରୀ
ମୋ ସ୍ୱାମୀ ନୋହିଲୁ ଏଥେ ମର ପଡ଼ିକରି ।
ଏହା କହି ଚଳିଲା ସେ ବାହନ ଆରୋହୀ
କାମାକ୍ଷୀ ଦେବୀଙ୍କ ପାଶେ ନୃତ୍ୟକଲା ଯାଇ
ଅନେକ ବିନୟୀ ହୋଇ ବୋଲଇ ମାନିନୀ
ମୋତେ ଆକାଶୁ ଅସୁର ଅଇଲାକ ଘେନି ।
ମୁହିଁ ସ୍ୱଭାବେ ଅଟଇ ନାରୀ ରଜୋବତୀ
ଅସୁରଠାରେ ମୋହର ନ ବଳଇ ମତି ।
ମାଗୋ ମୁହିଁ ତୋହର ଶ୍ରୀଚରଣେ ନମଇଁ
ମୋହର ତୁଲେ ଗୋଟିଏ କାନ୍ତ ଦିଅ ତୁହି ।
ମୋତେ ଦୟାକର ଦେବୀ ଅପର୍ଣ୍ଣା କାମାକ୍ଷୀ
ମନୋମତ ବଲ୍ଲଭେକ ପାଇଅଛି ବାଛି ।
ପାଇଲା ପଦାର୍ଥ ମାତ ନୁହଇ ପ୍ରାପତ
ମୋହର ଭାବ ସେହି ନ ଘେନେ କଦାଚିତ ।
ପ୍ରସନ୍ନ ହୋଇଣ ମୋତେ ଦିଅ ସ୍ୱାମୀଦାନ
ତାହାର ମୋହର ଯେହ୍ନେ ହେଉ ଏକମନ ।
କହି କିପରି ପ୍ରାପତ ହେବ ମୋତେ ସେହି
ଆବର ସୁଦୟା କର ମୋତେ ମହାମାୟୀ ।
ଅସୁର ପ୍ରୀତିରେ ମୋର ନ ବଳିଲା ମତି
ନିଜ ସ୍ୱାମୀ ସଙ୍ଗେ ମୋତେ କରାଅ ପୀରତି ।
ବହୁ ବିନୟେ ଦେବୀଙ୍କୁ କହେ ହାରାବତୀ
ସେ ମୋତେ ପ୍ରାପ୍ତ ନୋହିଲେ ହେବି ଆତ୍ମଘାତୀ
ଏତେକ କହି ଦେବୀଙ୍କୁ ବିଜୟେ ବିମାନେ
ପ୍ରବେଶ ହୋଇଲା ଯାଇ ଆପଣା ସଦନେ ।
ସମୟ ମତେ ଭୋଜନେ ନ କରେ ସେ ଇଚ୍ଛା
ନିଜ ପତି ଲଭିବାକୁ ମନେ ତାର ବାଞ୍ଛା ।
ନାହିଁ ବେଶଭୂଷା ସର୍ବ ସୁଖ ଦେଲା ମୂର୍ଚ୍ଛି
ପ୍ରାପତ ନୋହିଲା କିପାଁ ଦେଲୁ ଗୋ କାମାକ୍ଷୀ
ଏଥୁଅନ୍ତେ ଶୁଣ ଜନେ ମନକର୍ଣ୍ଣ ଦେଇ
ଏଣେ ମୃଗୟାକୁ ଆସିଥିଲେ ଚାରିଭାଇ ।
ଭୀମ ଆଦି ତିନିଭାଇ ପ୍ରବେଶିଲେ ଯାଇ
କେବଳ ଏକା ଅର୍ଜ୍ଜୁନ ତହିଁ ଯାଇ ନାହିଁ ।
ସେ ତିନିଙ୍କି ଚାହିଁକରି ପୁଚ୍ଛନ୍ତି ଯୁଧିଷ୍ଠି
ତୁମ୍ଭେ ତ ଅଇଲ କାହିଁ ରହିଲା କିରୀଟୀ ।
ଏ ସମୟେ ସୂର୍ଯ୍ୟଦେବ ହେଲେ ଅସ୍ତଗତ
କାମ୍ୟକ ବନେ ଭେଟିଲେ ମହର୍ଷି ସମସ୍ତ ।
ବିଚଳିତ ପଥ ଅନ୍ୱେଷିଣ ଶଶୀମୁଖୀ
ଦ୍ରୌପଦୀ ବିରସ ମନ ପାର୍ଥକୁ ନ ଦେଖି ।
ପଥ ଚାହାନ୍ତେଣ ରାତି ତିନିଦଣ୍ଡ ହେଲା
ଧର୍ମ ବୋଇଲେ ହୋ କିପାଁ ଅର୍ଜ୍ଜୁନ ନଇଲା ।
ଏବେ ଅରଜୁନ ଅଛି କେବଣ ଠାବର
କର ଯୋଡ଼ିକରି କହେ ସହଦେବ ବୀର ।
ଶୁଣ ଆହେ ଦେବ ସ୍ୱାମୀ ଏସନକ ରୀତି
ମୃଗୟାରେ ଚାରିଭାଇ ଗଲୁ ଚାରିକତି ।
ଅର୍ଜ୍ଜୁନ ଠାକୁର ଗଲେ ପଶ୍ଚିମ ପ୍ରଦେଶେ
ପ୍ରବେଶ ପାର୍ଥିବ ଯାଇଁ ଦାନୀ ଗଙ୍ଗାପାଶେ ।
ବାମଦେବ ନାମେ ଏକ ଗିରି ତହିଁ ଅଛି
ସେହି ପର୍ବତ ଉପରେ ବିଜୟ କାମାକ୍ଷୀ ।
ଅଛଇ ତହିଁର ନିକଟରେ ମଧୁବନ
ସ୍ନାହାନ କରି କାମାକ୍ଷୀ କଲେକ ଦର୍ଶନ ।
ସେ ମଧୁବନର ଫଳ ପାଚିଣ ପଡ଼ନ୍ତି
ତୋଷେ ଧନଞ୍ଜୟ ତାହା ପ୍ରତ୍ୟହ ଭୁଞ୍ଜନ୍ତି ।
ସ୍ୱାମୀ ସେ ବନେ ଅର୍ଜ୍ଜୁନ ସ୍ୱାଦୁଫଳ ଖାଇ
ମଳୟ ପବନ ଲାଗି ନିଦ୍ରାଳସ ହୋଇ ।
ସୁଗନ୍ଧ ପବନ ତହିଁ ବହେ ସୁଶୀତଳ
ସୁଖ ହୋଇ ଶୋଇଲେ ଯେ ଦେବୀଙ୍କ ଆଗର
ନିକୁମ୍ଭ ହରି ଆଣିଲା ସ୍ୱର୍ଗୁ ହାରାବତୀ
କାମାକ୍ଷୀ ଦେବୀଙ୍କୁ ଅପସରା ପୂଜେ ନିତି ।
ଅର୍ଜ୍ଜୁନ ଶୟନ ସ୍ଥାନେ ମିଳିଲାକ ଯାଇ
ଦେଖିକରି ମୋହେ ବଶ ହାରାବତୀ ହୋଇ ।
ଅର୍ଜ୍ଜୁନ ଠାକୁରଙ୍କୁ ସେ ବିମାନେ ବସାଇ
ଶୋଇଥିବା ସ୍ଥାନରୁ ତ ହରିନେଲା ସେହି ।
ଅନେକମତେ ପାର୍ଥକୁ ମାଗନ୍ତେ ସୁରତି
ତା ସଙ୍ଗେ ପ୍ରୀତି ନ କଲେ ପାର୍ଥ ମହାମତି ।

ଏମନ୍ତ ସମୟେ ବିଜେ କଲା କଉଣପ
ରାଗେ ସୁନ୍ଦରୀ ପିଙ୍ଗିଲା ପାର୍ଥେ ଜୀର୍ଣ୍ଣକୂପ ।
ଏହିପରି କଥା ଯହୁଁ କହେ ମନ୍ତ୍ରୀମଣି
ଯୁଧିଷ୍ଠି ଦେବ ମୂର୍ଚ୍ଛିତ ହୋଇଲେ ତା ଶୁଣି ।
ମୋହେ ପଡ଼ିଗଲେ ଦେବୀ ଦ୍ରୁପଦ ଦୁଲଣୀ
ଆହା ନାଥ ବୋଲି ଡାକ ଦିଅନ୍ତି ରମଣୀ ।
ଭୀମସେନ ବୋଲେ ଦେବ ଚାଲ ବେଗେଯିବା
ଅସୁରକୁ ବଧକରି ପାର୍ଥକୁ ଆଣିବା ।
ସହଦେବ ବୋଲେ ବଧି ନ ପାରିବା ଦୈତ୍ୟ
ଜୀର୍ଣ୍ଣକୂପେ ପଡ଼ିଛନ୍ତି ଏବେ ବୀର ପାର୍ଥ ।
ତହିଁରୁ ଯେବେ ସେ ହୋଇ ପାରିବେ ଉଦ୍ଧାର
ତାଙ୍କର ହାତେ ଅସୁର ଯିବ ପ୍ରେତ ପୁର ।
ଗୋବିନ୍ଦଙ୍କୁ ସୁମରଣା କର ଦେବ ବେଗେ
ଆମ୍ଭର ଦୁଃଖ କହିବା ତାହାଙ୍କର ଆଗେ ।
ତ୍ରୈଲୋକ୍ୟ ଚିନ୍ତାମଣିଙ୍କୁ ତୁମ୍ଭେ କର ଚିନ୍ତା
ମହାସଙ୍କଟରୁ ସେହି ସିନା ଉଦ୍ଧାରନ୍ତା ।
ସେ ହରିଙ୍କୁ ସୁମରଣା କର ଧର୍ମରାୟେ
ଗୋବିନ୍ଦ ଆସନ୍ତୁ ବିଜେ କରି ଦେବରାୟେ ।
ତହୁଁ ଚିନ୍ତିଲେ ମନରେ ଦେବ ଧର୍ମସୁତ
ଦ୍ୱାରକାପୁରେ ଜାଣିଲେ ତାହା ଯଦୁନାଥ ।
ବିଜୟ କଲେ କେଶବ ଗରୁଡ଼ ବାହନେ
ପ୍ରବେଶ ହେଲେ ଯାଇଣ ଧର୍ମ ସନ୍ନିଧାନେ ।
ପର୍ବତ ଉପରେ ବିଜେ ଯୁଧିଷ୍ଠିର ଦେବ
ଗରୁଡ଼ ପୃଷ୍ଠୁ ଓହ୍ଲାଇ ଗଲେ ବାସୁଦେବ ।
ଦୂରରୁ ବିନୟ ଭାବେ ଯୋଡ଼ି ବେନି ହାତ
ଯୁଧିଷ୍ଠିର ପାଦତଳେ କଲେ ପ୍ରଣିପାତ ।
ଯୁଧିଷ୍ଠିର ଆଜ୍ଞାଦେଲେ ଯାଅ ହେ ନକୁଳ
କୋଳକରି ଶ୍ରୀହରିଙ୍କି ବେଗେ ତଳୁ ତୋଳ ।
ତତକ୍ଷଣେ ମାଦ୍ରୀସୁତ ଆଜ୍ଞା ପରମାଣେ
ଶ୍ରୀହରିଙ୍କି କୋଳକରି ଟେକିଲେ ଆପଣେ ।
ଯୁଧିଷ୍ଠିରଦେବ ତାଙ୍କୁ କରିଣ ଆଶିଷ
ବସାଇଲେ ନେଇ ତାଙ୍କୁ ଆପଣାର ପାଶ ।
ଗୋବିନ୍ଦ ବୋଇଲେ ତୁମ୍ଭେ ସମସ୍ତେ ତ ଅଛ
ଦେଖୁନାହଁ କାହିଁ ଯାଇ ଅଛଇ ବିବସ୍ତ ।
ଭୀମସେନ ବୋଲେ ଦେବ ଶୁଣିମା ଅନନ୍ତ
ଗଣ୍ଡା ମାରିବାକୁ ଗଲା ବୀରବର ପାର୍ଥ ।
ନିକୁମ୍ଭ ଦୈତ୍ୟର ପତ୍ନୀ ନାମ ହାରାବତୀ
ସୁନ୍ଦରୀପଣେ ତାହାକୁ ସମ ନାହିଁ କ୍ଷିତି ।
ସେ ହାରାବତୀ ପାର୍ଥକୁ ଯତ୍ନେ ହରିନେଲା
ଶୃଙ୍ଗାର ମାଗନ୍ତେ ସେହି ଅର୍ଜୁନ ନ ଦେଲା ।
ବିକଳେ ସୁନ୍ଦରୀ କାମଶରର ପ୍ରତାପେ
ଅର୍ଜୁନକୁ ପକାଇଲେ ରାଗେ ଜୀର୍ଣ୍ଣକୂପେ ।
ଜୀର୍ଣ୍ଣକୂପେ ପଡ଼ି ଅଛି ଏବେ ସବ୍ୟସାଚୀ
ତେଣୁକରି ଚିନ୍ତା ତୋତେ କଲୁ ହେ ଶ୍ରୀବତ୍ସି ।
ଭାବକୁ ନିଶ୍ଚଳ ତୁମ୍ଭେ ଭକତ ବତ୍ସଳ
ସର୍ବକାଳେ ଅନୁଗ୍ରହ କରୁ ଚକାଡୋଳ ।
ତୋ ବିନା ଆମ୍ଭମାନଙ୍କୁ କେହି ନାହିଁ ସାହା
ତୁମ୍ଭେ ପାଣ୍ଡବମାନଙ୍କ ଅଟ ପଞ୍ଚବାହା ।
ଭୀମର ବଚନ ଶୁଣି ନାରାୟଣ ଶାନ୍ତି
ଗରୁଡ଼ବାହନେ ବିଜେ କରି ଚଳିଯାନ୍ତି ।
ଶଙ୍ଖ ଚକ୍ର ଗଦା ପଦ୍ମ ଖଡ଼ଗ ଆୟୁଧ
ବିଜୟ ନାରାୟଣ ଯେ ଦୈତ୍ୟପୁର ମଧ ।
ସଙ୍ଗତରେ ଅଛଇ ସେ ବୀର ଭୀମସେନ
ମାଦ୍ରୀ ବେନିସୁତ ସଙ୍ଗେ ଚଳନ୍ତି ବହନ ।
ଦ୍ରୌପଦୀ ସନ୍ନିଧେ ଧର୍ମସୁତଙ୍କୁ ରୁହାଇ
ନାରାୟଣ ସଙ୍ଗେ ଗଲେ ଅନ୍ୟ ତିନିଭାଇ ।
ଚଳିଯାନ୍ତି ନାରାୟଣ ପବନୁ ବହନେ
ଏକଦିନେ ପ୍ରବେଶିଲେ ରାକ୍ଷସ ଭବନେ ।
ପ୍ରବେଶ ହୋଇ ଗରୁଡ଼ ଦେଲା ଘୋରରଡ଼ି
ସେ ଶବ୍ଦେ ବ୍ରହ୍ମାଣ୍ଡ ଖଣ୍ଡ ପଡ଼ିଲା କି ଝଡ଼ି ।
ସେହି ଅସୁର ରାଜ୍ୟରେ ହେଲା ଉଲ୍‌କାପାତ
ତା ଶୁଣି ଅସୁର ଭାଳେ ଏକି ଅଦଭୂତ ।
ଗରୁଡ଼ର ରଡ଼ି ବୋଲି ନ ଜାଣନ୍ତି କେହି
ଚଉଦିଗକୁ ନିରେଖି ଚାହୁଁଛନ୍ତି ସେହି ।
ଶ୍ରୀକୃଷ୍ଣ ବିଜେ ମଳୟ ବସନ୍ତ ପର୍ବତେ
ଭୀମ ସହଦେବ ଛନ୍ତି ତାହାଙ୍କ ସଙ୍ଗତେ ।
କୃଷ୍ଣ ବୋଇଲେ କେବଣ ଉପାୟ କରିବା
ଜୀର୍ଣ୍ଣକୂର୍ପରୁ ପାର୍ଥକୁ କେମନ୍ତ ଆଣିବା ।
କହେ ବୃକୋଦର ଶୁଣ ଆହେ ଦେବ ହରି
ଦୈତ୍ୟପୁରେ ପଶି ଦୈତ୍ୟ ପକାଇବା ମାରି ।
ଅସୁରକୁ ମାରି ଦେବ ଆଣିବା ପାର୍ଥକୁ
ଏହି ଯେ ଆସଇ ଦେବ ମୋହ ବିଚାରକୁ ।
ତହୁଁ ଗୋବିନ୍ଦ ବୋଇଲେ ଶୁଣ ବୃକୋଦର
ତୁ ଯାଇଣ ଦେଖି ଆସ କଟକ ଭିତର ।
ଗରୁଡ଼ ବୋଇଲେ ଦେବ ଥାଉ ଭୀମସେନ
ମୁହିଁ ଯାଇକରି ଦେଖି ଆସିବି ବହନ ।
ଏମନ୍ତ ଶୁଣିଣ ଆଜ୍ଞା ଦେଲେ ଚକ୍ରପାଣି
ଯାଅ ତା ରାଜ୍ୟରେ ପଶି ଦେଖ ଖଗମଣି ।
ବିନତା ନନ୍ଦନ ତହୁଁ ଗଲା କାଞ୍ଚନଗ୍ରେ
ଉଡ଼ି ଉଡ଼ି ଦେଖଇ ସେ ରହି ଶୂନ୍ୟମାର୍ଗେ ।

ଗିରିବର ସଦୃଶରେ ଦୈତ୍ୟଙ୍କ ଶରୀର
ଇତସ୍ତତଃ ହୋଇ ରାଜ୍ୟେ କରନ୍ତି ବିହାର ।
ବାରସ୍ୱତୀପୁର ପ୍ରାୟେ ଦିଶଇ ସେ ରାଜ୍ୟ
ଗୃହରେ ଖଞ୍ଜା ହୋଇଛି ମାଣିକ୍ୟ ବୈଡୁର୍ଯ୍ୟ ।
କଉଣସି ଉପଦ୍ରବ ନାହିଁ ସେ ରାଜ୍ୟରେ
ଯମଦଣ୍ଡ ନାହିଁ ସେହି ରାଜ୍ୟର ଭିତରେ ।
କଡ଼ା ମର୍ଦ୍ଦଳ ବାଜଇ ଯେ ବୀର ଦାଉଣ୍ଡି
ମଦିରାପାନେ ନାଚନ୍ତି ଯେ ଖେମଟା ଖଣ୍ଡି ।
ବିହରୁଛନ୍ତି ଦାନବେ ଶାର୍ଦ୍ଦୁଳ ଆରୋହି
ଅନ୍ତରୀକ୍ଷେ ବୈନତେୟ ଦେଖଇ ତା ରହି ।
ବେନି ଡେଣାକୁ ବିସ୍ତାର କରି ଖଗେଶ୍ୱର
ହଲାଅନ୍ତେ ତହୁଁ ହେଲା ପବନ ପ୍ରଖର ।
ତୁଳମାସ ଅମାବାସ୍ୟା ସ୍ୱାତୀର ପବନ
ବହୁଁ ଭଗ୍ନ ହୁଏ ଯେତେ ବୃକ୍ଷ ଗୃହମାନ ।
ସେରୂପେ ଗରୁଡ଼ପକ୍ଷ ମହାବାତଘାତ
ନିକୁମ୍ଭ ରାଜ୍ୟ ଗୋଟିକୁ କଲା ଛିନ୍ନଛତ୍ର ।
ଦୋହଲି ବୃକ୍ଷମାନେ ଯେ ଉପୁଡ଼ି ପଡ଼ିଲେ
ମେଢ଼ ମଣ୍ଡପ ଜଗତୀ ଅଟ୍ଟାଳିକା ତୁଲେ ।
ଅସୁର ଭୁବନସମ ରାଜ୍ୟ ଅଛି ଯେତେ
ସବୁ ଭାଙ୍ଗି ଚୂର୍ଣ୍ଣ ହେଲା ଖଗ ପକ୍ଷଘାତେ ।
ଅସୁର ବଳବାନ ଯେ ଉଡ଼ିଲେ ଗଗନେ
ପଡ଼ିଲେ ଅନେକ ଦୂରେ ଯାଇଁ ଯାତୁଧାନେ ।
କେ ଶତେ କେ ସହସ୍ରକ ଯୋଜନରେ ପଡ଼ି
ସ୍ଥାବର ଜଙ୍ଗମ ଆଦି ସର୍ବେ ଗଲେ ଉଡ଼ି ।
ଅସୁର ଭୁବନ ଦଶଯୋଜନ ପର୍ଯ୍ୟନ୍ତେ
ଘରେ କେହି ନ ରହିଲେ ଭାଜିଲେ ସମସ୍ତେ ।
କିଏ କେଣେ ଗଲା ମଲା ହୋଇ ଅନର୍ଯ୍ୟାପ
ପଡ଼ି ମୋହ ଗଲା ଭାଜିଗଲା କାହା ଦର୍ପ ।
ଗରୁଡ଼ ବୋଇଲେ ଦେବ ରାଜ୍ୟେ ଚାଲ ଯିବା
ଅର୍ଜୁନ କାହିଁ ଅଛନ୍ତି ଖୋଜିଣ ଆଣିବା ।
ନାରାୟଣ ଖଗେଶ୍ୱର ଭୀମ ସହଦେବ
ଚାରିହେଁ ପଶିଲେ ଯାଇଁ ଦୈତ୍ୟପୁର ଠାବ ।
ଦେଖିଲେ ପଡ଼ିଅଛଇ ମୃତ ଶବମାନ
ବିହରନ୍ତି ଦୈତ୍ୟପୁରେ ଦେବ ଭଗବାନ ।
ଛିଦ୍ରେକ ନ ଛାଡ଼ି ପ୍ରଭୁ ଖୋଜନ୍ତି ଚୌକତି
ଦକ୍ଷିଣଦିଗେ ଦେଖିଲେ ବିଜେ ଗଣପତି ।
ପ୍ରାସାଦ ଗୋଟିଏ ଅଛି ତହିଁ ସନ୍ନିଧିରେ
ହାରାବତୀ ରହିଅଛି ତାହାର ମଧ୍ୟରେ ।
ଅମୂଲ୍ୟ ରତନକାନ୍ତି ସେହି ସେ ଯୁବତୀ
ଦେଖି ଆନନ୍ଦିତ ହେଲେ ଭୀମ ଶିରୀପତି ।
ଗୋବିନ୍ଦ ପୁଚ୍ଛିଲେ ଆଗେ ଜଗତମୋହିନୀ
କେଉଁ ଭୁବନୁ ଆସିଲା ଦୈତ୍ୟ ତୋତେ ଘେନି
ବୋଇଲେ ସୁନ୍ଦରୀ ତୁହୋ ଶୁଣ ବାସୁଦେବ
ମୁହିଁ ଅପସରା ସ୍ୱର୍ଗେ ବିଦ୍ୟାଧରୀ ସର୍ବ ।
ଗନ୍ଧର୍ବ ରାଜା ଯେ ବିଶ୍ୱାବସୁ ନରପତି
ରମ୍ଭା ତହୁଁ ଉପୁଜିଲି ନାମ ହାରାବତୀ ।
ସ୍ୱାମୀ ନିକୁମ୍ଭ ଦଇତ ସ୍ୱର୍ଗେ ଦେଲା ଧାଡ଼ି
ବହୁ ଧନରତ୍ନ ସଙ୍ଗେ ମୋତେ ଆଣିକରି ।
ମୁହିଁ ସେହି ହାରାବତୀ ରମ୍ଭାର ଦୁଲଣୀ
ମୋତେ ନିକୁମ୍ଭ ଦଇତ ବନ୍ଦୀ କଲା ଆଣି ।
ଅସୁରରେ ପ୍ରୀତିଭାବ ନୋହିବ ମୋହର
ତେଣୁ ଦୈତ୍ୟ ରଖି ମୋତେ ମେଢ଼ର ଭିତର
ସହଦେବ ବୋଇଲା ତୁ ଜଗତ ମୋହିନୀ
ଦେଖିଅଛ କି ଆମ୍ଭର ବୀର ଫାଲ୍‌ଗୁନି ।
ହାରାବତୀ ବୋଲେ ମୋର ବଚନ ଶୁଣିବା
କାମାକ୍ଷୀ ଦେବୀଙ୍କି ମୁହିଁ ନିତ୍ୟ କରେ ସେବା
ପୁଂସେ ଦେଖିଲି ମଳୟବସନ୍ତ ପର୍ବତେ
ସେଠାରେ ଶୋଇଥିଲା ସେ ନିଦ୍ରାରେ ଅଚେତେ
ତାକୁ ତହିଁ ଘେନି ଦେବ ଅଇଲି ମୋ ପୁରେ
ଅନେକମତେ ବିଳାସ ମାଗିଲି ତାହରେ ।
ସେହି ପୁରୁଷ ନିରାଶ କଲା ମୋତେ ଯହୁଁ
ଜୀର୍ଣ୍ଣକୂପରେ ତାହାକୁ ପକାଇଲି ତହୁଁ ।
ଶ୍ରୀକୃଷ୍ଣ ବୋଇଲେ ଚାଲ ସେ କୂପ ଦେଖିବା
ତାହାକୁ କହିଣ ଆମ୍ଭେ ତୋ ସ୍ୱାମୀ କରିବା ।
ଶୁଣିଣ ସୁନ୍ଦରୀ ମନେ ହୋଇଲା ହରଷ
ବୋଇଲା ତେବେ ମୋହର ସଙ୍ଗତରେ ଆସ
ଭୀମସେ ସହଦେବ ଖଗ ବାସୁଦେବ
ହାରାବତୀ ଘେନିଗଲା ଜୀର୍ଣ୍ଣକୂପ ଠାବ ।
ଜୀର୍ଣ୍ଣକୂପକୁ ଦେଖାଏ ନେଇ ହାରାବତୀ
ଅଶୀତାଳ ଗଭୀର ସେ ଅଦୃଷ୍ଟି ଅଶ୍ରୁତି
ତା ଦେଖି ପୁଚ୍ଛନ୍ତି କୃଷ୍ଣ ଶୁଣ ହରାବତୀ ।
କେମନ୍ତେ ଏଥିରୁ ସେହି ଆସିବ ଗୋ ବର୍ତ୍ତି ।
ହାରାବତୀ ବୋଲେ ତୁମ୍ଭେ ମୋତେ ସତ୍ୟ କଲେ
ଏହିକ୍ଷଣି ବାହାରିବ ମୋ ଡାକ ଶୁଣିଲେ ।
ଗୋବିନ୍ଦ ବୋଇଲେ ତୋତେ ଦେବି ମୁଁ ତାହାକୁ
ନିଶ୍ଚେ ବିଭା କରାଇବି ତୋତେ ଅର୍ଜୁନକୁ ।
ହାରାବତୀ ବୋଇଲା ହୋ ଦୃଢ଼ କି ଏ କଥା
ଶ୍ରୀକୃଷ୍ଣ ବୋଇଲେ ଦେବୁ ସତ୍ୟ କଲୁ ମାତା ।
ନିଶ୍ଚେ ଆମ୍ଭେ ତୋତେ ବିଭା କରାଇବୁ ତାକୁ
ତୁ ଏବେ ବାହାର କରି ଆଣ ହୋ ତାହାକୁ ।

ହାରାବତୀ ବୋଲେ ମୁହିଁ ସ୍ୱର୍ଗେ ଅପସରୀ
ସେ ମହାଖଳା ଏ ଆମ୍ଭେ ଅଟୁ ଡାକେଶ୍ୱରୀ ।
ଏମନ୍ତ କହିଣ ଡାକ ଦିଏ କୂପେ ଚାହିଁ
କିସ ନାମ ତାହାର ଯେ ଦିଅ ମୋତେ କହି ।
ସହଦେବ ବୋଲେ ତାର ନାମ ଫାଲଗୁନି
ଚାହିଁଲା ନାଗେଶ୍ୱରୀ ନାଗାନ୍ତ ବିଦ୍ୟା ଘେନି ।
ମନ୍ତ୍ର ପଢ଼ି ହାରାବତୀ ସୁମରେ କାମାକ୍ଷୀ
ଅଶୀତାଳ ଗଭୀରରୁ ଆସେ ସବ୍ୟସାଚୀ ।
ଦେଖିଣ ଅତି ଆନନ୍ଦ ହୋଇଲେ ଗୋବିନ୍ଦେ
ତାହାଙ୍କ ପାଦତଳରେ ଅରଜୁନ ବନ୍ଦେ ।
ଶତସହସ୍ର ପ୍ରଣାମ ଗୋବିନ୍ଦ ଚରଣେ
ଦେଖି ହରଷ ହୋଇଲେ ଦେବ ଜନାର୍ଦ୍ଦନେ ।
ଅର୍ଜ୍ଜୁନକୁ ନାରାୟଣ ବସାଇଣ କୋଳେ
ସ୍ନାନ କରାଇଲେ ତାଙ୍କୁ ସୁଶୀତଳ ଜଳେ ।
ଗୋବିନ୍ଦ ବୋଇଲେ ଅଟେ ସେହୁ ଜଗଜ୍ଜିତା
ଏହାକୁ ତୋତେ ପ୍ରଦାନ ବିହିଲା ବିଧାତା ।
ଭୀମ ବୋଇଲା ନ କର ଦେବ ଅଭିମାନ
ସମ୍ପଦ ବିପଦ ଏହୁ ଦଇବ ଘଟନ । ।
ଏମନ୍ତ ବିଚାରି ସେହୁ କାଞ୍ଚି ନଗ୍ରଭାଗେ
ରାକ୍ଷସମାନେ ପ୍ରବେଶ ହେଲେ ଆସି ବେଗେ
ଗୋବିନ୍ଦ ବୋଇଲେ ପାର୍ଥ ମାର ତୁ ଏହାନ୍ତ
ଶ୍ରୀକରେ ଧନୁ ଧରିଣ ବୀରବର ପାର୍ଥ ।
ଅନେକ ତୀକ୍ଷଣ ନାରାଚ ବସାଇ ଧନୁରେ
ରାକ୍ଷସମାନଙ୍କ ପରେ ବିନ୍ଧିଲେ ସତ୍ୱରେ ।
ବପୁହୀନେ ଆସିଥିଲେ ପୁରକୁ ଦାନବେ
ପାର୍ଥ ନାରାଚେ ପଡ଼ିଲେ ମରି ଠାବେ ଠାବେ
ଆସୁଥିଲେ ସେ ଦଇତ ତେଜହୀନ ହୋଇ
ଆହାର ହୀନେ ଦୁର୍ବଳ ହସ୍ତେ ଅସ୍ତ୍ର ନାହିଁ ।
କଟକ ମଧ୍ୟେ ଦିଶନ୍ତି ହୋଇ ମହାଶ୍ରମୀ
ଅର୍ଜ୍ଜୁନ ଶରେ ହୋଇଲେ ସର୍ବେ ଭୂମିଗାମୀ ।
ନାଚନ୍ତି କବନ୍ଧପ୍ରାୟେ ପଡ଼ି ଶିର ଛିଡ଼ି
ପାର୍ଥ ନାରାଚେ ମରନ୍ତେ ଖର୍ବ ଖର୍ବ ପଡ଼ି ।
ଭୀମ ଜଗିଲେ ପଶ୍ଚିମ ଦୁଆରର ଭାଗେ
ରଣରଙ୍ଗୀ ଅସୁର ସେ ଅଇଲେକ ବେଗେ ।
ଗଦା ଉଠାଇ ପ୍ରହାର କରନ୍ତି ମାରୁତି
ପୂର୍ବଦ୍ୱାରରେ ଜଗିଲେ ସହଦେବ ମନ୍ତ୍ରୀ ।
ଉତ୍ତର ଦ୍ୱାର ଆବୋରି ରହିଲେ ଅଚ୍ୟୁତ
ଦକ୍ଷିଣଦ୍ୱାର ଆବୋରି ବିନତାର ସୁତ ।
ଚାରିଜଣ ଚାରିଦ୍ୱାରେ ଆବୋରିଲେ ଯତ୍ନେ
କ୍ଷୁଧାଘାତରେ ପଳାନ୍ତି ତହୁଁ ଦୈତ୍ୟମାନେ ।
ଦୁଃସହ ପ୍ରତିଜ୍ଞା ତହୁଁ କରିଣ ପାବନି
ଗଦାଘାତେ ନିପାତିଲେ ଦାନବ ସଇନି ।
ଗରୁଡ଼ ପକ୍ଷଘାତରେ ଦୈତ୍ୟ କୋଟି କୋଟି
ଜୀବନ ହାରି ପଡ଼ନ୍ତି ମହୀପରେ ଲୋଟି ।
ଅର୍ଜ୍ଜୁନଙ୍କ ଶରାଘାତେ ଅସଂଖ୍ୟ ଅସୁର
ଜୀବନ ହାରି ଯାଆନ୍ତି ସଂଯମନୀ ପୁର ।
ଲକ୍ଷ ଲକ୍ଷ କୋଟି କୋଟି ମେଵଚ୍ଛ ସଇନି
ଉପବାସ ଯୋଗୁଁ ଅସ୍ତ୍ର ନ ପାରନ୍ତି ଘେନି ।
ଯେତେକ ସୈନ୍ୟ ଆସିଣ ମିଳନ୍ତି ସେ ବାଟେ
ସର୍ବେ ନାଶ ହୋନ୍ତି ବର୍ତ୍ତି ନ ଯାନ୍ତି ଦର୍ପିଷ୍ଟେ ।
ଅନୁକ୍ଷଣେ ସୈନ୍ୟମାନେ ମରୁଛନ୍ତି ପଡ଼ି
ଆକାଶକୁ ଉଚ୍ଛୁଳାଏ ଖଗବର ଉଡ଼ି ।
ସହଦେବ ରହିଛନ୍ତି ଜଗନ୍ନାଥ ତୁଲେ
ଅପାର ସଇନି ତହିଁ ଦୁହେଁ ବଧକଲେ ।
ଯେତେକ ସୈନ୍ୟ ଆସନ୍ତି ସେଠାକୁ ଲେଉଟି
ରାଜ୍ୟେ ପଶି ନ ପାରନ୍ତି ମରନ୍ତି ସେ ଲୋଟି ।
କିଞ୍ଚିତରେ ନାଶଗଲେ ଅସୁର ସଇନ
ଅକାରଣେ ସର୍ବେ ଗଲେ ଶମନ ସଦନ ।
ତିନି ଯୋଜନା ମାଡ଼ିଣ ପଡ଼ିଲେ ମେଦିନୀ
ତିନିଦିନେ ଶେଷହେଲେ ଯାବତ ସଇନି ।
ଏରୂପେ ସମର ଦେଖି ନିକୁମ୍ଭ ରାକ୍ଷସ
ଦଶସସ୍ର ସୈନ୍ୟ ତୁଲେ ହୋଇଲା ପ୍ରବେଶ ।
ରଥ ଗଜ ଅଶ୍ୱ ନାହିଁ ବାହନାଦି ତୁଲେ
ଧନୁର୍ବାଣ ବିହୀନରେ ନିଶସ୍ତ୍ରେ ଅଇଲେ ।
କ୍ଷୀଣବଳ ତହିଁ ସେ ବିଷମ ଶରାଘାତେ
ଭୂମିରେ ସେ ଲୋଟିଗଲେ ବହୁତ ଦଇତେ ।
ଦାନବ ଯେ ପଶୁଛନ୍ତି ଭୀମସେନ ବାଟେ
ଧାଇଁଯାଇ ଭୀମସେନ ଓଗାଳିଲେ ଘାଟେ ।
ପର୍ବତ ପ୍ରାୟ ଦିଶଇ ତାହାଙ୍କର କାୟ
ନୟନ ଘୂରେ ତାଙ୍କର ତମ୍ୱାଚକ୍ର ପ୍ରାୟ ।
ଖାଙ୍କର କେଶ ତାଙ୍କର ବିକଟ ବଦନ
ଲମ୍ୱବାହୁ ଯେ ଉଦର ଅତି ଅସମାନ ।
ଏମନ୍ତରୂପେ ଦାନବେ ଆସି ପ୍ରବେଶନ୍ତେ
ସେମାନଙ୍କୁ ଆବୋରିଲେ ମାରୁତି ତୁରିତେ ।
ଯେସନ ସ୍ୱରୂପ ନାଶକର ଦେବତାର
ସେ ସ୍ୱରୂପ ଧରିଛନ୍ତି ବୀର ବୃକୋଦର ।
ଭରସି କେ ନ ପଶନ୍ତି ତାଙ୍କର ସାକ୍ଷାତେ
ଗୋଡ଼ାଇ ମାରନ୍ତେ ଭୀମ ତାଙ୍କୁ ଗଦାଘାତେ
ଯେତେବେଳରେ ପ୍ରାଣୀକି ପଡ଼ଇ ପ୍ରମାଦ
ବଳବୀର୍ଯ୍ୟ ତୁଟେ ତାର ହରଇ ସମ୍ପଦ ।

ଯେଉଁ ରାକ୍ଷସ ଅଟଇ ତିନିପୁର ଜିତା
ଯା ଭୟେ ତେଜିଲା ସ୍ୱର୍ଗ ବାସବ ଦେବତା ।
ଯାକୁ ଦାନବ କିନ୍ନର କରୁଥିଲେ ଭୟେ
ସେ ଭୀମ ମୂରତି ଦେଖି ହୋଇଲା ସଭୟେ ।
ରହିଲେ ଦାନବଗଣ ଡରିଣ ଭୀମକୁ
ନିକୁମ୍ଭ ଧାଇଁଲା ଭୀମସେନ ଉପରକୁ ।
କରେ ଧରିଛି ମହତ ପର୍ବତ ଗୋଟିଏ
ଦିଶଇ ସେହି ଦାନବ ରାହୁର ପରାୟେ ।
ସେହି ପର୍ବତ ନିଠାଇ ଫିଙ୍ଗିଲା ଦାନବ
ଗଦାରେ ଭାଙ୍ଗିଲେ ତାହା ମଧମ ପାଣ୍ଡବ ।
ପୁଣି ବେନି ବୃକ୍ଷ ଆଣି ପିଟିଲା ଅସୁର
ଭୀମପରେ ପଡ଼ି ତାହା ହେଲା ଶତେଚୂର ।
ଭୀମସେନ ନିକୁମ୍ଭର ମହାଯୁଦ୍ଧ ଦେଖି
ଗରୁଡ଼ ଯେ ସହଦେବ ଧାଇଁଲେ ଉପେକ୍ଷି ।
ପ୍ରହାରିଲେ ଗଦାବର ଘେନି ଭୀମସେନ
ନିକୁମ୍ଭର ଦେହେ ବାଜି ଗଦା ହେଲା ଚୂର୍ଣ୍ଣ ।
ଆଉ ଏକ ଗଦା ଧରି ବୃକୋଦର ପିଟି
ନିକୁମ୍ଭ ଦଇତ ତାହା ଅତିବେଗେ ମେଣ୍ଟି ।
ପୁଣି ନିକୁମ୍ଭ ଧାଇଁଲା ଶିଳା ଏକ ଘେନି
ତାହା ଫିଙ୍ଗନ୍ତେ ଗଦାରେ ଚୂରିଲେ ପାବନି ।
ଶିଳାଚୂର୍ଣ୍ଣ ହେବା ଦେଖି ନିକୁମ୍ଭ ରାକ୍ଷସ
ମୁଥ ଉଞ୍ଚାଇଣ ଭୀମେ କରିଲା ଆକ୍ରୋଶ ।
ଗର୍ଜି ଦାନବ ଭୀମକୁ ମାରୁ ବେନିମୁଥ
ଆକର୍ଷିଣ ଭୀମସେନ ଧଇଲେ ତା ହସ୍ତ ।
ସିଂହରଡ଼ି ଛାଡ଼ି ମୁଥେ ମାରୁ ଭୀମଯୋଧି
ସେ ଘାତେ ନିକୁମ୍ଭ ଦୈତ୍ୟ ହୋଇମହାକ୍ରୋଧୀ
ଭୁଜେ ଭୁଜ ଭିଡ଼ାଭିଡ଼ି ପାଦେ ପାଦ ଛନ୍ଦି
ମାଲବନ୍ଧେ ଦୁଇବୀରେ ହେଲେ ବନ୍ଧାବନ୍ଧି ।
ପ୍ରଥମେ ନିକୁମ୍ଭ ତଳେ ପକାଇ ଭୀମକୁ
ବଜ୍ରମୁଥ ପ୍ରହାରିଲା ତାହାର ବକ୍ଷକୁ ।
ଦାନବକୁ ଲେଉଟାଇ ପୁଣି ଭୀମସେନ
ତା ବକ୍ଷେ ବସି ମାଇଲା ତାକୁ ବିଧାମାନ ।
ପୁଣି ନେଉଟାଇ ମାଡ଼ି ବସିଲା ନିକୁମ୍ଭ
ବିଶ୍ୱରୂପେ ତାର ବକ୍ଷେ ବସେ ହୋଇ ଦମ୍ଭ ।
ମନ୍ଦରକୁ ମାଡ଼ିବସେ ଯେହ୍ନେ ହିମବନ୍ତ
ବୃକୋଦର ବକ୍ଷେ ତେହ୍ନେ ବସିଛି ଦଇତ ।
ନ ପାରଇ ହଲିଚଲି ଭୀମ ତଳେ ପଡ଼ି
ମୁଥେ ମୁଥେ ମାରେ ଦୈତ୍ୟ ଛାଡ଼େ ଘୋରରଡ଼ି
ଭୀମସଙ୍ଗେ ଅସୁରର ଘୋର ଯୁଦ୍ଧ ଦେଖି
ହରି ଅର୍ଜ୍ଜୁନ ଧାମନ୍ତି ସମର ଉପେକ୍ଷି ।

ଭୀମକୁ ମାଡ଼ି ବସିଛି ଯହିଁ ସେ ଅସୁର
ତହିଁ ପ୍ରବେଶ ହୋଇଲେ ହରି ପାର୍ଥବୀର ।
ଅସୁରକୁ ଲକ୍ଷ୍ୟକରି ସହସ୍ରେକ ବାଣ
ମହାରାଗ ହୋଇ ପାର୍ଥ ବିନ୍ଧିଲେ ସେକ୍ଷଣ ।
ସହଜରେ ରାକ୍ଷସର ଅଟେ ବଜ୍ରଅଙ୍ଗ
ପାର୍ଥ ଅସ୍ତ୍ର ତା ଦେହରେ ଏଡ଼ି ହେଲା ଭଙ୍ଗ ।
ଅସ୍ତ୍ର ବ୍ୟର୍ଥ ହେବା ଦେଖି ବାସବ କୁମର
ପୁଣି ତୀକ୍ଷ୍ଣ ଶରମାନ କରଇ ପ୍ରହାର ।
ରୋମକେ ନାରାଚ ଏକ ବିନ୍ଧେ ଫାଲ୍‌ଗୁନି
ଦୈତ୍ୟଦେହେ ନାଶଗଲା ଶରସସ୍ତ୍ର ତିନି ।
ଅନେକ ନାରାଚ ପଡ଼ି ଚୂର ଯହୁଁ ହେଲା
ଦେବଅସ୍ତ୍ର ଧରି ତହୁଁ ଅର୍ଜ୍ଜୁନ ପେଷିଲା ।
ବାବଲ ଶରକୁ ଧରି ପେଷୁ ସବ୍ୟସାଚୀ
ଅସୁରର ଦେହେ ପଡ଼ି ନୋହିଲାକ କିଛି ।
ପୁଣ ପୁଣ ନାରାଚ ଯେ ପେଷେ ଧନଞ୍ଜୟ
ସମରରେ ନାରାୟଣ କଲେକ ବିଜୟ ।
ତଳେ ପଡ଼ିଅଛି ଭୀମ ଉପରେ ନିକୁମ୍ଭ
ମନ୍ଦର ପରାୟେ ମାଡ଼ି ବସିଛି ଦାନବ ।
ହଲିଚଲି ନ ପାରଇ ପବନ ତନୟ
ପାଞ୍ଚଜନ୍ୟ ଶଙ୍ଖଧ୍ୱନି କଲେ ଦେବରାୟ ।
ଭୀମସେନର ଯେ ଜ୍ଞାନ ପଶିବା ନିମନ୍ତେ
ବାରମ୍ବାର ଶଙ୍ଖଧ୍ୱନି କଲେ ଜଗନ୍ନାଥେ ।
ଶତସିଂହ ଶତସିଂହ ବୋଲେ ଶଙ୍ଖବର
ତଳେ ପଡ଼ି ସେହି ଶବ୍ଦ ଶୁଣି ବୃକୋଦର ।
ଶତସିଂହ ପର୍ବତକୁ ସୁମରଣା କଲା
ଏକୋଉର ଶତସିଂହ ପ୍ରାକର୍ମ ହୋଇଲା ।
ତେବେ ସୁଦ୍ଧା ହଲିଚଲି ନ ପାରେ ମାରୁତି
ସନ୍ନିଧିରେ ଜଗନ୍ନାଥ ପ୍ରବେଶିଲେ ଧାଡି ।
କୌମୋଦୀ ଗଦା ବୁଲାଇ ଦେବ ଦାମୋଦର
ଧାତିକାରେ ପ୍ରହାରିଲେ ଦୈତ୍ୟର ଉପର ।
ମେରୁ ଚୂର୍ଣ୍ଣ ହୋଇଯାଏ ଯେଉଁ ଗଦା ପଡ଼ି
ସେ ଘାତେ ନିକୁମ୍ଭଦୈତ୍ୟ ମୋହେ ଗଲା ପଡ଼ି
ନିକୁମ୍ଭଦୈତ୍ୟ ଭୀମକୁ ଛାଡ଼ିଣ ପଡ଼ନ୍ତେ
ପୁଣି ଗଦାଏ ପିଟିଲେ ପ୍ରଭୁ ଜଗନ୍ନାଥେ ।
ଦେଖି ଦୁରନ୍ତକ ଗଦା ଧରି ଏକ କରେ
ମୁଥେକ ପ୍ରହାର କଲା ପ୍ରଭୁଙ୍କ ଅଙ୍ଗରେ ।
ସେମୁଥ ବଞ୍ଚାଇ ଗଦା ଛଡ଼ାଇ ସତ୍ୱର
ପୁଣି ସେ ଗଦା ପିଟିଲେ ଦାନବ ଉପର ।
ତେବେ ସେ ଆଘାତେ ତାର ନୋହିଲାକ କିଛି
ଦେଖିଣ ବିସ୍ମୟ ମନ ହୋଇଣ ଶ୍ରୀବତ୍ସି ।

କୌମୋଦକୀ ଗଦା ଛାଡ଼ି ତହୁଁ ନାରାୟଣ
ଶ୍ରୀକରେ ଧଇଲେ ଦେବ ଚକ୍ର ସୁଦର୍ଶନ ।
ହସ୍ତେ ଯହୁଁ ସୁଦର୍ଶନ ଧଇଲେ ଶ୍ରୀବତ୍ସ
କୋଟି ସୂର୍ଯ୍ୟ ପ୍ରାୟ ତାର ତେଜ ବିକାଶୁଛି ।
ତହିଁରେ ମାଛି ପଡ଼ିଲେ ହୁଏ ଶତଖଣ୍ଡ
କେଶବଙ୍କ ହସ୍ତେ ଚକ୍ର ଦିଶଇ ପ୍ରଚଣ୍ଡ ।
ସୁଦର୍ଶନ ଚକ୍ର ଧରି ବୁଲାନ୍ତେ ଶ୍ରୀହରି
ଧାଇଁଲା ନିକୁମ୍ଭ ଦୈତ୍ୟ ମହାକୋପ କରି ।
ଗୋବିନ୍ଦ ହସ୍ତରୁ ଚକ୍ର ନେଲାକ ଛଡ଼ାଇ
ତାହା ଦେଖି ସ୍ତମ୍ଭୀଭୂତ ହେଲେ ଯଦୁସାଇଁ ।
ଅସୁର ହସ୍ତରୁ ଚକ୍ର ଛଡ଼ାଇ ନ ପାରି
ତା ହୃଦେ ପାଦ ପ୍ରହାର କଲେ ଆଣ୍ଟକରି ।
ହରିଙ୍କ ପ୍ରହାରକୁ ସେ ନ କଲାକ ଭୟ
ବ୍ରହ୍ମାବରରେ ତାହାର ବଜ୍ର ଅଟେ କାୟ ।
ଆକାଶରେ ଦେଖୁଛନ୍ତି ଦେବ ଅଂଶୁମାଳି
ମହାଶ୍ରମ ପାଇଲେ ଯେ ଯୁଦ୍ଧେ ବନମାଳୀ ।
ଏପରି ଦେଖି ବିରଞ୍ଚି ବିଷଣ୍ଣ ହୋଇଲେ
ସୂର୍ଯ୍ୟାବର୍ତ୍ତ ଚକ୍ର ନେଇ ପାର୍ଥ ହସ୍ତେ ଦେଲେ ।
ଶ୍ରୀଜଗନ୍ନାଥ ନିକୁମ୍ଭ ଧରାଧରି ହେଲେ
ସୁଦର୍ଶନ ଚକ୍ର ଦେବ ନେଇ ନ ପାରିଲେ ।
ସୂର୍ଯ୍ୟାବର୍ତ୍ତ ଚକ୍ର ତହିଁ ଅର୍ଜ୍ଜୁନ ବୁଲାଇ
ନିକୁମ୍ଭର ପଛଆଡୁ ପିଟିଲାକ ନେଇ ।
ଯେବଣ ଚକ୍ରର ଅଟେ କୋଟିଏ କିରଣ
ତା ପ୍ରହାରୁ ଦୈତ୍ୟ ମୁଣ୍ଡ ଛିଡ଼ିଲା ବହନ ।
ନିକୁମ୍ଭ ରାକ୍ଷସ ବଧ ହେଲା ଯେତେବେଳେ
ଆକାଶରୁ ଆନନ୍ଦିତ ହେଲେ ଦିଗପାଳେ ।
ଅସୁରଙ୍କ ସୈନ୍ୟ ସବୁ କରି ନିସୂଦନ
କାଳିଞ୍ଜନରେ ରହିଲେ ଯାଇ ପାଞ୍ଚଜଣ ।
ସହଦେବ ରାଇ ଆଜ୍ଞା ଦେଲେ ଶିରୀପତି
ଯୁଧିଷ୍ଠିରଙ୍କୁ ଏଠାକୁ ଆଣ ହୋ ଝଟତି ।
ସହଦେବ ଚଳିଗଲା ଯୁଧିଷ୍ଠିଙ୍କ ପାଶ
କହିଲା ପ୍ରଣାମ କରି ସକଳ ସନ୍ଦେଶ ।
ମୋର ସଙ୍ଗତରେ ଆସ ଘେନିଯିବି ତଥି
ଯୁଧିଷ୍ଠି ସହ ଉଠିଲେ ସେ ସକଳ ଯତି ।
ଅସୁରଙ୍କ ଭୁବନରେ ପରଶବେଶ ହେଲେ
ଅରଜୁନକୁ ଦେଖିଣ ଆନନ୍ଦ ଲଭିଲେ ।
ଋଷିମାନେ ଜଗନ୍ନାଥେ କଲେ ବହୁମାନ୍ୟ
ଅରଜୁନକୁ ପ୍ରଶଂସା କଲେ ଦ୍ୱିଜଗଣ ।
ଯାହାଯୋଗେ ଭାରାଭର ହୋଇଲା ଉଶ୍ୱାସ
ତୁହି ଖଣ୍ଡନ କରିଲୁ ତପୀଙ୍କର ତ୍ରାସ ।
ଏ ଅରଣ୍ୟେ ଋଷିଙ୍କର କଷ୍ଟ ହୋଇଥିଲା
ଅସୁରଙ୍କ ଯୋଗେ ବହୁ ତୀର୍ଥ ଯାଇଥିଲା ।
ସମସ୍ତଙ୍କୁ ନିସୂଦନ କରୁଥିଲେ ବନେ
ଏବେ ତୀର୍ଥ କରିବୁଟି ସୁଖେ ତୋ ପ୍ରସନ୍ନେ ।
କାଳେବର ନାମେ ଥିଲା ଗୋଟିଏ କିରାତ
ସେ କାଞ୍ଚନଗ୍ରେ ବାହାର ଥାଏ ଯେ ସତତ ।
ସୁଜାଣ ଈଶ୍ୱର ବୋଲି ତାର ନାମ ଦେଇ
ସେ କାଞ୍ଚନଗ୍ରେ ତାହାକୁ କଲେ ନରସାଇଁ ।
ଏଥୁ ଅନନ୍ତରେ ଶୁଣ ମନୁ ନରରାଣ
ଶୁଣିଲଟିକି ନିକୁମ୍ଭ ବଧ ବିବରଣ ।
ମାତଳିକୁ ଡକାଇଣ ଇନ୍ଦ୍ର ଆଜ୍ଞା ଦେଲେ
ବେଗେ ଯାଇଁ ଅର୍ଜ୍ଜୁନକୁ ଆଣ ଯା ବୋଇଲେ ।
ଦେବରାଜ ବଚନରେ ସୂତ ତହୁଁ ଗଲା
ପୁଷ୍ପକ ବିମାନ ଘେନି ମର୍ତ୍ତ୍ୟକୁ ଅଇଲା ।
ପ୍ରବେଶ ହୋଇଲା ଯାଇ ସେ କାଞ୍ଚି ନଗ୍ରରେ
ଶୁଭବାର୍ତ୍ତା କହିବାକୁ କୃଷ୍ଣଙ୍କ ପାଶରେ ।
ପୁଷ୍ପକ ରଥରୁ ତହୁଁ ଓହ୍ଲାଇ ମାତଳି
ଜଗନ୍ନାଥ ପାଦତଳୁ ଘେନି ପାଦଧୂଳି ।
ଭୀମ ଅର୍ଜ୍ଜୁନ ଯୁଧିଷ୍ଠି ଦୁଇ ମାଦ୍ରୀସୁତ
ମାତଳିକି ଦେଖି ନମ୍ର ହୋଇଲେ ବହୁତ ।
ମାତଳିକି ବସାଇଣ ପାଶେ ଜଗନ୍ନାଥ
ପଚାରିଲେ ବାସବର ସକଳ ବୃତ୍ତାନ୍ତ ।
କେବଣ କାର୍ଯ୍ୟେ ଆସିଲ ହେ ମାତଳି କହ
ତାହା ଶୁଣିଲେ ଆମ୍ଭର ଥୟ ହେବ ଦେହ ।
ମାତଳି ବୋଇଲେ ଦେବ ଶୁଣ ଜଗନ୍ନାଥେ
ମୋତେ ଏଠାକୁ ପେଷିଲେ ପ୍ରଭୁ ଶଚୀନାଥେ
ନିକୁମ୍ଭ ଦୈତ୍ୟର ବଧ ଯହୁଁ ସେ ଶୁଣିଲେ
ସ୍ୱର୍ଗରେ ବହୁ ଉତ୍ସବମାନ କରାଇଲେ ।
ଆବର ବୋଇଲେ ମୋତେ ଆଣ ଯା ପାର୍ଥକୁ
ସେ କାରଣୁ ରଥ ଘେନି ଅଇଲି ଏଠାକୁ ।
ଶୁଣିଣ ହରଷ ହେଲେ ଦେବ ଜନାର୍ଦ୍ଦନ
ଯୁଧିଷ୍ଠିରଙ୍କୁ ସକଳ ବିଷୟ କହିଣ ।
ହରଷ ହୋଇଣ ଆଜ୍ଞା ଦେଲେ ଅର୍ଜ୍ଜୁନକୁ
ଯାଅ ହେ ଫାଲ୍‌ଗୁନି ତୁମ୍ଭେ ଇନ୍ଦ୍ରଙ୍କ ପାଶକୁ ।
ହାରାବତୀ ପାଇଁ ବହୁ ଉପୁଜିଲା ଦ୍ୱନ୍ଦ
ମଦନ ଆରତେ ତୋତେ ଯେହୁ କଲା ବନ୍ଦ ।
ଲୁଚାଇଲା ନିକୁମ୍ଭର ଭୟେ ଜୀର୍ଣ୍ଣକୂପେ.
ପୁଣି ପାରକଲା ତୋତେ ଭକ୍ତି ଅନୁରୂପେ ।
ହାରାବତୀ ମୋ ଆଗରେ କହିଥିଲା ତତ୍ତ୍ୱ
ତୁ ତାହାର ଆଶା ପୂର୍ଣ୍ଣକର ଏବେ ପାର୍ଥ ।

ହୁଅ ତୁହି ବିଭା କିଛି ନ କରରେ ଭୟ
କହୁଅଛି ଶୁଣ ତୁମ୍ଭେ ବାସବ ତନୟ ।
ସତ୍ୟ ନିଶ୍ଚେ କରିଅଛୁ ତାହାର ଆଗର
ହାରାବତୀ ବିଭା ହୁଅ ନ କରି ବିଚାର ।
ଏହାକୁ ପ୍ରଦାନ ତୋତେ କରିବା ଫାଲ୍‌ଗୁନି
ଅର୍ଜ୍ଜୁନ ବୋଇଲେ ଦେବ ଶୁଣ ଅନ୍ତର୍ଯ୍ୟାମୀ ।
ବାସବ ଦେବଙ୍କ ପ୍ରିୟା ରମ୍ଭା ଅପସରୀ
ଜନ୍ମିଅଛି ସେହି ରମ୍ଭାଠାରୁ ଏ କୁମାରୀ ।
ଯୁକତରେ ପିତା ମୋର ଅଟନ୍ତି ବାସବ
ହାରାବତୀ ବିଭା ହେବି କେଉଁପରି ଦେବ ।
ଭାଇ ଭଉଣୀରେ କାହିଁ ଅଛଇ ପୀରତି
ଏହି ଆଜ୍ଞା ନ ଦିଅନ୍ତୁ ମୋତେ ଶିରୀପତି ।
ଜାଣୁ ଜାଣୁ କେଉଁପରି ହୋଇବି ମୁଁ ବିଭା
ଏହି ବିଭା ସଂସାରକୁ ନ ହୋଇବ ଶୋଭା ।
ମୁଁ ଏହାକୁ ଘେନିଯିବି ଅମର ପୁରକୁ
ଏହି କନ୍ୟା ସମର୍ପିବି ଇନ୍ଦ୍ର ଦେବତାଙ୍କୁ ।
ଏହା କହି ଧନଞ୍ଜୟେ ହାରାବତୀ ଘେନି
ପୁଷ୍ପକ ବିମାନେ ବସି ଭେଟେ ସସ୍ରଯୋନି ।
ହାରାବତୀକୁ ଇନ୍ଦ୍ରର ସନ୍ନିଧିରେ ଦେଇ
ଶତସସ୍ର ଦଣ୍ଡବତ କଲା ପାଦେ ଶୋଇ ।
ଆସ୍ଥାନରୁ ଉଠି ଇନ୍ଦ୍ରକରି କୋଳାଗ୍ରତ
ବୋଇଲେକ ଧନ୍ୟ ଧନ୍ୟ ତୁ ମୋହର ପୁତ୍ର ।
ବାବୁ ଶୁଭକ୍ଷଣେ ତୁହି ଜନମିଲୁ ପାର୍ଥ
ତୋର ଯୋଗୁଁ ରହିଅଛି ଅଇଶ୍ୱର୍ଯ୍ୟ ଅର୍ଥ ।
ନିର୍ବାତକବଚ ମାରି ସ୍ୱର୍ଗ କଲୁ ରକ୍ଷା
ହିରଣ୍ୟକବଚ ମାରି ପୂରାଇଲୁ ବାଞ୍ଛା ।
ନିକୁମ୍ଭ ଦୈତ୍ୟ ଅମରପୁରେ ଧାଡ଼ିଦେଲା
ହାରାବତୀ ସୁନ୍ଦରୀକୁ ବଳେ ଘେନିଗଲା ।
ରମ୍ଭାଠାରୁ ଶତଗୁଣେ ଅଟେ ରୂପବତୀ
ଏହା ରୂପକୁ ତୁଳନା କେବଳ ପାର୍ବତୀ ।
ଚଉଷଠି କୋଟି ମୋର ଅପସରୀଗଣ
ତାଙ୍କ ମଧ୍ୟେ ନୃତ୍ୟ ଗୀତେ ଅଟେ ଏ ପ୍ରବୀଣ ।
ଦାରୁଣ ଦାନବ ତାକୁ ବଳେ ଘେନିଗଲା
ବିଭା ହେବାକୁ ତାହାକୁ ଯତ୍ନେ ରଖିଥିଲା ।
ତୋହଯୋଗୁଁ ହାରାବତୀ ଅଇଲା ଏ ସ୍ଥାନ
ତୁହି ବାବୁ ଅସୁରଙ୍କୁ କଲୁ ନିସୂଦନ ।
ପୁଣି ହାରାବତୀକୁ ବୋଲଇ ବଜ୍ରଧାରୀ
ତୁ ଯେବେ ଅର୍ଜ୍ଜୁନକୁ ନ ନେଇଥାନ୍ତୁ ହରି ।
ନିକୁମ୍ଭ ମରନ୍ତା କିବା ଆନେ ଯୁଦ୍ଧ କଲେ
ମୁହିଁ ନ ପାରନ୍ତି କି ଅମର ମଣ୍ଡଳେ ।

ଧର୍ମବଳେ ହାରାବତୀ ତୁହି ହେଲୁ ପାର
ପାର୍ଥେ ନେଇ ମରାଇଲୁ ନିକୁମ୍ଭ ଅସୁର ।
ତୁହି ଯେବେ ଅର୍ଜ୍ଜୁନକୁ ନ ନିଅନ୍ତୁ ହରି
ନିକୁମ୍ଭ ମରନ୍ତା କିବା ଆନେ ଯୁଦ୍ଧକରି ।
ମୁହିଁ ରହି ପାରନ୍ତି କି ଅମରଙ୍କ ସ୍ଥାନେ
ହୋଇଲି ନିଶ୍ଚିନ୍ତ ମୁହିଁ ତୋହର ପ୍ରସନ୍ନେ ।
ସେ କନ୍ୟାକୁ ଉପହାର ଦେଇ ସୁନାସୀର
ତୁଷ୍ଟ ହେଲି ସୁନ୍ଦରୀ ଗୋ ମାଗି ଘେନ ବର ।
ଲଜ୍ଜା ଛାଡ଼ିକରି ତହୁଁ ବୋଲେ ହାରାବତୀ
ଅର୍ଜ୍ଜୁନକୁ ବରକରି ଦିଅ ସୁରପତି ।
ଆହେ ଦେବ ତୁମ୍ଭ ଆଗେ ନ କହିବି ମିଥ୍ୟା
ଭାରିଯା ପ୍ରାୟ ଖଟିବି ତାହାକୁ ସର୍ବଥା ।
ବର ଦେବାପାଇଁ ଯେବେ କହିଲ ଆପଣ
ଜାଣି ଅନୁଗ୍ରହ କର ମୋତେ ହେ ଅର୍ଜ୍ଜୁନ ।
ବାସବ ବୋଇଲେ ତୁମ୍ଭେ ଶୁଣ ସବ୍ୟସାଚି
ହାରାବତୀ ବିଭା ହୁଅ ବହୁକାର୍ଯ୍ୟ ଅଛି ।
ଯାଚିଲା କନ୍ୟାକୁ ବାବୁ ନ କଲେ ଗ୍ରହଣ
ଶାସ୍ତ୍ରେ ଲେଖାଅଛି ହୁଏ ବଂଶକୁ ଦୂଷଣ ।
ଶଚୀପତିଙ୍କ ବଚନ ନ କରି ଲଙ୍ଘନ
ଅଗତ୍ୟା ସମ୍ମତ ହେଲା ବୀର ଅରଜୁନ ।
ସ୍ୱର୍ଗେ ବହୁତ ଉତ୍ସବ କଲେକ ମଘବା
ଗୁରୁଙ୍କୁ କହିଲେ କର ଅର୍ଜ୍ଜୁନର ବିଭା ।
ତୁମ୍ଭ ଶୁକ୍ଳ ସପତମୀ ଅଟେ ଗୁରୁବାର
ରୋହିଣୀ ନାମେ ନକ୍ଷତ୍ର ସେହି ଦିବସର ।
କିଂସ୍ତୁଘ୍ନ ନାମେ କରଣ ପ୍ରୀତିନାମେ ଯୋଗ
କୁମ୍ଭମାସେ ବୃହସ୍ପତି ପଞ୍ଚମରେ ଭୋଗ ।
ଶୁଭଅନୁକୂଳ ଧନୁ ଲଗନର ବେଳ
ପାପଗ୍ରହ କେହି ନାହିଁ ଶୁଭ ଅନୁକୂଳ ।
ପ୍ରବେଶ ହୋଇଲେ ଯାଇ ଧୌମ୍ୟ ପୁରୋହିତେ
ଅର୍ଜ୍ଜୁନକୁ ବସାଇଣ ଇନ୍ଦ୍ର କୋଳାଗ୍ରତେ ।
ଗନ୍ଧର୍ବରାଜା ଯେ ବିଶ୍ୱାବସୁ ଚକ୍ରବର୍ତ୍ତୀ
ତାହାକୋଳେ ବସାଇଲେ ନେଇ ହାରାବତୀ
ଦେଶକାଳ ବାକ୍ୟମତେ ଉଚ୍ଚାରିଣ ଗୋତ୍ର
ପାର୍ଥ କରେ ହାରାବତୀ ଧରାଇଲେ ହାତ ।
ଆପଣାର ପୁତ୍ର ବୋଲି ଦେବ ସୁରପତି
ଅରଜୁନକୁ ପ୍ରଦାନ କଲେ ହାରାବତୀ ।
ବହୁତର ଯଉତୁକ ଦେଲେକ ଗନ୍ଧର୍ବେ
ଇନ୍ଦ୍ରବୋଲେ ନିର୍ଭୟଟି ଏବେ ହେଲେଦେବେ
ହୋମକର୍ମ କଲେ ଘୃତ ଆହୁତି ଦେଇଣ
ବର କନ୍ୟାଙ୍କୁ କରାଇ ଉତ୍ତମ ଭୋଜନ ।

ଭୋଜନ ସାରିଣ ଶଯ୍ୟା କରିଲେ ଯୁକତେ
ଅନେକ ପୀରତି କଲେ ଦୁହେଁ ତୋଷଚିତ୍ତେ ।
ଇଚ୍ଛାଏ ବରିଲା ସେହି ରାଜାର ଦୁଲାଳୀ
ପାର୍ଥକୁ ଖଟଇ ସେହୁ ମନର ହିଆଳି ।
ମନୋହର ବନେ ରହି ଅଛନ୍ତି ଯୁଧିଷ୍ଠି
ତହିଁ ଯାଇଣ ଦର୍ଶନ କଲେକ କିରୀଟୀ ।
ନାରାୟଣ ବୋଇଲେକ ଶୁଣ ତୁ ଅର୍ଜ୍ଜୁନ
ଆକାଶରେ କି ଉତ୍ସବ କଲେ ମଘବାନ ।
ହାରାବତୀକୁ ଘେନିଣ ସ୍ୱର୍ଗେ ଗଲୁ ତୁହି
ତୋତେ କି ପ୍ରଦାନ ତାକୁ କଲା ସୁରସାଇଁ ।
ଧନଞ୍ଜୟ ବୋଲେ ପ୍ରଭୁ ବାକ୍ୟ ଶୁଣ ମୋର
ବହୁମତେ ନାଷ୍ଟି କଲି ତାଙ୍କ ଛାମୁର ।
ସକଳ ଦେବତା ମିଳି କହିଲେ ମଣାଇ
ତେଣୁ ହାରାବତୀ କନ୍ୟା ବିଭା ହେଲି ମୁହିଁ ।
ଧୌମ୍ୟ ପୁରୋହିତ ଯାଇ କଲେ ସର୍ବକର୍ମ
ଶୁଣିଣ ହରଷ ହେଲେ ଦେବ ଭଗବାନ ।
ତହୁଁ ଗୋବିନ୍ଦ କହିଲେ ଯୁଧିଷ୍ଠିଙ୍କ ପାଶ
ଦ୍ୱାରକା ଛାଡ଼ିବା ହେଲା ମୋର ପାଞ୍ଚମାସ ।
ଏବେ ଆଜ୍ଞାଦେଲେ ମୁହିଁ ଯିବଇଁ ଭୁବନ
ଶୁଣି ଯୁଧିଷ୍ଠି ବୋଇଲେ ଆହେ ଜନାର୍ଦ୍ଦନ ।
ମୋପାଇଁ ବହୁତ ଦୁଃଖ ପାଇଲ ଆପଣ
ଯେତେ ଦୁଃଖ ପାଇଅଛ ନ ଧରିବ ମନ ।
ବହୁଦୁଃଖ ଦେଲେ ମୋତେ ଦେଖୁଛ କୌରବେ
ତହିଁରୁ ବଞ୍ଚିଲି ମୁହିଁ ତୁମ୍ଭ ଦୟା ଭାବେ ।
ନବବର୍ଷ ହେଲା ମୁହିଁ ବୁଲେ ବନମାର୍ଗ
ବନେ ଥିଲେ ସୁଦ୍ଧା ଥାଏ ତୁମ୍ଭ ଅନୁରାଗ ।
ଆଉ କେତେଦିନ ମୁହିଁ ଥିବି ବନେ ରହି
ତୁମ୍ଭ ବିନୁ ଅନ୍ୟ କେହି ମୋର ସଖା ନାହିଁ ।
କର ଯୋଡ଼ିଣ ବୋଇଲେ ତାଙ୍କୁ ବାସୁଦେବ
ଆଉ ତିନିବର୍ଷେ ତୁମ୍ଭ ବନବାସ ଯିବ ।
ଏହି କେତେଦିନ ଦେବ ଥାଅ ଦୁଃଖ ସହି
ବିପତ୍ତି ଖଣ୍ଡନ ହେବ ପାଇବଟି ମହୀ ।
ଏହିପରି କୁହାକୁହି ହେଲେ ଦୁଇଜଣ
ଏଥୁ ଅନନ୍ତରେ କଥା ଶୁଣ ମନୁରାଣ ।
କୁମ୍ଭ ଶୁକଳ ଦ୍ୱାଦଶୀ ରବିଙ୍କ ବାସର
ପୁନର୍ବସୁ ନକ୍ଷତ୍ର ଯେ ଅଟେ ସେ ଦିନର ।
ତୈତିଳ ନାମେ କରଣ ଶୁଭ ନାମେ ଯୋଗ ।
ଯୁଧିଷ୍ଠି ଧାର୍ମିକପଣ ଜାଣି ସୂର୍ଯ୍ୟ ବେଗ ।
ବ୍ରାହ୍ମଣ ରୂପେ ଅଇଲେ ଯୁଧିଷ୍ଠି ପାଶକୁ
କୃଷ୍ଣ ସଜ ହୋଇଛନ୍ତି ଦ୍ୱାରକା ଯିବାକୁ ।

ସେ ବ୍ରାହ୍ମଣ ଅଙ୍ଗ ଶୁଦ୍ଧ ସ୍ଫଟିକକୁ ଜିଣି
ହୃଦୟରେ ଶୋଭାପାଏ କଉସ୍ତୁଭ ମଣି ।
କବରୀ ଜଟାରେ ଦିଶେ ମଉଳି ସଦୃଶ
ମନୋହର ବନେ ଯାଇ ହୋଇଲେ ପ୍ରବେଶ ।
ଦେଖି ସାନନ୍ଦ ହୋଇଣ ଦେବ ଧର୍ମରାଜା
ସେ ବିପ୍ରଙ୍କ ପାଦେ ପଡ଼ି କଲେ ବହୁପୂଜା ।
ଚରଣରେ ପ୍ରଣିପାତ ହେଲେ ପାଞ୍ଚବୀରେ
କୃଷ୍ଣାଜିନ ଛାଲ ଏକ ଦେଲେ ବସିବାରେ ।
ତହିଁପରେ ବସି ବିପ୍ର ହୋଇ ମୌନବ୍ରତ
ଗୋବିନ୍ଦ ବୋଇଲେ ଆଉ ଯିବାହେ କେମନ୍ତ
ଏହା ବିଚାରି ରହିଲେ ଦେବ ଚିନ୍ତାମଣି
ବ୍ୟାସ ସେ ବିପ୍ରେ ପୁଚ୍ଛନ୍ତି କୁଶଳର ବାଣୀ ।
କିଛି ସମସ୍ୟା ନ ଦେଲେ ତାଙ୍କୁ ସେ ବ୍ରାହ୍ମଣ
ଆସନରେ ବସିଛନ୍ତି ମଉନ ହୋଇଣ ।
ଯୁଧିଷ୍ଠିର ପଚାରିଲେ ଶୁଣ ସହଦେବ
ଅଣବାକ୍ୟ ମହାତ୍ମା ଏ କହ ଯାଙ୍କ ଭାବ ।
ସହଦେବ ବୋଇଲେ ଏ ବିଜେ ଦେବଧର୍ମ
ଦେଖିବାକୁ ଆସିଛନ୍ତି ଆମ୍ଭର ଆଶ୍ରମ ।
ଶୁଣି ଭକତି କରିଲେ ବ୍ୟାସ ବାସୁଦେବ
ବହୁତ ପୂଜା କରିଲେ ପଞ୍ଚ ଯେ ପାଣ୍ଡବ ।
ଜୟ ଜୟ ନୀଳାମ୍ବର ଭାସ୍କର ଦୈବତ
ଅଜୟ ଅକ୍ଷୟ ଅଟେ ଯାହାଙ୍କର ଗାତ୍ର ।
ଶୁଦ୍ଧ ସୁବର୍ଣ୍ଣ ବରନ ତୁହି ନିରିମଳ
ଅନନ୍ତ ତୋର ମହିମା ଅକୂଳ ଅମୂଳ ।
ଦୟାର ସାଗର ତୋର କାୟା ମାୟା ନାହିଁ
କେହୁ ବା ଦେଖି ପାରିବ ଅଦଭୂତ ଦେହୀ ।
ଅନନ୍ତ ଆକାଶେ ଦେବ କରୁ ତୁ ବିହାର
ପାବକ ସମାନ ଅଟେ ତୋହର ଶରୀର ।
ସ୍ୱାମୀ ଶରଦ ଶିଶିର ହିମ ଗ୍ରୀଷ୍ମ ବର୍ଷା
ଷଡ଼ଋତୁ ଭୋଗ କରେ ତୋହଯୋଗୁ ରସା ।
ଶ୍ରୁତିରେ ତୋହର କଥା ହୋଇଛି ବ୍ୟାଖ୍ୟାନ
ହେ ସୁଧୀ ଉପାସ୍ୟ ମୋର ନିବେଦନ ଘେନ
ଶ୍ରୁତି ଧୃତି ବ୍ୟାହୃତି ଯେ ଯାହାର ଆସନ
ଜ୍ଞାନ ଛନ୍ଦ ଅରୂପ ଯେ ଅରେଖ ଅବର୍ଣ୍ଣ ।
ଏହିରୂପେ ବହୁସ୍ତୁତି କଲେ ଯୁଧିଷ୍ଠିର
ପ୍ରସନ୍ନ ହୋଇ ବୋଇଲେ ଦେବ ନିରାକାର ।
ଧନ୍ୟ ତୁହି ଯୁଧିଷ୍ଠିର ଧନ୍ୟ ତୋର ମନ
ତୋତେ ଦେଖିବା ପାଇଁକି ଅଇଲୁ ଏ ସ୍ଥାନ ।
ତୁମ୍ଭମାନଙ୍କୁ ଦେଖିଣ ହୋଇଲୁ ହରଷ
ଅଳପ ଦିନେ ତୁମ୍ଭର ଯିବ ଏହି କ୍ଲେଶ ।

ତୁମ୍ଭମାନଙ୍କୁ ସହାୟ ଛନ୍ତି ଚକ୍ରଧର
ସବୁ ବିପଦୁଁ ତୁମ୍ଭଙ୍କୁ କରିବେ ଉଦ୍ଧାର ।
ଏମନ୍ତ କହି ତାହାଙ୍କୁ ଧର୍ମ ନିରଞ୍ଜନ
ଯାଉଛୁ ବୋଲି କହିଣ ହେଲେ ଅନ୍ତର୍ଦ୍ଧାନ ।
ସେ ଦେବଙ୍କ ଶ୍ରୀଚରଣେ ରଖିଣ ମାନସ
ବନପର୍ବକୁ ଲେଖଇ ଶ୍ରୀ ଶାରଳା ଦାସ ।

■■■

## ସତ୍ୟଆୟ ବିବରଣ

ଏଥୁ ଅନନ୍ତରେ ପୁଣି ମନୁ ମହାରାଜା
ଅଗସ୍ତିଙ୍କ ଶ୍ରୀଚରଣେ କରି ଦିବ୍ୟପୂଜା ।
ଧୂପ ଦୀପ ନଇବେଦ୍ୟ ବସନ ଚାମର
ଦେଇ ତାଙ୍କ ପାଦେ କରି ଶତ ନମସ୍କାର ।
ପୁଚ୍ଛାକଲେ ଏଥୁଅନ୍ତେ ହେଲା କିସ କଥା
ତାହା ମୋ ଆଗରେ କହି ଫେଡ଼ମନୁ ବ୍ୟଥା ।
ରାଜାର ଭକତି ଦେଖି ବୋଲନ୍ତି ଅଗସ୍ତି
ଏକମନ ହୋଇ ଶୁଣ ବିଲଙ୍କାଧିପତି ।
ପାଣ୍ଡବେ ତ ମନୋହର ବନେ ରହିଛନ୍ତି
ତେଣେ ହସ୍ତିନାରେ ରହି ରାଜା କୁରୁପତି ।
କର୍ଣ୍ଣ ଶକୁନି ଦୁଃଶାଦି ଭାଇଙ୍କି ବସାଇ
ଏକାନ୍ତରେ ଦୁର୍ଯ୍ୟୋଧନ ତାଙ୍କୁ ପଚାରଇ ।
ପାଣ୍ଡବେ ଆମ୍ଭ ସଙ୍ଗରେ ଖେଳି ପଶାଖେଳ
ହାରନ୍ତେ ଆମ୍ଭେ ହୋଇଲୁ ଏବେ ମହୀପାଳ ।
ପାଣ୍ଡବେ ତ ଏଥୁ ଯାଇ ବନବାସୀ ହେଲେ
କିଛି ଜାଣି ନ ପାରିଲୁ କେଉଁଆଡ଼େ ଗଲେ ।
କି ଅବା ମରିଲେ ସେହି ଅନ୍ୟଶାସ୍ତି ପାଇ
କିପା କେଉଁ ଦୈତ୍ୟ ମୁଖେ ପଡ଼ିଲେ ବା ସେହି
ନଅବରଷ ହୋଇଲା ବନଗାମୀ ହେଲେ
ବାର୍ତ୍ତା ନ ପାଇଲୁ ଆମ୍ଭେ କେଉଁଆଡ଼େ ଗଲେ
ପ୍ରଥମେ ବେନି ବର୍ଷରେ ବାର୍ତ୍ତା ପାଇଥିଲୁ
ଏବେ କେଣେ ଗଲେ କିଛି ଜାଣି ନ ପାରିଲୁ ।
ଶକୁନି ବୋଇଲା ଶୁଣ ଆହେ କୁରୁବୀର
ଏକାଙ୍ଗ ଚକ୍ରବର୍ତ୍ତୀ ତୁ ହୋଇଲୁ ମହୀର ।
ପାଣ୍ଡବମାନେ କଣ୍ଟକ ଥିଲେ ତୋର ହୋଇ
ଏବେ ନିଶ୍ଚିନ୍ତ ହୋଇଣ ଭୋଗକର ମହୀ ।
ଶକୁନି ବଚନ ଶୁଣି ବୋଲେ ଦୁର୍ଯ୍ୟୋଧନ
କାହାକୁ ପେଷି ବୁଝିବା ତାହାଙ୍କ ସନ୍ଧାନ ।
ରାଜା ମୁଖୁ ଏହା ଶୁଣି ରାଧାସୁତ କହି
ତୁମ୍ଭର ବିଚାର ମୋର ମନକୁ ଆସଇ ।
ବନେ ପଶି ଖୋଜିବାର ଯୋଗାଇ ଭୋ ମିତ୍ର
ପଣ୍ଡୁ ସୁତଙ୍କୁ ବିପତ୍ତି ନାହିଁ ନା ବନସ୍ତ ।
ସଦା ସର୍ବଦା ତାହାଙ୍କୁ ଶ୍ରୀକୃଷ୍ଣ ସହାୟ
ସେ ଥିଲେ ତାଙ୍କୁ ବିପଦ ନାହିଁ ବୁଝ ରାୟ ।
କେବଣ ବନରେ ସେହୁ ଅଛନ୍ତି ଗୋପନେ
ଗୁପତେ ଲୋକ ପଠାଇ ଖୋଜ ବିଦ୍ୟମାନେ
କର୍ଣ୍ଣର ବଚନ ଶୁଣି ରାଜା ଦୁର୍ଯ୍ୟୋଧନ
କାହାକୁ ପେଷିବା କେହୁ ଯିବ ସେହୁ ସ୍ଥାନ ।
ପାଣ୍ଡବଙ୍କ ବର୍ଣ୍ଣ ଚିହ୍ନି କେହୁ ଦେଖିଆସି
ଆମ୍ଭଙ୍କୁ କହିବ ମାମୁଁ କହ ହେ ବିଶେଷି ।
ହେ ମାମୁଁ କେଉଁ ଜନକୁ ପେଷିବା ବିଚାର
ଶକୁନି ବୋଇଲା ଏବେ ମୋର ବୋଲକର ।
ପୁରଞ୍ଜନପଣ୍ଡା ପୁତ୍ର ଗୌରମୋକ୍ଷ ବୋଲି
ତାକୁ ପଠାଅ ମୋହର ବିଚାରେ କହିଲି ।
ଶକୁନି ବଚନ ଶୁଣି ହସ୍ତିନା ରାଜନ
ସନ୍ନିଧିକୁ ହକାରିଲେ ପଣ୍ଡାର ନନ୍ଦନ ।
ହେ ପଣ୍ଡା ଭାଇ ଭାଇରେ ପଶା ଯେ ଖେଳିଲୁ
ଖେଳିଲା ବେଳରେ ଆମ୍ଭେ ଏହି ପଣ କଲୁ ।
ଯେଉଁ ଲୋକ ଏହି ପଶାଖେଳେ ହାରିଯିବ
ଦ୍ୱାଦଶ ବରଷ ସେହୁ ବନଗାମୀ ହେବ ।
ଏପରି ଏକ ବରଷ ତ୍ରୟୋଦଶ ଦିନ
କେହି ନ ଚିହ୍ନିବେ ତାଙ୍କୁ ହୋଇବ ଗୋପନ ।
ଏହି ଅଜ୍ଞାତରେ ଯେବେ ଜଣାଯିବେ ସେହି
ପୁଣି ବନରେ ରହିବେ କଥା ଥିଲା ହୋଇ ।
ଏହିପରି ପଣ କଲୁଁ ପାଣ୍ଡବେ ହାରିଲେ
ବନବାସ କରିବାକୁ ସର୍ବେ ଚଳିଗଲେ ।
ପ୍ରଥମ ଦୁଇବରଷ ଜାଣୁଥିଲୁ କଥା
ଏବେ ସାତବର୍ଷ ହେଲା ନ ପାଉ ବାରତା ।
ଆବର ତିନିବରଷ ଅଛି ବନବାସ
ତୁହି ଦ୍ୱିଜବର ଯାଇ ଖୋଜି ବେଗେ ଆସ ।
ପୁରଞ୍ଜନ ବ୍ରାହ୍ମଣର ନନ୍ଦନ କହିଲା
ନ ଚିହ୍ନଇ ପାଣ୍ଡବଙ୍କୁ ଯହୁଁ ଯା ବୋଇଲା ।
ଦୁର୍ଯ୍ୟୋଧନ ବୋଲେ ତେଣୁ ଖୋଜରେ ତାହାଙ୍କୁ
କେହି ନ ଚିହ୍ନିବେ ତୋତେ ଜଣା ହୋଇବାକୁ
ଦୁର୍ଯ୍ୟୋଧନ ବୋଲେ ତହୁଁ ଥିବେ ପଣ୍ଡୁସୁତ
ବହୁ ତପୀ ଋଷି ଥିବେ ତାହାଙ୍କ ସଙ୍ଗତ ।
ତେବେ ତୁ ଜାଣିବୁ ସେହି ନିଶ୍ଚେ ପଣ୍ଡୁବାଳ
ଆଶ୍ୱିନମାସେ ମାଗିବୁ ତାଙ୍କୁ ଚୂତଫଳ ।
ଏହିରୂପେ ତିଆରିଣ ଦୂତଙ୍କୁ ରାଜନ
ଚାରିଦିଗକୁ ପେଷଣ କଲା ଚାରିଜଣ ।
ଉତ୍ତରରେ ଗୌରମୋକ୍ଷ ଦକ୍ଷିଣେ ସୌରଣ୍ୟ
ଅଜ ବିପ୍ର ପଶ୍ଚିମରେ ପୂର୍ବେ କାଶୀପନ୍ୟ ।

ଚାରିଦିଗେ ଏହି ଚାରି ବିପ୍ର ପଠିଆଇ
ଗୁପତେ କହଇ ରାଜା ତାଙ୍କ ପଛେ ଯାଇ ।
କାହିଁ ରହନ୍ତି ପାଣ୍ଡବେ କାହିଁ ତାଙ୍କ ବସା
ଅଜ୍ଞାତବାସରେ କାହିଁ କରନ୍ତି ମନୀଷା ।
ଯେବେ ତୁମ୍ଭେମାନେ ଭେଟ ତାଙ୍କର ପାଇବ
ଅଦିନରେ ଚୂତଫଳ ତାହାଙ୍କୁ ମାଗିବ ।
କୌଣସି ଉପାୟେ ଯଦି ଦେଖାଇବେ ଆମ୍ବ
ସେ ଆମ୍ବକୁ ଆଣି ତୁମ୍ଭେ ଆମ୍ଭ ତହିଁ ଦେବ ।
ସତ୍ୟରେ ଯଦି ନ ଦେବେ ସେହୁ ଚୂତଫଳ
ବହୁମତେ ଝିଙ୍ଗାସିବ କରିଣ କଟାଳ ।
ସତ୍ୟଭ୍ରଷ୍ଟ ହେବେ ତୁମ୍ଭ ଭର୍ତ୍ସନାରେ ସେହି
ମରିବେ ଆତ୍ମଘାତକୀ ହୋଇ ପାଞ୍ଚଭାଇ ।
ଏହିପରି କହି ତାଙ୍କୁ ପେଷେ ଦୁର୍ଯ୍ୟୋଧନ
ଚାରିବିପ୍ରେ ଚାରିଦିଗେ କରିଲେ ଗମନ ।
ଖୋଜନ୍ତି ନାନାତୀର୍ଥରେ ପଶି ଘୋରବନେ
ଖୋଜନ୍ତି ଛିଦ୍ରେକ ନ ଛାଡ଼ି ସର୍ବସ୍ଥାନେ ।
ଗୌରମୋକ୍ଷ ବୋଲୁ ଯେହୁ ପୁରଞ୍ଜନ ବଳା
ଚାରିମାସେ ଯାଇ ସେହୁ ପାଣ୍ଡବେ ଭେଟିଲା
ପାଣ୍ଡବେ ରହିଅଛନ୍ତି ଅସକନ୍ଦ ବନେ
ମୁକତି ଗଙ୍ଗା ବହଇ ଉତ୍ତର ବାହିନେ ।
ସେ ଉତ୍ତରଦିଗେ ଅଛି ରାମଘାଟ ତୀର୍ଥ
ତହିଁ ରହିଛନ୍ତି ପଣ୍ଡୁସୁତ ପଞ୍ଚଭ୍ରାତ ।
ଗୋପନ ଭାବରେ ସେହୁ ଗୌରମୋକ୍ଷ ଦ୍ୱିଜ
ମହାତପସ୍ୱୀବେଶକୁ ଧରି ହେଲା ସଜ ।
ଦଣ୍ଡ କମଣ୍ଡଳୁ କକ୍ଷା କୌପୀନ କାଛଟା
ମସ୍ତକେ ଫଣୀ ତମ୍ବାର ତା ମଧରେ ଜଟା ।
ଦୁଇକର୍ଣ୍ଣରେ ଦୁଇଟି ତମ୍ବାର କୁଣ୍ଡଳ
କନ୍ଧରେ ପଇତା ଗଳେ ରୁଦ୍ରାକ୍ଷର ମାଳ ।
ହୃଦେ ବନ୍ଧନ ହିରଣ୍ୟଗର୍ଭ ଏକ ଲିଙ୍ଗ
ବେନିକରେ ଧରି ଫୁଙ୍କେ ଗୟଳର ଶିଙ୍ଗ ।
ଏମନ୍ତ ପ୍ରକାରେ ସେହି ହୋଇ ଆଭରଣ
ଛଦ୍ମେ ସେ ଗୌରମୋକ୍ଷ କରିଲା ଗମନ ।
ଉତ୍ତର କୂଳରେ ସର୍ବେ କରନ୍ତି ସ୍ନାହାନ
ଗୌରମୋକ୍ଷ ବସେ ତହିଁ ହୋଇଣ ମଉନ ।
ମହା ତପେ ଧ୍ୟାନ ପ୍ରାୟେ ତା ରୂପକୁ ଦେଖି
ଯୁଧିଷ୍ଠି ଦେବ ଉଠିଲେ ଆସନ ଉପେକ୍ଷେ ।
ଶରୀର ଦିଶଇ ତାର ଅନଳ ସମାନ
ତମ୍ବାବର୍ଣ୍ଣ ପ୍ରାୟେ ଦିଶେ ତା ବେନି ନୟନ ।
ଏମନ୍ତ ସ୍ୱରୂପ ଦେଖି ଦେବ ଯୁଧିଷ୍ଠିର
ବିନୟଭାବେ ପୁଚ୍ଛନ୍ତି ଯୋଡ଼ି ବେନିକର ।

ଭୋ ମହାତ୍ମା ଅଟ ତୁମ୍ଭେ କେଉଁ ଦେଶବାସୀ
ଦେବର୍ଷି କି ବ୍ରହ୍ମରଷି କିବା ରାଜରଷି ।
ଯୁଧିଷ୍ଠି ବୋଇଲେ ତୁମ୍ଭେ କି କର ଆହାର
ତାହା ସତ୍ୟକରି କହ ଆମ୍ଭର ଆଗର ।
ଗୌରମୋକ୍ଷବୋଲେ ଆମ୍ଭେନୋହୁ ଅନ୍ନଭୋଜୀ
ଅନେକ ଦିନରୁ ତାହା ଦେଇଛୁ ବରଜି ।
ଯୁଧିଷ୍ଠି ବୋଇଲେ ତୁମ୍ଭେ ଶୁଣ ତପୋଧନ
ବିନା ଆହାରେ ବର୍ତ୍ତିଛ ଆପଣ କେସନ ।
ତପସ୍ୱୀ ବୋଇଲେ ତୁମ୍ଭେ ସାର ଆହନିକ
ଭୋଜନାଦି କର ଯାଇ ତୁମ୍ଭେ ସର୍ବଲୋକ ।
ଯୁଧିଷ୍ଠି ବୋଇଲେ ତପୀ ଶୁଣ ମୋ ବଚନ
ଅତିଥି ବସାଇ କେହ୍ନେ କରିବି ଭୋଜନ ।
ଅତିଥି ବସାଇ ଯେହୁ କରଇ ଭୋଜନ
ବିଅର୍ଥ ଅଟେ ତାହାର ଧରିବା ଜୀବନ ।
ଅତିଥି ବସାଇ ଆଗେ ଭୋଜନ କରିଲେ
ଦେବ ପିତୃ ନ ପାଆନ୍ତି ଅତିଥି ଫେରିଲେ ।
ତପୋଧନ ବୋଇଲା ମୁଁ ନ ଭୁଞ୍ଜଇ ଅନ୍ନ
ଜୀବହତ୍ୟା ଦୋଷେ ମାଂସ ନ କରେ ଭୋଜନ
ଯୁଧିଷ୍ଠି ବୋଇଲେ ତାଙ୍କୁ ବେନିକର ଯୋଡ଼ି
ଏ ବନରେ ଦ୍ରାକ୍ଷାଫଳ ନ ପାଇବା ଲୋଡ଼ି ।
ଏ ବନ ଗୋଟିକ ଅଟେ ଶତେକ ଯୋଜନ
ଏ ବୃକ୍ଷମାନଙ୍କୁ ଦେଖ ସର୍ବେ ଫଳଶୂନ୍ୟ ।
କ୍ଷୀର ଅଣାଇ ଦ୍ୟନ୍ତି ବା ପାଶେ ନାହିଁ ଗ୍ରାମ
ତ୍ରେତୟା ଯୁଗରେ ଆସି ଏଥେଁ ଥିଲେ ରାମ ।
ଜୀବ ଜନ୍ତୁ ନ ଦେଖିଲେ ଏହି ଅରଣ୍ୟରେ
ଫଳପୁଷ୍ପ ନ ପାଇଲେ ଆହ୍ନିକ କାଳରେ ।
ଶ୍ରୀରାମ ବୋଇଲେ ଏହୁ ରାବଣର ବନ
ଆମ୍ଭଙ୍କୁ ଦେଖି ସକଳେ ହୋଇଲେ ଗୋପନ ।
ତେଣୁ କୋପରେ ଶ୍ରୀରାମ ଦେଲେ ଅଭିଶାପ
ନ ଫଳ ଯାବତ ଥାଅ ସକଳ ପାଦପ ।
ବନଜୀବ ହୋଇ ଏଥେ ଗୋଟିଏ ନ ଥାଅ
ମୋର ଶାପେ ଯେ ଆସିବ ଭସ୍ମ ହୋଇଯାଅ
ସେ ହେତୁ ଖାଦ୍ୟପଦାର୍ଥ ସବୁ ଏଥେଁ ଶୂନ୍ୟ
କି ଦେଇ ତୁଷ୍ଟ କରିବି ଆପଣଙ୍କ ମନ ।
ଯେବେ ସତ୍ୟ ଖାଇବାକୁ ଦେବୁ ତୁହି ମୋତେ
ତେବେ ମୁହିଁ କହୁଅଛି ତୋହର ଅଗ୍ରତେ ।
ଅନ୍ୟ ଖାଦ୍ୟ ପଦାର୍ଥରେ ମୋର ମନ ନାହିଁ
ଏକଗୋଟି ଫଳେ ମୋର ଚିତ୍ତ ଥାଏ ରହି ।
ଏ ସମୟେ ଦେବୁ ଯେବେ ପକ୍ୱ ଚୂତଫଳ
ତାହା ହେଲେ ସୁଖେ ଆମ୍ଭେ କରିବୁ କବଳ ।

ଯୁଧିଷ୍ଠି ଆଶ୍ଚର୍ଯ୍ୟ ହେଲେ ସେହିକଥା ଶୁଣି
କହିଲ ଦୁର୍ଲ୍ଲଭ କଥା ଆହେ ମୁନିମଣି ।
ଶ୍ରୀରାମନ୍ଦ୍ରଙ୍କ ଶାପେ ନ ଫଳନ୍ତି ବୃକ୍ଷେ
ଆକାଶ ପର୍ଯ୍ୟନ୍ତ ଦେଖ ଲାଗିଅଛି ଶିଖେ ।
ତପୋଧନ ବୋଲେ ମୁହିଁ କ୍ଷୁଧାରେ ବିକଳ
ଅନ୍ନ ଭୋଜନ ଯେ ମୋର ନାହିଁ ସର୍ବକାଳ ।
ଯୁଧିଷ୍ଠିଦେବ ବୋଇଲେ ସନ୍ଧି ହେଲା ଆସି
ବଡ଼ କଷଣ ପଡ଼ିଲା ମୋତେ ହୃଷୀକେଶି ।
ଏହାଶୁଣି ଭୀମାର୍ଜ୍ଜୁନ ମାଦ୍ରୀ ବେନିସୁତ
ସେ ବନ ଭ୍ରମଣ କରି ଖୋଜିଲେକ ଚୂତ ।
ଖୋଜନ୍ତେ ଦିବସ ଶେଷ ହୋଇଲା ଯୁକତେ
ରଜନୀ ପ୍ରବେଶ ହେଲା ବନରେ ବୁଲନ୍ତେ ।
ଶତେକ ଯୋଜନ ବନ ନ ପାଇଲେ ଲୋଡ଼ି
ନିରାଶେ ଧର୍ମ ପାଶକୁ ଅଇଲେ ବାହୁଡ଼ି ।
ଗୋବିନ୍ଦ ବୋଇଲେ ସ୍ୱାମୀ ବିଷାଦ କିମର୍ଥେ
ଭାଦ୍ରମାସେ ଚୂତଫଳ ମିଳିବ କେମନ୍ତେ ।
ଏକମାତ୍ର ଯହିଁ ଅଛି ହିଡ଼ିମ୍ବକ ବନେ
ଏକାଦଶ ମାସ ଆମ୍ବ ମିଳେ ସେହି ସ୍ଥାନେ ।
ଅକାଳ ଫଳକୁ ରତ୍ନ କେଭେ ନୁହେ ସରି
ଅବସନ୍ତରେ ବସନ୍ତ ପାଇବ କିପରି ।
ମହତ ଲୋକଙ୍କୁ ଧର୍ମ କଷଣ ଦିଅଇ
ଏଥୁ ଉବୁରିଲେ ଜାଣ ଧାର୍ମିକ ବୋଲାଇ ।
ଆମ୍ବ ନ ପାଇବା ଦେବ ଏକାଳେ ବନସ୍ତେ
ସତ୍ୟଆମ୍ବ ଫଳାଇବା ଆମ୍ଭେ ରହି ଏଥେ ।
ଆମ୍ଭର ବୁଦ୍ଧିରେ ଆମ୍ବ ନିଶ୍ଚୟ ଫଳିବ
ସତ୍ୟଆମ୍ବ ଖାଇ ବିପ୍ର ସୁଖେ ଏଥୁ ଯିବ ।
ତୁମ୍ଭେ ପାଞ୍ଚ ସହୋଦର ଆବର ଦ୍ରୌପଦୀ
ସତ୍ୟ କହିବ ଛାଡ଼ିବ ଅସତ୍ୟକୁ ଯଦି ।
ପାଣ୍ଡବମାନଙ୍କୁ କୃଷ୍ଣ କହିଣ ଏସନ
ବ୍ୟାସଙ୍କୁ କହିଲେ ପୁଣି ଦେବକୀ ନନ୍ଦନ ।
ଚୂତଫଳ ବୀଜ ଏକ ପାଣ୍ଡବଙ୍କୁ ଦିଅ
କୃଷ୍ଣବାକ୍ୟ ଶୁଣି ତହୁଁ ପରାଶର ପୁଅ ।
ଖୋଜି ଆଣି ଆମ୍ବବୀଜ ଦ୍ୟନ୍ତେ ତପୋଧନ
ତାହାକୁ ଶ୍ରୀକୃଷ୍ଣ ନେଇ ପୋତିଲେ ତକ୍ଷଣ ।
ପୋତିସାରି ଯୁଧିଷ୍ଠିଙ୍କୁ କହନ୍ତି ବଚନ
ସତ୍ୟବାକ୍ୟ ଉଚ୍ଚାରଣ କର ଧର୍ମରାଣ ।
କିଞ୍ଚିତ ମିଥ୍ୟା ନ କହ ଫଳୁ ଚୂତବୃକ୍ଷେ
ସତ୍ୟର ମହିମା ସର୍ବେ ଦେଖନ୍ତୁ ପ୍ରତ୍ୟକ୍ଷେ ।
ଯୁଧିଷ୍ଠିଦେବ ବୋଇଲେ ମୋହର ପ୍ରକୃତି
ପ୍ରାଣତ୍ୟାଗ ପରିଯନ୍ତେ ନୋହିବ ଅନୀତି ।

ଯେବଣ କଥା ଉଦୟ ହୁଏ ମୋର ମନେ
ସତ୍ୟଛଡ଼ା ମିଥ୍ୟା କେଭେ ନ କହେ ବଚନେ ।
ସର୍ବ ପରିତ୍ୟାଗ କଲି ମୋର ସତ୍ୟବାକ୍ୟେ
ରାଗ ମୋହ ହିଂସାଲୋଭ ନାହିଁ ମୋର ପାଖେ
ମାତା କୁନ୍ତୀଦେବୀ ପିତା ଧରମ ଦେବତା
ହେ କୃଷ୍ଣ ମାନଇଁ ମୁହିଁ ତୁମ୍ଭଙ୍କୁ ସର୍ବଥା ।
ନିଜ ରାଜ୍ୟର ନିମନ୍ତେ କରିବି ମୁଁ ଦ୍ୱନ୍ଦ୍ୱ
ଏ ସତ୍ୟବଚନ ମୋର କହିଲି ଗୋବିନ୍ଦ ।
ଯୁଧିଷ୍ଠି ବୋଇଲେ ଯେବେ ମୋର କଥା ସତ
ତେବେ ଗଜା ଫୁଟି ଗଛ ହେଉ ଅଙ୍କୁରିତ ।
ଯୁଧିଷ୍ଠି କହିଲେ ଯହୁଁ ଏପରି ବଚନ
ଟାକୁଆ ଫାଟିଣ ଗଜା ହୋଇଲା ତକ୍ଷଣ ।
ମନ୍ଦାର ପୁଷ୍ପପରାୟେ ତା ପତ୍ର ବିକଶି
ଦେଖିଣ ଆଶ୍ଚର୍ଯ୍ୟ ହେଲେ ତହିଁ ସର୍ବଋଷି ।
ତହୁଁ ଶ୍ରୀକୃଷ୍ଣ ବୋଇଲେ ଶୁଣ ବୃକୋଦର
ଏହିପରି ସତ୍ୟବାକ୍ୟ ତୁ ପ୍ରକାଶ କର ।
ଅଳପ କଥାରେ ତୋର ଯେବେ ମିଥ୍ୟାଥିବ
ଏହି ଅଙ୍କୁରିତ ବୃକ୍ଷ ଭସ୍ମ ହୋଇଯିବ ।
ଭୀମସେନ ବୋଇଲା ମୁଁ କହୁଅଛି ସତ୍ୟ
ଭୋଜନ ଶୃଙ୍ଗାରେ ମୁହିଁ ନୁହଇ ତୃପତ ।
ଯଦ୍ୟପି ଠାକୁର ତୁହି ବୋଲାଉ ଶ୍ରୀପତି
ସମୟେ ହୋଇପାରିବ ତୋଠାରେ ଅପ୍ରୀତି ।
ସ୍ୱାମୀ ଗାନ୍ଧାରୀ ଦେବୀଙ୍କ ଛନ୍ତି ଯେତେ ପୁତ୍ର
ଏମାନଙ୍କୁ ବଧିବି ମୁଁ ଏ ମୋହର ସତ୍ୟ ।
ଯୁଧିଷ୍ଠିଙ୍କୁ ଅପମାନ ମୋହର ନାମକୁ
ଆଉ ଯେ ନିନ୍ଦା କରିବ ମୋହର ଗଦାକୁ ।
ଭୁବଲୋକ ସ୍ୱର୍ଗଲୋକ ନାଗଲୋକ ଆଦି
ଯେ ନିନ୍ଦିବ ତାର ଶିର ପକାଇବି ଛେଦି ।
ଏପରି କହିଲା ଯହୁଁ ପବନର ବାଳ
ବୃକ୍ଷାଳେ ବଢ଼ି ଯେ ବୃକ୍ଷ ମେଲେ ଚାରିଡ଼ାଳ ।
ଦେଖି ଆନନ୍ଦ ହୋଇଲେ ଦେବ ଶିରୀବତ୍ସି
ପଲ୍ଲବ ହୋଇଣ ଚୂତବୃକ୍ଷ ହୋଇଅଛି ।
ପୁଣି ହରଷେ ବୋଇଲେ ଦେବ ଚକ୍ରଧର
ହେ ପାର୍ଥ ତୋ ସତ୍ୟବାକ୍ୟ ତୁ ପ୍ରକାଶ କର ।
ଅର୍ଜ୍ଜୁନ ବୋଇଲା ଶୁଣ ମୋର ସତ୍ୟବାଣୀ
ଦେବ ନର ନାଗ ମୁହିଁ ସବୁ ପାରେ ଜିଣି ।
ସର୍ବଦା ଭକତି ଥାଏ ତୁମ୍ଭ ପଦ୍ମପାଦେ
ଆପଣଙ୍କ ନିନ୍ଦାମୁହିଁ ନ ସହଇ ହାଦେ ।
ଗାଣ୍ଡୀବ ଧନୁଟି ପ୍ରଭୁ ମୋ ହସ୍ତରେ ଥିଲେ
ଏକାଦଶ ରୁଦ୍ର ହେଲେ ଜିଣିପାରେ ହେଲେ ।

ତବନାମ ଗାଣ୍ଡୀବକୁ ଅକ୍ଷୟ ତୂଣକୁ
ପାଶୁପତ ଯେ ନିନ୍ଦଇ ମାରିବି ତାହାକୁ ।
ପର ସ୍ତ୍ରୀ ହରଣ ମୁଁ ନ କରେ କଦାଚିତେ
ପରଧନେ ନ ବଳାଏ ଆଶା ତିଳେମାତ୍ରେ ।
ପରର ଭୂମି ନ ହରେ ପରର ଶତ୍ରୁକୁ
ନ ମାରଇ ରକ୍ଷା କରେ ଶରଣ ଜନଙ୍କୁ ।
ଶତ୍ରୁପଛେ ହେଉ ତାକୁ ନ ମାରେ ନିର୍ଦ୍ଦୋଷେ
ଏହା ମୁଁ ସତ୍ୟ କହିଲି ପ୍ରଭୁ ତବ ପାଶେ ।
ଅର୍ଜ୍ଜୁନ ଏମନ୍ତ ସତ୍ୟ ଯହୁଁ ପ୍ରକାଶିଲା
ସେ ବୃକ୍ଷ ଚାରିଡାଳରେ ବଉଳ ଧଇଲା ।
ନକୁଳ ବଦନ ଚାହିଁ ପ୍ରଭୁ ଭଗବାନ
ବୋଇଲେ ପ୍ରକାଶ ତୁହି ତୋ ସତ୍ୟ ବଚନ ।
ନକୁଳ ବୋଲେ ମୋ ହସ୍ତେ ଧରିଥିଲେ କୁନ୍ତ
ପୃଥିବୀ ମଧରେ ମୁହିଁ ଅଟେ ସାମରଥ ।
ଚନ୍ଦନ ଯେ ଚତୁଃସମ ଅଗୁରୁ କସ୍ତୁରୀ
ସର୍ବଦା ଲେପନ ଚାହେଁ ଶରୀରେ ମୋହରି ।
ଆହାରେ ବିହାରେ ବେଶି ନ ଥାଏ ମୋ ଇଚ୍ଛା
ସୁଖଭୋଗ ସମ୍ପଦକୁ ସଦା ମୋର ବାଞ୍ଛା ।
ଯେ ମୋର ଶରଣ ନେବ ଆହେ ଦେବହରି
ତା ଛଳେ ଉପ୍ରୋଧ ଭ୍ରାତେ ନାହିଁ ନା ମୋହରି
ପୃଥ୍ୱୀ ଆପ ତେଜ ବାୟୁ ଆବର ଆକାଶ
ଏହାଙ୍କୁ ମୁଁ ଧରିପାରେ ମିଥ୍ୟା ନାହିଁ ଲେଶ ।
ଏସନକ ସତ୍ୟବାକ୍ୟ ଅଟଇ ମୋହରି
ତୋ ଆଗେ ସତ୍ୟ କହିଲି ଆହେ ଦେବ ହରି
ନକୁଳ ଯହୁଁ କହିଲା ଏ ସତ୍ୟ ବଚନ
ବଉଳେ ପାଞ୍ଚଟି କଷି ଧଇଲା ବହନ ।
ସହଦେବଙ୍କୁ କହିଲେ ପ୍ରଭୁ ଯଦୁନାଥ
ଆହେ ମନ୍ତ୍ରୀବର କହ ତୋର ଯାହା ସତ୍ୟ ।
ନାରାୟଣଙ୍କ ବଚନେ ବୋଲେ ସହଦେବ
ଭୂତ ଭବିଷ୍ୟତ ବର୍ତ୍ତମାନ ଜାଣେ ସର୍ବ ।
ମୋହର ଦକ୍ଷିଣ କରେ ଅଛି ଗୁଣନିଧି
ତାହାକୁ ଚାହିଁବାମାତ୍ରେ ପ୍ରସରଇ ବୁଦ୍ଧି ।
ଯାବତ ଚନ୍ଦ୍ରତପନ ଗ୍ରହଆଦି କରି
ଆଦ୍ୟନ୍ତ କହିବି ଶକ୍ତି ଅଛଇ ମୋହରି ।
ଜାଣି ନ କହଇ ମୋର ମନ୍ଦ ଅଭିପ୍ରାୟ
ମୋତେ ପୁଚ୍ଛିଲେ ନ ପଡ଼େ କଦା ଅପଚୟ ।
ଯେବଣ ପଦାର୍ଥ ହେବ ଉତ୍ତମେ ପ୍ରାପତ
ସେମାନଙ୍କ ତତ୍ତ୍ୱ ମୁହିଁ ଜାଣଇ ସମସ୍ତ ।
ସକଳ ବିଦ୍ୟା ଅଛଇ ମୋର ହୃଦଗତେ
ନ ପଢ଼ି ପଣ୍ଡିତ ମୁହିଁ ହେଲି ବିଜ୍ଞବନ୍ତେ ।
ସହଦେବ ଏହିପରି କହୁଁ ସତ୍ୟବାଣୀ
ପାଞ୍ଚୋଟି ଆମ୍ବ ପୋଖତ ହେଲା ସେହିକ୍ଷଣି ।
ଗୋବିନ୍ଦ ବୋଇଲେ ତହୁଁ ଶୁଣ ଗୋ ପାଞ୍ଚାଳି
ପାଣ୍ଡବଙ୍କ ଗରୁହଂସ କହ ସତ୍ୟ ଭାଳି ।
ସତ୍ୟ ସତ୍ୟ କରି ତୋର କହ ସତ୍ୟ କଥା
ସ୍ତିରୀଙ୍କ ଚରିତ୍ରେ ଥାଏ ବହୁତର ମିଥ୍ୟା ।
ଏଠାରେ କହିବୁ ତୋର ଉଚିତ ତୋହର
ତୁମ୍ଭର ସତ୍ୟ ସଂସାରେ ହୋଇବ ପ୍ରଚାର ।
ତୁ ଅନାଦି ମାହେଶ୍ୱରୀ ଅନାଦି ଅପର୍ଣ୍ଣା
ଅବତରିଛୁ ଅବନୀଭାର ଖଣ୍ଡି ସିନା ।
ଦ୍ରୌପଦୀ ବୋଲେ ସ୍ତିରୀଙ୍କ ଏମନ୍ତ ପ୍ରକୃତି
ସୁନ୍ଦର ପୁରୁଷ ଦେଖି ବଳାବନ୍ତି ମତି ।
ଯୁକତରେ ଛନ୍ତି ମୋର ଏହି ପାଞ୍ଚପତି
ଅର୍ଜ୍ଜୁନଠାରେ ମୋହର ବେଶି ଥାଏ ମତି ।
ଯଦ୍ୟପି ମୋହର ପତି ଛନ୍ତି ପାଞ୍ଚଜଣ
କର୍ଣ୍ଣ ସୌନ୍ଦର୍ଯ୍ୟରେ ମୋର ଭୁଲିଯାଏ ମନ ।
କୌରବ ସଭାରେ ମୋତେ କଲେ ବିବସନ
କେଶ ଧରି ଆଣିଲା ଯେ ଦୁଷ୍ଟ ଦୁଃଶାସନ ।
ଆଣନ୍ତେ ଚରଣ ମୋର ନ ଲାଗଇ ତଳ
ଆକର୍ଷି ଝିଙ୍କନ୍ତେ ମୋର ଫିଟିଗଲା ବାଳ ।
ସେହିଦିନୁ କେଶ ମୁହିଁ ନ କଲି ବନ୍ଧନ
ଉପାଡ଼ିବେ ସେ ଦୁଃଶାର ଭୁଜ ଭୀମସେନ ।
ତା ଭୁଜ ରୁଧିର ମୁହିଁ ଶିରେ ନିଉଡ଼ିବି
ତେବେ ଏ କେଶ ମୋହର ବନ୍ଧନ କରିବି ।
ଧୃତରାଷ୍ଟ୍ର ଶତପୁତ୍ର ମୋ ଯୋଗେ ମରିବେ
ନିଶ୍ଚୟ ତାହାକୁ ବଧ କରିବେ ପାଣ୍ଡବେ ।
ସତ୍ୟ କହିଲି ମୁଁ ମିଥ୍ୟା ନୁହଇ ଭୋ ଦେବ
ଏ ମୋର ଆତ୍ମାରେ ବିଚାରଇ ବାସୁଦେବ ।
ଏମନ୍ତ ସତ୍ୟ ବଚନ କହନ୍ତେ ପାଞ୍ଚାଳୀ
ପାଚିଲା ପାଞ୍ଚଟି ଆମ୍ବ ଦେଖି ବନମାଳୀ ।
ମନ ମଧରେ ଅତ୍ୟନ୍ତ ହରଷିତ ହେଲେ
ଋଷିଏ ଦେଖି ପାଣ୍ଡବେ ବହୁ ପ୍ରଶଂସିଲେ ।
ସେ ଆମ୍ବ ତୋଳିବା ପାଇଁ ଗଲେ ନାରାୟଣ
ବୃକ୍ଷକୁ ହସ୍ତ ବଢ଼ାଇ ତୋଳିଲେ ବହନ ।
ପ୍ରଥମ ଗୋଟିକ ପ୍ରଭୁ ଆପଣେ ରଖିଲେ
ଦ୍ୱିତୀୟ ଆମ୍ବ ଗୋଟିକ ଇନ୍ଦ୍ରକୁ ସେ ଦେଲେ ।
ତୃତୀୟ ଆମ୍ବଟି ଦେଲେ ଋଷିମଣ୍ଡଳକୁ
ଚତୁର୍ଥ ଗୋଟିକୁ ନେଇ ଦେଲେ ପାଣ୍ଡବକୁ ।
ପଞ୍ଚମ ଆମ୍ବଟି ଦେଲେ ଗୌରମୋକ୍ଷ କରେ
ପାଇ ଅତ୍ୟନ୍ତ ଆନନ୍ଦ ସେ ଦ୍ୱିଜ ମନରେ ।

ସେ ସତ୍ୟଆମ୍ବଟି କରେ ଧରି ତପୋଧନ
ଯୁଧିଷ୍ଠିଙ୍କୁ ପ୍ରଶଂସିଲେ କହି ଧନ୍ୟ ଧନ୍ୟ ।
ସତ୍ୟରେ ଭାଦ୍ରବ ମାସେ ପାଚେ ଚୂତଫଳ
ଦୁସ୍ତର ମହିମା ଦେଖା ନାହିଁ ରବିତଳ ।
ପରମକଲ୍ୟାଣ ତୋତେ ହେଉ ପଣ୍ଡୁସୁତ
ଯେ ମନୋବାଞ୍ଛା ତୋହର ହେଉ ପରାପତ ।
ବିନୟଭାବ ହୋଇଣ ବୋଲନ୍ତି ଯୁଧିଷ୍ଠି
ଭୁଞ୍ଜନ୍ତୁ ମହାତ୍ମା ଏହି ପକ୍ୱଫଳ ଗୋଟି ।
ଯୁଧିଷ୍ଠିଙ୍କୁ ବୋଇଲା ସେ ଛଦ୍ମମ ତପସ୍ୱୀ
ନିତ୍ୟକର୍ମ ସାରି ଆମ୍ବ ଖାଇବାକ ବସି ।
ନଦୀକୂଳେ ଏହା ମୁହିଁ କରିବି ଭୋଜନ
ଭୋଜନବେଳେ ନ ଚାହିଁ କାହାରି ବଦନ ।
ଯୁଧିଷ୍ଠିଦେବ ବୋଇଲେ ଯେ ତୁମ୍ଭର ଇଚ୍ଛା
ତୃପତି ହୋଇଲେ ମୋର ପୂର୍ଣ୍ଣ ମନୋବାଞ୍ଛା ।
ବହୁତ କଲ୍ୟାଣ ତାଙ୍କୁ କରି ତପୋଧନ
ପଶିଲେ ମହାତ୍ମା ଏକ ଗହନ କାନନ ।
ବିଚାରିଲେ ଏହା ନେଇ ଦେବି ଧୃତରାଷ୍ଟ୍ରି
ଯତନ କରି ରଖିଲେ ସେହି ଆମ୍ବଗୋଟି ।
ଚଳିଯାଏ ବିପ୍ର ବେଗେ ହୋଇ ହର୍ଷଭାବ
ତାହାର କପଟ ଜାଣି ନାହାନ୍ତି ପାଣ୍ଡବ ।
ଶ୍ରୀବାସୁଦେବ ସେ ସହଦେବଙ୍କୁ ପୁଚ୍ଛନ୍ତି
ସତ୍ୟଆମ୍ବ ଘେନି ତପୋଧନ ଯାଉଛନ୍ତି ।
କେବଣ ସେ ଦ୍ୱିଜ ତାଙ୍କୁ ଚିହ୍ନିଲୁ କି ତୁହି
କରପତ୍ର ଯୋଡ଼ିକରି ମନ୍ତ୍ରୀବର କହି ।
ସହଦେବ ବୋଲେ ଯେଉଁ ବିପ୍ର ପୁରଞ୍ଜନ
ଜତୁଘର କରିଥିଲେ କପଟେ ନିର୍ମାଣ ।
ତାହାର ପୁତ୍ର ଏ ଅଟେ ଗୌର ମୋକ୍ଷ ଦ୍ୱିଜ
ଆମ୍ବ ଅନ୍ୱେଷଣେ ପେଷିଥିଲା କୁରୁରାଜ ।
ଛଦ୍ମମେ ତପସ୍ୱୀ ବେଶ କରିଣ ଧାରଣ
ଆମ୍ବ ପାଶେ ଆସିଥିଲା ଜାଣ ନାରାୟଣ ।
ସେ ଆମ୍ବନେଇଣ ରାଜାଦୁର୍ଯ୍ୟୋଧନେ ଦେବ
ଦେଖିକରି କୁରୁପତି ବିଶ୍ୱାସ କରିବ ।
ଏମନ୍ତ ମାୟା କରିଣ ଆସିଥିଲା ସେହି
ମୋତେ ପୁଚ୍ଛ ଆପଣ କି ତାହା ଜାଣ ନାହିଁ ।
ଯୁଧିଷ୍ଠିରଙ୍କୁ କହିଲେ ଦେବ ଚକ୍ରପାଣି
ଭୀମ ଯାଉ ଦ୍ୱିଜଠାରୁ ସତ୍ୟଆମ୍ବ ଆଣି ।
ଯୁଧିଷ୍ଠି ବୋଇଲେ ଦେବେ ସତ୍ୟେ ଦେଲି ଯାହା
ଧର୍ମ ନାଶଯିବ କେହ୍ନେ ଘେନିବି ମୁଁ ତାହା
ଏ ସମୟେ ଯୁଧିଷ୍ଠିଙ୍କୁ ବୋଇଲେ ଶ୍ରୀବତ୍ସ
ସ୍ୱାମୀ ଦ୍ୱାରକାକୁ ଏବେ ମୁହିଁ ଯାଉଅଛି ।
ଅଜ୍ଞାତବାସ ଗୋପନ ହୋଇବାର ବେଳେ
ମୋତେ ସ୍ମରଣ କରିବ ତୁମ୍ଭେ ତେତେବେଳେ
ଯୁଧିଷ୍ଠି ବୋଇଲେ ତୋତେ ଲାଗଇ ମୋ ଚିନ୍ତା
ହୃଦଗତେ ବୁଝୁଥିବୁ ମୋହର ବାରତା ।
ବିଦାୟ ମାଗି କେଶବ ବହନ ଚଳିଲେ
ଗରୁଡ଼ ବାହନେ ବସି ଆକାଶେ ଉଠିଲେ ।
ମନେ ବିଚାର କରନ୍ତି ଦେବକୀ କୁମର
ସତ୍ୟ ଆମ୍ବ ଘେନିଗଲା କୂଟେ ଦ୍ୱିଜବର ।
ଗନ୍ଧନଦୀ ତୀରେ ତୀରେ ଚଳେ ଦ୍ୱିଜବର
ଆକାଶେ ରହି ଦେଖିଲେ ଦେବ ଚକ୍ରଧର ।
ଗରୁଡ଼େ ବୋଇଲେ ତୁ ଥା ଏହି ପରବତେ
ଆମ୍ଭେ ସେ ଆମ୍ବ ହରିବୁ ତାଠାରୁ ଗୁପତେ ।
ଗରୁଡ଼ ସ୍କନ୍ଧୁ ଉତୁରି ଦେବ ଦଇତ୍ୟାରି
ବ୍ରାହ୍ମଣ ରୂପ ଧରିଣ ଗଲେ ଆଗସରି ।
ସନ୍ଧ୍ୟା କରୁଅଛି ସେହି ଗନ୍ଧବତୀ କୂଳେ
ଗୋବିନ୍ଦ ମିଳିଲେ ଯାଇ ତାହାର ଛାମୁରେ ।
ବ୍ରାହ୍ମଣ ପଚାରେ କେଉଁ ବେଦୀ ତୁମ୍ଭେ ଦ୍ୱିଜ
ଯଜୁର୍ବେଦୀ ଆମ୍ଭେ ବୋଲୁଛନ୍ତି ଦେବରାଜ ।
ଅପୂର୍ବ ପଦାର୍ଥ ନୃପତିକୁ ଦେବି ନେଇ
ଭକ୍ଷିଲେ ଅମର ହେବ ସତ୍ୟ ଆମ୍ବ ସେହି ।
କେସନେକ ଆମ୍ବ ଆମ୍ଭେ କରିବା ହରଣ
ଯାଆନ୍ତି ଗନ୍ଧର୍ବ ନଦୀତୀରେ ନାରାୟଣ ।
ଗନ୍ଧର୍ବନଦୀ ତୀରେଣ ଯାନ୍ତେ ଦ୍ୱିଜବର
ପ୍ରବେଶ ହେଲେ ସେଠାରେ ଦେବଚକ୍ରଧର ।
ଧୋତି ପିଢ଼ା ଗଡୁ ଥୋଇକରି ନଦୀକୂଳେ
କରନ୍ତି ସେ କରନ୍ୟାସ କର୍ମ ସେହି ସ୍ଥଳେ ।
ଷଟକର୍ମ ବ୍ରାହ୍ମଣ ଯେ କରେ ତାହା କର୍ମ
ଧୋତି ପିଢ଼ା ଲାଗିକରି କରେ ସର୍ବଧର୍ମ ।
ଛିଡ଼ା ହୋଇକରି ଧୋତି ପିନ୍ଧିବାର ବେଳେ
ଦେଖିଲେ ପଡ଼ିଲା ଆମ୍ବଗୋଟି ଦେବ ତଳେ ।
ଗୋବିନ୍ଦ ବୋଇଲେ ପଣ୍ଡା ଏ ବଡ଼ ଅପୂର୍ବ
ଅକାଳେ କାହୁଁ ପାଇଲ ତୁମ୍ଭେ ଏହି ଆମ୍ବ ।
ଗୌରମୋକ୍ଷ ବୋଲେ ମୁହିଁ ଭ୍ରମୁ ବନଦେଶ
ଅସ୍କନ୍ଦବନେ ଭେଟିଲେ ପଣ୍ଡୁ ପଞ୍ଚଶିଷ୍ୟ ।
ବଡ଼ ଧାର୍ମିକ ଅଟନ୍ତି ସେହି ପାଞ୍ଚଭାଇ
ସତ୍ୟବାକ୍ୟ କହି ସେହୁ ଏ ଆମ୍ବ ଫଳାଇ ।
ଗୋବିନ୍ଦ ବୋଇଲେ ଏହୁ ଅପୂର୍ବ ପଦାର୍ଥ
ନ ଭୁଞ୍ଜି ଏହା କିପାଇଁ କରିଛ ଗୁପତ ।
ଅପୂର୍ବ ବସ୍ତୁ ପାଇଲେ ତତକ୍ଷଣ ଭୁଞ୍ଜି
ଅଣଉପ୍ରୋଧ ଅଟଇ ନାଶକର ପାଞ୍ଜି ।

ପାଇଲେକ ଖାଇ ତେବେ ହୁଏ ବଡ଼ ହିତ
ବିଳମ୍ବ କରିଲେ ତାହା ହୁଏ ଅପ୍ରାପତ ।
ପ୍ରାପତ ମାତ୍ରେ ବହନ ଏହାକୁ ନ ଭୁଞ୍ଜି
କିପାଁ ରଖିଅଛ ଦ୍ୱିଜ କେଉଁକଥା ହେଜି ।
ପାଇବା ପକ୍ୱଫଳକୁ ତତ୍‌କ୍ଷଣେ ଭୁଞ୍ଜିବ
ଶାସ୍ତ୍ର କହେ କେବେ କାଳକ୍ଷେପ ନ କରିବ ।
ଗୌରମୋକ୍ଷ ବୋଲେ ବହୁ ଅପୂର୍ବ ପଦାର୍ଥ
ଏହା ମୁଁ ଦେବି ନେଇଣ ଦୁର୍ଯ୍ୟୋଧନ ହସ୍ତ ।
କାଲି ପହଞ୍ଚିବି ଇନ୍ଦ୍ରପ୍ରସ୍ଥ ରାଜସ୍ଥାନେ
ଏହା ଦେଖାଇବି ନେଇ ବିଦ୍ୱଜ୍ଜନମାନେ ।
ପାଇବି ଯେ ପଉରୁଷ ବହୁ ଧନ ରତ୍ନ
ତେଣୁ ଏହା ନେଉଅଛି କରି ଅତି ଯତ୍ନ ।
ଗୋବିନ୍ଦ ବୋଇଲେ ପଣ୍ଡା ହୋଇଲ କି ବାଇ
ଭାଦ୍ରବ ମାସରେ ଚୂତଫଳ କି ମିଳଇ ।
ଭଲ ଅପୂର୍ବ ପଦାର୍ଥ ଏହି ଦ୍ୱିଜବର
କର ବଢ଼ାଇଲେ ଦେଖେବୋଲି ଦାମୋଦର
କର ପ୍ରସାରିଣ ଦେବ ନେଲେ ଆମ୍ବଗୋଟି
ସତ୍ୟ ନୁହଇ ପଣ୍ଡାଏ ମାୟାଫଳ ଏଟି ।
ପ୍ରତ୍ୟକ୍ଷେ ବୋଇଲା ଦ୍ୱିଜବର ଏହୁ ଆମ୍ବ
କିପରି ହେ ନାସ୍ତି ତୁମ୍ଭେ କର ବିପ୍ରଦେବ ।
ଗୋବିନ୍ଦ ବୋଇଲେ ଏହୁ ଅଦିନେ ଫଳଇ
ମାୟା ବୋଲି ଜାଣିଲି ମୁଁ ଦେବକୂଟ ଏହି ।
ସତ୍ୟ କହିଲେ କାହିଁ ଯେ ଆମ୍ବ ଜାତ ହୋଇ
ତେଣୁ ମାୟାବୋଲିକରି କହିଲି ଯାକୁହିଁ ।
ଦ୍ୱିଜ ବୋଇଲେ ବଚନ ହୋଇଅଛି ଦତ୍ତ
ସତ୍ୟ କହନ୍ତେ ଏହାଙ୍କ ଆମ୍ବ ହୁଏ ଜାତ ।
ଗୋବିନ୍ଦ ବୋଇଲେ ଦେଖ୍ ଆମ୍ଭେ କହୁଁ ସତ୍ୟ
ଶୁଣ ଆମ୍ଭ କଥା ତୁମ୍ଭେ ପଣ୍ଡିତ ମହତ ।
ହେ ପଣ୍ଡା ଦେଖିଲି ଜଳେ ପଥର ଭାସୁଛି
ସେ ଜଳରେ ସୋଲାଭେଳା ପୁଣି ବୁଡୁଅଛି ।
ପୁରୁଷକୁ ଜୟ କଲା ସ୍ତିରୀମାତ୍ର ହୋଇ
ପୁରୁଷ ଗୋଟିଏ ଶିଶୁ ପ୍ରସବ କରଇ ।
ବୃଷଭଠାରୁ କ୍ଷୀର ଦୋହନ ହେଉଅଛି
ପର୍ବତ ଉପରେ ପୁଣି ପଦ୍ମ ଫୁଟିଅଛି ।
ସେ ପୁଷ୍ପ ବାସନା ନାହିଁ ନାହିଁ ତାର ତେଜ
କାହିଁଶ ଫୁଲକୁ ଯାଇ ଚୁମ୍ଭେ ଭୃଙ୍ଗରାଜ ।
ପଶ୍ଚିମ ଦିଗେ ଉଦୟ ହୋଇଛି ତପନ
ପୂର୍ବେ ଉଦେ ହୋଇଛନ୍ତି କାଳକେୟ ଗଣ ।
ଅନ୍ଧଟିଏ ଧାଇଁଅଛି ଯଷ୍ଟିକୁ ବୁଲାଇ
ଚକ୍ଷୁଥିଲା ଲୋକ ବୁଲେ ବାଟକୁ ନ ପାଇ ।
ଦିବସରେ ନିଶାପତି ଉଦୟ ହୋଇଛି
ଏହିପରି ଜାଣ ଦ୍ୱିଜ ମୁହିଁ ଦେଖିଅଛି ।
ଏମନ୍ତ ମାୟାରେ କହି ଚିତ୍ରକୂଟ ବୁଦ୍ଧି
ବୋଇଲେ ଏ ମିଥ୍ୟା ନୁହେଁ ମୋବାକ୍ୟ ପ୍ରସିଦ୍ଧି
ମର୍ତ୍ତ୍ୟେ ଏ ଆମ୍ବ କି ଦ୍ୱିଜ ସତେ ଫଳିଗଲା
ମିଥ୍ୟା କହନ୍ତେ ସେ ଆମ୍ବ ଭସ୍ମ ହୋଇଗଲା ।
ଗୌରମୋକ୍ଷ ବୋଲେ ମୋର ଆମ୍ବଗୋଟି କାହିଁ
କେଣେ ହରିଲ ପଣ୍ଡା ହେ ହସ୍ତେ ଦେଖୁନାହିଁ ।
ଗୋବିନ୍ଦ ବୋଇଲେ ତୁମ୍ଭେ ନିଷ୍କଳଙ୍କ ହିଆ
ବୁଝି ନ ପାରିଲ ବନଲୋକଙ୍କର ମାୟା ।
କୌରବ ସଭାରେ ଯେବେ ଏହା ଦେଇଥାନ୍ତ
ବୃଥାରେ ସେଠାରେ କେତେ ଲଜ୍ଜା ପାଇଥାନ୍ତ
ମାୟାର ପଦାର୍ଥ ଯେ ନ ରହଇ ସର୍ବଥା
ହରଣ ପଟଳ ବିଦ୍ୟା ହରେ ଜାଣ ଯଥା ।
ଯାହାର ମାୟାବଳରେ ସକଳ ନିର୍ମାଣ
ଯା ମାୟାବଳେ ସଂସାରେ ଆତଯାତ ଜନ ।
ତ୍ରୈଲୋକ୍ୟ ମୋହଇ ଯେଉଁ ପ୍ରଭୁ ରୂପଗୋଟି
ସେ ମାୟାଧର ଚରଣେ ନମେ ଶତକୋଟି ।
ତୁଳସୀବଲ୍ଲଭ ପାଦ ଚିହ୍ନ ସଦା ହୃଦେ
ଶାରଳା ଦାସ ଲେଖଇ ପରମ ସାନନ୍ଦେ ।



## ଗୋକର୍ଣ୍ଣ ତୀର୍ଥର ମାହାତ୍ମ୍ୟ

ଏଥୁ ଅନନ୍ତରେ ଶୁଣ ବିଲଙ୍କର ନାଥ
ଅଗସ୍ତି ମୁନିଙ୍କ ପାଦେ କରି ପ୍ରଣିପାତ ।
ପୁଚ୍ଛାକଲେ ଏ ଉତ୍ତାରୁ କେଉଁ କଥା ହେଲା
ହସ୍ତିନାର ଦ୍ୱିଜ ବାର୍ତ୍ତା ଦେଲା କି ନ ଦେଲା ।
ଅଗସ୍ତି କହିଲେ ଶୁଣ ମନୁ ନରପତି
ଆମ୍ବଟିକୁ ହରିନେଲେ ଯହୁଁ ରମାପତି ।
ଆମ୍ବକୁ ନ ପାଇ ବିପ୍ର ଦୁଃଖିତ ହୋଇଲା
କାନମୁଣ୍ଡା ଆଉଁଷିଣ ଧୀରେ ଧୀରେ ଗଲା ।
ଚଳିଯାଏ ଦ୍ୱିଜବର ମହା ଦୁଃଖମନେ
ପ୍ରବେଶ ହୋଇଲା ଯାଇ ହସ୍ତିନା ଭୁବନେ ।
ସଭାରେ ଦୁର୍ଯ୍ୟୋଧନାଦି ସର୍ବେ ଛନ୍ତି ବସି
ଏ ସମୟେ ଗୌରମୋକ୍ଷ ଦେଖାକଲା ଆସି
ଦୁଃଶା ବୋଲେ ପାଣ୍ଡବଙ୍କୁ ଗଲ ଖୋଜିକରି
ତୁମ୍ଭ ଯିବାର ଆଜକୁ ହେଲା ମାସ ଚାରି ।
ହେ ପଣ୍ଡା କେଉଁ ରାଜ୍ୟରେ ଅଛନ୍ତି ପାଣ୍ଡବେ
ଦେଖିଲଟିକି ସେମାନେ ଛନ୍ତି କେଉଁ ଭାବେ ।
ଗୌରମୋକ୍ଷ ବୋଲେ ଆମ୍ଭେ ବହୁଦୂର ଗଲୁ
ପଞ୍ଚାଶୋଇ ଦିନେ ଯାଇ ପାଣ୍ଡବେ ଭେଟିଲୁ ।

ଆମ୍ଭେ ଏଥୁ ଗଲୁ ଜ୍ୟେଷ୍ଠ ପଞ୍ଚମୀ ଦିନର
ପାଣ୍ଡବେ ଭେଟିଲୁ ଭାଦ୍ର କୃଷ୍ଣ ଦଶମୀର ।
ଏଣେ ପଞ୍ଚାଶୋଇ ଦିନ ଆମ୍ଭର ଯାଆନ୍ତେ
ମୋତେ ଚିହ୍ନି ନ ପାରିଲେ ପଣ୍ଡୁ ପଞ୍ଚପୁତ୍ରେ ।
ଅଠାଶୀ ସହସ୍ର ଋଷି ଅଛନ୍ତି ସଙ୍ଗର
ପୁରାଣ କହୁଅଛନ୍ତି ଯୁଧିଷ୍ଠି ଛାମୁର ।
ଗଣ୍ଡା ମାରିଣ ଋଷିଙ୍କୁ ଦିଅନ୍ତି ଭୋଜନ
କନ୍ଦମୂଳ ଖାଇବାରେ ସଦା ତାଙ୍କ ମନ ।
ଅସ୍କନ୍ଦ ନାମେ ବନରେ ଅଛନ୍ତି ପାଣ୍ଡବେ
ଆମ୍ଭଙ୍କୁ ଦେଖି ତାଙ୍କର ବହୁ ଦମ୍ଭଭାବେ ।
ଅନେକମତେ ଆମ୍ଭଙ୍କୁ ଯାଚିଲେ ସେ ରାଜ୍ୟ
ଅପାର କଷଣ ତାଙ୍କୁ ଦେଲୁ ମହାରାଜ ।
ମାଗିଲୁ କରିଣ ବହୁକଷ୍ଟ ଚୂତଫଳ
କଟାଳ କରିଲୁ ଯହୁଁ ଦେଲେ ମହୀପାଳ ।
ତେଣୁ ସତ୍ୟ କହିଲେ ଯେ ସେହି ପାଞ୍ଚବୀରେ
ଦ୍ରୌପଦୀ ମଧ କହିଲେ ତାହାଙ୍କ ସଙ୍ଗରେ ।
ସକଳେ ସତ୍ୟ କହନ୍ତେ ସେ ଆମ୍ବ ପାଚିଲା
କୁଙ୍କୁମ ବର୍ଣ୍ଣ ପରାୟେ ସୁରଙ୍ଗ ଦିଶିଲା ।
ଆମ୍ବ ଗୋଟିକ ମୋହର ହସ୍ତେ ଦେଲେ ଆଣି
ଦୁଃଶା ବୋଲେ ସେ ଆମ୍ବଟି ଦିଅ ବିପ୍ରମଣି ।
ବିପ୍ର ବୋଲେ ଆମ୍ବ ଘେନି ଆସୁଥିଲି ହସ୍ତେ
ବିପ୍ରେକ ଭେଟିଲା ବନେ ଆସି ଅଦଭୂତେ ।
ଦେଖେ ଦେଖେ କହୁଁ ବିପ୍ର ସେ ଆମ୍ବଟି ନେଲା
ହସ୍ତେ ଧରି ମିଛ କହୁଁ ଆମ୍ବ ଶୂନ୍ୟେ ଗଲା ।
ହସିଲେକ କଉରବେ ଉପହାସ କରି
ପାଣ୍ଡବେ ନ ଦେଖି ମିଛ କହିଲ କିପରି ।
ଶୁଣି ଲଜ୍ଜାଭରେ ମଥା ପୋତିଲା ବ୍ରାହ୍ମଣ
ଦୁଃଖମନେ ଚାଲିଗଲା ଆପଣା ସଦନ ।
ଏଥୁଅନ୍ତେ ମନଦେଇ ଶୁଣ ଚଇତନ
ଲଜ୍ଜା ପାଇକରି ତହୁଁ ଚଳିଲେ ବ୍ରାହ୍ମଣ ।
ଶ୍ରୀକୃଷ୍ଣ ଚଳିଲେ ବୈନତେୟ ଆରୋହିଣ
ଦ୍ୱାରକାରେ ପ୍ରବେଶିଲେ ଯାଇ ତତକ୍ଷଣ ।
ଅସ୍କନ୍ଦ ନାମେ ବନରେ ଥିଲେ ଯେ ପାଣ୍ଡବେ
ଆବର ଚଳନ୍ତି ଋଷିମାନଙ୍କ ସମ୍ଭର୍ବେ ।
ଯୁଧିଷ୍ଠି ସଙ୍ଗେ ଅଠାଶୀ ସହସ୍ର ଯେ ଋଷି
କରାନ୍ତି ନାନାତୀର୍ଥ ଯେ ପାଣ୍ଡବଙ୍କୁ ପେଷି ।
ବିଜୟ ଲୋମଶମୁନି ଗୋକର୍ଣ୍ଣ ଯେ ତୀର୍ଥେ
ଯୁଧିଷ୍ଠିଙ୍କୁ ସ୍ନାନ କରାଇବୁ ଆମ୍ଭେ ଏଥେ ।
ସତ୍ୟଯୁଗେ କଇଳାସ ଶିବ କରି ତେଜ୍ୟା
ପାତାଳ ଗଙ୍ଗାତୀରରେ ବିଜେ ଦେବରାଜା ।
ହାଟକ ନାମରେ ଅଛି ତହିଁ ଏକସ୍ଥାନ
ତହିଁ ବସି କେତେକାଳ ହର କଲେ ଧାନ ।
ବୃଷ ଶୁକ୍ଳପକ୍ଷ ତିଥି ନବମୀ ଦିନର
ବିଶାଖା ନକ୍ଷତ୍ର ଅଟେ ଆଉ ଭୌମବାର ।
କୁଶ ଲୁଚି ଏକ ହର ଆଣିଲେ ଉପାଡ଼ି
ସେ ନଦୀତୀରେ ତାହାକୁ ରଖିଲେ ସଜାଡ଼ି ।
ଆହ୍ନିକ ସନ୍ଧ୍ୟା କରନ୍ତି ଗଙ୍ଗାଜଳେ ପଶି
ଗୋମାତା ନନ୍ଦିନୀ ତହିଁ ଚରି ଚରି ଆସି ।
ଚରୁ ଚରୁ କୁଶବିଡ଼ି ଖାଇଲା ସେ ବସି
ସବୁ ଖାଇଲା ଆଉ ନ ରଖିଲାତ କିଛି ।
ଦେଖିକରି ମହାଦେବ ଧାଇଁଆସି ବେଗେ
ଶୂଳଘେନି ନନ୍ଦିନୀକୁ ପିଟିଲେ ସେ ରାଗେ ।
ଈଶ୍ୱର ପ୍ରହାରେ ଛିଡ଼ି ସୁରଭୀର ମୁଣ୍ଡ
ତତକ୍ଷଣେ ପଡ଼ିଗଲା ତଳେ ଗଣ୍ଡିଖଣ୍ଡ ।
ଈଶ୍ୱର ଦେବଙ୍କ କରେ ଥିଲା ଯେ ଖପର
ତହିଁରେ ଲାଗିଲା ଯାଇ ନନ୍ଦିନୀର ଶିର ।
ଶୂଳେ ଆଡ଼େଇ ଖପରୁ ତାହା ଦ୍ୟନ୍ତେ କାଢ଼ି
ସେହି ମୁଣ୍ଡ ଖପରରୁ ନ ଯାଏ ଯେ ଛାଡ଼ି ।
ଏରୂପେ ଗୋହତ୍ୟା ଯହୁଁ ମହେଶ କରିଲେ
ତାହାଙ୍କ ମୁଖ ଆକାଶେ କେହି ନ ଚାହିଁଲେ ।
ବ୍ରହ୍ମାଙ୍କ ମସ୍ତକ ପୁଣି ବହିଛନ୍ତି ହର
ତହିଁରେ ଲାଗିଲା ପୁଣି ଗୋମାତାର ଶିର ।
ଧାତା ମୁଣ୍ଡପରେ ପୁଣି ଗୋରୁମୁଣ୍ଡ ଲାଗି
ହତ୍ୟାଦୋଷେ ପୁଣି ହର ପାତାଳକୁ ତ୍ୟାଗି ।
ବହୁତୀର୍ଥେ ସ୍ନାନ କଲେ ନ ଛାଡ଼ିଲା ମୁଣ୍ଡ
ଯୁଧିଷ୍ଠିର ଆଗେ ଏହା କହନ୍ତି ମାର୍କଣ୍ଡ ।
ଏହି ମହାତୀର୍ଥ ନାମ ଅଟେ ବୈତରଣୀ
ସମୟେକ ଏଥେ ବିଜେ କଲେ ଶୂଳପାଣି ।
ବୈଲୋଚନ ବୀର ଥିଲା ବୈଧବର ବଂଶେ
ନଦୀ ଖାଲ ଯୋର ତାର ନ ଥିଲା ଯେ ଦେଶେ
ଶୂଳ ଘେନି ବୈଲୋଚନ ଆକାଶକୁ ଗଲା
ଜହ୍ନୁ ଋଷି ତପସ୍ଥାନେ ପରବେଶ ହେଲା ।
ବିଚାରିଲା ଏହିଠାରୁ ନେବି ଏକ ନଦୀ
କିରୂପେ ନେବି ବିଚାର କଲା ଏକ ବୁଦ୍ଧି ।
ବଳେକ ଘେନିଣ ତହୁଁ ଅଇଲାକ ଖୋଳି
ସେହି ପଥରେ ବହିଣ ଅଇଲେ ଧବଳୀ ।
ଜହ୍ନୁ ଋଷିଙ୍କ ନିକଟୁ ବୈଲୋଚନ ପୁର
ଶତେକ ଯୋଜନ ଅଟେ ସେଠାବକୁ ଦୂର ।
ରାଜା ଆଣନ୍ତେ ତାହାକୁ ଶୂଳେ ହାଣି ହାଣି
ବୈଲୋଚନ ଆଣିବାରୁ ନାମ ବୈତରଣୀ ।

ଏହି ତୀର୍ଥକୁ ସମୟେ ଆସି ତ୍ରିଲୋଚନ
ଏ ଜଳରେ ପଶି ଯହୁଁ କରିଲେ ସ୍ନାହାନ ।
ଏହି ନଦୀ ନବତାଳ ଅଟଇ ଗଭୀର
ଏଠାରେ ଛାଡ଼ିଲା ଜାଣ ଗୋମାତାର ଶିର ।
ଗୋହତ୍ୟାରୁ ମୁକ୍ତ ଏଥେ ହେଲେ ତ୍ରିଲୋଚନ
ତେଣୁକରି ତୀର୍ଥ ନାମ ହୋଇଲା ଗୋକର୍ଣ୍ଣ ।
ମାର୍କଣ୍ଡ ଋଷି କହିଲେ ଶୁଣ ଯୁଧିଷ୍ଠିର
ସହୋଦର ସହ ତୁମ୍ଭେ ଏଥେ ସ୍ନାନକର ।
ମାତୃହରଣ ଗୋହତ୍ୟା ବ୍ରହ୍ମହତ୍ୟା ଦୋଷ
ଏଥେ ସ୍ନାନକଲେ ସର୍ବ ହୋଇବ ବିନାଶ ।
ମାର୍କଣ୍ଡଙ୍କ ବଚନରେ ଦେବ ଧର୍ମନାନ
ଦ୍ରୌପଦୀ ଭ୍ରାତ ସହିତେ ତହିଁ କଲେ ସ୍ନାନ ।
ଆହେ ସାଧୁଜନେ ଯେହୁ ଏ ତୀର୍ଥର ନାମ
ସ୍ନାନକାଳେ ସୁମରିବ ଯିବ ତା ବୃଜିନ ।
ଝଙ୍କଡ଼ପୁର ବାସିନୀ ଶ୍ରୀ ଶାରଳା ଦେବୀ
ଶ୍ରୀଚରଣ ଯୁଗଳକୁ ସଦା ମୁହିଁ ଭାବି ।
ତାହାଙ୍କ କୃପାରେ ମୁହିଁ କରଇ ରଚନ
ଶାରଳା ଦାସର ଦୋଷ ସୁଜନେ ନ ଘେନ ।



## ସଚଳା ହରଣ

ଏଥୁ ଅନନ୍ତରେ ଶୁଣ ବୈବସ୍ୱତ ମନୁ
ଚିତ୍ରସେନ ଯାଉଥିଲା ଏ ମର୍ତ୍ତ୍ୟ ଭୁବନୁ ।
ଏହା ଶୁଣି ନରପତି ମୁନିଙ୍କୁ ପୁଚ୍ଛିଲା
ସେ ଚିତ୍ରସେନ ଗନ୍ଧର୍ବ ମର୍ତ୍ତ୍ୟେ କିପାଁ ଥିଲା ।
ଅଗସ୍ତି କହିଲେ ଶୁଣ ତହିଁର ଯେ କଥା
କହୁଛି ସଞ୍ଚପି ସତ୍ୟଯୁଗର ବାରତା ।
ବୈଶାଖ ଶୁକଳ ପକ୍ଷ ତୃତୀୟାର ତିଥି
ରୋହିଣୀ ନକ୍ଷତ୍ର ଅଟେ ବାର ବୃହସ୍ପତି ।
ଯୁଗାଦ୍ୟ ତିଥି ବସନ୍ତ ଯାତ୍ରା ଅନୁକୂଳେ
ଇନ୍ଦ୍ରସହ ଦେବତାଦି ବିଜୟ ସକଳେ ।
ଚୌଷଠି କୋଟି ଅମର ବିଳାସିନୀ ଶ୍ରେଣୀ
ତାଣ୍ଡବ ଭର ହରଷେ ଲାଗିଛି ଖଟଣି ।
ତିଳୋତ୍ତମାର ନନ୍ଦନ ଯେହୁ ଚିତ୍ରସେନ
ଶରବୀଣା ଘେନି ଅତିରସେ କଲା ଗାନ ।
ହରଷେ ଗାନ କରିଲା ଯହୁଁ ହୋଇ ଭୋଳ
ଇନ୍ଦ୍ରଦେବ ତାଙ୍କୁ ଦେଲେ ଖଣ୍ଡିଏ ତାମ୍ବୁଳ ।
ବିଶେଷ ଗ୍ରୀଷମ କାଳ ଆଉ ଗୀତେ ରତା
ଅଧର ଶୁଖନ୍ତେ ହେଲା ତାମ୍ବୁଳ ଭୋକତା ।
ହରଷରେ ବିଦ୍ୟାଧର ସେ ତାମ୍ବୁଳ ଭୁଞ୍ଜି
ଅତି ଉଚ୍ଚ ସ୍ୱରରେ ସେ ଗାଇଲା ଗରଜି ।
ଗହଗହ ସ୍ୱରରେ ସେ ଛାଡ଼ଇ ରାଗିଣୀ
ସୁରସିଦ୍ଧ ମୁନିମାନେ ତୋଷ ହେଲେ ଶୁଣି ।
ଗାଇବା ବନ୍ଦକରିଣ ମାତେ ନୃତ୍ୟରସେ
ପୁଣି ଗାଉଁ ମୁଖୁଁ ପିକ ପଡ଼େ ବ୍ରହ୍ମା ପାଶେ ।
ଭୟରେ ବିଦ୍ୟାଧରର ରସ ଭଗ୍ନ ହେଲା
ଅନୀତି ଦେଖି ବିଧାତା ସହି ନ ପାରିଲା ।
କୋପେ ତାହାକୁ ଅନାଇ ବୋଇଲେ ବିଧାତା
ଦେବତା ସ୍ଥାନେ ଉଚ୍ଛିଷ୍ଟ ଅମର୍ଯ୍ୟାଦା କଥା ।
ମର୍ତ୍ତ୍ୟରେ ଜନମ ହୁଅ ଶୂକର ପେଟର
ଏହି ମୁଖେ ବିଷ୍ଠା ତୁହି କରରେ ଆହାର ।
ଶୁଣି ବୋଲେ ମୁଁ ଗନ୍ଧର୍ବ ଇନ୍ଦ୍ରର ସନ୍ତତି
କିଞ୍ଚିତ ଦୋଷକୁ ଧାତା ଦେଲୁ ଏଡ଼େ ଶାସ୍ତି ।
ତୋହର ଶାପେ ଲଭିବି ମୁହିଁ ବଡ଼ ଦୁଃଖ
କାରଣ ହେବି କେମନ୍ତେ କହ ଚଉମୁଖ ।
ବ୍ରହ୍ମା ବୋଇଲେ ଶୂକର ଉଦରେ ଜନ୍ମିବୁ
ସତ୍ୟଯୁଗ ଭୋଗକରି ତ୍ରେତୟା ଭୋଗିବୁ ।
ଦ୍ୱାପର ସହସ୍ରବର୍ଷ ଭୋଗ କଲା ପରେ
ମୁକତି ପାଇ ଆସିବୁ ଅମର ନଗରେ ।
ଚିତ୍ରସେନ ଉପୁଜିଲା ଶୂକର ଗର୍ଭରେ
କାଳିନ୍ଦୀ ନଦୀ ତୀରରେ ଅରଣ୍ୟ ମଧରେ ।
କାଳିନ୍ଦୀନଦୀ ତୀରକୁ ରାତ୍ରେ ଯାଏ ଚରି
ପିତାମହ ଶାପେ ଆସେ ବିଷ୍ଠା ଭକ୍ଷି କରି ।
ମାଈ ଶୂକର ସଙ୍ଗରେ କଲା ଅଭିଳାଷ
ବରାହ ରୂପେ ତାହାର ବଢ଼ିଲାକ ବଂଶ ।
ମ୍ଳେଚ୍ଛ ଦେଶର ମଙ୍ଗଳସେନ ନରପତି
ମୃଗୟା କରି ଅଇଲା ସେହି ଚକ୍ରବର୍ତ୍ତୀ ।
ଗ୍ରୀଷମଋତୁ ଅଟଇ ବଇଶାଖ ମାସ
ଭୃଗୁବାର ଯେ ରୋହିଣୀ ତୃତୀୟା ଦିବସ ।
ମଙ୍ଗଳସେନ ବନରେ କରଇ ପାରିଧି
ସେହି ଶୂକରକୁ ଦେଖି ନାରାଚେକ ବିନ୍ଧି ।
ନାରାଚ ଘାତେ ଯାଆନ୍ତେ ଶୂକରର ପ୍ରାଣ
ମାତଳିକୁ ବୋଲେ ଇନ୍ଦ୍ର ଯାଅ ତାକୁ ଆଣ ।
ଶାପରୁ ମୁକତ ଏବେ ହେଲା ମୋର ପୁତ୍ର
ବିମାନେ ବସାଇ ତାକୁ ଆଣ ଯା ତ୍ୱରିତ ।
ବାସବର ବଚନରେ ଚଳିଲା ମାତଳି
କାଳିନ୍ଦୀତୀର ବନରେ ଯାଇଣ ସେ ମିଳି ।
ତା ନିକଟେ କଲା ନେଇ ପୁଷ୍ପକ ବିମାନ
ତହିଁରେ ବସିଲା ସୁଖେ ସେ ଚିତ୍ରବାହନ ।
ସହସ୍ରେକ ପାଟଛତ୍ର ଲକ୍ଷେକ ଆଲମ୍ବ
ଲକ୍ଷେକ ଉଦଣ୍ଡ ପୁଣି ଲକ୍ଷେକ ବିଲମ୍ବ ।

ଛାମୁରେ ବାଜଇ ତାର ଶଙ୍ଖ ଏକଲକ୍ଷେ
ରଥେବସି ଚିତ୍ରସେନ ଯାଏ ମହାସୁଖେ ।
ଆକାଶେ ବିମାନ ବାହେ ମାତଳି ସାରଥି
ବହୁ ଅଳଙ୍କାରେ ଯୁକ୍ତ ବାସବ ସନ୍ତତି ।
ଅଜଗବ ସମ ତାର କରେ ଅଛି ଧନୁ
କନ୍ଦର୍ପ ସମାନ ତାର ଶୋଭାପାଏ ତନୁ ।
ଚଳଇ ସେ ବିଦ୍ୟାଧର ଆକାଶର ମାର୍ଗେ
ମାତଳି ସାରଥି ରଥ ବାହେ ଅତିବେଗେ ।
ଏମନ୍ତ ସମୟେ ଜାମ୍ବବତୀର ଦୁଲାଳୀ
ସଚଳା ନାମ ତାହାର ପିତା ବନମାଳୀ ।
ଏକଲକ୍ଷ ପରିବାରୀ ଘେନିଣ ସୁନ୍ଦରୀ
ପୁରୁଁ ବାହାରି କାଳିନ୍ଦୀ ଯାଏ ସ୍ନାନସାରି ।
ଜଳକ୍ରୀଡ଼ା ନିମିତ୍ତରେ ଚଳଇ ସେ ବାଳୀ
ଚିତ୍ରସେନ ଗନ୍ଧର୍ବର ସମ୍ମୁଖରେ ମିଳି ।
ଜଳ ମଧ୍ୟରେ ସୁନ୍ଦରୀ ଦେଖେ ତାର ଛାୟା
ଊର୍ଦ୍ଧ୍ୱମୁଖେ ଚାହିଁ ହେଲା ବିରହେ ଉତ୍ସାହା ।
ବିଦ୍ୟାଧର ଚାହେଁ ରହି ଆକାଶର ପଥେ
ସଚଳା ଚିତ୍ରସେନର ରୂପ ଦେଖି ନେତ୍ରେ ।
ମଦନେ ଅଚେତ ହୋଇ ପଡ଼ିଲା ସେ ବାଳୀ
ଚିତ୍ରସେନ ମଧ୍ୟ କାମେ ରଥେ ପଡ଼େ ଢଳି ।
ମାତଳିକୁ ବୋଲେ ରଥ ବାହା ଭୂମିପଥେ
ଦେଖ ଏ ସୁନ୍ଦରୀ ଆଜ ବରିଲାକ ମୋତେ ।
ଚିତ୍ରସେନ ବାକ୍ୟେ ବୋଲେ ମାତଳି ସାରଥି
ଦ୍ୱାରକାର କୃଷ୍ଣଙ୍କର ହେବ ସେ ଦୁହିତୀ ।
ଚିତ୍ରସେନ ବୋଲେ ସେହି ଯୋଗାଏ ଦେବଙ୍କୁ
ପ୍ରାପତ ହୋଇଛି ଦେବ ନ ଛାଡ଼ିବା ତାକୁ ।
ମାତଳି ରଥ ବାହିଣ କଲା ନଦୀ କୂଳେ
ଦେଖି ସଚଳା ତାହାକୁ କାମରସ ଭୋଳେ ।
କରେ ସୁନ୍ଦରୀ ଘେନିଣ ଏକ ରତ୍ନମାଳି
ଚିତ୍ରସେନ ଗଳେ ଦେଲା ସବୁକଥା ଭୁଲି ।
ସ୍ତିରୀରତ୍ନ ନାୟକ ସେ ଜଗତମୋହିନୀ
ବେନିଭୁଜେ ଚିତ୍ରସେନ କୋଳେ ତାକୁ ଘେନି
ଧାଡ଼ିକାରେ ବିଜେ କଲା ପୁଷ୍ପକ ବିମାନେ
ମାତଳି ରଥ ବାହାନ୍ତେ ମିଳିଲା ଗଗନେ ।
ପ୍ରବେଶ ହେଲା ଗନ୍ଧର୍ବ ଅମର ନଗରେ
କନ୍ୟାକୁ ଲୁଚାଇଣ ସେ ମାତଳିର ପୁରେ ।
ତତ୍ପରେ ଇନ୍ଦ୍ରଦର୍ଶନ କଲା ବିଦ୍ୟାଧର
ପୁତ୍ରକୁ ଦେଖି ଧଇଲେ କୋଳେ ପୁରନ୍ଦର ।
ବାବୁରେ ଶାପରୁ ମୁକ୍ତ ହେଲୁ ଚିତ୍ରସେନ
ଅପ୍ସରାଏ ବନ୍ଦାପନା କଲେ ସେହିକ୍ଷଣ ।
ସଚଳାର ତୁଳେ ଥିଲେ ଯେତେ ପରିବାରୀ
ସେ ଯାଇ କହିଲେ ଯହିଁ ଥିଲେକ ଶ୍ରୀହରି ।
ରୈବତ ପର୍ବତେ ବିଜେ ବସନ୍ତ ଉତ୍ସବେ
ନନ୍ଦ ବସୁଦେବ ତୁଳେ ଅକ୍ରୂର ଉଦ୍ଧବ ।
ସାତ୍ୟକି ଯେ ଅନାଧୃଷ୍ଟ ଉଗ୍ରସେନ ଦେବ
ସତ୍ରଜିତ ଶରଜିତ ଏ ଆଦି ଯାଦବ ।
ଯଦୁ ଭୋଜ ଅନ୍ଧକ ଏ ବଂଶ ଆଦିକରି
ସପତ ବଂଶ ଯାଦବ ତହିଁ ଛନ୍ତି ପୂରି ।
ଏମନ୍ତ ସମୟେ ତହିଁ ଲକ୍ଷେ ପରିବାରୀ
ଅତି କାରୁଣ୍ୟ ବଚନେ କହନ୍ତି ସୁନ୍ଦରୀ ।
ଶୁଣିମା ହୋ ଯଦୁବଂଶ ଦେବ ଶିରୋମଣି
ସ୍ନାନଅର୍ଥେ ଯାଉଥିଲେ ସଚଳା ଦୁଲଣୀ ।
ବାସବ ନନ୍ଦନ ଦେବ ଆକାଶରେ ଥିଲା
ପୁଷ୍ପକ ଯାନେ ବସାଇ ସଚଳାକୁ ନେଲା ।
ଏ ଆଚମ୍ଭିତ ବାରତା ଆସ୍ଥାନରେ ଶୁଣି
ସମସ୍ତେ ବସିଲେ ତହିଁ ସ୍ତମ୍ଭୀଭୂତ ଜାଣି ।
ଆସ୍ଥାନପରୁ ସାତ୍ୟକି ବେଗେ ଉଠିଗଲେ
ଶ୍ରୀକୃଷ୍ଣଙ୍କ ସନ୍ନିଧିରେ ଯାଇ ଜଣାଇଲେ ।
ଯାତ୍ରା ଦେଖିବାକୁ ହରି ହେଉଛନ୍ତି ସଜ
ଏକାଳେ ସାତ୍ୟକି ବୋଲେ ଶୁଣ ଦେବରାଜ
ତୁମ୍ଭର ସଚଳା କନ୍ୟା ସ୍ନାନେ ଯାଉଥିଲା
ଚିତ୍ରସେନ ହରି ତାକୁ ସ୍ୱର୍ଗେ ଘେନିଗଲା ।
ଶୁଣିକରି ସ୍ତମ୍ଭୀଭୂତ ହେଲେ ଜଗନ୍ନାଥ
ଏଡ଼େ କର୍ମ ଚିତ୍ରସେନ କଲା ଯେ କେମନ୍ତ ।
ରାମ ବୋଇଲେ ଇନ୍ଦ୍ରର ଏଡ଼େ ହେଲା ଗର୍ବ
ହଳ ମୂଷଳ ବୁଲାଇ ସେ ଉଠିଲେ ଜବ ।
ରାମଙ୍କ କୋପ ଦେଖିଣ ବୋଇଲେ ଶ୍ରୀପତି
ଇନ୍ଦ୍ରକୁ କୋପ କରିବା ନୁହଇ ଯୁକତି ।
ଇନ୍ଦ୍ର ପୁତ୍ର ଚିତ୍ରସେନ ତାକୁ ନେଲା ହରି
ପିତା ନ ଜାଣେ କନ୍ୟାକୁ ନେଲା ଗୁପ୍ତକରି ।
ଏଥିର ଚରିତ ଯେବେ ଇନ୍ଦ୍ର ଜାଣିଥାନ୍ତା
ସଚଳାକୁ ଘେନି ନିଶ୍ଚେ ଏଠାକୁ ଆସନ୍ତା ।
ଭୋ ଦେବ ହେ ନୀଳାମ୍ବର କୋପକୁ ସଂହର
ଅମରପୁରକୁ ଏବେ ବେଗେ ଯାଉ ଚାର ।
ବାରତା ପାଇ ଯେବେ କି ନ ଦିଏ କୁମାରୀ
ତେବେ ବିନାଶ କରିବା ଅମର ନଗରୀ ।
ଏମନ୍ତ ବୋଲି ରାମକୁ ସମାର୍ଜିଲେ ହରି
ଶୁଣିଣ ଶାନ୍ତି ଲଭିଲେ ଦେବ ହଳଧାରୀ ।
ସାତ୍ୟକି ଅକ୍ରୂର ଏହି ଦୁହିଙ୍କି ହକାରି
ବୋଇଲେ ତୁମ୍ଭେ ବହନ ଯାଅ ସ୍ୱର୍ଗପୁରୀ ।

ଦେବସହ ବସିଥିବେ ବାସବ ଆସ୍ଥାନେ
ସଭାରେ ତୁମ୍ଭେ ଯାଇଣ କହ ବିଦ୍ୟମାନେ ।
ହରିଙ୍କ ବଚନ ଶୁଣି ଅକ୍ରୁର ସାତ୍ୟକି
ଦୁହେଁ ଚଳିଗଲେ ଇନ୍ଦ୍ର ଦେବତା ତହିଁକି ।
ବୈଶାଖ ଶୁକଳପକ୍ଷ ତୃତୀୟାର ଦିନ
ବସନ୍ତ ଉତ୍ସବଯାତ୍ରା ହୋଇଲା ଭଗନ ।
ବ୍ରହ୍ମା ଇନ୍ଦ୍ରଚନ୍ଦ୍ର ସୂର୍ଯ୍ୟ ଅନଳ ପବନ
କୁବେର ମହେଶ ଭୃଗୁ କଶ୍ୟପ ବରୁଣ ।
ଯମ ଧର୍ମ ନବଗ୍ରହ ଆଉ ବୃହସ୍ପତି
ଏ ସମସ୍ତେ ସଭାମଧ୍ୟେ ପୂର୍ଣ୍ଣ ହୋଇଛନ୍ତି ।
ନାରଦ ସପତ ସ୍ୱରେ ବୀଣାକୁ ବଜାନ୍ତି
ଏରୂପେ ଇନ୍ଦ୍ରଙ୍କୁ ସର୍ବେ ଖଟିଣ ଅଛନ୍ତି ।
ଏମନ୍ତବେଳେ ସାତ୍ୟକି ଆବର ଅକ୍ରୁର
ବିମାନେ ବସି ପ୍ରବେଶ ଅମର ନଗର ।
ଶତପାବଚ୍ଛ ତଳରେ ହେଲେ ପରଣାମି
ଆସ୍ଥାନେ ଥାଇ ଦେଖିଲେ ତାଙ୍କୁ ସସ୍ତ୍ରଯୋନି ।
ନାରଦ ନୃତ୍ୟ ତେଜିଲେ ସାତ୍ୟକି କି ଦେଖି
କେଉଁ କାରଣେ ମାଧବି ଆସିଛ ଏଥିକି ।
ଆସ୍ଥାନ ତଳେ ସାତ୍ୟକି ବାସବଙ୍କୁ ନମି
ଉଠି ଉଭା ହୋଇ ବୋଲେ ଶୁଣ ସସ୍ତ୍ରଯୋନି ।
ଦୂତଙ୍କୁହିଁ ଦେଖି ପଚାରନ୍ତି ପୁରନ୍ଦର
କେବଣ କାରଣେ ଆସିଅଛ ହେ ଅକ୍ରୁର ।
କହନ୍ତି ଅକ୍ରୁର ଯୋଡ଼ିକରି ବେନିକର
ଶୁଣ ଦେବସ୍ୱାମୀ ସ୍ୱର୍ଗପୁର ପୁରନ୍ଦର ।
ଯେଉଁ ନିମିତ୍ତରେ ଆମ୍ଭେ କଲୁ ଆଗମନ
ଆମ୍ଭଙ୍କୁ ପେଷଣି ଦେଲେ ହରି ବଳରାମ ।
ବୋଇଲେ ଇନ୍ଦ୍ରଙ୍କୁ କହ ତୁମ୍ଭେ ଏବେ ଯାଇ
କିପାଁ ଅନୀତି ଆଚାର କରୁଅଛି ସେହି ।
ବାସବ ବୋଇଲେ ଆହେ କେବଣ ଚରିତ
କେଉଁ ଅନ୍ୟାୟ ଦେଖିଲେ ହରି ହଳହସ୍ତ ।
କହୁଅଛନ୍ତି ଅକ୍ରୁର ଶୁଣ ବଜ୍ରଧାରି
ଜଗନ୍ନାଥଙ୍କର ପତ୍ନୀ ଜାମ୍ବବତୀ ନାରୀ ।
ସଚଳା ବୋଲି କରିଣ ତାହାଙ୍କ ଦୁହିତୀ
ପ୍ରତ୍ୟକ୍ଷେ ରମ୍ଭା କି ଅବା ମର୍ତ୍ତ୍ୟେ ଉତପତ୍ତି ।
କ୍ଷୀରାର୍ଣ୍ଣବ ସ୍ନାନେ ଆସିଥିଲା ଯେ ସୁନ୍ଦରୀ
ଚିତ୍ରସେନ ଗନ୍ଧର୍ବ ଯେ ଆଣେ ତାକୁ ହରି ।
ପୁରଜନଙ୍କର ମୁଖୁ ପାଇ ଏ ଉଦନ୍ତ
ଶୁଣି ମହାକୋପେ କଲେ ହରି ହଳହସ୍ତ ।
ଦଣ୍ଡ ସାଜ ବୋଲିକରି କହିଲେ ଯେ ହଳୀ
ସମାର୍ଜ୍ଜନ କଲେ ତାଙ୍କୁ ଦେବ ବନମାଳୀ ।

ଆମ୍ଭ ଦୁହିଁଙ୍କୁ ପେଷିଲେ ଦେବ ନାରାୟଣ
କନ୍ୟାକୁ ସମର୍ପ ନେଇ ହେ ସସ୍ତ୍ରଲୋଚନ ।
ଇନ୍ଦ୍ର ଦେବତା ବିଷାଦ ହୋଇଲେ ତା ଶୁଣି
ସ୍ତମ୍ଭୀଭୂତରେ ରହିଲେ ଦେବ ବଜ୍ରପାଣି ।
ସମସ୍ତ ଦେବତା ଶୁଣି ହୋଇଲେ ଆଶ୍ଚର୍ଯ୍ୟ
ତାଳି ମାରିଣ ହସିଲେ ଦେବ ଦେବରାଜ ।
ବ୍ରହ୍ମା ବୋଇଲେ ହେ ହର ତୁମ୍ଭେ ଜଗଦ୍‌ଗୁରୁ
ଏ ମହାସଭାରେ ତୁହି ହାସ୍ୟ କିପାଁ କରୁ ।
ଆମ୍ଭ ବିଚାରକୁ ଏହା ନୁହଇ ସୁଲଭ
ଇନ୍ଦ୍ର ଗୋବିନ୍ଦ ଦୁହିଙ୍କ ହେଉଛି ଅଭାବ ।
ବିଚାରି ଯୁକତେ ଦେବା କୃଷ୍ଣଙ୍କ କୁମାରୀ
ନ ଦେଲେ ଇନ୍ଦ୍ର ଗୋବିନ୍ଦ ହେବେ ଅପସରି ।
ବଳାତ୍କାର କଥା ଗୋଟି ଦେବ ଅଯୁକତ
ରାମ କୋପେ ରହିବ କି ସ୍ୱର୍ଗେ ସୁରନାଥ ।
ଦୁରାପଦ କଥାକୁ ଯେ ଭାଳୁଅଛୁ ଆମ୍ଭେ
କେଉଁ କଥାକୁ ବିଚାର ହାସ୍ୟକଲ ତୁମ୍ଭେ ।
ଈଶ୍ୱର ବୋଇଲେ ଦେଖ ତାର ଅବିଚାର
ବତ୍ରିଶ ସହସ୍ର କନ୍ୟା ହରେ ବଳାତ୍କାର ।
ନିରନ୍ତର ପରସ୍ତିରୀ ଖୋଜିଣ ହରଇ
ତାର ବେଳକୁ କିପାଇଁ ସେହି ନ ସହଇ ।
ବଜ୍ରନାଭର ଦୁହିତା ହରେ ପ୍ରଭାବତୀ
ବାଣାସୁର ଘରୁ ଉଷା ହରିଲା ତା ନାତି ।
ଆପଣେ ସେ ଜାଣୁ ଜାଣୁ କଳି ଭିଆଇଲା
ବୃହସ୍ପତିଙ୍କ ଭାର୍ଯ୍ୟାକୁ ଚନ୍ଦ୍ରକୁ ହିଁ ଦେଲା ।
ତା ଯୋଗେ କଷ୍ଟ ପାଇଲେ ଦେବତାଙ୍କ ଗୁରୁ
ଅନେକ ଅଭିମାନ ଯେ କେବା ସହିପାରୁ ।
ବାଣାସୁର ସଙ୍ଗତରେ ଛାର କନ୍ୟାପାଇଁ
ମୋହ ସଙ୍ଗରେ ଅପ୍ରୀତି ଦ୍ୱନ୍ଦ୍ୱ ସେ ଲଗାଇ ।
ମୋହର ଶିବଗଣଙ୍କୁ ସେହି ନାଶ କଲା
ବାଣାସୁରର ସହସ୍ର ଭୁଜକୁ କାଟିଲା ।
ସିନ୍ଧୁ ମନ୍ଥି ପାରିଜାତ ବୃକ୍ଷ ପ୍ରାପ୍ତ ହେଲୁ
ସମସ୍ତଙ୍କ ବିଚାରରେ ଇନ୍ଦ୍ରକୁ ତା ଦେଲୁ ।
ସେଥିପାଇଁ ବହୁ ଦ୍ୱନ୍ଦ୍ୱ କଲା ଇନ୍ଦ୍ର ତୁଲେ
ପାରିଜାତ ବୃକ୍ଷ ନେଲା ଭାରିୟାର ବୋଲେ ।
ସର୍ବେ ବୋଇଲୁ ବୋଲ ନ ମାନିଲା ସେ ଏକା
ସେହି ପାରିଜାତ ନେଇ ରୋପିଲା ଦ୍ୱାରକା ।
ରେ ସାତ୍ୟକି ବେଳୁବେଳ କର ଅନାଚାର
ଏହା କେ କରିବ ତିନି ଭୁବନ ମଧ୍ୟର ।
ଦେବପୁରୁ ପାରିଜାତ ସେହି ଘେନିଗଲା
ସଚଳା କୁମାରୀ ତାର ଏଡ଼େ କି ହୋଇଲା ।

ତୁମ୍ଭେ ପାରିଜାତ ଯେବେ ଫେରାଇଣ ଦେବ
ତେବେ ତୁମ୍ଭକନ୍ୟା ଫେରି ଦେବେ ଯେ ବାସବ
ଈଶ୍ୱର ଯହୁଁ ଏପରି ବଚନ କହିଲେ
ପାଇଲା ସାତ୍ୟକି ଅପମାନ ସେହି ସ୍ଥଳେ ।
ସାତ୍ୟକି କୋପେ ବୋଇଲା ଶିବବାଣୀ ଶୁଣି
ଇନ୍ଦ୍ର ରଖି ପାରିବ କି ଆହେ ଶୂଳପାଣି ।
ଶିବ ବୋଲେ ସଜ ହୋଇ ଆସନ୍ତୁ ଦ୍ୱିଭାଇ
ମୁହିଁ ସମର କରିବି ବାସବର ପାଇଁ ।
ସାତ୍ୟକି ବୋଇଲା ସ୍ୱାମୀ ଯା କହିଲ ସତ
ବାଣା ଯୁଦ୍ଧେ ତାଙ୍କୁ ଜିଣିଅଛ କି କହତ ।
କ୍ରୋଧକରି ଶିବ ଯହୁଁ ବୋଇଲେକ ବାଣୀ
ଭୟେ ସାତ୍ୟକି ଅଇଲା ତହୁଁ ତାହା ଶୁଣି ।
ଶିବବୋଲେ କହ ହରି ବଳିଆ ଆଗରେ
ଇନ୍ଦ୍ର ଯୋଗୁଁ କରିବି ମୁଁ ରଣ ତା ସଙ୍ଗରେ ।
ଶୁଣି ସାତ୍ୟକି ଅକ୍ରୂର ଅଇଲେକ ଫେରି
ପ୍ରବେଶ ହୋଇଲେ ଯାଇଁ ଦ୍ୱାରକା ନଗରୀ ।
ରାମକୃଷ୍ଣଙ୍କୁ ବୋଇଲେ ସକଳ ଉଦନ୍ତ
ସାତ୍ୟକି ବୋଲେ ଶୁଣିବା ଦେବ ଚକ୍ରହସ୍ତ ।
ଅପାର ପ୍ରତିଜ୍ଞା ତହିଁ କଲେ ବିଶ୍ୱନାଥ
ବୋଇଲେ ଦଣ୍ଡ ଘେନିଣ ଆସନ୍ତୁ ଦ୍ୱିଭ୍ରାତ ।
ଏ ଘାନ୍ତି ରଣ ହୋଇବ ମୋର ତାହା ତୁଲେ
ଯେବେ ଚିତ୍ରସେନ କନ୍ୟା ହରିନେଲା ବଳେ
ତୁମ୍ଭେ ବାଣାସୁର ଘରୁ ଆଣିଲ ଉଷାକୁ
କି ହେଲା ହରି ଆଣିଲା ତୁମ୍ଭର କନ୍ୟାକୁ ।
ତୁମ୍ଭେ ହରି ଘେନିଗଲ ପୁଷ୍ପ ପାରିଜାତ
ତହିଁକି ପାଲଟ ହେଲା ସଚଳା ଦୁହିତ ।
ସଭାରେ ସମସ୍ତେ ଥିଲେ ସୁରଗଣ ବସି
ଶିବବାକ୍ୟେ ସର୍ବେ ନାକେ ହସ୍ତଦେଇ ହସି ।
ଶୁଣିକରି କୋପାନଳ ହେଲେ କାମପାଳ
ଦୁଇହାତେ ବୁଲାଇଲେ ହଳ ଯେ ମୂଷଳ ।
ସୈନ୍ୟ ସାଜ ବୋଲିକରି ଦେଲେ ଘୋରଡାକ
ତ୍ରୈଲୋକ୍ୟ କମ୍ପି ଉଠିଲା ବାଜନ୍ତେ ଟମକ ।
ସ୍ୱର୍ଗ ସଭାରେ ଯେ ଥିଲେ ସର୍ବ ଦଇବତ
କରପତ୍ର ଯୋଡ଼ିକରି ବୋଲେ ସୁରନାଥ ।
ମୋ କଥା ଶୁଣିବା ହେଉ ଦେବ ଶୂଳଧାରୀ
ଅମରେ ମରିବେ କୋପ କଲେ ହଳଧାରୀ ।
ସଚଳା କନ୍ୟା ସମର୍ପି କରିବି ଦଇନୀ
ଅନୁଗ୍ରହ କରିବେ ଯେ ମୋତେ ହଳପାଣି ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ସୁରପତି
ତ୍ରିଦଶ ଦେବତା ଆମ୍ଭେ ଥିବୁ ତୋର କତି ।
ବ୍ରହ୍ମା ପବମାନ ଚନ୍ଦ୍ର ସବିତା କୁବେର
ଗ୍ରହଗଣ ନିର୍ଘାତ ଯେ ଯମ ବୈଶ୍ୱାନର ।
ବରୁଣ ଦେବତା ସହ ସର୍ବେ ଆମ୍ଭେମାନେ
ତୋତେ ରଖିବୁ ସମର କରି ପ୍ରାଣପଣେ ।
ସଭାରେ ଏମନ୍ତ କଥା କହନ୍ତେ ଧୂର୍ଜଟି
ତାହାଙ୍କ ବଚନକୁ କେ ନ ପାରିଲେ ମେଣ୍ଟି ।
ଏବେ ସମସ୍ତେ ମିଳିଣ ସମର କରିବା
ଏହି ଅମର ସମ୍ପଦ ନିଶ୍ଚୟ ରଖିବା ।
ନିରଞ୍ଜନଙ୍କର ସର୍ବେ ଛୁଇଁଲେ ପାଦୁକା
କିସ କରିବ ଆମ୍ଭର ଜଗନ୍ନାଥ ଏକା ।
ଦେବତାଙ୍କ ଏ ପ୍ରତିଜ୍ଞା ଦେଖି ଆଖଣ୍ଡଳ
ବ୍ରହ୍ମାଙ୍କ ବଦନ ଚାହିଁ କହେ ସ୍ୱର୍ଗପାଳ ।
ସ୍ୱାମୀ ଜିଣି ପାରିବା କି ଦେବ କାମପାଳ
ସ୍ୱରୂପ କରିଣ କହ ଧାତା ସୃଷ୍ଟିପାଳ ।
ବାସବର ବଚନରେ ହସନ୍ତି ବିଧାତା
ସମରେ ଆମ୍ଭଙ୍କୁ କେହି ନୁହନ୍ତି ଜିଣନ୍ତା ।
ଆମ୍ଭେମାନେ ସର୍ବେ ତାଙ୍କୁ ନ ପାରିବା ଜିଣି
ଦୁଇଦଳ ଆୟାସରୁ ବୋଲେ ବେଦପାଣି ।
ଏକଜଣ ମାତ୍ର ଅଛି ଦୁଇକୁଳ ମଧ୍ୟେ
ସେ ଯାହା ଆଡ଼କୁ ଯିବ ଜିଣିବ ସେ ହାଦେ ।
ଏହା ଶୁଣିଣ ବ୍ରହ୍ମାଙ୍କୁ ବୋଲେ ବଜ୍ରପାଣି
କେ ଅଛି ଏତେ ଶକତା ମୁଁ ନ ପାରେ ଜାଣି ।
ସେ ରାମ କୃଷ୍ଣ ଦ୍ୱିଭାଇ ଆମ୍ଭେ ଦେବଗଣେ
ଏତେକ ଜିଣିବାକୁ କି ସମର୍ଥ ସେ ଜଣେ ।
ଧନ୍ୟ ଧନ୍ୟ ତା ମହିମା ଜୀବନ ତା ଧନୀ
ସାଧୁ ତାହାର ପିଅର ସାଧୁ ତା ଜନନୀ ।
ବ୍ରହ୍ମା ବୋଇଲେ ସମର୍ଥ ଏକା ବୀର ପାର୍ଥ
କୁନ୍ତୀଙ୍କ ନନ୍ଦନ ତୋର ବୀର୍ଯ୍ୟରୁ ସମ୍ଭୂତ ।
ନିର୍ବାତ କବଚ ବଧି ଖାଣ୍ଡବ ଦହିଲା
ଅନଳର ଲୁଦ୍ଦୁବୁଦ୍ଦୁ ବ୍ୟାଧି ଛଡ଼ାଇଲା ।
ସଭାମଧ୍ୟେ ବାହାସ୍ଫୋଟ ମାରି ସୁରପତି
ତ୍ରିଦଶଦେବତା ତୁମ୍ଭେ ଅଛ ମୋର କତି ।
ସେ ମୋହର ଯୋଗ୍ୟପୁତ୍ର କାହାକୁ ମୋ ଭୀତି
ତ୍ରୈଲୋକ୍ୟ ବିଦିତ ଅଛି ଯାହାର କୀରତି ।
ଚୌରାଶୀବେଳ ନିର୍ଘାତ ସ୍ୱର୍ଗେ ଧାଡ଼ିଦେଲା
ସତ୍ୟ ତ୍ରେତୟା ଦ୍ୱାପର ତିନିଯୁଗ ହେଲା ।
ଅର୍ଜ୍ଜୁନ ଜନମ ହେଲା ଦ୍ୱାପରର ଶେଷେ
ନିର୍ବାତ କପଟ ବଧ କଲାକ ରଭସେ ।
ପୁନଶ୍ଚ ବଧିଲା ସେହି ହିରଣ୍ୟକବଚ
ଅମରପୁରେ ରଖିଲା ମୋତେ ସେ ବିବସ୍ଥ ।

ମୋହର ଆତ୍ମାର ତାକୁ କରୁଅଛି ଜୟ
ସମରେ କି ଛାଡ଼ିବ ହେ ମୋତେ ଧନଞ୍ଜୟ ।
ବହୁ ଅଳଙ୍କାର ତାକୁ ଦେଇ ଦେବଇନ୍ଦ୍ର
ମାତଳିକି ତୁମ୍ଭେ ଘେନି ଯାଅ ହେ ନାରଦ ।
ଭୋ ନାରଦ ଅର୍ଜୁନକୁ ବେଗେ ଘେନିଆସ
ତୋତେ ଦେଖିଲେ ଆସିବ ଶୀଘ୍ର ମୋରଶିଷ୍ୟ
ବଡ଼ ସାନନ୍ଦରେ ଚଳିଯାନ୍ତି ମୁନିବର
ପୁଷ୍ପକ ଘେନି ମାତଳି ଚଳେ ଧାତିକାର ।
ଚନ୍ଦ୍ରଦେବତା ଯେ ଶୂନ୍ୟସ୍ଥଳେ ବସିଥିଲା
ଧାତିକାରେ ନିଶାରେ ସେ ବାହାର ହୋଇଲା
ବିଚାରଇ ଶଶଧର ତାରାର ହରଣେ
ଏକା ରକ୍ଷାକଲେ ମୋତେ ଦେବ ନାରାୟଣେ
ସର୍ବଦେବ ଆବୋରିଲେ ଯାଇ ବୃହସ୍ପତି
ଏକା କୃଷ୍ଣଙ୍କ ପ୍ରସାଦେ ଜିଣିଲି ସବୁନ୍ତି ।
ଏମନ୍ତ ବିଚାରି ମନେ ଦେବ ଶଶଧର
ଧାତିକାରେ ପ୍ରବେଶିଲା ଦ୍ୱାରାବତୀ ପୁର ।
ନିଜଦଣ୍ଡ ସଜାଅନ୍ତି ରାମ ହୃଷୀକେଶ
ଏମନ୍ତ ସମୟେ ଚନ୍ଦ୍ର ତହିଁ ପରବେଶ ।
ଚନ୍ଦ୍ରଦେବଙ୍କୁ ପୁଚ୍ଛନ୍ତି ଦେବ ଆଦିମୂଳ
କି ବିଚାର କରୁଛନ୍ତି ଅମର ସକଳ
ଚନ୍ଦ୍ର ବୋଇଲେ ସକଳ ଦେବତାଙ୍କ କଥା
ଇନ୍ଦ୍ରକୁ ସପକ୍ଷ ହେଲେ ସକଳ ଦେବତା ।
ଦେବଙ୍କ ସପକ୍ଷ ପାଇ ସେହି ମଘବାନ
ବୋଇଲେ କିସ କରିବ ଆସୁ ନାରାୟଣ ।
ବ୍ରହ୍ମାବୋଲେ ତ୍ରିଭୁବନେ ଅଛି ଏକଜଣେ
ସେ ଯାହା ପାଖକୁ ଯିବ ଜିଣିବ ସେ ରଣେ ।
ଆହେ ଇନ୍ଦ୍ର ଆମ୍ଭେ ଏହା କରିଲୁ ଯଥାର୍ଥ
ଅର୍ଜୁନ ଯା ପକ୍ଷେ ଥିବ ଜିଣିବ ନିୟତ ।
ବିଧାତାଙ୍କ ମୁଖୁଁ ଏହି ବାକ୍ୟ ଶୁଣି ଇନ୍ଦ୍ର
ପାର୍ଥେ ଆଣି ପେଷିଛନ୍ତି ମାତଳି ନାରଦ ।
ଗୋଦୋହନ ପରବତେ ଅଛନ୍ତି ପାଣ୍ଡବେ
ଏହା ଦେଖି କହିବାକୁ ଅଇଲି ମୁଁ ଜବେ ।
ଏ ସମ୍ବାଦ ପାଇ କୃଷ୍ଣ ଆନନ୍ଦିତ ହେଲେ
ପ୍ରଦ୍ୟୁମ୍ନକୁ ଡାକି ପାଶେ ତାକୁ ଆଜ୍ଞାଦେଲେ ।
ଯାଅ ବାବୁ ଗୋଦୋହନ ପରବତଠାକୁ
ପୁଷ୍ପକଯାନେ ବସାଇ ଆଣ ଯା ପାର୍ଥକୁ ।
ସେ ମୋର ପ୍ରାଣର ସଖା ଅଟଇ ଫାଲ୍‌ଗୁନି
ବହନ ଯାଇ ପ୍ରଦ୍ୟୁମ୍ନ ଆସ ତାକୁ ଘେନି ।
ପିତାଙ୍କର ଆଜ୍ଞାପାଇଁ ସେ ମୀନକେତନ
ପାଣ୍ଡବ ତହିଁକି ବେଗେ କରିଲା ଗମନ ।

ପବନହୁଁ ବେଗ ହୋଇ ବିମାନ ଚଳାଇ
ବୈତରଣୀ ନଦୀପାଶେ ପ୍ରବେଶିଲେ ଯାଇ ।
ମାତଳି ନାରଦ ଦୁହେଁ ତହିଁ ପ୍ରବେଶିଲେ
ଦେଖି ଯୁଧିଷ୍ଠିର ତାଙ୍କୁ ବହୁ ପୂଜାକଲେ ।
ଧୂପ ଦୀପେ ବନ୍ଦାଇଣ ନାରଦଋଷିଙ୍କୁ
ବିଚିତ୍ର ଆସନେ ନେଇ ବସାଇଲେ ତାଙ୍କୁ ।
ଯୁଧିଷ୍ଠି ବୋଇଲେ ଆଜ ଜୀବନ ସଫଳ
ତୁମ୍ଭଙ୍କୁ ଭେଟିଲି ଯେବେ ବ୍ରହ୍ମାଙ୍କର ବାଳ ।
ପ୍ରତ୍ୟକ୍ଷରେ ବେଦବର ଅଟ ଦ୍ୱିତିବ୍ରହ୍ମା
ଅଭୟ ନିରାଳମ୍ବ ତୁ ଅଟୁ ମହାତମା ।
ନାରଦ ବୋଲନ୍ତି କ୍ଷେମେ ଅଛତ ସକଳେ
ସୋଦରମାନେ ତୋହର ଅଛନ୍ତି ନା ଭଲେ ।
ନାହିଁ ତ ଦାନବଙ୍କର ଭୟ ଏଠାବକୁ
କ୍ଷେମେ କୁଶଳେ ଅଛ ନା ପଚାରେ ତୁମ୍ଭଙ୍କୁ ।
କ୍ଷେମେ ଜାୟା ଘେନିଅଛ ତୁମ୍ଭେ ନା ବରତି
ଏ ବନ ଦୁଃଖକୁ ତୁମ୍ଭେ ନ କରିବ ଭୀତି ।
ଏ ମହା ସ୍ୱର୍ଗେ ତୁ ସୁଖେ ହୁଅ ଏକ ରାଜା
ଶତ୍ରୁଜିଣ ବୋଲି ବୋଲେ ବ୍ରହ୍ମାଙ୍କ ତନୁଜା ।
ହସ୍ତିନାଦି ପାଞ୍ଚରାଜ୍ୟ ହେଉ ତୋତେ ପ୍ରାପ୍ତ
ତୁହି ମହା ଧର୍ମବନ୍ତ ଅଟୁ ତା ନିୟତ ।
ଯୁଧିଷ୍ଠି ବୋଇଲେ ମୋର ଭଲ ସବୁ କଥା
ଏହି ବନବାସ ମୋତେ ହେବ ଯେ ସର୍ବଥା ।
ଦେଖ ମୋ ତୁଲେ ଅଠାଶୀସସ୍ର ଛନ୍ତି ଋଷି
ସର୍ବଦା ଧର୍ମପୁରାଣ ମୋ ଛାମୁରେ ଭାଷି ।
ଯମନିକ ତୀର୍ଥେ ସ୍ନାନ ଯେବେ ଥରେ କରି
ଅଶ୍ୱମେଧ ଯଜ୍ଞଫଳ ତୁଲେ ଏହା ସରି ।
ଏ ମହୀମଣ୍ଡଳ ମଧ୍ୟେ ଯେତେ ତୀର୍ଥ ଅଛି
ସବୁତୀର୍ଥେ ପିଣ୍ଡଦାନ ପିତୃଙ୍କୁ ଦେଉଛି ।
ନୋହୁ ପଛେ ରାଜ୍ୟପ୍ରାପ୍ତ ତହିଁ ସଦା ଦ୍ୱନ୍ଦ୍ୱ
ଶୁଣି ବହୁତ ପ୍ରଶଂସା କରିଲେ ନାରଦ ।
ନାରଦ ଯୁଧିଷ୍ଠି କଥା ହେବାର ସମୟ
ପ୍ରବେଶ ହୋଇଲେ ତହିଁ କୃଷ୍ଣଙ୍କ ତନୟ ।
ରଥୁଁ ଓହ୍ଲାଇ ଯୁଧିଷ୍ଠି ଚରଣେ ପ୍ରଣମି
ଉଠିଣ ଉଭା ହୋଇଲା ଯୋଡ଼ି ବେନିପାଣି ।
ଛାମୁରେ ମିଳିଣ ଶିରେ ଦେଇ ବେନିକର
ବହୁତ ସ୍ତୁତି କରଇ କୃଷ୍ଣଙ୍କ କୁମାର ।
ପୁଣି ଚରଣେ ପଡ଼ିଣ କରେ ନିଉଛାଳି
କପାଳରୁ ସ୍ୱେଦବିନ୍ଦୁ ଟୋପି ଟୋପି ଗଳି ।
ବହୁ ବିନୟେ ଶ୍ରୀକୃଷ୍ଣ ସୁତ ସ୍ତୁତି ବୋଲି
ଯୁଧିଷ୍ଠିଙ୍କ ଶ୍ରୀଚରଣେ ଶୁଏ ଗଡ଼ଘାଲି ।

ଯୁଧିଷ୍ଠିଦେବ ବୋଇଲେ ଯାଅରେ ନକୁଳ
ତାର ବାଞ୍ଛା ସିଦ୍ଧ ହେଉ ପ୍ରଦ୍ୟୁମ୍ନକୁ ତୋଳ ।
ଯୁଧିଷ୍ଠିର ଦେବଙ୍କର ଆଗେ ଯାଇଁ ଭେଟି
ସବୁ ଜଣାଇଲା ଯୋଡ଼ି କର ବେନିଗୋଟି ।
ଅର୍ଜ୍ଜୁନ ବସାଇ କୋଳକରି ପ୍ରଦ୍ୟୁମ୍ନକୁ
ମୁଖରେ ଚୁମ୍ବନ ଦେଇ ଆଶ୍ୱାସଇ ତାକୁ ।
ଯୁଧିଷ୍ଠି ବୋଇଲେ ଦେବ କୁଶଳ ଦ୍ୱାରକା
ଦୈତ୍ୟ ଦାନବର ନାହିଁ ତହିଁ କିଛି ଶଙ୍କା ।
ପ୍ରଦ୍ୟୁମ୍ନ ବୋଇଲେ ସର୍ବ କୁଶଳ ଯେ ବୋଲି
ଠାକୁରଙ୍କ ଆଜ୍ଞାରେ ମୁଁ ବହନ ଅଇଲି ।
ଯୁଧିଷ୍ଠି ବୋଇଲେ ବାବୁ କେବଣ କାରଣ
ପ୍ରଦ୍ୟୁମ୍ନ ବୋଇଲେ ଦେବ ସାବଧାନେ ଶୁଣ ।
ଆଜ୍ଞା ଦେଇଛନ୍ତି ମୋତେ ଦେବ ଭଗବାନ
ପାର୍ଥଠାକୁର ଦ୍ୱାରକା ଯିବେଟି ବହନ ।
ଯୁଧିଷ୍ଠିର ଆଜ୍ଞାଦେଲେ ଯାଅରେ ଅର୍ଜ୍ଜୁନ
ତୋତେ ନେବାପାଇଁ ଏବେ ଅଇଲା ପ୍ରଦ୍ୟୁମ୍ନ
କେବଣ କଥାରେ ତୁହି ଜାଣୁଟିକି ବାବୁ
ବଡ଼କାହିଁ ହେଲେ ଆମ୍ଭେ ଏହିକ୍ଷଣି ଯିବୁ ।
ପ୍ରଦ୍ୟୁମ୍ନ ବୋଲେ ଅର୍ଜ୍ଜୁନଠାକୁର ଯେ ଗଲେ
ଠାକୁରେ କହନ୍ତି ସିନା ପ୍ରଦ୍ୟୁମ୍ନ ବୋଇଲେ ।
ଯୁଧିଷ୍ଠିଦେବ ବୋଇଲେ ଶୁଣ ସହଦେବ
କିମର୍ଥେ ପାର୍ଥେ ନିଆଉଛନ୍ତି ବାସୁଦେବ ।
ବାବୁ ଦୈତ୍ୟମାନଙ୍କର ଆମ୍ଭେ ଯେ ବଇରୀ
ଆମ୍ଭଙ୍କୁ ନେଲା ହିରଣ୍ୟ ଦୈତ୍ୟ ମାୟାକରି ।
ଏକଥା ବାବୁ ନିରୋଳେ ବୁଝ ତୁମ୍ଭେ ବସି
କେଉଁ କାରଣେ ନିଆଉଛନ୍ତି ହୃଷୀକେଶି ।
ଆପଣାର କର ଚାହିଁ ବୋଲେ ସହଦେବ
ଯେ ହେତୁ ପାର୍ଥେ ନିଆଉଛନ୍ତି ବାସୁଦେବ ।
ବାସବ ବାସୁଦେବଙ୍କ ହୋଇଛି ଅଭାବ
ତେଣୁ ପାର୍ଥେ ନେଉଛନ୍ତି ହରି ବଳଦେବ ।
ଭୋ ସ୍ୱାମୀ ଜମ୍ବୁବତୀର ସଚଳା କୁମାରୀ
ନଦୀକୂଳୁ ଚିତ୍ରସେନ ତାକୁ ନେଲା ହରି ।
ତେଣୁକରି ନିଜଦଣ୍ଡ ସାଜନ୍ତି ଅଚ୍ୟୁତ
ଦେବବଳ ଆଣୁଛନ୍ତି ଦେବ ପୁରୁହୂତ ।
ସେ ହେତୁ ହରି ପ୍ରଦ୍ୟୁମ୍ନେ ଅଛନ୍ତି ପଠାଇ
ଅର୍ଜ୍ଜୁନଠାକୁରେ ନେବେ ଦ୍ୱାରାବତୀ ଭୂଇଁ ।
ନାରଦ କହିଲେ ଶୁଣ ଆହେ ଯୁଧିଷ୍ଠିର
ଏହିକଥାକୁ ପେଷିଲେ ମୋତେ ପୁରନ୍ଦର ।
ବହୁ ବିନୟେ କହିଣଛନ୍ତି ମଘବାନ
ନିର୍ବାତ ମାରି ରଖିଲ ଅମର ଭୁବନ ।
ସେହିଦିନୁ ତାର ହେଲା ଏ ଅମର ପୁର
ଶତପୁତ୍ର ମଧ୍ୟେ ଶ୍ରେଷ୍ଠ ପାର୍ଥ ଅଟେ ମୋର ।
ମାତଳିକି ଆମ୍ଭସଙ୍ଗେ ପେଷିଲା ମଘବା
ପୁଷ୍ପକରେ ବସି ପାର୍ଥ ବେଗେ ସ୍ୱର୍ଗେ ଯିବା ।
ପ୍ରଦ୍ୟୁମ୍ନ ବୋଇଲେ ଆସ ଦ୍ୱାରକାଭୁବନ
ଗୋସିଂହ ଦୈତ୍ୟକୁ ତୁମ୍ଭେ କଲ ନିସୂଦନ ।
ସାତବଂଶ ଯାଦବ ସେ ସମସ୍ତଙ୍କୁ ମାରି
ସତ୍ୟଭାମାକୁ ସେ ଦୈତ୍ୟ ନେଇଥିଲା ହରି ।
ନିଅନ୍ତେ ଅର୍ଜ୍ଜୁନ ରଖ ବୋଲିଣ ଡାକନ୍ତେ
କିରାତରୂପେ ଏ ପାର୍ଥଥିଲେ ଯେ ବନସ୍ତେ ।
ଗୋସିଂହ ବାଷଠି କ୍ଷୌଣୀ ସଙ୍ଗେ ଯାଉଥିଲା
ପ୍ରହରକ ମଧ୍ୟେ ପାର୍ଥ ସବୁଙ୍କୁ ମାଇଲା ।
ଅସୁରବଳଙ୍କୁ ମାରି ଦେଲେ ଶକ୍ରାବତୀ
ଜୀବନ୍ୟାସ ଶରେ ପୁଣି ଜୀଆଇ ସବୁନ୍ତି ।
ତେଡ଼େ ଆପଦ ଏହାଙ୍କ ଯୋଗେ ଅଛୁ ମେଣ୍ଟି
ଏମନ୍ତବେଳେ ଆମ୍ଭଙ୍କୁ ଛାଡ଼ିବେ କିରୀଟୀ ।
ଏମନ୍ତ କହିଣ ମୋତେ ପେଷିଛନ୍ତି ତାତ
ପାର୍ଥ ମୋ ସଙ୍ଗେ ପେଷନ୍ତୁ କରେ ପ୍ରଣିପାତ ।
ଯୁଧିଷ୍ଠି ଦେବ ଆଶ୍ଚର୍ଯ୍ୟ ହେଲେ ଏହା ଶୁଣି
ଉଭୟ ସଙ୍କଟ ବାବୁ ହୋଇଲା ଫାଲ୍‌ଗୁନି ।
ବହୁଯତ୍ନେ ପିତା ଏକପୁତ୍ର କରେ ଜାତ
ଆପେ ବିଚାରି କହନ୍ତି ଦେବ ଧର୍ମ ସୁତ ।
ଅଧର୍ମୀ ଆଉ ଅଯୋଗ୍ୟ ପୁତ୍ର ଜାତ ହେଲେ
ତା ଛାରଙ୍କୁ କେହୁ ଆଶ୍ରା କରଇ ବୋଇଲେ ।
ଭଗୀରଥ ସୂର୍ଯ୍ୟବଂଶେ ହୋଇଲେ ଉତ୍ପତ୍ତି
ଗଙ୍ଗାଙ୍କୁ ଆଣି ପିତୃଙ୍କୁ ଦେଲେ ସ୍ୱର୍ଗଗତି ।
ତୋତେ ଜାତ କରିଛନ୍ତି ଦେବ ପୁରୁହୂତ
ତାଙ୍କ ଶତ୍ରୁ ନିବାରଣ କରିବୁ ତୁ ସତ୍ୟ ।
ଏଥିରେ ତୋହର ବାବୁ ଧର୍ମ ଉଦେ ହେବ
ଅମରବୃନ୍ଦଙ୍କ ମଧ୍ୟେ ପୌରୁଷ ପାଇବ ।
ପ୍ରଦ୍ୟୁମ୍ନ ସଙ୍ଗରେ ଯେବେ ଦ୍ୱାରକା ନ ଯିବୁ
ଯାବତ ଦିନ କୃଷ୍ଣଙ୍କୁ ଆଉ ନ ପାଇବୁ ।
ହରି ପାର୍ଥ ଏକବୋଲି ବୋଲୁଛନ୍ତି ଜନ
ତୋହର ବାହୁକୁ ଆଶ୍ରା କରନ୍ତି ମୋହନ ।
ଆଉ ବିଶେଷେ ଏଠାକୁ ଅଇଲା ପ୍ରଦ୍ୟୁମ୍ନ
ଦୁଃସହ ସଙ୍କଟ ଫେଡ଼ ତୁହୋ ଅରଜୁନ ।
ବାବୁ ଜରାସନ୍ଧ ବଧହୁଏ ଯେତେବେଳେ
ଭୀମ ମାଇଲା ତାହାକୁ କୃଷ୍ଣଙ୍କର ବଳେ ।
ତାଙ୍କ କାର୍ଯ୍ୟହେତୁ ପେଷି ଅଛନ୍ତି ପ୍ରଦ୍ୟୁମ୍ନ
ଦୁଃସହ ସଙ୍କଟ ଏବେ ପଡ଼ିଲା ଅର୍ଜ୍ଜୁନ ।

ବାବୁ କ୍ଷତ୍ରିଙ୍କର ଧର୍ମ ଶୁଣରେ ବିବସ୍ତି
ଅଭ୍ୟାଗତ ପାରନ୍ତି ସେ ଭୋଜନକୁ ଇଚ୍ଛି ।
ଯେବେ ବାବୁ ବାସୁଦେବ ପାଶକୁ ତୁ ଯାଉ
ଯାବତ କାଳରେ ପୁଣି ପିତାଙ୍କୁ ନପାଉ ।
ଭୀମ ବୋଇଲେକ ଦେବ ବୁଦ୍ଧି ଏକ ଅଛି
କାହାରି ପାଶେ ନ ଯାଉ ଆମ୍ଭ ସବ୍ୟସାଚି ।
ନକୁଳ ବୋଇଲା ଏହା ନୁହେ କ୍ଷତ୍ରିଧର୍ମ
କ୍ଷତ୍ରିୟମାନଙ୍କର ଯେ ଅଟେ ଏହି କର୍ମ ।
ବରିଲେ ନିମନ୍ତ୍ରଲେ ଯେ ଯିବାର ଅବଶ୍ୟ
ନ ଗଲେ କୂଳେ ଦୂଷଣ ଧର୍ମ ଯାଏ ନାଶ ।
ପାର୍ଥ ବୋଇଲେ ନାରଦ ମୁଖକୁ ଅନାଇ
ଏଡ଼େକର୍ମ ଚିତ୍ରସେନ କଲା କାହିଁପାଇଁ ।
ଯେବେ କୃଷ୍ଣ ଦୁହିତାକୁ ତାର ହେଲା ଇଚ୍ଛା
ଆମ୍ଭଙ୍କୁ ରାଇ ସେ କିପାଁ ନ କରିଲା ପୁଚ୍ଛା ।
ଗୋବିନ୍ଦ କି ନ କରନ୍ତେ ଆମ୍ଭରି ବଚନ
ଭାବେ ସଚଳାକୁ ସେହି କରନ୍ତେ ପ୍ରଦାନ ।
ଇନ୍ଦ୍ରକୁ ଗୋବିନ୍ଦ ପାଇଥାନ୍ତେ ବନ୍ଧୁପଣେ
କାର୍ଯ୍ୟ ହୋଇଥାନ୍ତା ରହିଥାନ୍ତା ବଡ଼ପଣେ ।
ବଳେ ହରିଲା ଯେ ଜଗନ୍ନାଥଙ୍କ ଦୁହିତ
ଅମର ସମ୍ପଦ ନାଶ କଲା ଚିତ୍ରରଥ ।
ଏଡ଼େ ଅନ୍ୟାୟ କଥା ସେ କଲା କେଉଁପରି
କେବଣ ଦର୍ପେ ହରିଲା ଶ୍ରୀକୃଷ୍ଣ କୁମାରୀ ।
ଚିତ୍ରସେନ କଲା ଅବା ମତ୍ତଗର୍ବପଣେ
ଇନ୍ଦ୍ର କିପାଇଁ ଚିନ୍ତିଲା ଦ୍ୱନ୍ଦ୍ୱ ଅକାରଣେ ।
ମୁହିଁ ତୁମ୍ଭଙ୍କୁ ବିନୟେ କହଇ ନାରଦ
ସଚଳା କନ୍ୟାକୁ ଘେନି ବେଗେ ଆସୁ ଇନ୍ଦ୍ର ।
ଯେମନ୍ତେ ପାରୁ ସେ ଏହି କଥା କର ସନ୍ଧି
ନୋହିଲେ ମରିବେ ନିଶ୍ଚେଁ ପିତା ଜୟଭେଦୀ ।
ନାରଦ ଋଷି ବୋଇଲେ ସେ ଦେବ ମୁରାରି
ସେ ଯେ କନ୍ୟାକୁ ଆଣଇ ବଳାତ୍କାରେ ହରି ।
ଅର୍ଜ୍ଜୁନ ବୋଇଲେ ତାଙ୍କ କ୍ଷମତା ଅସୀମ
ତ୍ରିଲୋକ ମଧ୍ୟରେ ତାଙ୍କୁ କିଏ ହେବ ସମ ।
ରାମ କୃଷ୍ଣଙ୍କ କୋପକୁ ତ୍ରୈଲୋକ୍ୟେ କେ ସରି
ହଳମୁନେ ତୋଳିଥିଲେ କଇଳାସ ଗିରି ।
ଯଦ୍ୟପି ସହସ୍ରଗୁଣେ ମାନ୍ୟ ହେଲେ ପିତା
କ୍ଷଣେ ମୁହିଁ ନ ସହଇ କୃଷ୍ଣ ନିନ୍ଦା କଥା ।
କୃଷ୍ଣଙ୍କର ନିନ୍ଦା ଯେହୁ କରେ ମୋର ଆଗେ
ଅବଶ୍ୟ ତାହାକୁ ନାଶ କରେ ରଣଯୋଗେ ।
ଯେବେ ମୋତେ ଆଜ୍ଞା ଦେଇଥାନ୍ତେ ନାରାୟଣ
ବାସବକୁ ଧରି ଆଣିଦ୍ୟନ୍ତି ଏହିକ୍ଷଣ ।

ନାରଦ ବୋଇଲେ ଇନ୍ଦ୍ର ନୁହଇ ସେ ଏକା
ଶିବ ପବନାଦି ଦେବେ ଭାଙ୍ଗିବେ ଦ୍ୱାରକା ।
ପାର୍ଥ ବୋଲେ ପରଶଂସା କର ଆପଣାର
କୃଷ୍ଣମୋତେ ସାହା ଥିଲେ କାରେ ନାହିଁ ଡର ।
ବ୍ରହ୍ମା ପୁରନ୍ଦର ଯମ କୁବେରାଦି କରି
ଏମାନେ ମୋ ତୁଲେ ରଣେ ନୁହନ୍ତି ସେ ସରି
ପାର୍ଥଠାରୁ ଏହା ଶୁଣି ମାତଳି କହଇ
ତେବେ ଇନ୍ଦ୍ରଠାରେ ତୁମ୍ଭ ଦୟା ମାୟା ନାହିଁ ।
ପାର୍ଥ ବୋଇଲେ ତାହାକୁ କହଇ ଦଇନୀ
ଯେହ୍ନେ ପ୍ରୀତି ହୁଏ ଇନ୍ଦ୍ର ଗୋବିନ୍ଦ ଏ ବେନି ।
ଶିବଙ୍କ ବଚନେ ମୋର ପିତା ନୋହୁ ବାଇ
ନିୟତ କାଳକୁ ଶିବ ଯେ ଯିବେ ପଳାଇ ।
ସକଳେ ଜାଣନ୍ତି ହରି ହର ଏକଆତ୍ମା
ମଧ୍ୟେ ପଡ଼ି ନାଶଯିବେ ଇନ୍ଦ୍ର ମହାତମା ।
ନାରଦ ବୋଇଲେ ଏହା ଅଟଇ ଯଥାର୍ଥ
ଯାଉଛୁ ତୋର ପିତାଙ୍କୁ କହିବୁ ସମସ୍ତ ।
ଏହା କହିଣ ନାରଦ ଚଢ଼ିମନଯାନ
ମାତଳି ଘେନି ପ୍ରବେଶ ଅମର ଭୁବନ ।
ବିଜେ କରିଥିଲେ ଇନ୍ଦ୍ର ଅମର ଆସ୍ଥାନେ
ସଜ ହୋଇଣ ଆସନ୍ତି ବୃନ୍ଦାରକମାନେ ।
ଇନ୍ଦ୍ରଦେବ ତାହାଙ୍କୁ ତ ଥିଲେ ବାଟ ଚାହିଁ
ତୁମ୍ଭେ ନାରଦ ଅଇଲ ମୋ ଅର୍ଜ୍ଜୁନ କାହିଁ ।
ନାରଦ କହିଲେ ତୋତେ ଛାଡ଼ିଲା ଫାଲ୍‌ଗୁନି
ତାକୁ ପ୍ରଦ୍ୟୁମ୍ନ ଦ୍ୱାରକାପୁର ଗଲା ଘେନି ।
ଏହିପରି ନାରଦଙ୍କ ମୁଖୁ ବାଣୀ ଶୁଣି
ମୂର୍ଚ୍ଛାଯୋଇଣ ପଡ଼ିଲା ତହିଁ ବଜ୍ରପାଣି ।
ନିଶ୍ଚୟେ ବିପତ୍ତି ମୋତେ ପଡ଼ିଲା ଆସିଣ
କେଉଁପରିରେ ଜିଣିବା ରାମ ନାରାୟଣ ।
ଦେବତାଙ୍କୁ ବସାଇଣ ବୋଲେ ବଜ୍ରପାଣି
ଆଜ୍ଞାଦିଅ ସଚଳାକୁ ମୁହିଁ ଯିବି ଘେନି ।
ରାମକୃଷ୍ଣଙ୍କୁ ଚରଣେ ପଶିବି ଶରଣ
ତେବେ ସୁଦୟା କରିବେ କାହ୍ନୁ ସଙ୍କର୍ଷଣ ।
ଇନ୍ଦ୍ରର ଏ ବାଣୀ ଶୁଣି ଈଶ୍ୱର ବୋଇଲେ
ଏ ବିଷୟ ମନେ ଚିନ୍ତା ନ କର ତୁ ତିଳେ ।
ମାନବ ଯୋନିରେ ଜାତ ହୋଇଛି ଅର୍ଜ୍ଜୁନ
ମୁହିଁ ତାହାକୁ ସମରେ କରିବି ନିଧନ ।
ରାମ କୃଷ୍ଣ ଦୁହିଙ୍କୁ ମୁଁ ଅବଶ୍ୟ ଜିଣିବି
ଚିତ୍ରସେନ ଦ୍ୱାରକାରେ ରାଜା କରାଇବି ।
ଏରୂପେ ପ୍ରତିଜ୍ଞା ଯହୁଁ ସଦାଶିବ କଲେ
ସମସ୍ତ ଦେବତା ଶୁଣି ଦଣ୍ଡକୁ ସାଜିଲେ ।

ପାଣ୍ଡବ ଋଷିମାନଙ୍କୁ ସେଠାରେ ରୁହାଇ
ଦ୍ରୌପଦୀକି ସମର୍ପିଲେ ମାର୍କଣ୍ଡଙ୍କୁ ତହିଁ ।
ତୁମ୍ଭେ ରହିଥାଅ ଏହି ଗୋଦୋହନ ତୀର୍ଥେ
ଗୋବିନ୍ଦଙ୍କ ପାଶୁ ଆମ୍ଭେ ଆସିବା ପର୍ଯ୍ୟନ୍ତେ ।
ନକୁଳ ବୋଇଲେ ମୁହିଁ ଏଥେ ରହିଥିବି
ପ୍ରତ୍ୟହ ଋଷିଙ୍କୁ କନ୍ଦମୂଳ ଆଣିଦେବି ।
ଯୁଧିଷ୍ଠି ଭୀମ ଅର୍ଜ୍ଜୁନ ଆଉ ସହଦେବ
ପ୍ରଦ୍ୟୁମ୍ନ ସଙ୍ଗରେ ଗଲେ ଏ ଚାରି ପାଣ୍ଡବ ।
ଦ୍ୱାରକାରୁ ବାହାରିଣ ଯଦୁବଳ ଥାଟ
ଯାଆନ୍ତି ସେ ସରସ୍ୱତୀ ସରିତର ତଟ ।
ଗୋବିନ୍ଦ ଯେ ରହିଥିଲେ ଉଦ୍ରାଙ୍ଗୀ ପର୍ବତେ
ଅର୍ଜ୍ଜୁନର ଅପେକ୍ଷାକୁ ଚାହିଁ ବେନିଭ୍ରାତେ ।
ବିଚାର କରନ୍ତି ହରି ଆପଣାର ମନେ
ପ୍ରଦ୍ୟୁମ୍ନ ବିଳମ୍ବେ କାର୍ଯ୍ୟ ହେବ ସୁବିଧାନେ ।
ପଥ ଅନୁସରି ଛନ୍ତି ରାମ କୃଷ୍ଣ ଦୁଇ
ପାଣ୍ଡବେ ତହିଁ ମିଳିଲେ ପୁଷ୍ପକ ଆରୋହୀ ।
ରଥୁ ଓହ୍ଲାଇ ପାଣ୍ଡବ ଗଲେ ଭାଇ ଚାରି
ଯୁଧିଷ୍ଠିର ଦେଖି ହରି ପର୍ବତୁ ଉତୁରି ।
କୃଷ୍ଣ ନମିଲେ ଯୁଧିଷ୍ଠି ଦେବଙ୍କ ପୟର
ତୁମ୍ଭଙ୍କୁ ଦେଖି ମୋହର ମନ ହେଲା ସ୍ଥିର ।
ଗୋସିଂହକୁ ବଦକରି ଦ୍ୱାରକା ରଖିଲ
ଜରାସନ୍ଧର ଭୟରୁ ପୁଣି ପାରି କଲ ।
ଏବେ ଶୁଣିମା ଭୋ ଦେବ ମୋହର ଚରିତ
ବଳାତ୍କାରେ ମୋ ଦୁହିତା ନେଲା ଚିତ୍ରରଥ ।
ତହିଁର ନିମିତ୍ତ ମୁହିଁ ଯିବି ପରିଘାଇ
ତେତିଶ କୋଟି ଦେବତା ଛନ୍ତି ମେଳ ହୋଇ ।
ଆମ୍ଭର ସହିତେ ଇନ୍ଦ୍ର କରିବ ସମର
ତୁ ଯେବେ ମୋହର ସଖା ତ୍ରାହି ବେଗେକର ।
ଯୁଧିଷ୍ଠି ବୋଇଲେ ତୁମ୍ଭ ଶୁଣିମା ଗୋସାଇଁ
ତୋହର ସଞ୍ଚିତ ଆମ୍ଭେ ଅଟୁ ପାଞ୍ଚଭାଇ ।
ଆମ୍ଭେ ପଞ୍ଚଭ୍ରାତେ ତୁମ୍ଭ ଆଜ୍ଞାରେ ବରତି
କେବଣକଥାକୁ ଚିନ୍ତାକର ହେ ଶ୍ରୀବହି ।
ଆହେ ଦେବ ଜଗନ୍ନାଥ ତୋହର ପ୍ରସନ୍ନେ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ପାର୍ଥ ଶରମୁନେ ।
ବ୍ରହ୍ମା ରୁଦ୍ର ଇନ୍ଦ୍ର ଚନ୍ଦ୍ର କୁବେରାଦି କରି
ସକଳେ ଜିଣି ଭାଜନ ଅଟଇହେ ହରି ।
ନାରଦ ଯେତେ ମତରେ କହିଲେ ବଚନ
ମୋର ବାକ୍ୟରେ ପିତାକୁ ତେଜିଲା ଅର୍ଜ୍ଜୁନ ।
କୃଷ୍ଣ ବୋଇଲେ କୋଟିଏ ଶିବ କୋଟି ବ୍ରହ୍ମା
ଆଜି ସମରେ ଦେଖିବା ତାହାଙ୍କ ଗାରିମା ।

ଆଗୁଆଣି ଥାଟରେ ଯେ ଚଳେ ଉଗ୍ରସେନ
ଚଉଦ ଲକ୍ଷ ଯାଦବ ବଳଙ୍କୁ ଘେନିଣ ।
ଉଗ୍ରସେନ ରାଜା ଯହିଁ ଚଳାଏ ସଇନି
ଯଦୁ ଭୋଜବଂଶ ସୈନ୍ୟ କେ ପାରିବ ଗଣି ।
ବୃଷ୍ଣିବଂଶେ ବାସୁଦେବ ଅଟେ ଅଧିପତି
ଛପନକୋଟି ଯୋଦ୍ଧାଙ୍କ ତୁଲେ ମହାରଥୀ ।
ଉଦ୍ଧବ ଯେ ହରିହର ବଂଶେ ମହାବୀର
ପଞ୍ଚଦଶ କୋଟି ଯୋଦ୍ଧା ଅଙ୍ଗବଳ ତାର ।
ଅର୍କବଂଶରେ ଅନ୍ଧକ ଅଟେ ମହାରାଜା
ନବକୋଟି ଯୋଦ୍ଧା ତାର ସଙ୍ଗେ ମହାତେଜା
ଚୁହାଣ ବଂଶର ରାଜା ଅଟେ ପ୍ରସ୍ମାଜିତ
ତା ସଙ୍ଗେ ମୁକୁଟବନ୍ଧା ଯୋଦ୍ଧା ଅଇବ୍ରତ ।
ଏହିରୂପେ ଅପ୍ରମିତ ସୈନ୍ୟବଳ ସାଜି
ସମୁଦ୍ରପାୟ ଚଳନ୍ତି ସୈନ୍ୟ ଗଳଗାଜି ।
ହଳୀ ସଜହୋଇ ବିଜେ ତାଳଧ୍ୱଜ ରଥେ
ନନ୍ଦିଘୋଷ ରଥେ ବିଜେ କଲେ ବୀର ପାର୍ଥେ
ଗୋବିନ୍ଦ ବିଜୟ କଲେ ବୈନତେୟ ପିଠି
ମହାସମ୍ଭାରେ ଚଳଇ ବିଷ୍ଣୁଥାଟ ଗୋଟି ।
ପ୍ରଳୟ ସମାନ ଶୁଭେ ସୈନ୍ୟ ମୁଖଧ୍ୱନି
ଆକାଶ ଉଚ୍ଛୁଳେ ବାଜିଘୋଷ ମୁଖଧ୍ୱନି ।
ଅଶ୍ୱେକ ଆରୋହି ସହଦେବ ମନ୍ତ୍ରୀ ପୁଣି
ମଧ୍ୟରେ ଚଳନ୍ତି ହରି ସମସ୍ତଙ୍କୁ ଘେନି ।
ବଳରାମଙ୍କ କୋପରେ କମ୍ପଇ ବ୍ରହ୍ମାଣ୍ଡ
ଡରେ ନାଶକର କରେ ନ ଧରଇ ଦଣ୍ଡ ।
ତାଳଧ୍ୱଜ ରଥେ ଲକ୍ଷେ ଶାର୍ଦ୍ଦୁଳଙ୍କୁ ଯୋଚି
ସୌନନ୍ଦ ହଳ ମୂଷଳ ବେନିକରେ ଅଛି ।
ନୀଳଅମ୍ବର କଟିରେ ଲୋହିତ ଯା ବେଣୀ
ଶୁଦ୍ଧ ସ୍ଫଟିକର ଆଭା ଚନ୍ଦ୍ରମାକୁ ଜିଣି ।
ଷୋଳ ନୟନ ଯାହାର ବିକାଶ ମଉଳି
କାଦମ୍ବରୀ ପାନେ ସଦା ଯେହୁ ମତ୍ତଭୋଳି ।
ପରମବ୍ରହ୍ମ କଳାରେ ଯେହୁ ହୋଇ ଜନ୍ମ
ହଳମୁନେ ନବସୃଷ୍ଟି କଲେ ଉତ୍ତୋଳନ ।
ମସ୍ତକରେ ଶୋଭାପାଏ ଯାର ସପ୍ତଫେଣୀ
ସପତ ବ୍ରହ୍ମାଣ୍ଡକୁ ଯେ ଅଟନ୍ତି କାରେଣୀ ।
କାହୁଁ ଉତପତ୍ତି ହେଲା କେ ଜାଣେ ତୋ ନାମ
ଶୂନ୍ୟଶବ୍ଦ ହେଲା ତବ ନାମ ବଳରାମ ।
ଗୋଗୋଷ୍ଠରେ ଜନମ ତୁ ହୋଇଲୁ ଗୁପତେ
ତୋହର ମହିମା କିଏ ଜାଣିବ ଜଗତେ ।
ଅଣାକାର ପୁରୁଷ ତୁ ଆକାର ତୋ ନାହିଁ
ଶୂନ୍ୟକୁ କେବଣ ସ୍ତୁତି କରିବି ବା ମୁହିଁ ।

ନୀଳାଚଳନାଥ ତୁହି କକ୍ଷା ଜଗଜ୍ଜେଠୀ
କିଞ୍ଚିତ ଭକ୍ତିରେ ଭଜେ ତବ ନାମଗୋଟି ।
ମେରୁ ହିମବନ୍ତ ନୀଳକନ୍ଦର ମଳୟା
ଏ ଚାରି ପର୍ବତ ଶିଖ ତୋର ନିଜ କାୟା ।
ସ୍ୱାମୀ କୋଟିଏ ସିଂହର ତୋର ପରାକ୍ରମ
ଶ୍ରୀଭୁଜେ ବଜ୍ର ଲଙ୍ଗଳ ଅତି ଅନୁପମ ।
ସ୍ୱାମୀ ତୋହର ରୂପଟି ନିନ୍ଦେ କୋଟିକାମ
ବଇକୁଣ୍ଠର ଉପରେ ତୋହର ଆଶ୍ରମ ।
ତବ ପାଦପଦ୍ମେ ଶତସହସ୍ର ପ୍ରଣମି
ମୋର ଅପରାଧ କ୍ଷମାକର ଦେବସ୍ୱାମୀ ।
ନିଶ୍ଚଳ ନିରାଲମ୍ବ ତୁ ପରଂବ୍ରହ୍ମ ଯୋଗୀ
ଯା ଦର୍ଶନେ ନାଶକର ଦଣ୍ଡ ପରିତ୍ୟାଗୀ ।
ଯାହାର ଆୟୁଧ କରେ ହଳ ଯେ ମୂଷଳ
ରେବତୀ ଦେବୀ ବଲ୍ଲଭ ଜୟ କାମପାଳ ।
ବିଷ୍ଣୁଙ୍କର ଜ୍ୟେଷ୍ଠଭ୍ରାତ ପବିତ୍ର ଯା ନାମ
ଶାରଳା ଦାସ ମାଗଇ ଧର୍ମ ମୋକ୍ଷ କାମ ।

■■■

## ଇନ୍ଦ୍ରାଦିଦେବଙ୍କ ସହିତ ରାମକୃଷ୍ଣଙ୍କ ଯୁଦ୍ଧ ଓ ସଚଳାର ବିବାହ

ଏଥୁଅନ୍ତେ ବୈବସ୍ୱତ ଅଗସ୍ତିଙ୍କ ପାଶେ
ପୁଚ୍ଛାକଲେ ଦେବତାଏ କି କଲେ ଆକାଶେ ।
ଅଗସ୍ତି କହିଲେ ଶୁଣ ମନୁ ମହାଜ୍ଞାତା
ଶିବଙ୍କୁ ପୁଚ୍ଛେ ବିନୟେ ବାସବ ଦେବତା ।
ସମାରୋହେ ଥାଟ ଘେନି କୃଷ୍ଣ ବଳରାମ
ଆକାଶ ଗଙ୍ଗାକୂଳରେ କରନ୍ତି ଗମନ ।
ତହୁଁ ଈଶ୍ୱର ବୋଇଲେ ଦେବଙ୍କୁ ହକାରି
ମନ୍ଦର ପର୍ବତେ ଆସି ସୈନ୍ୟ ସଜକରି ।
ଅମରଗଣଙ୍କୁ ଘେନି ଦେବ ସୁରପତି
ଆରୋହଣ କଲେ ବେଗେ ଐରାବତ ହସ୍ତୀ ।
ଶ୍ରୀଭୁଜରେ ଶୋଭାବନ ବଜ୍ର ଯେ ଆୟୁଧ
ଯେଉଁ ଅସ୍ତ୍ରେ ଜମ୍ଭଦୈତ୍ୟ ପ୍ରାଣ କଲେ ବଧ ।
ଗିରିଙ୍କ ଡେଣା ଛେଦିଲେ ଯେଉଁ ଅସ୍ତ୍ରଧରି
ସେ ଅସ୍ତ୍ର ଧରିଣ ଗଜ ଆରୋହଣ କରି ।
ଚଉରାଶୀ କୋଟି ପୁତ୍ର ଇନ୍ଦ୍ରଦେବ ସଙ୍ଗେ
ପାରିଜାତ ମାଳା ଅଛି ସବୁଙ୍କର ଅଙ୍ଗେ ।
ରତ୍ନ ଜଡ଼ିତ ମୁକୁଟ ଅଛଇ କପାଳେ
ଅମର ଗଣଙ୍କୁ ଘେନି ବିଜେ ଆଖଣ୍ଡଳେ ।
ଚୌଦକୋଟି ଶିବଗଣ ଘେନି ତ୍ରିଲୋଚନ
କାର୍ତ୍ତିକେୟ ବିଜେକଲେ ମୟୂର ବାହନ ।
ନବଲକ୍ଷ ଡମ୍ବରୁ ଯେ ବାଜୁଅଛି ଶୂନ୍ୟେ
ବିକଟରୂପା ଭ୍ରୂକୁଟି ସଜ ହେଲେ ରଣେ ।
ଶିବ ଭୁଜେ ଶୋଭାପାଏ ପିନାକୀ କାର୍ମୁକ
ତ୍ରିଶୂଳକୁ ଧରିଛନ୍ତି ପୁଣି ତ୍ରିଅମ୍ବକ ।
ବାମ ଦକ୍ଷିଣ କନ୍ଧରେ ଅଛି ଦ୍ରୋଣ ବେନି
ପାଶୁପତ ନାରାଚକୁ କରେ ଛନ୍ତି ଘେନି ।
ଅଷ୍ଟରତନର ହାର ଲମ୍ବାଇ ହୃଦରେ
ଅନନ୍ତ ନାଗ ପଇତା ଶୋଭଇ କନ୍ଧରେ ।
ଯୋଗେଶ୍ୱର ପୁରୁଷ ଯେ ଯୋଗେ ମହାଯୋଗୀ
ଶ୍ମଶାନବାସୀ ମଳୟବାତ ସଦାଭୋଗୀ ।
ଗର୍ବିତପଣେ ସମୟେ ବ୍ରହ୍ମା ମୁଣ୍ଡ ମୋଡ଼ି
ମହାଯୋଗୀ ସାଧି ପୁଣି ବ୍ରହ୍ମହତ୍ୟା ଏଡ଼ି ।
ଦକ୍ଷ ପ୍ରଜାପତିଙ୍କର ମହାଯଜ୍ଞ ଭଞ୍ଜା
ଗୁରୁପତ୍ନୀ ଶାପେ ଯାର ହେଲା ଲିଙ୍ଗପୂଜା ।
ଧବଳ ଜ୍ୟୋତି ଯାହାର ମଉଳି କୁଣ୍ଡଳୀ
ଭାବେ ଦୟାଳୁ ଅଭାବେ ହେଉ କୋପଶାଳୀ
ଶିରେ ଫୁଫୁକାର କରି ଗର୍ଜେ ମହାନାଗ
ଶିବଗଣ ଘେନି ହର ଅଇଲେକ ବେଗ ।
ନନ୍ଦୀକେଶ ମହାକାଳ ଆଉ ବିନାୟକ
ଚଣ୍ଡ ପ୍ରଚଣ୍ଡ ଆବର ଜୟ ଜୟନ୍ତକ ।
ଭୀମେକ ଯେ ମଣିଭଦ୍ର ଦୁହେଁ ଛନ୍ତି କତି
ଇନ୍ଦୁର ବାହନେ ବିଜେକଲେ ଗଣପତି ।
ହୃଦେ ନାଗ ଆଭରଣ କରରେ ପରଶୁ
ଶିରେ ସୀମନ୍ତିନୀ ଶୋହେ ମଉଳି ଶୀତାଂଶୁ ।
ବିଜୟ କଲେ ମହେଶ ଚଢ଼ି ବୃଷପିଠି
ଚଳନ୍ତି କଉତୁକରେ ଗଣ ଯେ ଭ୍ରୂକୁଟି ।
ରୁଦ୍ରଗଣଙ୍କ ସଙ୍ଗରେ ବିଜେ ସୁରନାଥେ
ବିଜୟ କଲେ ଧୂର୍ଜ୍ଜଟି ମନ୍ଦର ପର୍ବତେ ।
କୁବେର ବିଜୟେ ଯକ୍ଷଗଣଙ୍କ ସହିତେ
କୃତାନ୍ତକ ବଳ ଘେନି ଯମ ଦଇବତେ ।
କାଳ ବିକାଳେ ବାଷଠି କୋଟି ସୈନ୍ୟ ଘେନି
ଯମ ବିଜୟ ମନ୍ଦର ପର୍ବତରେ ପୁଣି ।
ଆବର୍ତ୍ତକ ସମ୍ବର୍ତ୍ତକ ଦ୍ରୋଣ ଯେ ପୁଷ୍କର
ଲୋହିତ ମେଘ ପିଙ୍ଗଳ ମେଘ ନୀଳୋତ୍ପଳ ।
ଜଳଘଣ୍ଟ ଧୂଳିମେଘ ଆଉ ଶ୍ୱେତମେଘ
ପବନ ପାତିଆ ମେଘ ଚଳନ୍ତା ଯେ ମେଘ ।
ଏହିପରି ନବଲକ୍ଷ ମେଘମାଳ ଗଲେ
ମନ୍ଦର ଭୂଧରେ ଯାଇ ପରବେଶ ହେଲେ ।
ଇନ୍ଦ୍ର ବାକ୍ୟେ ଅଇଲେକ ଅଣଚାଶ ବାତ
ଏହାଙ୍କର ପାରିଷଦଗଣଙ୍କ ସହିତ ।

କାଳାନ୍ତକ ବିରୋଳ ଯେ ମଳୟ ପବନ
ବନସ୍ତ ଶିଶିର ଯୋଗ ଉଦ୍ଦଣ୍ଡ ପବନ ।
ପ୍ରାଣ ଉଦାନ୍ ଧୂମାନ୍ତ ପ୍ରାଣାନ୍ତ ପବନ
ମହାବାତ କୃତାନ୍ତକ ଘୂରଣ ପବନ ।
ଜଳତରଙ୍ଗ ନୈର୍ଋତ ଧାମନ୍ତ ପବନ
ତାରଣ ମାତଙ୍ଗ ଘୋର ଅର୍ଜ୍ଜନ ପବନ ।
ମଳୟ ଜଳ ଅନ୍ତକ ଚନ୍ଦ୍ରାର୍କ ପବନ
ଜଠର ଲୋହିତ ଭୋଗ ବୀଣାର ପବନ ।
ଏରୂପେ ପବନ ଧରି ଅଣଚାଶ ମୂର୍ତ୍ତି
ହିମମନ୍ତ ପର୍ବତରେ ଯାଇଣ ମିଳନ୍ତି ।
ବିନ୍ଧ୍ୟ ମହେନ୍ଦ୍ର ମଳୟ ତପନ ପର୍ବତ
ଗନ୍ଧମାଦନ ଆଦି ଯେ ପୁଣି ମାଲ୍ୟବନ୍ତ ।
ଆଠଲକ୍ଷ ପର୍ବତ ଯେ ଘେନି ହିମବନ୍ତ
ସେହି ଯାଇ ମିଳିଗଲା ମେରୁର ସହିତ ।
ଗ୍ରହଗଣଙ୍କ ସହିତେ ବିଜେ ଦିନକର
ବ୍ରହ୍ମାଗଣ ଘେନି ବିଜେ କଲେ ବେଦବର ।
ଆଦିତ୍ୟ ମଙ୍ଗଳ ନବଗ୍ରହ ବୃହସ୍ପତି
ନଳକୁବେର ସହିତେ ସାଗରର ପତି ।
ସଜ ହୋଇଣ ବାହାର ହୋଇଲେ ବହନି
ଏହାଙ୍କର ସଙ୍ଗେ ଛନ୍ତି ଚଉବିଂଶ ଅଗ୍ନି ।
ଜଳଚର ସୈନ୍ୟ ଘେନି ବିଜେ ବାରାନିଧି
ଦେବ ସଭାରେ ମିଳିଲେ ଦେଖାଇ ସମୃଦ୍ଧି ।
ଯେ ଯାହାରେ ସୈନ୍ୟମାନ ଘେନି ଦେବଗଣ
ମେରୁ ମେଖଳରେ ଯାଇ ମିଳିଲେ ବହନ ।
ଏରୂପେ ସୈନ୍ୟ ତହିଁ ମିଳିଲେ ସକଳ
ଏ ସକଳ ସୈନ୍ୟ ଦେଖି ହର୍ଷ ଆଖଣ୍ଡଳ ।
ଶତଯୁଣ ହିମବନ୍ତ ଗିରି ଆୟତନ
ପୁରିଲେ ବୃନ୍ଦାର୍କେ ତହିଁ ନ ରହିଲା ସ୍ଥାନ ।
ବଜାଅନ୍ତି ବିଜିଘୋଷ ଆବର ଦୁନ୍ଦୁଭି
ଭାବନ୍ତି ସେ ରାମକୃଷ୍ଣ ହୋଇବେ ପ୍ରାଭବି ।
ଏମନ୍ତ ଭାଳି ରହିଲେ ମନ୍ଦର ପର୍ବତେ
ଏଥୁଅନ୍ତେ ମନୁରାଜା ଶୁଣ ଏକଚିତ୍ତେ ।
ପଞ୍ଚପାଣ୍ଡବ ଯାଦବ ସଙ୍ଗରେ ଘେନିଣ
ଅଇଲେ ରାମ ଶ୍ରୀକୃଷ୍ଣ ଦ୍ୱାରକା ତେଜିଣ ।
ଗନ୍ଧମାର୍ଦନ ନାମରେ ଯେବଣ ପର୍ବତ
ତା ବିସ୍ତାର ଆୟତନ ଯୋଜନ ଯେ ସାତ ।
ଅନେକ ଔଷଧି ଅଛି ସେ ପର୍ବତପରେ
ଶ୍ରୀରାମ କୃଷ୍ଣ ରହିଲେ ତହିଁର ଉପରେ ।
ପୂର୍ବରେ ଗନ୍ଧମାଦନ ପଶ୍ଚିମେ ମନ୍ଦର
ଏ ମଧ୍ୟରେ ଛଡ଼ା ଭୂମି ଯୋଜନ ଯେ ବାର ।

ଉଚ୍ଚବାଚ ହୋଇ ସର୍ବେ ରହିଲେ ଦ୍ୱିବଳ
ଧନୁଘୋଷ ଶବଦରେ ଉପୁଜଇ ଗୋଳ ।
ନାରଦ ଯାନ୍ତେ ଯୁଧିଷ୍ଠି ତାହାଙ୍କୁ ଯେ କହି
ତୁମ୍ଭେ ମୁନି ଯାଇ ବାର୍ତ୍ତା କହ ସୁରସାଇଁ ।
ସଚଳା କନ୍ୟାକୁ ଘେନି ଆସୁ ପୁରନ୍ଦର
ଇନ୍ଦ୍ର ଗୋବିନ୍ଦଙ୍କ ବୃଥା ନୋହୁ ସେ ସମର ।
ଯୁଧିଷ୍ଠି ବଚନ ଶୁଣି ଗଲେ ବ୍ରହ୍ମାସୁତ
ମନଯାନେ ବିଜେକଲେ ମନ୍ଦର ପର୍ବତ ।
ଚିତ୍ରରଥକୁ ହକାରି ପାଶେ ବ୍ରହ୍ମାସୁତ
ବୋଇଲେ ତୋହର ଅଟେ ଜୀବନ ଯେ ସାର୍ଥ
ଜଗନ୍ନାଥ ଦୁହିତାକୁ ତୁ ଆଣିଛୁ ହରି
ଅମର ନାୟିକା ତାକୁ ନୁହଇ ଯେ ସରି ।
ତାହାର ସଦୃଶ ହରି ନ ପାଇଲେ ବର
ବହୁ ଅନ୍ୱେଷି ପାଇଲେ ନାହିଁ ତିନିପୁର ।
ପୁରୁଷଙ୍କର ମଧ୍ୟରେ ସୁନ୍ଦର ତୁ ଅଟୁ
ସଚଳା କନ୍ୟା ରୂପକୁ ତୁହି ଏକା ଅଟୁ ।
ଯୁଧିଷ୍ଠି ଦେବ ବୋଇଲେ ଆମ୍ଭଙ୍କୁ ହକାରି
ଦ୍ୱନ୍ଦ୍ୱ ନୋହୁ ସମର୍ପଣ କରନ୍ତୁ କୁମାରୀ ।
ତୁହି ତ ଲୋଡ଼ି ନ ଯାଇ ପାଇଛୁ ଅଭୂତେ
ବିଗ୍ରହ ଏବେ ଉପୁଜେ ମେଣ୍ଟିବୁ କେମନ୍ତେ ।
ବ୍ରହ୍ମାଦି ଦେବତା ବିଜେ ସର୍ବେ ସୈନ୍ୟ ଘେନି
ରାମ କୃଷ୍ଣ ପାଣ୍ଡବାଦି ଯାଦବ ସଇନି ।
ଦ୍ୱନ୍ଦ୍ୱ ନ ଉପୁଜୁ କନ୍ୟା ସମର୍ପ ତୁ ଆଣି
ଇଚ୍ଛାହେଲେ ତୋତେ କନ୍ୟା ସମର୍ପିବେ ପୁଣି
ଚିତ୍ରସେନ ବୋଲେ ମୁହିଁ ନ କଲି ହରଣ
ଆସୁ ଆସୁ ବିରହିଣୀ କଲାକ ବରଣ ।
ମୋତେ ସେହି ବରିଅଛି ମାଳା ଦେଇକରି
ଆନେ ପ୍ରଦାନ କିପରି କରିବେ ଶ୍ରୀହରି ।
ଗର୍ବଭାବ ତେଜି ପ୍ରୀତିକରି ସେ ଆସନ୍ତୁ
ସବିଧାନେ ଦୁହିତାକୁ ପ୍ରଦାନ କରନ୍ତୁ ।
ହେ ନାରଦ ମୁନି ତୁମ୍ଭେ କହ ବେଗେ ଯାଇ
ସମସ୍ତେ ନାଶ ଯିବେଟି ସଚଳାର ପାଇଁ ।
ଭଲରେ ଦେଲେ ରହିବ ତାଙ୍କ ବଡ଼ପଣ
ପ୍ରଦାନ କଲେ ରହିବ ବନ୍ଧୁପଣ ଜାଣ ।
ମନ୍ଦ ଭାବିଲେ ଆମ୍ଭଙ୍କୁ ନୋହିବ ସେ ସରି
ଧାତା ଶିବଦିଗପାଳ ଯା ସହାୟକାରୀ ।
ଚିତ୍ରସେନ ବଚନରେ ଉଠି ତପୋନିଷ୍ଠୀ
ଯାଇଣ ଭେଟିଲେ ସେହୁ ଧରମ ଯୁଧିଷ୍ଠି ।
ହେ ଧର୍ମ ଅନେକ ମତେ କହିଲେ ତାହାଙ୍କୁ
ଶାସ୍ତ୍ରକଥା ରୁଚଇ କି ତସ୍କର ଜନଙ୍କୁ ।

ବଧିର ନ ଶୁଣେ ଯଥା କମ୍ବୁର ନିସ୍ୱନ
ଗୋପାଳେ ଚିହ୍ନିବେ କାହିଁ ଅମୂଲ୍ୟ ରତନ ।
ତୋ କଥା ଶୁଣି ଅପାର କଲା ସେହୁ କୋପ
ଇନ୍ଦୁର ବିବାଦେ ଯେହ୍ନେ ଗର୍ଜେ କାଳସର୍ପ ।
ନାରଦ ବଚନ ଶୁଣି କୋପକଲେ ହଳୀ
ସୌନନ୍ଦ ମୂଷଳକୁ ସେ ବୁଲାଇଲେ ତୋଳି ।
ଯୁଧିଷ୍ଠି ଦେବ ବୋଇଲେ ଶୁଣ ବଳରାମ
ଦଣ୍ଡଘେନି ଦଣ୍ଡେ ଏବେ କରନ୍ତୁ ବିଶ୍ରାମ ।
ସନ୍ଧିସମ୍ବନ୍ଧ ନୋହିଲେ ଯିବା ଦ୍ୱନ୍ଦ୍ୱ କରି
କିଞ୍ଚିତ କଥାରେ ତୁମ୍ଭେ ନୁହ ମରାମରି ।
ମୁହିଁ ନିଜେ ଯିବି ଏବେ ମନ୍ଦର ଗିରିକୁ
ସମାଧାନ କରି କିଛି କହିବି ଇନ୍ଦ୍ରକୁ ।
ମୋହର ବୋଲରେ ଯେବେ ନ ଦେବ କୁମାରୀ
ତେବେ ବୁଝିଣ ପଛକେ ହେବା ଦ୍ୱନ୍ଦ୍ୱକାରୀ ।
ଗନ୍ଧମାଦନ ପର୍ବତୁ ଗଲେ ଧର୍ମସୁତେ
ବୈଜୟନ୍ତୀ ମାଳଗୋଟି ଘେନିଛନ୍ତି ହସ୍ତେ ।
ସହଦେବ ବୋଲେ ଦେବ ନ ଯାଆନ୍ତୁ ଏକା
ଭୀମସେନ ଠାକୁରଙ୍କୁ ନ୍ୟନ୍ତି କରି ସଖା ।
ବିଗ୍ରହ କାଳରେ କଥା ନୁହଇ ଯେ ସାଧ
ସହି ନ ପାରିଲେ ଯଦି ଉପୁଜିବ ଦ୍ୱନ୍ଦ୍ୱ ।
ଦୁଷ୍ଟଗଣ ସେହିଠାରେ ହୋଇଛନ୍ତି ମେଳି
ଭୀମଠାକୁରକୁ ନ୍ୟନ୍ତୁ ଆଣିବେ ସମ୍ଭାଳି ।
ଗୋବିନ୍ଦ ବୋଇଲେ ଶୁଣ ମନ୍ତ୍ରୀର ବଚନ
ଯାଅ ଠାକୁରଙ୍କ ସଙ୍ଗେ ଆହେ ଭୀମସେନ ।
ବାଆନ ବାଆନ ଭାର ବେନି ଗଦା ଘେନି
କୃତାନ୍ତକ ରୂପ ଧରି ଚଳିଲା ପାବନୀ ।
ପହଞ୍ଚିଲେ ଧର୍ମସୁତ ମନ୍ଦର ପର୍ବତେ
ବିଜେ କରିଛନ୍ତି ଇନ୍ଦ୍ର ହସ୍ତୀ ଐରାବତେ ।
ଯୁଧିଷ୍ଠିଙ୍କୁ ଦେଖି ଇନ୍ଦ୍ର ହସ୍ତୀରୁ ଉତୁରି
ବସିଲେ ଆସ୍ଥାନେ ବ୍ରହ୍ମା ସହ ଶୂଳଧାରୀ ।
ମନ୍ଦର ପର୍ବତ ପାଞ୍ଚ ପାବଚ୍ଛର ତଳେ
ପ୍ରଣାମ କରି ଶୁତିଲେ ଦେବ ଧର୍ମବାଳେ ।
କୋପେଣ ତାଙ୍କୁ ଉତ୍ତର ଦେଲେ ଦେବଇନ୍ଦ୍ର
ଆରେ ରେ ପାଣ୍ଡବା ତୁମ୍ଭେ ଅଟ ବଡ଼ ମନ୍ଦ ।
ଆଦ୍ୟରୁ ତ ଉପୁଜିଲେ ଗୋଳକୁଣ୍ଡାପଣେ
ଦୁର୍ବାସାଙ୍କ ମନ୍ତ୍ରବଳେ ତୁମ୍ଭେ ଜାତ ଏଣେ
ଦିଗପାଳଙ୍କର ତହୁଁ ଉପୁଜିଲ ତୁମ୍ଭେ
ବଢ଼ିଲ ଗୋପାଳ ସଙ୍ଗେ ତୁମ୍ଭେ ମୂଢ଼ଭାବେ ।
ଗଉଡ଼େ ବଢ଼ିଲ ଯେଣୁ ମନୁଷ୍ୟ ପ୍ରକୃତି
ଏଣୁକରି ତୁମ୍ଭେମାନେ ହେଲ ମୂଢ଼ମତି ।

ଗଉଡ଼ ବାଉଡ଼ ଅଟ ହାଉଡ଼ରେ ତୁମ୍ଭେ
ଗୋଳକୁଣ୍ଡା ଜାରଜାତ କିପାଁ ଆସ ଏବେ ।
ତୁମ୍ଭର ତାହାର ହେଲା ଏଡ଼େ ବନ୍ଧୁପଣ
ପିତାର କଥାକୁ ତୁମ୍ଭେ କଲ ହେୟଜ୍ଞାନ ।
ଅବିବାହୀ କନ୍ୟାକୁ ସେ ପୁରେ ରଖିଥିଲା
ମୋହର ପୁତ୍ରକୁ ସେହୁ ଇଚ୍ଛାଏ ବରିଲା ।
ଶୁଣି ଯୁଧିଷ୍ଠି ବୋଇଲେ କୋପ ଛାଡ଼ ରାୟେ
ମନ୍ଦବେଳରେ ଜନମ କରିଛ ତନୟେ ।
ଥୋକାଏତ ପୁତ୍ର ବଂଶ ରକ୍ଷା ଯେ କରନ୍ତି
ଥୋକାଏତ ପୁତ୍ର ପୁଣି ବଂଶକୁ ନାଶନ୍ତି ।
ପରସ୍ତ୍ରୀ ରମଣେ ଜନେ ନାଶ ଯାଇଛନ୍ତି
ତାରା ଅଭିଳାଷେ ତନୁକ୍ଷୀଣ ନିଶାପତି ।
ଜାନକୀ ହରଣେ ନାଶ ହୋଇଲା ରାବଣ
ଅହଲ୍ୟା ହରଣେ କିସ ନ ହେଲ ଆପଣ ।
ଗଉତମ ଶାପେ ତୋର ଛିଡ଼ିଲା ବୃଷଣ
ମେଷଅଣ୍ଡ ଲଗାଇଲେ ସାବିତ୍ରୀ ରମଣ ।
ପୁତ୍ରେ ନ ତିଆରୁ କଲା ଏମନ୍ତ ପ୍ରକୃତି
ଏବେ ରାମ କୋପେ ନାଶ ହୋଇବ ସଂପ୍ରତି
ଯେବେ ବୋଇଲୁ ତ ପୁତ୍ର ଆଣିଲା ଅଜ୍ଞାନେ
ସନ୍ଧି କରିବାକୁ କିପାଁ ନ ଭାଳୁଛୁ ମନେ ।
କୁମାରୀ ଘେନିଣ ଚାଲ ଯିବା ଜମ୍ଭଭେଦୀ
ଜଗତନାଥ ସଙ୍ଗତେ ନ ହୁଅ ବିବାଦୀ ।
ଯେଉଁ ରାମ କାଦମ୍ବରୀ ପାନେ ସଦା ଭୋଳ
ଶରଣ ପଞ୍ଜର ନାଥ ଭକତ ବତ୍ସଳ ।
ମୁହିଁ ତୋତେ ମୁକୁଳାଇ ଦେବି ନିଶ୍ଚେଁ ଜାଣ
କୋପ ତେଜିବେ ତୋଠାରୁ ଦେବ ନାରାୟଣ
କାହାବଳେ ଏଡ଼େ ଦ୍ୱନ୍ଦ୍ୱ କରୁ ସୁରସାଇଁ
କାଳେ ରଖି ନ ପାରିବେ ତୁମ୍ଭଙ୍କୁ ଯେ କେହି ।
ଆବର ତୋହର ବୁଦ୍ଧି ଅଟଇ ଯେ ମନ୍ଦ
ଅର୍ଜୁନ ଛାଡ଼ିଲା ତୋତେ ପଡ଼ିଲା ପ୍ରମାଦ ।
ଧନଞ୍ଜୟ ପ୍ରାୟେ ପୁତ୍ର ତେଜିଲା ଯେ କାଳେ
କର୍ମର ଅବଳ ତୋର ଅଟେ ଆଖଣ୍ଡଳେ ।
ବ୍ରହ୍ମା ରହି ପାରିବେ କି ଜଗଦ୍‌ପିତା ପଣେ
ଏତେ ସମ୍ପଦ ନାଶିବୁ କିପାଁ ଅକାରଣେ ।
ପବନଦେବ ଆମ୍ଭର ପିଅର ଅଟନ୍ତି
ଯମ କୁବେର ବରୁଣ କେ ଯାକୁ ଜାଣନ୍ତି ।
ପରମ ପଣ୍ଡିତ ତୁହି କି ନିମନ୍ତେ ବଣା
ରାମ କୃଷ୍ଣ ବେନିଭାଇ ସଂସାର ଧାରଣା ।
କହୁଁ କହୁଁ ଯୁଧିଷ୍ଠିଙ୍କ ବଢ଼ିଲାକ କୋହ
ତୁମ୍ଭବଳେ ରାମକୃଷ୍ଣ କେହି ସମ ନୁହଁ ।

ସତ୍ୟଭାମା ବାକ୍ୟେ ହରି ନେଲେ ପାରିଜାତ
ଗରୁଡ଼ ହରି ଆଣିଲା ସ୍ୱର୍ଗରୁ ଅମୃତ ।
ଗୋପ ଗୋବତ୍ସ ରକ୍ଷାର୍ଥେ ଗୋବର୍ଦ୍ଧନ ଗିରି
ବାମ କାଣି ଅଙ୍ଗୁଳିରେ ଜାଣ ଥିଲେ ଧରି ।
ସାତଦିନ ବୃଷ୍ଟି ତୁହି କଲୁ ସୁରେଶ୍ୱର
ପରିଶେଷରେ ହାରିଲୁ କି ହେଲା ତାଙ୍କର ।
ଏପରି କହିଲେ ଯହୁଁ ଧର୍ମ ଯୁଧିଷ୍ଠିର
ଶୁଣି କୋପରେ ଜଳିଲା ଦେବ ସୁନାସୀର ।
କୋପେ ଆରକ୍ତ ଲୋଚନ କରି ମଘବାନ
ବୋଲେ ଯୁଧିଷ୍ଠିଙ୍କୁ ନାଶ କର ଚିତ୍ରସେନ ।
ଯହୁଁ ୟା କହିଲେ ଇନ୍ଦ୍ର କରି କୋପଦୃଷ୍ଟି
ବେଗେ ପର୍ବତୁ ଓହ୍ଲାଇ ଅଇଲେ ଯୁଧିଷ୍ଠି ।
ପିତାର ଏହି ବଚନ ଶୁଣି ବିଦ୍ୟାଧର
କରରେ ଧଇଲେ ସେହି ବଜ୍ର ମୁଦ୍ଗର ।
କୁରାଳଚକ୍ର ପରାୟେ ତାହାକୁ ବୁଲାଇ
ଯୁଧିଷ୍ଠିଙ୍କୁ ପିଟିବାକୁ ଥିଲା ସେ ଉଠାଇ ।
ଏହା ଶୁଣି ଯୁଧିଷ୍ଠିଙ୍କୁ ଭୀମ ପଛକଲା
ଆଗେ ରହି ଚିତ୍ରସେନ ମୁଦ୍‌ଗରକୁ ନେଲା ।
ବାହାନାଦ ଦେଇ କୋପେ ଗରଜିଣ ଭୀମ
ଶତଶୃଙ୍ଗକୁ ସୁମରି କଲା ପରାକ୍ରମ ।
ଯୁଧିଷ୍ଠିଙ୍କୁ ବୋଲେ ବେଗେ ବାହୁଡ଼ ହେ ଭ୍ରାତ
ମୁଁ ଆସି ନ ଥିଲେ ତୁମ୍ଭେ ବରତି ନ ଥାନ୍ତା ।
ଏକା ଆସୁଥିଲ ଏଥେ ତୁମ୍ଭେ ସନ୍ଧିକରି
ନିଶ୍ଚେଁ ଏ ପର୍ବତେ ଆଜ ପଡ଼ିଥାନ୍ତ ମରି ।
ଏତେ ବୋଲି ଭୀମକରେ ମୁଦ୍ଗର ଧରି
ପିଟିଲା ଚିତ୍ରସେନର ରଥେ ବେଗକରି ।
ମହାବଳବନ୍ତ ସେହୁ ରଣେ ରଣଷଣ୍ଢ
ପ୍ରହାରନ୍ତେ ତାର ରଥ ହେଲା ମସିଗୁଣ୍ଡ ।
ଚିତ୍ରସେନ ରଥ ଯହୁଁ ପଡ଼ିଲାକ ଭାଜି
ଅଙ୍ଗାରପନ୍ନଗ ତହୁଁ ଉଠେ ଗଳଗାଜି ।
ବୃନ୍ଦବକା ତୃଳାକର୍ଣ୍ଣ ବଳି ବିଶ୍ୱାବସୁ
କୋପେ ଓଗାଳିଲେ ଆଗେ ଭୀମ ଆସୁ ଆସୁ
ବାସବ ପୁତ୍ର ଗନ୍ଧର୍ବ ଥିଲେ ଲକ୍ଷେ ଚାରି
ଭୀମସେନକୁ ଘେରିଲେ ଶତେପୁର କରି ।
ବିନ୍ଧନ୍ତି ଚକ୍ର ଲାଙ୍କିଆ ଛେଲ ଗଦା କାତି
କୁନ୍ତ ମୁଷଳ ଏ ଆଦି ଅସ୍ତ୍ର ବରଷନ୍ତି ।
ଆଦିତ୍ୟ ତେଜ ପରାୟେ ଝଲକେ ଲାଙ୍କିଆ
ବରଷନ୍ତି ବିଦ୍ୟାଧର ଭୀମ ପାତେ ହିଆ ।
ଯୁଧିଷ୍ଠିଦେବ ସେଠାରୁ ଅଇଲେ ପଳାଇ
ଗନ୍ଧମାଦନ ପର୍ବତେ ମିଳିଲେକ ଯାଇ ।
ଯୁଧିଷ୍ଠିଦେବଙ୍କୁ ଦେଖି ପଚାରନ୍ତି ହରି
କେବଣ ନିମନ୍ତେ ଖର ନିଶ୍ୱାସ ତୁମ୍ଭରି ।
ବୋଇଲେ ଡରି ଆସିଲି ମୁହିଁ ଧର୍ମବଳେ
ଭୀମସେନ ପଡ଼ିଲାକ ସମର କନ୍ଦଳେ ।
ଆବର ସୋଦରକୁ ମୁଁ ପାଇବି କି ନାହିଁ
ମୁହିଁ ଅଇଲି ଭୀମକୁ ତହିଁ ଛାଡ଼ିଦେଇ ।
ଯୁଧିଷ୍ଠିଦେବ ଏମନ୍ତ କହିବାର ବେଳେ
ଶୁଣି ପର୍ବତୁ ଡେଇଁଣ ଦେବ କାମପାଳେ ।
ରଥ ସହିତେ ଦେବ ନ କଲେ ଆରୋହଣ
ହଳ ମୂଷଳ ବୁଲାଇ ଧାଇଁଲେ ପାଦେଣ ।
ଏରୂପେ କୋପେ ଧାଇଁଲେ ଯହୁଁ ଦେବହରି
ଧାଇଁଲେ ଯାଦବ ବଳ ତାଙ୍କ ସଙ୍ଗେ ମିଳି ।
ସାତବଂଶକୁ ଘେନିଣ ଧାଉଁ ହଳହସ୍ତ
ଅର୍ଜ୍ଜୁନ ବିଜୟ କଲେ ନନ୍ଦିଘୋଷ ରଥ ।
ବୈନତେୟ ବାହନରେ ବିଜେ ଜଗନ୍ନାଥେ
ଶଙ୍ଖ ଚକ୍ର କୌମୋଦକୀ ଗଦାବର ହସ୍ତେ ।
ଦେବଦତ୍ତ ଶଙ୍ଖ ହରି କଲେକ ଶବଦ
ଆକାଶ ଉଚ୍ଛୁଳାଇଲା ସେହି ଶଙ୍ଖନାଦ ।
ଭୀମଙ୍କ କର୍ଣ୍ଣେ ଶୁଭିଲା ଯହୁଁ ଶଙ୍ଖଧ୍ୱନି
ମହାରାଗରେ ଉଠିଲା ତହୁଁ ଶିରଝୁଣି ।
ଗଦାବର ଚଳାଇଣ ପିଟିଲାକ ଭୀମ
ଜୟସେନର ରଥକୁ କରିଦେଲା ଚୂର୍ଣ୍ଣ ।
ଅଙ୍ଗାରପନ୍ନଗ ରଥ ଧରି ବାମକରେ
ପିଟିଲାକ ବିଶ୍ୱାବସୁ ଗନ୍ଧର୍ବ ଉପରେ ।
ସେହି ପ୍ରକାରେ ଭାଙ୍ଗିଲା ତାଙ୍କ ରଥ ବେନି
ଭୟେ ତହୁଁ ବେନିଭାଗ ହୋଇଲେ ସଇନି ।
ପୁନରପି ବିଦ୍ୟାଧର ଭୀମକୁ କଟାଳି
ଗର୍ଜି ଉଠିଲା ପାଣ୍ଡବ ବୀର ମହାବଳୀ ।
ଗଦାବର ବୁଲାଇଣ ପିଟନ୍ତେ ମାରୁତି
ମହାବାତେ ଚୂତଫଳ ପରାୟେ ଲୋଟନ୍ତି ।
ସୈନ୍ୟଭଗ୍ନେ ଚିତ୍ରରଥ ଚଢ଼ି ଅନ୍ୟ ରଥ
ତୁଳେ ସହୋଦର ଗଲେ ଚାରି ଅଇବ୍ରତ ।
ଅନେକ ରତ୍ନ ଭୂଷଣ ତାହାଙ୍କର କାୟେ
ଦିଶନ୍ତି ସେ ବିଦ୍ୟାଧର କାର୍ତ୍ତିକେୟ ପ୍ରାୟେ ।
ରେ ରେକାର କରି ରାଗେ ଧାଏଁ ଚିତ୍ରରଥ
କରେ ଧରିଅଛି ଏକ ନବନିଶି କୋନ୍ତ ।
ଭୀମ ଉପରେ ପିଟିଲା ତାହା ବେଗ କରି
ଭୀମ ଅଙ୍ଗେ ବାଜି ତାହା ହୋଇଗଲେ ଚୂରି ।
ପୁଣି ଗନ୍ଧର୍ବ ପ୍ରହାରେ ବଜ୍ରର ତିମ୍ଭର
ଡେଇଁ ତାହାକୁ ଧଇଲେ ବୀର ବୃକୋଦର ।

ବୁଲାଇ ପିଟିଲା ଭୀମ ସେହି ବଜ୍ର ଗୋଟି
ସେ ଘାତରେ ଚିତ୍ରସେନ ପଡ଼େ ମହୀଲୋଟି ।
ଗର୍ଜନ୍ତେ ଭୀମ ଶୁଭଇ ଘଡ଼ଘଡ଼ି ପ୍ରାୟେ
ଏହା ଦେଖି ଆବୋରିଲେ ତାକୁ ସୁରରାୟେ ।
ଐରାବତ ଗଜପରେ ବସି ବଜ୍ରଧର
ବଜ୍ର ଶକତିକି ସେହି ଧରିଛନ୍ତି କର ।
ମୁଦ୍ଗର ଅସିପତ୍ର ଗୁରୁଜ ସାବେଳି
ବକ୍ଷସ୍ଥଳେ ଲମ୍ବିଅଛି ପାରିଜାତ ମାଳି ।
କୋଟିଏ କିରଣ ଶକ୍ତି ଆଖଣ୍ଡଳ ତୋଳି
ଗଦାବର ଧରି ଉଭା ଭୀମ ମହାବଳୀ ।
ଏକାକେ ସମର କରେ ପବନ କୁମର
ଗନ୍ଧର୍ବ ନଦୀ ତଟରେ ହୁଅଇ ସମର ।
ଅନେକ ସୈନ୍ୟକୁ ଭୀମ ଯାଉଛନ୍ତି ପିଟି
ବିଦ୍ୟାଧର ବଳ ତହିଁ ପଡୁଛନ୍ତି ଲୋଟି ।
ଏକା ସମର କରଇ ପବନର ବସ
ମାଇଲା ଗନ୍ଧର୍ବ ଗଦା ପିଟି ତିନି ଲକ୍ଷ ।
ମତ୍ତଗଜ ଧାଏଁ ଯେହ୍ନେ ରମ୍ଭାବୃକ୍ଷ ଦେଖି
ମାରନ୍ତି ମାରୁତି ତିଳେ ଉପ୍ରୋଧି ନ ରଖି ।
ଅପାର ମହିମା ଅଟେ ପବନ ତନୟେ
ପଳାଅନ୍ତି ଯୋଦ୍ଧାମାନେ ଶୃଗାଳ ପରାୟେ ।
ଜୟସେନ ବୃଦ୍ଧଶ୍ରବା ଅଙ୍ଗାର ପନ୍ନଗ
ପ୍ରଚଣ୍ଡାବଳୀ ଏମାନେ ରଣେ ଦେଲେ ଭଙ୍ଗ ।
ଶଙ୍ଖର ଶବଦ ଯହୁଁ କଲେ ଶିରୀରଙ୍ଗ
ଶୁଣି ଦୁଇଗୁଣ ବଳ ହେଲା ଭୀମଅଙ୍ଗ ।
ଭାଜିଗଲେ ବିଦ୍ୟାଧର ସମର ଉପେକ୍ଷି
ସହସ୍ରେ ପୁତ୍ର ଇନ୍ଦ୍ରର ହୋଇଲେ ନିର୍ମାକ୍ଷି ।
ଦଶ ବିଂଶ ଧରି ଭୀମ ଫୋଫାଡ଼ି ଦିଅଇ
ଆରେ ଆରେ ଆସ ବୋଲି କୋପରେ ଡାକଇ
ଏମନ୍ତ ମହିମା ଅଟେ ବୀର ମାରୁତିର
ବୀରମୂର୍ତ୍ତି ଧରି ଉଭା ବାସବ ଛାମୁର ।
ଧାଇଁଯାଇଁ ଭୀମଧରେ ହସ୍ତୀର କୁମ୍ଭକୁ
ଥୋରହସ୍ତେ ଧରେ ଗଜ ଭୀମର ଅଣ୍ଟାକୁ ।
ଗୁଡ଼ାଇ ଟେକିଲା ଗଜ ଗଗନର ମାର୍ଗେ
ଫିଙ୍ଗୁ ଭୀମ ପଡ଼େ ଗନ୍ଧମାରଦନ ଲାଗେ ।
ବଜ୍ରଘାତ ଜାଣି ତହୁଁ ପଡ଼େ ବୀର ଭୀମ
ଭୂମିରେ ପଡ଼ିଣ ତହୁଁ ହେଲା ଅସାକ୍ଷମ ।
ଦେଖି ଯୁଧିଷ୍ଠିର ଭୀମସେନର ଏ ଦୁଃଖ
କୋଳେ ଧରିଣ ତାହାକୁ କାନ୍ଦିଲେ ଅନେକ ।
ହା ହା ଭ୍ରାତ ତୁହି ମୋର ଅଚାବଳ ଯୋଧି
ଦୈବ ତେଠାରେ କିପାଇଁ ହୋଇଲା ବିରୋଧି

ନାରଦ ମିଳି କହିଲେ ଭୀମସେନ କଥା
ବାସବ ପାଶେ ମିଳିଲା ଯହୁଁ ସାମରଥା ।
ଇନ୍ଦ୍ରକୁ ଦେଖିଣ ଭୀମ ନ ଘୁଞ୍ଚିଲା ଯହୁଁ
ସମରେ ଗଜ ଧରିଲା ଭୀମ କଟି ତହୁଁ ।
କୋପେ ଐରାବତ ତହୁଁ ଫୋପାଡ଼ିଣ ଦେଲା
ଏତେ ଦୂରେ ଭୀମସେନ ସେ ହେତୁ ପଡ଼ିଲା ।
ଶୁଣିକରି କୋପ କଲେ ଦେବ ବଳରାମ
ଭୀମ କଷ୍ଟ ଶୁଣି ଗଲେ ହୋଇ ତମ ତମ ।
ବଳରାମଙ୍କ ମୂରତି ଦେଖି ମଘବାନ
ମହାନାଗ ପୃଷ୍ଠରେ ସେ କଲେ ଆରୋହଣ ।
ଶ୍ରୀଭୁଜରେ ଶୋଭାବନ ବଜ୍ରର ଶକତି
ମନ୍ଦର ପର୍ବତେ ବିଜେ ଦେବ ସୁରପତି ।
ଷଡ଼ ମରଦ୍ଭୂତ ସୈନ୍ୟ ଛନ୍ତି ତାଙ୍କ ତୁଲେ
ଅମରଗଣଙ୍କ ସହ ସତ୍ୱରେ ଧାଇଁଲେ ।
ସମରର ସମ୍ବର୍ବରେ ଦେବ ମଘବାନ
ବଳରାମଙ୍କ ସମ୍ମୁଖେ ମିଳିଲେ ବହନ ।
ଦଶଯୂଣ ମାଡ଼ିଥିଲେ ଯାଦବଙ୍କ ବଳ
ଦୁଇବଳଙ୍କର ତହିଁ ଲାଗିଲା କନ୍ଦଳ ।
ଏରୂପେ ହୁଅନ୍ତେ ତହୁଁ ଯୁଦ୍ଧ ଭୟଙ୍କର
ମେଘକୁ ରାଇ ବୋଇଲେ ଦେବ ପୁରନ୍ଦର ।
ମୂଷଳ ଧାରାରେ ତୁମ୍ଭେ ବରଷ ସକଳେ
ଶୁଣି ଭୟଙ୍କର ବୃଷ୍ଟି କଲେ ମେଘମାଳେ ।
ଏହା ଦେଖି ଗରୁଡ଼କୁ କହିଲେ କହ୍ନାଇ
ହେ ଗରୁଡ଼ ରଖ ତୁହି ପକ୍ଷରେ ଘୋଡ଼ାଇ ।
ଦଶଯୂଣ ମାଡ଼ିଥିଲେ ଯାଦବଙ୍କ ବଳ
ଶୁଣି ଗରୁଡ଼ ଢାଙ୍କିଲା ପକ୍ଷରେ ସକଳ ।
ବର୍ଷନ୍ତି ମେଘ ମୂଷଳ ଧାରାରେ ଯେ ପାଣି
ଗରୁଡ଼ ପକ୍ଷରେ ପଡ଼ି ବହଇ ଧରଣୀ ।
ନିର୍ବାତ ବଜ୍ରସୁଚି ଯେ ଅଗ୍ନି ବାଣମାନ
ଖଗବର ପକ୍ଷପରେ ପଡ଼େ ଅନୁକ୍ଷଣ ।
ଏକାଳେ ବାତକୁ ରାଇ କହେ ମଘବାନ
ଅଣଚାଶ ମୂର୍ତ୍ତି ଧରି ବହ ତୁ ପବନ ।
ଦେବରାଜ ଆଜ୍ଞା ପାଇ ଗର୍ଜିଣ ପବନ
ଅଣଚାଶ ମୂର୍ତ୍ତି ଧରି ବହିଲା ତକ୍ଷଣ ।
ଯୁଧିଷ୍ଠି ବୋଲନ୍ତି ମେଘ ପବନର ଯୋଗେ
ଆମ୍ଭେମାନେ ମରିବୁ ଯେ ନିଶ୍ଚେ ଏହିଲାଗେ
ଏହାଶୁଣି ସୁମରିଲେ ହରି ହନୁମନ୍ତ
ଜାଣି ସେକ୍ଷଣି ଅଇଲା ଅଞ୍ଜନାର ସୁତ ।
ଚଉଦ ଲକ୍ଷ ତାହାର ଦଧିମୁଖ ସୈନି
ଲାଙ୍ଗୁଳ ପରେ ବସାଇ ଅଛଇ ପାବନି ।

ଗଳାରେ ମାଳା କରିଛି ଲକ୍ଷେକ ପର୍ବତ
କଟିରେ ଖଞ୍ଜିଲା ଗିରି ତିନି ମରଭୂତ ।
ଶିରରେ ମୁକୁଟ କଲା ତିନିଲକ୍ଷ ଗିରି
ଦଶକୋଟି ପରବତ ଦୁଇବାହୁ ସରି ।
ଏହି ରୂପରେ ଅଇଲା ପବନ ନନ୍ଦନ
ତିନି ଭୁବନେ ତାହାକୁ କେ ନାହିଁ ସମାନ ।
ବିକ୍ରମି ଅଇଲା ଶୂନ୍ୟେ ବୀର ହନୁମନ୍ତ
ତିନିଦଣ୍ଡେ ମିଳେ ଗନ୍ଧମାଦନ ପର୍ବତ ।
ଗୋବିନ୍ଦଙ୍କ ଶ୍ରୀଚରଣେ ମାରୁତି ପ୍ରଣମି
ବୋଲେ କି ହେତୁ ଚିନ୍ତିଲ କହ ମୋତେ ସ୍ୱାମୀ
ଗୋବିନ୍ଦ ବୋଇଲେ ମୋର ଦୁହିତା ସଚଳା
ବଳାତ୍କାରେ ହରିନେଲା ବାସବର ବଳା ।
ତହିଁ ନିମନ୍ତେ ତ୍ରିଦଶ ଦେବ ପରିଘାଇ
ଆମ୍ଭଙ୍କୁ ଜିଣିବେ ଆସିଛନ୍ତି ମେଳ ହୋଇ ।
ଇନ୍ଦ୍ର ବଚନେ ପବନ ଅଣଚାଶ ମୂର୍ତ୍ତି
ଧରି କହେ ପକାଇବ ସାହେର ସଂହତି ।
ନାରାୟଣଙ୍କ ବଚନ ଶୁଣି ହନୁମନ୍ତ
ସେହିକ୍ଷଣି ଲାଙ୍ଗୁଳକୁ କଲା ବିସ୍ତାରିତ ।
ଦଶଯୁଣ ମାଡ଼ିଛନ୍ତି କୃଷ୍ଣଙ୍କ ସଇନି
ତେତେଯୂଣ ଲାଞ୍ଜେ ଗଡ଼ କଲାକ ପାବନି ।
ସେ ଲାଞ୍ଜ ଉଚ୍ଚ ହୋଇଲା ପଞ୍ଚମ ଯୋଜନ
ବାୟୁଗତି ରୁନ୍ଧ କଲା ବୀର ହନୁମାନ ।
ଲାଙ୍ଗୁଳ ଭିତରେ ସୈନ୍ୟ ରହିଲେ ନିଶ୍ଚିନ୍ତ
ଉପରେ ପକ୍ଷ ଢାଙ୍କିଲା ବିନତାର ସୁତ ।
ଅଣଆଶ ମୂର୍ତ୍ତିଧରି ବହି ବହି ବାତ
ବୃକ୍ଷ ପରବତ ଧରି କଲା ଛିନ୍ନଛତ୍ର ।
ମୂଷଳ ଧାରା ପ୍ରମାଣେ ମେଘ ବରଷନ୍ତି
ଗରୁଡ଼ ପକ୍ଷରେ ପଡ଼ି ନିଗିଡ଼ି ଯାଆନ୍ତି ।
ହନୁମନ୍ତ ଲାଞ୍ଜ କାନ୍ଥ ଖଗପକ୍ଷ ଛାତ
ମେଘ ବରଷଇ ଶିଳା ବଜ୍ରସୂଚୀବତ ।
ଘଡ଼ଘଡ଼ି ଚଡ଼ଚଡ଼ି ଅଗ୍ନିବାଣମାନ
ଗରୁଡ଼ ପକ୍ଷରେ ପଡ଼ି ହୋଇଯାନ୍ତି ଭଗ୍ନ ।
ଖଗବୃଷ୍ଟି ରକ୍ଷାକଲା ହନୁ ଲାଞ୍ଜବେଢ଼ା
ଗଡ଼ଦ୍ୱାରେ ରହି ପାର୍ଥ କଲା ଶରପୀଡ଼ା ।
କୋଡ଼ିଏ ଯୋଜନ ଲମ୍ବ ପଞ୍ଚତାଳ ଉଚ୍ଚ
ଲାଞ୍ଜେ ଗଡ଼ ବେଢ଼ାଇଲା ପବନର ବତ୍ସ ।
ମେଘମାନେ ବରଷିଲେ ସବୁବେଳେ ନୀର
ବୁନ୍ଦେ ଜଳ ନ ପଶିଲା ଗହିର ଭିତର ।
ପାଞ୍ଚଦିନ ପାଞ୍ଚରାତ୍ର ଶିଳା ବରଷିଲେ
କିଛି ନୋହିଲା ସୈନ୍ୟଙ୍କ ନିଶ୍ଚିନ୍ତେ ରହିଲେ ।

ଧାଇଁଯାଇ ହନୁମାନ ଗର୍ଜି ମହାକୋପେ
ସେ ମେଘକୁ ଚାପୋଡ଼େକ ମାଇଲା ପ୍ରତାପେ
ପୁଣି ସମ୍ବର୍ତ୍ତ ମେଘକୁ ବିଧାଏ ମାରନ୍ତେ
ସେ ଘାତେ ସମ୍ବର୍ତ୍ତ ମେଘ ପଡ଼ିଲା ଅଚେତେ ।
ସମ୍ବର୍ତ୍ତକ ମେଘ ଯହୁଁ ପଡ଼ିଲାକ ଭାଜି
ମେଘମାନେ ପଳାଇଲେ ବରଷିବା ତେଜି ।
ମେଘମାଳ ପଳାଅନ୍ତେ ରହିଲାକ ବୃଷ୍ଟି
ଗିରିନଦୀ ସମତୁଲେ ବହିଲା ଜଳଟି ।
ମହାବାତ ରହିଥିଲା ଅତ୍ୟନ୍ତ ପ୍ରଖରେ
ତାହାକୁ ଚାପୋଡ଼େ ହନୁ ମାଇଲା ରାଗରେ ।
ପ୍ରଚଣ୍ଡ ପବନ ସେହି ଘାତେ ପଳାଇଲା
ଦିଗ ଅନ୍ଧକାର ଯାଉଁ ଆଲୋକ ଦିଶିଲା ।
ମେଘ ପବନ ଉଭୟେ ହୁଅନ୍ତେ ନିବର୍ତ୍ତ
ହନୁମନ୍ତ ଲାଙ୍ଗୁଳକୁ କଲା ସଂକୁଚିତ ।
ଗରୁଡ଼ ନିଜ ପକ୍ଷକୁ ସଂକୁଚିତ କଲା
ଅର୍ଜ୍ଜୁନ ମନଭେଦୀକୁ ତୂଣରେ ରଖିଲା ।
ବଳରାମ ବିଜେକଲେ ତାଳଧ୍ୱଜ ରଥ
କୃଷ୍ଣବିଜେ ଗରୁଡ଼ରେ ନନ୍ଦିଘୋଷେ ପାର୍ଥ ।
ଦେଖିଲେ ଦେବତା ଆଦି ତହିଁ କେ ନାହାନ୍ତି
ଈଶ୍ୱର ବାସବ ଦୁହେଁ ତହିଁ ରହିଛନ୍ତି ।
ତାଙ୍କୁ ଦେଖିଣ ଗର୍ଜନ୍ତି କୋପେ କାମପାଳ
କାଦମ୍ବରୀ ପାନେ ସଦା ତାଙ୍କ ମତି ଭୋଳ ।
ନୀଳାମ୍ବର ପୁରୁଷ ସେ ପ୍ରତ୍ୟକ୍ଷରେ ହରି
ମଉଳିରେ ଫଣା ଯାର ସପତ କୁଣ୍ଡଳି ।
ସେ ନିରାକାର ପୁରୁଷ ହୋଇ ମହାରାଗୀ
ସାମର୍ଥେ ହଳ ମୂଷଳ ବୁଲାଇଣ ବେଗି ।
ନବସହସ୍ର ଯୋଜନ ଏକ ଗିରିବର
ତିନି ଅଇବ୍ରତ ଅଟେ ଉତ୍ସର୍ଗ ତାହାର ।
କୋଟିଏ ପଶୁରାଜାର ବଳ ପ୍ରାକର୍ମରେ
ମୂଷଳେ ତାଡ଼ି ଗିରିକି ଧଇଲେ ହସ୍ତରେ ।
ଶିବ ଇନ୍ଦ୍ରଛନ୍ତି ଘେନି ନିଜ ନିଜ ବଳ
ପର୍ବତ ଉପରେ ଥିଲେ ହୋଇଣ ନିଶ୍ଚଳ ।
ଚୌଦକୋଟି ଶିବଗଣ ଘେନି ସଦାଶିବ
ଗିରି ଟଳନ୍ତେ ଡେଇଁଲେ ବୃଷ ଘେନି ଶିବ ।
ଐରାବତ ଗଜପରେ ବସି ସୁରପତି
ଦେବଗଣଙ୍କୁ ଘେନିଣ ଡେଇଁଲେ ଝଟତି ।
ଦେଖି କାମପାଳ ତାଙ୍କ ପଛେ ଧାଇଁ ବେଗେ
ମନ୍ଦର ଧରିଣ ଉଭା ହେଲେ ତାଙ୍କ ଆଗେ ।
ଶ୍ରୀଭୁଜରେ ଶଙ୍ଖ ଚକ୍ର ଧରି ବନମାଳୀ
ମହାକ୍ରୋଧରେ ବାସବ ସମ୍ମୁଖରେ ମିଳି ।

କୃତାନ୍ତକ ବଳ ଘେନି ସେ ଯମ ଦେବତା
କରେ କାଳ ପାଶ ଧରି ପିନ୍ଧିଅଛି କନ୍ଥା ।
କାଳ ବିକାଳଙ୍କୁ ଘେନି ଧାଏଁ ଅତିବେଗେ
ଦେଖି ସୈନ୍ୟ ପଳାଇଲେ ନ ରହି ତା ଆଗେ
ଦୂରୁ ଦେଖିଣ ଧାଇଁଲେ ବୀର ଭୀମସେନ
ଯମସହ ସଇନ୍ୟଙ୍କୁ ଓଗାଳେ ବହନ ।
ଅଗ୍ନିଦେବତା ଧାଇଁଲେ ଧରି ତେଜମୂର୍ତ୍ତି
ବିକ୍ରମୁଁ ତାହାଙ୍କ ତେଜ ଆକାଶେ ଘୋଟନ୍ତି ।
ପ୍ରଖର ତେଜ ଦେଖିଣ ପଳାନ୍ତି ସଇନି
ଆବୋରିଲେ ନନ୍ଦିଘୋଷେ ବସି ଫାଲଗୁନି ।
ଅର୍ଜୁନଙ୍କ ହସ୍ତେ ଅସ୍ତ୍ର ବୈଶ୍ୱାନର ଦେଖି
ଭାଜି ପଳାଇଲେ ସେହୁ ସମର ଉପେକ୍ଷି ।
ବାବୁ ଭଲ କଲ ମୋର ଲୁଦୁବୁଦୁ ବ୍ୟାଧି
ଖାଣ୍ଡବ ବନରୁ ମୋତେ ଦେଇଣ ମୌଷଧି ।
ବାବୁ କଲା ଉପହାର ଯେହୁ ନ ମାନନ୍ତି
କୁପୁରୁଷ ମଧ୍ୟରେ ଯେ ତାହାକୁ ଲେଖନ୍ତି ।
ତୁହି ମୋର ଉପକାର କଲୁ ସବ୍ୟସାଚି
କାହୁଁ ଶୁଝିବି ତୋ ଗୁଣ ମନେ ହୁଏ ପାଞ୍ଚି ।
ଅଗ୍ନିଦେବତା ଏମନ୍ତ କହି ପାର୍ଥ ତୁଲେ
ସାଧନ କରିବି କାର୍ଯ୍ୟ ମୋତେ ଆଜ୍ଞା ଦେଲେ
ଯହିଁ ତୁ ପେଷିବୁ ମୋତେ ଗୁଣରେ ବସାଇ
ତ୍ରୈଲୋକ୍ୟେ ଥିଲେ ଆସିବି ନିଶ୍ଚେ ତାକୁ ଦହି
ଏମନ୍ତ କହି ତୂଣୀରେ ରହିଲେ ସେ ଅଗ୍ନି
ଚମକଇ ନନ୍ଦିଘୋଷ ବାହେ ଫାଲଗୁନି ।
ଯମସଙ୍ଗେ ଭୀମଙ୍କର ହେଲା ମହାଗୋଳ
ଦଣ୍ଡଘେନିଣ ଧାଇଁଲେ କାଳ ସେ ବିକାଳ ।
ଯମଗଣଙ୍କର କରେ ଅଛି କାଳପାଶି
ଗଦା ଧରି ବୃକୋଦର କାଳକୁ ଆକର୍ଷି ।
କାଳପାଶ ଘେନିଥିଲେ ଶମନର ଦୂତେ
ଗଦା ପ୍ରହାରିଲେ ଭୀମ ଅତି କୋପ ଚିତ୍ତେ ।
ଗଦା ପିଟି ଛିଣ୍ଡାଇଲା ସର୍ବକାଳପାଶି
କାଳ ବିକାଳଙ୍କୁ ଭୀମ ଗଦାରେ ଆକର୍ଷି ।
ମହାଭୟ ପାଇଣ ସେ ଯମ ସେନାପତି
ତ୍ରାସେ ତହୁଁ ପଳାଇଲେ ନ ରହିଣ କତି ।
ବଡ଼ ବଡ଼ ଯୋଦ୍ଧାମାନେ ନ ରହିଲେ ରଣେ
ଥାଟ ମନ୍ଥନ କରଇ ଭୀମ ଏକା ଜଣେ ।
ଯମଗଣ ପଳାଇଲେ ଯହୁଁ ସେ ଭୟରେ
ଦେଖି ଧାଇଁଲା ଶମନ କାଳଦଣ୍ଡ କରେ ।
ମହିଷି ବାହନେ ବିଜେ ଭୟଙ୍କର ମୂର୍ତ୍ତି
ଭୀମକୁ ଓଗାଳିଲା ସେ ଯାଇଣ ଝଟତି ।
ଯମକୁ ଦେଖିଣ ଭୀମ ହୋଇଲା ନିର୍ଭୟା
ଶତଶୃଙ୍ଗ ସ୍ମରି ଭୀମ ବିସ୍ତାରିଲା କାୟା ।
ରେରେକାର କରି ଭୀମ ଧରି ଗଦାବର
ଧାଇଁଣ ପିଟିଲା ସେହି ମଇଁଷି ଉପର ।
ପବନ ତନୟ ଅଟେ କ୍ଷତ୍ରିୟ ପ୍ରଚଣ୍ଡ
ଗଦାଘାତେ ଚୂର୍ଣ୍ଣ କଲା ମଇଁଷିର ମୁଣ୍ଡ ।
ଅସାଷ୍ଟମରେ ମଇଁଷି ପଡ଼େ ମହୀ ଲୋଟି
ସେହି ମଇଁଷିକୁ ତୋଳି ଯମପରେ ପିଟି ।
ପର୍ବତ ଉପରେ ଯେହ୍ନେ ପଡ଼ଇ ନିର୍ଘାତ
ତରକିଣ ଯମ ତହୁଁ ଘୁଞ୍ଚିଲା ତୁରିତ ।
ମହାକୋପେ ଗଦାବର ଯମ କରେ ଘେନି
ଭୀମସେନର ଉପରେ ପ୍ରହାରିଲା ଆଣି ।
ସେ ଗଦା ପଡ଼ନ୍ତେ କୋପେ ଧାଇଁଲେ ମାରୁତି
ଯମ ହସ୍ତରୁ ଗଦାକୁ ଉଛୁଡ଼ିଣ ଧାତି ।
ସେହି ଗଦା ଲେଉଟାଇ ପିଟେ ଯମପରେ
ତହୁଁ ଯମ ଅନ୍ତର୍ଦ୍ଧାନ ହେଲା ଲଜ୍ଜାଭରେ ।
ପଳାଇ ପଶିଲା ଯାଇ ପୁର ସଂଯମନୀ
ଆବର ପଳାଇ ଗଲେ ତାହାର ସଇନି ।
ସିଂହନାଦ ଶବ୍ଦକରି ବୀର ବୃକୋଦର
ଆରୋହଣ କଲା ଶ୍ୱେତ ଗଜର ଉପର ।
ଯମହସ୍ତୁ କାଳେବର ଗଦାକୁ ଛଡ଼ାଇ
କାଳେବର ମୂର୍ତ୍ତି ଧରେ ଯୁଧିଷ୍ଠିର ଭାଇ ।
ନାରଦ ଯେ ସାଧୁ ସାଧୁ ବୋଲି କଲେ ଧ୍ୱନି
ଯମପୁରେ ଦ୍ୱିତୀଯମ ବୋଲାଉ ପାବନି ।
ଯହୁଁ ଯମ ପଳାଇଲେ ସଂଯମନୀ ପୁର
ଦିଗପାଳ ସକଳେ ଯେ ହୋଇଲେ ଅନ୍ତର ।
ସମରେ ବିଜୟ କଲେ ଦେବ ତ୍ରିପୁରାରି
କୋଟିସସ୍ତ୍ରବଳ ଧନୁ ପୀନାକକୁ ଧରି ।
ଚୌଦକୋଟି ଶିବଗଣ ଛନ୍ତି ତାଙ୍କ ତୁଲେ
ସମରରେ ସଦାନନ୍ଦ ଯହୁଁ ବିଜେକଲେ ।
ମୟୂର ବାହନେ କଲେ କାର୍ତ୍ତିକେୟ ବିଜେ
ଇନ୍ଦୁର ବାହନେ ଗଲେ ଦେବ ବିଘ୍ନରାଜେ ।
ଶାର୍ଦ୍ଦୁଳ ବାହନେ ନନ୍ଦୀକେଶ୍ୱର ଯେ ମିଳି
ଶୃଗାଳ ବାହନେ ଗଲେ ଜୟନ୍ତକ ଚଳି ।
ଚଣ୍ଡ ପ୍ରଚଣ୍ଡ ଏ ବେନି ବ୍ୟାଘ୍ରରେ ଆରୋହି
ଜିଣାୟକ ବିନାୟକ ଭାଲୁପରେ ରହି ।
ଜୟନ୍ତକ ଅଜୟନ୍ତ ମୃଗରେ ବଳୟା
ଭୀମଙ୍କ ପାଦଗତିରେ ଗମେ ମହାମାୟା ।
ମଣିଭଦ୍ର ଚଳିଲା ଯେ ଶମ୍ବର ବାହନେ
ନାନାଜୀବ ଆରୋହିଣ ଗଲେ ଶିବଗଣେ ।

ବୈନତେୟ ବାହନରେ ବିଜେ ଚକ୍ରଧାରୀ
ହରିହର ଭେଟ ହୋନ୍ତେ ସମର ଆବୋରି ।
ନାରାୟଣଙ୍କୁ ଦେଖିଣ କୋପକଲେ ହର
ନିଶ୍ଚୟ ସମ୍ପଦ ଆଜି ବୁଡ଼ିଲାଟି ତୋର ।
ସଚଲା କନ୍ୟା ଅଟଇ ତୋ ବଂଶନାଶିନୀ
ଦ୍ୱାରକାକୁ ଅଟଇ ସେ କାଳାନଳ ଅଗ୍ନି ।
ଯାବତକାଳେ ତୁ କନ୍ୟା ହରୁଥିଲୁ ବଳେ
ତୋତେ କଳଙ୍କ ଲାଗିଲା ଆସି ଏତେକାଳେ ।
ଗୋବିନ୍ଦ ବୋଇଲେ ଶିବ ତୋର ମନ୍ଦପଣ
ମଧ୍ୟସ୍ଥରେ ପଡ଼ି ଧନ୍ଦି ହେଉ ଅକାରଣ ।
ଇନ୍ଦ୍ରପୁତ୍ର ମୋ କନ୍ୟାକୁ ବଳେ ହରିନେଲା
ତାର ମୋର ଯୁଦ୍ଧ ହେବ ତୋର କିସଗଲା ।
ତୁ କିପାଁ ମଧ୍ୟରେ ରହି ମରୁ ଅନିମିତ୍ତେ
ପୃଥିବୀ ରହିପାରେ କି ସମୁଦ୍ର ଲଙ୍ଘନ୍ତେ ।
ଯୋଗୀ ହୋଇ କରେ ଯେବେ ଅବିଚାର ବୁଦ୍ଧି
ଯତନେ ସେ ନାଶକରେ ଆପଣା ସମୃଦ୍ଧି ।
ନାରାୟଣ ବାକ୍ୟେ କୋପ କରି ଦିଗବାସୀ
ପିନାକ ଧନୁରେ ଶର ସନ୍ଧିଣ ବରଷି ।
ଅପରିମିତ କାର୍ମୁକ ବିନ୍ଧନ୍ତି ଧୁର୍ଜଟି
ସମସ୍ତ ନାଶଯାଏ ଯେ ପଡ଼ି ଖଗପିଠି ।
କକଡ଼ା ମାସରେ ଯେହ୍ନେ ହୁଏ ଜଳବୃଷ୍ଟି
ଏକାଥରକେ ବିନ୍ଧନ୍ତି ବାଣ କୋଟି କୋଟି ।
ବିନତାନନ୍ଦନ ପକ୍ଷ କରିଛି ବିସ୍ତାର
ତହିଁରେ ପଡ଼ି ସକଳ ହେଉଅଛି ଚୂର ।
ଅଗ୍ନିବାଣ ପେଷିଲେକ ଶଙ୍କର କୋପରେ
ସେ ବାଣକୁ ସଂହାରିଲା ଗରୁଡ଼ ଗର୍ଭରେ ।
ପର୍ବତଶ୍ରେଷ୍ଠ ଆସନେ ଯୁଦ୍ଧ ହିମବନ୍ତ
ତାର ଆଗେ ଓଗାଳିଲେ ବୀର ହନୁମନ୍ତ ।
ଗିରିବରମାନେ ରଣେ ପଡୁଛନ୍ତି ମାଡ଼ି
ସମସ୍ତ ଚୂର ହୁଅନ୍ତି ହନୁ ଦେହେ ପଡ଼ି ।
ଲକ୍ଷେ ପର୍ବତ ପଡ଼ିଲେ ଆସି ଏକଘାନ୍ତି
ହନୁମାନ ଶିରେ ପଡ଼ି ହେଲେ ଧୂଳିମତି ।
ରେରେକାର ଶବ୍ଦକରି ଧାମଇଁ ପାବନି
ହିମବନ୍ତ ସନ୍ନିଧିରେ ମିଳିଲା ସେକ୍ଷଣି ।
ସବଳରେ ବେନି ମୁଥ ମାରୁ ବାତସୁତ
ଭାରା ପାଇ ବସିଗଲା ତହିଁ ହିମବନ୍ତ ।
ହିମବନ୍ତ ନାଟଗିରି ଧରି କୋପଚିତ୍ତେ
ହନୁମନ୍ତର ଉପରେ ପିଟିଲା ତ୍ୱରିତେ ।
ତା ଦେଖି ହନୁ ପାତିଲା ତାର ବକ୍ଷସ୍ଥଳ
ନାଟଗିରି ପଡ଼ି ଚୂର୍ଣ୍ଣ ହେଲା ତତକାଳ ।
କୋପେ ମାରୁତି ମାଇଲା ପୁଣି ବଜ୍ରମୁଥ
ଭୂମେ ପଡ଼ି ମୂର୍ଚ୍ଛାଗତ ହେଲା ହିମବନ୍ତ ।
ରାଗରେ ଓଷ୍ଠ କାମୁଡ଼ି ଧାମନ୍ତେ ମାରୁତି
ହନୁମନ୍ତର ହସ୍ତକୁ ଧଇଲେ ପାର୍ବତୀ ।
ବାବୁ ଏ ପିଅର ମୋର ତୋର ଅଟେ ଅଜା
ନ ମାର ନ ମାର ବାବୁ ଉପେକ୍ଷିଣ ଯା ଯା ।
ମାତାଙ୍କ ବଚନେ ହନୁ କୋପକଲା ଶାନ୍ତି
ଆବର ଗିରିମାନଙ୍କୁ ଫିଙ୍ଗିଲା ଝଟତି ।
ହନୁ ଭୟେ ହିମବନ୍ତ ତେଜିଲାକ ରଣ
ପୁଣି ହନୁକୁ ଓଗାଳେ ଆସି ଷଡ଼ାନନ ।
ଷଡ଼ଭୁଜରେ କୁମର ଧରି ଷଡ଼ ଧନୁ
ଶର ବିନ୍ଧନ୍ତେ ମାରୁତି ପାତିଲାକ ତନୁ ।
ହୃଦେ ପଡ଼ିଣ ନାରାଚ ହେଉଅଛି ଧୂଳି
ପୁଣ ପୁଣ ପ୍ରହାର ଯେ କରେ ଛ ମଉଳି ।
ଅଞ୍ଜନାସୁତ ଅମାପ ଅଟେ ବଳବନ୍ତ
ତାହାକୁ କେହି ଜିଣିବ ଯୁଦ୍ଧେ ଜଗଜ୍ଜିତ ।
ଦେଖିକରି କୋପାନ୍ୱିତ କାର୍ତ୍ତିକେୟ ହେଲା
ହନୁମନ୍ତକୁ ଅମୋଘ ଶକତି ପିଟିଲା ।
ହନୁର ଉପରେ ପଡ଼ି ସେହି ଦିବ୍ୟଶର
ତକ୍ଷଣେ ଅନଳ ତହୁଁ ହୋଇଲା ବାହାର ।
ଚୂର୍ଣ୍ଣ ହୋଇଗଲା ଶକ୍ତି ହନୁର ଶରୀରେ
ମହାତେଜ ବିକାଶିଲା ଅଞ୍ଜନା କୁମରେ ।
କୋପେ ହନୁ ମାଇଲା ଯେ ତାକୁ ବଜ୍ରଦଣ୍ଡ
ଶୋଣିତ ବହିଲା କାର୍ତ୍ତିକର ଷଡ଼ମୁଣ୍ଡ ।
ଘାଏ ଘୁମାଇଲା ତହୁଁ ଗଉରୀର ବସି
ଅସାଷ୍ଟମେ ଭୂମିପରେ ବୀର ପଡ଼ିଅଛି ।
କୁମାର ଅଚେତ ଦେଖି ପଳାଇଲେ ସୈନ୍ୟ
ପଳାଇଲେ ରୁଦ୍ରଗଣ ହୋଇ ଭୟମନ ।
ବଜ୍ର ଆୟୁଧକୁ କରେ ଧରି ହନୁମନ୍ତ
ଗୋଡ଼ାଇ ମାଇଲା ଶିବଗଣଙ୍କୁ ଯାଇ ତ ।
ହରି ହରଙ୍କ ସମର ହେଲା ମହାଗୋଳ
ଉଲୁକାମାନ ପତନ ହୋଇଲା ଶୟଳ ।
ନାରାୟଣାସ୍ତ୍ର ବିନ୍ଧିଲେ ଧରି ଜଗନ୍ନାଥ
ରୁଦ୍ରଶରକୁ ପେଷିଲେ କୋପେ ବିଶ୍ୱନାଥ ।
ବେନି ଅସ୍ତ୍ର ପଡ଼ି ତଳେ ଲୋଟିଲେକ ମହୀ
ବ୍ରହ୍ମାଣ୍ଡ କମ୍ପିଲା ଭୂମିକମ୍ପ ପ୍ରାୟ ହୋଇ ।
ପୁଣି ଶିବ ପ୍ରହାରିଲେ ତ୍ରିଶୂଳଶକତି
କୌମୋଦକୀ ଗଦାବରେ ଛେଦିଲେ ଶ୍ରୀପତି
ଧନୁକୁ ଛାଡ଼ିଣ ହରି ଗରୁଡ଼ୁ ଓହ୍ଲାଇ
ମାଳବନ୍ଧରେ ଶିବଙ୍କୁ ଧଇଲେକ ଯାଇ ।

ପାଦେ ଛନ୍ଦାଛନ୍ଦି ମୁଥେ ମୁଥ ମରାମରି
ରକ୍ତ ବହିଲା ବିଷମ ଯୁଦ୍ଧ ଦୁହେଁ କରି ।
ଦେଖିକରି ବୈନତେୟ ପକ୍ଷୀ ବେଗେ ଯାଇ
ନାରାୟଣଙ୍କୁ ପିଠିରେ ବସାଇ ଚଳଇ ।
ଗୋବିନ୍ଦ ବାହୁଡ଼ିଯାନ୍ତେ କୋପକଲେ ହର
ଦ୍ୱାରକାରେ ବହୁ ସୈନ୍ୟ କଲେ ଅପହାର ।
ଈଶ୍ୱରଙ୍କର ମୂରତି ଦେଖି ବଳରାମ
ହଳ ମୂଷଳ ଧରିଣ ପଶିଲେ ସଂଗ୍ରାମ ।
ବୃଷଭ ଆରୋହି ବିଜେ କଲେ ଦେବ ହର
ତାଙ୍କ ସନ୍ନିଧେ ମିଳିଲେ ଯାଇ ବଳେବର ।
ବଜ୍ର ମୂଷଳ ସୌନନ୍ଦ ଅଟେ ଯାର ନାମ
ବୃଷଭ ଉପରେ ତାହା ପିଟିଲେକ ରାମ ।
ସେ ବଜ୍ରମୂଷଳ ବାଜୁଁ ବୃଷଭ ଉପରେ
ଚାରିପାଦ ମେଲାଇଣ ପଡ଼ିଲା ଭୂମିରେ ।
ବୃଷଭ ନିଧନ ହେଉ ଯେ ରୁଦ୍ରଦୈବତ
ପାଦଗତିରେ ସମର କଲେ ଅପ୍ରମିତ ।
ମନ୍ଦର କନ୍ଦର ରାମ ଧରି ବାମକରେ
ଲକ୍ଷ୍ୟକରି ଫୋପାଡ଼ନ୍ତେ ଶିବଙ୍କ ଉପରେ ।
ଶିବ ତ୍ରିଶୂଳ ଦେଖାଇ ତାହାକୁ ନିବାରି
ପୁଣ ମୂଷଳ ପିଟିଲେ ରାଗେ ଆଣ୍ଟ କରି ।
ସେ ମୂଷଳ ନିବାରିଲେ ଯହୁଁ ବଳେବର
ଅଇରାବତ ଆରୋହୀ ଧାଏଁ ପୁରନ୍ଦର ।
ଇନ୍ଦ୍ର ଆସିବା ଦେଖିଲେ ଯହୁଁ ଫାଲ୍‌ଗୁନି
ଇନ୍ଦ୍ର ପାଶରେ ମିଳିଲେ ଗାଣ୍ଡିବକୁ ଘେନି ।
ଇନ୍ଦ୍ର ଆରୋହି ଅଛଇ ଐରାବତ ନାଗ
ନନ୍ଦିଘୋଷ ଚଢ଼ି ପାର୍ଥ ହେଲେ ତାଙ୍କ ଆଗ ।
ଇନ୍ଦ୍ର ବୋଇଲେ ଶୁଣରେ ମୂରୁଖ ପାଣ୍ଡବା
ଦେବାଧିଦେବଙ୍କ ଶିରୋମଣି ମୁଁ ମଘବା ।
ମୁହିଁ ଯେ ତୋର ପିଅର ଅଟେ ଯୁକତରେ
ଛାର ଗଉଡ଼ ନିମନ୍ତେ ଛାଡ଼ିଲୁ ମୋହରେ ।
ଅଜ୍ଞାନ ପାଣ୍ଡବା ଆରେ ଜ୍ଞାନ ତୋର ନାହିଁ
ଜାଣି ଅନଳେ ପଶୁଛୁ ମରିବୁ ଯେ ତୁହି ।
ପିତା ମାତାଙ୍କୁ ନିନ୍ଦଇ ପୁଣ ଯେଉଁ ପୁତ୍ର
ତାହାର ଜୀବନ ଅଟେ ଜାଣ ଅକୃତାର୍ଥ ।
ଗୋଳକୁଣ୍ଡା ଜାରଜାତା ତୁମ୍ଭେ ମହାପାପୀ
ଗଉଡ଼ର ସଙ୍ଗେ ସଙ୍ଗ ତୁମ୍ଭର ଅଦ୍ୟାପି ।
କହୁଁ କହୁଁ କୋପବୃଦ୍ଧ ହେଲା ପୁରୁହୂତ
ବଜ୍ର ଶକତିକି ଧରି ବୁଲାନ୍ତେ ତୁରିତ ।
ଅର୍ଜ୍ଜୁନ ବୋଇଲେ ଦେବ କହିଲ ବହୁତ
ଅକାରଣେ ଏ ପ୍ରତିଜ୍ଞା କଲ ଆହେ ତାତ ।
ତୁମ୍ଭର ସାହସ ଦେଖି ବିଚାରଇ ରାୟେ
ଅନ୍ଧ ଦେଖେ ଚନ୍ଦ୍ର ସୂର୍ଯ୍ୟ ନ ଥିଲା ପରାୟେ ।
କାହିଁ ତୁମ୍ଭର ସଇନ କାହିଁ ମେଘମାଳ
କାହିଁ ତୁମ୍ଭ ହିମବନ୍ତ କାହିଁ ଜନ୍ତୁପାଳ ।
ଆଗହୁଁ ତାତ କିପାଇଁ ନ କଲ ସେ ବୁଦ୍ଧି
ଦିଗପାଳ ବୋଲାଉଛ ପୁଣି ଜମ୍ଭଭେଦି ।
ପାରିଜାତକ ହରିଣ ଆଣିଲୁ ଯେକାଳେ
ବଳ କାହିଁ ରଖିଥିଲ ପିତା ତେତେବେଳେ ।
ସମରରେ ମଲେ ଯେତେ ତୁମ୍ଭ ପୁତ୍ରଗଣ
ତହିଁ ଥିଲେ ରଖି ତ ନ ପାରିଲ ଆପଣ ।
ଅର୍ଜ୍ଜୁନ ବଚନ ଶୁଣି କୋପେ ମଘବାନ
ଗୁଣେ ବସାଇ ବିନ୍ଧିଲେ ଦେବଶସ୍ତ୍ରମାନ ।
ଅର୍ଜ୍ଜୁନ କରରେ ଧରି ଗାଣ୍ଡିବ ଧନୁକୁ
କାଟି ପକାଇଲେ ଇନ୍ଦ୍ର ପେଷିମା ଅସ୍ତ୍ରକୁ ।
ଧନୁରେ ଗୁଣକୁ କର୍ଣ୍ଣ ପର୍ଯ୍ୟନ୍ତ ଓଟାରି
କୋପ କରିଣ ବିନ୍ଧିଲେ ପାର୍ଥକୁ ବୃତ୍ରାରି ।
ସାତ୍ୟକି ସାରଥି ଥିଲା ଅର୍ଜ୍ଜୁନର ରଥେ
ତାକୁ ନାରଚ ବିନ୍ଧିଲେ ସହସ୍ର ପର୍ଯ୍ୟନ୍ତେ ।
ଅରଜୁନକୁ ବିନ୍ଧିଲେ ବେନି କୋଟି ଶର
ଚାରି ଅଶ୍ୱକୁ ଚାରିଶ ବିନ୍ଧି ପୁରନ୍ଦର ।
ଶର ନ ଆସୁ ଅର୍ଜ୍ଜୁନ କୋପେ ଜ୍ୱାଳାବଳୀ
ଶର ବିନ୍ଧି ବାସବଙ୍କ ଅସ୍ତ୍ର ଦେଲେ ଜାଳି ।
ବାବଲ ଶର ପେଷିଣ ବାସବର ସୂନୁ
ଛେଦିଲେ ବାସବଙ୍କର ଅଜଗବ ଧନୁ ।
ପୁଣି ଏକ ଅନ୍ୟ ଧନୁ ଧରି ସୁରନାଥ
ପାର୍ଥ ଉପରେ ବିନ୍ଧିଲେ ଶସ୍ତ୍ର କୋଟି ସାତ ।
ଅରଜୁନ ଅଧାଚନ୍ଦ୍ର ବାଣ ଘେନି ବିନ୍ଧି
ବାସବଙ୍କ ଧନୁ ବୋଲି ପକାଇଲେ ଛେଦି ।
କାମ୍ୟକ ନାରାଚ ଘେନି ପେଷିଲେ କିରୀଟୀ
ଐରାବତ ଦେହେ ପଡ଼ି ରୋମେ ରୋମେ ଫୁଟି
ପ୍ରଭାତକାଳରେ ଯେହ୍ନେ ଉଦୟ ଆଦିତ୍ୟ
ସେହିପରି ଦିଶିଲାକ ହସ୍ତୀ ଐରାବତ ।
ପୁଣି ନାଗପାଶ ବାଣ ତାହାକୁ ପ୍ରହାରି
ଐରାବତକୁ ବାନ୍ଧିଲେ ଶତପୁର କରି ।
ପାଶବନ୍ଧନରେ ହସ୍ତୀ ହୁଅନ୍ତେ ଅଚଳ
ତା ପିଠିରୁ ଓହ୍ଲାଇଣ ଧାଏଁ ଆଖଣ୍ଡଳ ।
କ୍ରୋଧଭରେ ହସ୍ତେ ଧରି ସେ ବ୍ରହ୍ମଶକତି
ବୁଲାଇ ମାଇଲା ବେଗେ ପାର୍ଥ ଯେ ଝଟତି ।
କାତିଛଡ଼ା ସର୍ପ ଯେହ୍ନେ ହୁଏ ଆନନ୍ଦିତ
ଶକ୍ତି ଛାଡ଼ିଣ ବାସବ ହେଲା ସେହିମତ ।

କୋଟି ଆଦିତ୍ୟଙ୍କୁ ଜିଣି ଶକତିର ତେଜ
ଆସନ୍ତେ କେତେ ପାଦପ ହୁଅଇ ଦହିଯ୍ୟ ।
ଦେଖିଣ ଆଶ୍ଚର୍ଯ୍ୟ ହେଲେ ସତ୍ୟବତୀ ନାତି
ସେହିକ୍ଷଣି ପ୍ରହାରିଲେ ଯେ ବଜ୍ରଶକତି ।
ଉଲୁକା ପାତ ପ୍ରାୟେକ ଦିଶିଲା ମେଦିନୀ
ଦୁଇଶକ୍ତି ହାବୋଡ଼ନ୍ତେ ଉଠିଲା ବହନି ।
ବହୁ ବିକଳ ସେକ୍ଷଣି ହେଲା ବସୁନ୍ଧରା
ପାତାଳେ ପଡ଼ିବି ସହି ନ ପାରିବି ଭାରା ।
ଏମନ୍ତ ସମୟେ ଶକ୍ତି ଦୁଇ ଜଣଙ୍କର
ପଡ଼ିଗଲେ ଯାଇକରି ସାହେର ଭିତର ।
ମନଭେଦୀ ନାରାଚକୁ ଘେନି ଫାଲଗୁନି
ମୋହନ ଶର ବସାଇ ବିନ୍ଧେ ତତକ୍ଷଣି ।
ପୂର୍ବେ ଯେଉଁ ଶର ଦେଇଥିଲେ ହୈମବତୀ
ଯାହାକୁ ମାରିବି ସେହି କେବେହେଁ ନ ବର୍ତ୍ତି ।
ସେ ଶରକୋଟି ବିନ୍ଧନ୍ତେ ପାର୍ଥ ମହାମନା
ପଡ଼ିଲା ବାସବ ପରେ ସେ ଶର ମୋହନା ।
ରକତରେ ଜର ଜର ହେଲା ଅଙ୍ଗଗୋଟି
ପଡ଼ିଲେକ ସୁରନାଥ ମୋହେ ମହୀଲୋଟି ।
ଘାଏ ଇନ୍ଦ୍ର ପଡ଼ିଲେକ ଯହୁଁ ମୋହ ହୋଇ
ସାନନ୍ଦରେ ଦେବଦତ୍ତ ଶଙ୍ଖ ପାର୍ଥ ବାଇ ।
ଇନ୍ଦ୍ରଦେବଙ୍କୁ ରଥରେ ନେଲା ସବ୍ୟସାଚୀ
ଦରଶନ କଲେ ଯହିଁ କାମପାଳ ଛନ୍ତି ।
ଇନ୍ଦ୍ରଦେବଙ୍କୁ ତାଙ୍କର ଶ୍ରୀଛାମୁରେ ଦେଇ
ସାଷ୍ଟାଙ୍ଗେ ପ୍ରଣାମ କଲେ ବେନିପାଦ ଛୁଇଁ ।
ଇନ୍ଦ୍ରଙ୍କୁ ନିଶ୍ଚେଷ୍ଟ ଦେଖି ଦେବ ପଶୁପତି
ବଳରାମଙ୍କୁ ମାଇଲେ ସସ୍ତ୍ରଧାରା ଶକ୍ତି ।
ରଣ ଛାଡ଼ିଣ ଇନ୍ଦ୍ରଙ୍କୁ ଚାହିଁଛନ୍ତି ହଳୀ
ଏମନ୍ତ ବେଳେ ଶକତି ମାଇଲେକ ଶୂଳୀ ।
ଯେଉଁ ଶକ୍ତି ଘାତେ ଚୂର୍ଣ୍ଣ ହୋଇଯାଏ ମେରୁ
ଶରୀର ବହି କେବଣ ଜନ ସହିପାରୁ ।
ପଡ଼ନ୍ତେଣ ଅସାକ୍ଷମ ହେଲେ ହଳଧର
ପାର୍ଥ ଆବୋରିଲେ ଶିବେ ଧରି ଧନୁଶର ।
ଗରୁଡ଼ ବାହନ ତେଜି ଶିରୀ ଜଗନ୍ନାଥ
ଅର୍ଜ୍ଜୁନ ରଥେ ସାରଥି ହୋଇଲେ ତୁରିତ ।
ବାହିଲେକ ତୁରଙ୍ଗମ ଦେବ ଚକ୍ରପାଣି
ସଦାଶିବ ଆଗେ ହେଲେ ସେ ଗାଣ୍ଡୀବ ପାଣି
ପାର୍ଥେ ଦେଖି ପାଶୁପତ ଶରକୁ ଧଇଲେ
ଯେଉଁ ଶରେ ତ୍ରିପୁରକୁ ବଧ କରିଥିଲେ ।
କୋଟିଏ କିରଣ ସେହି ନାରାଚର ଜ୍ୟୋତି
ଧନୁରେ ବସାଇ ଶିବ ବିନ୍ଧିବା ଇଛନ୍ତି ।
ଦେଖି ସେହି ନାରାଚକୁ ପାର୍ଥ ଧନୁର୍ଦ୍ଧର
ସୁମରନ୍ତେ ପ୍ରାପ୍ତ ହେଲା ତାହାଙ୍କ ହସ୍ତର ।
ଈଶ୍ୱରଙ୍କ ଧନୁରେ ସେ ବାଣ ବସିଥିଲା
ପାର୍ଥ ତାକୁ ସୁମରନ୍ତେ ବାହାରି ଅଇଲା ।
ଅଗ୍ନି ସମର୍ପି ଅଛନ୍ତି ଅର୍ଜ୍ଜୁନର ତହିଁ
ସୁମରନ୍ତେ ଶିବ ପାଶୁ ଅଇଲା ପଳାଇ ।
କୋଟି ସୂର୍ଯ୍ୟର କିରଣ ଯେଉଁ ଶସ୍ତ୍ର ଜ୍ୟୋତି
ସେ ଶର ସ୍ମରନ୍ତେ ଯହୁଁ ଗଲା ପାର୍ଥକତି ।
ତାହା ଦେଖି ବୃଷ ତେଜି ହର ପାଦଗାମୀ
ନିଃଶସ୍ତ୍ର ଦେଖିଣ ଦୟା କଲେ ଫାଲଗୁନି ।
ଶୁଣ ଆହେ ମନୁରାଜା ଯୁଦ୍ଧର ବାରତା
ପ୍ରଥମରେ ପଳାଇଲେ ଚନ୍ଦ୍ର ଯେ ଦେବତା ।
ନିଜ ବଳ ନ୍ୟୁନ ଦେଖି ଧାତା ବାହୁଡ଼ିଲେ
ଭୟରେ କୁବେର ଦେବ ପଳାଇଣ ଗଲେ ।
ବରୁଣ ଦେବତା ଗଲେ ସମରରେ ହାରି
ପଳାଇଲେ ଯୁଦ୍ଧ ତେଜି ତହୁଁ ମେଘଚାରି ।
ପବନ ଦେବତା ଗଲେ ହାରି ସମରରେ
ବଳବୀର୍ଯ୍ୟ ନ୍ୟୁନ ଦେଖି ଘୁଞ୍ଚିଲେ ଅମରେ ।
ଆଦିତ୍ୟ ଦେବତା ମେରୁ ଉହାଡ଼େ ଲୁଚିଲେ
ପାର୍ଥ ସମ୍ମୁଖରେ କେହି ରହି ନ ପାରିଲେ ।
ପଳାଇଲେ ରଣରଙ୍କ ତେଜିଣ ଶମନ
ଯମ ଉପରେ ଦ୍ୱିତୀୟ ଯମ ଭୀମସେନ ।
ପାକଶାସନ ଦେବତା ରହଲା ବନ୍ଧନେ
ଅର୍ଜ୍ଜୁନର ତେଜ ଦେଖି ହାରିଲେ ଈଶାନେ ।
ଧନୁ ଶସ୍ତ୍ର ତାହାଙ୍କର ଶ୍ରୀଭୁଜରେ ନାହିଁ
ଶିବ ଉଭାହେଲେ ଦୁଇହସ୍ତ କାଖେ ଦେଇ ।
ଗୋବିନ୍ଦ ବୋଇଲେ ଶର ବିନ୍ଧ ଆହେ ପାର୍ଥ
ଅର୍ଜ୍ଜୁନ ବୋଇଲା ଏହା ନୁହଇ ଉଚିତ ।
ବିରଥୀ ଯେ ବିବସନ ନିଶସ୍ତ୍ର ହୋଇଲେ
ମୁହିଁ ତାହାଙ୍କୁ ନ ମାରେ ଏମନ୍ତ ଦେଖିଲେ ।
ଏମନ୍ତ ଶିବ ପାଇଲ ନାହିଁ କି ହେ ଲାଜ
ପାର୍ଥ ବୋଲେ କଇଳାସେ ଯାଅ ବୃଷଧ୍ୱଜ ।
ସମରରେ ଜୟକରି ଦେବ ମଧୁହାରୀ
ଯାଇଁ ଯୁଧିଷ୍ଠି ଦେବଙ୍କୁ ପ୍ରଣମିତ କରି ।
ସ୍ୱାମୀ ମୁଁ ପ୍ରତିଜ୍ଞା କଲି ଇନ୍ଦ୍ର ନାଶିବାକୁ
ମୋ ପ୍ରତିଜ୍ଞା ପୂର୍ଣ୍ଣ ହେଲା ଚାଲନ୍ତୁ ସ୍ୱର୍ଗକୁ ।
ଅମରଙ୍କୁ ଜିଣିଲି ମୁଁ ତୁମ୍ଭର ପ୍ରସାଦେ
ଆପଣଙ୍କୁ ବସାଇବି ସ୍ୱର୍ଗେ ଇନ୍ଦ୍ରପଦେ ।
ଯୁଧିଷ୍ଠି ବୋଇଲେ ହରି ତୁମ୍ଭର ଯେ ଆଜ୍ଞା
ତାହା କରି ନ ପାରିବି କେବେହେଁ ଅବଜ୍ଞା ।

ସ୍ୱାମୀ ଯେତେବେଳେ ଆଜ୍ଞା କଲେ ଭାବଗ୍ରାହୀ
ତୋହର ସ୍ଥାପିତ ଆମ୍ଭେ ଅଟୁ ପାଞ୍ଚଭାଇ ।
ଯୁଧିଷ୍ଠିର ବାସୁଦେବ ସହଦେବ ପାର୍ଥ
ଖଗବର ପୃଷ୍ଠେ ବିଜେ କରିଲେ ତୁରିତ ।
ବଳରାମ ବିଜେକଲେ ପୁଷ୍ପକବିମାନେ
ସର୍ବେ ପରବେଶ ଦେଲେ ଅମର ଆସ୍ଥାନେ ।
ବହୁତ ସାନନ୍ଦ ହୋଇ ଦେବ ଚକ୍ରଧାରୀ
ଇନ୍ଦ୍ରାସନେ ଯୁଧିଷ୍ଠିଙ୍କୁ କଲେ ଅଧିକାରୀ ।
ଅମଳାନ ବସ୍ତ୍ର ଆଉ ପାରିଜାତ ମାଳ
ଯୁଧିଷ୍ଠିରଙ୍କ ଗଳାରେ ଦେଲେ କାମପାଳ ।
ଅମରଙ୍କ ବିଳାସିନୀ ଚଉଷଠି କୋଟି
ବିବିଧ ବେଶ ହୋଇଣ ନୃତ୍ୟରଙ୍ଗେ ଖଟି ।
ସରଗୁଣା ଯେ ମର୍ଦ୍ଦଳ କଂସାଳ ଅଧାଟି
ନାୟିକାମାନେ ପଞ୍ଚମସ୍ୱର ରାଗେ ରଟି ।
ହରି ବିଜେ କରିବାର ଦେଖିଣ କୁବେର
ସପତନିଧି ଘେନିଣ ଖଟେ ସେ ସ୍ଥାନର ।
ହା ହା ହୁ ହୁ ମୂଳେ ତିନିକୋଟି ବିଦ୍ୟାଧର
ଗାନ ବାଦ୍ୟ କରିଲେକ ଆସ୍ଥାନ ତଳର ।
ମେଘମାଳ ସେ ସ୍ଥାନରେ ହୋଇଲେ ପ୍ରବେଶ
ଗିରିଜା ବିଜୟ କଲେ ଆସ୍ଥାନର ପାଶ ।
ସା ରି ଗା ମା ପା ଧା ନି ସା ସପ୍ତସ୍ୱର ଘେନି
ନୃତ୍ୟ ଆରମ୍ଭ କରିଲେ ସେ ନାରଦ ମୁନି ।
ମନୁପୁରୁଷ ସନକ ଆଉ ବିଶ୍ୱଦେବା
ବୃହସ୍ପତି ବିଦ୍ୟାଗୁରୁ ଲଗାଇଲେ ସେବା ।
ସପତ ସମୁଦ୍ରପତି ଦେବ ରତ୍ନାକର
ଅନେକ ବିନୟ କଲେ ଯୁଧିଷ୍ଠି ପୟର ।
ଆସ୍ଥାନ ଦକ୍ଷିଣ ପାଶେ ବିଜେ ବଳଦେବ
ବାମପାଶରେ ବିଜୟ ଶିରୀ ବାସୁଦେବ ।
ଶ୍ରୀଛାମୁରେ ଗତାଗତ କହେ ସହଦେବ
ଅମରର ନାଥ ହେଲେ ଯୁଧିଷ୍ଠିର ଦେବ ।
ଆସ୍ଥାନର ତଳେ ଛନ୍ତି ବୀର ଫାଲଗୁନି
ମାତଳି ଅଇଲା ତହିଁ ଐରାବତ ଘେନି ।
ପବନଦେବ ବିଜୟ କଲେକ ଝଟତି
ଅଭିଷେକର ମୁକୁଟ ଦେଲେ ପ୍ରଜାପତି ।
ସପତାଙ୍ଗ ପାଞ୍ଜି ଘେନି ଉଭା ବୃହସ୍ପତି
ଯୁଧିଷ୍ଠି ଦେବଙ୍କ ଆଗେ ଯୋଗ ସେ କହନ୍ତି ।
କହନ୍ତି ଶୁଭବାରତା ଅନୁକୂଳ ତିଥି
ଏଥୁ ଅନନ୍ତରେ ଶୁଣ ମନୁ ନରପତି ।
ଚଞ୍ଚଳା ମୋହିନୀ ସତ୍ୟ ମାନିନୀ ମାଳବୀ
ମଦନିକା ତିଳୋତ୍ତମା ଅନନ୍ତା ମାଧବୀ ।
ତ୍ରିଲୋଚନା ଗିରିବର ସୁକେଶୀ ଭାନୁକୀ
ଚିତ୍ରରେଖା ଚନ୍ଦ୍ରକେଶୀ ଶବଦ ଜାନୁକୀ ।
ସୁମାଳୀ ମଦନ ସନ୍ତା ଜନିତା ତରୁଣା
ମାଳିତନୁ ଭାନୁନିନ୍ଦା ବିନତା କରୁଣା ।
ନାୟିକା ସୁଲକ୍ଷଣୀ ଯେ ବହୁ ଅପସରୀ
ଶଚୀଙ୍କ ରଥ ଚାଳନ୍ତେ ଏହି ବିଦ୍ୟାଧରୀ ।
ଜଣକୁ ଡାକିଣ ଶଚୀ ବୋଲେ ଯା ବହନ
ମୋର ଛାମୁକୁ ହକାରି ଆଣ ଲୋ ଅର୍ଜ୍ଜୁନ ।
ବିମାନ ଘେନି ସତ୍ୱରେ ଗଲା ସେ ସୁନ୍ଦରୀ
ଅର୍ଜ୍ଜୁନ ରଥେ ବସାଇ ଆଣିଲା ଚତୁରୀ ।
ଶଚୀ ବିଜେ କରିଛନ୍ତି କଳ୍ପବଟ ତଳେ
ଅରଜୁନ ପ୍ରଣିପାତ ହେଲେ ପାଦତଳେ ।
ଅରଜୁନଙ୍କୁ ଦେଖିଣ ବାସବଙ୍କ ନାରୀ
ସେକ୍ଷଣି ପୁରୁଁ ଆଣିଲା ସଚଳା ସୁନ୍ଦରୀ ।
ବୋଲେ ବାବୁ ନିଅ ଏହି କୃଷ୍ଣଙ୍କ କୁମାରୀ
ନ ଜାଣିଣ ଚିତ୍ରସେନ ଆଣିଥିଲା ହରି ।
ଏହାର ନିମନ୍ତେ ହେଲା ବହୁତର ଦ୍ୱନ୍ଦ
ଏହାଯୋଗୁ ନାଶଗଲା ଅମର ସମ୍ପଦ ।
ବାଳୁତ ଅଜ୍ଞାନ ଏଣୁ ହୋଇଲା ଯୁବତୀ
ଏହାକୁ ହରିଣ ପୁଣି ବୁଡ଼ାଏ ସମ୍ପତ୍ତି ।
ହରି ଆଣିଲା ବାଳକ ସେ ଅଜ୍ଞାନମତି
ତା ହେତୁ ଘଟିଲା ବାବୁ ଆମ୍ଭଙ୍କୁ ବିପତ୍ତି ।
ବାହୁଡ଼ାଇ ଯାଉଥିଲେ କନ୍ୟାକୁ ବାସବ
ମନ୍ଦବୁଦ୍ଧି ଦେଲେ ତାଙ୍କୁ ଏହି ସଦାଶିବ ।
ବାବୁ ତୁମ୍ଭେ ମୋର ପୁତ୍ର ବସିଲ ସ୍ୱର୍ଗରେ
ଏ ସମ୍ପଦ ରଖିଥିଲ ତୁମ୍ଭେ ତ ପୂର୍ବରେ ।
ଯେତେ ତୁମ୍ଭେ ଇନ୍ଦ୍ରପଦେ ବସିଲ ଆକାଶେ
ଇନ୍ଦ୍ରଦେବତାଙ୍କୁ ଆଣି ଦିଅ ମୋର ପାଶେ ।
ଆନନ୍ଦିତ ହେଲେ ପାର୍ଥ ଦେବୀ ବାକ୍ୟ ଶୁଣି
ସଚଳାକୁ ଘେନି ବିଜେ ଶଚୀ ଠାକୁରାଣୀ ।
ଆସ୍ଥାନେ କରିଅଛନ୍ତି ବିଜେ ଯୁଧିଷ୍ଠିର
ଦ୍ୱାରେ ଶଚୀଦେବୀ ଉଭା ଯୋଡ଼ି ବେନିକର
ଆସ୍ଥାନ ତଳେ ପ୍ରଣାମ କଲେ ଯାଇ ଶଚୀ
ଦେଖି ଆନନ୍ଦିତ ହେଲେ ରୋହିଣୀ ବସ୍ପି ।
ବୀଣା ସ୍ଥକିତ କରିଲେ ନାରଦ ମହାତ୍ମା
ଆସ୍ଥାନ ତଳରେ ଉଭା ଇନ୍ଦ୍ରଙ୍କର ବାମା ।
ଶଚୀଙ୍କୁ ଦେଖିଣ ଧର୍ମରାଜା ଯୁଧିଷ୍ଠିର
ଆପଣେ ଆସନ ତେଜି ଉଠିଲେ ସତ୍ୱର ।
ନାରାୟଣଙ୍କୁ ଦେଖିଣ କୁମାରୀ ସଚଳେ
ହରଷେ ବସିଲା ଯାଇ ତାହାଙ୍କର କୋଳେ ।

ଶଚୀଦେବୀ ଦଶନଖ ନିଜ ମୁଖେ ଭରି
ବୋଇଲେ ମୋ ପତି ଦିଅ ପ୍ରଭୁ ଚକ୍ରଧାରୀ ।
ଯୁଧିଷ୍ଠି ବୋଇଲେ ଗୋ ଚିନ୍ତା ନ କର ଗୋ ମାତ
ଏହିକ୍ଷଣି ଆସିବେ ଗୋ ତୁମ୍ଭର ସେ ନାଥ ।
ଦୟା କରନ୍ତି ଯେବେ କି ଦେବ ହଳପତି
ଜୀଆଇଁ ପିତାଙ୍କୁ ଆଣିଦେବି ତୁମ୍ଭ କତି ।
ତୁମ୍ଭେ ଏବେ ବିଜେକର ଆପଣା ଆଳୟେ
ଭକ୍ତବତ୍ସଳ ନାଥଙ୍କୁ କରୁଛି ବିନୟେ ।
ଏହା କହି ଯୁଧିଷ୍ଠିର ସେ ବଳଦେବଙ୍କୁ
ସ୍ତୁତି ଆରମ୍ଭ କରିଲେ ଯୋଡ଼ିଣ କରକୁ ।
ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କ ଭକ୍ତିଭାବ ଦେଖି
ବଳରାମେ ସ୍ତୁତି କଲେ ଆସନ ଉପେକ୍ଷି ।
ଯୁଧିଷ୍ଠି ଜଣାନ୍ତି ଆହେ ଦେବ ହଳହସ୍ତ
ତୁହି ଦେବ ନୀଳାମ୍ବର ରେବତୀଙ୍କ କାନ୍ତ ।
ତୁ ଦେବ ଶୟଳ ଜନମାନଙ୍କୁ ସମ୍ଭାଳୁ
ତୁ ଦେବ ପ୍ରସନ୍ନ ହୋଇ ସେମାନଙ୍କୁ ପାଳୁ ।
ତୋହର ସୁନ୍ଦର ରୂପ ଜଗତ ମୋହନ
ଜଗତ ମଧ୍ୟେ ଯେ ଛନ୍ତି ତୋ ସଞ୍ଜିଲା ଜନ ।
ତୁହି ତିନି ଭୁବନର ଅଟୁ ଅଧୀଶ୍ୱର
ସକଳ ଦେବଙ୍କ ପରେ ତୋର ଅଧିକାର ।
ତୁହି ଦେବ କାମପାଳ ଭକତବତ୍ସଳ
କାଦମ୍ବରୀ ପାନେ ସଦା ତୋର ମତି ଭୋଳ ।
ତୁହି ଦେବ ଦେବ ପ୍ରଭୁ ଦୁଃଖୀଙ୍କ ସୋଦର
ମୋହର ବାକ୍ୟ କିଞ୍ଚିତ ଚିତ୍ତେ ଘେନାକର ।
ଏହିପରି ବହୁସ୍ତୁତି କଲେ ଧର୍ମସୁତ
ପ୍ରସନ୍ନ ହୋଇଲେ ତାଙ୍କୁ ଦେବ ହଳହସ୍ତ ।
କେଉଁ କଥା ଅଛି ତୋର କହ ଧର୍ମରାୟେ
ବଳରାମ ପ୍ରସନ୍ନରେ ସର୍ବସିଦ୍ଧି ହୁଏ ।
ଯୁଧିଷ୍ଠି ବୋଇଲେ ଯେବେ ହୋଇଲ ପ୍ରସନ୍ନ
ପୁରନ୍ଦର ଦେବତାଙ୍କୁ ଦିଅ ଜୀବଦାନ ।
ତୁମ୍ଭର ସ୍ଥାପିଲା ସିନା ଅଟେ ଦେବଇନ୍ଦ୍ର
ତୁମ୍ଭେ ଦେଇକରି ଏବେ ହରିଲ ସମ୍ପଦ ।
ଦୟାକରି ନାଥ ଯେବେ ହୋଇଲ ପ୍ରସନ୍ନ
ବାସବକୁ ମହାପ୍ରଭୁ ଦିଅ ଜୀବଦାନ ।
ଯୁଧିଷ୍ଠି ବଚନେ ରାମ ଅର୍ଜୁନଙ୍କୁ ଚାହିଁ
କହନ୍ତିରେ ଫାଲଗୁନି ବାଣ ବିନ୍ଧ ତୁହି ।
ବଳରାମଙ୍କ ବଚନେ ବୀର ଅରଜୁନ
ଅମୃତ ଶରକୁ ବେଗେ କରିଲା ସନ୍ଧାନ ।
ତାପରେ ଚେତନ ଶସ୍ତ୍ର ଧରି ବୀର ପାର୍ଥ
ଦେବବଳ ଉପରକୁ ପେଷିଲା ତୁରିତ ।

ଚିତ୍ରସେନ ତୁଲେ ଇନ୍ଦ୍ର ରଣେ ପଡ଼ିଥିଲେ
ଚେତନ ଶରରେ ମୋହ ତେଜିଣ ଉଠିଲେ ।
ଅର୍ଜୁନ ପ୍ରଣାମ କରି ଇନ୍ଦ୍ରଙ୍କ ଚରଣେ
ପାର୍ଥଙ୍କୁ କୋଳ କରିଲେ ସେ ପାକଶାସନେ ।
ସାଧୁ ସାଧୁ ପାର୍ଥ ତୁହି ରଣେ ମହାଯୋଦ୍ଧା
ଶରଣ ତାରଣ ଜାଣୁ ତୁହି ସର୍ବସିଦ୍ଧା ।
ଅର୍ଜୁନ ବୋଲେ ପୁଷ୍ପକ ରଥେ କର ବିଜେ
ଏବେ ତୁହି ଆସ୍ଥାନକୁ ଚାଲ ଦେବରାଜେ ।
ଶୁଣିକରି ଆନନ୍ଦିତ ହେଲେ ସୁରନାଥ
ପାର୍ଥ ସହିତେ ବସିଲେ ସେ ପୁଷ୍ପକରଥ ।
ରଥରେ ବସି ବିଜୟ କଲେ ମଘବାନ
ବାରସ୍ୱତୀ ପୁରେ ଯାଇ ମିଳିଲେ ବହନ ।
ଶଚୀଦେବୀଙ୍କୁ ସଙ୍ଗରେ ଘେନି ସସ୍ତ୍ରଯୋନି
ଆପଣେ ଇନ୍ଦ୍ର କରରେ ଅର୍ଘ୍ୟସ୍ଥାଳି ଘେନି ।
ବିଜେ କଲେ ମଘବାନ ଅମର ସଭାରେ
ଅର୍ଘ୍ୟ ବନ୍ଦାଇଲେ ନେଇ ଯୁଧିଷ୍ଠିଙ୍କ ଶିରେ ।
ଅର୍ଘ୍ୟ ଦେଇଣ କଲ୍ୟାଣ କଲେ ମଘବାନ
ବାବୁ ତୁମ୍ଭେ ସୁଖୀ ହୁଅ ଧର୍ମେ ରହୁ ମନ ।
ଏବେ ତୁମ୍ଭେ ମଧ୍ୟସ୍ୱର୍ଗେ ରାଜପଦେ ବସ
ପୁଣି ଏହି ଦେହ ଘେନି ଅମରକୁ ଆସ ।
ପୁଣି ବଳରାମଙ୍କର ଚରଣେ ପ୍ରଣମି
ମମଦୋଷ କ୍ଷମା କର ବଳଦେବ ସ୍ୱାମୀ ।
ଶରଣ ରକ୍ଷଣ ତୁମ୍ଭେ ଅଚ୍ୟୁତ ଅଗ୍ରଜ
ମୋର ଅପରାଧ କ୍ଷମା କର ଦେବରାଜ ।
ସଉନିଧି ନାଥ ତୁମ୍ଭେ ଜଗତରେ ଶ୍ରେଷ୍ଠ
କ୍ଷମ ପ୍ରଭୁ ମୋର ଦୋଷ ହୋଇଛି ଗରିଷ୍ଠ ।
ଇନ୍ଦ୍ରସ୍ତୁତି ଶୁଣି ହେଲେ ବଳଦେବ ଶାନ୍ତି
ଇନ୍ଦ୍ରବୋଲେ ଶିବଯୋଗେ ଲଭିଲି ଏ ଶାସ୍ତି ।
ଇନ୍ଦ୍ର ଗୋବିନ୍ଦ ମାହାତ୍ମ୍ୟ ତୁମ୍ଭେ ଅଛ ଜାଣି
ମଧ୍ୟେ ପଶି ଏହି ମନ୍ଦ କଲେ ଶୂଳପାଣି ।
ଶୁଣି ବଳରାମ ନିଜେ ତାଙ୍କୁ ଦେଲେ ଶାଢ଼ୀ
ବୋଇଲେ ଯା ନ କରିବ ପର ବୋଲେ ପଡ଼ି ।
ଯୁଧିଷ୍ଠିଦେବ ବୋଇଲେ ଶ୍ରୀଜଗନ୍ନାଥଙ୍କୁ
କଥାଏ କହିବି ଯେବେ ଯୋଗାଏ ମନକୁ ।
ହରି ବୋଇଲେ ତୁମ୍ଭର ବାକ୍ୟ ଅଲଙ୍ଘିତ
ତୁମ୍ଭ ପ୍ରସାଦେ ଅଭୋଗ ଭୋଗ ଦୁଇମତ ।
ସ୍ୱାମୀର ବଚନ କେହୁ ଆନ କରିପାରି
କି କହିବ କହ ଯାଉ ସନ୍ଦେହ ମୋହରି ।
ଯୁଧିଷ୍ଠି ବୋଇଲେ ଇନ୍ଦ୍ର ଗୋବିନ୍ଦ ଏକାତ୍ମା
ବହୁ ଅପରାଧୀ ହେଲେ ବାସବ ମହାତ୍ମା ।

ଶିବ ବ୍ରହ୍ମା ଚନ୍ଦ୍ର ସୂର୍ଯ୍ୟ ଆବର କୁବେର
ଶମନ ପବନ ଗୁରୁ ଆଉ ବୈଶ୍ୱାନର ।
ଆବର ବିଶେଷେ ଯୁଦ୍ଧେ ଈଶ୍ୱର ଗିରିଜା
ପ୍ରତିଜ୍ଞା କରି ପାଇଲେ ବହୁତର ଲଜ୍ଜା ।
ସ୍ୱାମୀ ଜଗମୋହନ ମୋ ବଚନ କରିବା
ସଚଳାକୁ ଚିତ୍ରସେନେ ପ୍ରଦାନ କରିବା ।
ମୋହର ବଚନେ କନ୍ୟା ପ୍ରଦାନ କରନ୍ତୁ
ଅମରପତି ଯେସନେ ଲଜ୍ଜାକୁ ନ ପାନ୍ତୁ ।
ଆପଣ ବୋଇଲେ ଅନ୍ୟ ଇନ୍ଦ୍ର କରିବାକୁ
ଏ କଥା କଲେ ଦୂଷଣ ହୋଇବ ଆମ୍ଭଙ୍କୁ ।
ଯୁଧିଷ୍ଠି ଦେବ ବଚନେ ହରି ହେଲେ ତୁନି
ତୁମ୍ଭେ ଅନୁମତି ଦେଲେ ଶଙ୍ଖ ଚକ୍ରପାଣି ।
ବୈନତେୟ ବାହନରେ କରି ତହୁଁ ବିଜେ
ବ୍ରହ୍ମା ଭୁବନେ ମିଳିଲେ ପ୍ରଭୁ ଦେବରାଜେ ।
ବ୍ରହ୍ମାଙ୍କୁ ଦେଖି ତାହାଙ୍କ ଚରଣେ ପ୍ରଣମି
ବୋଇଲେ ଅମରପୁର ଚାଲ ଯିବା ସ୍ୱାମୀ ।
ଭକତ ବତ୍ସଳ ପ୍ରଭୁ ଯେଉଁ ଦୟାମୟ
ଦୋଷ ଉପେକ୍ଷିଣ ପୁଣି କରିଲେ ସଦୟ ।
ଗୋବିନ୍ଦ ବୋଇଲେ ଏହା କହିଲେ ଯୁଧିଷ୍ଠି
ଚିତ୍ରସେନେ ବିଭା ଦିଅ ସଚଳା କନ୍ୟାଟି ।
ବେଗ ହୋଇ ଚାଲ ସ୍ୱାମୀ ଅମରପୁରକୁ
ଶୁଣି ବ୍ରହ୍ମା ପ୍ରଶଂସିଲେ ବହୁ ଯୁଧିଷ୍ଠିଙ୍କୁ ।
ତହୁଁ ମରାଳ ବାହନେ ବ୍ରହ୍ମା ବିଜେ କଲେ
ହରି ବ୍ରହ୍ମା ଇନ୍ଦ୍ରପୁରେ ପ୍ରବେଶ ହୋଇଲେ ।
ବଳରାମ ଅରଜୁନ ବେଗ ହୋଇ ଗଲେ
କଇଳାସ କନ୍ଦରରେ ଶିବଙ୍କୁ କହିଲେ ।
ଶୁଣି ଆନନ୍ଦିତ ହେଲେ ଦେବ ନୀଳକଣ୍ଠ
ବୃଷଭ ଚଢ଼ି ଅଇଲେ ମନ କରି ତୁଷ୍ଟ ।
ଶିବଗଣଙ୍କୁ ସଙ୍ଗରେ ଘେନି ମହେଶ୍ୱର
ପାର୍ବତୀ ସହିତେ ବିଜେ ଅମର ନଗର ।
ସୁଧର୍ମା ସଭାରେ ବିଜେ ଦେବ ସଦାଶିବ
ଚିତ୍ରସେନକୁ ବରିଲେ ପ୍ରଭୁ ବାସୁଦେବ ।
ଆଶ୍ଚର୍ଯ୍ୟ ହୋଇଲେ ତହିଁ ଋଷି ଯେ ପୌଲସ୍ତ୍ୟେ
କନ୍ୟାକୋଳେ ଘେନି ବିଜେ ପ୍ରଭୁ ଜଗନ୍ନାଥେ
ବାଜଇ ଦୁନ୍ଦୁଭି ଆଦି ନାନାଜାତି ବାଦ୍ୟ
ଗଗନେ ପୂରିଲା ଦେବଦତ୍ତ ଶଙ୍ଖନାଦ ।
ଉଭୟ କୁଳର ଗୋତ୍ର କଲେ ଉଚ୍ଚାରଣ
କନ୍ୟାଗୋଟି ସମର୍ପିଲେ ଦେବ ନାରାୟଣ ।
ଲାଜାହୋମ ସାରି କଲେ ପାରଣା ଯେ ଘୃତ
ଲଭିଲା ସଚଳା କନ୍ୟା ବାସବର ସୁତ ।
ଅନେକ ହରଷମନ ହେଲେ ଦେବମାନେ
ମନରୁ ଭ୍ରାନ୍ତି ତେଜିଲେ ଦେବ ମଘବାନେ ।
କନ୍ୟାଗୋଟିକୁ ସମର୍ପି ଦେବ ମଧୁହାରୀ
ଦିବସ ଦଶ ରହିଲେ ବନ୍ଧୁଭାବ କରି ।
ତତ୍ପରେ ଯାଦବ ଘେନି ଅଇଲେ ଶ୍ରୀହରି
ଯୁଧିଷ୍ଠି ଆସି ରହିଲେ ପଦ୍ମନାଭ ଗିରି ।
ଧର୍ମକୁ ବୋଇଲେ ହରି ଚାଲ ଦ୍ୱାରକାକୁ
ମୋ ପୁର ଲୋକ ସେବିବେ ତବ ଚରଣକୁ ।
ଯୁଧିଷ୍ଠି ବୋଇଲେ ହରି କରିଛୁଁ ନିୟମ
ବନେ ବାସ ନ କରିଲେ ନାଶଯିବ ଧର୍ମ ।
ଆବର ଅଛି ବରଷେ ତେର ଯେ ଦିବସ
ଏହାର ଅନ୍ତେ ହୋଇବ ଅଜ୍ଞାତ ଯେ ବାସ ।
ଏହା ଶୁଣି ବହୁ ଭକ୍ତି କଲେ ନାରାୟଣ
ବିଦାୟ ମାଗି ଚଳିଲେ ଦ୍ୱାରକା ଭୁବନ ।
ଜୟ ଦେବ ଦାମୋଦର ନୃସିଂହ ମୂରତି
ସ୍ତମ୍ଭ ବାହାରି ହିରଣ୍ୟ ବିଦାରିଲ ଧାତି ।
କଳିଯୁଗେ ବିରାଜିତ ନୀଳ କନ୍ଦରରେ
ଶଙ୍ଖ ଚକ୍ର ଗଦା ପଦ୍ମ ଶୋହେ ଚାରିକରେ ।
କଳି କଳୁଷ ନାଶନ କରିବାର ପାଇଁ
ବିଜେ ବାରାନିଧି ତଟେ ଜଗତ ଗୋସାଇଁ ।
ଭକତ ବତ୍ସଳ ଦେବ ନାରାୟଣ ମୂର୍ତ୍ତି
ତବ ପାଦେ ଶୂଦ୍ରମୁନି ମାଗେ ଗତି ମୁକ୍ତି ।

■■■

## କୀର୍ତ୍ତିବାସ ଦୈତ୍ୟ ବଧ, ଚନ୍ଦ୍ରଭାଗା ତୀର୍ଥର ମାହାତ୍ମ୍ୟ ଓ ଅର୍କ ଦୈତ୍ୟ ବଧ

ଏଥୁଅନ୍ତେ ଶୁଣ ଜନେ ମନୁ ନରସାଇଁ
ଅଗସ୍ତିଙ୍କ ଶ୍ରୀଚରଣେ ଧୂପ ଦୀପ ଦେଇ ।
ଷଡ଼ର୍ଘ୍ୟେ ପୂଜି ତାହାଙ୍କ ମନକୁ ତୋଷିଲେ
ଉତ୍ତମ ଆସନେ ନେଇ ତାଙ୍କୁ ବସାଇଲେ ।
ବୋଇଲେ ଯେ ମହାମୁନି ତୁମ୍ଭ ପ୍ରସାଦରେ
ସଚଳା ହରଣ ଯୁଦ୍ଧ ଶୁଣିଲି କର୍ଣ୍ଣରେ ।
ଏ ଉତ୍ତାରୁ ଯୁଧିଷ୍ଠିର ଭାଇ ପାଞ୍ଚଜଣ
କେଉଁଠାରେ ରହି କଲେ କି କି କର୍ମମାନ ।
ଏ କଥା ବିସ୍ତାରି କହ ମୁନି ମହାଶୟ
ଯେସନେ ମୋର ମନରେ ନ ରହେ ସଂଶୟ ।
ମୁନି କହିଲେ ଶୁଣ ହେ ମନୁ ନରପତି
ପଦ୍ମନାଭ ନଗ୍ରେ ଥିଲେ ଧର୍ମ ନରପତି ।
ଶ୍ରୀକୃଷ୍ଣ ବିଦାୟ ମାଗି ସେଠାରୁ ଚଳିଲେ
ଦ୍ୱାରକା ଭୁବନେ ଯାଇ ପ୍ରବେଶ ହୋଇଲେ

ପଦ୍ମନାଭ ପର୍ବତରୁ ଦେବ ଯୁଧିଷ୍ଠିର
ଗୋଦୋହନ ଘେନି ସେହି ତିନି ସହୋଦର ।
ଗୋଦୋହନ ପର୍ବତରେ ପରବେଶ ହେଲେ
ନକୁଳ ଦ୍ରୌପଦୀ ଦେଖି ଧର୍ମଙ୍କୁ ନମିଲେ ।
ଯୁଦ୍ଧ ସମାଚାର ଆଉ ସଚଳା ବିବାହ
ସବୁ ବିଷୟ କହିଲେ ଧର୍ମ ନରରାୟ ।
ତହୁଁ ଚଳିଗଲେ ସର୍ବେ ଏକାମ୍ରର ବନ
ବିନ୍ଦୁସାଗରେ ସକଳେ କଲେ ସ୍ନାନ ଦାନ ।
କଉଶିକଙ୍କୁ ଭେଟିଲେ ତହୁଁ ଧର୍ମରାୟେ
ତାହାଙ୍କ ପାଦରେ କଲେ ବହୁତ ବିନୟେ ।
ତାଙ୍କୁ କହନ୍ତି କୌଶିକ ଏହୁ ମହାତୀର୍ଥ
ବିଜେ କରିଛନ୍ତି ଏଥେ ଏକାମ୍ରର ନାଥ ।
ହେ ଯୁଧିଷ୍ଠି ଏହିଠାରେ ଛନ୍ତି ଲିଙ୍ଗରାଜା
ଅର୍ଘ୍ୟେଦେଇ ଯାଙ୍କ ପାଦେ କର ତୁମ୍ଭେପୂଜା ।
ପୁଣି ବୋଲନ୍ତି କୌଶିକ ଏକାମ୍ରର ନାଥ
ଭୁବନେଶ୍ୱରୀଠାରୁ ଏ ବଡ଼ ଦଶଲକ୍ଷ ।
ଏକାମ୍ରରନାଥ ଲଙ୍କେଶ୍ୱର ଯେ ଦେବତା
ଆଦିକ୍ଷେତ୍ରରେ ଏହି ଯେ ବିଶ୍ୱର ସମ୍ଭୂତା ।
ଯୁଧିଷ୍ଠିର ପୁଚ୍ଛନ୍ତି ସେ ତୀର୍ଥର ବାରତା
କହନ୍ତି ଯେ କଉଶିକ ମୁନି ମହାଜ୍ଞାତା ।
ବାବୁ ଏହି ଅଟଇ ଯେ ଏକାମ୍ରର ବନ
ପୃଥିବୀ ମଧରେ ଏହି ଅଟେ ଶୁଦ୍ଧସ୍ଥାନ ।
ଉତ୍ତରରେ ରାମେଶ୍ୱର ଦକ୍ଷେ ସପ୍ତେଶ୍ୱର
ପଶ୍ଚିମରେ ମୁକ୍ତେଶ୍ୱର ପୂର୍ବେ ସ୍ୱର୍ଣ୍ଣେଶ୍ୱର ।
ବାୟବ୍ୟରେ ଭଦ୍ରେଶ୍ୱର ଈଶାନେ ରୁଦ୍ରେଶ
ନୈର୍ଋତେ ତ୍ରିପୁରାନ୍ତକ କରିଛନ୍ତି ବାସ ।
ଇନ୍ଦ୍ରେଶ୍ୱର ଲିଙ୍ଗ ବିଜେ ଅନଳର କୋଣ
ଏହି ଅଷ୍ଟଲିଙ୍ଗ ଜମ୍ବୁଦ୍ୱୀପକୁ ଧାରଣ ।
ଅଷ୍ଟ ମହାଲିଙ୍ଗ ଛନ୍ତି ଏକକ୍ଷେତ୍ରେ ଦ୍ୱୀପକେ
ଆଉମାନେ ଭଗ୍ନ ହୁଅନ୍ତି ପ୍ରଳୟ ଅନ୍ତକେ ।
ନବଦ୍ୱୀପ ପୃଥ୍ୱୀକୁ ଯେ ବାଆସ୍ତରି କିଳା
ଏ ହେତୁ ପୃଥ୍ୱୀ ରହିଲା ହୋଇଣ ନିଶ୍ଚଳା ।
ଶଙ୍ଖପଦ୍ମ କର୍କୋଟକ ତକ୍ଷକ ଅନନ୍ତ
ଅଷ୍ଟକୁଳା ନାଗ ରକ୍ଷୁ ଆଠଦିଗ ଖ୍ୟାତ ।
ଏମନ୍ତେଣ ବିଖ୍ୟାତ ଯେ ଅଟଇ ଏ ତୀର୍ଥ
ଏକାମ୍ରର ବନେ ବିଜେ ଏକାମ୍ରର ନାଥ ।
କୀର୍ତ୍ତିବାସ ବୋଲିକରି ଦୈତ୍ୟସୁତ ବେନି
ଏକାମ୍ରରନାଥ ସେବା କଲେ ଯୁଗ ତିନି ।
ଭୋଳେ ବର ଦେଲେ ତାଙ୍କୁ ଏକାମ୍ରରନାଥ
ତିନିପୁରେ ପ୍ରତାପୀ ସେ ହେଲେ ବେନିଦୈତ୍ୟ
ଅମରପୁରେ ଯାଇଣ ଉପଦ୍ରବ କଲେ
କୁବେର ଭଣ୍ଡାର ସେହି ବଳେ ଘେନିଗଲେ ।
ଅନେକ ରାଜଭଣ୍ଡାର ନେଲେ କୂରକରି
ସୁବର୍ଣ୍ଣେ ବାନ୍ଧିଲେ ଏହି ସ୍ୱର୍ଣ୍ଣକୂଟ ଗିରି ।
ସ୍ୱର୍ଣ୍ଣକୂଟ ଗିରି ନାମ ଦେଲେ ଦୈତ୍ୟ ବେନି
ତାଙ୍କ ଭୟେ ସ୍ୱର୍ଗ ତ୍ୟାଗ କଲେ ସସ୍ରଯୋନି ।
ସନ୍ନ୍ୟାସ ନାମେ ରାଜାର ଅଟନ୍ତି ଏ ପୁତ୍ର
କୀର୍ତ୍ତିବାସ ବୋଲିକରି ବେନି ବଳବନ୍ତ ।
ଏ ମହାତୀର୍ଥ ହୋଇଲା ସେ ଦୈତ୍ୟଙ୍କ ଭୋଗ
ତପୀ ଋଷି ଏ ତୀର୍ଥକୁ ଭୟେ କଲେ ତ୍ୟାଗ ।
ବାବୁ ଏମନ୍ତ ଯେ ତହିଁ କେତେଦିନ ଗଲା
ବନଜନ୍ତୁଙ୍କର ଆତଯାତ ଯେ ନୋହିଲା ।
ଈଶ୍ୱର ସଦା ଭାଳନ୍ତି ଏହି ମହାତୀର୍ଥ
ସଂସାର ଜନ ଏଥିରେ ହୋଇବେ ମୁକତ ।
ବହୁ ଆନନ୍ଦେ ଆସନ୍ତି ବୃନ୍ଦାରକ ଏଥେ
ଦୈତ୍ୟ ଭୟେ ନ ପାରନ୍ତି ପଶି ଏହି ତୀର୍ଥେ ।
ମାଘମାସ ଶୁକ୍ଳପକ୍ଷ ଅଟେ ଗୁରୁବାର
ଏହିଦିନ ଉମା ଆଗେ କହନ୍ତି ଶଙ୍କର ।
କୀର୍ତ୍ତିବାସ ଦୁଇଦୈତ୍ୟ ମରନ୍ତେ କେମନ୍ତ
ତେବେ ସେ ମହାତୀର୍ଥ ହୁଅନ୍ତା ଜାଗ୍ରତ ।
ଏହା ଶୁଣିଣ ବୋଇଲେ ତାହାଙ୍କୁ ପାର୍ବତୀ
ତୁମ୍ଭେ କିପାଇଁ ନ ମାର ସେ ଦୈତ୍ୟ ଦୁହିଙ୍କି ।
ଈଶ୍ୱର ବୋଇଲେ ଏହୁ ଦୁରନ୍ତ ଦଇତ୍ୟ
କେବଣ ଉପାୟେ ଯାଙ୍କୁ କରିବି ନିହତ ।
ବ୍ରହ୍ମାଙ୍କୁ ଗଞ୍ଜି ଜିଣିଲେ ଏହୁ ସୁରରାୟେ
ନାରାୟଣ ଦେବଙ୍କୁ ଏ ନ କରନ୍ତି ଭୟେ ।
ଦୁସ୍ତର ବର ତାହାଙ୍କୁ ଦେଇଅଛି ପ୍ରିୟେ
ଏବେ ତାଙ୍କୁ ଦେଖି ମୋର ଭୟ ଜାତ ହୁଏ ।
ଉମା ବୋଲେ ତେବେ ତାଙ୍କୁ ରଣେ ନୁହ ସରି
ବିଶ୍ୱାସଘାତକୀ ହେଲେ ପାରିବି ମୁଁ ମାରି ।
ତୁମ୍ଭେ ଯେବେ ନାଥ କୋପ ନ କରିବ ମୋତେ
ମୁଁ ତାଙ୍କର ପତ୍ନୀ ହେବି ଅଭିନ୍ନ ଯୁକତେ ।
ଯେବେ ଉପାୟରେ ତାଙ୍କୁ ପାରଇ ମୁଁ ମାରି
ଯେ ରୂପେ ବଧିବି ତାଙ୍କୁ ଉପାୟ ମୁଁ କରି ।
ଶୁଣି ସନ୍ତୋଷରେ ଆଜ୍ଞାଦେଲେ ଦେବରାଜା
ଏ ମହାତୀର୍ଥକୁ ତୁହି ଉଦ୍ଧାର ଗିରିଜା ।
ସ୍ୱାମୀଙ୍କ ଅଲଙ୍ଘ୍ୟ ବାକ୍ୟେ ଦେବୀ ହୈମବତୀ
ବିଦାୟ ମାଗି ସେଠାରୁ ଅଇଲେ ଝଟତି ।
ଅପୂର୍ବ ରୂପ ଧରିଣ ବିଜେକଲେ ଉମା
ସଂସାରେ ତାଙ୍କ ରୂପକୁ ନାହିଁ ଯେ ଉପମା ।

ଉର୍ବଶୀ ମୋହିନୀ ଆଉ ରମ୍ଭା ଅପସରୀ
ଆବର ତେତିଶକୋଟି ଦେବତାଙ୍କ ନାରୀ ।
ଏହିପରି ତିନିପୁର ମଧ୍ୟେ ଯେତେ ନାରୀ
ପାର୍ବତୀଙ୍କ ଚରଣକୁ ନୋହିବେ କେ ସରି ।
ଅତୁଳ୍ୟ ରୂପ ତାଙ୍କର ପରମ ଅପର୍ଣ୍ଣା
ତିନି ଭୁବନକୁ ସେହି ମୋହଫାଶି ସିନା ।
ନବସୃଷ୍ଟି ଭିଆଇଲେ ବେଦବର ସ୍ୱାମୀ
ପାର୍ବତୀଙ୍କ ରୂପ ସେହି ନ ପାରିଲେ ବର୍ଣ୍ଣି ।
ସେ ମହାତୀର୍ଥ ଉଦ୍ଧାର କରିବା ନିମନ୍ତେ
ପଶିଲେ ଯେ ମହାଦେବୀ ଗହନ ବନସ୍ତେ ।
ଶତତାଳ ବୋଲିକରି ଯେଉଁ ନଦୀଗୋଟି
ଚିତ୍ରୋପ୍ରଳାବାହିନୀ ଯେ ଦକ୍ଷିଣରୁ ଫୁଟି ।
ପିତୃଲୋକଙ୍କୁ ଯେ ଅନୁକ୍ଷଣେ ଦହ୍ୟକରି
ବହନଶୀଳ ବୋଲି ସେ ନଦୀ ସ୍ନାନ କରି ।
ହେମର ମହିମା ସାତତାଳ ନଦୀଗୋଟି
ପଞ୍ଚବଟୀ ବନୁ ଦେବ ଆସୁଅଛି ଫୁଟି ।
ସେ ନଦୀରେ ଯାଇ ସ୍ନାନ କରିଲେ ପାର୍ବତୀ
ଗୋପାଳୁଣୀ ରୂପକୁ ସେ ଧଇଲେ ଝଟତି ।
ପଟ ମଡ଼ିଆଳ ଅଙ୍ଗେ ଆଭରଣ କଲେ
ଶିରେ ଦଧିଭାଣ୍ଡ ଘେନି ବନମାର୍ଗେ ଗଲେ ।
ଧୀର ଧୀର ହୋଇ ଦେବୀ ଚଳନ୍ତି ବନସ୍ତେ
ପ୍ରବେଶ ହୋଇଲେ ସ୍ୱର୍ଣ୍ଣଚୂଡ଼ ଗିରିପଥେ ।
କୀର୍ତ୍ତିବାସ ବୋଲି ଜାଣ ସେ ବେନି ଅସୁର
ଦୁହେଁ ବସିଣ ଅଛନ୍ତି ପର୍ବତ ଉପର ।
ଦେଖିଣ ବେନି ଦାନବେ ଉଠିଲେ ଝଟତି
ବିଚାରନ୍ତି ଅପୂର୍ବ ଏ କନ୍ୟା ରୂପକାନ୍ତି ।
ଆମ୍ଭ ଭୟେ ନୁହଁନ୍ତି ଯେ ଜନ ଆତଯାତ
ବଡ଼ ସୁଲଭ ଆମ୍ଭର କର୍ମର ସୁକୃତ ।
ଧାତିକାରେ ଦାନବେ ଯେ ପର୍ବତରୁ ଆସି
କାହିଁର ତରୁଣୀ ବୋଲି ବଚନ ପ୍ରକାଶି ।
ଶୁଣିଣ ଦେବୀ ତାହାଙ୍କୁ ଦେଲେ ଏ ଉତ୍ତର
ଦଧି ବିକ୍ରୟ କରିବା ବ୍ୟବସାୟ ମୋର ।
ଜାତିରେ ଅଟଇ ଜାଣ ମୁହିଁ ଗୋପାଳୁଣୀ
ବନମାର୍ଗେ ପଶିଲି ମୁଁ ପଥକୁ ନ ଜାଣି ।
ତାହାଙ୍କୁ କହିଲେ ସେହି ଦୈତ୍ୟ ଦୁଇଭାଇ
ଆମ୍ଭମାନଙ୍କୁ ଦେବ କି ତୁମ୍ଭେ ଆଜି ଦହି ।
କେଉଁ ଧନରେ ତୋହର ଅଛି କହ କାର୍ଯ୍ୟ
ଅଷ୍ଟରତ୍ନକୁ ମାଗିଲେ ତୋତେ ଦେବୁ ଆଜ ।
ତୋହର ଆମ୍ଭର ହେବ ଅନେକ ପୀରତି
ଆମ୍ଭର ତହିଁକି ଦହି ଆଣୁଥିବ ନିତି ।

ତାହା ଶୁଣିଣ ହସିଲେ ମାୟା ଗୋପାଳୁଣୀ
ଦିଅ ମୋତେ ଧନ ତୁମ୍ଭେ ଦହି ନିଅ କିଣି ।
ଶାଳପତ୍ର ଘେନି କରେ ପିଇଲେ ଦ୍ୱିଭାଇ
ଢାଳନ୍ତି ଯେ ମହାମାୟୀ ଯାଆନ୍ତି ସେ ପିଇ ।
ଏକ ନଉତିରୁ ଦହି ଢାଳନ୍ତି ପାର୍ବତୀ
ପିଅନ୍ତି ଅସୁରେ ତାଙ୍କୁ ଦ୍ୟନ୍ତି ପ୍ରତି ପ୍ରତି ।
କ୍ଷୀରୋଦ ପାନେ ସମର୍ଥ ଅଟନ୍ତି ଯେ ବୀରେ
ଏକ ନଉତିରେ ତାଙ୍କୁ ଅଣ୍ଟିଲା ସମ୍ଭାରେ ।
ପିଅନ୍ତି ଦହି ଦେଖନ୍ତି ପାର୍ବତୀଙ୍କ ବର୍ଣ୍ଣ
ଦହି ପିଇ ଅସୁରେ ଯେ ହେଲେ ମୋହମାନ
ନିର୍ଜ୍ଜନ ସେ ବନେ ଜନେ ନାହାନ୍ତି ଯେ କତି
ପରିହାସ କରିଲେ ସେ ଗୋପାଳୁଣୀ ପ୍ରତି ।
ବହୁତ ଭୋଜନେ ବଶ ହେଲେ ଭାଇବେନି
କାମେ ଅସାଷ୍ଟମ ହେଲେ ଦେଖିଣ କାମିନୀ ।
ଗୋପାଳୁଣୀ ବୋଇଲେକ ମୋତେ ଦିଅ କିସ
ବଣା ହୋଇ ଅଇଲି ମୁଁ ଯିବି ଦୂରଦେଶ ।
ଅସୁରେ ବୋଇଲେ ବଶହେଲୁ ତୋତେ ଦେଖି
ପଡ଼ିଲୁଣି ଆମ୍ଭ ଆଗେ ଯିବୁ ତୁ କେଣିକି ।
ପୋଡୁ ପୋଡୁ ତୋର ଏହି ଗୋପାଳୁଣୀ ପଣ
ଏ ରୂପକୁ ବହି କରୁ କଷ୍ଟରେ ଭ୍ରମଣ ।
ଆଜିଠାରୁ ଏ ବୃତ୍ତିକି କର ପରିତେଜ୍ୟା
ଆମ୍ଭ ଦୁହିଙ୍କର ଏବେ ହୁଅ ତୁ ଭାରିଯା ।
ଆମ୍ଭର ଏହି ବଚନ ଭାଙ୍ଗୁବୁ ତୁ ଯେବେ
ମାରିଣ ତୋ ମାଂସ ସବୁ ଭୁଞ୍ଜିବୁଟି ତେବେ ।
ଅସୁର ମୁଖୁ ଏମନ୍ତ ବଚନକୁ ଶୁଣି
ନିରକ୍ଷଜନ ପରାଏ କାନ୍ଦିଲା ତରୁଣୀ ।
ଏପରି ଭବିଷ୍ୟ ଥିଲା ମୋର କପାଳରେ
ତେଣୁ ଆସିଣ ପଡ଼ିଲି ତୁମ୍ଭର ହସ୍ତରେ ।
କରମ ବୋଲିଣ ଯାହା ଆପଣେ ଅରଜି
ଯେ ଯାହା ଅର୍ଜ୍ଜଇ ତାହା ସେହି ସିନା ଭୁଞ୍ଜି ।
ମୋର କର୍ମେ ଅଛି ଯେବେ ଏମନ୍ତ ଘଟଣ
କାହାର ବଳରେ ସେହି ହୋଇବ ମେଣ୍ଟଣ ।
ଭକ୍ଷ ଏ ମୋହର ମାଂସ ତୁମ୍ଭେମାନେ ଭାଜି
ତୁମ୍ଭର ହସ୍ତରେ ଏବେ ହୋଇବି ମୁଁ ଗଞ୍ଜି ।
ଅସୁରେ ବୋଇଲେ ଆଗେ ଏ କଥା ନ ଭାଷ
ତୋତେ ଯା ଭୁଞ୍ଜିବୁ ଆମ୍ଭେ ନିଜେ ହେଉ ନାଶ
ଆମ୍ଭଙ୍କୁ ସୁନ୍ଦରୀ ତୁହି ହୁଅସି ସଦୟେ
ଦନ୍ତରେ ତରିଣ ଘେନି ପଡୁଛି ତୋ ପାୟେ ।
ବୁଡ଼ିଲୁ ମଦନ ନୀରେ ତୋହର ଶରଣ
ସୁରତି ଦେଇ ଆମ୍ଭର ରଖ ପଞ୍ଚପ୍ରାଣ ।

ବୋଲେ ଗୋପାଳୁଣୀ ତାଙ୍କ ବିନୟକୁ ଦେଖି
ଅକାରଣେ କି ନିମନ୍ତେ ହେଉଅଛ ଦୁଃଖୀ ।
ତୁମ୍ଭର ବଚନେ ମୁହିଁ ଘର କଲି ତେଜ୍ୟା
ଆଜହୁଁ ନିଶ୍ଚୟ ହେବି ତୁମ୍ଭର ଭାରିଯା ।
ମୋହର ଗୋଟିଏ ବ୍ରତ ଅଛି ତୁମ୍ଭେ ଶୁଣ
ତୁମ୍ଭ ପତ୍ନୀ ହେବି ତାହା କରିଲେ ପୂରଣ ।
ଏହା ଶୁଣିଣ ଦାନବ ହୋଇଲେ ଉସତ
କହ ଆଗେ ମହାମ୍ବାଣୀ କିସ ତୁମ୍ଭ ବ୍ରତ ।
ସ୍ୱରୂପ ବଚନ ତହୁଁ କହନ୍ତି ଗଉରୀ
କିଞ୍ଚିତ ମାତ୍ର ସେ ବ୍ରତ ଅଟଇ ମୋହରି ।
ତୁମ୍ଭେ ଦୁହେଁ ଯାକ ମୋତେ କନ୍ଧରେ ବସାଇ
ସବୁ ତୀର୍ଥ ଥରେ ମୋତେ ଆଣିବ ବୁଲାଇ ।
ଏତେକେ ସମ୍ପୂର୍ଣ୍ଣ ଜାଣ ହୋଇବ ମୋ ବ୍ରତ
ଶୁଣିଣ ହାସ୍ୟ କରିଲେ ସେ ବେନି ଦଇତ ।
କାମରେ ବଶ ହୋଇଣ ବିଭୋଳ ହୋଇଲେ
ଗମଇ ଯେହ୍ନେ ବଳଦ ରଜ୍ଜୁରେ ବାନ୍ଧିଲେ ।
କାମବଶରେ ଭୁଲିଲେ ସେ ବେନି ଅସୁରେ
ଦେବୀଙ୍କ ମାୟାରେ ପଡ଼ିଗଲେ ବେନିବୀରେ
ସେ ବେନିଦଇତେ ତହିଁ ହେଲେ କାମଯୋଗୀ
ଯୁବତୀର ବଶେ ପଡ଼ି ସର୍ବ ପରିତ୍ୟାଗୀ ।
ବେନିକର ପାତିଲେ ସେ ତହୁଁ ଦୁଇଭାଇ
ଉଠିଲେ ଯେ ମହାମାୟୀ ବକ୍ଷେ ପାଦଦେଇ ।
ବୁଲନ୍ତି ଯେ ତୀର୍ଥ ଦୈତ୍ୟେ ଗୀତ ଗାଇ ଗାଇ
ହସନ୍ତି ନାଚନ୍ତି ବୀରେ ପ୍ରେମେ ମୁଗ୍ଧ ହୋଇ
ଐଶାନ୍ୟକୋଣ ଦେଇଣ ଅସୁରେ ଅଇଲେ
ଏକାମ୍ରର ବନେ ଯାଇ ପ୍ରବେଶ ହୋଇଲେ ।
ବରୁଣ ବନିକା ତହିଁ ଗୋଟିଏକ ଅଛି
କନ୍ଧରେ ବସାଇ ଦୈତ୍ୟେ ଯାନ୍ତି ନାଚି ନାଚି
ସେହିଠାରେ ପହଞ୍ଚନ୍ତେ ଦେବୀ ଶାକମ୍ଭରୀ
ବିଶ୍ୱରୂପକୁ ଧଇଲେ ଘୋର ଶବ୍ଦକରି ।
ଭାରା ପାଇ ପକାଇଲେ ତାହାଙ୍କୁ ଅସୁରେ
ଦୁହିଁଙ୍କ କେଶ ଧଇଲେ ଦେବୀ ବାମକରେ ।
ହୁଂକାର ଶବଦେ ଦେବୀ ଦେଲେ ତାଙ୍କୁ ଚାପି
ମାଟି ଭିତରେ ପଶିଲେ ଦୈତ୍ୟ କାମରୂପୀ ।
ଅସୁରେ ବୋଇଲେ ଏତ କପଟ ହୋଇଲା
ଏ କୂଟ ଆମ୍ଭମାନଙ୍କୁ ଜଣା ତ ନ ଥିଲା ।
ମାଟିରେ ପଶିଲେ ସେହି ହ୍ରଦ ପରିଯନ୍ତେ
ଆକର୍ଷିଣ ଧରିଛନ୍ତି ଦେବୀ ଦୁଇହସ୍ତେ ।
ଦୁଇଭୁଜେ ଧରିଛନ୍ତି ଦୁହିଙ୍କର କେଶ
ଆଉ ଦୁଇ ଭୁଜ ଜାତ କଲେ ନାରୀଈଶ ।
ଆକର୍ଷିଣ ମହାମାୟୀ ଦୈତ୍ୟଭୁଜ ଧରି
ଉପାଡ଼ିଲେ ମହାମାୟୀ ଘୋର ନାଦ କରି ।
ରକ୍ତମୟ ହୋଇ ଦୁଃଖେ ଭାବନ୍ତି ଦାନବ
ସ୍ତିରୀମାତ୍ରକ ଆମ୍ଭଙ୍କୁ ଦେଲା ପରାଭବ ।
ଯା ଭାଳି ଗୋପାଳୁଣୀକି ପୁଚ୍ଛନ୍ତି ଏମନ୍ତ
ତୁମ୍ଭଙ୍କୁ ନ ଚିହ୍ନି ନାଶ ହେଲୁ ବେନିଭ୍ରାତ ।
ଆମ୍ଭ ଦୁହିଁଙ୍କି ବିନାଶ କଲୁ ଯେବେ ତୁହି
ତୁମ୍ଭେ କେ ଅଟ ଆମ୍ଭଙ୍କୁ କହ ମହାମାୟୀ ।
ତୁମ୍ଭ ନାମଗୋଟି ଆମ୍ଭେ ଧରିଥିବୁ ହୃଦେ
ମୁହିଁ ପାର୍ବତୀ ବୋଲିଣ କହିଲେ ସେ ସଧେ ।
ଅସୁର ବର ମାଗିଲେ ଆମ୍ଭେ କଲୁ ଦୋଷ
ଏତେକେ ଗୋ ମହାମାୟୀ ନ କର ବିନାଶ ।
କୀର୍ତ୍ତି ଆଉ ବାସ ବୋଲି ଆମ୍ଭେ ବେନି ଭାଇ
ଆମ୍ଭ ନାମ ଏ ତୀର୍ଥରେ ରଖ ମହାମାୟୀ ।
ପ୍ରସନ୍ନ ହୋଇଣ ଉମା ତାଙ୍କୁ କଲେ ଦୟା
ତେଣୁ ଅର୍ଦ୍ଧେକ ରଖିଲେ ଦୈତ୍ୟଙ୍କର କାୟା ।
ଶୁଣ ବାବୁ ଯୁଧିଷ୍ଠିର ଏକାମ୍ରର ନାଥ
ଏହାଙ୍କ ପାଶରେ କୀର୍ତ୍ତିବାସ ନାମେ ତୀର୍ଥ ।
କୀର୍ତ୍ତିବାସ ତୀର୍ଥ ଯେହୁ ଦେଖିଣ ଆସନ୍ତି
ଅତି ପୁଣ୍ୟ ଧର୍ମ ତାଙ୍କୁ ହୁଅଇ ପ୍ରାପତି ।
ଅସୁରଙ୍କୁ ମାରି ଦେବୀ ମହାଶ୍ରମ ପାଇ
ନିବାରଣେ ଅଶକତ ଦେଲା ଏଥେ ଶୋଇ ।
କଉଶିକଙ୍କୁ ପୁଚ୍ଛିଲେ ଦେବ ଧର୍ମରାଜ
କେବଣ ଚରିତ ମୁନି ଏ ବଡ଼ ଆଶ୍ଚର୍ଯ୍ୟ ।
ଗୋସାମଣୀ ପାଦତଳେ ଲିଙ୍ଗେକ ଜଟାଏ
କୌଶିକ ମୁନି ବୋଲନ୍ତି ଶୁଣ ଧର୍ମରାୟେ ।
ଦେବୀଙ୍କ ଆସିବା ଯହୁଁ ହୋଇଲା ବିଳମ୍ବ
ପାର୍ବତୀଙ୍କୁ ଖୋଜି ଖୋଜି ଗଲେ ମହାଦେବ
ବହୁ ବିମୁଖେ ଲୋଡ଼ନ୍ତି ଦେବ ବିଶ୍ୱରୂପ
ଦେବୀଙ୍କୁ ନ ପାଇ ଦେବ କଲେ ମହାକୋପ ।
ଲୋଡ଼ନ୍ତି ଯେ ମହାଦେବ ବୁଲି ଚଉକତି
ବିନ୍ଧ୍ୟଗିରିରେ ଉଠିଲେ ଯାଇଁକରି ଧାତି ।
ଡାକନ୍ତି ପାର୍ବତୀ ନାମଧରି ଉଚ୍ଚସ୍ୱରେ
ପଶିଲେ ବିନ୍ଧ୍ୟପର୍ବତ ଅରଣ୍ୟ ଭିତରେ ।
ଏଠାରେ ପାତାଳଗାମୀ ବିନ୍ଧ୍ୟ ପରବତ
ତେଣୁକରି ଏହା ନାମ ବିନ୍ଧ୍ୟପାରି ତୀର୍ଥ ।
ଲୋଡ଼ନ୍ତେଣ ଭେଟିଲେ ଯେ ଏଥେ ଶୂଳପାଣି
ଦେଖିଲେ ଶୋଇଅଛନ୍ତି ଦେବୀ ଗୋସାମଣୀ
ହା ହା ସଖି ବୋଲି ଡାକି ଶିବ ମହାଭୋଳେ
ବିନୟ କଲେ ବସିଣ ତାଙ୍କ ପାଦତଳେ ।

ଯୁଧିଷ୍ଠିର ପୁଚ୍ଛାକଲେ ଶୁଣ ବିଶ୍ୱାମିତ୍ର
ଏ ଦକ୍ଷିଣ ତୀର୍ଥେ ବିଜେକଲେ ବିଶ୍ୱନାଥ ।
ପୁଣି କୌଶିକ ବୋଇଲେ ଶୁଣ ଯୁଧିଷ୍ଠିର
ପୂର୍ବେ ଏଥେ ତପ କଲା ଲଙ୍କାର ଈଶ୍ୱର ।
ଯୁଧିଷ୍ଠି ପୁଚ୍ଛନ୍ତି ପୁଣି କହ ବିଶ୍ୱାମିତ୍ର
ଲଙ୍କା ତେଜିଣ ରାବଣ ଅଇଲା କେମନ୍ତ ।
ଯୁଧିଷ୍ଠି ବାକ୍ୟେ କହନ୍ତି ମୁନି ବିଶ୍ୱାମିତ୍ର
ବ୍ରହ୍ମା ତହୁଁ ଉପୁଜିଲେ ଚାରିଗୋଟି ପୁତ୍ର ।
ବଶିଷ୍ଠ ନାରଦ ଆଉ ଅଗସ୍ତି ପୌଲସ୍ତି
ଜନମ ହୋଇଣ ଏହୁ ହେଲେ ମହାଯତି ।
ପୌଲସ୍ତିଙ୍କର ନନ୍ଦନ ହୋଇଲା କପିଳ
ଶୂନ୍ୟ ମୁନି ହେଲେ ଏହି ଋଷିଙ୍କ ଦୁଲାଳ ।
ଶୂନ୍ୟଙ୍କ ପୁତ୍ର ପ୍ରୟାଗ ବାସୁଦେବ ହେଲେ
ଏହାଙ୍କର ବଂଶେ ଜାତ ବିଶ୍ରବା ହୋଇଲେ ।
ବୈବସ୍ୱତଙ୍କ ନନ୍ଦିନୀ ଅଟେ ଜମ୍ବୁବତୀ
ତାହାଙ୍କୁ ପ୍ରଦାନ କଲେ ବିଶ୍ୱଶ୍ରବା ଯତି ।
ବୈବସ୍ୱତ ମନୁ ଘରେ ସୁଖରେ ରହିଲେ
ସୁମନୁ ବୋଲିଣ ପୁତ୍ର ଏହାଙ୍କର ହେଲେ ।
ମେରୁଶୃଙ୍ଗକୁ ଭାଙ୍ଗିଲା ପବନ ବିଷାଦେ
ବହିଣ ମହୋଦଧିରେ ପଡ଼େ ଘୋରନାଦେ ।
ସୁବର୍ଣ୍ଣସିଂହ ବୋଲିଣ ଥିଲା ଏକ ରକ୍ଷ
ତା ବଂଶରେ ଉପୁଜିଣ ଥିଲେ ରକ୍ଷ ଭକ୍ଷ ।
ତାକୁ ରାଇ ଆଜ୍ଞାଦେଲେ ଦେବ ପଦ୍ମଯୋନି
ଏଥେ ଯାଇ ରାଜ୍ୟକର ତୁମ୍ଭେ ଭାଇବେନି ।
ଗଠନ ଯୋଗାଡ଼ମାନ ଦେଲେ ବେଦବର
ଏହା ନେଇ ତୁମ୍ଭେ ଦୁହେଁ ନିରିମାଣ କର ।
ଗଡ଼ କରି ନିରିମାଣ ପୁରେକ କରିବ
ଅସୁର ଭୟ ହୋଇଲେଏଥିର ରହିବ ।
ଗଡ଼ କବାଟ ହୋଇବ ଯନ୍ତ୍ରର କିଳଣି
ପାଚେରୀ ଉଚ୍ଚ କରିବ ମେରୁଗିରି ଜାଣି ।
ଚିତ୍ରପଟ ଗୋଟିଏକ ଦେଲେ ବେଦପତି
ଏପରି ଲଙ୍କାରେ କର ମଣ୍ଡପ ଜଗତୀ ।
ଧାତାର ବଚନେ ସେହି ରକ୍ଷ ଭକ୍ଷ ଯାଇ
ମହା କାମରୂପୀ ଗଡ଼ ନିର୍ମାଣିଲେ ତହିଁ ।
ଦେଖିଣ ସାନନ୍ଦ ହେଲେ ଦେବ ପଦ୍ମଯୋନି
ବୋଇଲେ ଏଥିରେ ରାଜ୍ୟ କର ଭାଇ ବେନି
ପିତାମହଙ୍କର ଆଜ୍ଞା ପାଇ ରକ୍ଷ ଭକ୍ଷ
ସୁଖରେ ରାଜ୍ୟକରିଲେ ପାଇଣ ସେ ସୁଖ ।
ସମୟେକ ସେହି ଦୁଇଭାଇ ରକ୍ଷ ଭକ୍ଷ
ଆକାଶରେ ଉପଦର୍ପ କରିଲେ ଅନେକ ।

କୂଟ କରି ନାରାୟଣ ତାଙ୍କୁ କଲେ ନାଶ
ଏଥୁଅନ୍ତେ ମହାରାଜା ଶୁଣ ଆନ ରସ ।
ରକ୍ଷ ଭକ୍ଷ ପୁତ୍ର ଥିଲେ ହେତି ଯେ ପ୍ରହେତି
ଲଙ୍କାଗଡ଼ରେ ଏ ପୁଣି ହେଲେ ଅଧିପତି ।
ଅମରେ ଅନୀତି କଲେ ଏହୁ ସମୟେକେ
ନାରାୟଣ ନାଶକଲେ ସେ ଦୁହିଁଙ୍କୁ ଚକ୍ରେ ।
ୟାଙ୍କ ପୁତ୍ର ବଜ୍ରନଳ ଆଉ କାଳାନଳ
ଏ ଦୁହେଁ ଲଙ୍କାରେ ପୁଣି ହେଲେ ମହୀପାଳ ।
ଏ ପୁଣି ଅମରପୁରେ ଉପଦ୍ରବ କଲେ
ନାରାୟଣ ଅବତାରେ ତାହାକୁ ନାଶିଲେ ।
ତାହାର ନନ୍ଦନ ଅଟେ କେଶି ଯେ ସୁକେଶୀ
କେଶବ ରୂପରେ ତାଙ୍କ ଦର୍ପ ହରି ଧ୍ୱଂସି ।
କେଶୀର ପୁତ୍ର ଉପୁଜେ ନାମ ବଳୀବାଳୀ
ବନମାଳୀ ଅବତାରେ ହରି ତାଙ୍କୁ ଦଳି ।
ମାଳି ସୁମାଳି ଏହାଙ୍କ ଦୁଇପୁତ୍ର ଥିଲେ
ଜନାର୍ଦ୍ଦନ ରୂପେ ହରି ମାଳିକି ବଧିଲେ ।
ସେଠାରୁ ସୁମାଳି ବୀର ପଳାଇଲା ଡରେ
ଭୟରେ ପଶିଲା ଯାଇ ପାତାଳ ବିବରେ ।
ଲଙ୍କାଗଡ଼ ଶୂନ୍ୟହେଲା ସେହି ସମୟରେ
କେହି ନ ରହିଲେ ତହିଁ କୃଷ୍ଣଙ୍କ ଭୟରେ ।
ବିଶ୍ରବା ଋଷି ଯେ ଥିଲେ ବୈଶ୍ରବଣ ଘର
ତାଙ୍କୁ ଲଙ୍କାରେ ରଖିଲେ ନେଇ ବେଦବର ।
ଭାରିଯା ସହିତେ ଗଲେ ବିଶ୍ରବା ମହର୍ଷି
ପାତାଳ ପୁରରୁ ଦିନେ ସୁମାଳି ଯେ ଆସି ।
ମୀନମାସ ଶୁକ୍ଳପକ୍ଷ ଚୌଠି ଗୁରୁବାର
ମୃଗଶିରା ନକ୍ଷତ୍ର ଯେ ଭୋଗ ସେ ଦିନର ।
ବାଳବ ନାମେ କରଣ ଆୟୁଷ୍ମାନ ଯୋଗ
କୁମ୍ଭ ସଙ୍କରାନ୍ତିକି ଯେ ତେରଦିନ ଭୋଗ ।
ସେଦିନ ପାତାଳୁ ଦୈତ୍ୟ ସୁମାଳି ଅଇଲା
ସମରାଜ୍ୟ ବୋଲି ଲଙ୍କା ବୁଲିଣ ଦେଖିଲା ।
ପୁରେ ପୁରେ ପଶି ଦେଖି ଆସଇ ଗୁପତେ
ବିଶ୍ରବାଋଷିଙ୍କି ତହିଁ ଦେଖିଲା ସାକ୍ଷାତେ ।
କୋପକଲା ସେ ରାକ୍ଷସ ବିଶ୍ରବାଙ୍କୁ ଦେଖି
କାଳଚକ୍ର ପ୍ରାୟେକ ସେ ବୁଲାଇଲା ଆଖି ।
କାହିଁର ବ୍ରାହ୍ମଣ ତୁମ୍ଭେ ମୋ ପୁରେ ରହିଛୁ
ତୋର ମନେ ଶଙ୍କା ନାହିଁ ମରଣକୁ ଇଚ୍ଛୁ ।
ବିଶ୍ରବା ବୋଇଲେ କୋପ ନ କର ତୁ ବାବୁ
ତୁହି କୋପକଲେ ଆମ୍ଭେ ଏହିକ୍ଷଣି ଯିବୁ ।
ଅସୁର ବୋଇଲା ହେବୁ ଯେବେ ଏଥେ ରାୟେ
ଭୁଞ୍ଜିବଇଁ ମୁହିଁ ଅନ୍ନ ଦିଅ ତୁ ପୁଡ଼ାଏ ।

ଏହା ଶୁଣିଣ ବିଶ୍ରବା ଆନନ୍ଦିତ ହେଲେ
ଅନ୍ନପୁଡ଼ା ଏକ ଘେନି ଅସୁରକୁ ଦେଲେ ।
ଭୁଞ୍ଜିଣ ମହାସନ୍ତୋଷ ହୋଇଲା ଦଇତ
ବୋଇଲା ଏ ଲଙ୍କାଗଡ଼ ତୋତେ ହେଉ ପ୍ରାପ୍ତ
ମୋହର ଘରେ ଅଛଇ ଦୁହିତା ଗୋଟିଏ
ତାହାକୁ ବିବାହ ତୁମ୍ଭେ ହୁଅ ମହାଶୟେ ।
ଏହି ଲଙ୍କାଗଡ଼ ଦେବି ତୁମ୍ଭଙ୍କୁ ଯୌତୁକ
ଅକଣ୍ଟକ ରାଜ୍ୟ ଏହୁ କର ଭୋଗ ସୁଖ ।
ତରେ ସନମତ କଲେ ବିଶ୍ରବା ମହର୍ଷି
ବିଭାହେଲେ ସୁମାଳିର ଝିଅ ନଉକେଶୀ ।
ଏମନ୍ତେ ତହୁଁ ବହୁତ ଦିନ ଗତ ହେଲା
ନଉକେଷୀର ଦୁହିତା ଗୋଟିଏ ଜନ୍ମିଲା ।
ସମୟେକ ନଉକେଷୀ ପୁଣି ଗର୍ଭବତୀ
ତାହାର ତହୁଁ ରାବଣ ହୋଇଲା ଉତ୍ପତ୍ତି ।
ବ୍ରାହ୍ମଣୀ ତାଙ୍କର ହୋଇଥିଲା ଗର୍ଭବତୀ
ତାହାର ତହୁଁ ପୁତ୍ରେକ ହେଲା ଉତପତ୍ତି ।
ଦେଖିଣ ଅତି ଆନନ୍ଦ ବିଶ୍ରବା ହୋଇଲେ
ସେ ପୁତ୍ରଗୋଟିକ ନାମ ଶତମନୁ ଦେଲେ ।
ପୁଣି ନୌକେଷୀର ହେଲା ଏକପୁତ୍ର ଜାତ
ଅରୁଣ ତେଜ ବୋଲି ତା ନାମ ହେଲା ଖ୍ୟାତ
ଦିନେ ଖେଳନ୍ତେ ଅରୁଣ ତେଜ ଶତମନୁ
କନ୍ଦଳ କରିଲେ ସେହି ବେନି ବାଳସୂନୁ ।
କୋପଭରେ ଶତମନୁ କଟାକ୍ଷେ ଚାହିଁଲା
ନୌକେଷୀ ସୁତ ଅରୁଣ ଭସ୍ମ ହୋଇଗଲା ।
ତରେ ରାବଣକୁ ଡାକି ନିକଷା କହଇ
ଏଥେ ଥିଲେ ମରିବୁ ତୁ ପଳା ବେଗହୋଇ ।
ମାତାର ବଚନେ ସେହୁ କରି ମହାଭୟ
ପଳାଇ ଅଇଲା ତହୁଁ ନିକଷା ତନୟ ।
ପଳାଇ ରହିଲା ଯାଇ ସଉନିଧି ତଟ
ଏକାମ୍ରର ନାଥଙ୍କୁ ସେ ସେବିଲା ଦର୍ପିଷ୍ଟ ।
ସୁବର୍ଣ୍ଣ ଚୂଡ଼ ପର୍ବତ ଦକ୍ଷିଣର ଭାଗେ
ବାଣେକ ଥାଇ ଜପଇ ମହାମନ୍ତ୍ର ଯୋଗେ ।
ସମସ୍ତ ନିରୋଧ କଲା କାଳ କାମ ନିଦ୍ରା
ଅଶୀସସ୍ରବର୍ଷ ଜପ କଲା କରି ମୁଦ୍ରା ।
ତହିଁ ନିର୍ମିତ କୁଣ୍ଡରେ କଲାକ ଆହୁତି
ଶରୀରୁ ମାଂସ କାଟିଣ ପକାଏ ଝଟତି ।
କଠୋର ତପ ଦେଖିଣ ବିଜେ ଯୋଗେଶ୍ୱର
ରାବଣକୁ ପ୍ରସନ୍ନରେ ଦେଲେ ଯାଚି ବର ।
ଛପନଗଣ୍ଡା ଯୁଗକୁ ବର ସେ ପାଇଣ
ପୁଣି ବୋଇଲା ହେଉ ମୋ ଦଶଟି ବଦନ ।
କୋଡ଼ିଏ ଭୁଜ ମୋହର ହେଉ ବିଦ୍ୟମାନ
ଦେବଲୋକ ନାଗଲୋକ ନୋହିବେ ସମାନ
ଦିଗପାଳ ସମାନରେ ଭୁଞ୍ଜିବି ଐଶ୍ୱର୍ଯ୍ୟ
ବିକାଶିବ ତ୍ରିଭୁବନେ ଏ ମୋହର ତେଜ ।
ପ୍ରସନ୍ନରେ ଏହି ବର ଦେଲେ ଶୂଳଧର
ତେଣୁ ଅତୁଟ ହୋଇଲା ରାବଣ ଶରୀର
ଏହି ଲିଙ୍ଗ ପୂଜିଥିଲା ନଉକେଷୀ ବସା
ପ୍ରତ୍ୟକ୍ଷରେ ମହାଦେବ ପୂରାଇଲେ ବାଞ୍ଛା ।
କୌଶିକ ବାକ୍ୟେ ସାନନ୍ଦ ହେଲେ ଧର୍ମରାୟ
ସେ ମହାଲିଙ୍ଗକୁ ବହୁ ହୋଇଲେ ବିନୟ ।
ପୁଣି କୌଶିକ ବୋଇଲେ ଏ ମହାତୀର୍ଥରେ
ଯେ ସ୍ନାନ କରେ ବହୁତ ଜନ୍ମ ପାପ ହରେ ।
ଆଗ୍ରହରେ ସ୍ନାନକଲେ ସେ ସରକୁ ଦେଖି
ଶିବଙ୍କ ଦର୍ଶନ କରି ହେଲେ ମହାସୁଖୀ ।
ପୁଣି କୌଶିକ ବୋଲନ୍ତି ଶୁଣ ଧର୍ମବାଳ
ଏହି ଲିଙ୍ଗ ପ୍ରତ୍ୟକ୍ଷରେ ଅଟନ୍ତି କପିଳ ।
ତ୍ରେତୟା ଯଗରେ ରାମ ରାବଣକୁ ମାରି
ବିଭୀଷଣେ ରାଜ୍ୟ ଦେଇ ଅଇଲେକ ଫେରି ।
ଶ୍ରୀରାମଚନ୍ଦ୍ର ଏ ଲିଙ୍ଗ ଗୋଟିଏ ଆରାଧି
ରାମେଶ୍ୱର ଲିଙ୍ଗ ବୋଲି ନାମ ଯେ ପ୍ରସିଦ୍ଧି ।
ସୁଗ୍ରୀବ ନୃପତି କଲେ ଏ ଲିଙ୍ଗକୁ ପୂଜା
ଭୁବନେଶ୍ୱର ବୋଲିଣ ନାମେ ଲିଙ୍ଗରାଜା ।
କପିଳେଶ୍ୱର ଲିଙ୍ଗକୁ ଜାମ୍ବବ ପୂଜିଲେ
ଈଶାନେଶ୍ୱରଙ୍କୁ ଶତବଳ ଯେ ସେବିଲେ ।
ସୁରେଶ୍ୱର ମହେଶକୁ ହନୁ ପୂଜାକଲେ
ସିଦ୍ଧଈଶ୍ୱରେ ଦେବଙ୍କୁ ଅଙ୍ଗଦ ସେବିଲେ ।
ଖଗେଶ୍ୱର ଲିଙ୍ଗପୂଜା କଲେ ହରିବଂଶୀ
ବ୍ରହ୍ମା ପୂଜା କରିଲେକ ବ୍ରହ୍ମେଶ୍ୱର କେଶୀ ।
ଲିଙ୍ଗେକ ପୂଜା କରିଲେ ଦକ୍ଷ ପ୍ରଜାପତି
କେତୁଶ୍ୱର ବୋଲିକରି ଲିଙ୍ଗେକ ଉତ୍ପତ୍ତି ।
ଯମ ଦେବତା ପୂଜିଲେ ଲିଙ୍ଗ ଯମେଶ୍ୱର
ତେତ୍ରିଶକୋଟି ଦେବତା ଛନ୍ତି ଏହିଠାର ।
ଏହା ଅଟେ ମହାତୀର୍ଥ ଜାଣ ଯୁଧିଷ୍ଠିର
ଏ ମହାତୀର୍ଥକୁ ଦେବା କିସ ପଟାନ୍ତର ।
ସକଳ ଲିଙ୍ଗ ଅଛନ୍ତି ଏହି ତୀର୍ଥଠାବେ
ଦେବେ ମର୍ତ୍ତ୍ୟେ ପୂଜାକଲେ ଆସି ଭକ୍ତିଭାବେ
ବାସୁକୀ ରହିଲେ ଏଥେ ଲିଙ୍ଗ ପୂଜାକରି
ପୁଷ୍କର ବିଜୟ ଘେନି କୋଟି ତୀର୍ଥବାରି ।
ଶୁଣିଣ ସାନନ୍ଦ ହେଲେ ଯୁଧିଷ୍ଠିର ଚିତ୍ତେ
ପଞ୍ଚଦିବସ ରହିଲେ ଏକାମ୍ରର ତୀର୍ଥେ ।

ସେଠାରୁ ଗମନ କଲେ ଏହି ପଞ୍ଚବୀର
ଋଷିଏ ଗମନ କଲେ ସଙ୍ଗରେ ତାଙ୍କର ।
ପ୍ରବେଶ ହୋଇଲେ ଯାଇଁ ମହୋଦଧି ତୀରେ
ଲୋମଶଋଷି କହିଲେ ଯୁଧିଷ୍ଠି ଆଗରେ ।
ଏହି ଚନ୍ଦ୍ରଭାଗା ତୀର୍ଥ ଦେଖ ଯୁଧିଷ୍ଠିର
ଏଥିରେ ସ୍ନାନ କରିଲେ ପାପ ହେବ ଦୂର ।
ଯୁଧିଷ୍ଠିର ପୁଚ୍ଛାକଲେ ଶୁଣ ମହାଜ୍ଞାତା
କହନ୍ତୁ ପ୍ରକାଶି ଅର୍କତୀର୍ଥର ବାରତା ।
ବଦୟନ୍ତି ଯେ ମାର୍କଣ୍ଡ ଶୁଣ ପଣ୍ଡୁସୁତ
କୃତାନ୍ତକ ବଂଶେ ଜାତ ନାମ ଜମ୍ଭଦୈତ୍ୟ ।
ଦୁଃସହ ସମରେ ଇନ୍ଦ୍ର ତାର ଶିର ଛେଦି
ତେଣୁକରି ବୋଲାଇଲେ ଇନ୍ଦ୍ର ଜମ୍ଭଭେଦୀ ।
ଜମ୍ଭଦୈତ୍ୟ ପୁତ୍ର ଥିଲା ସେ ମୟ ଅସୁର
ସେହି ବିରୋଧୀ ହୋଇଲା ଜନ୍ତୁମାନଙ୍କର ।
ମୟ ଦାନବର ପୁତ୍ର ଦୈତ୍ୟ କାନ୍ତିମାଳା
ତାହାର ନନ୍ଦନ ହାଦେ ଅଟଇ ବିତୁଳା ।
ବିତୁଳା ନନ୍ଦନ ଅଟେ ଅଳମ୍ବୁ ଅସୁର
ଏହି ତୀର୍ଥରେ ରହିଲା କରି ଅଧିକାର ।
ବଡ଼ ପ୍ରତାପୀ ଅଟଇ ସେ ଅର୍କ ଅସୁର
ଅର୍କଦୈତ୍ୟ ବୋଲି ପୁତ୍ର ହୋଇଲା ଏହାର ।
ପଦ୍ମନାଭ ନରପତି ମନୁବଂଶେ ଜାତ
କଣୟବିନ୍ଦୁ ବୋଲିଣ ନାମ ତାର ଖ୍ୟାତ ।
ବଡ଼ ପ୍ରତାପୀ ଅଟଇ ସେହି ମହାରାଜା
ଆନନ୍ଦେ ପାଳଇ ସେହୁ ରାଜ୍ୟେ ଜନପ୍ରଜା ।
ମାଣେ ଭୂମିକି ଚିନାଏ କରି ଦ୍ୟନ୍ତି ଚାଷୀ
ବରଷେ ପର୍ଯ୍ୟନ୍ତେ ରାଜା ନିଏ ଦୁଇରାଶି ।
ଏପରି ଅର୍ଥ ନେବାରୁ ସେହି ନରନାଥ
ସୁଖ ତେଜି ପ୍ରଜାମାନେ ଦରିଦ୍ର ସମସ୍ତ ।
ପ୍ରଜାଙ୍କର ଦୁଃଖ ଦେଖି ଭାଳଇ ରାଜନ
ଯେବେ ପ୍ରଜା ଦୁଃଖୀହେଲେ ରାଜାର କି ଧର୍ମ
ବିଚାରେ ରାଜା କରିବି କରତାର ସେବା
ରାଜ୍ୟ ଯାକରେ କଣୟ ବୃଷ୍ଟି କରାଇବା ।
ପୁତ୍ରକୁ ରାଜ୍ୟ ଦେଇଣ କଣୟ ରାଜନ
ଚନ୍ଦ୍ରଭାଗା ତୀର୍ଥରେ ସେ ବସିଲେ ଯାଇଣ ।
ତହିଁ ବସି କରତାର ଧ୍ୟାନ ସେହି କଲା
ପଞ୍ଚଦଶ ବର୍ଷ ଏକ ଆସନେ ବସିଲା ।
ଏ ତୀର୍ଥରେ ରହିଥାଏ ସେ ଅର୍କ ଦଇତ
ଦେଖି ବିଚାରେ ଏ ତପ କଲେ ନରନାଥ ।
ନ ପୁଣ ମୋହର ସ୍ଥାନ ବଳେ ଏ ଘେନଇ
ଏମନ୍ତ ଭାଳି ରାଜାଙ୍କୁ ଡାକିଲା ସେ ଯାଇ ।
ମକର ଶୁକଳ ପକ୍ଷ ଚଉଠିର ଦିନ
ସେ ଦିନ ରାଜାଙ୍କୁ ସୂର୍ଯ୍ୟ ଦେଲେ ଦରଶନ ।
ସୂର୍ଯ୍ୟଙ୍କୁ ଦେଖିଣ ରାଜା ଶତବାର ନମି
ସ୍ତବେ କହେ ଦୈତ୍ୟ ହାତୁ ରକ୍ଷାକର ସ୍ୱାମୀ ।
ଏମନ୍ତ ଜଣାଇ ରାଜା କରୁଅଛି ସ୍ତୁତି
ଧାଇଁ ରାଜ ପାଶେ ଦୈତ୍ୟ ମିଳିଲା ଝଟତି ।
ଲୁହାର ଦଉଡ଼ି ଦୈତ୍ୟ ଧରିଅଛି ହାତେ
ଉଞ୍ଚାଇଛି ମାରିବି ସେ ନରପତି ମାଥେ ।
ଦେଖିଲେ ଲକ୍ଷଯୋଜନେ ଥାଇ କରତାର
ରହ ରହ ବୋଲି ତହୁଁ ବଢ଼ାଇଲେ କର ।
ଅର୍କଦୈତ୍ୟ ଶିର ଧରି ବୋଇଲେ ଭାସ୍କର
ଅଦୋଷୀକି କିପାଁ ତୁରେ ମାରିବୁ ଅସୁର ।
ଏହାଶୁଣି ସୂର୍ଯ୍ୟ ସଙ୍ଗେ ଦୈତ୍ୟ କଲା ରଣ
ଚତୁର୍ଥୀ ପଞ୍ଚମୀ ଷଷ୍ଠୀ ଏହି ତିନିଦିନ ।
ମାଲ ଯୁଦ୍ଧରେ ହାରିଲା ସେହି ଦୈତ୍ୟପତି
ସେଦିନ ମାଘ ଶୁକଳ ସପତମୀ ରାତି ।
ଯେ ଚନ୍ଦ୍ରଭାଗା ତୀର୍ଥରେ ଥିଲା ଗିରିରାଜ
ତହିଁପରେ କଚାଡ଼ିଲେ ନେଇ ଦେବସୂର୍ଯ୍ୟ ।
ସେ ଦୈତ୍ୟ ପଡ଼ନ୍ତେ ଗିରି ଚୂର୍ଣ୍ଣ ହୋଇଗଲା
ସେ ରାକ୍ଷସ ଦେହଗୋଟି କିଛି ନ ହୋଇଲା ।
ସୂର୍ଯ୍ୟାବର୍ତ୍ତ ଶର ସୂର୍ଯ୍ୟ ବିନ୍ଧିଲେକ ତୋଳି
ଅସୁର ଦେହେ ତା ବାଜି ହୋଇଗଲା ଧୂଳି ।
କୌଣସି ବାଟେ ବିନାଶ ନୋହିଲା ସେ ଦୈତ୍ୟ
ପୁଣି ମାଡ଼ି ବସିଲେ ତା ହୃଦେ ଦିନନାଥ ।
ଅର୍କ ଦଇତର ମାଡ଼ିବସି ବକ୍ଷସ୍ଥଳ
ବିଜେକଲେ ନାରାୟଣ ବାରାନିଧି କୂଳ ।
ଚଳିଗଲା ବାରାନିଧି ଅଗ୍ନିକୋଣ ଆଡ଼େ
ଅର୍କ ଦୈତ୍ୟକୁ ଚାପିଲେ ମହୋଦଧି ଜଳେ ।
ପୃଥିବୀର ଭାରାଭର ଉଶ୍ୱାସି ଶ୍ରୀପତି
କୋଣାର୍କ ନାମରେ ତୀର୍ଥ ହୋଇଲାକ ଖ୍ୟାତି
କଣୟବିନ୍ଦୁ ରାଜାକୁ ପ୍ରସନ୍ନ ହୋଇଲେ
ସାତଘଡ଼ି ତାର ରାଜ୍ୟେ କଣୟ ବର୍ଷିଲେ ।
ଶୁଣ ହେ ଯୁଧିଷ୍ଠି ଦେବ କହନ୍ତି ମାର୍କଣ୍ଡେ
ସେହି କୋଣାଅର୍କ ତୀର୍ଥ ଅଟେ ଭୃତଖଣ୍ଡେ ।
ମହୋଦଧି ସ୍ନାନକରି ଚନ୍ଦ୍ରଭାଗା ଯାଇ
ବିରଞ୍ଚି ନାରାୟଣଙ୍କୁ ସେଠାରେ ଦେଖଇ ।
କୌଶିକ ବଚନେ ସେହି ଚିତ୍ରବୀର୍ଯ୍ୟ ନାତି
ଧ୍ୟାନେ ଲୟକରି ତାଙ୍କୁ କଲେ ବହୁସ୍ତୁତି ।
ଜୟ ତୁହି କରତାର କରୁଣା ସାଗର
ଜୟ ଶୂନ୍ୟ ବିହାରୀ ତୁ ପ୍ରାଣୀଙ୍କୁ ଉଦ୍ଧର ।

ଜୟ ଦେବ ନିରଞ୍ଜନ ଜୟ ଦିନମଣି
ଭକତକୁ ତାରୁ ତୁହି ଦୟାଭାବେ ପୁଣି ।
ଅର୍କକୁ ନାଶିଣ ଦେବ ଭକ୍ତଙ୍କୁ ଉଦ୍ଧରି
ଯୁଗେ ଯୁଗେ ତୋର ଯଶ ରହିଅଛି ପୂରି ।
ଛାୟାର ବଲ୍ଲଭ ନାଥ ଯାରେ ତୁ ସଦୟ
ସଂସାର ଭିତରେ ତାର କାରେ ନାହିଁ ଭୟ
ତିମିର ବିଦାର ନାଥ ତୁହି ସେ ଅନାଦି
ପ୍ରସନ୍ନ ମାତ୍ରକେ ସର୍ବ କାର୍ଯ୍ୟ କରୁ ସିଦ୍ଧି ।
ନମୋ ନମୋ ଦିନନାଥ ଦେବ କରତାର
ଅନାଦି ମୂରତି ଜୟ ଜୟ ପ୍ରଭାକର ।
ଜଗତ ଜନଙ୍କ ଦେବ ତୁହି ଦିବ୍ୟ ଚକ୍ଷୁ
କରତାର ନାଥ ତୁହି ସଦାକାଳେ ରଖୁ ।
ଜୟ ତୁ ପରମେଶ୍ୱର ସହସ୍ର କିରଣ
ପ୍ରତିଦିନ କରୁ ନାଥ ମେରୁ ପ୍ରଦକ୍ଷିଣ ।
ଜୟ ତୁ ପରମେଶ୍ୱର ବହୁ ଦଶନାମ
ଅନାଦି ମୂରତି ନାଥ ଦେବଙ୍କ ଉତ୍ତମ ।
ଜୟ ତୁ ପରମେଶ୍ୱର ଅନାଦି ମାର୍ତ୍ତଣ୍ଡ
ମହାଜ୍ୟୋତି ପ୍ରକାଶେ ତୋ ସପତ ବ୍ରହ୍ମାଣ୍ଡ ।
ଗଗନବିହାରୀ ନାଥ ପୃଥ୍ୱୀ ଚିନ୍ତାମଣି
ତୋ ଦର୍ଶନେ ବିହରନ୍ତି ଚରାଚର ପ୍ରାଣୀ ।
ଏହିପରି ସ୍ତୁତି ପାଠକରି ଯୁଧିଷ୍ଠିର
ସୂର୍ଯ୍ୟଦେବଙ୍କୁ କରିଲେ ଶତ ନମସ୍କାର ।
ସେ ଆଦିତ୍ୟ ଶ୍ରୀଚରଣେ କରିଣ ଦଇନୀ
ବଦୟନ୍ତି ଶ୍ରୀ ଶାରଳା ଦାସ ଶୂଦ୍ରମୁନି ।
ହେ ଦେବ ଦିନେଶ ତବ ଚରଣ ପ୍ରଣମି
ଜଣାଉଛି ମୋର ଦୋଷ କ୍ଷମାକର ସ୍ୱାମୀ ।
ମୁହିଁ ଏ ଜନ୍ମରେ ଦେବ ତବପାଦେ ସେବି
ଇହ ଜନମରେ ଦେବ ବୋଲାଇଛି କବି ।
ଆହେ ବୁଦ୍ଧଜନେ ମୋର ନ ଘେନିବ ଦୋଷ
ସଂସାର ହିତରେ ଏହା କଲି ମୁଁ ପ୍ରକାଶ ।
ମକରେ ମହୋଦଧିରେ ଯେ ବୁଡ଼ାଏ ମଥା
ଯେତେ ଦୋଷ ଥାଇ ତାର ହରଇ ସର୍ବଥା ।
ମକରେ ଚନ୍ଦ୍ରଭାଗାରେ କରିଣ ସ୍ନାହାନ
ଯେବଣ ଲୋକ ସେଠାରେ କରେ ପିଣ୍ଡଦାନ
ବାରବର୍ଷ ବସନ୍ତି ତା ପିତୃ ସ୍ୱର୍ଗଲୋକେ
ଅନ୍ୟ ଶ୍ରାଦ୍ଧ ନ କରିବ ବାର ବର୍ଷଯାକେ ।
ଏଥେ ସ୍ନାନକରି ଯେହୁ ସେବଇ ବିରଞ୍ଚି
ଗଳିତ କୁଷ୍ଠ ହୋଇଲେ ପକାଏ ସେ ଲେଛି ।



## ଚନ୍ଦ୍ରଭାଗା ତୀର୍ଥେ ଶାମ୍ବଙ୍କର କୁଷ୍ଠବ୍ୟାଧି ମୋଚନ ଓ ଯୁଧିଷ୍ଠିରଙ୍କ ମହୋଦଧିରେ ମାଘସ୍ନାନ ଫଳର ବିବରଣ

ଏଥୁଅନ୍ତେ ପୁଚ୍ଛାକଲେ ଦେବ ଯୁଧିଷ୍ଠିର
ଏ ତୀର୍ଥ ମହିମା ମୋତେ କହ ମୁନିବର ।
ଏ ପବିତ୍ର ତୀର୍ଥ କଥା କରିଣ ଶ୍ରବଣ
ଆମ୍ଭର ପାତକମାନ କରିବୁ ଖଣ୍ଡନ ।
ଯୁଧିଷ୍ଠିରଙ୍କ ବଚନେ ମାର୍କଣ୍ଡ କହନ୍ତି
ଏ ତୀର୍ଥ ମହିମା ଶୁଣ ଧର୍ମ ନରପତି ।
ବାବୁ କୃଷ୍ଣର ନନ୍ଦନ ଶାମ୍ବ ଯେ କୁମର
ଦ୍ୱାରକାରେ ସେ ପଞ୍ଚମ ଦ୍ୱାର ରକ୍ଷାପାଳ ।
ତୁଳ କୃଷ୍ଣପକ୍ଷ ପଞ୍ଚମୀ ଯେ ଗୁରୁବାର
ମୃଗଶିରା ନକ୍ଷତ୍ର ଯେ ଅଟେ ସେ ଦିନର ।
ବିଷ୍ଟି ନାମରେ କରଣ ଅତିଗଣ୍ଡ ଯୋଗ
ତୁଳ ସଙ୍କରାନ୍ତିକି ଯେ ପାଞ୍ଚଦିନ ଭୋଗ ।
ସେ ଦିନ ନାରଦ ବିଜେ କରିଲେ ଦ୍ୱାରକା
ପଞ୍ଚମ ଦ୍ୱାରକୁ ଶାମ୍ବ କରିଅଛି ରକ୍ଷା ।
ନାରଦଙ୍କୁ ଦେଖି ହୋଇଲା ସେ ପରଣାମି
ନାରଦ ବୋଇଲେ ବାବୁ କାହିଁ ଛନ୍ତି ସ୍ୱାମୀ ।
ହରିଙ୍କୁ ବାରତା କହ ଯାଇ ଆରେ ବାବୁ
କ୍ଷଣେ ରହି ନ ପାରିଣ ଆମ୍ଭେ ବେଗେ ଯିବୁ ।
ଆକାଶପୁରୁ ବାରତା ଆଣିଛି ସମ୍ବାଦି
ଦେବକାର୍ଯ୍ୟେ ମୋତେ ପେଷିଅଛି ଜମ୍ଭଭେଦୀ
ଦ୍ୱାର ଛାଡ଼ ବାବୁ ମୁହିଁ ଯିବି ଭିତରକୁ
ନୋହିଲେ କୃଷ୍ଣଙ୍କୁ କହି ଆଣ ମୋ ଛାମୁକୁ ।
ଶାମ୍ବ ବୋଇଲା ପିତାଙ୍କ ନାହିଁ ଯେ ଆଦେଶ
କିପରି ଭିତରେ ମୁହିଁ କରିବି ପ୍ରବେଶ ।
ଶୁଣି ନାରଦ ଚାହିଁଲେ ହୋଇ କୋପାନଳ
ନ ଗଲେ ଏ ପୁର ଦଗ୍ଧ କରିବି ସକଳ ।
ଭୟେ କୁମର ମୁନିଙ୍କୁ ଦୁଆରେ ବସାଇ
ଅନ୍ତଃପୁରରେ ପ୍ରବେଶ ହୋଇଲେ ସେ ଯାଇ
ବିଜୟ ଜଗମୋହନ ଶକ୍ରାବତୀ ପୁରେ
ପ୍ରିୟାତୁଳେ ମାତିଛନ୍ତି କ୍ରୀଡ଼ାରସଭରେ ।
ଶାମ୍ବକୁମର ଭେଟିଲା ତାଙ୍କୁ କ୍ରୀଡ଼ାବେଳେ
ଶାମ୍ବ ନତଶିରେ ନମେ ପିତା ପାଦତଳେ ।
ଜମ୍ବୁବତୀ ଦେବୀ ଶାମ୍ବ କୁମରକୁ ଦେଖି
ଲଜ୍ଜିତେ ଶୃଙ୍ଗାର ଦେବୀ ଗଲେ ସେ ଉପେକ୍ଷି
ଆତ୍ମା ବଇରାଗେ କୃଷ୍ଣ ମହାରାଗ କରି
ଶାମ୍ବକୁ ଶାପ ବିହିଲେ କିଛି ନ ବିଚାରି ।

ରେ ଶାମ୍ବ ତୋହର ଅଟେ ଏଡ଼େ ମନ୍ଦବୁଦ୍ଧି
ବାକ୍ୟ ଲଙ୍ଘି ପଶିଲୁ ତୁ ଭୋଗ କୁଷ୍ଟବ୍ୟାଧି ।
ନାରାୟଣଙ୍କର ଶାପ ପଡ଼ିଲା ତକ୍ଷଣ
ସେ ପ୍ରଭୁଙ୍କ ବାକ୍ୟ କେହୁ କରିବ ମେଣ୍ଟଣ ।
ବାହାରର ଶୋଭାରୂପ ଭିତରକୁ ଗଲା
ସର୍ବାଙ୍ଗଯାକରେ ତାର କୁଷ୍ଟବ୍ୟାଧି ହେଲା ।
ଲିଙ୍ଗରସ ଭଗନରେ ହୁଏ ଯେତେ ଦୋଷ
ଶତବ୍ରହ୍ମହତ୍ୟା ଦୋଷ ନୁହେଁ ୟା ସଦୃଶ ।
ଶାମ୍ବକୁମର ବୋଇଲା ନୁହଇ ମୁଁ ଦୋଷୀ
ଦ୍ୱାରେ ବିଜେ କରିଛନ୍ତି ନାରଦ ମହର୍ଷି ।
ଆକାଶ ବାରତା ବୋଲି କଟାଳିଲେ ମୋତେ
ମୁନିଙ୍କର କୋପ ଦେଖି ଅଇଲି ମୁଁ ଏଥେ ।
ନ ଆସି ବୋଇଲେ ପୁର କରିବି ଦହନ
ନାରଦଙ୍କ ନିକଟକୁ ଚାଲନ୍ତୁ ବହନ ।
କଳହପ୍ରିୟ ନ ପୁଣ ପୁର ଦ୍ୟନ୍ତି ଦହି
ବେଗ ହୋଇ ଚାଲ ପିତା ଯିବା ତାଙ୍କ ତହିଁ ।
ଶ୍ରୀକୃଷ୍ଣ ବୋଇଲେ ବୃଥା ଅରଜିଲୁ ଦୋଷ
ଯାକହି ଅଇଲେ ପୁତ୍ର ସଙ୍ଗେ ପୀତବାସ ।
ନାରଦ ଦେଖିଣ ପୁଚ୍ଛେ ଶାମ୍ବ କୁମରକୁ
ଏମନ୍ତ ଅବସ୍ଥା ବାବୁ କେ କଲା ତୁମ୍ଭଙ୍କୁ ।
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭେ କଲ ଯେଉଁ କୃତ୍ୟ
ସେହେତୁ ସରିଲା ମୋର କାମସମ ସୁତ ।
ନାରଦ ବୋଇଲେ ତୁମ୍ଭେ ଭବିଷ୍ୟତଜ୍ଞାତା
ଜାଣି ନ ପାରିଲ ତୁମ୍ଭେ ମୋ ଆସିବା କଥା ।
ମନୁଷ୍ୟ କୋଳରେ ତୁମ୍ଭେ ହେଲ ଉତପତ୍ତି
ମେଣ୍ଟଣ ନ ଗଲା ତୁମ୍ଭ ମନୁଷ୍ୟ ପ୍ରକୃତି ।
ଶାମ୍ବ ଆଙ୍ଗ ଦେଖି ମୁନି ହୋଇଲେ ବିକଳ
ଗୁରୁଙ୍କର ବାକ୍ୟ କେଭେ ନୁହଇ ବିଫଳ ।
ନାରଦ ବୋଇଲେ ଶାମ୍ବ ଚଳ ଏହିକ୍ଷଣ
ଚନ୍ଦ୍ରଭାଗା ତୀର୍ଥେ ସେବ ସୂର୍ଯ୍ୟ ନାରାୟଣ ।
ଭକ୍ତିଛଳେ ଅର୍କଦୈତ୍ୟ ମାରି ନିରଞ୍ଜନ
ରଖିଲେ ସେହି ତୀର୍ଥର କୋଣାଅର୍କ ନାମ ।
ଶତକୋଟି ତୀର୍ଥେ ତହିଁ ରହିଛନ୍ତି ସବୁ
ଯାଅ ତହିଁ ସ୍ନାନକରି ସୂର୍ଯ୍ୟଙ୍କୁ ଦେଖିବୁ ।
ନାରଦ ବଚନେ ତହିଁ କୃଷ୍ଣଙ୍କର ସୁତ
ଚନ୍ଦ୍ରଭାଗା ତୀର୍ଥେ ବିଜେ କରିଣ ତୁରିତ ।
ଆହାର ନିଦ୍ରା ମୈଥୁନ ସମସ୍ତ ତେଜିଲା
ନିରାହାରେ ଶାମ୍ବ ତହିଁ ପବନ ଭକ୍ଷିଲା ।
ମନ ବଚନ କର୍ତ୍ତବ୍ୟେ ସୂର୍ଯ୍ୟେ କରେ ସେବା
ବୋଲଇ ପ୍ରସନ୍ନେ ନାଥ ସୁଦୟା କରିବା ।

ବିରଞ୍ଚିନାଥ ଶାମ୍ବର ସେବା ଦେଖିକରି
ମହାଗୁରୁ ଶାପୁଁ ତାକୁ ବେଗେ କଲେ ପାରି ।
ନିଷ୍କଳଙ୍କ ହୋଇଲା ଯେ ତାର କୁଷ୍ଟବ୍ୟାଧି
ଆହେ ଯୁଧିଷ୍ଠି ଏମନ୍ତ ଏ ତୀର୍ଥ ପ୍ରସିଦ୍ଧି ।
ଏଥେ ସ୍ନାନକରି ତୁମ୍ଭେ ପିଣ୍ଡଦାନ କର
ଅନେକ ଜନ୍ମର ଦୋଷ ହୋଇଯିବ ପାର ।
ସେହି ତୀର୍ଥେ ଯୁଧିଷ୍ଠିର ରହି ପାଞ୍ଚମାସ
ସେହିଠାରେ ପିଣ୍ଡାଦାନ କଲେ ଧର୍ମଶିଷ୍ୟ ।
ରାମଚଣ୍ଡୀ ଦରଶନ କଲେ ରାମତୀର୍ଥେ
ଅଠାଶୀ ସହସ୍ର ଋଷି ଅଛନ୍ତି ସଙ୍ଗତେ ।
ମାର୍କଣ୍ଡ ବୋଇଲେ ବାବୁ ଏହି ରାମଚଣ୍ଡୀ
ଦକ୍ଷିଣ କୋଶଳେ ଏହୁ ଗୁପ୍ତ ତୀର୍ଥଖଣ୍ଡି ।
ବାବୁ ସୀତାଙ୍କୁ ହରଣ କଲା ଦଶାନନ
ମାଲ୍ୟବନ୍ତରେ ଭେଟିଲା ବୀର ହନୁମାନ ।
ମକର ଶୁକଳପକ୍ଷ ପ୍ରତିପଦ ଦିନ
ଅଶ୍ଳେଷା ନକ୍ଷତ୍ର ଭୃଗୁବାର ଅଟେ ଜାଣ ।
ଶ୍ରୀରାମଚନ୍ଦ୍ର ବିଜୟ କଲେ ଏହି ତୀର୍ଥେ
ଶୁଭ ଦେଲେ ସମୁଦ୍ରରେ ବନ୍ଧନ ନିମନ୍ତେ ।
ଏଥି ଶରଣ ପଶିଲା ବୀର ବିଭୀଷଣ
ବୋଇଲା ଶୁଭ ଦେବାର ଏଥି ଅକାରଣ ।
ଉତ୍ତର ଭାଗରେ ଅଛି ଲଙ୍କାଗଡ଼ ଦ୍ୱାର
ସେହି ସଳଖରେ ଶୁଭ ଦେବ ରଘୁବୀର ।
ସେହି ସଳଖରେ ଯେବେ ବନ୍ଧକୁ ବାନ୍ଧିବ
ନିର୍ବିଘ୍ନରେ ପାରହୋଇ ଲଙ୍କାଗଡ଼େ ଯିବ ।
ବିଭୀଷଣ ବଚନରେ ଦେବ ରଘୁପତି
ତହିଁ ଚଳିଗଲେ ହୋଇ ଦକ୍ଷିଣ ମୂରତି ।
ଯେଉଁ ଶୁଭ ଶିଳାଗୋଟି ପୋତିଲେ ଶ୍ରୀରାମ
ଦେବୀମନ୍ତ୍ରେ ପୂଜା କଲେ ରାମଚଣ୍ଡୀ ନାମ ।
ଶ୍ରୀରାମଙ୍କ ଦରଶନେ ଯେଉଁ ଫଳଶ୍ରୁତି
ଏ ଚଣ୍ଡୀ ଦର୍ଶନେ ଲୋକେ ପାଇଲେ ସଦ୍‌ଗତି
ଏ ମହୋଦଧିରେ ସ୍ନାନ କଲେ ରଘୁନାଥ
ଏ ରାମକୁଣ୍ଡେ ମୁକତ ହେଲେ ଦଶରଥ ।
ଯୁଧିଷ୍ଠିର ସ୍ନାନ କଲେ ସେହି ମହୋଦଧି
ରାମକୁଣ୍ଡେ ସ୍ନାନକରି ଚଣ୍ଡୀଙ୍କୁ ଆରାଧି ।
ଶୁଣ ମହାରାଜା ତହିଁ ବିଜେ ଧର୍ମସୁତେ
ପ୍ରବେଶ ହୋଇଲେ ଯାଇ ଯମନିକ ତୀର୍ଥେ ।
ମାର୍କଣ୍ଡ ବୋଇଲେ ବାବୁ ଏଥେ ସ୍ନାନ କର
ମୁକ୍ତିଦାତା ଶିବ ଏଥି ନାମ ଯମେଶ୍ୱର ।
ଶୁଣ ଆହେ ଯୁଧିଷ୍ଠିର ବଦନ୍ତି ମାର୍କଣ୍ଡ
ଏହିପରି ମହାକ୍ଷେତ୍ର ନାହିଁ ଯେ ବ୍ରହ୍ମାଣ୍ଡ ।

ବ୍ରହ୍ମାଙ୍କର ପୁତ୍ର ନାମ ଯମନିକ ଋଷି
ତାହାଙ୍କୁ ସ୍ନେହ କରନ୍ତି ଯଶୋବନ୍ତବାସୀ ।
ବ୍ରହ୍ମାଙ୍କ ବାହନ ହଂସ ସୂଚିମୁଖୀ ଓଷ୍ଠୀ
ଆରୋହିଲେ ଯମନିକ ଋଷି ତାର ପିଠି ।
ଶ୍ରଦ୍ଧାରେ ବୁଲିଲେ ମୁନି ସପତ ବ୍ରହ୍ମାଣ୍ଡ
ପାତାଳ ସୁତଳ ଆଦି ପୃଥ୍ୱୀ ନବଖଣ୍ଡ ।
ନବଦ୍ୱୀପ ସପ୍ତସିନ୍ଧୁ ଗିରିଆଦି କରି
ଆନନ୍ଦେ ଗମିଲେ ଯମନିକ ତପଚାରୀ ।
ବ୍ରହ୍ମା ବିଜୟ କରିଲେ ଅମର ସଭାକୁ
ଚଉକତି ଲୋଡ଼ିଲେ ସେ ବାହନ ହଂସକୁ ।
ଶୁଣିଣ ନାରଦ ଋଷି ଦେଲେ ଏ ଉତ୍ତର
ଯମନିକ ଚଢ଼ିଗଲେ ମରାଳ ତୁମ୍ଭର ।
ବିଶ୍ୱାମିତ୍ର ବୋଇଲେ ସେ ମୁହିଁ ଗଲାବେଳେ
ଯମନିକ ହଂସ ଚଳିଗଲେ ମହାଭୋଳେ ।
ଶୁଣିକରି ମହାକୋପ କଲେ ବେଦବର
ଆରେରେ ଚଣ୍ଡାଳ ଶାପ ଘେନି ତୁ ଆମ୍ଭର ।
ଯେଉଁସ୍ଥାନେ ଅଛୁ ତୁହି ଥାଅ ତହିଁ ପଡ଼ି
ଯୁଗେ ଯୁଗେ ରହିଥାଅ ତୁହି ମୁହଁ ମାଡ଼ି ।
ପିତାମହ ତାକୁ ଶାପ ଦେଲେ ଯେତେବେଳେ
ଯମନିକ ରହିଲେ ସେ ମହୋଦଧି କୂଳେ ।
ପିତାର ଶାପରେ ସେହି ନିଶ୍ଚଳ ହୋଇଲା
ସେହିଠାରେ ରହି ଶମ୍ଭୁରୂପ ପ୍ରକାଶିଲା ।
ବ୍ରହ୍ମାର ନନ୍ଦନ ତାର ନାମ ଯମେଶ୍ୱର
ଯମନିକା ତୀର୍ଥେଛନ୍ତି କରି ଅଧିକାର ।
ଏହିଠାରେ ରହିଅଛି ଜାଣ ନୀଳଗିରି
କଳ୍ପବଟ ଏହିଠାରେ ଅଛି ବିଜେକରି ।
ମାର୍କଣ୍ଡ ବୋଇଲେ ଶୁଣ ଧର୍ମ ନରପତି
କୃଷ୍ଣ ବିଜେ ସ୍ୱୟଂ ବିଷ୍ଣୁ ମଞ୍ଚେ ଉତପତ୍ତି ।
ସମୟେକ ଏ ପର୍ବତେ ସେ ବିଜେ କରିବେ
ସେ ସମୟେ ଏ ପୃଥ୍ୱୀରେ କଳିରାଜା ହେବେ
ଯୁଧିଷ୍ଠି ବୋଇଲେ ଏହା ହେବ କେଉଁପରି
ଏକଥା ମୋହ ଆଗରେ କହନ୍ତୁ ବିସ୍ତାରି ।
ମାର୍କଣ୍ଡ ବୋଇଲେ ତାହା ଶୁଣ ଯୁଧିଷ୍ଠିର
ସଂକ୍ଷେପି ସେ କଥା ମୁହିଁ କହେ ତୋ ଆଗର ।
ପୃଥ୍ୱୀଭାରା ନିବାରଣ ହେବ ରମାଈଶ
ନିଜ ବଂଶକୁ ସମୂଳେ କରିବେ ବିନାଶ ।
କାଳିନ୍ଦୀତୀର ଲବଙ୍ଗଲତା ତଳେ ହରି
ମାଧବୀ ଲତାରେ ଥିବେ ଦୋଳି ଏକ କରି ।
ଶ୍ରୀକୃଷ୍ଣଙ୍କ କଥା ତୁମ୍ଭେ ଶୁଣ ଯୁଧିଷ୍ଠିର
ସେହି ପ୍ରଭୁଙ୍କ ମହିମା ଅତି ଅଗୋଚର ।

ତ୍ରେତା ଯୁଗରେ ଶ୍ରୀରାମ ବାଳିକି ବଧିଲେ
ବାନର ବଳ ଘେନିଣ ସମୁଦ୍ର ବାନ୍ଧିଲେ ।
ଲଙ୍କା ରାବଣକୁ ଦେଲେ ଶ୍ରୀମୁଖ ଗୋଟିଏ
ଶ୍ରୀମୁଖ ଘେନିଣ ଗଲା ବାଳିର ତନୟେ ।
ରାବଣ ପାଶେ ବହୁତ ପ୍ରତିଜ୍ଞା ସେ କଲା
ସିଂହ ଦ୍ୱାର ଭାଙ୍ଗି ନଗ୍ର ଚୂର କରିଦେଲା ।
ଜଗତୀ ଚାଳ ଅଟ୍ଟାଳିମାନଙ୍କୁ ଭାଙ୍ଗିଲା
ରାବଣ ମୁକୁଟ ଘେନି ଅଙ୍ଗଦ ଅଇଲା ।
ଶ୍ରୀରାମଙ୍କ ଶ୍ରୀଛାମୁରେ ତାହା ଥୋଇଦେଇ
ଅଙ୍ଗଦବୀର ଶୋଇଲା ପ୍ରଣିପାତ ହୋଇ ।
ଶ୍ରୀରାମ ବୋଇଲେ ବର ମାଗରେ ତନୁଜ
ଅଙ୍ଗଦ ବୋଇଲା ଶୁଣ ପ୍ରଭୁ ଦେବରାଜ ।
ମୋହର ହୃଦୟ କଥା ତୁମ୍ଭେ ସବୁ ଜାଣ
ଅନ୍ତର୍ଯ୍ୟାମୀ ନାଥ ତୁମ୍ଭେ କର ବାଞ୍ଛାପୂର୍ଣ୍ଣ ।
କି ବର ମାଗିବି ଜାଣି ଅନୁଗ୍ରହ କର
ଯେଉଁପରି ବାଞ୍ଛାପୂର୍ଣ୍ଣ ହୋଇବ ମୋହର ।
ଶ୍ରୀରାମ ବୋଇଲେ ଶୁଣ ସୁଗ୍ରୀବ ଜାମ୍ବବ
ଅଙ୍ଗଦ ବୋଇଲା ମୋତେ ସୁଦୟା କରିବ ।
କିଏ ବା ଜାଣି ପାରିବ ଅଙ୍ଗଦର ମନ
ଜାମ୍ବବ ବୋଇଲା ସ୍ୱାମୀ ତୁମ୍ଭେ ସବୁ ଜାଣ ।
ହୃଦୟର କଥା ଆମ୍ଭେ ଜାଣିବୁ ବା କାହିଁ
ପୃଥ୍ୱୀ ଚିନ୍ତାମଣି ତୁମ୍ଭ ତହୁଁ ଆନ ନାହିଁ ।
ଶ୍ରୀରାମ ବୋଇଲେ ଆମ୍ଭେ ଜାଣିବୁ ବା କାହିଁ
ପୃଥ୍ୱୀ ଚିନ୍ତାମଣି ତୁମ୍ଭ ତହୁଁ ଆନ ନାହିଁ ।
ଶ୍ରୀରାମ ବୋଇଲେ ଆମ୍ଭେ ବଧିଲୁ ବାଳିକି
ଏହା ପିତାଶତ୍ରୁ ଆମ୍ଭେ ହୋଇଲୁ ନାହିଁକି ।
ଉଚିତ ବର ମାଗିଲା ବାଳିର ତନୟ
ବିଚାରେ ମୋ ହସ୍ତେ ବଧ ହେବ ଦେବରାୟ
ଶୁଣି ହନୁମନ୍ତ କରି ଦନ୍ତ କଡ଼ମଡ଼ି
ବୋଇଲା ତୋହର ମୁଣ୍ଡ ପକାଇବି ମୋଡ଼ି ।
ଶ୍ରୀରାମ ବୋଇଲେ କୋପ ଛାଡ଼ ଆରେ ହନୁ
ଉତ୍ତମ ବର ମାଗୁଛି ବାଳିରାଜା ସୂନୁ ।
ଏହାର ହସ୍ତେ ମରିବୁ ଆମ୍ଭେ ଏହା ସତ୍ୟ
ଯାହା ମନେ ପାଞ୍ଚିଲା ସେ ହୋଇବ ପ୍ରାପତ ।
ହେ ଅଙ୍ଗଦ ବାଞ୍ଛାସିଦ୍ଧ ହୋଇବ ତୁମ୍ଭର
ଏ ଦେହ ଘେନିଣ ଆମ୍ଭେ ଯିବୁ ସ୍ୱର୍ଗପୁର ।
ଦ୍ୱାପର ଯୁଗରେ ହେବୁ କାହ୍ନା ଅବତାର
କାଳଯବନ ଆଦିଙ୍କୁ କରିବୁ ସଂହାର ।
ଜରା ନାମରେ ଶବର ତୁହି ହୋଇଥିବୁ
ତୋହର ଶରାଘାତରେ ଆମ୍ଭେ ନାଶଯିବୁ ।

ଅଦୋଷରେ ତୋ ପିତାକୁ ମୁହିଁ କଲି ନାଶ
ତୁ ମୋତେ ନାରାଚ ଘାତେ କରିବୁ ବିନାଶ ।
ଶୁଣ ବାବୁ ଯୁଧିଷ୍ଠିର ମାର୍କଣ୍ଡ କହନ୍ତି
ସେ ଏବେ ଜରା ନାମରେ ହୋଇଛି ଉତ୍ପତ୍ତି ।
ସେ ଜରା ବ୍ୟାଧ ମୃଗୟା କାରଣେ ଆସିବ
ମୃଗଲୋଡ଼ି ଆସି କୃଷ୍ଣପାଦକୁ ଦେଖିବ ।
ମୃଗ ଜ୍ଞାନରେ ବିନ୍ଧିବ ଶର ସେ ପାଦରେ
ଶ୍ରୀକୃଷ୍ଣ ପ୍ରାଣ ତେଜିବେ ସେହି ଆଘାତରେ ।
ଯେତେବେଳେ ହରିପାଦେ ବାଜିବ ସେ ବାଣ
ଆଜ୍ଞାଦେବେ କିରାତକୁ ପାର୍ଥେ ବେଗେ ଆଣ
କିରାତ ଦେଖି କୃଷ୍ଣଙ୍କୁ ଦୁଃଖିତ ହୋଇବ
କୃଷ୍ଣ ଆଜ୍ଞାରେ ପାର୍ଥକୁ ଜରା ଘେନିଯିବ ।
ବ୍ୟାଧ ସଙ୍ଗରେ ସେଠାରେ ପହଞ୍ଚିବେ ପାର୍ଥ
ସେ କାଳେ କୃଷ୍ଣଙ୍କର ଯେ ପ୍ରାଣ କଣ୍ଠାଗ୍ରତ ।
ପାର୍ଥ ହସ୍ତ ଧରି ହରି ଛାଡ଼ିବେ ପରାଣ
ଯମୁନା କୂଳେ ସେ ପିଣ୍ଡ ଦହିବ ଅର୍ଜ୍ଜୁନ ।
ଦହିବା କାଳେ ହୋଇବ ଶୂନ୍ୟବାଣୀ ତାକୁ
ନ କର ଦହନ ତୁହି ଶ୍ରୀକୃଷ୍ଣ ପିଣ୍ଡକୁ ।
ଏହି କଳେବର ଜାଣ ପିଣ୍ଡଙ୍କର ରାଜା
ନୀଳକନ୍ଦର ପର୍ବତେ ପାଇବ ଏ ପୂଜା ।
ଆକାଶ ବାଣୀ ଏପରି ଶୁଣିବ କିରୀଟୀ
କ୍ଷୀରୋଦେ ମେଲିବ ନେଇ କୃଷ୍ଣ ପିଣ୍ଡଗୋଟି
ବାରିଧି ଉତ୍ତରକୂଳେ ସେ ପିଣ୍ଡ ଲାଗିବ
ଏ ଜରାଶବର ତାଙ୍କୁ ପୂଜା ଯେ କରିବ ।
ଜଗନ୍ନାଥ ନାମ ତହିଁ ବହିବେ ଏ ଦେବ
ବଳଭଦ୍ର ହୋଇବେ ଯେ ତାଙ୍କ ସଙ୍ଗେ ଶିବ ।
ବ୍ରହ୍ମା ବସିବ ସୁଭଦ୍ରା ରୂପକୁ ଧରିଣ
ସେ ରୂପ ଦେଖି ତରିବେ ତିନିପୁର ଜନ ।
କଳିଯୁଗ ଚାରିଲକ୍ଷ ବତ୍ରିଶ ସହସ୍ର
ବର୍ଷ ପର୍ଯ୍ୟନ୍ତ ପାଇବେ ପୂଜା ହୃଷୀକେଶ ।
ଶୁଣିଣ ଯୁଧିଷ୍ଠି କଲେ ନୀଳଗିରି ପୂଜା
ତୁ ସେ ଗିରିବର ଅଟୁ ଗିରିଙ୍କର ରାଜା ।
ପର୍ବତମାନଙ୍କ ସଙ୍ଗ ଛାଡ଼ିଲୁ କିପାଇଁ
ଏକାନ୍ତ ରହିଛୁ କିପାଁ କହ ତୁ ବୁଝାଇ ।
ଯୁଧିଷ୍ଠି ପୁଚ୍ଛନ୍ତେ ତହୁଁ ଶଇଳ ବୋଇଲା
ହିମାଦ୍ରି ବାଦେ ମୋ ପକ୍ଷ ବାସବ ଛେଦିଲା ।
ସମସ୍ତ ଗିରିଙ୍କ ପକ୍ଷ ବାସବ ଛେଦନ୍ତେ
ପଳାଇ ଲୁଚିଲେ ଗିରିମାନେ ଯେଝାମତେ ।
ନୀଳସୁନ୍ଦର ବୋଲିଣ ଆମ୍ଭେ ଭାଇ ବେନି
ଭାଇ ମରୁତ ଉଡ଼ାଇ ଆସିଲାକ ଘେନି ।
ସୁନ୍ଦରଗିରି ପାତାଳ ପୁରେ ଗୋପ୍ୟ ହେଲା
ନାରାୟଣଙ୍କ ଦୟାରୁ ମୋ କାୟା ବଢ଼ିଲା ।
ମୁଁ ସତ୍ୟଯୁଗେ ସତର ସହସ୍ର ଯୋଜନ
ତ୍ରେତାଯୁଗରେ ମୁଁ ତେରସସ୍ର ଆୟତନ ।
ଦ୍ୱାପରେ ବାର ସହସ୍ର ଯୋଜନ ଯେ ଜାଣ
କଳିରେ ଚାରିସହସ୍ର ଯୋଜନ ପ୍ରମାଣ ।
ଚାରିଯୁଗେ ଏହିପରି ବିକାଶଇ ରୂପ
ମୋ ବ୍ୟାପିବା ଦେଖି ସୂର୍ଯ୍ୟ କରିଣ ସନ୍ତାପ ।
ସେଥିର ନିମନ୍ତେ ସ୍ତୁତି କରଇ ବିରଞ୍ଚି
ନୀଳଗିରି ଶୃଙ୍ଗ ମୋର ଗତିକି ରୋଧିଛି ।
ମୋ ଶିଖରେ ହାବୋଡ଼ନ୍ତି ଯଦି ତାର ହୟେ
ରଥର ଚକ ତାହାର ଭାଙ୍ଗି ଚୂର୍ଣ୍ଣ ହୁଏ ।
ଶତକେ ଚକେ ନିର୍ମାଣ ସୂର୍ଯ୍ୟରଥ ଥିଲା
ଅନେଶ୍ୱତ ଚକ ତାର ମୋ ଶୃଙ୍ଗେ ଭାଙ୍ଗିଲା ।
ଏକ ଚକେ ତାର ଏବେ ଚଳୁଅଛି ରଥ
ପୂର୍ବକୁ ତେଜିଣ ଗମେ ସେ ଉତ୍ତର ପଥ ।
ସୂର୍ଯ୍ୟ ବୋଇଲେ ତେଜିଲି ମୁହିଁ ପୂର୍ବ ଭୂମି
ସୁଦୟା କଲେ ତୁ ମୋତେ ପାରିବି ମୁଁ ଭ୍ରମି ।
ତୁ ଯେବେ ଗୋପ୍ୟ କରିବୁ ତୋର ନିଜକାୟ
ଯୁଗ ଯୁଗାନ୍ତେ ରହିବ ତୋର କୀର୍ତ୍ତିଚୟ ।
ସତ୍ୟଯୁଗରେ ମୁହିଁ ସେ କାଞ୍ଚନ ସ୍ୱରୂପ
ତ୍ରେତାଯୁଗରେ ମୋହର ମରକତ ରୂପ ।
ଦ୍ୱାପର ଯୁଗରେ ମୋର ନୀଳମଣିକାୟେ
ତେଣୁ ନୀଳଗିରି ମୋତେ ବୋଲନ୍ତି ସଭିଏଁ ।
ସତ୍ୟଯୁଗେ ମୁହିଁ ଅଟେ ଖଗବର ମୂର୍ତ୍ତି
ତ୍ରେତୟାରେ ରାମଚନ୍ଦ୍ର ନାମରେ ସନ୍ତତି ।
ଦ୍ୱାପର ଯୁଗରେ ମୁହିଁ ଚଉଧର୍ମ ଜାଣି
ମୁହିଁ ସେ ବହି ପାରଇ ବିଷ୍ଣୁ ତେଜ ଜାଣି ।
କଳିଯୁଗରେ ବଉଦ୍ଧ କେଶବ ପ୍ରତିମା
ମୁଁ ଦେବି ନୀଳସୁନ୍ଦର ପର୍ବତ ଯେ ନାମା ।
ଗହନ କଳିକାଳରେ ମୁହିଁ ହେବି ଗୋପ୍ୟ
ଶ୍ରୀହରି ପ୍ରସନ୍ନେ ହେବି ବାଲୁକା ସ୍ୱରୂପ ।
ହେ ଯୁଧିଷ୍ଠି ଶୁଣ ତୁମ୍ଭେ ବୋଲେ ନୀଳଗିରି
ମୋର ଦରଶନେ ପୁଣି ଅଶ୍ୱମେଧ ସରି ।
ଯୁଗେ ଯୁଗେ ଏହିପରି କଥା ମୋର ବୁଝ
ମୁହିଁ ସେ ସହି ପାରଇ ନାରାୟଣ ବୋଝ ।
କଳିଯୁଗେ ନାରାୟଣ ପ୍ରତିମା ଉଦୟ
ମୋର ନାମ ନୀଳଗିରି ହେ ପଣ୍ଡୁତନୟ ।
ଧରି ପଞ୍ଚମୂରତି ଯେ ଦେବୀ ଧବଳାଙ୍ଗୀ
କୁଣ୍ଡ ଭିତରେ ରହିବ ମୋତେ ସେହୁ ଜଗି ।

ନବକୋଟି ତୀର୍ଥ ଘେନି କ୍ଷେତ୍ରାଧି ପୁଷ୍କର
ଅନୁବ୍ରତେ ଖଟିଛନ୍ତି ନିକଟେ ମୋହର ।
ମହୋଦଧି ଶ୍ୱେତଗଙ୍ଗା ନରେନ୍ଦ୍ର ମାର୍କଣ୍ଡ
ଇନ୍ଦ୍ରଦ୍ୟୁମ୍ନକୁ ମିଶାଇ ଏହି ପାଞ୍ଚକୁଣ୍ଡ ।
ଆକାଶରୁ ଉତପତ୍ତି ପାତାଳ ଗାମିନୀ
ଅଭିଷେକ ନିମନ୍ତେ ଯେ ସନ୍ନିଧେ ଖଟଣି ।
ନବକୋଟି ତୀର୍ଥଘେନିକରି ମହୋଦଧି
ନାନା ତୀର୍ଥଜଳ ହୋଇଥିଲେ ଏଥି ଭେଦି ।
ସାଗର ତୀରୁ ପ୍ରୟାଗ ତୀର୍ଥେ ଯାଇ ଭେଟି
ଆରେକ ଲୋମ ମୂଳରୁ ଭଦ୍ରାତୀର୍ଥ ଗୋଟି ।
ଆର ଲୋମୁ ଉପୃତ୍ତି ଯେ ମଣିକର୍ଣ୍ଣ କୁଣ୍ଡେ
ଆରେକ ଲୋମ ଯେ ଯହୁଁ ଗଲେ ମାରକଣ୍ଡେ
ସମସ୍ତ ତୀର୍ଥ ଏଥିରେ ଅଛନ୍ତି ନକୋଟି
ମହୋଦଧିରୁ ସମସ୍ତ ତୀର୍ଥ ଛନ୍ତି ଫୁଟି ।
ନବକୋଟି ତୀର୍ଥ ମଧ୍ୟେ ଶ୍ରେଷ୍ଠ ମହୋଦଧି
ନାନା ତୀର୍ଥ ଜଳ ଏଥି ରହିଅଛି ଭେଦି ।
ତୀର୍ଥମାନଙ୍କରେ ଜାଣ ମହୋଦଧି ରାଜା
ଅନନ୍ତ ତୀର୍ଥ କରନ୍ତି ଏହାଙ୍କର ପୂଜା ।
ଶୁଣ ହୋ ଯୁଧିଷ୍ଠି ଶ୍ୱେତଗଙ୍ଗାର ମହିମା
ଏଥୁ ଉପୃତ୍ତି ହୋଇଲେ ଶ୍ୱେତ ନାମେ ବ୍ରହ୍ମା ।
ଏ ଶ୍ୱେତଗଙ୍ଗାରେ ସ୍ନାନ କରନ୍ତେ ସେ ଧାତା
ଏହି ସ୍ନାନଫଳେ ହେଲେ ଜଗତ କରତା ।
ପ୍ରଜାପତି ଦଇବତ ରୋହିଣୀ କୁଣ୍ଡଟି
ଆକାଶ ମେଖଳା ଗଙ୍ଗାତୀର୍ଥ ଜାଣ ଏଟି ।
ବ୍ରହ୍ମାର ଆସନ ଅଟେ ଶ୍ୱେତଗଙ୍ଗାତୀର୍ଥେ
ଅନାଦି ଦେବ ଅଛନ୍ତି ଏହାଙ୍କ ସଙ୍ଗତେ ।
ଯମନିକା ତୀର୍ଥେ ଇନ୍ଦ୍ର ଦେବତାର ବାସ
ଏ ତିନି ଦେବ ଦେଖିଲେ ପାପ ହୁଏ ଧ୍ୱଂସ ।
ଶତପ୍ରଳୟରେ ଜାଣ ମୁହିଁ ନାଶଯାଏ
ଏ ତୀର୍ଥେ ବୁଡ଼ଇ ସର୍ବ ଦେବତାଙ୍କ କାୟେ ।
ବାବୁ କଳ୍ପବଟଠାରୁ ଜାଣ ଯେତେ ବାଲି
ଦେବତାଙ୍କ ଅସ୍ଥି ଏହା ପ୍ରତ୍ୟକ୍ଷେ କହିଲି ।
ସତ୍ୟ ଯେ ତ୍ରେତା ଦ୍ୱାପର କଳିଯୁଗ ଚାରି
କାରଣମାନ ଲଭନ୍ତି ଏଥେ ପାପ ହରି ।
ବାବୁ ଯେବଣ ଦେବତା ମୃତ୍ୟୁକୁ ଇଛନ୍ତି
ଚତୁର୍ଦ୍ଦିଗ ଭ୍ରମି ଏଥେ ବିଶ୍ରାମ କରନ୍ତି ।
ପ୍ରତ୍ୟକ୍ଷେ ବୈକୁଣ୍ଠ ଏହୁ ଚିହ୍ନି ଯେ ନ ପାରି
ବ୍ରହ୍ମପଦ ତେଜି ବ୍ରହ୍ମା ଏଥେ ଆଶ୍ରେକରି ।
ବାବୁ ଯୁଧିଷ୍ଠିର ଏହି ସ୍ଥାନେ ମାସେ ରହି
ପଞ୍ଚତୀର୍ଥ କରି ମହୋଦଧି ଅବଗାହି ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଯେ ଦିଗ
ଏ ଚାରି ଦ୍ୱାରେ ଭ୍ରମିଲେ ଲଭେ ମୋକ୍ଷମାର୍ଗ
ଦିନେ ଏଥେ ତୀର୍ଥକଲେ ଖଣ୍ଡେ ବହୁ ପାପ
ଆକାଶେ ରହଇ ହୋଇ ନକ୍ଷତ୍ର ସ୍ୱରୂପ ।
ତୁ ଯେବେ ମକରେ ଏଥେଁ ସ୍ନାନହିଁ କରିବୁ
ଏ ଦେହ ଘେନି ବାବୁରେ ସ୍ୱର୍ଗରେ ବସିବୁ ।
ଆହୁରି କଥାଏ ଶୁଣ ଧର୍ମ ନରପତି
ଚତୁର୍ବର୍ଗ ଫଳ ତୋତେ ହୋଇବ ପ୍ରାପତି ।
ବହୁ ପୁରୁଷାର୍ଥ କରି ନୀଳଗିରି କହି
ଗିରିର ବାକ୍ୟେ ଯୁଧିଷ୍ଠି ରହିଲେକ ତହିଁ ।
ବୃଷ ମିଥୁନ କକଡ଼ା ସିଂହ କନ୍ୟା ତୁଳ
ବିଛା ଧନୁରେ ବଞ୍ଚିଲେ ଋଷିଙ୍କର ମେଳ ।
ଅମୃତ ଭୋଜନ କଲେ ଦ୍ରାକ୍ଷାଫଳମାନ
ପର୍ବତୁ ମିଳେ ତା ନିତି କରନ୍ତି ଭକ୍ଷଣ ।
ଦିବସେ ନମ୍ର ସେ ଗିରି ରାତ୍ରେ ଲାଗେ ସ୍ୱର୍ଗେ
ଦେଖନ୍ତି ଯୁଧିଷ୍ଠି ଆଦି ତାହା ଅନୁରାଗେ ।
ଧନୁମାସ ଶୁକ୍ଲପକ୍ଷ ପଞ୍ଚମୀ ପାହାନ୍ତି
ତିନିଦଣ୍ଡ ରାତ୍ର ଥାଉଁ ହୋଇଲା ସଂକ୍ରାନ୍ତି ।
ଅର୍କବାର ସେ ଦିନର ନକ୍ଷତ୍ର ଅଶ୍ୱିନୀ
ତୈତିଳ ନାମେ କରଣ ଭୋଗଦଣ୍ଡ ତିନି ।
ସୌଭାଗ୍ୟ ଯୋଗ ଆବର ସେ ଦିନ ଅଟଇ
ପଞ୍ଚମ ଚନ୍ଦ୍ରରେ କଲେ ଅନୁକୂଳ ସେହି ।
ଦଶମୀ ଆଦିତ୍ୟବାର ପଣ୍ଡୁରାଜା ସୁତ
ମହୋଦଧିକୁ ଗଲେ ସେ କରିବାକୁ ତୀର୍ଥ ।
ମହୋଦଧି ଜଳେ ସ୍ନାନ ସାରିଲେ ବହନ
ବାଞ୍ଛାସିଦ୍ଧ ମନାସିଲେ ଯେ ଯାହାର ମନ ।
ଧୌମ୍ୟ ପୁରୋହିତଙ୍କୁ ସେ କରିଣ ବରଣ
ସଂକ୍ରାନ୍ତି ଗଣାଇ କଲେ ମଙ୍ଗଳା ଚରଣ ।
ପଞ୍ଚଆତ୍ମାକୁ ସେ କଲେ ପରିମଳ ତହିଁ
ନିଶ୍ଚଳ ହୋଇଣ ସ୍ନାନ କଲେ ପାଞ୍ଚଭାଇ ।
ପ୍ରାର୍ଥନା କରି ଅନଳେ ଘୃତାହୁତି ଦେଲେ
ସୂର୍ଯ୍ୟଙ୍କୁ ଜଳଅଞ୍ଜଳି ପାଞ୍ଚହିଁ ତୋଳିଲେ ।
ତଦପରେ ପାଞ୍ଚଜଣ ଏକମନ ହୋଇ
ହୃଦମଧ୍ୟେ ସୁମରିଲେ ଦେବ ଭାବଗ୍ରାହୀ ।
ଆସନ ଯେ ପାଦ୍ୟାସନ ଗନ୍ଧ ଧୂପ ଦୀପ
ଦେଇଣ ପୂଜାକରନ୍ତି ତହିଁ ଧର୍ମ ନୃପ ।
ବସିଲେ ଧର୍ମ ନନ୍ଦନ ସର୍ବ ବିଧି ସାରି
ଶୁକ ପୌରାଣିକ ତହିଁ ପୁରାଣ ଉଚ୍ଚାରି ।
ଶୁକ ବୋଇଲେକ ଶୁଣ ସ୍ନାନର ନିୟମ
ଯେଉଁ ମତରେ ଚଳିଲେ ପ୍ରାପ୍ତ ହେବ ଧର୍ମ ।

ମାଘମାସ ସଂକରାନ୍ତି ଶେଷ ପରିଯନ୍ତେ
ତୁ ଫଳ ଲଭିବୁ ସ୍ନାନ କଲେ ବିଧିମତେ ।
ନିଶି ଥାଉଁ ମନ୍ଦିରରୁ ବାହାରିଣ ଯିବ
ପଡ଼ିଆ ଭୂମିରେ ଯାଇ ପ୍ରକୃତି ବସିବ ।
ଆସିଣ କରିବ ତହୁଁ ଜଳେ ଶୌଚକର୍ମ
ମୃତ୍ତିକାରେ ମାରଜନ କରି ଗୁହ୍ୟସ୍ଥାନ ।
ଦ୍ୱାଦଶଥର ମାଟିରେ ମାର୍ଜନ କରିବ
ତହୁଁ କର ପଦ ଧୋଇ ଶଉଚ ହୋଇବ ।
ପାଚିଲା ଆମ୍ରପତ୍ରକୁ ଆଣିବ ଯତନେ
ମାର୍ଜନ କରିବ ଦନ୍ତ ଜଳ ସନ୍ନିଧାନେ ।
କୋମଳ ଭାବେ ମାଜିବ ବସି ଦନ୍ତପନ୍ତି
ରୁଧିର ବାହାର ହେଲେ ଧର୍ମ ବିନଶ୍ୟତି ।
ଦନ୍ତ ଧାବନ କରିଣ ପୋଛି ଦେବ ଜିଭ
ଏମନ୍ତ ପ୍ରକାରେ ନିତ୍ୟକର୍ମକୁ କରିବ ।
ଅଷ୍ଟୋତ୍ତର ଶତବାର ମୁଖେ ଭରି ଜଳ
ତେବେ ସେ ହୋଇବ ଜାଣ ବଦନ ନିର୍ମଳ ।
ଏକ ବସ୍ତ୍ର ପିନ୍ଧିକରି ନ କରିବ ସ୍ନାନ
ଦେବ ପିତୃ ତରପଣ ଯଥା ଯେ ବିଧାନ ।
ନାଭିଏ ଜଳରେ ପଶି କରିବ ଯେ ସ୍ନାନ
ମଉନେ ଥିବ କାହାକୁ ନ କହି ବଚନ ।
ଅନୁବ୍ରତେ ରହିଥିବ ସତ୍ୟ ଆଚାରରେ
ମିଥ୍ୟା ନ କହିବ ପୁଣି ନ ନାଶିବ ପରେ ।
ତଇଳ ନ ଘେନିବ ନ ଯିବ ସ୍ତିରୀପାଶ
ହବିଷ୍ୟ ଭୋଜନ କରି ହେବ ନିରାମିଷ ।
ଦେବତାଙ୍କୁ ଭୋଗ ଆଉ ବିପ୍ରେ ଦେବ ଗ୍ରାସ
ଏହି ନିୟମେ ଚଳିବ ଜାଣ ମାଘ ମାସ ।
ଶୁଣ ବାବୁ ଯୁଧିଷ୍ଠିର କହେ ଶୁକବ୍ରହ୍ମା
ଇନ୍ଦ୍ରପୁତ୍ର ଚିତ୍ରସେନ ଯେବଣ ମହାତ୍ମା ।
ମକର ସ୍ନାନ ଏଠାରେ କରେ ମନ ତୋଷେ
ମୁଖେ ତୈଳ ଲଗାଇଲା ଚଉଠି ଦିବସେ ।
ଏ ଦୋଷେ ମାଧବ ତାକୁ ଦେଲେ ଅଭିଶାପ
ଯାଅ ବିଦ୍ୟାଧର ଏବେ ହୁଅ ବ୍ୟାଘ୍ରରୂପ ।
ମାଧବ ଶାପରେ ସେହି ବ୍ୟାଘ୍ର ମୁଖ ହେଲା
ଗୋ ବିପ୍ର ଚଣ୍ଡାଳ ଆଦି ସବୁଙ୍କୁ ଭକ୍ଷିଲା ।
ଅଧର୍ମରେ ବହୁଜନ କଲା ସେ କବଳ
ଏ ରୂପେ ଦ୍ୱିଯୁଗ ଭୋଗକଲା ଇନ୍ଦ୍ରବାଳ ।
ବୃହସ୍ପତିର ଦୁଲଣୀ କରି ମାଘସ୍ନାନ
ମିଥ୍ୟା କହିବାରୁ ହେଲା ପିଶାଚୁଣୀ ଜନ୍ମ ।
ଉମାବସୁ ପରବସୁ ପରଦାରା ଦୋଷେ
ମତ୍ସ୍ୟ କଚ୍ଛପ ହୋଇଲେ ଏ ମକରମାସେ ।

ଏ ବଚନ ସତ୍ୟ ବୁଝ ଧର୍ମ ନୃପମଣି
ଏ ମକର ମାସେ ବାବୁ ତଇଳ ନ ଘେନି ।
ମୁକତିକି ଆଶାଥିଲେ ଏ ମକର ମାସେ
ହବିଷ୍ୟାନ୍ନ ଖାଇବ ଯେ କରି ନିରାମିଷେ ।
ମନରେ କିଞ୍ଚିତ ପାପେ ପୁଣ୍ୟ ଯାଇ ନାଶ
ଏଥେ ଜାଗ୍ରତ ରହିବ ଶୁଣ ଧର୍ମଶିଷ୍ୟ ।
ସୂର୍ଯ୍ୟପାକ ଲୁଣ ଆଉ ଅକଟା ଅବଟା
ମାଘସ୍ନାନ କଲେ ଜାଣ ନ କରି ଏଛଟା ।
ଭୋଜନ ବେଳରେ ଥିବ ହୋଇଣ ମଉନ
ଅତିଥିରେ ଯାଚିକରି ଦେବ ଅନ୍ନଦାନ ।
ରାତ୍ରେ ବଞ୍ଚିବ ମାଧବ ନାମ ଗୁଣ ଗାଇ
ଉଜାଗର ହେବ ଘୃତ ଦୀପକୁ ଜଳାଇ ।
ଶରୀରରେ ନ ଧରିବ ତାମସ ମୂରତି
ପଞ୍ଚମନରୁ ବର୍ଜିବ କୁଟିଳ ପ୍ରକୃତି ।
ଯୁଧିଷ୍ଠି ବୋଇଲେ ଶୂନ୍ୟ ଏହି ପୁଣ୍ୟତୋୟା
କିପରି ବହି ଆସନ୍ତି ଫେଡ଼ି କହ ତାହା ।
ମାର୍କଣ୍ଡ ବୋଇଲେ ତୁମ୍ଭେ ଶୁଣ ଯୁଧିଷ୍ଠିର
ମେରୁ ମେଖଳାରୁ ଗଙ୍ଗା ହୋଇଲେ ବାହାର
ମେରୁ ମେଖଳାରେ ଦେବ ପଖାଳନ୍ତି ଅଙ୍ଗ
ସେହି ଉଦିତ ଆସିଣ ସାଗର ସଂଯୋଗ ।
ତିନିଶ ପଁଷଠିଦିନ ବହେ ଯେଉଁ ଜଳ
ତହିଁରେ ସ୍ନାନ କରିଲେ ଲଭିବ ସୁଫଳ ।
ଆକାଶ ସମୁଦ୍ର ଜାଣ ତାକୁ ଜନେ ବୋଲି
ପୁଷ୍କରାଭିଷେକ ଜଳ ଏହା ମୁଁ କହିଲି ।
ପୁଷ୍କରିଣୀ ସ୍ନାନ କଲେ ପଞ୍ଚଭାଗ ଧର୍ମ
କୀର୍ତ୍ତିକଲା ଲୋକପାଏ ତିନିଭାଗ ଜାଣ ।
ବେନିଭାଗ ଧର୍ମ ସ୍ନାନ କଲା ଲୋକ ପାଏ
ସାତଭାଗ ଧର୍ମ ଜାଣ ନଦୀସ୍ନାନେ ହୁଏ ।
ବାବୁ ମାର୍କଣ୍ଡେଶ୍ୱର ଯେ ଘେନି ତୀର୍ଥ ଆଦି
ପଞ୍ଚତୀର୍ଥ ସେହିଠାରେ ଅଛଇ ଯେ ଭେଦି ।
ପୂର୍ବମୁଖ ହୋଇ ସ୍ନାନ କର ନରପତି
ନାଭିମଣ୍ଡଳ ପର୍ଯ୍ୟନ୍ତେ ପଶିଲେ ମୁକତି ।
ନାଭିମଣ୍ଡଳୁ ଅଧିକ ଜଳରେ ପଶିଲେ
ମାତୃ ହରଣ ଦୋଷ ସେ ପ୍ରାପ୍ତ ହୋଏ ଭଲେ
ତୀର୍ଥକଲା ଲୋକ କଲେ ନାଭିଯାଏ ସ୍ନାନ
ତାହାର ଖଣ୍ଡନ ହୁଏ ବହୁ ପାପମାନ ।
ବଦୟନ୍ତି ମାରକଣ୍ଡ ପୁରାଣ ସହିତେ
ମାଘସ୍ନାନ ପୁଣ୍ୟ ଯେତେ କହଇ ମୁଁ ତୋତେ ।
ବାବୁ ଯେବଣ ମହାତ୍ମା ପୁଷ୍କର ଅଟଇ
ଶତକୋଟି ତୀର୍ଥରେ ଯେ ନାଭି ଅଟେ ସେହି

ଏଥେ ବିଶ୍ରାମ କରନ୍ତି ଯେ ପୁଷ୍କର ସ୍ୱାମୀ
ସକଳ ତୀର୍ଥକୁ ସେହି ସଙ୍ଗତରେ ଘେନି ।
ନବନିର୍ମିତ ଏ ତୀର୍ଥ ନିରିମଳ ପୟ
ଏଥେ ସ୍ନାନ କଲେ ଫଳ ଅକ୍ଷୟ ଅବ୍ୟୟ ।
ପୁଷ୍କର ଦେବତା ଏଥେ କ୍ଷେତ୍ର ଅଧିପତି
ଏଥେ ସ୍ନାନ କଲେ ସ୍ୱର୍ଗେ କରିବୁ ବସତି ।
ମକରେ ତିରିଶ ଦିନ ଯେହୁ କରେ ସ୍ନାନ
ଖଣ୍ଡଇ ତାହାର ପାପ ହରେ କ୍ଳେଶମାନ ।
ବାବୁ ମକର ମାସରେ ଏତେ ଫଳଶ୍ରୁତି
ମାଘସ୍ନାନ ଫଳେ ବ୍ରହ୍ମା ହେଲେ ସୃଷ୍ଟିପତି ।
ଏହି ମକର ମାସରେ ସ୍ନାନ କଲା ଫଳେ
ତିନିକାଳଜ୍ଞାତା ଜାଣ ବୃହସ୍ପତି ହେଲେ ।
ଏହି ମାଘସ୍ନାନ କାଳେ ହେ ପଣ୍ଡୁ ସନ୍ତତି
ଅମରାଧିନାଥ ହେଲେ ସ୍ୱର୍ଗେ ସୁରପତି ।
ମାଘମାସ ସ୍ନାନ ଫଳେ ସୂର୍ଯ୍ୟଙ୍କର ସୁତ
ନାଶକର ଦେବେ ହେଲେ ସଂଯମନୀ ନାଥ ।
ରୁଦ୍ରଦେବ କଲେ ମାତୃହରଣର ଦୋଷ
ମକର ସ୍ନାନରେ ତାଙ୍କ ପାପ ଗଲା ନାଶ ।
ଏ ମାଘସ୍ନାନ ଫଳରେ ଦେବତା ବରୁଣ
ସାଗରପତି ହୋଇଲେ ହେ ଯୁଧିଷ୍ଠି ଜାଣ ।
ମକର ସ୍ନାନେ କୁବେର ହେଲେ ଧନପତି
ଦିବସର ନାଥ ହେଲେ ସଂଜ୍ଞାଙ୍କର ପତି ।
ବାବୁ ବାସୁକୀ ନାଗ ଯେ ମାଘସ୍ନାନ କରି
ବସୁନ୍ଧରୀକି ସର୍ବଦା ଶିରେ ଅଛି ଧରି ।
ବେଶ୍ୟା ତହୁଁ ଜାତ ହେଲେ ବଶିଷ୍ଠ ମହର୍ଷି
ମାଘସ୍ନାନ ଫଳେ ସେହୁ ହେଲେ କକ୍ଷବାସୀ ।
ଦ୍ୱାଦଶ ବିଶ୍ୱଦେବା ଯେ ମାଘସ୍ନାନ ଫଳେ
ଯୁଗେ ଯୁଗେ ସେ ପରମଗତିକି ପାଇଲେ ।
ବ୍ରହ୍ମାବଂଶେ ଦକ୍ଷ ନାମେ ପ୍ରଜାପତି ଥିଲେ
ଚନ୍ଦ୍ରଙ୍କୁ ସେ ସତାଇଶ କନ୍ୟା ଦାନ କଲେ ।
ଦୁହିତାଙ୍କ କଷ୍ଟ ଦେଖି ଦକ୍ଷ କରି କୋପ
ଚନ୍ଦ୍ରଙ୍କୁ ଚାହିଁ ବୋଇଲେ ଘେନ ଅଭିଶାପ ।
ରେ ଚନ୍ଦ୍ର ତୁହି କାମୁକ ପୁରୁଷ ବୋଲିଣ
ସତାଇଶ କନ୍ୟା ଯାଚି କରିଲି ପ୍ରଦାନ ।
ଛବିଶ କନ୍ୟା ମୋହର ହେଲେ କଷ୍ଟଭୋଗୀ
କାମଶରେ ପୀଡ଼ାପାଇ ସୁଖ ପରିତ୍ୟାଗୀ ।
ଛବିଶ କନ୍ୟାଙ୍କୁ ତୁହି ବୃଥା ଦୁଃଖ ଦେଉ
ଏହାଙ୍କ କଷ୍ଟରେ ତୋର ତନୁ କ୍ଷୀଣ ହେଉ ।
ଦକ୍ଷ ପ୍ରଜାପତି ଏହା ବୋଇଲାକ ରାଗେ
ଗଳିତକୁଷ୍ଠ ହୋଇଲା ଚନ୍ଦ୍ରଙ୍କର ଅଙ୍ଗେ ।

ମକର ମାସ ପ୍ରଭାସ ଜଳରେ ପଡ଼ିଲା
ସେଦିନୁ ଚନ୍ଦ୍ରଦେବତା ଅଙ୍ଗ କଅଁଳିଲା ।
ଦକ୍ଷ ଛବିଶ କନ୍ୟାଙ୍କୁ ଥିଲା ଯେ ଉପେକ୍ଷି
ମାଘସ୍ନାନ କରି ବାମା ହୋଇଲେ କାମାକ୍ଷୀ ।
ପୁଷ୍କର ଦେବ ପ୍ରସନ୍ନେ ଅଭୟ ହୋଇଲେ
ଇନ୍ଦ୍ର ଦେବତା ଆକାଶେ ଯାଇଣ ଉଇଁଲେ ।
ଆଦି ବ୍ରହ୍ମାଙ୍କର ହେଲେ ଦଶୋଟି ନନ୍ଦନ
ଅଭିମନ୍ୟୁ ଯେ ସନକ ମୁନି ସନାତନ ।
ବିଶ୍ୱାମିତ୍ର ବାମଦେବ ଋଷି ପରାଶର
ଜୈମିନି ଶୌନକ ମୁନି କପିଳ ପ୍ରବର ।
ଅକ୍ଷୟ ଅଟଇ ବାବୁ ଏହାଙ୍କ ଶରୀର
ଯୁଗେ ଯୁଗେ ରହିଛନ୍ତି ଅଜର ଅମର ।
ଜନକ ଋଷ୍ୟଶୃଙ୍ଗ ଯେ କଣ୍ଡୁ ଲୋମହର୍ଷ
ବୈଶମ୍ପାୟନ ମାର୍କଣ୍ଡ ଋଷି ବେଦବ୍ୟାସ ।
ବାବୁ ଆମ୍ଭମାନଙ୍କର ଏଥି ନିତ୍ୟ ସ୍ନାନ
ତା ଫଳେ ଆମ୍ଭର ହୋଏ ଯୁଗେ ଏକଦିନ ।
ସତ୍ୟଯୁଗେ ବୃଦ୍ଧଶ୍ରବା ନହୁଷ ଯଯାତି
ପୁରୁରବା ଦୁଷ୍ମନ୍ତ ଯେ ଏହି ଚକ୍ରବର୍ତ୍ତୀ ।
ବାବୁ ଏମାନେ ମକର ମାସ ସ୍ନାନ ଫଳେ
ସତ୍ୟଯୁଗ ଶେଷକଲେ ଏହି ପୁଣ୍ୟବଳେ ।
ବାବୁ ଯୁଧିଷ୍ଠିର ଶୁଣ ଦକ୍ଷ ପ୍ରଜାପତି
ବୈବସ୍ୱତ ମନୁ ଆଦି ବହୁ ନରପତି ।
ସୋମେକ ପୃଥକ ଅସମଞ୍ଜ ଯେ ସଗର
ବଳି ପହଲାଦ ଭଗୀରଥ ମହୀଧର ।
ଯୁବନାଶ୍ୱ ରାଜା ଜାତ ସେ ଇକ୍ଷ୍ୱାକୁ ବଂଶେ
ଯଜ୍ଞ କଲା ସେହି ରାଜା ଅନେକ ହରଷେ ।
ଯୁବନାଶ୍ୱ ରାଜାର ଯେ ନୋହିଲା ସନ୍ତତି
ସେ କାରଣୁ ବହୁ ଯଜ୍ଞ କଲା ନରପତି ।
ପୂର୍ବଜନ୍ମ ଦୋଷ ପାଇଁ ବହୁ ଦାନ ଦେଲେ
ଦେବତା ବ୍ରାହ୍ମଣେ ବରି ହରଷେ ପୂଜିଲେ ।
ଦଶ ଅୟୁତ ବରଷ ବହୁ ଧର୍ମ କଲା
ତଥାପି ଯୁବନାଶ୍ୱର ସନ୍ତାନ ନୋହିଲା ।
ଏଣୁ ଦୈବଦ୍ୱିଜ ବୃତ୍ତି ହରିଲାକ ରାଗେ
ଅନେକ ଦୂଷିତ କଲା ନାନାତୀର୍ଥ ମାର୍ଗେ ।
ଧର୍ମ ପୁରାଣକୁ ନିନ୍ଦା କରେ ଯୁବନାଶ୍ୱ
ଏକମାତ୍ର ସ୍ନାନକରେ ସେ ମକର ମାସ ।
ରାଜାର ଅନୀତି ଦେଖି ବଶିଷ୍ଠ ମହର୍ଷି
ଧାତାକୁ ଜଣାଇ ମୁନି ଯଜ୍ଞ କଲେ ଆସି ।
ସନ୍ତାନ ନିମିତ୍ତ ଜଳ ରଖାଇ ଯଜ୍ଞରୁ
ବୋଇଲେ ଯୁବନାଶ୍ୱର ରାଣୀ ପାନକରୁ ।

ସାହାଡ଼ା ବୃକ୍ଷରେ ଜଳଘଟକୁ ଥୋଇଲେ
ବ୍ରହ୍ମାଙ୍କ ପୁରୁ ଋଷି ପୁଣି ଚଳିଗଲେ ।
ଦିନେ ଯୁବନାଶ୍ୱ ରାଜା ମୃଗୟାକୁ ଗଲା
ତୃଷାର୍ଥେ ଦେଖନ୍ତେ ଘଟ ସେ ଜଳ ପିଇଲା ।
ଯୁବନାଶ୍ୱ ଗର୍ଭୁ ଏକ ପୁତ୍ର ଉପୁଜିଲା
ମାତଃ ନ ଥିବାରୁ ମାନଧାତା ନାମ ହେଲା ।
ମାନଧାତା ରାଜ ସୂର୍ଯ୍ୟବଂଶେ ଉତପତ୍ତି
ସତ୍ୟ ଚାରିଲକ୍ଷ ବର୍ଷ ପାଳିଲାକ କ୍ଷିତି ।
ଶୁଣ ବାବୁ ଯୁଧିଷ୍ଠିର ମାଘସ୍ନାନ ଫଳ
ଧର୍ମ ଅର୍ଥ କାମ ମୋକ୍ଷ ପ୍ରାପ୍ତ ଏ ସକଳ ।
ମାନ୍ଧତା ହେଲା ସପତ ଦ୍ୱୀପରେ ନୃପତି
ମାଘସ୍ନାନ ଫଳେ ତାର ଏସନକ ଗତି ।
ମାଘସ୍ନାନ ଫଳ କଥା ଅଛଇ ଏସନ
ଏ ମାସେ ମଲେ ନ ନିଏ ଜାଣ ଜନ୍ତୁରାଣ ।
ପଶ୍ଚିମରେ କୃତାନ୍ତକ ନାମରେ ନଗରୀ
କର୍ଣ୍ଣକେଶରୀ ବୋଲିଣ ତହିଁ ଦଣ୍ଡଧାରୀ ।
ସେହି ନଗ୍ରେ ଅରଗଳା ନାମେ ଏକ ହାଡ଼ି
ମୃତ ମନୁଷ୍ୟ ଆଦିଙ୍କୁ ନିଅଇ ସେ କାଢ଼ି ।
ପୂର୍ବ ପାତକରୁ ସେହି ଭୋଗେ ନର୍କଘୋର
କିନ୍ତୁ ସେ ଚାଣ୍ଡାଳ କରେ ସ୍ନାହାନ ମକର ।
ମାଘମାସ କୃଷ୍ଣପକ୍ଷ ଅମାବାସ୍ୟା ଦିନ,
ଦାଣ୍ଡେ ବସିଣ ବ୍ୟଞ୍ଜନ କରଇ ରନ୍ଧନ ।
ଶ୍ୱାନେକ ମାରି ତାହାକୁ ଆପଣେ କେଳାଇ
ଗୋଚର୍ମ ଉପରେ ସେହି ମାଂସ ଥାଏ ଥୋଇ
ମନୁଷ୍ୟ ମୁଣ୍ଡରେ ସେହି ଅଛି ଚୁଲୀକରି
ଗଧମୁଣ୍ଡ ଖପୁରୀକୁ ଅଛି ହାଣ୍ଡିକରି ।
ମଦିରା ତହିଁରେ ଭରି ମାଂସକୁ ସିଝାଇ
ଉଚ୍ଛିଷ୍ଟ ପତ୍ର ଆଣିଣ ବସିଣ ଜାଳଇ ।
ଗୋଚର୍ମ ପାଣ୍ଡୋଇ ଆଣି ଘୋଡ଼ାଇଛି ଖଣ୍ଡେ
କଣ୍ଡୁଋଷି ତହିଁ ରହି ଦେଖିଲେକ ଦଣ୍ଡେ ।
ଋଷି ବୋଇଲେକ ସେହି ଚାଣ୍ଡାଳକୁ ଚାହିଁ
କେଡ଼େ ପରପଞ୍ଚ କରୁ ଆରେ ବସି ତୁହି ।
ଶ୍ୱାନମାଂସେ ରାନ୍ଧୁଅଛୁ ମଦରସ ଭରି
ନରମୁଣ୍ଡ ଚୁଲୀ ଗଧମୁଣ୍ଡ ହାଣ୍ଡିକରି ।
ତହିଁ ଘୋଡ଼ାଇଛୁ ଗୋରୁ ଚମର ପାଣ୍ଡୋଇ
ଏଡ଼େ ପ୍ରପଞ୍ଚ ତ ମୁହିଁ ଦେଖିନାହିଁ କାହିଁ ।
ସେହି ଚଣ୍ଡାଳ ବୋଇଲା ମୁଁ ହାଡ଼ି ଅଟଇ
ଏ ମାଘ ସ୍ନାନ ସାରିଣ ତରିଯିବି ମୁହିଁ ।
ମୁନି ବୋଇଲେ ଶୁଣରେ ଚଣ୍ଡାଳ ଦୁର୍ମତି
ମାଘସ୍ନାନ ହବିଷ୍ୟ କି ଅଟେ ଏହିମତି ।

ଚଣ୍ଡାଳ ବୋଇଲା ଶୁଣ ହେ ମୁନି ଗୋସାଇଁ
ହାଡ଼ି ମାତ୍ରକ ହବିଷ୍ୟ ବିଧି କି ଜାଣଇ ।
ଯାହା ଦେଖୁଛ ହବିଷ୍ୟ ଜ୍ଞାନ କରେ ତାକୁ
ଆବର ଅଧିକ କିସ କହିବି ତୁମ୍ଭଙ୍କୁ ।
ଶୁଣ ବାବୁ ଯୁଧିଷ୍ଠିର କିଛିଦିନ ଗଲା
ସମୟେକେ ସେହି ହାଡ଼ି ମାଘମାସେ ମଲା ।
ନାଶକର ଚିତ୍ରଗୁପ୍ତେ ରାଇ ଆଜ୍ଞାଦେଲା
ଏ ଚାଣ୍ଡାଳ ମଞ୍ଚପୁରେ କି କି ପୁଣ୍ୟ କଲା ।
ସତ୍ୟ କରିଣ କହିବ ନ କହିବ ମିଛ
କେତେ ପାପ କେତେ ପୁଣ୍ୟ ଏହାର ଲେଖିଛ
ଯମ ଆଗରେ କହିଲେ ଯାଇ ଚିତ୍ରଗୁପ୍ତେ
ଅଲୋକିତ ଏହା ପାପ କହିବୁ ଯେ କେତେ ।
ଅଖାଦ୍ୟମାନଙ୍କୁ ଖାଏ ବିଷ୍ଠାମାନ କାଢ଼ି
ରଉରବ ନରକରେ ପଡୁ ଏହି ହାଡ଼ି ।
ଗୋଟିଏକ କଥା ଏହୁ କରେ ଜ୍ଞାନ ବହି
ଖାତେକ ଖୋଳି ମକର ସ୍ନାନ କରେ ତହିଁ ।
ଶୁଣିଣ ବିଚାର କଲେ ଜନ୍ତୁ ଅଧିପତି
ମାଘସ୍ନାନ ଯୋଗୁଁ ଏହି ପାଇବ ସଦ୍‌ଗତି ।
ଶମନ ବୋଇଲେ ନର୍କ ଭୋଗରୁ ତରି ଯା
ସେହି କୃତାନ୍ତକ ରାଜ୍ୟେ ହୁଅ ଯାଇ ରାଜା ।
କହନ୍ତି ସେ ମାରକଣ୍ଡ ଶୁଣ ଧର୍ମବସ୍ତି
ମାଘ ସ୍ନାହାନର ଫଳ ଏହିପରି ଅଛି ।
ବଇତରଣୀର କୂଳେ ଗ୍ରାମ ବେଦପୁର
ବ୍ରହ୍ମା ନାଭି ବୋଲି ତହିଁ ଛନ୍ତି ଭଦ୍ରନୀର ।
କୁଶବତୀ ପାଟଣା ତା ଉତ୍ତର ଭାଗରେ
ତାର ପୂର୍ବେ ମହୋଦଧି ଅଛି ନିକଟରେ ।
ସେ ପାଟଣା ନିକଟରେ ଅଛି ଏକ ହାଟ
ତାର ଚଉପାଶ ଅଛି ଚାରିଗୋଟି ବଟ ।
ସେ ନଗ୍ରରେ ଆଠଗୋଟି କନ୍ୟା ଅବିବାହୀ
ମାଘସ୍ନାନ କରନ୍ତି ସେ ବୈତରଣୀ ଯାଇଁ ।
ସାତବରଷର କନ୍ୟା ଉଲଗନ ଶାୟୀ
କହି ନ ଜାଣନ୍ତି କଥା ଭଲକରି କେହି ।
ମକରମାସ ଶୁକଳ ପକ୍ଷ ଚତୁର୍ଦ୍ଦଶୀ
ମାଘସ୍ନାନ ସାରି ସର୍ବେ ନଦୀକୂଳେ ବସି ।
ବାଲିଘର ଗୋଟିଏକ ନଦୀକୂଳେ କରି
ତହିଁ ଖେଳୁଥିଲେ ବସି ଆଠୋଟି କୁମାରୀ ।
କୁଲା ଟୋକାଇ କୁଣ୍ଢାଇ ଆଣି ଖେଳି ଖେଳି
କୁଣ୍ଢାଇକି ବିଭାକରି ଦ୍ୟନ୍ତି ହୁଳହୁଳି ।
ଶୁଣ ବାବୁ ଯୁଧିଷ୍ଠିର ଏମନ୍ତ ସମୟେ
ଯାଉଥିଲେ ବୃଷଭରେ ଚଢ଼ି ମୃତ୍ୟୁଞ୍ଜୟେ ।

ତାଙ୍କ କୋଳେ ବିଜେ କରିଥିଲେ ଦେବୀ ଉମା
ଶୂନ୍ୟେ ରହିଣ ଦେଖିଲେ ଖେଳର ମହିମା ।
ରୁଦ୍ରଦେବ ପୁଚ୍ଛାକଲେ ଶୁଣ ଆଗୋ ଗୌରୀ
କେବଣ କୃତ୍ୟ କରନ୍ତି ବାଳୁତ କୁମାରୀ ।
ଗିରିଜା ବୋଇଲେ ସ୍ୱାମୀ ବାଳିକାଙ୍କ ଖେଳ
ବାଲିଘର କରି ହୋନ୍ତି ଆନନ୍ଦରେ ଭୋଳ ।
ପୁଣି ଈଶ୍ୱର ବୋଇଲେ ଶୁଣ ଆଗୋ ଶିବା
ଯାଙ୍କପାଶେ ଆମ୍ଭେଗଲେ ଭିକ୍ଷା କି ପାଇବା ।
ଉମା ବୋଇଲେ ଶିବଙ୍କ ବଚନକୁ ଶୁଣି
ବାଳିକା କାହୁଁ ପାଇବେ ଭିକ୍ଷା ଦେବେ ଆଣି ।
ଧୂଳିରେ ଭାତ କରନ୍ତି ଧୂଳିରେ ତିଅଣ
ଭିକାରୀ ଗଲେ ସେଠାକୁ ପାଇବେ କେବଣ ।
ଶିବ ବୋଇଲେ ବୁଝିବା ମନ ତାହାଙ୍କର
ଯାଉଛି ବୋଲି କରିଣ ହୁଅନ୍ତି ବାହାର ।
ପାର୍ବତୀ ବୋଲନ୍ତି ପିଲା ଅଟନ୍ତି ତ ସେହି
ତୁମ୍ଭ ରୂପ ଦେଖି ଭୟେ ଯିବେଟି ପଳାଇ ।
ବୃଷଭ ଉପରୁ ତହିଁ ଓହ୍ଲାଇଲେ କାଶୀ
ବାଳକ ପରାୟେ ନିଜ ରୂପ ପରକାଶି ।
ଜଟା ଦାଢ଼ି ଲୁଚାଇଣ ହେଲେ ଦିବ୍ୟବେଶ
ଅଙ୍ଗ ପ୍ରତ୍ୟଙ୍ଗେ ବୋଳିଲେ ଶ୍ମଶାନ ପାଉଁଶ ।
କର୍ଣ୍ଣରେ ତମ୍ବା କୁଣ୍ଡଳ ରୁଦ୍ରାକ୍ଷର ମାଳ
ହସ୍ତରେ ଡମ୍ବରୁ ଆର ହସ୍ତେ ଲାଉଥାଳ ।
ବ୍ୟାଘ୍ରଚର୍ମ ପରିଧାନ ବେଶ ମନୋହର
ଢଳି ଢଳି ଚାଲିବାରୁ ଦିଶନ୍ତି ସୁନ୍ଦର ।
ରେଣୁଘର କରି ଖେଳୁଅଛନ୍ତି କୁମାରୀ
ଅଦଭୂତେ ପରବେଶ କପଟ ଭିକାରୀ ।
ହସିଲେକ କୁମାରୀଏ ଡମ୍ବରୁ ଶବଦେ
ମିଛ ଘରକୁ ଆସନ୍ତି ଭିକାରୀ ଯେ ହାଦେ ।
ଏମନ୍ତ ଭିକାରୀ ହାଦେ ଦେଖିଲା ତ ନାହିଁ
କିସ ଭିକ୍ଷା ଦେବୁ ଧୂଳି ତହୁଁ ଆନ ନାହିଁ ।
କୁଲାଇ ଗୋଟିକେ ଧୂଳି ଆଣି ପୂରାଇଲେ
ଅତି ଯତନ କରିଣ ତାକୁ ପାଛୋଡ଼ିଲେ ।
ତାହାକୁ ନେଇଣ ଦେଲେ ସଦାନନ୍ଦ ଥାଳେ
ଦେଖିକରି ବିଶ୍ୱନାଥ ସାନନ୍ଦ ହୋଇଲେ ।
ଧୂଳି ଭିକ୍ଷା ପାଇ ହର ହୋଇଲେକ ଶାନ୍ତି
କୁମାରୀଙ୍କ ପାଶେ ବସି ନାମ ପଚାରନ୍ତି ।
ରମ୍ଭା ଉର୍ବଶୀ ମେନକା ଆଉ ଚିତ୍ରରେଖା
କାମସେଣା ମଦନିକା ମୋହିନୀ ଅମ୍ବିକା ।
ଆଠଗୋଟି କନ୍ୟା ନିଜ ନାମ ଯେ କହିଲେ
ହରଷରେ ବିଶ୍ୱନାଥ ତାଙ୍କୁ ବର ଦେଲେ ।

ସତ୍ୟେ ତୁମ୍ଭେ ଦେଲ ଭିକ୍ଷା ବାଳିକା ହୋଇଣ
ହରଷରେ ଏହି ବର ଦେଉଅଛୁ ଘେନ ।
କଳ୍ପାୟୁଷ ହୋଇ ତୁମ୍ଭେ ଥାଅ ଯୁଗେ ଯୁଗେ
ଅଷ୍ଟ ଅପସରୀ ହୁଅ ଯାଇକରି ସ୍ୱର୍ଗେ ।
ତ୍ରୈଲୋକ୍ୟ ମୋହିନୀରୂପ ହେଉ ଯେ ତୁମ୍ଭରି
ଚାରିଯୁଗେ ରହିଥିବ ଯୁବା ରୂପ ଧରି ।
ଯଦ୍ୟପି ହତ ହୋଇବ ଦେବ ସୁରପତି
ଯୁବା ବୟସ ତୁମ୍ଭର ଥିବ ସେହିମତି ।
ବଦୟନ୍ତି ମାରକଣ୍ଡ ଶୁଣ ଯୁଧିଷ୍ଠିର
ମାଘ ସ୍ନାନର ଫଳ ଯେ ଏମନ୍ତ ପ୍ରକାର ।
ବାବୁ ବିଶ୍ୱାବସୁ ପତ୍ନୀ ନାମ ହୀରାବତୀ
ଜାତ ହୋଇଣ ମରନ୍ତି ତା'ର ପୁତ୍ର ପୁତ୍ରୀ ।
ଅଗସ୍ତିଙ୍କୁ ପୁଚ୍ଛାକଲେ କେଉଁ ପାପେ ମୋର
ପୁତ୍ର ଦୁହିତା ମରନ୍ତି କହ ମୁନିବର ।
ମୁନି ବୋଇଲେ ଯେ ଜୀବ ମାରେ ଅକାରଣେ
ସେହି ଦୋଷେ ନାଶଯାନ୍ତି ତା ସନ୍ତାନଗଣେ ।
ପୁଣି ବୋଇଲେକ ଯେହୁ କରଇ ନିୟମ
ତାଙ୍କ ନିୟମେ ନ ରହେ ଜାଣ କିଛି ଧର୍ମ ।
ଆବର ବୋଇଲେ ଯେହୁ ହରଇ ଗୋପଥ
ତାହାର ସନ୍ତାନ ନାଶ ଯାଆନ୍ତି ଯଥାର୍ଥ ।
ପୁନଶ୍ଚ ବୋଇଲେ ଯେହୁ ଶାସ୍ତ୍ରକୁ ବିଧିରେ
ପଢ଼ାଇବ ଶୁଣିବ ତା ମନ ଆନନ୍ଦରେ ।
ରାମାୟଣ ଗ୍ରନ୍ଥ ଆଉ ଶ୍ରୀମହାଭାରତ
ଶ୍ରବଣ କଲେ ପାପରୁ ହୋଇବ ମୁକତ ।
ଶାସ୍ତ୍ରକୁ ଶ୍ରବଣ କରି ଧର୍ମ ଅରଜିବ
ପାତକ ଧ୍ୱଂସ କରିଣ ସନ୍ତତି ଲଭିବ ।
ହୀରାବତୀ ବୋଲେ ବହୁ ପାପ କଲି ପୂର୍ବେ
ଏହା ପ୍ରତିକାର ମୁନି କହ ମୋତେ ଏବେ ।
ଅଗସ୍ତି ବୋଇଲେ ତୁହି ମାଘସ୍ନାନକର
ଗତ ଜନ୍ମର ସକଳ ପାପ ହେବ ଦୂର ।
ନ ଯିବୁ ତିରିଶଦିନ ତୋର ସ୍ୱାମୀ ପାଶ
ମିଥ୍ୟା ନ କହିବୁ ଆଉ ନ ଭକ୍ଷି ଆମିଷ ।
ଅକଟା ପରିବା ହେବ ହବିଷ୍ୟ ଭୋଜନ
ପରେ ହିଂସା ନ କରି ନ କର ଅଭିମାନ ।
ଶିବଆଳେ ଜାଳ ଗୁଆଘୃତର ଜାଗର
ଏହାକଲେ ଜାଣ ଧର୍ମ ହୋଇବ ଅପାର ।
ଗତଜନ୍ମ ପାପମାନ ନିଶ୍ଚେ ଯିବ କ୍ଷୟ
ମଡ଼ଛି ଦୋଷ ଖଣ୍ଡିବ ଜୀଇବ ତନୟ ।
ଅଗସ୍ତିଙ୍କ ବାକ୍ୟ ଶୁଣି ବିଶ୍ୱାବସୁ ନାରୀ
କୈଶିକ ଗଙ୍ଗା ଜଳରେ ମାଘସ୍ନାନ କରି ।

ବିଧିମତ ସ୍ନାନଫଳେ ସର୍ବ ପାପଧ୍ୱଂସି
ତାହାର ଏକ ଦୁହିତା ହେଲା ମଦାଳସୀ ।
ମଦନା ସ୍ନାନ କରନ୍ତେ ଯାଇ ମାଘମାସେ
ଦେହ ଶୁଦ୍ଧ ହେଲା ଧର୍ମ ଉତ୍ପତ୍ତି ବିଶେଷେ ।
ପୁଣି ସେ ମଦନିକାର ହେଲା ପୁତ୍ରୋତ୍ପତ୍ତି
ବହୁପୁତ୍ର ଉପୁଜନ୍ତେ ପାଇଲା ସଦ୍‌ଗତି ।
ବାବୁ ମକର ମାସରେ ଧର୍ମପାଳ ପକ୍ଷୀ
ପ୍ରାଚୀ ତୀର୍ଥରେ ମିଳିଲା ଲୋଭେ ମୀନ ଭକ୍ଷି
ମାଛ ନିମନ୍ତେ ସେ ପକ୍ଷୀ ଜଳମଧ୍ୟେ କ୍ଷେପି
ଭାସିଯାଇ ତ୍ରିବେଣୀରେ ପଡ଼ି ଶୀତେ କମ୍ପି ।
ମୀନ ଅର୍ଥେ ପଡ଼ି ପକ୍ଷୀ ଉଠି ନ ପାରିଲା
ମହାଜଳେ ବୁଡ଼ି ତାର ଶରୀର ଛାଡ଼ିଲା ।
ଧର୍ମପାଳ ପକ୍ଷୀ ହେଲା ଚାରିଖଣ୍ଡ ତହିଁ
ଚାରିମୂର୍ତ୍ତି ହୋଇ ତେଜ ବିକାଶିଲା ସେହି ।
ସାରଥି ମଇତ୍ର ଦ୍ରୋଣ ସ୍ତମ୍ଭ ପକ୍ଷୀ ଚାରି
ମକର ମାସ ଯେ ଗରୁ ଚାରିରୂପ ଧରି ।
ଶୁଣ ବାବୁ ଯୁଧିଷ୍ଠିର କହନ୍ତି ମାର୍କଣ୍ଡ
ମାଘମାସେ ପୁଣ୍ୟକରି ପାପମାନ ଖଣ୍ଡ ।
ମାଘମାସେ ଉଦେ ହୁଏ ଯେ ବ୍ରହ୍ମ ଆଦିତ୍ୟ
ବିଷ୍ଣୁ ବାତ ନାମରେ ଯେ ବହଇ ମରୁତ ।
କହନ୍ତେ ନ ସରେ ମାଘମାସର ମହିମା
ତୁ ସଂକଳ୍ପ କରି ସ୍ନାନ କର ମହାତମା ।
ପୁଷ୍କର ପ୍ରସନ୍ନେ ପାଅ ତୁ ପରମ ଗତି
ଅସଂଖ୍ୟ ମହିମା ଯାର କହିଲେ ଅଗସ୍ତି ।
ଏମନ୍ତ ବଚନ ଯହୁଁ କହିଲେ ତାହାଙ୍କୁ
ଯୁଧିଷ୍ଠିର ସ୍ତବ କଲେ ପୁଷ୍କର ଦେବଙ୍କୁ ।
ଜୟ ତୁ ପୁଷ୍କର ଦେବ ଧବଳ ତୋ ଜ୍ୟୋତି
ନୀଳାମ୍ବର ପରିଧାନ ଅପୂର୍ବ ମୂରତି ।
ଜୟ ତୁ ପୁଷ୍କର ଦେବ ବରୁଣ କୁମର
ଜୟ ତୁ ପୁଷ୍କରଦେବ ସିଦ୍ଧକାୟ ତୋର ।
ଜୟ ତୁ ପୁଷ୍କରଦେବ ଆକାଶ ନିବାସୀ
ଜୟ ପୁଷ୍କର ତୋ ନୀର ସର୍ବ ପାପ ନାଶି ।
ବିଷ୍ଣୁଙ୍କ ଶାଳକ ତୁହି ତ୍ରୈଲୋକ୍ୟ ବିଖ୍ୟାତ
ଦେବ ଅଭିଷେକେ ତେଣୁ ସଦା ତୁ ନିଯୁକ୍ତ ।
ସ୍ଥାନେ ସ୍ଥାନେ ରହି ତୁହି ତୀର୍ଥ ବୋଲାଉଛୁ
ପାପୀମାନଙ୍କୁ ପାପରୁ ମୁକତି କରୁଛୁ ।
ଶତକୋଟି ତୀର୍ଥ ମଧ୍ୟେ ତୁ ପ୍ରଧାନ ତୀର୍ଥ
କର ଦୟା ମୁଁ ଯୁଧିଷ୍ଠି ତୋହର ଆଶ୍ରିତ ।
କରିବି ମୁଁ କେଉଁଗୁଣ ବର୍ଣ୍ଣନା ତୋହର
ତୋ ପାଦେ ଶତ ସହସ୍ର ନମସ୍କାର ମୋର ।
ଏହା କହି ଯୁଧିଷ୍ଠିର ତାଙ୍କୁ ପ୍ରଣମିଲେ
ମାରକଣ୍ଡ ଋଷି ସଙ୍ଗେ ତହୁଁ ବାହାରିଲେ ।
ଋଷିମାନଙ୍କୁ ସଙ୍ଗରେ ଘେନି ଧର୍ମଶିଷ୍ୟ
ନୀଳସୁନ୍ଦର ପର୍ବତ ପରେ କଲେ ବାସ ।
ମକର ଶୁକ୍ଳପକ୍ଷ ଦଶମୀର ଅନ୍ତେ
ମାରକଣ୍ଡ କହୁଛନ୍ତି ଯୁଧିଷ୍ଠି ଅଗ୍ରତେ ।
ତିନିଶତ ଯୋଜନ ସେ ଅଟେ ଏହି ଗିରି
ଏଥିର ପଶ୍ଚିମେ ଥିଲା ନିଷାଦ ନଗରୀ ।
ମାତା ବଚନେ ଗରୁଡ଼ ତାହା ନାଶ କଲା
ତେଡ଼େ ବଡ଼ ରାଜ୍ୟଗୋଟି ସମୁଦ୍ରେ ଫିଙ୍ଗିଲା ।
ଯୁଧିଷ୍ଠି ବୋଇଲେ କହ ମାରକଣ୍ଡ ଯତି
ଗରୁଡ଼ଙ୍କ କୋପ କିପାଁ ନିଷାଦର ପ୍ରତି ।
ଶୁଣିବା ପାଇଁ ଉତ୍ସୁକ ହେଉଛି ମୋ ମନ
ଶାରଳା ଦାସକୁ ମାତ ହୁଅ ପରସନ୍ନ ।

## ଗଜ କଚ୍ଛପର ଯୁଦ୍ଧ

ମାରକଣ୍ଡ ବୋଇଲେକ ଶୁଣିମା ଯୁଧିଷ୍ଠି
ଯହିଁପାଇଁ ସେ ପୁରରେ ଉପୁଜେ ଅରିଷ୍ଟି ।
କଦ୍ରୁ ବିନତା ଏ ଦୁହେଁ ଏକ ହୁଡ଼ କଲେ
ସେହି ହୁଡ଼ରେ ବିନତା ସେକ୍ଷଣି ହାରିଲେ ।
କଦ୍ରୁରାଗେ ବିନତାକୁ ଏହିପରି କଲା
ନିଜରାଜ୍ୟରୁ ତାହାକୁ ଦୂର କରିଦେଲା ।
ଭଲ ବସ୍ତ୍ର ଖଣ୍ଡି ତାର ନେଲା ପାଲଟାଇ
ଚିରକୁଟି ପିନ୍ଧାଇଣ ବହୁ ଶାସ୍ତି ଦେଇ ।
ନିଷାଦ ପୁରେ ତାହାକୁ ଛାଡ଼ିଲା ନେଇଣ
ବିନତା ରୋଦନ କଲେ ଚୌଦିଗ ଚାହିଁଣ ।
ପୁଣି ସେ ଆସି କଦ୍ରୁରେ ଶରଣ ପଶିଲା
ଦାସୀ ହୋଇଣ ତାହାର ପାଶରେ ରହିଲା ।
କେତେକ ଦିନେ ଗରୁଡ଼ ହୋଇଲା ଜନମ
ମାତାଙ୍କୁ ପୁଚ୍ଛି ଜାଣିଲା ଦାସୀତ୍ୱ କାରଣ ।
ଦାସୀତ୍ୱରୁ ମୁକ୍ତିକରି ସେ ନିଜ ମାତାକୁ
କ୍ରୋଧ କରିଣ ଖାଇଲା ପନ୍ନଗମାନଙ୍କୁ ।
ଏ ସମୟେ ସୁପ୍ରତୀକ ବିଭାବସୁ ବେନି
ଏହାଙ୍କୁ ଶାପ ବିହିଲେ ଉତଙ୍ଗ ଯେ ମୁନି ।
ମାର୍କଣ୍ଡଙ୍କୁ ପଚାରିଲେ ଧର୍ମଙ୍କର ଶିଷି
କେଉଁଦୋଷେ ଏଡ଼େକୋପ କଲେ ତାଙ୍କୁଋଷି
ମାରକଣ୍ଡ ବୋଇଲେକ ଶୁଣ ଧର୍ମରାୟେ
ବହୁତ ଗହନ ଏହୁ ଅପୂର୍ବ କଥାଏ ।
କଣପ ସତ୍ୟଯୁଗର କଥା ଏ ଅଟଇ
ତପ କରିଲେ ଉତଙ୍ଗ ମୁନିଙ୍କର ସାଇଁ ।

ଋଷଭ ଶୁକ୍ଳ ଦଶମୀ ତିଥି ଚନ୍ଦ୍ରବାର
ହସ୍ତା ନକ୍ଷତ୍ର ଅଟଇ ଭୋଗ ସେ ଦିନର ।
ଉତ୍ତଙ୍ଗ ଋଷି ସେ ଦିନେ ସ୍ୱର୍ଗକୁହିଁ ଗଲେ
ତାହାଙ୍କୁ ଇନ୍ଦ୍ର ସଭାରେ ବସାଇ ନ ଦେଲେ ।
ଯୁଧିଷ୍ଠି ବୋଲେ ଉତ୍ତଙ୍ଗ ଅଟେ ମହାଯୋଗୀ
ତାଙ୍କଠାରେ କିପାଁ ଇନ୍ଦ୍ର ଏଡ଼େ ବଡ଼ରାଗୀ ।
ଉତ୍ତଙ୍ଗ ଚରିତ ତୁମ୍ଭେ ଶୁଣ ଯୁଧିଷ୍ଠିର
ଗୌତମ ପତ୍ନୀ ଅହଲ୍ୟା ସୁନ୍ଦରୀଙ୍କ ସାର ।
ଲୋଭରେ ଇନ୍ଦ୍ର ହରିଲେ ଗୌତମଙ୍କ ନାରୀ
ପିତା ଆଗେ ତା କହିଲା ଅଞ୍ଜନାକୁମାରୀ ।
ସେହି ଅଞ୍ଜନାକୁ ବିଭା ହୋଇଲେ ଉତ୍ତଙ୍ଗ
ତେଣୁକରି ଇନ୍ଦ୍ରଙ୍କର ଉତ୍ତଙ୍ଗକୁ ରାଗ ।
ଗଉତମ ଶାପେ ଇନ୍ଦ୍ର ହେଲେ ସସ୍ରଯୋନି
ସେ ଦିନୁ ଉତ୍ତଙ୍ଗ ପ୍ରତି ଅଛି ରାଗ ଘେନି ।
ଗତକଥା ଧରିଅଛି ଇନ୍ଦ୍ର ହୃଦୟରେ
ବସିବା ପାଇଁ ନ ଦେଲେ ସେହେତୁ ସଭାରେ
ଅପମାନ ପାଇ ଋଷି ଅଇଲେକ ରାଗେ
ଇନ୍ଦ୍ରପଦ ଘେନିବାକୁ ବସିଲେ ସେ ଯୋଗେ ।
ନବଯୁଗ ବଞ୍ଚିଲେ ସେ ନିଷ୍ଠାରେ ରହିଣ
ନାରଦ ବୋଇଲେ ଯାଇ ଶୁଣ ସୁରଗଣ ।
ତୋର ଆଗେ ସତ୍ୟ ମୁହିଁ କହେ ଆଖଣ୍ଡଳ
ଉତ୍ତଙ୍ଗ ଋଷି ଘେନିବ ନିଶ୍ଚେଁ ତୋର ଆଳ ।
ଏଥିକି ସତର୍କ ତୁହି ହୁଅ ସୁରପତି
ଉପାୟ କରି ତା ତପ ଭାଙ୍ଗ ତୁ ଝଟତି ।
ନାରଦଙ୍କର ବଚନ ଶୁଣି ସସ୍ରଯୋନି
ହକାରିଲେ ସୁପ୍ରତୀକ ବିଭାବସୁ ବେନି ।
ତୁମ୍ଭେ ବାବୁ ଦୁଇଜଣ ଏହିକ୍ଷଣି ଯିବ
ଉପାୟେ ଉତ୍ତଙ୍ଗଋଷି ତପକୁ ଭାଙ୍ଗିବ ।
ସୁରନାଥ ଆଜ୍ଞାପାଇ ଗଲେ ବେନିବସୁ
ଗଜକୂର୍ମରୂପ ହେଲେ ପଥେ ଆସୁ ଆସୁ ।
ନିଜରୂପ ତାହାଙ୍କର ଗୋପନ ରଖିଲେ
ଅମାର୍ଗ ରୂପକୁ ଧରି ମୁନି ପାଶେ ଗଲେ ।
ମତ୍ତଗଜ ସୁପ୍ରତୀକ ଭାଙ୍ଗିଲା ଆଶ୍ରମ
କୂର୍ମ ବିଭାବସୁ ନେଲା ହୋମ ଆୟୋଜନ ।
ଏ ସକଳ କାର୍ଯ୍ୟ ଦେଖି କୋପ କଲେ ଋଷି
ଗଜ କଚ୍ଛପକୁ ଚାହିଁ ବଚନ ପ୍ରକାଶି ।
ମୋ ତପ ଭାଙ୍ଗିବା ଅର୍ଥେ ମିଳିଲ ଏ ରୂପେ
ଯୁଗେ ଯୁଗେ ଏହିରୂପ ଥାଉ ମୋର ଶାପେ ।
ତୁମ୍ଭ ଦୁଷ୍ଟପଣେ ଏହି ଭୂମଣ୍ଡଳ ଭାଞ୍ଜୁ
କାଳେ ତୁମ୍ଭ ଦୁହିଁଙ୍କୁରେ ପକ୍ଷୀରାଜ ଗଞ୍ଜୁ ।

ମାର୍କଣ୍ଡ ବୋଲେ ଉତ୍ତଙ୍ଗ ଋଷିଙ୍କର ଶାପେ
ରହିଲେ ସେ ବସୁବେନି ଗଜକୂର୍ମ ରୂପେ ।
ସେ କୂର୍ମ ରହିଲା ଯାଇ ବାରାଣସୀ କୂଳେ
ଗଜ ରହିଲା ଦ୍ରୁମନ ଗିରିବର ତଳେ ।
ପାଣି ଖାଇ ଯାଏ ଗଜ ବାରାଣସୀ ତଟ
କଚ୍ଛପର ସଙ୍ଗେ ତହିଁ ହୋଇଲାକ ଭେଟ ।
କଚ୍ଛପ ଉଡ଼ିଣ ଗଲା ଗଜର ନିଃଶ୍ୱାସେ
ପଡ଼ିଲା ଯାଇ କୁଣ୍ଡାଟ ନାମେ ଏକ ଦେଶେ ।
ଯେବଣ ଦେଶେ କଚ୍ଛପ ଉଡ଼ିଣ ପଡ଼ିଲା
ଗିରିକନ୍ଦର ସମସ୍ତ ଚୂର ହୋଇଗଲା ।
ପୁଣି ମତ୍ତହସ୍ତୀ ଯାଇ କଛପେ ଧଇଲା
ସେହିଠାରେ ଦୁହିଙ୍କର ମହାଯୁଦ୍ଧ ହେଲା ।
ଅରୁଣ ପର୍ବତପରେ ଥିଲା ଖଗେଶ୍ୱର
ମେରୁସମ କାୟା ଦେଖି ଗଜ କଚ୍ଛପର ।
ରହ ରହରେ କଚ୍ଛପ ଡାକେ ଖଗେଶ୍ୱର
ସଂସାର ନାଶିଲ ଦୁହେଁ କରିଣ ସମର ।
ମଧୁର ବାକ୍ୟେ ଗରୁଡ଼ ତାହାଙ୍କୁ ବୋଲଇ
ନ ଶୁଣିଣ ରଣ କଲେ ଗଜକୂର୍ମ ଦୁଇ ।
ଡାକି ବିମୁଖ ହୁଅନ୍ତେ କେଶବ ବାହନ
ମହାବିଶ୍ୱରୂପ ଧରି ଉଠିଲା ଗଗନ ।
ଆକାଶବାଣୀ ଶୁଭଇ ଆଉ କିସ ଭାଳ
ପୃଥିବୀ ନାଶ ହୋଇଲା ତୁ ଏବେ ସମ୍ଭାଳ ।
ରଙ୍ଗ ନୟନ ବୁଲାଇ ହୋଇ ଅତି କୋପୀ
ଗଜ କଚ୍ଛପ ଉପରେ ପଡ଼ିଲାକ ଝାମ୍ପି ।
ସେ ଦୁହିଙ୍କୁ ବହୁରୂପେ କୁବଚନ ବୋଲି
ଦୁଇ ଡେଣାରେ ଦୁହିଙ୍କୁ ପକାଇଲା ପେଲି ।
ମହାରାଗେ ମତ୍ତଗଜ ଛାଡ଼ିଲା ନିଃଶ୍ୱାସ
ସେ ବାତେ ଖଗ ପଡ଼ିଲା ଯୋଜନ ପଞ୍ଚାଶ ।
ନିଷାଦପୁର ଅଟଇ ଯେବଣ ନଗରୀ
ଅସମ୍ଭାଳେ ପଡ଼େ ତହିଁ ଯାଇ ନାଗଅରି ।
କଚ୍ଛପର ତେଜ ଗଜ ନ ପାରିଲା ସହି
ଢଳିଣ ସେ ମହାନାଗ ପଡ଼ିଲା ମହୀ ।
ପୁଣି ଉଠିଣ ସେ ଗଜ ମାଡ଼ିଲାକ ଯୁଦ୍ଧେ
ପଡ଼ନ୍ତି ଉଠନ୍ତି ଦୁହେଁ କୁଶଦ୍ୱୀପ ମଧ୍ୟେ ।
ଅନେକ ବନ କନ୍ଦର ଦେଶ ନଗ୍ରପୁରୀ
ସର୍ବ ଚୂର ହୁଏ ତାଙ୍କ ଯୁଦ୍ଧ ହିଁ ନ ସରି ।
ଦିଗପାଳେ କହିଲେକ ବ୍ରହ୍ମା ଆଗେ ଯାଇ
ନାଶ ଯାଉଛି ତୋହର ସଞ୍ଚିତ ଯେ ମହୀ ।
ତୁହି ଦେବ ପିତାମହ ସୃଷ୍ଟିର କରତା
ସଚରାଚର ପୃଥ୍ୱୀକୁ ତୁହି ଉଦ୍ଧାରନ୍ତା ।

ଏହାଶୁଣି ଚଳିଗଲେ ଦେବ ବେଦବର
ଅମୃତ ସିଞ୍ଚିଲେ ନେଇ ଗରୁଡ଼ ଉପର ।
ତୁ ବାବୁ ଗରୁଡ଼ ଆମ୍ଭ ବୋଲେ ବେଗେ ଆସି
ଗଜ କଚ୍ଛପ ଦୁହିଁଙ୍କୁ ପକାଅ ବିନାଶି ।
ପ୍ରକାଶିଣ ତତକ୍ଷଣେ ଖଗ ବିଶ୍ୱକାୟ
ପିତା ଆଜ୍ଞାରେ ଚଳିଲା କଶ୍ୟପ ତନୟ ।
ଆକାଶେ ଉଠି ତଳକୁ ତହୁଁ ଦୃଷ୍ଟି ଦେଲା
ଗଜ କଚ୍ଛପ ଦୁହିଁଙ୍କ ସମର ଦେଖିଲା ।
ଅମୃତ ଭକ୍ଷି ଗରୁଡ଼ ଅଇଲା ଆକାଶୁ
ସପ୍ତ ବ୍ରହ୍ମାଣ୍ଡ କମ୍ପିଲା ତାର ଆସୁ ଆସୁ ।
ନାଗବଳ କମ୍ପିଲେକ ପାତାଳ ବିବରେ
ତ୍ରାସଦେବେ ଦେଖିଲେକ ମେରୁ ମେଖଳରେ
ଗଜ କଚ୍ଛପ ସମର ଘୋରତର ଦେଖି
ତାଙ୍କ ପାଶରେ ମିଳିଲା ଯାଇ ଖଗପକ୍ଷୀ ।
ଗରୁଡ଼ ତ ହୋଇଥିଲା ମହାବିଶ୍ୱରୂପୀ
ପାଦ ବଢ଼ାଇ ଧଇଲା ସେ ଦୁହିଙ୍କୁ ଝାମ୍ପି ।
ବେନିପକ୍ଷ ବିସ୍ତାରିଣ ଉଡ଼ି ଖଗବର
ନିଷାଦ ପୁରକୁ ଭାଙ୍ଗି କଲା ଛାରଖାର ।
ତା ପକ୍ଷବାତେ ଭାଙ୍ଗିଲା ସେଠା ନଗ୍ରଦେଶ
ସମୁଦ୍ରେ ପଡ଼ିଲେ ସର୍ବେ ନ ରହିଲେ ଲେଶ ।
ବୈବସ୍ୱତ ପୁଚ୍ଛା କଲେ ଅଗସ୍ତି ମୁନିଙ୍କି
ଗରୁଡ଼ ଭାଙ୍ଗିଲା କିପାଁ ନିଷାଦପୁରୀକି ।
ଅଗସ୍ତି ବୋଇଲେ ଏହୁ ପୂର୍ବର ବାରତା
ଯେବଣ କାଳରେ ହୁଡ଼େ ହାରିଲା ବିନତା ।
ସାତବେଣ୍ଟି କରି ତାକୁ ନେଲେ ଏହି ବାଟେ
ତାକୁ ଦେଖି ଟାହି କଲେ ଲୋକେ ହାଟଘାଟେ
ବିନତା ବୋଲେ ହସୁଛ ମନେ ରଖିଥାଅ
ଏ ନିଷାଦପୁର କାଳେ ଭାଙ୍ଗିବ ମୋ ପୁଅ ।
ମାତା ବଚନ ଗରୁଡ଼ ମନେ ରଖିଥିଲା
ଗଜ କଚ୍ଛପ ସମରେ ଏ ନଗ୍ର ଭାଙ୍ଗିଲା ।
ନଗ୍ର ନାଶଯାଇ ହେଲା ତାଳେକ ଗଭୀର
ତହିଁର ମଧ୍ୟରେ ପୂର୍ଣ୍ଣ ହୋଇଗଲା ନୀର ।
କହନ୍ତି ଅଗସ୍ତି ଶୁଣ ରାଜା ତୋଷମନେ
ସେ ଚିଲିକା ହେଲା ମହାଉଦଧି ଦକ୍ଷିଣେ ।
ଧାମଇଁ ବିନତାସୁତ ଅତି କୋପବହି
ଗଜ କଚ୍ଛପ ପାଶରେ ମିଳିଲା ସେ ଯାଇ ।
ବାମ ପାଦରେ ଗଜକୁ ଧରି ଖଗେଶ୍ୱର
ମାଡ଼ି ପଡ଼ିଲା ଯାଇ ସେ କଚ୍ଛପ ଉପର ।
ଦକ୍ଷପାଦେ ଖଗ ଧରି କଚ୍ଛପର ତୋଟି
ବାମପାଦରେ ଧରିଛି ସେହି ଗଜଗୋଟି ।

ମହାପରାକ୍ରମଶାଳୀ ସେ ଗରୁଡ଼ବଳୀ
ଅଗାଧ ସମୁଦ୍ରଜଳେ ପଶୁଅଛି ପେଲି ।
ସହସ୍ର ଯୋଜନ ଜଳ ଭିତରେଣ ପଶି
ତଥାପି ଖଗ ଦୁହିଙ୍କୁ ଧରିଛି ଆକର୍ଷି ।
ବଳେ କଚ୍ଛପ ପଶଇ ଅଗାଧ ଜଳକୁ
ଗରୁଡ଼ପକ୍ଷୀ ଆକର୍ଷି ଧରିଛି ତାହାକୁ ।
ବିଶ୍ୱରୂପେ ଧରି ଖଗ ଗଜ କଚ୍ଛପକୁ
ବହନ ଉଠିଲା ସେହି ଆକାଶ ମାର୍ଗକୁ ।
ଶୁଣିବାକୁ ଯୁଧିଷ୍ଠିର ବଦନ୍ତି ମାର୍କଣ୍ଡେ
ଗଜ କଚ୍ଛପ ଦୁହିଙ୍କୁ ଧରି ଖଗ ଉଡ଼େ ।
ସେ ଦୁହେଁ ଭାରି ହେଲେହେଁ ନ ପାରଇ ଛାଡ଼ି
ଲୋଚନ ଗିରି ଉପରେ ବସିଲାକ ମାଡ଼ି ।
ବିଶାଶତେ ଯୋଜନ ସେ ପର୍ବତର ସ୍ଥଳି
ଏଡ଼େ ବଡ଼ ଗିରି ଗଲା ପାତାଳକୁ ଗଳି ।
ମହାଭୟରେ କମ୍ପଇ ଦେବୀ ବସୁନ୍ଧରୀ
ବୋଲେ ମୋତେ ରକ୍ଷା କର ନାଗଙ୍କ ଅଇରି
ତୁ ଯେ ଖଗେଶ୍ୱର ଅଟୁ ମହାବଳଶାଳୀ
ଉପାଡ଼ି ଗଜ କଚ୍ଛପ ଦୁହିଙ୍କୁ ତୁ ତୋଳି ।
ମୁହିଁ ସହି ନ ପାରଇ ତୋର ଏହି ଭାର
ଦେଖ ମୋ ମୁଖରୁ ବହେ ରୁଧିରର ଧାରା ।
ବସୁନ୍ଧରୀର ବିକଳ ଗରୁଡ଼ ଦେଖିଣ
ବିଚାରେ ବିଶ୍ରାମ କାହିଁ କରିବି ଯାଇଣ ।
ଭାଳି ଅନନ୍ତ ଦ୍ୱୀପରେ ମିଳିଲା ତୁରିତ
ଦେଖେ ବୃକ୍ଷ ତହିଁ ଅଛି ଯୋଜନ ସପତ ।
ପାଞ୍ଚଗୋଟି ଡାଳ ତାର ବିସ୍ତାର ଜଗତ
ସେ ବୃକ୍ଷଡାଳେ ବସିଲା ବିନତାର ସୁତ ।
ଅନନ୍ତ ଦ୍ୱୀପକୁ ସେହି ବୃକ୍ଷଟି ଧାରଣ
ଅନିଳକ ବଟ ତାର ନାମଟି ପ୍ରମାଣ ।
ତାହାର ଦେହରେ ବନ୍ଧା ହୋଇଅଛି ମହୀ
ଗରୁଡ଼ର ଭାର ସେହି ନ ପାରିଲା ସହି ।
ଯେତେବେଳେ ଖଗେଶ୍ୱର ଉଠେ ଗଳଗାଜି
ପଚାଶ ଯୋଜନ ଡାଳ ପଡ଼ିଲାକ ଭାଜି ।
ଉମା ନାମେ ନଗ୍ର ଥିଲା ସେ ଡାଳ ତଳର
ସେ ଡାଳ ପଡ଼ିଲେ ସର୍ବେ ହୋଇଯିବେ ଚୂର ।
ତହିଁ ଥିବା ଜୀବଜନ୍ତୁ ହୋଇବେ ନିହତ
ଏ ଘଟଣା ହେବ ଜାଣ ବିନତାର ସୁତ ।
ଗଜ କଚ୍ଛପ ଦ୍ୱିପାଦେ ଥଣ୍ଟେ ଡାଳ ଧରି
ଆକାଶ ମାର୍ଗରେ ସେହୁ ଗଲା ଉଡ଼ିକରି ।
ସାଧୁଖଗ ବୋଲି ଶୁଭେ ଆକାଶର ବାଣୀ
ବସିବା ଠାବ ନ ପାଇ କରଇ ଭ୍ରମଣି ।

ସେ ଡାଳଗୋଟିକି ଯେବେ ଥଣ୍ଟରୁ ଛାଡ଼ିବ
ପଚାଶ ଯୋଜନ ଯାଏ ମହୀ ନାଶ ଯିବ ।
ଗଜ କଚ୍ଛପ ଛାଡ଼ିଲେ ଯୁଝିବେ ଅପାର
କି କରିବି ବୋଲି ଖଗ କରଇ ବିଚାର ।
ଏ କାରଣୁ ବୈନତେୟ ନ ଛାଡ଼ଇ ତିନି
ମହାଭାରା ବହି ଉଡ଼େ ଦିବସ ରଜନୀ ।
କ୍ଷୀରସିନ୍ଧୁ ମଧ୍ୟଭାଗେ ପ୍ରବେଶିଣ ଖଗ
ପକ୍ଷାଘାତେ ସିନ୍ଧୁନୀର କଲା ବେନିଭାଗ ।
ଗରୁଡ଼ର କଷ୍ଟ ଜାଣି ଦେବ ବାସୁଦେବ
ଅଦଭୂତେ ବୃକ୍ଷରୂପେ ହୋଇଲେ ଉଭବ ।
ଚାରିଶତ ଯୋଜନ ସେ ବୃକ୍ଷ ଚାରିଡାଳ
ଶତେକ ଯୋଜନ ବୃକ୍ଷ ଆୟତନ ସ୍ଥଳ ।
ଅଦଭୂତେ ଶୁଭିଲାକ ବାଣୀ ଆକାଶର
ଏ ବୃକ୍ଷେ ବିଶ୍ରାମ ତୁହୋ କର ଖଗବର ।
ଆକାଶର ବାଣୀ ଶୁଣି ବିନତା ସନ୍ତତି
ସେ ବୃକ୍ଷ ସନ୍ନିଧେ ଯାଇ ମିଳିଲା ଝଟତି ।
ଗଜ କଚ୍ଛପକୁ ପାଦେ ଧରି ଖଗବର
ବିଶ୍ରାମ କଲା ଯେ ବିଷ୍ଣୁ ବୃକ୍ଷର ଉପର ।
ଦୁଇଡାଳେ ଦୁଇପାଦ ଦେଇଣ ରହିଲା
ନାରାୟଣ ବୃକ୍ଷ ସେହି ଭାରାକୁ ସହିଲା ।
ଥଣ୍ଟେ ଡାଳ ଗଜ କୂର୍ମ ଧରି ବେନି ପାଦେ
ସୁଖେ ବୈନତେୟ ବିଜେ ବସିଲାକ ହାଦେ ।
ସେ ବୃକ୍ଷ ବୋଇଲା ତୁହୋ ଶୁଣ ମହାବଳ
ଥଣ୍ଟରୁ ତୋହର ଏବେ ଥୋଇଦିଅ ଡାଳ ।
ଗରୁଡ଼ବୋଲେ ମୁଁ ଡାଳ ତୋପରେ ଥୋଇଲେ
କିସ କରିବଇଁ ମୁହିଁ ତୁହି ଭାଙ୍ଗିଗଲେ ।
ବିଷ୍ଣୁ ବୃକ୍ଷ ବୋଇଲା ମୁଁ ନ ଭାଙ୍ଗିବି ବାବୁ
ଗଜ କଚ୍ଛପ ସହିତେ ରଖ ତୁହି ସବୁ ।
ଖଗ ବୋଲେ ଥଣ୍ଟେ ଡାଳ ଗଜ କୂର୍ମ ପାଦେ
ସାତବର୍ଷ ହେଲା ଧରି ବୁଲୁଅଛି ହାଦେ ।
ବୃକ୍ଷ ବୋଲେ ନ ଭାଳ ତୁ କିଛି ମହାବଳ
ବୃକ୍ଷବାକ୍ୟେ ଖଗ ତହୁଁ ଥଣ୍ଟୁ ରଖେ ଡାଳ ।
ଗଜ କଚ୍ଛପ ଥୋଇଲା ତହିଁର ଉପରେ
ମାଡ଼ି ବସିଲା ଗରୁଡ଼ ବିଶ୍ୱରୂପ ତାରେ ।
ଗରୁଡ଼ ପୁଚ୍ଛେ ମହିମା ତୋର ଅଟେ ଧନ୍ୟ
ମୋ ଏଡ଼େ ଭାରା ସହିଲୁ ତୁ ଏଡ଼େ ସୁଜ୍ଞାନ ।
ସେ ବୃକ୍ଷ ବୋଇଲା ପୁଣି ସାବଧାନେ ଶୁଣ
ତୁହି ଯେ ଗରୁଡ଼ ମୁହିଁ ଅଟେ ନାରାୟଣ ।
ବହୁତ ଭାରା ସହିଲୁ ତୁହି ତ ଯୁକତେ
ମୁହିଁ ତ ବୃକ୍ଷ ହୋଇଲି ତୋ ହିତ ନିମନ୍ତେ ।
ଶୁଣି ବିନତା ନନ୍ଦନ ମହାଭୟ କଲା
ଡାଳରୁ ଉତୁରି ସେହି ଶୂନ୍ୟେ ଉଠିଗଲା ।
ଭୟରେ ଉଡ଼ଇ ସେହୁ ଆକାଶ ବିକ୍ରମି
ଷଡ଼ଲକ୍ଷ ଯୋଜନରେ ରହେ ଭ୍ରମି ଭ୍ରମି ।
ଗରୁଡ଼ର ମୂରତିକୁ ନୟନେ ଦେଖିଣ
ଅମରପୁର ତେଜିଲେ ଇନ୍ଦ୍ର ଦେବଗଣ ।
ଯୁଧିଷ୍ଠିର ବୋଇଲେକ ଶୁଣ ମାର୍କଣ୍ଡେୟ
ଖଗକୁ ଦେଖି ଇନ୍ଦ୍ରର କିପାଁ ଏତେ ଭୟ ।
ମାର୍କଣ୍ଡ ବୋଇଲେ ତୁମ୍ଭେ ଶୁଣ ପୂର୍ବକଥା
ଯାହା କି ପୁଚ୍ଛିଲ ଆଦିଜନ୍ମର ବାରତା ।
ଦକ୍ଷ ପ୍ରଜାପତିଙ୍କର ଷାଠିଏ କୁମାରୀ
ଏମାନଙ୍କ ନାମ କହେ ଶୁଣ ଦଣ୍ଡଧାରୀ ।
ଋଦ୍ଧି ସିଦ୍ଧି ଆଉ ବୁଦ୍ଧି ମେଧା ପ୍ରଧା ସିଦ୍ଧା
ତନୁ ଭାନୁ ଶାନ୍ତାକନ୍ୟା ଆବର ସମିଧା ।
ଉମା କନ୍ୟାକୁ ପ୍ରଦାନ କଲେ ତ୍ରିଲୋଚନ
ବ୍ରହ୍ମାଙ୍କୁ ସାବିତ୍ରୀ କନ୍ୟା ଦେଲେକ ଯତନ ।
ଆଦିତ୍ୟେ ସଞ୍ଜ୍ଞା କୁବେରେ ଦେଲେ ହାରାବତୀ
ବରୁଣକୁ ପ୍ରଦାନ ଯେ କଲେ ନୀରବତୀ ।
ଅଗ୍ନି ଦେବତାଙ୍କୁ ଦେଲେ ସ୍ୱାହା ସ୍ୱଧା ବେନି
ବୃହସ୍ପତିଙ୍କୁ ସେ ଦେଲେ ତାରା ଯେ ନନ୍ଦିନୀ ।
ଚନ୍ଦ୍ର ଦେବତାଙ୍କୁ ପୁଣି କରିଣ ବରଣ
ସତାଇଶ କନ୍ୟା ତାଙ୍କୁ କଲେ ସମର୍ପଣ ।
କଶ୍ୟପେ ଦିତି ଅଦିତି ବଳା ଅନାମିକା
ଅରିଷଟା କାଷ୍ଠ ଆବର କୁମାରୀ ସିଂହିକା ।
ଗୃହଜା ସୁରଭୀ ରକ୍ଷା ଭକ୍ଷା ଯେ ଗନ୍ଧର୍ବା
ଏ ତେର କନ୍ୟା କଶ୍ୟପେ ତୋଷେ ଦେଲେ ବିଭା
ଏଗାର କ୍ୱାଇଁକି ଅଣଷାଠି କନ୍ୟା ଦେଲା
ହେମାକନ୍ୟା ଯେ ପରମାଯୋଗିନୀ ହୋଇଲା
ଦିତିର ଗର୍ଭରୁ ଜାତ ହେଲେ ଦେବତାଏ
ଅଦିତି ଗର୍ଭରୁ ଜାତ ପବନ ଯେ ହୁଏ ।
କଦ୍ରୁନାରୀର ଗର୍ଭରୁ ନାଗ ହେଲେ ଜାତ
କାଳ ଅକାଳ ପୁରୁଷ ହୋଇଲେ ସମ୍ଭୂତ ।
ଅରିଷ୍ଟୀ ଜାତ ଅରିଷ୍ଟି ଜୀବମାନ କଲେ
ଅନାମିକାହୁଁ ଅଠରଲକ୍ଷ ଗିରି ହେଲେ ।
ଗନ୍ଧର୍ବାର ତହୁଁ ଜାତ ହୋଇଲେ ଗନ୍ଧର୍ବେ
ସୁରଭୀର ତହୁଁ ଜାତ ହେଲେ ଗୋରୁଜୀବେ ।
ରକ୍ଷାରୁ ସହସ୍ର ନାରୀ ହୋଇଲେ ଜନମ
ଭକ୍ଷାରୁ ଦଶପୁରୁଷ ହେଲେ ଉତପନ୍ନ ।
ଗୃହଜାରୁ ଉପୁଜିଲେ ଗୃହୀ ଯେତେ ଜାତି
ସିଂହିକାର ତହୁଁ ରାହୁ ହେଲା ଉତପତ୍ତି ।

ବାର କନ୍ୟାଠାରୁ ଏହିରୂପେ ଉପୁଜିଲେ
ବିନତାର ତହୁଁ ପୁତ୍ର ଦୁହିତା ନୋହିଲେ ।
କଶ୍ୟପଙ୍କ ଠାରେ ଆଉ ନୋହିଲା ଭକତା
ଗୃହକୁ ତେଜ୍ୟା କରିଣ ଚଳିଲା ବିନତା ।
ବ୍ରହ୍ମାଦି ଦେବତାଙ୍କର ସ୍ନାନଘାଟ କୂଳେ
ପ୍ରତ୍ୟହ ସେ ପରିଷ୍କାର କରେ ପ୍ରାତଃକାଳେ ।
ବାଟକୁ ପହଁରି ଦେଇ ପକାଏ ସେ ଛେରା
ଆସିବାର ବେଳେ ଦେବତାଙ୍କୁ ନମେ ଧୀରା ।
ତିରିଶଦିନେ ପ୍ରସନ୍ନ ହେଲେ ତାଙ୍କୁ ଧାତା
ବୋଇଲେ କି ହେତୁ ଏତେ ଖଟୁ ତୁ ବିନତା
ବିନତା ବୋଲେ ମୋ ପୁଅ ଝିଅ ହେଲେ ନାହିଁ
ତା ବାକ୍ୟେ ବିଧାତା ପୁତ୍ର ଆହୁତି ଦିଅଇ ।
ପ୍ରଣିପାତ କରି ତାଙ୍କୁ ବୋଇଲେ ବିନତା
ଦିଅ ମୋତେ ଦୁଇପୁତ୍ର ମହାବଳବନ୍ତା ।
ଅଦିତି ନନ୍ଦନ ହେଲା ଅମର ରାଜନ
ତାର ତହୁଁ ମୋର ପୁତ୍ର ହେବ ବଳବାନ ।
ଧାତା ବୋଲେ ଆମ୍ଭଙ୍କୁ ସେ ଦେଲା ଅପମାନ
ଆମ୍ଭ ସଙ୍ଗେ ସଦା ଦ୍ୱନ୍ଦ୍ୱ ଇଚ୍ଛେ ମଘବାନ ।
ଅତି ଉତକର୍ମ ତାର ସହି କେ ପାରିବ
ତୋର ପୁଅ ହେଲେ ସ୍ୱର୍ଗେ ଦଣ୍ଡଧାରୀ ହେବ
ଖଗମନ୍ତ୍ରରେ ଆହୁତି ଦେଲେ ଦେବଧାତା
ଚରୁ ଫୁଟାଇ ବୋଇଲେ ଭକ୍ଷ ଗୋ ବିନତା ।
ଚରୁ ଭକ୍ଷନ୍ତେ ବିନତା ଧାତା ମହାମନ୍ତ୍ରେ
ତକ୍ଷଣେ ତା ଗର୍ଭୁ ଜାତ ହେଲେ ବେନିପୁତ୍ରେ ।
ପରଚଣ୍ଡ ମହାବିଶ୍ୱରୂପ ମହାବଳୀ
ରସାଣିଲା ସ୍ୱର୍ଣ୍ଣପ୍ରାୟେ ତାଙ୍କ ତେଜ ଝଳି ।
ବିକ୍ରମି କ୍ଷେପିଲେ ଦୁହେଁ ଉଠି ଶୂନ୍ୟପଥେ
ମାଡ଼ି ବସିଲେ ଯାଇଁ ସେ ଆଦିତ୍ୟଙ୍କ ରଥେ ।
ଦିନକର ନାଥ ତାଙ୍କୁ ଦେଖି ଭୟ ପାଇ
ରଥ ତେଜି ମେରୁ ପୃଷ୍ଠେ ଲୁଚିଲେକ ଯାଇ ।
ବିନତା ଆଗେ କହିଲେ ଚତୁର ଆନନ
ଅରୁଣ ଗରୁଡ଼ ନାମ ତୋ ବେନି ନନ୍ଦନ ।
ତାଙ୍କୁ ଦେଖି ସୂର୍ଯ୍ୟ ଏବେ ପଳାଇଲେ ଭୟେ
ତାର ବିଶ୍ୱରୂପ ଦେଖି ଲୁଚି ସୁରରାୟେ ।
ଅଦିତି ବୋଇଲେ ବ୍ରହ୍ମା ତୋର ଏହି ମାୟା
କାହୁଁ ଭିଆଇଲୁ ତୁହି ଏଡ଼େ ବିଶ୍ୱକାୟା ।
ବିଧାତା କହିଲେ କଲି ଇନ୍ଦ୍ର ଯୋଗୁ ମୁହିଁ
ମୋ ସଙ୍ଗେ ବିବାଦ ଇଚ୍ଛେ କଥାହିଁ ନ କହି ।
ଏଥୁ ଅନନ୍ତରେ ଶୁଣ ବିଲଙ୍କାଧିପତି
ଯୁଧିଷ୍ଠି ଆଗେ କହନ୍ତି ମାରକଣ୍ଡ ଯତି ।

ଆଦିତ୍ୟ ରଥେ ଅଛନ୍ତି ଗରୁଡ଼ ଅରୁଣ
ଏପରି କହିଲେ ଯହୁଁ ସାବିତ୍ରୀ ରମଣ ।
ଅଦିତି ଅରୁଣେ ଚାହିଁ ବହୁ ସ୍ତୁତି କଲା
ଗରୁଡ଼କୁ ବହୁରୂପେ ବିନତା କହିଲା ।
ଜୟ ଜୟ ତୁ ଅରୁଣ ମହାଅଗ୍ନି ତେଜ
ଜୟ ଜୟ ତୁ ଅରୁଣ ବିନତା ତନୁଜ ।
ଜୟ ଜୟ ତୁ ଅରୁଣ ଅକ୍ଷୟ ଅବ୍ୟୟ
ଜୟ ଜୟ ତୁ ଅରୁଣ ମହା ବିଶ୍ୱକାୟ ।
ଜୟ ଜୟ ତୁ ଅରୁଣ ଅକାଳ ଅକାମ
ଜୟ ତୁ ଅରୁଣ ଜାତ ଅନ୍ତେ ତା ବିଶ୍ରାମ ।
ଜୟ ଜୟ ତୁ ଅରୁଣ ପ୍ରସନ୍ନ ବରଦ
ପ୍ରଜାପତିଙ୍କର ନାତି ଦୟାଳୁ ତୋ ହୃଦ ।
ଜୟ ଅରୁଣ ସକଳ କାର୍ଯ୍ୟ କରୁ ସିଦ୍ଧି
ଜୟ ଜୟ ତୁ ଅରୁଣ ଅସୀମ ତୋ ବୁଦ୍ଧି ।
ଜୟ ତୁ ଅରୁଣ ସର୍ବ ଗୁଣେ ଗୁଣବନ୍ତ
ଜୟ ତୁ ଅରୁଣ ଅଟୁ ମହାବଳବନ୍ତ ।
ଜୟ ଜୟ ହେ ଅରୁଣ ହୁଅ ସୁପ୍ରସନ୍ନ
ତୋହର ଚରଣେ ମୁହିଁ କରେ ନିବେଦନ ।
ଜୟ ଜୟ ହେ ଅରୁଣ ସତତ ମୋ ହୃଦେ
ନ ଦେଖି ସେବା କରଇ ତୁମ୍ଭର ଶ୍ରୀପଦେ ।
ତବ ପାଦପଦ୍ମେ କରେ ବିନୟେ ଭକତି
ନମସ୍ତେ ନମସ୍ତେ ଆହେ ବିନତା ସନ୍ତତି ।
ଗୁଣର ସାଗର ତୁମ୍ଭ ଚରଣେ ଦଇନୀ
ଭାରତେ କହେ ଶାରଳାଦାସ ଶୂଦ୍ରମୁନି ।

■ ■ ■

## ନୀଳଗିରିର ପୂର୍ବ ବୃତ୍ତାନ୍ତ ଏବଂ ଶ୍ରୀକୃଷ୍ଣଙ୍କର ମୃତପିଣ୍ଡ ବର୍ଣ୍ଣନ

ଏଥୁ ଅନ୍ତେ ପୁଚ୍ଛାକଲେ ମନୁ ନରପତି
ଏ ଉତ୍ତାରୁ କିସ ଦେଲା କହ ମହାଯତି ।
ଅଗସ୍ତି କହିଲେ ରାଜା କର ତୁ ଶ୍ରବଣ
ସୂର୍ଯ୍ୟଙ୍କ ରଥେ ଥିଲେ ତ ଗରୁଡ଼ ଅରୁଣ ।
ଅନେକ ବିନୟ ତାଙ୍କୁ କଲେ ଅଂଶୁମାଳୀ
ବିନତା ସୁତ ସୂର୍ଯ୍ୟଙ୍କ ଭକ୍ତି ପ୍ରତିପାଳି ।
ପ୍ରସନ୍ନେ ବୋଇଲେ ଶୁଣ ଦେବ ଦିବାକର
ତୃପତି ହୋଇଲି ମାଗ ଏବେ ମୋତେ ବର ।
ଆଦିତ୍ୟ ବୋଇଲେ ଯେବେ ଦେବୁ ତୁହି ବର
ସାରଥିପଣେ ରହିବୁ ରଥରେ ମୋହର ।
ନିଶାକାଳରେ ଏକତ୍ରେ ଥିବା ଆମ୍ଭେ ବେନି
ପ୍ରଭାତରେ ଉଦେହେବା ଦୁହେଁ ଯାକ ପୁଣି ।

ଆଦ୍ୟ ପ୍ରଭାତରେ ଯେଉଁ ତେଜ ପରକାଶ
ଚାନ୍ଦ୍ରାୟଣ ଯାଏ ଥିବ ସେ ତେଜ ସାଦୃଶ୍ୟ ।
ହେ ଅରୁଣ ତୋର ପଛେ ମୁଁ ହୋଇବି ଉଦେ
ଏହି ଜଗତ ପାଳିବା ଦୁଇଜଣ ହାଦେ ।
ଶୁଣିଲ ତ ଯୁଧିଷ୍ଠିର ଯୁଦ୍ଧର ବାରତା
ପୁଚ୍ଛୁ କହିଲି ମକରମାସର ବ୍ୟବସ୍ଥା ।
ମାଘମାସେ ଦାଣ୍ଡେ ଛେରା ପହଁରା ସେ କଲା
ଗରୁଡ଼ ଅରୁଣ ବେନି କୁମର ପାଇଲା ।
ଏ ଅନ୍ତେ ଧାତା କହିଲେ ଡାକି ଗରୁଡ଼କୁ
ତୁ ଏବେ ବିଜୟ କର ଅମର ପୁରକୁ ।
ବ୍ରହ୍ମାଙ୍କ ବଚନ ଶୁଣି ଗଲା ଖଗେଶ୍ୱର
ପ୍ରବେଶ ହୋଇଲା ଯାଇ ଅମର ସଭାର ।
ମହାବଳବନ୍ତ ଖଗ ମୂରତିକୁ ଦେଖି
ଇନ୍ଦ୍ର ଉଠିଲେ ସତ୍ୱରେ ଆସନ ଉପେକ୍ଷି ।
ବିଜେ କଲେ ସୁରେଶ୍ୱର ମହାନାଗ ପିଠି
ଶ୍ରୀଭୁଜେ ଧଇଲେ ସେହି ବଜ୍ରାୟୁଧ ଗୋଟି ।
ଦେଖି ଧାମଇଁ ଗରୁଡ଼ ମହାମୂର୍ତ୍ତି ତେଜେ
ତିନିଭୁବନ କମ୍ପିଲା କରନ୍ତେ ସେ ବିଜେ ।
ଶ୍ରୀଭୁଜେ ବୁଲାଇ ବଜ୍ରଶକ୍ତି ମଘବାନ
ଗରୁଡ଼ ଉପରେ ନେଇ ପିଟିଲା ବହନ ।
ଶକତି ପଡ଼ନ୍ତେ ଅଙ୍ଗେ ବିନତା ନନ୍ଦନ
ଫୁଲଘାତେ ହେଲା ପରି କଲା ହେୟଜ୍ଞାନ
ବାସବ ବଜ୍ରଶକତି ତା ଶରୀରେ ପଡ଼ି
ଶକତିର ମୁନଗୋଟି ହୋଇଗଲା ମୋଡ଼ି ।
କୋପରେ ଗରୁଡ଼ ପକ୍ଷୀ ଧାଏଁ କୁତୂହଳେ
ମାଡ଼ି ବସିଲା ଯାଇଣ ଗଜକୁମ୍ଭସ୍ଥଳେ ।
ତ୍ରସେ ବାସବ ବାହନ କରିଲାକ ତେଜ୍ୟା
ଧାତା ପଛରେ ଲୁଚିଲା ଯାଇ ଦେବରାଜା ।
ଶରଣ ଫୁକାରେ ମୁଖେ ଦେବ ମଘବାନ
ହେ ଧାତା ଶରଣ ମୋତେ ରଖ ତୁ ବହନ ।
ବହୁତ ବିନୟୀ ହୋଇ ବୋଲେ ଜମ୍ଭଭେଦୀ
ଏହି ମୂର୍ତ୍ତି କେ ଆସୁଛି ମୋ ଉପରେ ଖେଦି ।
ବିଧାତା ବୋଇଲେ ଏହି ନୁହଇ ତ ରାହୁ
ବିନତାର ନନ୍ଦନ ଯେ ଅଟଇଟି ଏହୁ ।
ଅଭିଷେକ କାଳେ ମୋତେ ଦେଲୁ ଅପମାନ
ତେଣୁ ବିନତାକୁ କଲି ଏବେ ପୁତ୍ରଦାନ ।
ବିନତା ଖଟିଲା ମୋତେ ମାଘସ୍ନାନକାଳେ
ତା ନନ୍ଦନେ ଆକାଶରେ କଲୁ ଦିଗପାଳେ ।
ଶୁଣିଣ ବିନୟ ଭାବେ କହଇ ମଘବା
ମୋତେ ଏ ବାର ଭୋ ସ୍ୱାମୀ ସ୍ୱର୍ଗପୁର ଦେବା ।
ଅନେକ କାର୍ପଣ୍ୟ ହୋଇ କହେ ସୁରରାୟେ
ପୁଣି ସୃଷ୍ଟିର କରତା ହୋଇଲେ ସଦୟେ ।
ଗରୁଡ଼କୁ ସନ୍ନିଧିକି ଡାକି ବେଦପତି
ବୋଇଲେ ତୁ ନ ବିନାଶ ଐରାବତ ହସ୍ତୀ ।
ତୋତେ ଇନ୍ଦ୍ରପଦ ଦେବାପାଇଁ କହିଥିଲୁ
ଆଜିଠାରୁ ଗରୁଡ଼ ତୁ ଦେବେଶ ହୋଇଲୁ ।
ଶୁଣ ବାବୁ ଯୁଧିଷ୍ଠିର ବଦନ୍ତି ମାର୍କଣ୍ଡେ
ଏମନ୍ତ ଗରୁଡ଼ ଜନ୍ମ କହିଲଇଁ ତୁଣ୍ଡେ ।
ଗଜ କଚ୍ଛପ ବିବାଦେ ଗରୁଡ଼ ଉତ୍ପତ୍ତି
ତାକୁ ଦେଖି ଭୟ କଲେ ଦେବ ସୁରପତି ।
ଗରୁଡ଼ ବିନାଶ କଲା ସେ ଗଜ କଚ୍ଛପ
ରହିଲେ ସେ ଆକାଶରେ ଧରି ପୂର୍ବରୂପ ।
ଯୁଧିଷ୍ଠି ବୋଇଲେ ମୁହିଁ ଶୁଣିଲି ଏ କଥା
ସଂକ୍ଷେପି ନୀଳଗିରିର ଏବେ କହ ବାର୍ତ୍ତା ।
କେତେ ଦିନରୁ ଏ ଗିରି ହେଲାଣି ଉତ୍ପନ୍ନ
କେମ୍ନେ ନାରାୟଣ ଏଥେ କରିଲେ ବିଶ୍ରାମ ।
ମାର୍କଣ୍ଡ ବୋଇଲେ ଏହୁ ବହୁଦିନ କଥା
ବାର ବାର ଅବତାର ହ୍ୱନ୍ତି ବିଶ୍ୱପିତା ।
ସତ୍ୟ ତ୍ରେତା ଦ୍ୱାପର ଏ ଅନ୍ତେ ହୁଏ କଳି
ଚାରିଯୁଗ ହେଲେ ବାବୁ ଗଣ୍ଡାଏକ ବୋଲି ।
ଏକସ୍ତରି ଗଣ୍ଡାରେ ଯେ ଏକମନୁ ହୁଏ
ଚଉଦ ମନୁରେ କଳ୍ପେ ହେ ପଣ୍ଡୁ ତନୟେ ।
ନବ କଳପ ଅନ୍ତରେ ପୃଥ୍ୱୀ ହୁଏ ନାଶ
କ୍ଷୀରୋଦ ରାଜ୍ୟ କରଇ ଏତେକ ବରଷ ।
ଶୂନ୍ୟ ଅଣାକାର ଅଟେ ଯେ ପୁରୁଷ ତନୁ
ଜଳ ମଧ୍ୟେ ପୁଣ ଉତପତ୍ତି ହୁଏ ମନୁ ।
ଆକାଶରୁ ପୁରୁଷର ବିକାଶଇ ତନୁ
ପଞ୍ଚଭୌତିକ ଜନମ ହେଲେ ତାର ମନୁ ।
ପୁଣି ସେ ମହାପୁରୁଷ କରିଣ ଉପାୟ
ପାର୍ଥିବ ପଦାର୍ଥମାନ କରଇ ସଞ୍ଚୟ ।
ସେ ଶୂନ୍ୟ ପୁରୁଷ ଜାତ କଲେ ନବସୃଷ୍ଟି
ମେଦାସୁରର ମେଦରେ ମେଦିନୀ ପ୍ରକଟି ।
ପୁଣି ସର୍ଜନା କରନ୍ତି ବ୍ରହ୍ମା ବିଷ୍ଣୁ ହର
ବିଧାତା ପୁରୁଷ ସେହୁ ସର୍ଜଇ ସଂସାର ।
ଶିବ ବିଷ୍ଣୁଠାରେ ଜାତ ଜଙ୍ଗମ ସ୍ଥାବର
ଏଥୁ ଅନନ୍ତରେ କଥା ଶୁଣ ଯୁଧିଷ୍ଠିର ।
ବ୍ରହ୍ମାଙ୍କୁ ସବୁ ଦିଶିଲା ବ୍ରହ୍ମମନ୍ତ୍ର ସାଧି
ଈଶ୍ୱରଯୋଗେ ବସିଲା ଆତ୍ମାକୁ ନିରୋଧି ।
ସୂକ୍ଷ୍ମ ଅଭିଳାଷ କଲେ ଦେବ ନାରାୟଣ
ମୁଖରୁ ଜାତ ଅମୃତ ହେଲା ପୁଣ ପୁଣ ।

ଶରପାବକ ବୋଲିଣ ସତ୍ୟ ଯେ ଯୁଗର
ଶୋହଇ ନାମ ହୋଇଲା ଏହି ପୃଥିବୀର ।
ଯମଦେବଙ୍କର ନାମେ ଭୋଗ କଲେ ମନୁ
ଆଗତ ବ୍ରହ୍ମପୁରୁଷ ସୂର୍ଯ୍ୟଙ୍କର ସୂନୁ ।
ବୃନ୍ଦ ନାମରେ ଏକଇ ବ୍ରହ୍ମା ଯୋଗାଭ୍ୟାସୀ
ବୃନ୍ଦାର୍କ ବୋଲି ଦ୍ୱାପର ଯୁଗ ହେଲା ଆସି ।
ସେ ଯୁଗେ ହରି ମଞ୍ଚରେ ଜନମ ହୋଇଲେ
ଯମୁନାତୀରେ ଖେଳ କୌତୁକେ ମାତିଲେ ।
ଏହି ଯୁଗେ ହେ ଯୁଧିଷ୍ଠି ଦେବ ଚକ୍ରଧର
ଇନ୍ଦ୍ର ଦ୍ୱନ୍ଦ୍ୱ କରିବାରୁ ତୋଳିଲେ ମନ୍ଦର ।
ପରଦାରା କରିଲେ ସେ ଧର୍ମ ତେଜ୍ୟାକରି
ବହୁ କୁଟୁମ୍ବ ଅର୍ଜିଲେ ମୋହେ ପଡ଼ି ହରି ।
ଉପାୟେ ନାଶ କରିବେ ପୁଣି ତାହା ହେଲେ
ଯାଇଁ ଶୋଇବେ ଶିଆଳି ଲତିକାର ଦୋଳେ
ଶୁଣ ବାବୁ ଯୁଧିଷ୍ଠିର ପୂର୍ବର ଏ କଥା
ପୁରାଣେ କହନ୍ତି ଏହା ନାନା ମୁନି ବକ୍ତା ।
ବାମନାବତାରେ ବାମପାଦ ଆକାଶକୁ
ଗଙ୍ଗାକୁ ଢାଳିଲେ ବ୍ରହ୍ମା ଉଦକ ପାନକୁ ।
ଲୁଚିଲେ ସେ ଗଙ୍ଗା ତାଙ୍କ ନଖର କୋଣରେ
ଉଦକ ନ ପାଇ ବ୍ରହ୍ମା ରାଗିଲେ ଅନ୍ତରେ ।
ଉଦକ ପାଇବା ଆଶେ ଢାଳିଲେ ଗଙ୍ଗାଙ୍କୁ
ନଖ କୋଣରେ ଲୁଚାଇ ରଖିଲେ ତାହାଙ୍କୁ ।
ମୋହଠାରେ ଏଡ଼େ ମାୟା କଲୁ ତୁ ମନରେ
କାଳେ ନାରାଚେକ ପଡୁ ତୋର ଏ ପାଦରେ
ମାରକଣ୍ଡ ବୋଇଲେକ ହେ ଯୁଧିଷ୍ଠି ଶୁଣ
ଧାତା ବାକ୍ୟ ଗୋବିନ୍ଦଙ୍କୁ ନୋହିଲା ମେଣ୍ଟଣ
ଅଜ ଶବରର ପୁତ୍ର ଜାରାନାମ ଗୋଟି
ତା ନାରାଚେ ଶ୍ରୀକୃଷ୍ଣଙ୍କ ବାମପାଦ ଫୁଟି ।
କିରାତ ନାମରେ ଧାତା ମର୍ତ୍ତେ ଜନମିଲା
ଅଙ୍ଗଦ ତା ନାତି ହୋଇ ଶରଘାତ କଲା ।
ସେ ଧାତାଙ୍କୁ ଶାପ ଦେଲେ ଶମନ ଦେବତା
ବୋଇଲେ ଅନୀତି କଲୁ ତୁ ଜଗତ ପିତା ।
ମୋ ଧର୍ମଶାସ୍ତ୍ରରେ ଅଛି ଯେମନ୍ତ ବିଚାର
ସେ ନିୟମେ ଜନମ ତୁ ଶବରଣୀ ଘର ।
ଗଙ୍ଗାଙ୍କୁ ନିଉଡ଼ି କୃଷ୍ଣେ ଶାପ ଦେଲୁ ହାଦେ
ତୋ ନାତି ଜନମି ଶର ବିନ୍ଧୁ ତାଙ୍କ ପାଦେ ।
ଯୁଧିଷ୍ଠି ଆଗେ କହନ୍ତି ସୁଦେବ ନନ୍ଦନ
କଉଶିକ ବ୍ରହ୍ମା ହେଲେ କିରାତନନ୍ଦନ ।
ସେହି କିରାତ ଯେ ଅଜ ନାମରେ ଶବର
ଅଜରା ନାମେ ହୋଇଲା ତାହାର କୁମର ।
ଜରା ଶବର ଯେ ଅଜପତିଙ୍କର ନାତି
ରୋହିଣୀକୁଣ୍ଡ ମୌଦଧି ଦକ୍ଷିଣେ ଉପୃତ୍ତି ।
ସେ ଜାରା ଶବର ତାଙ୍କୁ କଲା ଶରାଘାତ
ଜ୍ଞାନ ଲଭି ପିଣ୍ଡକୁ ସେ ପୂଜିଲା ନିୟତ ।
ଯୁଧିଷ୍ଠିର ବୋଇଲେକ ମାରକଣ୍ଡ ମୁନି
କିରାତ ହୋଇ ସେ ହେଲା ଏଡ଼େ ବଡ଼ ଜ୍ଞାନୀ
ବିଷ୍ଣୁଙ୍କୁ ସେ ଦହିବାକୁ ହୋଇଲା ଶକତା
ସେ ପିଣ୍ଡକୁ ପୂଜିବାକୁ ହେଲା ପୁଣି ଜ୍ଞାତା ।
ଯୁଧିଷ୍ଠି ବାକ୍ୟେ କହନ୍ତି ବ୍ରହ୍ମାଙ୍କ ଆତ୍ମଜ
ମନଯୋଗ କରି ଶୁଣ ପାଣ୍ଡବ ଅଗ୍ରଜ ।
ସତ୍ୟଯୁଗେ ମଧୁକର ନାମରେ ଶବରୀ
ସୁନ୍ଦରୀ ସେ ସୁଲକ୍ଷଣୀ ଆସେ ସ୍ନାନକରି ।
ମିଥୁନମାସ ଶୁକ୍ଳପକ୍ଷ ଯେ ଚଉଠି
ନକ୍ଷତ୍ର ଆରଦ୍ରା ବେଳେ ନବଘଡ଼ି ଘଟି ।
କଉଶିକ ବେଦବର ଆସେ ସ୍ନାନ କରି
ଜଳେ ପଶି ନିତ୍ୟକର୍ମ ଆହନିକ ସାରି ।
ବାହୁଡ଼ିଲେ ବ୍ରହ୍ମା ତେଜି ଆଉ ନିଜସ୍ଥାନ
ଅସ୍କନ୍ଦବନ ମାର୍ଗରେ କରନ୍ତି ଗମନ ।
ଦେଖିଲେ ସେ ବନେ ଆସେ ଏକ ବରାଙ୍ଗନା
ତାକୁ ଦେଖି କାମେ ବଶ ହୋଇଲେକ ବ୍ରହ୍ମା ।
କିରାତର ପତ୍ନୀ ସେହି ତାନ ।ମ ବିଭାଗୀ
କାମେ ମତ୍ତ ହୋଇ ତାକୁ ଧଇଲେକ ବେଗି ।
ନିର୍ଜ୍ଜନ ଦେଖି ଶୃଙ୍ଗାର ଧାତା କଲେ ଇଚ୍ଛା
ପୂର୍ଣ୍ଣ କରୁ ଶବରଣୀଠାରେ ମନୋବାଞ୍ଛା ।
କୃତାନ୍ତକ ନାମେ ତାର ଯେଉଁ ନିଜ ପତି
ଭାରିଯାକୁ ଲୋଡ଼ି ଲୋଡ଼ି ଆସୁଅଛି ଧାତି ।
କିଛିଦୂରେ ଉହାଡ଼ରେ ଦେଖଇ ଶବର
ନିର୍ଜନ ଲତା ମଧ୍ୟରେ କରଇ ଶୃଙ୍ଗାର ।
କିଛିଦୂର ଯାଇଁ ପୁଣି ଦେଖି ନିଜନାରୀ
ବିନ୍ଧିଲାକ ନାରାଚେକ ଅତି କୋପକରି ।
ଦୁହିଁଙ୍କ ଅଙ୍ଗରେ ବାଜି ଶର ଲାଗି ଫୁଟି
ତାଙ୍କୁ ଭେଦ କରି ଶର ଭୂମିରେଣ କଣ୍ଟି ।
କିରାତର ଶରେ ସେହି ଧାତା ଶବରଣୀ
ଜୀବନ ହାରିଣ ଢଳି ପଡ଼ିଲେ ଧରଣୀ ।
ବ୍ରହ୍ମାର ଏ ରୀତି ଦେଖି ଶମନ ଦେବତା
ବୋଇଲେ ସୁବିଜ୍ଞ ହୋଇ ପାପ କଲୁ ଧାତା ।
ଏହିପରି ଦଣ୍ଡ ତୋତେ ମୋହର ବିଚାରେ
ଜନମ ହୁଅ ତୁ ଯାଇ ଶବର କୁଳରେ ।
ନାରାଚ ଯେ ପ୍ରହାରିଲେ ତୋର ବାମପାଦ
ନାରାୟଣ ପାଦେ ତୋର ହେଉ ବାଣଭେଦ ।

ପାଣ୍ଡବ ଆଗେ କହନ୍ତି ସୁଦେବଙ୍କ ଶିଷି
କୌଶିକ ବ୍ରହ୍ମା ଜନ୍ମିଲେ ବ୍ୟାଧକୁଳେ ଆସି ।
ସେ ଜାରା କିରାତ କୃଷ୍ଣେ ବାଣଘାତ କରି
ପୁଣି ସେ ପିଣ୍ଡ ଗୋଟିକ ପୂଜିଲା ଆବରି ।
ପୂର୍ବରେ ଏହି ଅନୀତି କରି ମହାତମା
ବ୍ୟାଧ ହୋଇ ଜନମିଲେ କଉଶିକ ବ୍ରହ୍ମା ।
ବେଳେ ବେଳେ ଶରାଘାତ କରେ ସେ ଏମନ୍ତେ
ଏଥିଛନ୍ତି ଦଶସସ୍ର ବର୍ଷ ପରିଯନ୍ତେ ।
ବାଲୁକା ନଦୀ ଏ ଦଶସହସ୍ର ଯୋଜନ
ମହୋଦଧି ସହିତରେ ହୋଇଛି ମିଳନ ।
ପୂର୍ବରେ ବଧକେଶ୍ୱର ପଶ୍ଚିମରେ ନଦୀ
ଉତ୍ତରେ ବଇତରଣୀ ଦକ୍ଷିଣେ ମୌଦଧି ।
ଦ୍ୱାଦଶଯୋଜନ ଏହି ବିଷ୍ଣୁ ଦେବସ୍ଥଳୀ
ବେଳେବେଳେ କ୍ରୀଡ଼ା ଏଥେ କରେ ବନମାଳି
ଯେବେ ତୁ ସ୍ନାନ କରିବୁ ଏଥେ ଧର୍ମସୁତ
ବିଷ୍ଣୁଙ୍କ ଭୁବନ ତୋତେ ହୋଇବ ପ୍ରାପତ ।
ଏ ପାର୍ଶ୍ୱତୀର୍ଥରେ ମାଘ ସ୍ନାନ ଯେହୁ କରି
ଜୀବନ୍ତେ ସୁଖୀ ସେ ମଲେ ଲଭେ ବିଷ୍ଣୁ ପୁରୀ
ମହୋଦଧି ଶ୍ୱେତଗଙ୍ଗା ଏ ରୋହିଣୀ କୁଣ୍ଡ
ଆବର ଇନ୍ଦ୍ରଦ୍ୟୁମନ ତୀର୍ଥ ମାରକଣ୍ଡ ।
କୋଟିଏକ ତୀର୍ଥକଲେ ଯେ ଫଳ ଲଭନ୍ତି
ମାଘେ ଏଥି ସ୍ନାନ କଲେ ସେ ଫଳ ପାଆନ୍ତି ।
ଯଦ୍ୟପି ମାସକ କରି ନ ପାରିବୁ ସ୍ନାନ
କରିବୁ ମାସର ଆଦ୍ୟ ପ୍ରାନ୍ତ ଦୁଇଦିନ ।
ଦୁଇଦିନ ସ୍ନାନ ଯେବେ କରି ନ ପାରିବୁ
ମାଘମାସେ ଦିନେ ସ୍ନାନ ଏଥେ କର ବାବୁ ।
ଅନ୍ୟସ୍ଥାନେ କୋଟିବାର ସ୍ନାନଫଳ ଯେତେ
ଏଥି ଏକଦିନେ ସ୍ନାନକଲେ ଫଳ ତେତେ ।
ଏକ ବଟ ନିକଟରେ ପଞ୍ଚବଟ ଅଛି
ଏକମନେ ଶୁଣ ତୁ ହୋ କୁନ୍ତୀଦେବୀ ବସି ।
ଶ୍ୱେତନାମେ ସତ୍ୟଯୁଗେ ଥିଲେ ମହାରାଜା
ସେ ମାଧବ ପ୍ରତିମାକୁ କରେ ଏଥେଁ ପୂଜା ।
ଏ ମାଧବତୀର୍ଥେ ସ୍ନାନ କଲେ ଏକଦିନ
ବ୍ରହ୍ମା ଇନ୍ଦ୍ରପଦ ତାକୁ ନୁହଇ ସମାନ ।
ତାକୁ ଦେଖି ଭୟ କଲେ ଚିତ୍ତେ ନାଶକର
ସେ ପ୍ରତିମା ଗୋପ୍ୟହେଲା ଏ କୁଣ୍ଡ ମଧର ।
ବାଞ୍ଛାବଟ ରହିଛି ସେ ଶ୍ୱେତଗଙ୍ଗା କୂଳେ
ଧାତା ଅନ୍ତରୀକ୍ଷେ ତାହା କଲା ବୃଦ୍ଧକାଳେ ।
ବାବୁ ଇନ୍ଦ୍ରଦ୍ୟୁମ୍ନ ନାମେ ଏକ ନରପତି
ସେ ମହାରାଜା ପ୍ରାସାଦେ ତୋଳାଇବ ଏଥି ।

ଶୁକମୁନି ମୁଖୁ ଶୁଣି ପୁରାଣର ବାଣୀ
ଜାରା ବ୍ୟାଧ ବାଣେ ନାଶ ଯିବେ ଚକ୍ରପାଣି ।
ଏହାଶୁଣି ପଚାରିଲେ ଧର୍ମ ନୃପବର
ସେହୁ ମୁନି ମାରକଣ୍ଡ କପିଳ ଶରୀର ।
କହିଲେ ସେ ମୁନି ଜାରା ଶବର ଚରିତ
ସତ୍ୟଯୁଗେ କଉଶିକ ବ୍ରହ୍ମା ଯେ ନିୟତ ।
ତ୍ରେତୟାଯୁଗରେ ବାଳିସୁତ ରୂପ ହୋଇ
ଦ୍ୱାପରୁଯଗେ ଶବରୀ ଉଦରେ ଜନ୍ମଇ ।
ତିନିଜନ୍ମର ପାଇଲା ସେହି ନିଜ ଦେହ
ତୋହର ମୁଖରୁ ଶୁଣି ତୁଟିଲା ସନ୍ଦେହ ।
ଅଗସ୍ତି କହନ୍ତି ଶୁଣ ଆହେ ମନୁରାୟ
ଯୁଧିଷ୍ଠି ଆଗେ କହନ୍ତି ସୁଦେବ ତନୟ ।
ଭବିଷ୍ୟତ ବର୍ତ୍ତମାନ ଜାଣେ ଯେଉଁ ମୁନି
ତାର ମୁଖୁ ଶୁଣିକରି ହେଲି ମୁହିଁ ଜ୍ଞାନୀ ।
କହନ୍ତି ଯେ ମାରକଣ୍ଡ ଯୁଧିଷ୍ଠି ଅଗ୍ରତ
ଇନ୍ଦ୍ରଦ୍ୟୁମ୍ନ ବୋଲି ଏକ ରାଜାଏ ବିଖ୍ୟାତ ।
ସେ ରାଜାର ଉଦ୍ଦେଶ୍ୟରେ କରି ତାଙ୍କ ମତି
ଶୁଣ ତୁ ଏକ ମନରେ ବ୍ୟାସଙ୍କର ନୀତି ।
ଜାରାର ବାଣରେ ନାଶଯିବେ ଚକ୍ରପାଣି
ଆପଣେ ଦେହ ଛାଡ଼ିବେ ଦେବ ଯଦୁମଣି ।
ସେ ପିଣ୍ଡକୁ ଅରଜୁନ କରନ୍ତେ ଦହନ
ଆକାଶେ ଥାଇ କହିଲେ ତାଙ୍କୁ ଦେବଗଣ ।
ତୁ ଏ ଶବ ଦହନ ନ କର ଧନଞ୍ଜୟେ
କଳିଯୁଗେ ପାଇବେ ଏ ପୂଜା ଏହି ଦେହେ ।
ଅଗ୍ନିରୁ ଅର୍ଜୁନ କାଢ଼ି ପକାଇବ ଜଳେ
ସେ ପିଣ୍ଡ ଲାଗିବ ନୀଳସୁନ୍ଦର ଶଇଳେ ।
ଜାରା ବ୍ୟାଧକୁ ପ୍ରସନ୍ନ ହେବେ ଦେବରାଜା
ଜାରାବ୍ୟାଧ କରିବ ତ ସେ ପିଣ୍ଡକୁ ପୂଜା ।
ସେହି ଶବରକୁ ପ୍ରଭୁ ଦେବେ ଏ ଆଦେଶ
କୌଣସିଠାରେ ଆମ୍ଭଙ୍କୁ ନ କର ପ୍ରକାଶ ।
କାହାରି ଆଗେ ପ୍ରକାଶ ଯେବେ ନ କରିବୁ
ତୋହରି ହସ୍ତରେ ଆମ୍ଭେ ଭୋଗ ପାଉଥିବୁ ।
ଏ କଥା ପ୍ରକାଶ ଯେବେ କରିବୁ ଶବରା
ପ୍ରାଣେ ନ ମରି ହୋଇବୁ ତୁହି ଦରମରା ।
ଏହା ଜାଣିବେ ଲଳିତା ତୋହର ଘରଣୀ
ତୁମ୍ଭ ଦୁଇଜଣ ଛଡ଼ା ଅନ୍ୟ କେ ନ ଜାଣି ।
ଶୁଣି ଭକ୍ତିରେ ରଖିଲା ତାକୁ ବନମଧେ
ପଞ୍ଚଷଠି ବର୍ଷ ତାଙ୍କୁ ପୂଜାକଲା ସଧେ ।
ସୋମବଂଶେ ଥିଲା ଗାଲମାଧବ ନୃପତି
ଇନ୍ଦ୍ରଦ୍ୟୁମନ ନାମରେ ତାହାର ସନ୍ତତି ।

ଗଣ୍ଡକେରୀ ନାମରେ ଯେ ତାର ମହାଦେଈ
ଶାକଲ୍ୟ ଦ୍ୱୀପରେ ଅଟେ ନୃପଇନ୍ଦ୍ର ସେହି ।
ଚଣ୍ଡମୁନି କହିଲେକ କୃଷ୍ଣ ନାଶ କଥା
ସେ ପିଣ୍ଡ ପାଇବା ପାଇଁ ରାଜା କରେ ଚିନ୍ତା ।
ଚଣ୍ଡଙ୍କର ପୁତ୍ର ନାମ ଯେ ବେଦଶ୍ରବଣ
ବସୁକର ଯଦୁବିପ୍ର ଗରୁଡ଼ ବ୍ରାହ୍ମଣ ।
ଡାକି ଚୌଦିଗେ ପେଷିବ ରାଜା କରି ଦୂତ
ବୁଲିବେ ଅନେକ ତୀର୍ଥେ ଆବର ସମସ୍ତ ।
ଯଦୁବିପ୍ର ବୋଲିକରି କେଉଁ ବିପ୍ରବର
ସେ ବିପ୍ର ଯାଇ ଭେଟିବ ଶ୍ରୀ ନୀଳକନ୍ଦର ।
ଇନ୍ଦ୍ରଦ୍ୟୁମନ କୂଳରେ ଯିବ ବୁଲି ବୁଲି
ଉତ୍ତର ଦିଗେ ଦେଖିବ ଶବରର ପଲ୍ଲୀ ।
ତହୁଁ ସେ ଶବର ଗ୍ରାମେ ପ୍ରବେଶ ହୋଇବ
ଏକ ଶବରଣୀକୁ ସେ ପଥରେ ଦେଖିବ ।
କ୍ଷୁଧାର୍ତ୍ତ ହୋଇଣ ତାକୁ ଆଶୀର୍ବାଦ କରି
ବୋଲିବ ସେ ଖାଇବାକୁ ଦିଅ ତୁ ଶବରି ।
ମୋର ସ୍ୱାମୀଘରେ ନାହିଁ ବୋଲିବ ସେ ତାକୁ
ଅରଣ୍ୟେ ଯାଇଅଛନ୍ତି ମୃଗ ମାରିବାକୁ ।
ଏହା କହି କିରାତୁଣୀ ବ୍ରାହ୍ମଣକୁ ନେବ
ହାଣ୍ଡି ତଣ୍ଡୁଳ ପରିବା ଜାଳ ଯୋଗାଇବ ।
ହାଣ୍ଡି ତଣ୍ଡୁଳ ପରିବା ନେଇଣ ବ୍ରାହ୍ମଣ
ସଉରୀ ବିଧାନେ ରାନ୍ଧି କରିବ ଭୋଜନ ।
ଶବର ପ୍ରବେଶ ହେବ ମୃଗଭାର ଘେନି
ତାକୁ କଲ୍ୟାଣ କରିବେ ଦ୍ୱିଜବର ପୁଣି ।
ଶବର ପୁଚ୍ଛିବ ଦ୍ୱିଜ କାହିଁ ରୁହ ତୁମ୍ଭେ
ଦ୍ୱିଜ ବୋଲିବ ଶାକଲ୍ୟ ଦେଶବାସୀ ଆମ୍ଭେ ।
ଭିକ୍ଷାଶୀ ହୋଇଣ ଆମ୍ଭେ ବୁଲୁ ଅହର୍ନିଶି
ତୋର ଭାର୍ଯ୍ୟାକୁ ପ୍ରାର୍ଥନା କଲୁ ଏଥେ ଆସି ।
ଅନେକ ଭକତି ତାଙ୍କୁ କରିବ କିରାତ
ଏମନ୍ତେ ବିପ୍ର ରହିବେ ତହିଁ ମାସ ସାତ ।
ବ୍ରାହ୍ମଣର ନାମ ଯଦୁ ବ୍ୟାଧ ନାମ ଜାରା
ଆଦ୍ୟକ୍ଷର ଏକ ଯୋଗୁ ମଇତ୍ର ଶବରା ।
ଦିନେ ବିପ୍ର ପଚାରିବେ ଶୁଣ ଗୋ ମିତଣୀ
ନିତି କେଉଁଠାକୁ ମିତ୍ର ଯାନ୍ତି ଘେନି ପାଣି ।
ଶବରୀ ବୋଲିବ ତୁ ହେ ଶୁଣିମା ପଣ୍ଡାଏ
ଗୁପ୍ତେ ଅଛନ୍ତି ଆମ୍ଭର ଶିଳା ଦେବତାଏ ।
ଦ୍ୱିଜବୋଲିବ ଦେଖାଅ ମୋତେ ସେ ଦେବତା
ଶବରୀ ବୋଲିବ ସେ ତ ବଡ଼ ଗୁପ୍ତକଥା ।
ଶବରକୁ ବୋଲିବ ସେ ଯଦୁ ଦ୍ୱିଜବର
ମୋତେ ମିତ ଦେଖାଇବ ଦେବତା ତୁମ୍ଭର ।
ଶବର ବୋଲିବ ମିତ ବଡ଼ ଗୁପ୍ତକଥା
ଆନେ କାହାକୁ ଦେଖାଇ ନ ପାରିବି ମୁଁ ତା ।
ଶବରୀ ବୋଲିବ ଧର୍ମ ସାକ୍ଷୀ ଯେ ଆମ୍ଭର
କଷ୍ଟ ନ ଦେଇ ଦେଖାଅ ଏହାଙ୍କୁ ଠାକୁର ।
ତୁଳ ଶୁକଳ ଅଷ୍ଟମୀ ତିଥି ଗୁରୁବାର
ରୋହିଣୀ ନକ୍ଷତ୍ର ପୂର୍ଣ୍ଣ ଭୋଗ ସେ ଦିନର ।
ବାଳବ ନାମେ କରଣ ଶୁଭ ନାମେ ଯୋଗ
ସେ ଦିନ କିରାତ କରି ବିପ୍ରକୁ ଯେ ସଙ୍ଗ ।
ବିପ୍ରର ନେତ୍ରେ ବାନ୍ଧିବ ସେ ଅନ୍ଧପଟଳ
ନିଅନ୍ତେ ପଥେ ବୁଣିବ ବିପ୍ର କୃଷ୍ଣତିଳ ।
ଚନ୍ଦନ ବନରେ ବଟ ପାଦପର ତଳେ
ଦେଖାଇବ ସେ ମୂର୍ତ୍ତିକୁ ଫେଡ଼ିଣ ପଟଳେ ।
ଦେଖିଣ ଯଦୁ ବ୍ରାହ୍ମଣ ଚରଣେ ପ୍ରଣମି
ବୋଲିବ ବିଜେ କରିଛ ଏଥେ ଦେବ ସ୍ୱାମୀ ।
ଫେରିଲାବେଳେ ପଟଳ ବାନ୍ଧିବ କିରାତ
ଆପଣାର ଗୃହେ ଯାଇ ହେବ ଉପଗତ ।
ବୋଲିବ ତ କିଛିଦିନ ଅନ୍ତେ ଦ୍ୱିଜବର
ସାତମାସ ହେଲା ମିତ ତ୍ୟାଗକଲି ଘର ।
ଏବେ ଯାଉଅଛି ମିତ ମୋହର ଭବନ
ଏତେ କହି ଦ୍ୱିଜବର କରିବ ଗମନ ।
ଇନ୍ଦ୍ରଦ୍ୟୁମ୍ନ ରାଜନ ଆସ୍ଥାନେ ବିଜୟେ
ଯଦୁବିପ୍ର ପ୍ରବେଶିବ ଏମନ୍ତ ସମୟେ ।
ଦାରୁବ୍ରହ୍ମ ମୂରତି ମୁଁ ଦେଖିଲି ବୋଲିବ
ଯମନିକ ବନେ ଏବେ ଚାଲନ୍ତୁ ଭୋଦେବ ।
ଶୁଣିଣ ରାଜନ ତହୁଁ ଅମାତ୍ୟଙ୍କ ସାଥେ
ପ୍ରବେଶ ହୋଇବ ଯାଇ ଯମନିକ ତୀର୍ଥେ ।
ଯଦୁବିପ୍ର ସେ ଶବରପଲ୍ଲୀ ଦେଖାଇବ
କିରାତକୁ ଦେଖି ବିପ୍ର ରାଜାଙ୍କୁ ବୋଲିବ ।
ଭୋ ଦେବ ଏହି କିରାତ ପୂଜଇ ପାଷାଣ
ଗୁପତ କରି ଏହାକୁ ପଚାର ରାଜନ ।
ରାଜା ବୋଲିବେ କିରାତ ଜୀବନ ତୋ ସାଧୁ
ଆମ୍ଭଙ୍କୁ ଦେବ ଦର୍ଶନ କରା ଦୀନବନ୍ଧୁ ।
ଶବର ବୋଲିବ ମୁହିଁ ବନଚର ଜାତି
କିଏ ଜାଣଇ ସେ ହରି କେମନ୍ତ ମୂରତି ।
ଶୁଣି ରାଜନ ବୋଲିବ ବହୁ କୋପକରି
ତୋହର କୁଟୁମ୍ବଯାକ ପକାଇବ ମାରି ।
ବ୍ରାହ୍ମଣ ଯେଉଁ ବାଟରେ ତିଳ ବୁଣିଥିବ
ସେହିଗଛ ଦେଖି ଦେଖି ନୃପ ଘେନିଯିବ ।
ଯାଇ ମିଳିବ ରାଜନ ବଟର ମୂଳରେ
ଦେଖିବ ଦିଅଁ ନାହାନ୍ତି ସେ ବୃକ୍ଷ ତଳରେ ।

ବ୍ରାହ୍ମଣ ବୋଲିବ ଦିଅଁ ଥିଲେ ଏଥି ରହି
ସମସ୍ତ ସଙ୍କେତମାନ ଦେଖାଇବ ତହିଁ ।
କିରାତକୁ ନରପତି କୋପରେ ବୋଲିବ
ରାତି ପାହିଲେ ତୋ ଶିର ଛେଦନ ହୋଇବ ।
କାହିଁ ଗୋପ୍ୟକଲୁ ତୁହି ନାରାୟଣ ମୂର୍ତ୍ତି
ଦେଖାଇଲେ ହେବ ଜାଣ ବହୁତ ପୀରତି ।
ରାତ୍ରେ ଶ୍ରୀକୃଷ୍ଣ ରାଜାଙ୍କୁ ସ୍ୱପନେ କହିବେ
ଏ ଜାରା ଆମ୍ଭର ସଖା ନ ମାରିବ ତୁମ୍ଭେ ।
ତୁ ତାହାକୁ ଦୁଃଖ ଏବେ ନ ଦିଅ ରାଜନ
ଅନେକ ପୂଜା ପାଇଲି ତାଠାରୁ ମୁଁ ଜାଣ ।
ରଜନୀ ପ୍ରଭାତେ ଯାଅ ବାରାନିଧି କୂଳେ
ଦାରୁରୂପେ ଲାଗିଅଛି ଦେଖ ମହୀପାଳେ ।
ସ୍ୱପନ ତେଜି ଉଠିବ ରାଜା ଧାଡିକାରେ
ନିଜେ ବିଜୟ କରିବ ସମୁଦ୍ର କୂଳରେ ।
ଦେଖିବ ତହିଁ ଦାରୁଏ ଲୋହିତ ବରନ
ଆଣି ନ ପାରିବ ତାକୁ ରାଜ୍ୟର ଯେ ସୈନ୍ୟ ।
ଜାରା ନାମରେ ଶବର ଯଦୁ ଯେ ବ୍ରାହ୍ମଣ
ଏ ଦୁହେଁ ଧରନ୍ତେ ଦାରୁ ଉଠିବ ତକ୍ଷଣ ।
ଦକ୍ଷିଣରେ କିରାତ ଯେ ବାମେ ବିପ୍ର ଧରି
ନେଇଣ ଉଭା କରିବେ ତାଙ୍କୁ ନୀଳଗିରି ।
ଏକବିଂଶ ଦଣ୍ଡୋତ୍ସର୍ଗ ପ୍ରତି ପାଞ୍ଚଦଣ୍ଡ
ଦେଖି ରାଜା ବୋଲିବ କେ ସୃଜିବ ଏ ପିଣ୍ଡ ।
ଶୁଣବାବୁ ଯୁଧିଷ୍ଠିର ବୋଲନ୍ତି ମାର୍କଣ୍ଡ
ସେ ଦାରୁ ପ୍ରତ୍ୟକ୍ଷେ ଜାଣ ନାରାୟଣ ପିଣ୍ଡ ।
ତହୁଁ ସେ ରାଜା ଭାଳିବ ନିଜ ହୃଦଗତେ
ବୃଦ୍ଧ ବିନ୍ଧାଣୀ ଗୋଟିଏ ମିଳିବ ଅଭୂତେ ।
କୁଠାର ବାରସି ଆଉ ନିହାଣ ପିଟୁଣି
ବୋଲିବ ଏହାକୁ ମୁହିଁ ଦେବଙ୍କ ନିର୍ମାଣି ।
ରାଜା ବୋଲିବ ଦେଉଳେ ପଶ ବିଶ୍ୱକର୍ମା
ଏ ଦେବ ଦାରୁକୁ ଧରି ନିଅ ମହାତମା ।
ବିଶ୍ୱକର୍ମାହିଁ ଧରିବ ବଳଙ୍କ ସହିତେ
ଟୋଳି ନ ପାରି ବୋଲିବେ ଛାଡ଼ ହେ ସମସ୍ତେ
ଜାରା ଆଉ ଯଦୁବିପ୍ର ଆସନ୍ତୁ ଦ୍ୱିଜଣ
ଏ ଦୁହେଁ ଧଇଲେ ଦାରୁ ଉଠିବ ବହନ ।
ଶୁଣି ଜାରା ବିପ୍ର ଦୁହେଁ ଦାରୁ ଉଠାଇବେ
ଦାରୁକୁ ଘେନି ଦେଉଳ ଭିତରେ ରଖିବେ ।
ଜାରା ଶବର ବ୍ରାହ୍ମଣ ଥିବ ତା ପାଶରେ
ବିନ୍ଧାଣି ଗଢ଼ିବେ ତହୁଁ ନିହାଣ ବାସିରେ ।
ବିଶେଷେ ଅଟଇ ଜାଣ ଅନ୍ଧକାର ରାତି
ଏକ ଦାରୁରେ ଗଢ଼ିବେ ତିନୋଟି ମୂରତି ।

ଇନ୍ଦ୍ରଦ୍ୟୁମ୍ନ ରାଜା ବସି ଭାଳିବେ ବିଷାଦେ
କିଛି ଠୁକୁଠୁକୁ ଶବ୍ଦ ନ ଶୁଭନ୍ତେ ହାଦେ ।
ଆହେ ବଳମାନେ ତୁମ୍ଭେ ଫେଡ଼ କବାଟକୁ
କି କରେ ବୃଦ୍ଧ ବିନ୍ଧାଣି ଦେଖିବା ତାହାକୁ ।
ସେ ବୃଦ୍ଧ ବିନ୍ଧାଣି ତହିଁ ମଲା କିବା ଗଲା
ପ୍ରତିମା ଗଠନ କାର୍ଯ୍ୟ କେତେଦୂର ହେଲା ।
ଏତେ ଭାଳି ନରପତି ଫେଇବ କବାଟ
କିରାତ ବିପ୍ର ଦୁହିଙ୍କୁ ପାଇବ ସେ ଭେଟ ।
ଦେଖିବ ସେ କଞ୍ଚାଦାରୁ ତିନୋଟି ମୂରତି
ଶୁକଳ କୃଷ୍ଣ କୁଙ୍କୁମ ଦିଶେ ତାଙ୍କ ଜ୍ୟୋତି ।
ସତ୍ୱ ରଜ ତମ ତାଙ୍କ ଦେହେ ବିରାଜଇ
ଗଣ୍ଡସ୍ଥଳ ଅଙ୍ଗୁଷ୍ଠି ଯେ ଚରଣହିଁ ନାହିଁ ।
ନାସା କର୍ଣ୍ଣ ତାହାଙ୍କର କିଛି ନ ଦିଶଇ
ବାହୁ ଦୁଇଭୁଜ ବକ୍ଷସ୍ଥଳୁ ବିକାଶଇ ।
ପୀତ କୁଙ୍କୁମ ବରନ ସେହି ବ୍ରହ୍ମମୂର୍ତ୍ତି
ଡାହାଣେ ଶୁକଳବର୍ଣ୍ଣ ମହାଦେବ ଜ୍ୟୋତି ।
ରୂପରେ ତା ନାରାୟଣ ବର୍ଣ୍ଣ ଅଟେ କଳା
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତିନିଦେବ ମେଳା ।
ବଳଭଦ୍ର ସୁଭଦ୍ରା ଏ କୃଷ୍ଣ ତିନିରୂପ
ବଉଦ୍ଧରୂପରେ ହେଲା ଏମନ୍ତ ସ୍ୱରୂପ ।
ତାହା ଦେଖି ନରପତି ବିସ୍ମୟେ ବସିବ
ଏମନ୍ତ ମୂରତି କିପାଁ ହୋଇଲା ଭାବିବ ।
ଜାରା ଶବର ବୋଇଲା ଶୁଣ ଇନ୍ଦ୍ରଦ୍ୟୁମ୍ନ
ଆଜ ଦ୍ୱାର ଫେଡ଼ିବାରୁ ନୋହିଲା ଏମାନ ।
ଦେଖିଥାନ୍ତୁ କର ପଦ ନାସା କର୍ଣ୍ଣ ଆଖି
କଳିକାଳ ଜନେ ଦେଖି ହେଉଥାନ୍ତେ ସୁଖୀ ।
ଯେ ପରମହଂସରୂପେ କଳ୍ପେ କଳ୍ପେ ଭ୍ରମି
ପୁନଃପୁନଃ ଅବତାରେ ହୁଅନ୍ତି ମର୍ତ୍ତ୍ୟଗାମୀ ।
ଏ ନୀଳଗିରିରେ ବିଜେ ଦଶସହସ୍ର ଘାନ୍ତି
ଏ ତିନି ମୂର୍ତ୍ତିକି ଭକ୍ତେ ହୁଅନ୍ତେ ଚିନ୍ତୁଥାନ୍ତି ।
ଶୁଣିଲୁଟିକି ଯୁଧିଷ୍ଠି ନୀଳଗିରି କଥା
ଇନ୍ଦ୍ରଦ୍ୟୁମନ ଚରିତ ଏମନ୍ତ ବ୍ୟବସ୍ଥା ।
ସେ ନୀଳସୁନ୍ଦର ନାଥ ଚରଣେ ମୋ ସେବା
ଏ ଭବସାଗରୁ ତାରି ଗତି ମୋତେ ଦେବା ।
ନିତ୍ୟ ଭକତି ମୋହର ରାମକୃଷ୍ଣ ପାଦେ
କଳିକାଳ ବଞ୍ଚିଲି ମୁଁ ତାଙ୍କ ପରସାଦେ ।
ତୁଳସୀବଲ୍ଲଭ ପାଦେ ସେବା ମୋର ନିତ୍ୟେ
ବୋଲନ୍ତି ଶୁଦ୍ର ଶାରଳା ଦାସ ଜନ ହିତେ ।
କୃପାଜଳ ନନ୍ଦିନୀ ଗୋ ଦେବୀ ସରସ୍ୱତୀ
କଳିକାଳଧ୍ୱଂସିନୀ ମା ଶାରଳା ମୂରତି ।

ସାଗର ପରାୟେ ଅଟେ ଏ ମହାଭାରତ
ଲେଖନ୍ତେଣ ନ ସରଇ ଏହି ମହାଗ୍ରନ୍ଥ ।
ଗଣନ୍ତେ ନ ସରେ ଯେହ୍ନେ ସମୁଦ୍ରର ବାଲି
ଏଥିକି ମୁଁ କ୍ଷୁଦ୍ରନର ନ ପାରିବି କଳି ।
କହନ୍ତେଣ ନ ସରଇ ଏ ଅସଂଖ୍ୟ କଥା
ମୋ ହୃଦରେ ପ୍ରକାଶନ୍ତି ଶରଳ ଦୁହିତା ।
ପ୍ରସନ୍ନ ହୋଇଲେ ମୋତେ ଶ୍ରୀ ଶାରଳା ଦେବୀ
ସେ ଯାହା କୁହନ୍ତି ତାହା ଲେଖି ହେଲି କବି ।
ନ ପଢ଼ିଣ ନ ଦେଖିଣ ଏହା ମୁଁ ଜାଣିଲି
ଶାରଳାଙ୍କ ପ୍ରସନ୍ନରେ ଭାରତ କହିଲି ।
ଆହେ ବୁଧଜନେ ତୁମ୍ଭେ ଅଟ ମହାଭାଗ
ବେଦଶାସ୍ତ୍ରେ ସୁପଣ୍ଡିତ ସୁଗୁଣେ ସର୍ବଜ୍ଞ ।
ବିଷ୍ଣୁ ଅଂଶେ ଜାତ ହେଲେ ହୁଅଇ ନୃପତି
ହରଅଂଶେ ଜନମିଲେ ହୁଏ ଧନପତି ।
ଗନ୍ଧର୍ବ ଅଂଶେ ଜନ୍ମିଲେ ପ୍ରାପ୍ତ ବାଦ୍ୟ ଗୀତ
ବିଶ୍ୱକର୍ମା ଅଂଶେ ହୁଏ ଗଠନେ ପଣ୍ଡିତ ।
ପବନ ଅଂଶେ ଜନ୍ମିଲେ ହୁଏ ବଳବାନ
ଇନ୍ଦ୍ର ଅଂଶେ ଜନମିଲେ ଲୋକେ ପାଏ ମାନ୍ୟ
ବ୍ରହ୍ମା ଅଂଶେ ଜାତ ହେଲେ ବେଦବିଦ୍ୟା ପ୍ରାପ୍ତ
ନରଅଂଶେ ଜାତ ହେଲେ ରୋଗ ହୁଏ ଗ୍ରସ୍ତ ।
ଅଗ୍ନିଅଂଶେ ଜାତ ହେଲେ ମହାବାକ୍ୟ ସାଧି
ଭୋଜଅଂଶେ ଜାତ ହେଲେ କର୍ମହିଁ ପ୍ରସିଦ୍ଧି ।
ବିଦ୍ୟାଧର ଅଂଶେ ହେଲେ ତାଣ୍ଡବରେ ରସି
ଅସୁର ଅଂଶେ ଜନ୍ମିଲେ ଅନୀତି ପ୍ରକାଶି ।
ବିନାୟକ ଅଂଶେ ହେଲେ ହୁଏ ବିଦ୍ୟାବୁଦ୍ଧି
ବୃହସ୍ପତି ଅଂଶେ ହେଲେ ଜ୍ୟୋତିଷକୁ ସାଧି ।
କୁବେର ଅଂଶେ ଜନ୍ମିଲେ ପ୍ରାପ୍ତ ବହୁନିଧି
ସହଦେବ ଅଂଶେ ହେଲେ ପ୍ରାପ୍ତ ନାନାବୁଦ୍ଧି ।
ନକୁଳ ଅଂଶରେ ଅଶ୍ୱ ଲକ୍ଷଣ ଦିଶଇ
ଯୋଗାଙ୍ଗେ ଜାତ ହୋଇଲେ ମହାଯୋଗୀ ହୋଇ
ଯମଅଂଶେ ଜାତ ହେଲେ ନିତ୍ୟ ଅସନ୍ତୋଷ
ପ୍ରହ୍ଲାଦ ଅଂଶେ ଜନ୍ମିଲେ ବୈଷ୍ଣବ ଅବଶ୍ୟ ।
ମୁନି ଅଂଶରେ ଜନ୍ମିଲେ ବାକ୍ୟ ପାରେ କହି
ନ ପଢ଼ିଣ ଏତେ ବିଦ୍ୟା ସାଧିଲଇଁ ମୁହିଁ ।
ଝଙ୍କଡ଼ବାସିନୀ ସିଦ୍ଧ ଶାରଳା ଯା ନାମ
ସେହି ମୋତେ ଶିକ୍ଷା ଦେଲେ ଧର୍ମ ମୋକ୍ଷ କାମ
ସର୍ବଦା ଦାନୀ ଅଟନ୍ତି ସେହି ମହାମାୟୀ
ପର ଦୁଃଖକୁ ଦେଖିଣ ନ ପାରନ୍ତି ସହି ।
ତାହାଙ୍କୁ ଭକତି ମୁହିଁ କଲଇଁ ଏ ଜନ୍ମେ
ବାଳିକା ରୂପେ କହିଲେ ସେହି ମୋତେ ସ୍ୱପ୍ନେ
ପ୍ରସନ୍ନା ଅପର୍ଣ୍ଣା ସେହି ଅଭୟା ଭବାନୀ
ତାହାଙ୍କ ଆଜ୍ଞାରେ ମୁହିଁ ହେଲି ଶୂଦ୍ରମୁନି ।



## ସଂକ୍ଷିପ୍ତ ରାମାୟଣ

ଶୁଣ ଶୁଣ ସୁଜ୍ଞଜନେ ମନ କର୍ଣ୍ଣଦେଇ
ଅରଣ୍ୟ ପର୍ବର କଥା ଅପୂର୍ବ ଅଟଇ ।
ମହାବ୍ରହ୍ମବେତ୍ତା ଋଷି ଅଗସ୍ତି ବକତା
ବିଲଙ୍କ ଦେଶର ରାଜା ଅଟନ୍ତି ଯେ ଶ୍ରୋତା ।
ମାରକଣ୍ଡ ଭକ୍ତି ଧର୍ମପୁରାଣ ପ୍ରସିଦ୍ଧି
ଯୁଧିଷ୍ଠିର ମାଘସ୍ନାନ କଲେ ମହୋଦଧି ।
ଚଳନ୍ତି ଧର୍ମନନ୍ଦନ ମହୋଦଧି କୂଳେ
ଗହନବନ ଦେଖିଲେ ପଶ୍ଚିମ କୋଶଳେ ।
କରଞ୍ଜ ବନକୁ ଜିଣି ଚଳିଲେ ବହନ
ଉତ୍ତରବାହିନୀ କାମଭଦ୍ରା ନଦୀ ନାମ ।
ଏହି ପଞ୍ଚବଟି ବନ ମାର୍କଣ୍ଡ ବୋଇଲେ
ଋଷ୍ୟଶୃଙ୍ଗ ମୁନି ଏଥେ ଯଜ୍ଞ କରିଥିଲେ ।
ବାବୁ ଦଶରଥ ରାଜା ଅପୁତ୍ରକ ଥିଲା
ଋଷ୍ୟଶୃଙ୍ଗ ଯୋଗୁଁ ଚାରିପୁତ୍ର ସେ ପାଇଲା ।
ଯୁଧିଷ୍ଠିର ପୁଚ୍ଛା କଲେ ଦଶରଥ ରାଜା
ସାତଶ ପଚାଶ ଥିଲେ ତାହାର ଭାରିଯା ।
ସେହି ରାଜା ଅପୁତ୍ରକ ହୋଇଲା କିମର୍ଥେ
ଏ କଥା ସଂକ୍ଷେପି ମୁନି କହିବାକ ମୋତେ ।
ମାର୍କଣ୍ଡ ବୋଇଲେ ଶୁଣ ଯୁଧିଷ୍ଠିର ରାଣ
ଦଶରଥ ଅପୁତ୍ରକ ଥିଲା ଯେ କାରଣ ।
ଦଶରଥ ରାଜାତୁଲେ ବାସବ ମଇତ୍ର
ଶନି ପ୍ରବେଶ ହୋଇଲେ ରୋହିଣୀ ନକ୍ଷତ୍ର ।
ରୋହିଣୀ ବୃଷରାଶି ଯେ ସେ ଦଶରଥର
ରୋହିଣୀ ବୃଷଭ ରାଶି ପୁଣି ଇନ୍ଦ୍ରଙ୍କର ।
ସେ କାରଣୁ ବହୁପ୍ରୀତି ଏ ଦୁହିଙ୍କ ଜାଣ
ନକ୍ଷତ୍ର ବନ୍ଧାପନା ଯେ କରେ ସୁରରାଣ ।
ମାତଳୀକୁ ରାଇ ଆଜ୍ଞାଦେଲେ ସୁରପତି
ରଥ ଘେନିଣ ଅଯୋଧ୍ୟା ଯାଅ ହେ ଝଟତି ।
ଏଠା ଉତ୍ସବ କହିବ ମଇତ୍ରର ଆଗେ
ଦଶରଥ ରାଜାଙ୍କୁ ତୁ ଘେନି ଆସ ବେଗେ ।
ଆଜ୍ଞା ପାଇଣ ମାତଳି ବହନରେ ଗଲା
ଦଶରଥ ନରେଶକୁ ବାରତା କହିଲା ।
କଇକେୟୀଙ୍କୁ କହିଲେ ଯାଇ ମହୀପାଳ
ତୁମ୍ଭେ ରାଜ୍ୟ ସମ୍ଭାଳ ମୁଁ ଯିବି ସୁରଆଳ ।
ଦଶରଥ ବିମାନରେ ଆରୋହିଣ ଗଲେ
ଅମର ଭୁବନେ ଯାଇ ପ୍ରବେଶ ହୋଇଲେ ।

ଦଶରଥଙ୍କୁ ବାସବ କଲେ ଗଉରବ
ଅମରପୁରେ ଲାଗିଲା ଆନନ୍ଦ ଉତ୍ସବ ।
ଅମରେ ସେ ଦଶରଥ ବହୁମାନ୍ୟ ପାଇ
ଆଦର ପାଇଣ ରାଜା ଚାରିଦିନ ରହି ।
ଗମନଦିନୁ ରହିଲେ ରାଜା ପାଞ୍ଚଦିନ
ଏଣେ ଯେ କୈକେୟୀ ରାଣୀ କଲେ ଋତୁସ୍ନାନ
ମନ୍ଥରାକୁ ହକାରିଣ ବୋଇଲେ କୈକେୟୀ
ସ୍ୱର୍ଗପୁରୁ ରାଜାଙ୍କୁ ତୁ ଘେନିଆସ ଯାଇ ।
ଶୁଦ୍ଧସ୍ନାନ କାଳେ ସ୍ୱାମୀ ନ ଥିଲେ ପାଶରେ
ବହୁତ ପାତକ ହୁଏ ଲେଖେ ପୁରାଣରେ ।
କୈକେୟୀଙ୍କ ବଚନରେ ମନ୍ଥରା ଚଳିଲା
ଅମର ଭୁବନେ ଯାଇ ପ୍ରବେଶ ହୋଇଲା ।
ଦଶରଥ ଦେବସଭା ମଧ୍ୟେ ବସିଥିଲେ
ମନ୍ଥରାକୁ ଦେଖି ଦୂରୁ ଆସ୍ଥାନୁ ଉଠିଲେ ।
ସନ୍ନିଧେ ଯାଇ ବାରତା କହିଲାକ ଦାସୀ
ପାକାସ୍ୱରଣ କୈକେୟୀ ରାଣୀ ଚାରୁହଂସୀ ।
ପଞ୍ଚମ ଦିନରେ ଦେବୀ କଲେ ଶୁଦ୍ଧସ୍ନାନ
ଇନ୍ଦ୍ରଙ୍କୁ କହିଣ ଦେବ କରନ୍ତୁ ଗମନ ।
ବାସବ ଆଗେ କହିଲେ ଯାଇ ଦଶରଥ
ଅଯୋଧ୍ୟାକୁ ଯିବି ଆଜ୍ଞା ଦିଅ ସୁରନାଥ ।
ଶୁଣିକରି ଆନନ୍ଦିତ ହେଲେ ମଘବାନ
ବହୁ ସମ୍ମାନେ ବିଦାୟ କଲେକ ବହନ ।
ବିମାନେ ବସିଲେ ରାଜା ହୋଇଣ ଆନନ୍ଦ
ଭୋଳେ ଲମ୍ୱାଇଣ ଥିଲେ ତାଙ୍କ ବେନିପାଦ ।
ବେଦମାତା କପିଳା ଯେ ପଥେ ଥିଲା ଶୋଇ
ତାହାଙ୍କ ଉପରେ ରଥ ନେଲେକ ଚଳାଇ ।
ରାଜାଙ୍କ ପାଦ ବାଜିଲା ଗୋମାତାଙ୍କ ଶିରେ
ଊର୍ଦ୍ଧ୍ୱ ଦୃଷ୍ଟିକରି ଦେବୀ ଚାହିଁଲେ ସଧୀରେ ।
ମନ ଅଛି ରାଜାଙ୍କର ନାରୀ ରସଅର୍ଥେ
ଲେଉଟି ନ ଚାହିଁ ପଥେ ଚଳନ୍ତି ତୁରିତେ ।
ଦଶରଥକୁ କୋପରେ ଗୋମାତା ବୋଇଲେ
ଅପୁତ୍ରକ ହୁଅ ତୁହି ମୋର ଶାପଫଳେ ।
ଗୋମାତାଙ୍କ ବଚନକୁ ଶୁଣିଣ ନରେନ୍ଦ୍ର
ବୋଇଲେ ଅଜ୍ଞାନେ ମୁହିଁ କରିଛି ଅପ୍ରାଧ ।
ଆଦିମାତାଙ୍କର ଶାପ ନୋହିବ ମେଣ୍ଟଣ
ଆଉ ଅଯୋଧ୍ୟାରେ ମୋର କିସ ପ୍ରୟୋଜନ ।
ମନ୍ଥରାକୁ ପଠାଇ ରହିଲେ ନୃପବର
କପିଳା ପାଦେ ଭକତି କଲେକ ଅପାର ।
ଶୟନସ୍ଥାନେ ବାଟକୁ ନିର୍ମଳ କରଇ
ଶୟନ ସ୍ଥାନରେ ଧୂମ୍ର-କୁଢ଼କୁ ଲଗାଇ ।

ଏପରି ଖଟିଲେ ଦଶବର୍ଷ ପରିଯନ୍ତେ
କପିଳାର ହୃଦେ ଦୟା ନୋହିଲା କିଞ୍ଚିତେ ।
ଯେବଣ ଦିଗେ ଗୋମାତା କରନ୍ତି ଗମନ
ତାଙ୍କ ପଛେ ଯାଏ ରାଜା ଖଣ୍ଡାକୁ ଧରିଣ ।
ଗୋମାତା ଯେ ବିଚାରଇ ଖଣ୍ଡା ଅଛି ଧରି
ମୋତେ ମାରିବାକୁ ରାଜା ଅଛଇ ବିଚାରି ।
ଆଷାଢ଼ କୃଷ୍ଣପକ୍ଷ ଯେ ପ୍ରତିପଦ ତିଥି
ମଘା ନକ୍ଷତ୍ର ଅଟଇ ବାର ବୃହସ୍ପତି ।
ବିଷ୍ଟି ନାମରେ କରଣ ଧୃତିନାମେ ଯୋଗ
ସେ ଦିନ କପିଳା ଚଳିଗଲା ବନମାର୍ଗ ।
ହସ୍ତରେ କୃପାଣ ଧରି ଚଳେ ନରସାଇଁ
କପିଳାର ପଛେ ପଛେ ଅଛନ୍ତି ଗୋଡ଼ାଇ ।
ଆରେକ ମୂର୍ତ୍ତି କପିଳା ବ୍ୟାଘ୍ର ରୂପ ଧରି
କପିଳା ପରେ ଧାଇଁଲା ଗରଜନ କରି ।
ଦଶରଥ ବୋଇଲେ ଯେ ପଛକତି ଥାଇ
ବ୍ୟାଘ୍ର ଆସୁଅଛି ମାତା ପଳା ବେଗ ହୋଇ ।
ରାଜାର ବଚନ ଦେବୀ କାନେ ନ ଶୁଣଇ
ଖାଇବା ପାଇଁକି ବ୍ୟାଘ୍ର କଟାଳ କରଇ ।
ଗାଈକୁ ପଛ କରିଣ ରାଜା ଆଗେ ପଶି
ଖଣ୍ଡାକୁ କରେ ଧରଣ ବ୍ୟାଘ୍ରକୁ ଆକର୍ଷି ।
ବ୍ୟାଘ୍ର ନୁହଇ ସେ ମାୟା କପିଳାର ସିନା
ଦେହେ ବାଜି ଅସିପତ୍ର ହୋଇଗଲା ଚୂନା ।
ଧାଇଁଯାଇ ଦଶରଥ ଧଇଲେ ସେ ବ୍ୟାଘ୍ରେ
ମୋତେ ଭକ୍ଷ ଗାଈ ପ୍ରତି ନ କର ତୁ ରାଗ ।
ଗାଈକୁ ତେଜିଣ ବ୍ୟାଘ୍ର ମୋର ମାଂସ ଭକ୍ଷ
ବୋଇଲେ ପଳାଅ ମାତା କିପାଁ ରହିଅଛ ।
ଏହି ବାକ୍ୟ ଦଶରଥ ଯହୁଁ ପ୍ରକାଶିଲା
ଶୁଣିଣ କପିଳା ହୃଦେ ଦୟା ଯେ ଆସିଲା ।
ତକ୍ଷଣେ ବ୍ୟାଘ୍ର ରୂପକୁ ଦେବୀ କଲେ ତେଜ୍ୟା
ବୋଇଲେକ ଧନ୍ୟ ତୁହି ଦଶରଥ ରାଜା ।
ମୋହର ନିମନ୍ତେ କିପାଁ ଏତେ ଦୁଃଖ ପାଉ
ଯାଅ ରାଜା ଏବେ ତୋର ଚାରିପୁତ୍ର ହେଉ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଇନ୍ଦ୍ର ଦିଗପାଳ
ଏ ଚାରିହେଁ ଉତପତ୍ତି ହୋଇବେ ତୋ କୋଳ
କହୁଛନ୍ତି ମାରକଣ୍ଡ ଶୁଣ ହେ ଯୁଧିଷ୍ଠି
କପିଳାର ଆଜ୍ଞା ପାଇ ଋଷ୍ୟଶୃଙ୍ଗ ଖଟି ।
ଅଙ୍ଗଦେଶ ରାଜା ହେଲା ବ୍ରାହ୍ମଣେ ବିବାଦୀ
ତେଣୁକରି କୋପ ତାକୁ କଲେ ଜମ୍ଭଭେଦୀ ।
ଲୋମପାଦ ରାଜା ଦେଶେ ନୋହିଲାକ ବୃଷ୍ଟି
ଶସ୍ୟଜାତ ନୋହିବାରୁ ପ୍ରଜା ହେଲେ କଷ୍ଟି ।

ଋଷ୍ୟଶୃଙ୍ଗଙ୍କର କଥା ଦୁର୍ବାସା କହିଲେ
ପାଇବୁ କାରଣ ରାଜା ଏଥକୁ ଆଣିଲେ ।
ଜରତା ପଠାଇ କରି ଆଣ ଋଷିବାଳ
ସେ ଆସିଲେ ତୋ ରାଜ୍ୟରେ ବରଷିବ ଜଳ
ଏହା ଶୁଣି ଲୋମପାଦ ଜରତାକୁ ରାଇ
ଆଜ୍ଞାଦେଲେ ଋଷ୍ୟଶୃଙ୍ଗ ଆଣ ତୁହି ଯାଇ ।
ଜରତା ମୁନି ପାଶରେ ପ୍ରବେଶ ହୋଇଲେ
ନାନା କଉଶଳେ ତାର ମନ ଭୁଲାଇଲେ ।
ଜରତା ନିକଟୁଁ ମୁନି ସ୍ୱାଦୁଫଳ ପାଇ
ପ୍ରବେଶ ହୋଇଲେ ଲୋମପାଦ ରାଜ୍ୟେ ଯାଇ
ନିତ୍ୟକର୍ମ କରି ମୁନି ଲୋଡ଼ିଲେକ ପାଣି
ମେଘମାନେ ବରଷିଲେ ବହୁ ଜଳ ଆଣି ।
ଦେଖି ଲୋମପାଦ ରାଜା ଆନନ୍ଦ ହୋଇଲେ
ଶାନ୍ତା କନ୍ୟାକୁ ମୁନିଙ୍କି ବିଭା କରାଇଲେ ।
ଦଶରଥ ରାଜାଙ୍କର ଦୁହିତା ଅଟନ୍ତି
ତେଣୁ ଦଶରଥେ ଦେଲେ ଯଜ୍ଞଚରୁ ଯତି ।
ଚରୁ ଘେନି ଦଶରଥ ତକ୍ଷଣେ ଅଇଲେ
କଇକେୟୀ କୌଶଲ୍ୟାଙ୍କୁ ଚରୁ ବାଣ୍ଟିଦେଲେ
ବେନି ରାଣୀ ସେ ଚରୁକୁ ଅଧେ ଅଧେ ଦେଲେ
ଦୁହିଙ୍କର ଚରୁ ନେଇ ସୁମିତ୍ରା ଭକ୍ଷିଲେ ।
କଉଶଲ୍ୟାଙ୍କର ଗର୍ଭୁ ରାମ ହେଲେ ଜାତ
କଇକେୟୀଙ୍କ ଗର୍ଭରୁ ଭରତ ସମ୍ଭୂତ ।
ସୁମିତ୍ରାଙ୍କୁ ଦେଇଥିଲେ ଦୁହେଁ ଯେଉଁ ଚରୁ
ଲକ୍ଷ୍ମଣ ଶତ୍ରୁଘ୍ନ ଦୁହେଁ ଜନମ ସେଥିରୁ ।
ମାର୍କଣ୍ଡ ବୋଇଲେ ଶୁଣ ଯୁଧିଷ୍ଠିର ରାଜ
ଏପରି ଦଶରଥଙ୍କ ଚାରୋଟି ଆତ୍ମଜ ।
ଯୁଧିଷ୍ଠିର ପୁଚ୍ଛିଲେକ ଶୁଣ ମୁନିବର
କପିଳା ଦୟାରୁ ହେଲା ଚାରୋଟି କୁମର ।
ମାର୍କଣ୍ଡ ବୋଇଲେ ରାମ ବିଷ୍ଣୁ ଯେ ଅଟନ୍ତି
ଭରତ ନାମେ କୁମର ସେହୁ ଶଚୀପତି ।
ଶତ୍ରୁଘନ ପ୍ରତ୍ୟକ୍ଷରେ ଅଟଇ ବିଧାତା
ଲକ୍ଷ୍ମଣ ଯା ନାମ ସେହି ଈଶ୍ୱର ଦେବତା ।
ଯୁଧିଷ୍ଠିଦେବ ବୋଇଲେ କହ ତପୋଧନ
ଋଷ୍ୟଶୃଙ୍ଗଙ୍କ ମହିମା କାହୁଁ ହେଲା ପୁଣ ।
ଅଗସ୍ତି କହିଲେ ଶୁଣ ରାଜା ସୋମବଂଶୀ
ଆଦି ଦେବଠାରୁ ଜାତ ହେଲେ ପାଠଋଷି ।
ପାଠଋଷିର ନନ୍ଦନ ହେଲେ ଜଇମିନି
ଜଇମିନିର ନନ୍ଦନ ହେଲେ କାଶପର୍ଣ୍ଣୀ ।
କାଶପର୍ଣ୍ଣୀର ନନ୍ଦନ ବଳିକା ଯେ ଯତି
ଉତ୍ତାନ ମହାଯତି ଯେ ଏହାଙ୍କ ସନ୍ତତି ।

ଉତ୍ତାନଯତି ନନ୍ଦନ ଅଟେ ମହାତପୀ
ଏହାର ସୁତ ରୋମାଞ୍ଚ କହିଲେ ସଙ୍କ୍ଷେପି ।
ରୋମାଞ୍ଚ ନନ୍ଦନ ନାମ ଅଟେ ଭାଣ୍ଡଋଷି
ବିଭାଣ୍ଡକ ବୋଲିକରି ଏହାଙ୍କର ଶିଷି ।
ଦିନେ ମହାଋଷି ଇନ୍ଦ୍ର ନିକଟକୁ ଗଲେ
ବାସବ ଦେବତା ତାଙ୍କୁ ଆସନ ନ ଦେଲେ ।
ବିଭାଣ୍ଡକ ଋଷି ତହୁଁ କ୍ରୋଧରେ ଅଇଲେ
ଇନ୍ଦ୍ରପଦକୁ ଘେନିବ ବୋଲି ତପ କଲେ ।
ସକାମ ତେଜିଲେ ମୁନି ବସିଲେ ନିରୋଳେ
ଆତ୍ମଳୟରେ ରହିଲେ ପୁଣ୍ୟତୋୟା କୂଳେ ।
ବସିଲେ ସେ ମହାଋଷି ସମସ୍ତ ନିରାଶି
ପରଂବ୍ରହ୍ମ ନିରାକାର ନାଥକୁ ସେ ତୋଷି ।
ପାପଆତ୍ମା ଦୂରେ ତେଜି ସେହି ତପୋବନ୍ତ
ନବଦ୍ୱାର ରୁନ୍ଧିକରି ପିଇଲେ ସେ ବାତ ।
ସର୍ବ ପ୍ରକୃତି ଛନ୍ଦିଲେ ଦମ୍ଭେ ଧରି କାୟା
ନିରାହାରେ ରହେ ମୁନି ନଦୀ ପୁଣ୍ୟତୋୟା ।
ହୃଦଗତରେ ପବନ କେବଳ ଖେଳଇ
ଏକଲୟେ ଶତବର୍ଷ ବସିଲେ ଯେ ଧ୍ୟାୟି ।
ମୁନିଙ୍କ କଠୋର ତପ ଦେଖିଣ ନାରଦ
ଇନ୍ଦ୍ରଙ୍କୁ ବୋଇଲେ ତୋତେ ପଡ଼ିଲା ପ୍ରମାଦ ।
ଦଣ୍ଡକର ତନୟ ଏ ଅଟେ ବିଭାଣ୍ଡକ
ନିଶ୍ଚେଁ ଏବେ ହେବ ସେହି ଅମର ନାୟକ ।
ନାରଦ ମୁଖରୁ ଇନ୍ଦ୍ର ଏହି ବାକ୍ୟ ଶୁଣି
ଅମ୍ବିକା ଅପସରୀକୁ ଡାକି ବଜ୍ରପାଣି ।
ତୁ ଅମ୍ବିକା ପୁଣ୍ୟତୋୟା ନଦୀକୂଳେ ଯାଅ
ବୁଦ୍ଧିବଳେ ବିଭାଣ୍ଡକ ତପ ଭାଙ୍ଗି ଦିଅ ।
ଚଳିଗଲା ଅପସରା ସ୍ୱାମୀ ଆଜ୍ଞା ଘେନି
ପୁଣ୍ୟତୋୟା ନଦୀକୂଳେ ମିଳିଲା କାମିନୀ ।
ନାନାରଙ୍ଗେ ନୃତ୍ୟଗୀତ ଆରମ୍ଭିଲା ତହିଁ
କୋକିଳ କଣ୍ଠ ପରାୟେ ତା କଣ୍ଠ ଶୁଭଇ ।
ମଳୟ ପବନ ତହିଁ ବହେ ଧୀର ଧୀର
ଧ୍ୟାନ ଭାଙ୍ଗି ଚାହିଁଦେଲେ ତାକୁ ମୁନିବର ।
ଚାହାନ୍ତେ ସେ ମହାତମା କରି ଏକ ଦୃଷ୍ଟି
କାମଶରାଘାତ ତାଙ୍କ ଶରୀରରେ ଫୁଟି ।
ଅମ୍ବିକାର ବଦନକୁ ବିଭାଣ୍ଡକ ଚାହିଁ
ଅମୋଘ ରେତ ତାଙ୍କର ତରଳି ପଡ଼ଇ ।
ମନ୍ଦାଏ ତଳେ ପଡ଼ନ୍ତେ କମ୍ପିଲା ମେଦିନୀ
ଆରେକ ମନ୍ଦାଏ ହସ୍ତେ ଧରି ମହାମୁନି ।
ରାଗରେ ବୋଇଲେ ଆଲୋ ଦୁଷ୍ଟାଦୁରଭାଗୀ
ଦୁଃଖେ ଅରଜିବା ତପ ଦେଲୁ ମୋର ଭାଙ୍ଗି ।

ମର୍ତ୍ତ୍ୟରେ ଜନମ ହୁଅ ନୀଚ ସ୍ତିରୀ ହୋଇ
ମୁଖରେ ରତି କରାଅ ମୋର ଶାପେ ତୁହି ।
ମାର୍କଣ୍ଡଙ୍କୁ ଯୁଧିଷ୍ଠିର ପୁଣି ପୁଚ୍ଛାକଲେ
ବିଭାଣ୍ଡକ ଆର ମନ୍ଦା ରେତ କିସ କଲେ ।
ମାର୍କଣ୍ଡ ବୋଇଲେ ତାକୁ ଜଳେ ଫିଙ୍ଗିଦେଲେ
ଜଳେ ପଶି ଶୌଚ ହୋଇ କୁଟିରକୁ ଗଲେ ।
ଅସ୍କନ୍ଦ ବନରୁ ଆସି ଏକଇ ମୃଗୁଣୀ
ସେହି ଜଳଘାଟେ ପଶି ପିଇଲାକ ପାଣି ।
ସ୍ଫଟିକ ପ୍ରାୟେକ ରେତ ଭାସୁଥିଲା ନୀରେ
ସେ ରେତ ପଡ଼ିଲା ଯାଇଁ ମୃଗୁଣୀ ଗର୍ଭରେ ।
ଯେବଣ ଅମୋଘ ରେତ ମୃଗୁଣୀ ଭକ୍ଷିଲା
ଭକ୍ଷିବା ମାତ୍ରକେ ଏକ ପୁତ୍ର ଜନମିଲା ।
ମୁଖ ନାସା କର ପଦ ମନୁଷ୍ୟ ଆକାର
ମୃଗପ୍ରାୟ ଶୃଙ୍ଗ ହେଲା ରୋମାଞ୍ଚ ଶରୀର ।
ମୃଗୁଣୀ ନର ଆକୃତି ଦେଖି ପଳାଇଲା
ସେହି ବାଳକଟି ସେହି ସ୍ଥାନେ ପଡ଼ିଥିଲା ।
ବିଭାଣ୍ଡକ ତପ ତେଜି ଆସୁଥିଲେ ବନେ
ପୁତ୍ରକୁ ଦେଖିଣ ଋଷି ଧଇଲେ ଯତନେ ।
ମାରକଣ୍ଡ ବୋଲୁଛନ୍ତି ଯୁଧିଷ୍ଠିଙ୍କ ଆଗ
ସେହି ମହାତ୍ମାଙ୍କ ନାମ ହେଲା ଋଷ୍ୟଶୃଙ୍ଗ ।
ଯୁଧିଷ୍ଠିର ପୁଚ୍ଛାକଲେ କହ ମୁନିଦେବ
ମନୁଷ୍ୟ ବୀର୍ଯ୍ୟ ରହିଲା କେହ୍ନେ ମୃଗୀଗର୍ଭ ।
ମାର୍କଣ୍ଡ ବୋଇଲେ ବାବୁ ଶୁଣ ସେହି କଥା
ବିଷ୍ଣୁପ୍ରଭା ବୋଲି ସତ୍ୟଯୁଗର ବାରତା ।
ଋତୁପର୍ଣ୍ଣ ବୋଲି ଏକ ବୃହସ୍ପତି ଥିଲେ
ନିତ୍ୟକର୍ମ ବିଧାନରେ ଗଙ୍ଗାକୂଳେ ଗଲେ ।
ବ୍ରହ୍ମା ନାମ କାଳିଞ୍ଜନ ଶିବ ନାମ ରୁଦ୍ର
କର୍ମ ନାମରେ ଆଦିତ୍ୟ ସତ୍ୟ ନାମେ ଚନ୍ଦ୍ର ।
ସୃଷ୍ଟି ଗୋଟିକର ନାମ ହେଲା ବସୁନ୍ଧରା
ପ୍ରଚଣ୍ଡ ନାମରେ ବାତ ଯୋଗ ଯେ ଅଙ୍ଗରା ।
ମଳୟ ବସନ୍ତ ନାମ ବତ୍ସର ପ୍ରଭାବ
ଅନନ୍ତ ନାମରେ ନାଗ ଧର୍ମ ବାସୁଦେବ ।
ବଳାକୁମ୍ଭ ବୋଲି ଯୁଗ ମାସ ନାମ ଆଦି
ଚଳିକ ନାମେ ଦିବସ କହିଲି ସମ୍ପାଦି ।
ସେହିଦିନ ବୃହସ୍ପତି ପଞ୍ଚଧାରା ତୀର୍ଥେ
ଯାଆନ୍ତେ ଏକ ରାକ୍ଷସୀ ଦେଖିଲେ ବନସ୍ତେ ।
ମୋହିନୀ ରୂପରେ ଚଳେ ବନେ ବରାଙ୍ଗନା
ତା ରୂପ ଦେଖି ଯୋଗୀଏ ହେବେ ଉନମନା ।
ତାକୁ ଦେଖି ବୃହସ୍ପତି ମୋହିତ ହୋଇଲେ
ଧାଇଁଧାଇଁ ରାକ୍ଷସୀକି କୋଳାଗ୍ରତ କଲେ ।

ବୃହସ୍ପତି ରୀତି ଦେଖି କୋପିଲା କୌଣପୀ
ଚକ୍ଷୁରଙ୍ଗ କରି ବୋଲେ ଆରେ ମହାପାପୀ ।
ଦେବଗୁରୁ ହୋଇ ତୁହି ଏଡ଼େ ମନ୍ଦମତି
ମୋ ତୁଲେ ବଳାଇ ମନ କରିଲୁ ଅନୀତି ।
ନିଷ୍ପ୍ରାଣ କରିବି ଏହି ବ୍ରାହ୍ମଣକୁ ଆଜି
ଏହାଙ୍କର ମାଉଁସକୁ ଖାଇବଇଁ ଭାଜି ।
ତାହା ବାକ୍ୟ ଶୁଣି ଶାପ ଦେଲେ ବୃହସ୍ପତି
ମୃଗୁଣୀ ରୂପରେ ତୁହି ହୁଅ ଉତପତ୍ତି ।
ଶୁଣ ବାବୁ ଯୁଧିଷ୍ଠିର ବୃହସ୍ପତି ଶାପେ
ସେହି ରକ୍ଷସୀ ଜନ୍ମିଛି ମୃଗୁଣୀ ସ୍ୱରୂପେ ।
ବୃହସ୍ପତି ବିଭାଣ୍ଡକ ଋଷି ହୋଇଅଛି
ପୂର୍ବ ଶାପେ ଋଷି ରେତ ରାକ୍ଷସୀ ଖାଇଛି ।
ଯୁଧିଷ୍ଠି ପୁଚ୍ଛିଲେ ଋଷ୍ୟଶୃଙ୍ଗ ଜନମିଲା
ମୃଗୁଣୀ ତ ନ ପାଳିଲା କେମନ୍ତେ ବଞ୍ଚିଲା ।
ଶୁଣ ରାଜା ଯୁଧିଷ୍ଠିର କହନ୍ତି ମାର୍କଣ୍ଡ
ଆହ୍ନିକ ସନ୍ଧ୍ୟା ସାରିଣ ଆସିଲେ ବିଭାଣ୍ଡ ।
ଅପୂର୍ବ ପୁତ୍ର ଦେଖିଲେ ଅଟେ ବେନିଜାତି
ମାତା ପିତା ତାହାର ଯେ କେହି ନାହିଁ କତି ।
ଧ୍ୟାନରେ ଜାଣିଲେ ମୁନି ବୀର୍ଯ୍ୟରୁ ଆତ୍ମର
ମୃଗୁଣୀ ଗର୍ଭରୁ ଜାତ ହେଲା ଏ କୁମର ।
ପ୍ରସବ କରିଣ ସେହି କେଣେ ଚାଲିଗଲା
ଧର୍ମେଣ ପୁତ୍ର ମୋହର ବଞ୍ଚିଣ ରହିଲା ।
କ୍ଷୀର ଅଭାବେ ଏ ପୁତ୍ର ବଞ୍ଚିବ କେମନ୍ତେ
କମଣ୍ଡଳୁ ନୀର ଦେଲେ ପୁତ୍ର ମୁଖାଗ୍ରତେ ।
ସାଷ୍ଟାମ ହେଲା କୁମାର ସେହି ଜଳପାନେ
ମେଘକୁ ରାଇଣ ଆଜ୍ଞାଦେଲେ ତପୋଧନେ ।
ଯେତେବେଳେ ମୋ ନନ୍ଦନ ମାଗିବଟି ଜଳ
ତାମୁଖେ ଧାରେ ବର୍ଷିବ ତୁମ୍ଭେ ମେଘମାଳ ।
ପାଣି ନ ପାଇଲେ ଏହି ସୁତ କଲେ କୋପ
ଅମରପୁର ଦହନ ହେବ ଦେଲେ ଶାପ ।
ସେହି ଋଷ୍ୟଶୃଙ୍ଗ ମୁନି ଯେଉଁ ବନେ ଥାଇ
ଅନୁବ୍ରତେ ମେଘ ତାର ପଛରେ ଗୋଡ଼ାଇ ।
ମେଘଛତ୍ର ଧରା ଋଶ୍ୟଶୃଙ୍ଗ ମହାମୁନି
ତାହାଙ୍କ ଆଜ୍ଞାରେ ବୃଷ୍ଟି କରେ ବଜ୍ରପାଣି ।
ସେହି ଋଷ୍ୟଶୃଙ୍ଗ ଋଷି ରୁଦ୍ର ଅବତାର
ଅଗୋଚର ମହିମା ଯେ ଅଟଇ ତାହାର ।
ଲୋମପାଦ ରାଜା ରାଜ୍ୟେ ହେଲା ଅନାବୃଷ୍ଟି
ଏହା ପ୍ରସାଦେ ବଞ୍ଚିଲେ ଜୀବଜନ୍ତୁ କୋଟି ।
ଯୁଧିଷ୍ଠି ପୁଚ୍ଛିଲେ ତାଙ୍କୁ ନେଲେ ସେ କେମନ୍ତେ
ଏହା ସଂକ୍ଷେପିଣ ମୁନି କହିବାକ ମୋତେ ।

ବଡ଼ଇ କୌତୁକ ଏହୁ ଅଗୋଚର କଥା
ତୁମ୍ଭର ମୁଖୁଁ ଶୁଣିବି ଅପୂର୍ବ ବାରତା ।
କିବା ପାପ କରିଥିବି ଯେବେ ମୁଁ ନ ଜାଣି
ହୋଇବି ମୁକତ ଋଷ୍ୟ ଶୃଙ୍ଗ କଥା ଶୁଣି ।
ମାର୍କଣ୍ଡ ବୋଇଲେ ଦଶରଥର କୁମାରୀ
ପର୍ଶୁରାମ ଡରେ ବିଭା ନ କଲା ସୁନ୍ଦରୀ ।
ପିତା ଘରେ ଝିଅ ଥାଇ ଯୁବତୀ ହୋଇଲେ
ତା ପିତୃଲୋକ ଶୋଣିତ ପାଆନ୍ତିଟି ଭଲେ ।
ଦଶରଥ ଘେନିଗଲା ସେଥି ନିମନ୍ତରେ
ଶାନ୍ତାକନ୍ୟାକୁ ରଖିଲା ଲୋମପାଦ ଘରେ ।
ମେଘବୋଲେ ଲୋମପାଦ ମନ୍ଦକୃତ୍ୟ କଲା
ଅପୁତ୍ରକର ଦୁହିତା କିପାଇଁ ରଖିଲା ।
ଲୋମପାଦ ରାଜାଠାରେ ଏ ଦୋଷ ବିହିଲେ
ତେଣୁକରି ରାଜ୍ୟେ ତାର ଅନାବୃଷ୍ଟି କଲେ ।
ଋଷିଙ୍କି ଅଣାଇ ରାଜା ଯାଗ ଆରମ୍ଭିଲା
ତଥାପି ତାହାର ରାଜ୍ୟେ ବରଷା ନ ହେଲା ।
ନଦୀରୁ ଖଣା ଖୋଳାଇ ଆଣିଲା ନୃପତି
ବୁଲାଇଲା ଜଳ ତାର ରାଜ୍ୟେ ପ୍ରତି ପ୍ରତି ।
ଏ ସମୟେ ବ୍ୟାସଦେବ ଆସି ପହଞ୍ଚିଲେ
ଲୋମପାଦ ରାଜନକୁ ଡକାଇ କହିଲେ ।
ତୋହର ରାଜ୍ୟରେ ଯେବେ ନ ବରଷେ ପାଣି
ବରଷିବ ଯେବେ ଋଷ୍ୟଶୃଙ୍ଗ ପାରୁ ଆଣି ।
ଜରତା ବେଶ୍ୟା ନାମରେ ଏକଇ ଚତୁରୀ
ସେ ଗଲା ବନସ୍ତେ ବହୁ ବେଶ୍ୟା ଘେନିକରି ।
ସଂକ୍ଷେପି କରିଣ ତାକୁ କହିଦେଲେ ବ୍ୟାସ
ପାଞ୍ଚଦିନେ ସରସ୍ୱତୀ କୂଳରେ ପ୍ରବେଶ ।
ହରିଣୀ ବିରହିଣୀ ଯେ ଆଉ ହିରଣ୍ୟାକ୍ଷୀ
ମୋହିନୀ କାମସେଣା ଯେ ଆବର ପିନାକ୍ଷୀ
ଅନେକ ଭୂଷଣ ନେଇ ଭେଟିଲେ ସୁନ୍ଦରୀ
ଦେଖି ଆଶ୍ଚର୍ଯ୍ୟ ହୋଇଲେ ସେହୁ ତପଚାରୀ
କେବଣ ଦେଶୁ ଅଇଲେ ତୁମ୍ଭେ ତପୀ ସୂନୁ
ନାରୀ ବୋଇଲେ ଅଇଲୁ ମନୋହର ବନୁ ।
ବନଫଳ ଗୁଡ଼ା ଆଣି ଋଷ୍ୟଶୃଙ୍ଗ ଦେଲେ
ତୁମ୍ଭେମାନେ ଏହି ଫଳ ଖାଅ ହୋ ବୋଇଲେ
ଜରତା ବୋଇଲା ଏହା ଦିଶଇ ବିକୃତ
ଏ ଆହାର ଖାଇ ତୁମ୍ଭେ ବର୍ତ୍ତ ହୋ କେମନ୍ତ ।
ତୁମ୍ଭଙ୍କୁ ଦେବା ଆମ୍ଭର ବନଫଳ କିଛି
କଦଳୀ ଦେଇ ବୋଇଲେ ଭୁଞ୍ଜ ତପୀବତ୍ସି ।
ଗୋଟିଏ ଭୁଞ୍ଜିଣ ମୁନି ହୋଇଲେ ହରଷ
ସୁଶୀତଳ ପାଣି ଦେଲେ କର୍ପୁରର ବାସ ।

ଆମ୍ଭ ବନସ୍ତରେ ଏହି ନିର୍ଝରିଣୀ ପାଣି
ଋଷିଙ୍କ ଦେହେ ଚନ୍ଦନ ଲେପିଲେ ସେ ଆଣି ।
ଆବର ଅଙ୍ଗେ ଲେପିଲେ କୁଙ୍କୁମ କସ୍ତୁରୀ
ନାନା ପୁଷ୍ପ ଆଭରଣ ମୁନି ଅଙ୍ଗେ ଭରି ।
କୋମଳ ତୂଳିରେ ଶେଯ ତାଙ୍କୁ ଦେଲେ ନେଇ
ଆମ୍ଭ ବନସ୍ତର ଛାଲ ଅଟଇ ଯେ ଏହି ।
ବନସ୍ତରେ ଅପ୍‌ସରୀଙ୍କୁ ସେ ଋଷି ଆଉଜି
ବୋଇଲେ ତୁମ୍ଭ ବନକୁ ଯିବା ଏହା ତେଜି ।
ବେଶ୍ୟାଏ ବୋଇଲେ ଏଠାପାଣି ଢୋକେପିଇ
ଶରୀର ଆମ୍ଭର ମୁନି ଶ୍ଳେଷ ବାଧାପାଇ ।
ଏଠା ବୃକ୍ଷର ବକଳ ଯେ ଜନ ପିନ୍ଧଇ
ହାଡ଼ ମାଂସ ଘୋଳାଇଣ ପରାସ ହୁଅଇ ।
ତୁମ୍ଭର ତପସ୍ୟା ଧନ ଧନ୍ୟ ତୁମ୍ଭେ ମୁନି
ତୁମ୍ଭ ସଙ୍ଗତେ ଆମ୍ଭଙ୍କୁ ଯାଅ ଏଥୁ ଘେନି ।
ଜରତା ବେଶ୍ୟା ବୋଇଲା ଏଥୁ ଆମ୍ଭେ ଗଲେ
ପାଞ୍ଚଦିନରେ ତୁମ୍ଭଙ୍କୁ ଆମ୍ଭେ ନେବୁ ଭଲେ ।
ଋଷ୍ୟଶୃଙ୍ଗେ ଏହା କହି ଚଳିଲେ ଚତୁରୀ
ଯାଇ ଲୋମପାଦ ଆଗେ କହିଲେ ବିସ୍ତାରି ।
ଆଶ୍ଚର୍ଯ୍ୟ ଅଟଇ ଋଷ୍ୟଶୃଙ୍ଗର ମହିମା
ପରମ ନିରାକୁଳ ସେ ଅଟେ ମହାତମା ।
ବଳବନ୍ତ ପଣେ ତାଙ୍କୁ ଆଣି ତ ନ ପାରି
ନ ଯିବ ବୋଇଲେ ହେବ ସେ ମନ୍ଦର ସରି ।
ଜଳରେ ନଉକା ତୁମ୍ଭେ ମେଲ ନରସାଇଁ
ଫଳନ୍ତା ବୃକ୍ଷମାନଙ୍କୁ ତହିଁରେ ଲଗାଇ ।
ନାବ ଉପରେ ହୋଇବ ମଣ୍ଡପ ଜଗତୀ
ଖଞ୍ଜିବ ମଣି ମାଣିକ୍ୟ ହୀରା ନୀଳା ମୋତି ।
ଅନେକ ଚିତ୍ର ପିତୁଳି କରିବ ଲେଖନ
ବିବିଧ ରତନ ଲାଗିଥିବ ଭିନ୍ନ ଭିନ୍ନ ।
ନାନାଦି ପଦାର୍ଥମାନ ସମ୍ପାଦିଣ ନାବେ
ଚଳିଲେ ଚତୁରୀ ଋଷ୍ୟଶୃଙ୍ଗଙ୍କୁ ଆଣିବେ ।
ଏକ ନାବରେ ପଡ଼ଇ ଶତେକ ଆହୁଲା
ପବନହୁଁ ବେଗେ ସେହି ନାବ ଚଳିଗଲା ।
କହନ୍ତି ମାର୍କଣ୍ଡ ଶୁଣ ଯୁଧିଷ୍ଠିର ଏବେ
ବିଭାଣ୍ଡକ ଅଇଲେ ସେ ଋଷ୍ୟଶୃଙ୍ଗ ଠାବେ ।
ଆମୋଦଇ ହୃଦେ ଗନ୍ଧ ଚନ୍ଦନ କସ୍ତୁରୀ
ମାଣିକ୍ୟର ମାଳଗୋଟି ଅଛି କଣ୍ଠେ ଭରି ।
ବିଭାଣ୍ଡକ ପୁଚ୍ଛାକଲେ ଅପୂରୁବ ଏ ତ
ଏ ପଦାର୍ଥ କିଏ ଦେଲା କହ ତୁହି ସତ୍ୟ ।
ଋଷ୍ୟଶୃଙ୍ଗ ବୋଲେ ଆସିଥିଲେ ତପୀମାନେ
ଏ ସୁସଞ୍ଚ ଦ୍ରବ୍ୟମାନ ଦେଇଗଲେ ବନେ ।

ତାହାଙ୍କ ତପସ୍ୟା ତାତ ଅଟେ ଧନ୍ୟ ଧନ୍ୟ
ଆମ୍ଭ ସଙ୍ଗେ ବହୁ ପ୍ରୀତି କଲେ ପୁଣି ମାନ୍ୟ ।
ଧ୍ୟାନରେ ଜାଣିଲେ ସବୁ ବିଭାଣ୍ଡକ ଋଷି
ଜଳପାଇଁ ଜରତାକୁ ଲୋମପାଦ ପେଷି ।
କୂଟ ଉପାୟ କରିଣ ଅଇଲେ ଚତୁରୀ
ବାଳପୁତ୍ରେ ଘେନିଯିବେ ପ୍ରବୋଧନା କରି ।
ବିଭାଣ୍ଡକ ବୋଇଲେ ଯେ ତାଙ୍କ ସଙ୍ଗେ ଯାଅ
ସେହି ତପୋବନେ ତୁହି ସମୟେକ ରହ ।
ପୁତ୍ରକୁ ତିଆରି ଗଲେ ତପୋବନେ ମୁନି
ଚଳନ୍ତି କାମିନୀଗଣ ନଉକାକୁ ଘେନି ।
ବେଶ୍ୟାଙ୍କ ବିଳମ୍ବ ଦେଖି ଋଷି ବିଚାରିଲେ
କିବା ଋଷିମାନେ ମୋତେ ମନୁ ପାସୋରିଲେ
ହୃଦେ ଏହା ବିଚାରିଣ ପଥକୁ ଚାହାନ୍ତି
ନାବ ଲାଗିଲା ଯେ ଋଷ୍ୟଶୃଙ୍ଗ କୁଟୀ କତି ।
ବେଗେ ନାବରୁ ବାହାର ହୋଇଲେ ତରୁଣୀ
ଦେଖିଣ ଋଷି ବୋଇଲେ ସତ୍ୟ ତୁମ୍ଭ ବାଣୀ ।
ଅନେକ ଗନ୍ଧ ଚନ୍ଦନ କଲେକ ଲେପନ
ଅମୀୟରସ ମୁନିଙ୍କି କରାଇ ଭୋଜନ ।
ନାବପରେ ବସାଇଲେ ନେଇ ବାଳ ଯତି
ଏ ଆମ୍ଭର ବନ ଦେଖ ତପର ଶକତି ।
ବେଗ କରିଣ ତରକେ ବାହିଲେ ନଉକା
ଦେଖାନ୍ତି ଋଷିଙ୍କି ବାଳି ଚିତ୍ରପଟ ଲେଖା ।
ଋଷ୍ୟଶୃଙ୍ଗଙ୍କୁ ଜରତା ଆଉଜାନ୍ତେ କୋଳେ
ପୟୋଧରକୁ ଦେଖିଣ ମୁନି ବେନିତୋଳେ ।
ଆଶ୍ଚର୍ଯ୍ୟ ହୋଇ ବୋଲନ୍ତି ଏ ତୁମ୍ଭର କିସ
ଜରତା ବେଶ୍ୟା ବୋଇଲା ହୋଇ ହସ ହସ ।
ହୃଦେ ବିଜେ କରିଛନ୍ତି ଆମ୍ଭ ତପୋହର
ଚନ୍ଦନ ପୁଷ୍ପେ ଏହାକୁ ପୂଜୁ ନିରନ୍ତର ।
ଋଷ୍ୟଶୃଙ୍ଗ ବୋଇଲେ ଗୋ ତୁମ୍ଭ ତପ ସିଦ୍ଧ
କେତେକାଳ ବସି ତୁମ୍ଭେ କଲ ତାହା ସାଧ ।
ପଛଘୁଞ୍ଚା ଦେଇଗଲେ ଋଷ୍ୟଶୃଙ୍ଗ ମୁନି
ତ୍ରାହି କର ବୋଲି କର ଯୋଡ଼ି ପୁଣି ପୁଣି ।
ଋଷିଙ୍କ ଏ ଭାବ ଦେଖି ଜରତା ଚତୁରୀ
ପାଶେ ବସାଇ ତାହାଙ୍କ ସଙ୍ଗେ ପ୍ରୀତି କରି ।
ପରମ ଆନନ୍ଦ ହୋଇ ବିଭାଣ୍ଡକ ସୁତ
ବୋଇଲେକ ତୁମ୍ଭେ ଧନ୍ୟ ପାଇଲି ତୁମ୍ଭନ୍ତ ।
ଆମ୍ଭ ପିତା ବିଭାଣ୍ଡକ କରୁଥାନ୍ତି ତପ
ସେହି ତ ଦେଖି ନ ଥିବେ ଏମନ୍ତ ସ୍ୱରୂପ ।
ଭଲ ତପକଲୁ ଆମ୍ଭେ କଲୁ ଭଲ ଗୋଷ୍ଠୀ
ତେଣୁ ସାର୍ଥକ ହୋଇଲା ଆମ୍ଭ ଜୀବଗୋଟି ।
ଏରୂପେ ବହୁ ପ୍ରଶଂସା ତାକୁ କଲେ ଯତି
ସଇନ୍ଦୁ ପୁତ୍ରେକ ବେଶ୍ୟା ଗର୍ଭରୁ ଉତ୍ପତ୍ତି ।
ନଉକା ବିମାନ ମଧ୍ୟେ ରଖିଲେ ସେ ସୂନୁ
ସେ ପୁତ୍ରଗୋଟିର ନାମ ଦେଲେ ଶତମନ୍ୟୁ ।
ସେ ନଉକା ଚଳେ କରି ପବନର ଗତି
ପ୍ରବେଶ ଲୋମପାଦର ରାଜ୍ୟରେ ତତ୍‌ପତି ।
ଚମ୍ପାବତୀ ନଗ୍ର ଦୂତ ଥିଲେ ନଦୀପାଶେ
ଯେ ଯାଇ କହନ୍ତେ ରାଜା ଅଇଲେ ହରଷେ ।
ଆଲଟ ପାଟଛତ୍ର ଯେ ପଡ଼ଇ ଗହଳ
ରଥ ଗଜଅଶ୍ୱ ଘେନି ବହୁ ସେନାବଳ ।
ଚତୁରୀ ନାରୀ ଋଷିଙ୍କି ନାବରୁ ଓହ୍ଲାଇ
ରାଜାଙ୍କ ପାଶେ ତାହାଙ୍କୁ ଉଭାକଲେ ନେଇ ।
ଅମାତ୍ୟଗଣଙ୍କୁ ଘେନି ରାଜା ଲୋମପାଦ
ବୋଲେ ପାଇଲି ମୁଁ ଏବେ ପରମ ସମ୍ପଦ ।
ଋଷ୍ୟଶୃଙ୍ଗ ବୋଇଲେ ଏ ବଡ଼ କୁତୂହଳ
ଜରତା ବେଶ୍ୟାର ତପ ଅଟଇ ପ୍ରବଳ ।
ଦେଖି ରାଜନ ନମିଲେ ଋଷିଙ୍କର ପାଦେ
ଲଭିଲି ପରମ ଗତି ତୋହର ପ୍ରସାଦେ ।
ଋଷ୍ୟଶୃଙ୍ଗ ବୋଲେ ଏତବଡ଼ କୁତୂହଳ
କି କାର୍ଯ୍ୟେ ବିନୟ ହୁଅ ଆମ୍ଭ ପାଦତଳ ।
ଜରତା ବୋଇଲା ଏହୁ ଲୋମପାଦ ରାଜା
ତୁମ୍ଭଙ୍କୁ ଦେଖିବାପାଇଁ ଆଣି କରେ ପୂଜା ।
ସନ୍ଧ୍ୟା ସମୟ ଏବେ ଯେ ହୋଇଲା ବହନ
ତର୍ପଣ ନିମିତ୍ତ ରାଜା ଜଳ ବେଗେ ଆଣ ।
ରାଜା ବୋଲେ ଏଥି ବହୁକାଳୁଁ ନାହିଁ ବୃଷ୍ଟି
ଶୁଣିଣ ମହର୍ଷି ଆକାଶକୁ ଦେଲେ ଦୃଷ୍ଟି ।
ବୋଇଲେ ଲୋମପାଦକୁ ଯାଅ ନିଜପୁରେ
ଏହିକ୍ଷଣି ମହାବୃଷ୍ଟି ହେବ ତୋ ରାଜ୍ୟରେ ।
ଏହା କହିଣ ମୁନିକୁ ରାଜା ଘେନିଗଲେ
ଉତ୍ସବ ନବରେ ନେଇ ତାଙ୍କୁ ରଖାଇଲେ ।
ଋଷ୍ୟଶୃଙ୍ଗ ଚାହିଁଦ୍ୟନ୍ତେ ଗର୍ଜି ମେଘମାଳ
ଦୁଲୁଦୁଲୁ ହୋଇ ରାଜ୍ୟେ ବରଷିଲେ ଜଳ ।
ଜଳେ ନଦୀ ପୁଷ୍କରିଣୀ ହେଲା ଏକଖଣ୍ଡ
ଶୁଣ ଆହେ ଯୁଧିଷ୍ଠିର କହନ୍ତି ମାର୍କଣ୍ଡ ।
ମାରକଣ୍ଡ କହୁଛନ୍ତି ଧର୍ମଦେବ ଶୁଣ
ଋଷ୍ୟଶୃଙ୍ଗଙ୍କ ଚରିତ ଅଟଇ ଏସନ ।
ମାରକଣ୍ଡ ବାକ୍ୟେ ପଣ୍ଡୁସୁତ ମନ ମଜ୍ଜି
ଚଳିଗଲେ ପାଣ୍ଡବେ ଯେ ସେହିବନ ତେଜି ।
ଚିତ୍ରକୂଟ ବୋଲିକରି ଏକଇ ପର୍ବତ
ତହିଁ ପ୍ରବେଶ ହୋଇଲେ ଯାଇ ପଣ୍ଡୁସୁତ ।

ବଡ଼ ସୁସଞ୍ଚ ଯେ ପରିମଳ ସେହି ବନ
ତହିଁର ମଧ୍ୟରେ ଅଛି ଦଣ୍ଡକ ଅରଣ୍ୟ ।
ଯେତେକ ବୃକ୍ଷ ସେଠାରେ ଦେଖି ପଣ୍ଡୁନାନ
କୁସୁମବନ ପ୍ରାୟେକ ଦିଶେ ସେହି ବନ ।
ଶୁଦ୍ଧ କନକ ପ୍ରାୟେ ଯେ ଦିଶନ୍ତି ହରିଣୀ
ଦିବସର ପରାୟେ ଯେ ଦିଶଇ ରଜନୀ ।
ଶୁଦ୍ଧ ପ୍ରବାଳ ସମାନ ସେଠା ଜୀବଗଣ
ଅରଣ୍ୟ ମଧ୍ୟେ କରନ୍ତି ସେମାନେ ଭ୍ରମଣ ।
ସୂର୍ଯ୍ୟ କିରଣ ସେଠାରେ ନ ପଡ଼େ କିଞ୍ଚିତ
ଯୁଧିଷ୍ଠି ପୁଚ୍ଛିଲେ କହ ଏ ବନ ଚରିତ ।
ବାବୁ ତ୍ରେତାଯୁଗେ ରାମ ରହିଥିଲେ ଏଥି
ଗୋଦାବରୀ ସ୍ନାନ କଲେ ଜନକ ଦୁହିତୀ ।
ବନଜୀବ ପିଅନ୍ତି ଏ ସ୍ନାହାନର ପାଣି
ତେଣୁକରି ଶୁକ୍ଳବର୍ଣ୍ଣ ଦିଶନ୍ତି ହରିଣୀ ।
ସୀତାର ପାଦ ଉଦକ ସମ୍ଭାଇଣ କାୟେ
ସମସ୍ତେ ଦିଶନ୍ତି କୁଙ୍କୁମର ବନ ପ୍ରାୟେ ।
ଏହିବନେ ରହିଥିଲେ ସୁଖେ ରାମଚନ୍ଦ୍ର
ଜାନକୀ ହରଣେ ତାଙ୍କୁ ପଡ଼ିଲା ପ୍ରମାଦେ ।
ଯୁଧିଷ୍ଠିର ପୁଚ୍ଛାକଲେ ସେ ମାରକଣ୍ଡଙ୍କୁ
ରାମ ଥାନ୍ତେ ହରିନେଲା କିଏ ଜାନକୀଙ୍କୁ ।
ମାର୍କଣ୍ଡ ବୋଇଲେ ଶୁଣ କୁନ୍ତୀର ସନ୍ତତି
ଲକ୍ଷ୍ମଣ ସୀତା ସହିତେ ରାମ ଥିଲେ ଏଥି ।
ଶ୍ରାବଣ କୃଷ୍ଣ ପଞ୍ଚମୀ ବାର ଯେ ସଉରି
ମୃଗୟା ଅର୍ଥେ ଲକ୍ଷ୍ମଣ ବନେ ବିଜେକରି ।
କେଶୀ ଦଇବତ ସୁତ ଅଟେ ଜପାସୁର
ରାବଣ ଭଗ୍ନୀ ସୂର୍ପାର ଅଟେ ସେ କୁମର ।
ଜପାସୁର ଇନ୍ଦ୍ରଜିତ ସଙ୍ଗେ କଳିକରି
ମାତା ପିତା ଲଙ୍କା ରାଜ୍ୟ ଅଇଲେ ବାହାରି ।
କଣୟ ବିନ୍ଦୁ ନାମରେ ଅଛି ନଦୀଗୋଟି
ଭାଗୀରଥୀ ନର୍ମଦାରୁ ଆସଇ ସେ ଫୁଟି ।
ସେ ନଦୀକୂଳେ କଦମ୍ବ ବୃକ୍ଷ ଏକଥିଲା
ତହିଁ ବସି ଜପାସୁର ତପ ଆରମ୍ଭିଲା ।
ପାଞ୍ଚ ଅୟୁତ ବରଷ ରହି କଲା ତପ
ମାଟିରେ ମିଳାଇଗଲା ତାହାର ସ୍ୱରୂପ ।
ଖଣ୍ଡ ଖଣ୍ଡ ହୋଇ ତାର ମିଳାନ୍ତେ ଶରୀର
କୁଦ ଏକ ହେଲା ବର୍ଣ୍ଣ ଚିହ୍ନ ନାହିଁ ତାର ।
ତପସ୍ୟା ବଳରେ ପୁଣି କଅଁଳିଲା ତନୁ
କୁଦ ଭିତରେ ରହିଛି ସୂର୍ପଣଖା ସୂନୁ ।
ମୃତ୍ତିକା ତାହାର କାୟା ଆବୋରି ଅଛଇ
ଗୁପତରେ ଅଛି ସେହି କେହି ନ ଦେଖଇ ।

ଆହେ ଯୁଧିଷ୍ଠିର ଶୁଣ ଏଥୁଅନ୍ତେ କଥା
ଜପାସୁର ମାୟା ଜାଣି ବାସବ ଦେବତା ।
ଗଣ୍ଡାଏ ଭେଟାଇ ଦେଲେ ଲକ୍ଷ୍ମଣ ଦେଖିଲେ
ଦୂରରୁ ଦେଖି ସେ ଗଣ୍ଡା ପଛରେ ଧାଇଁଲେ ।
କୁଦ ଚଉପାଶେ ବୁଦା ବୁଦା ଗଛ ଥିଲା
ତାହାର ମଧ୍ୟରେ ଗଣ୍ଡା ଯାଇଣ ଲୁଚିଲା ।
ଗଣ୍ଡାକୁ ଲକ୍ଷ୍ମଣ ଯହୁଁ ବିନ୍ଧିଲେକ ଶର
ଗଣ୍ଡାଫୁଟି କୁଦ ମଧ୍ୟେ ଗଳିଲା ସତ୍ୱର ।
ଜପାସୁର କୁଦ ମଧ୍ୟେ ଲୁଚି ରହିଥିଲା
ଶର ବାଜି ତାର ବେକ ବେନିଖଣ୍ଡ ହେଲା ।
ନଦୀ ପରାୟେ ତା ଦେହୁ ବହିଲା ଶୋଣିତ
ସେ କୁଦ ପାଶେ ଲକ୍ଷ୍ମଣ ମିଳିଲେ ତୁରିତ ।
ଦେଖି ଆସି ଶ୍ରୀରାମଙ୍କୁ ସକଳ କହିଲେ
ଶୁଣିକରି ରଘୁନାଥ ବିରସ ହୋଇଲେ ।
ଅସ୍କନ୍ଦ ବନେ ଥିଲା ତା ମାତା ସୂର୍ପଣଖୀ
ସେ ଦିନ ଅଇଲା ସେହି କୁମରକୁ ଦେଖି ।
ଦେଖିଲା ସେ ବନେ ପୁତ୍ର ହୋଇଛି ନିଧନ
ଆହା ନନ୍ଦନ ବୋଲିଣ କଲା ସେ ରୋଦନ ।
ଉତ୍ତର ପ୍ରଷ୍ଠେ ଅଛନ୍ତି ଶ୍ରୀରାମ ଲକ୍ଷ୍ମଣ
ସୂର୍ପଣଖା ଦେଖେ ପତ୍ରକୁଟି ଭିତରେଣ ।
ଭାବିଲା ଏ ମୋ ପୁତ୍ରକୁ ମାରିଣ ଅଛନ୍ତି
ଏହାଙ୍କୁ କେମନ୍ତେ ମୁହିଁ ମାରିବି ଏ ଘାନ୍ତି ।
ତହୁଁ କାମରୂପୀ ଦିବ୍ୟ ରୂପକୁ ଧଇଲା
ବହୁ ଅଳଙ୍କାର ନେଇ ଅଙ୍ଗରେ ଭରିଲା ।
ମାନବୀ ରୂପରେ ଯାଇଁ ଭେଟିଲା ସୀତାଙ୍କୁ
ଦେଖି ପୁଚ୍ଛିଲେ ଜନକକୁମାରୀ ତାହାକୁ ।
ଆଗୋ ତୋର ରୂପ ଦେଖି ତରଳିବ କାମ
କାହାର ଭାବିନୀ ତୁହି କିସ ତୋର ନାମ ।
ସେ ବୋଇଲା ମୁହିଁ ଅଟେ ସ୍ୱର୍ଗବରାଙ୍ଗନା
ଶୃଙ୍ଗାର କ୍ରୀଡ଼ାରେ ଇନ୍ଦ୍ର କଲେକ ଭର୍ତ୍ସନା ।
ସହି ନ ପାରିଲି ମୁହିଁ ପ୍ରଭୁଙ୍କ ଝିଙ୍ଗାସ
ପୁରୁଷ ଭୟେ ପଶିଲି ଆସି ବନଦେଶ ।
ସୀତା ବୋଇଲେକ ଭଲ କହିଲୁ ଗୋ ତୁହି
ମୋର ଦିଅରେକ ଅଛି ସ୍ୱାମୀ ସାନ ଭାଇ ।
ସୁସଞ୍ଚେ ସୁନ୍ଦର ସେହୁ ସର୍ବ ଗୁଣଯୁକ୍ତ
ବିଧାତା ସୃଜିଛି ତାଙ୍କୁ ତୋହର ନିମିତ୍ତ ।
ସୂର୍ପଣଖା ରାକ୍ଷସୀ ଯେ ପାଞ୍ଚି କୂଟ ଭାଷେ
ପୀରତି ବଶେ ତାହାକୁ ଖାଇବି ହରଷେ ।
ଶୋକ ଗଦଗଦ ହୋଇ ପଡ଼ିଲାକ ପାୟେ
ତୁମ୍ଭଙ୍କୁ ଭେଟିଲି ମୁହିଁ ତୁମ୍ଭେ ମୋର ମାୟେ ।

ଏହିପରି କଥାବାର୍ତ୍ତା ହେଉଛନ୍ତି ବେନି
ଲକ୍ଷ୍ମଣ ପ୍ରବେଶ ହେଲେ ମୃଗଭାର ଘେନି ।
ଭାର ଓହ୍ଲାଇଣ ତଳେ ବସିଲେ ସୌମିତ୍ରି
ସୀତା ପ୍ରବେଶ ହୋଇଲେ ଲକ୍ଷ୍ମଣଙ୍କ କତି ।
ଆହେ ଲକ୍ଷ୍ମଣ ତୋହର ଭାଗ୍ୟ ଅଟେ ବାବୁ
ଏହି ଅପୂର୍ବ କନ୍ୟାକୁ ପାଶେ କି ରଖିବୁ ।
ତୁହି ସର୍ବଗୁଣେ ପୂର୍ଣ୍ଣ ଏ ତ ଗୁଣବତୀ
ଏହି ସୁଯୋଗ ଘଟଣା କଲା ପ୍ରଜାପତି ।
ଶୁଣି ହେଠମାଥେ କିଛି ଲକ୍ଷ୍ମଣ ନ ଭାଷି
ଏମନ୍ତ ସମୟେ ରାମ ପ୍ରବେଶିଲେ ଆସି ।
ରାମଙ୍କୁ ଦେଖି ରାକ୍ଷସୀ ଗଲା ଅପସରି
ମାନିନୀ ଅବସ୍ଥାରେ ସେ ଚାହେଁ ବକ୍ରକରି ।
ଜାନକୀ ବୋଲନ୍ତି ନାଥ ଏ ନାରୀ ଅପୂର୍ବ
ସ୍ୱର୍ଗର ଏ କନ୍ୟା ଆସି ମିଳିଲା ଏ ଠାବ ।
ନାଗରୀ ମଧ୍ୟରେ ହୀରା ନୁହଇ ଚତୁରୀ
ଭଲରୂପେ କଥା ତେଣୁ କହିତ ନ ପାରି ।
ଗୁଣବତୀ ନାରୀ ପ୍ରାୟେ ଜଣାଯାଏ ଏହି
ବଡ଼ଭାଗ୍ୟବନ୍ତ ଅଟେ ତୁମ୍ଭ ସାନଭାଇ ।
ଏହାର ଶରୀରେ ବହୁ ରତ୍ନ ଆଭରଣ
ସ୍ୱଇଚ୍ଛାରେ ଲକ୍ଷ୍ମଣେ ଏ କରିଛି ବରଣ ।
ଶ୍ରୀରାମ ବୋଇଲେ ଏହି ଗହନ ବନସ୍ତେ
ମନୁଷ୍ୟର ଗମ୍ୟ ନାହିଁ ଜାଣିବା କେମନ୍ତେ ।
କି ଅବା ରାକ୍ଷସୀ ଏହି ବନର ଦେବତୀ
ଅପରିଚିତରେ କେହ୍ନେ ବଢ଼ାଇବା ପ୍ରୀତି ।
ଯଦ୍ୟପି ହୋଇବ ସେହି ସ୍ୱର୍ଗବରାଙ୍ଗନା
ଅଜ୍ଞାନ ପିଣ୍ଡ ତାହାର ଅଭାଗିନୀ ସିନା ।
ସୀତା ବୋଇଲେ ନୁହଇ ସେହି ମନ୍ଦମତି
ଅୟିସୁଲକ୍ଷଣୀ ତାର ବାଳୁତ ମୂରତି ।
ସୁଜନ ଲୋକଙ୍କୁ ମନ୍ଦବାଣୀ ଯେ ବୋଲଇ
ନିଜ ଧର୍ମ ନାଶଯାଏ ପୁରାଣେ କହଇ ।
ତୁମ୍ଭେ ଦୁଇଭାଇ ଯାଅ ବନକୁ ବିହରି
କୁଡ଼ିଆରେ ଏକା ରହି ମରୁଥାଏ ଝୁରି ।
ବହୁ ଦୁଃଖ ଜାତ ହୁଏ ମୋର ଏ ବନସ୍ତେ
ସେ ଦୁଃଖ ମୁଁ ପାସୋରିବି କହନ୍ତୁ କେମନ୍ତେ ।
ଦୁଃଖୀର ସଙ୍ଗାତ ସେହୁ ହୋଇବ ଏ ବନେ
ଏହାକୁ ଛାଡ଼ିବା ପାଇଁ ନ ହୁଅଇ ମନେ ।
ଏମନ୍ତ କହିଣ ସତୀ ଲକ୍ଷ୍ମଣଙ୍କୁ ଚାହିଁ
ବୋଇଲେ ରେ ବାବୁ ମୋର କଥାମାନ ତୁହି
ମୋହର ଶପଥ ତୋତେ ଠାକୁରଙ୍କ ରାଣ
ଏ କନ୍ୟା ଗୋଟିକୁ ତୁହି ରଖ ସମ୍ଭାଳିଣ ।
ସ୍ୱାମୀକି କହିଲେ ସତୀ ନ କରନ୍ତୁ ଆନ
ମୁହିଁ ଜାଣଇ ଲକ୍ଷ୍ମଣଠାରେ ତାର ମନ ।
ତେର ବରଷ ରହିଲା ଏକମେଳ ହୋଇ
ଲକ୍ଷ୍ମଣଙ୍କୁ ଦେଖି ମୋତେ ବିକଳ ଲାଗଇ ।
ସୀତାଠାରୁ ରାମ ଏହି ବଚନ ଶୁଣିଣ
ଲକ୍ଷ୍ମଣେ ବୋଇଲେ କର ଏହାକୁ ବରଣ ।
ଲକ୍ଷ୍ମଣ ବୋଇଲେ ମୋର ନ ବଳଇ ମତି
ପରସ୍ତିରୀ ହରଣରେ ନରକେ ପଡ଼ନ୍ତି ।
ଏହା କହିଣ ଲକ୍ଷ୍ମଣ ହୋଇଲେ ମଉନ
ୟା ତୁଳେ ପ୍ରୀତି ନୋହିବ ମୋର କଦାଚନ
ଏ ସକଳ କଥା ସୂର୍ପା ବସି ଶୁଣୁଥିଲା
ସାମାନ୍ୟ ନର ବୋଲିଣ ମନେ ବିଚାରିଲା ।
ବୋଲଇ ତିନିଙ୍କି ଧରି ମୁହିଁ ଗିଳିଦେବି
ପୁଣି ବୋଲେ ଏ ନାରୀକି ଭ୍ରାତେ ସମର୍ପିବି ।
ଏମନ୍ତ ଭାଳି ରାକ୍ଷସୀ ମନେ ରାଗ କଲା
ଭୀଷଣ ମୂରତି ଧରି ଖାଇବି ବୋଇଲା ।
ଏହା ଦେଖି ରାମଚନ୍ଦ୍ର ବୋଇଲେ ଲକ୍ଷ୍ମଣ
ସତ୍ୱରେ କାଟ ଏହାର ନାସିକା ଶ୍ରବଣ ।
ଅକ୍ରୋଶେ ଲକ୍ଷ୍ମଣ ତାକୁ ତଳେ ପାତିକରି
ନାସିକା ଶ୍ରବଣ ଖଡ୍ଗେ ଛେଦିଲେ ତାହାରି ।
ପୁଣି କେଶ ମୁଣ୍ଡିକରି ଦେଲେ ତାକୁ ଛାଡ଼ି
ପଳାଇଲା ସୂର୍ପଣଖା ଦେଇ ଘୋର ରଡ଼ି ।
ଲଙ୍କାଗଡ଼ରେ ପ୍ରବେଶ ହୋଇଲା ସେ ବେଗି
ଲଙ୍କେଶ୍ୱର ତାହା ଦେଖି ହେଲା ବଡ଼ରାଗୀ ।
ରାବଣ ବୋଲେ ଗୋ ତୋତେ କେ କଲା ଏମନ୍ତ
ସୂର୍ପଣଖା କହୁଅଛି ରାବଣ ଅଗ୍ରତ ।
ଅରଣ୍ୟେ ଦେଖିଲି ରାମ ଲକ୍ଷ୍ମଣ ଯେ ଦୁଇ
ତ୍ରୈଲୋକ୍ୟମୋହିନୀ କନ୍ୟା ଦେଖିଲି ଯେ ତହିଁ
ସେ କନ୍ୟାକୁ ଭକ୍ଷିବାକୁ ମୁହିଁ ମନ କଲି
ରାଗେ ନାସିକା କାଟିଲେ ତହୁଁ ମୁଁ ଅଇଲି ।
ଗର୍ବିତ ରାବଣେଶ୍ୱର ଅଟଇ ଅସୁର
ସନ୍ନିଧେ ରାଇଲା ଖର ଦୂଷଣ ତ୍ରିଶିର ।
ରାଜା ବଚନେ ଅଇଲେ ସେହୁ ବୀର ତିନି
ଆସଇ ସେ ସୂର୍ପଣଖା ଦୈତ୍ୟବଳ ଘେନି ।
ମୃଗୟାର୍ଥେ ଯାଇଥିଲେ ଲକ୍ଷ୍ମଣ ବିପିନେ
ଦେଖିଲେ ଆସିଅଛନ୍ତି ବହୁ ଦୈତ୍ୟମାନେ ।
ଲକ୍ଷ୍ମଣ ଆସନ୍ତେ ସୂର୍ପଣଖା ଦେଖାଇଲା
ଏହି ଯେ ମୋହର କର୍ଣ୍ଣ ନାସିକା ଛେଦିଲା ।
ତାହାକୁ ଦେଖି ଦାନବେ ଦେଲେ ଘୋରରଡ଼ି
ଲକ୍ଷ୍ମଣ ଉପରକୁ କି ଆସୁଛନ୍ତି ମାଡ଼ି ।

ଦେଖ ଦେଖ ମହିମା ସେ ସୁମିତ୍ରାର ବାଳ
ଏକାକୀ ମଣ୍ଡିଲା ସେହୁ ଦୈତ୍ୟ ସୈନ୍ୟବଳ ।
ଶତେ ମର୍ବୁଦ ରାକ୍ଷସବଳ ସେ ସଇନି
ଲକ୍ଷ୍ମଣ ନାଶିଲା ତିନିଶତ ଶରଘେନି ।
ଖର ଦୂଷଣ ତ୍ରିଶିରା ତିନି ମହାବୀର
ହେଳେ ଶ୍ରୀରାମ ଛେଦିଲେ ତାହାଙ୍କର ଶିର ।
ବିରସ ହୋଇ ପଳାଏ ତହୁଁ ସୂର୍ପଣଖା
ବିଳପି ପଳାଇଲା ସେ ରାବଣର ଲଙ୍କା ।
ସୋଦରେ ବଧ ହୋଇଲା ବୋଲିଣ ଜଣାଇ
ଶୁଣିଣ ଆଶ୍ଚର୍ଯ୍ୟ ହୋଇଲାକ ଲଙ୍କାସାଇଁ ।
ଥାଟଙ୍କ ନିଧନ ଶୁଣି ଦୈତ୍ୟ ଦଶକନ୍ଧ
କି କରିବିବୋଲି ଭାଳେ କ୍ରୋଧେ ହୋଇଅନ୍ଧ
ବୁଦ୍ଧି ସ୍ଫୁରିଲା ମାରୀଚ ନିକଟକୁ ଗଲା
ଭଉଣୀ ଦୁର୍ଦ୍ଦଶା ତାକୁ ସକଳ କହିଲା ।
ପଞ୍ଚବଟୀବନେ ଛନ୍ତି ଶ୍ରୀରାମ ଲକ୍ଷ୍ମଣ
ହେମ ମୃଗ ହୋଇ ତହିଁ ଚର ଏହିକ୍ଷଣ ।
ଶୁଣି ମାରୀଚ କହିଲା ଶ୍ରୀରାମଙ୍କ କଥା
ତା ସଙ୍ଗେ ବିବାଦୀ ତୁମ୍ଭେ ନୁହଁ ଦଶମଥା ।
ଦଶାନନ ବୋଲେ ଯେବେ ନ ହେବୁ ହରିଣୀ
ତୋହର ମସ୍ତକ ଖଡ୍ଗେ ପକାଇବି ହାଣି ।
ମୋହର ବଚନେ ଏବେ ମୃଗରୂପ ଧର
ପତ୍ରକୁଡ଼ିଆ ନିକଟେ ଯାଇ ତୁହି ଚର ।
ତୋତେ ମାରିବାକୁ ଗଲେ ଶ୍ରୀରାମ ଲକ୍ଷ୍ମଣ
ଜାନକୀଙ୍କି ହରିନେବି ମୁଁ ଲଙ୍କାଭୁବନ ।
ସୀତା ନ ପାଇ ଝୁରିବେ ବନେ ଦୁଇଭାଇ
ଉପାୟେ ଶତ୍ରୁ ମାରିବା ବେଗେ ଚଳ ତୁହି ।
ଦୁଃଖରେ ମାରୀଚ ମୃଗ ରୂପକୁ ଧଇଲା
ପତ୍ରକୁଡ଼ିଆ ପାଖକୁ ଚରି ଚରି ଗଲା ।
ସୀତା ବୋଇଲେ ଶ୍ରୀରାମ ମୁଖକୁ ଅନାଇଁ
ଅପୂର୍ବ ମୃଗକୁ ଧରି ଦିଅ ହେ ଗୋସାଇଁ ।
ଜାନକୀ ବଚନ ରାମ ଭାଙ୍ଗି ନ ପାରିଲେ
ଧନୁଶର ଧରି ମୃଗ ମାରିବାକୁ ଗଲେ ।
ପଳାଇ ପଶିଲା ମୃଗ ବହୁତ ଦୁର୍ଗମ
ଅଦୃଶ୍ୟ ହୁଅନ୍ତେ ଶର ବିନ୍ଧିଲେ ଶ୍ରୀରାମ ।
ଶର ବାଜନ୍ତେ ପଡ଼ିଲା ମାରୀଚ ଅସୁର
ଶୀଘ୍ର ଡାକିଲା ଲକ୍ଷ୍ମଣ କର ପ୍ରତିକାର ।
ଲକ୍ଷ୍ମଣେ ଡାକି ବୋଇଲେ ଜନକ ଦୁହିତୀ
ସ୍ୱାମୀଙ୍କି କଷ୍ଟ ପଡ଼ିଲା ତୁମ୍ଭଙ୍କୁ ଡାକନ୍ତି ।
ଲକ୍ଷ୍ମଣ ବୋଇଲେ ତୁମ୍ଭେ ହୋଇଲ କି ବାଇ
କୋଟି ବ୍ରହ୍ମାଣ୍ଡେ ଜିଣିବ କେହୁ ରଘୁସାଇଁ ।
ତୁମ୍ଭେ ଠାକୁରାଣୀ ପୂର୍ବେ ଦେଖିଅଛ ଡୋଳେ
ପରଶୁରାମଙ୍କ ଦର୍ପ ଧ୍ୱଂସିଲେ ଯେ ହେଳେ ।
ତ୍ରୈଲୋକ୍ୟ ମଧ୍ୟେ ଜିଣିବ ତାଙ୍କୁ ଅଛି କିଏ
ଏମନ୍ତ ଅନୀତି ମୁଖେ କହ କିପାଁ ମାଏ ।
ସୀତା ବୋଇଲେକ ମୁହିଁ ଜାଣେ ତୋରମାୟା
ରାମଙ୍କୁ ମରାଇ ତୁହି ହେବୁ ମୋର ନାହା ।
ଅନେକ ଝିଙ୍କାସି କଟୁବାକ୍ୟ ସେ ବୋଇଲେ
ଏଥିପାଇଁ ଅଇଲୁ ତୁ ଶ୍ରୀରାମଙ୍କ ତୁଲେ ।
ରାମଙ୍କ ଚିତ୍ତେ ତୋଠାରେ ଟିକେ ଛନ୍ଦ ନାହିଁ
ଏଡ଼େ କପଟୀ ତୁ ହେଲୁ ତାଙ୍କ ଭାଇ ହୋଇ ।
ଶୁଣି ଲକ୍ଷ୍ମଣ ବୋଇଲେ ଯୋଡ଼ି ବେନି କର
ଏହି କଥା କେତେବେଳେ ମନେ ନାହିଁ ମୋର
ତୁମ୍ଭର ଅଟଇ ମାତ କିପରି ବରନ
ଆଜଯାଏ ଦେଖିନାହିଁ ମୋ ବେନି ନୟନ ।
ଏକମାତ୍ର ଠାକୁରାଣୀ ଦେଖିଅଛି ପାଦ
ଅକାରଣେ କିପାଁ ମୋତେ ଦିଅ ଅପବାଦ ।
ତୁମ୍ଭ ସ୍ୱାମୀଠାରେ ଯେବେ ମୋର ମାୟା ଥିବ
ଏହିକ୍ଷଣି ମୋର ତନୁ ଭସ୍ମ ହୋଇଯିବ ।
ବୃଥାରେ ଦୂଷଣ ମୋତେ ଦେଲ ଗୋ ନ ଜାଣି
ଅପରେ ଦୂଷିତା ହୁଅ ଜନକ ଦୁଲଣୀ ।
ବ୍ରହ୍ମା ବିଷ୍ଣୁ ଶିବ ଏହି ତିନିଗାର କାଟି
ବୋଇଲେ ନ ଡେଇଁବୁ ତୁ ଏ ଗାର ତିନୋଟି ।
ଏ ଗାର ଡେଇଁଲେ ସତୀ ରାମେ ନ ପାଇବ
ଆନ ଡେଇଁଲେ ନିଶ୍ଚୟ ଭସ୍ମ ହୋଇଯିବ ।
ଏହା କହି ଚନ୍ଦ୍ର ସୂର୍ଯ୍ୟ ସାକ୍ଷୀ କରାଇଲେ
ରାମଙ୍କ ଯିବା ମାର୍ଗରେ ଲକ୍ଷ୍ମଣ ଚଳିଲେ ।
ଲକ୍ଷ୍ମଣ ସେଠାରୁ ରହିଁ ଅଦୃଶ୍ୟ ହୋଇଲା
ସୀତାଙ୍କୁ ଏକା ଦେଖିଣ ରାବଣ ଅଇଲା ।
ଗୋଟିଏ ଶିର ତାହାର ଆଉ ବେନିଭୁଜ
ପାଉଁଶ ବୋଳି ହୋଇଛି ବିଶ୍ରବା ତନୁଜ ।
କର୍ଣ୍ଣରେ ତମ୍ବାକୁଣ୍ଡଳ କପାଳେ ଚନ୍ଦନ
ପାଦରେ କଠୋଉ କଷାବସ୍ତ୍ର ପରିଧାନ ।
ଏକହସ୍ତେ ଜପାମାଳ ଆରହସ୍ତେ ଥାଳ
ଏମନ୍ତ ବେଶରେ ଗଲା ବିଶ୍ରବାର ବାଳ ।
କୁଟୀ ନିକଟରେ ହେଲା ଶିବ ଶିବ କହି
ଲଇଁ ଚାହିଁଲେ ତାହାକୁ ଦେବୀ ବଇଦେହୀ ।
କ୍ଷୁଧାର୍ତ୍ତୀ ତପୀ ଏ ଅଟେ ଧରେ ରୁଦ୍ରଦୀକ୍ଷା
ଆଶ୍ରମୁଁ ବାହାର ହେଲେ କରେ ଧରି ଭିକ୍ଷା ।
ଲକ୍ଷ୍ମଣ ବାକ୍ୟକୁ ଏଡ଼ି ଡେଇଁ ଗାର ତିନି
ଭିକ୍ଷା ନିଅ ବୋଲି ଗଲେ ଜନକ ନନ୍ଦିନୀ ।

ଥାଇ ପାଶେ ଯାନ୍ତେ ଦେଖି ଲଙ୍କା ମହୀପାଳ
ଆକର୍ଷି ଧଇଲା କରେ ସୀତାଙ୍କ ଅଞ୍ଚଳ ।
ବଳେ ନେଇ ବସାଇଲା ତାଙ୍କୁ ବିମାନରେ
ବେଗେ ରଥ ବାହି ଚଳେ ଦକ୍ଷିଣ ମାର୍ଗରେ ।
ମାର୍କଣ୍ଡ ବୋଇଲେ ଶୁଣ ରାଜା ଯୁଧିଷ୍ଠିର
ଭାଦ୍ରବ କୃଷ୍ଣ ଅଷ୍ଟମୀ ଅଟେ ସେ ଦିନର ।
ରବିବାର ଅନୁରାଧା ନକ୍ଷତ୍ରର ଭୋଗ
ନାଗ କରଣ ବୈଧୃତି ନାମରେ ଯେ ଯୋଗ ।
ସେଦିନ ରାବଣ ସୀତା ହରିନେଲା ବଳେ
ମନ୍ଦଯୋଗରେ ପାପିଷ୍ଠ ଏହା କରି ଚଳେ ।
ବେଳ ଦଶଦଣ୍ଡଠାରେ ରାବଣ ଚଳିଲା
ଜଟାୟୁ ପକ୍ଷୀ ଦେଖିଣ ରଥକୁ ଗିଳିଲା ।
ରାମ ରାମ କହି ଯହୁଁ କାନ୍ଦିଲେକ ସତୀ
ଥଣ୍ଟ ମାରି ପକ୍ଷୀ ରଥ କଲା ବିନଶ୍ୟତି ।
ଦଶାନନ ରଥ ଭଗ୍ନ ଦେଖି ମହାରାଗେ
ଜଟାୟୁ ପକ୍ଷୀର ଡେଣା ଛେଦିଲା ଖଡ଼ଗେ ।
ପୁଷ୍ପକ ରଥ ସ୍ମରନ୍ତେ ଆସିଲା ବହନ
ତହିଁ ଯାଇ ସୀତା ରଖେ ଅଶୋକ କାନନ ।
ଯୁଧିଷ୍ଠିର ପୁଚ୍ଛାକଲେ ଶୁଣ ମାରକଣ୍ଡେ
ମାରୀଚ ଯେ ନାଶଗଲା ଶ୍ରୀରାମ କୋଦଣ୍ଡେ
ମାୟାମୃଗ ମାରି ରାମ ପୁଣି କଲେ କିସ
ସେହି କଥା ମୋ ଆଗରେ କରନ୍ତୁ ପ୍ରକାଶ ।
ମାର୍କଣ୍ଡ ବୋଇଲେ ତୁମ୍ଭେ ଶୁଣ ଦଣ୍ଡଧାରୀ
ମାରୀଚକୁ ମାରି ରାମ ଅନ୍ୟ ମୃଗେ ମାରି ।
ଲେଉଟିଲେ କନ୍ଧେ ଘେନି ମୃଗଭାର ଗୋଟି
ଅର୍ଦ୍ଧପଥ ମଧ୍ୟରେ ସେ ଲକ୍ଷ୍ମଣଙ୍କୁ ଭେଟି ।
ଲକ୍ଷ୍ମଣେ ଦେଖି ବୋଲନ୍ତି ପ୍ରଭୁ ରାମଚନ୍ଦ୍ର
ସୀତାଙ୍କୁ ଛାଡ଼ି ଅଇଲୁ ପଡ଼ିଲା ପ୍ରମାଦ ।
ମନେ ଏହା ଭାବୁଁ ତହୁଁ ଅଇଲେ ଶ୍ରୀରାମ
ନ ଦେଖିଲେ ସୀତାଙ୍କୁ ସେ ଯାଇଣ ଆଶ୍ରମ ।
ବହୁ ଆକୁଳେ ବୁଲନ୍ତି ଖୋଜି ସେହି ବନ
ନ ଦେଖି ସୀତାଙ୍କୁ ଉଚ୍ଚେ କରନ୍ତି କ୍ରନ୍ଦନ ।
ତାମ୍ରଚୂଡ଼ ପକ୍ଷୀ ତାଙ୍କୁ କହିଲା ବାରତା
ପ୍ରଭୋ ରାବଣ ହରିଲା ତୁମ୍ଭର ବନିତା ।
ତଥ୍ୟ କଥା ତାହାଠାରୁ ପାଇ ରଘୁନାଥ
ମୁକୁଟ ବାନ୍ଧିଲେ ନେଇ ତାମ୍ରଚୂଡ଼ ମାଥ ।
ତହୁଁ ଶ୍ରୀରାମ ଖୋଜିଣ ଯାନ୍ତି ଘୋରବନେ
ଚକୁଆ ଚକୋଇ ଦେଖି ପମ୍ପାସର ସ୍ଥାନେ ।
ଶ୍ରୀରାମ ପଚାରନ୍ତେ ସେ କହିଲା ଅଭାବ
କୋପେଣ ଶାପ ତାହାକୁ ଦେଲେକ ରାଘବ ।
ଯାନ୍ତି ଶ୍ରୀରାମ କରଞ୍ଜ ଘୋରବନ ମାର୍ଗେ
ବକ ଏକ ଦେଖିଲେ ସେ ବନ ପୂର୍ବ ଭାଗେ ।
ତାକୁ ପୁଚ୍ଛାକଲେ ରାମ ଦେଖିଲୁ କି ସତୀ
ସେ ବୋଇଲା ହରିନେଲା ଲଙ୍କା ଅଧିପତି ।
ରଥେ ଥାଇ ରାମ ରାମ ବୋଲୁଥିଲେ ସେହି
ଦକ୍ଷିଣ ଦିଗକୁ ରଥ ନେଲା ବେଗେ ବାହି ।
ଏମନ୍ତ ଶୁଣି ସାନନ୍ଦ ହେଲେ ରଘୁବୀର
ରାମବକ ବୋଲି ନାମ ଦେଲେକ ତାହାର ।
ତହୁଁ ଯାଇ ବେଣୁଭଦ୍ରା ନଦୀ ସନ୍ନିଧାନେ
ଦେଖିଲେ ରାମ ଜଟାୟୁ ପଡ଼ିଛି ସେ ସ୍ଥାନେ ।
ଜଟାୟୁ ବୋଲେ ରାବଣ ରଥ ମୁଁ ଗିଳିଲି
ସୀତା ମରିବେ ଭାବିଣ ପୁଣି ଉଦ୍‌ଗାରିଲି ।
ଦକ୍ଷିଣ ବାରାନିଧିର କୂଳେ ସେହି ଲଙ୍କା
ମୋରଶକ୍ତି ଥିଲେ ତୋତେ ସୀତାଦ୍ୟନ୍ତି ଏକା
ତୁମ୍ଭଙ୍କୁ ଏହି ବାରତା କହିବା ନିମନ୍ତେ
ତେଣୁ ପ୍ରାଣ ରହିଅଛି ମମ ହୃଦଗତେ ।
କହିଣ ପରାଣ ତ୍ୟାଗ କଲା ଜଟାୟୁଷ
ତାହାକୁ ଦହିଲେ ରାମ ଜାଳିଣ ହୁତାଶ ।
ଗୋରେଖ ଭେଟିଲେ ରାମ ପରମାର୍ଥ ବନେ
ଅନେକ ଯୋଗ କହିଲେ ରାମଙ୍କୁ ପ୍ରସନ୍ନେ ।
ତହୁଁ ଯାଇ ପ୍ରବେଶିଲେ ମନୋହର ବନ
ମଣି ବନ୍ଧା ଦେଇ ତହୁଁ କଲେ କ୍ଷୀରପାନ ।
ତହୁଁ ଯାଇ ପରବେଶ ଅସକନ୍ଦ ବନେ
ଜମ୍ବୁ ବନରେ ଭେଟିଲେ ପବନ ନନ୍ଦନେ ।
ଲକ୍ଷ୍ମଣ ହନୁମନ୍ତର ହୋଇଲା ପୀରତି
ବକ୍ର କାଛଟି କୁଣ୍ଡଳ ଚିହ୍ନି ରଘୁପତି ।
ପ୍ରତ୍ୟୟ ଗଲେ ଶ୍ରୀରାମ ତୁଟିଲାକ ଭ୍ରମ
ନିଶ୍ଚେ ଏ ଆମ୍ଭର ଭକ୍ତ କରିବ ଏ କାମ ।
ହନୁ ଭକତି ହୋଇଲା ରାମ ପାଦେ ଯହୁଁ
ଜାମ୍ବବ ସୁଗ୍ରୀବ କଲେ ଦରଶନ ତହୁଁ ।
ସୁଗ୍ରୀବ ବଚନେ ରାମ ସପ୍ତଶାଳା ଛେଦି
ଆବର ମୈତ୍ରର ଛଳେ ବାଳିବୀର ବଧି ।
ସୁଗ୍ରୀବରକୁ ରାଜନ କରି କିଷ୍କିନ୍ଧ୍ୟାରେ
ଆପଣେ ରହିଲେ ମାଲ୍ୟବନ୍ତର ଗୁହାରେ ।
ଶତବଳ ସେ ଜାମ୍ବବ ଆବର ସୁଷେଣ
ଗବୟ ଗବାକ୍ଷ ହନୁ ଗନ୍ଧମାରଦନ ।
ନଳ ନୀଳ ସାରସ ଯେ ପାରାସ ଦ୍ୱିବିନ୍ଦ
ସମ୍ପାତି କେଶରୀ ମାଲ୍ୟବନ୍ତ ଯେ ମହେନ୍ଦ୍ର ।
ଏ ବିଧିରେ ବହୁତର ସେନା ଯୂଥପତି
ସୀତା ଖୋଜିବାକୁ ସୁଗ୍ରୀ ଏହାଙ୍କୁ ପେଷନ୍ତି ।

ଜାନକୀ ନିମନ୍ତେ ଚାରିଦିଗେ ଦୂତ ଗଲେ
ଦକ୍ଷିଣକୁ ଯାଇ ହନୁ ଲଙ୍କାରେ ମିଳିଲେ ।
ମାୟାରୂପେ ଖୋଜେ ହନୁ ଘରେ ଘରେ ପଶି
ଅଶୋକବନେ ଭେଟିଲା ସୀତା ଶୁଭ୍ର କେଶୀ
ସବୁ ବିଷୟ କହିଲା ଜାନକୀ ପାଶରେ
ଆସିବାବେଳରେ ପଶେ ସେ ମଧୁବନରେ ।
କିଙ୍କର ଶାଳକଗଣ ତୁଲରେ ସଇନୀ
ନାଶକଲା ବୀର ହନୁ ପାଞ୍ଚପଦ୍ମ ପୁଣି ।
ସେନାପତି ପ୍ରହସ୍ତ ଯେ ଆଉ ଜମ୍ବୁମାଳୀ
ଅକ୍ଷୟ କୁମାର ତୁଲେ ବହୁ ଦୈତ୍ୟ ଦଳି ।
ଇନ୍ଦ୍ରଜିତ ବାନ୍ଧିନ୍ୟନ୍ତେ ପୋଡ଼ିଦେଲା ଲଙ୍କା
ରାକ୍ଷସବଳ ମର୍ଦ୍ଦନ କଲା ବୀର ଏକା ।
ବାହୁଡ଼ି ବାର୍ତ୍ତା କହିଲା ଶ୍ରୀରାମଙ୍କ ପାଶ
ଶୁଣି ରଘୁନାଥ ହେଲେ ବିରସେ ହରଷ ।
ବିଭୀଷଣ ଯେ ଶରଣ ପଶି ଦେଲା ବୁଦ୍ଧି
ପର୍ବତ ଆଣି ସମୁଦ୍ରେ ସେତୁବନ୍ଧ ବାନ୍ଧି ।
ଇନ୍ଦ୍ରଜିତ କୁମ୍ଭକର୍ଣ୍ଣ ପୁଣି ଯମଘଣ୍ଟ
ମତ୍ତ ଉନ୍ମତ୍ତ ଅନ୍ଧକ ଆଉ କାଳଘଣ୍ଟ ।
ମହାପାରୁଶ ଯେ ନରାନ୍ତକ ଦେବାନ୍ତକ
କୁମ୍ଭ ନିକୁମ୍ଭ ତାରାକ୍ଷ ଆଉ ଜୁଲୁପାକ୍ଷ ।
ଘୋରମୁ ଗଜମୁଖ ଗନ୍ଧର୍ବ ଅସୁର
ଶୁକ ସାରଣ ନିକୁମ୍ଭ ବୀରବାହୁ ବୀର ।
ସୁରଭ ମହୀରାବଣ ରାବଣର ମୂଳେ
ସ୍ଥୂଳଜଙ୍ଘ ଆଦି ଦୈତ୍ୟ ନାଶଗଲେ ହେଳେ ।
ସୀତା ପରୀକ୍ଷା ଦେଲେ ଯେ ଲଙ୍କାରେ ମୁରାଟ
ବିଭୀଷଣେ ମନ୍ଦୋଦରୀ ଦେଲେ ଶିରେ ପାଟ
ଅନେକ ସାନନ୍ଦ ହେଲେ ବାନର ସଇନି
ଉତ୍ତମ ମୂରତି ଗଲେ ସୀତା ସଙ୍ଗେ ଘେନି ।
ମେଦିନୀ ଭାରାକୁ ହେଲେ ଶ୍ରୀରାମ ନିବାରି
ବହୁତ ସାନନ୍ଦ ହେଲେ ସ୍ୱର୍ଗେ ବଜ୍ରଧାରୀ ।
ଅଯୋଧ୍ୟାରେ ଅଭିଷିକ୍ତ ହେଲେ ରଘୁନାଥ
ଋଷିମାନେ ଅର୍ଘ୍ୟଦେଲେ ରାମଙ୍କୁ ତ୍ୱରିତ ।
ଶୁଣ ବାବୁ ଯୁଧିଷ୍ଠିର ମାର୍କଣ୍ଡ କହନ୍ତି
ଶ୍ରୀରାମ ପ୍ରାୟେ ଠାକୁର ଭୋଗିଲେ ବିପତ୍ତି ।
ସେ ପୁଣ ଦୁଃଖ ସହିଲେ କର୍ମର ଅବଳେ
ରାଜ୍ୟେ ଆସି ପୁଣି ରାମ ସୁଖଭୋଗ କଲେ ।
ବାବୁ ଦୁଃଖ ସୁଖ ଦିନ ରାତି ଯେ ସମାନ
ମୁଁ ଯାହା କହିଲି ତାହା ସତ୍ୟକରି ଘେନ ।
ଏହିପରି ଲାଗିଅଛି ଜାଣ କାଳେ କାଳେ
ଦେହୀଲୋକେ ଭୋଗକରେ ସୁଖଦୁଃଖ ବେଳେ
ଦୁଃଖ ଅନ୍ତେ ସୁଖ ପୁଣି ହେଉଥାଏ ଭୋଗ
ଏହାକୁ ଚିହ୍ନି ରଖିଲେ ବୋଲି ମହାଭାଗ ।
କହନ୍ତି ଅଗସ୍ତି ମୁନି ଶୁଣ ଆହେ ଶ୍ରୋତା
ଆରଣ୍ୟକ ପର୍ବର ଯେ ଏମନ୍ତ ବାରତା ।
ଶୁଣିଣ ଧର୍ମଙ୍କ ସୁତ ଆନନ୍ଦିତ ହେଲେ
ଦଣ୍ଡକ ଅରଣ୍ୟ ସର୍ବେ ପ୍ରସ୍ଥାନ କରିଲେ ।
ଜୟ ଜୟ ରଘୁନାଥ ଦଶରଥ ସୁତ
ସତ୍ୟସନ୍ଧ୍ୟା ବୋଲି ତୁମ୍ଭେ ଜଗତେ ବିଦିତ ।
ଯାଗ ରଖି ତାଡ଼କାକୁ କରିଅଛ ହତ
ଚରଣ ଲଗାଇ ନାରୀ କଲ ଯେ ମୁକତ ।
ଶିବଧନୁ ଭାଙ୍ଗିବାରୁ ଜାନକୀଙ୍କ ତାତ
ନିଜ କନ୍ୟା ସମର୍ପିଲେ ହୋଇ ଆନନ୍ଦିତ ।
ବନେ ବିହରିଲ ଭାଇ ଭାରିଯା ସହିତ
ସୀତାଙ୍କୁ ଚୋରାଇ ନ୍ୟନ୍ତେ ବିଶ୍ରବାର ସୁତ ।
ରଣେ ତାହାକୁ ମାଇଲ ତା ବଂଶ ସହିତ
ଦୁଷ୍ଟକୁ ମାରି ନାଶିଲ ଦେବଙ୍କ ଆରତ ।
ମୁହିଁ ଯେ ଅଧର୍ମୀ ପାପୀ ଆହେ ସୀତାକାନ୍ତ
ସର୍ବଦା ତୁମ୍ଭର ଅଟେ ଅଭକତ ପୁତ୍ର ।
ମୋହର ବିପଦରାଶି ନୋହିଲାକ ହତ
ତୁମ୍ଭର ଶ୍ରୀପଦ୍ମପାଦେ ରହୁନାହିଁ ଚିତ୍ତ ।
ଆବର ମାୟା ଜଞ୍ଜାଳେ ହୋଇ ଜଡ଼ିଭୂତ
ତୁମ୍ଭ ନାମ ଧ୍ୟାନ ମନୁ ହୁଅଇ ବିସ୍ମିତ ।
ଏହା ଯେପରି ନ ହୁଏ କର ସେହିମତ
ଶାରଳା ଦାସ ମାଗଇ ଏ ଭିକ୍ଷା ସତତ ।



## ସତ୍ୟଭାମା ଓ ଦ୍ରୌପଦୀଙ୍କ କଥୋପକଥନ

ଏଥୁ ଅନନ୍ତରେ ପୁଣି ମନୁ ଦଣ୍ଡଧର
ଅଗସ୍ତି ମୁନିଙ୍କ ପାଦେ କରି ନମସ୍କାର ।
ପୁଚ୍ଛାକଲେ ଏଥୁଅନ୍ତେ ପୁଣି ହେଲା କିସ
ସେ କଥା କହନ୍ତୁ ମୁହିଁ ଶୁଣି ହେବି ତୋଷ ।
ଅଗସ୍ତି ମୁନି କହିଲେ ଶୁଣ ଦଣ୍ଡଧାରି
ଏଥୁଅନ୍ତେ ଯାହା ହେଲା କହୁଛି ବିସ୍ତାରି ।
ଦଣ୍ଡକ ଅରଣ୍ୟେ ଯାନ୍ତେ ପର୍ଶ୍ଚିମ ପ୍ରଶସ୍ତେ
ବିଷ୍ଣୁଭଦ୍ର ବୋଲିକରି ଏକଇ ବନସ୍ତେ ।
ରୁଦ୍ରାଙ୍ଗୀ ବୋଲିଣ ତହୁଁ ବହେ ନଦୀଗୋଟି
ମେରୁ ଦକ୍ଷିଣ ଭାଗରୁ ବହଇ ସେ ଫୁଟି ।
ଅନିଳକ ବୋଲି ତହିଁ ଏକଇ ପର୍ବତ
ତାହା ଉପରେ ବିଜୟ କଲେ ପଞ୍ଚଭ୍ରାତ ।

ତାହାଙ୍କ ପାଶେ ଅଛନ୍ତି ଦ୍ରୁପଦ କୁମାରୀ
ଋଷିମାନେ ତାଙ୍କ ପାଶେ ଛନ୍ତି ବେଢ଼ିକରି ।
ବୈଶାଖ ଶୁକଳପକ୍ଷ ଦ୍ୱିତୀୟାର ତିଥି
ରୋହିଣୀ ନକ୍ଷତ୍ର ଆଉ ବାର ବୃହସ୍ପତି ।
ବାଳବ ନାମେ କରଣ ଶୁଭ ନାମେ ଯୋଗ
ବୃଷ ସଂକ୍ରାନ୍ତିକୁ ଦିନ ସତାଇଶ ଭୋଗ ।
ସେ ଦିନ ନାରକାସୁର ବଧିଲେ ଶ୍ରୀହରି
ଆଣିଲେକ ଷୋଳସସ୍ର କନ୍ୟା ଗୋପନାରୀ ।
ସତ୍ୟଭାମା ସାରଥି ଯେ ନାରାୟଣ ରଥେ
ଯୁଧିଷ୍ଠି ଭେଟିଲେ ବିଷ୍ଣୁଭଦ୍ରା ପରବତେ ।
ଦୂରୁ ଦେଖି ନନ୍ଦିଘୋଷ ହରି କଲେ ତେଜ୍ୟା
ଯୁଧିଷ୍ଠିରଙ୍କ ଚରଣେ ନମି ଦେବରାଜା ।
କୃଷ୍ଣଙ୍କୁ ଦେଖି ସାନନ୍ଦ ହେଲେ ଧର୍ମସୁତ
ଆସ୍ଥାନୁ ଉଠିଣ ତାଙ୍କୁ କଲେ କୋଳାଗ୍ରତ ।
ବଟବୃକ୍ଷ ତଳେ ଥିଲା ପାଞ୍ଚାଳ ଦୁହିତୀ
ତାଙ୍କ ସନ୍ନିଧେ ମିଳିଲେ ଯାଇ ଶକ୍ରାବତୀ ।
ଦ୍ରୌପଦୀ ପାଶେ ବସାଇଂ ସେ ସତ୍ୟଭାମାଙ୍କୁ
କୁଶଳ ବାରତା ପୁଣି ପୁଛିଲେ ତାହାଙ୍କୁ ।
ସତ୍ୟଭାମା ବୋଇଲେକ ଶୁଣ ମହାଦେବୀ
ସ୍ତିରୀକୁଳେ ଜାତ ହୋଇ ତୁ ବଡ଼ ସାଧବୀ ।
ସମସ୍ତ ଲକ୍ଷଣେ ପୂର୍ଣ୍ଣ ଅଟୁ ଯାଜ୍ଞସେନୀ
ସଂସାରରେ ବୋଲାଇଲୁ ପାଣ୍ଡବ ଘରଣୀ ।
କଥାଏକ ଅଛି ମୁହିଁ ତୁମ୍ଭଙ୍କୁ ପୁଛିବି
ଭାବରେ କହିବ ମୋତେ ମୁଁ ଯାହା କହିବି ।
ଦ୍ରୌପଦୀ ବୋଇଲେ ତୋର ଶ୍ରୀହରି ବଲ୍ଲଭ
କେବଣ କଥା ତୋହର ଅଛଇ ଅଭାବ ।
ତୁମ୍ଭ ପୁଛିବା କଥାଏ ହେଲେ ମୋର ଜ୍ଞାନ
ନିଶ୍ଚୟ କହିବି ତୋତେ କହ ସେ ବଚନ ।
ପାଞ୍ଚାଳୀ ଆଗେ କହିଲେ ତହୁଁ ଶକ୍ରାବତୀ
ପୁରୁଷଙ୍କ ବଶ ଜାଣୁ ତୁହି ଗୋ ଦ୍ରୌପଦୀ ।
ବତ୍ରିଶ ସହସ୍ର ଆମ୍ଭେ କୃଷ୍ଣର ଯେ କନ୍ୟା
ସବୁପୁରେ ପରବେଶ ହୋଇ ଦେବକନ୍ୟା ।
ଅଷ୍ଟପାଟବଂଶୀ ଆମ୍ଭେ ଥାଉଁ ଦିବାରାତି
ଏତେ କନ୍ୟା ମନାଇଣ ନ ପାରୁ ଶ୍ରୀପତି ।
ତୋର ଚରିତ କେମନ୍ତେ ଅଟଇ ଗୋ ମାଏ
ଏକ ସ୍ତିରୀ ପଞ୍ଚପତି ଦେଖିବା ଉପାୟେ ।
ନ ଜାଣଇ ସ୍ତମ୍ଭ ମୋହ ପୁରୁଷଙ୍କୁ ଭଣ୍ଡି
ସେ ବିଦ୍ୟାରୁ ମୋର ଆଗେ କହ ଏକକାଣ୍ଡି ।
ଯେବଣ ମନ୍ତ୍ରେ ମୋହିବି ମୁହିଁ ଚକ୍ରପାଣି
ସୁଦୟା କରିଣ ମୋତେ କହ ଗୋସାମଣି ।

ଅନେକ ବିନୟୀ ହୋଇ ସତ୍ୟଭାମା କହି
ସତ୍ୟ କରିଣ କହିବୁ ମୋତେ ତୁ ବୁଝାଇ ।
ବୋଲନ୍ତି ପାଞ୍ଚାଳୀ ଶୁଣ ଆଗୋ ଶକ୍ରାବତୀ
ସତ୍ୟ କହିବି ତାହା ନ କରିବୁ ପ୍ରତୀତି ।
ନ ଜାଣଇ ଔଷଧି ନ ଜାଣେ ମନ୍ତ୍ରକାଣ୍ଡି
ନୁହଇ ମୁଁ ଜ୍ଞାନଦାତା ନୁହଇ ପାଖଣ୍ଡି ।
ମୋହର କର୍ମରେ ଜାଣ ଅଛି ପାଞ୍ଚପତି
ବିଚାରି ଖଟଇ ମୁହିଁ ତାହାଙ୍କ ପ୍ରକୃତି ।
ନିତି ସାଧ ମତେ ମୁହିଁ କରେ ତାଙ୍କ କର୍ମ
ପାଞ୍ଚପତି ସେବୁଥାଏ ଚିନ୍ତି ଦେବଧର୍ମ ।
ନ କରଇ ବ୍ରତ ମୁହିଁ ସୂପକାର ବିଧି
ନିତ୍ୟେହେଁ ଜାଣଇ ମୁହିଁ ରାନ୍ଧଣା ପ୍ରସିଦ୍ଧି ।
ଏକଶତ ଅଛନ୍ତି ମୋ ଧାଈ ପରିବାରୀ
ସର୍ବେ ଚରଚଇ ମୁହିଁ ନିତ୍ୟକର୍ମ ସାରି ।
ଅଶ୍ୱଶାଳ ଗଜଶାଳ ସବୁଲାଗେ ଚିନ୍ତା
ଏକାନ୍ତେ ଆରାଧି ଥାଇ ମୁହିଁ ପତିଭକ୍ତା ।
ସ୍ୱାମୀ ଆଦି କରି ଯେତେ ଦାସ ଦାସୀଗଣ
ସମସ୍ତଙ୍କୁ ମୋର ହୃଦେ ଏକଇ ସମାନ ।
ସମସ୍ତେ ଜାଣନ୍ତି ମୋର ଛନ୍ତି ପାଞ୍ଚପତି
ଉଚ୍ଚନୀଚ ନାହିଁ ମୋର ସବୁଠାରେ ଭକ୍ତି ।
ଧାର୍ମିକ ବିବେକ ଆଉ ପଣ୍ଡିତ ସୁଯୋଗ୍ୟ
ଧୃତିଶ୍ରୁତି ସହିତେ ଯେ ଉଦେ ହୁଏ ଭାଗ୍ୟ ।
ଆବର କଥାଏ ତୁମ୍ଭେ ଶୁଣ ଶକ୍ରାବତୀ
ମନ୍ତ୍ର ଔଷଧିର ଅଛି ଏକଇ ଭାରତୀ ।
ଜ୍ଞାନପୁରୀ ବୋଲିକରି ଏକଇ ଗ୍ରାମରେ
ଜଣେ ବିପ୍ର ଥିଲା କଳ୍ପ ନାମରେ ସେଠାରେ ।
ସେ କଳ୍ପ ଦ୍ୱିଜ ବସିଣ ହର୍ଷେ ଏକଦିନ
ତାର ଘରଣୀକୁ ଡାକି ବୋଇଲା ଏସନ ।
ଶୁଣ ସଙ୍ଗାତୁଣୀ ମୁହିଁ କହେ ସଦଭାବେ
କନ୍ୟାଏ ଆଣିବି କର ସନମତ ଏବେ ।
ତାହା ଶୁଣିଣ ବିରସ ହେଲା ଶାଳ୍ମମତୀ
ଲୋଡ଼ିଲା ମନ୍ତ୍ର ଔଷଧି ବୁଲି ଚଉକତି ।
ଅନେକ ଔଷଧି ନାରୀ କରଇ କାନ୍ତକୁ
କେବେହେଁ ତୃପତି ନୁହେଁ ତାହାର ମନକୁ ।
କରଞ୍ଜୀ ନାମରେ ଥିଲା ଏକଇ ପିଶାଚୀ
ଲୋକଙ୍କୁ ଭଣ୍ଡାଇ ବହୁ ଧନରତ୍ନ ସଞ୍ଚି ।
ତାହାକୁ ନିକଟେ ଡାକି ବୋଲେ ଶାଳ୍ମମତୀ
ସୁହାଗ ଔଷଧି ଦେବୁ ହେବି ମୁଁ ତୃପତି ।
ସ୍ୱାମୀ ଯେଉଁପରି ଆଉ ନ ଆଣେ ତରୁଣୀ
ଏମନ୍ତ ଔଷଧି ତୁହି ମୋତେ ଦେବୁ ଆଣି ।

ଶୁଣି ମୂଳିକା ଖଣ୍ଡିଏ ଦେଲା ସେ ରାକ୍ଷସୀ
ବାଟି ଭୋଜନରେ ତୋର ସ୍ୱାମୀକି ଦିଅସି ।
କିଛି ଧନ ଘେନି ତହୁଁ ପିଶାଚୁଣୀ ଗଲା
ରବିବାରେ ତା ସ୍ୱାମୀକି ଭୋଜନେ ପର୍ଷିଲା ।
ସ୍ତିରୀ ସ୍ୱଭାବ ଅଟଇ ତାର ମନ୍ଦ ବୁଦ୍ଧି
କାଳେ ହେଲା ତାର ସେହି ବିପାକ ଔଷଧି ।
ଜଳୋଦରୀ ହୋଇ ତାର ବଢ଼ିଗଲା ପେଟ
ପ୍ରାଣ ଶେଷକାଳ ଆସି ହୋଇଲା ନିକଟ ।
କିଛିଦିନ ଅନ୍ତେ କଳ୍ପ ବିପ୍ର ନାଶଗଲା
ତଦପରେ ଶାଲ୍ମମତୀ ପରାଣ ହାରିଲା ।
ଶାଲ୍ମମତୀକି ଶମନଦୂତେ ଘେନିଗଲେ
କୃତାନ୍ତକ ବସି ତାହା ବିଚାର ଯେ କଲେ ।
ଜନ୍ତୁନାଥ ବୋଇଲେ ଏ ସ୍ୱାମୀଠାରେ ଦ୍ରୋହୀ
ଏହି ମୋଢ଼ୀ ପାପିଷ୍ଠୀର ମୁଖ ଯେ ନ ଚାହିଁ ।
ନିଜ ସ୍ୱାମୀକି ନାଶିଲା ଔଷଧି ଦେଇଣ
ଏହା ମାଂସ ପୋଡ଼ କାଟି ତିରଣ ପ୍ରମାଣ ।
ତିନି ବରଷ ପର୍ଯ୍ୟନ୍ତ ତା ମାଂସ ପୋଡ଼ିଲେ
ତହୁଁ ଭେକ କରି ଜୀର୍ଣ୍ଣକୂପେ ପକାଇଲେ ।
ଦ୍ରୌପଦୀ ବୋଇଲେ ଆଗୋ ସତ୍ୟଭାମା ଶୁଣ
ଔଷଧି କଲା ସ୍ତିରୀଙ୍କ ଏମନ୍ତ କଷଣ ।
ଭାବରେ ସେବା କରିଣ ଭଜନ୍ତି ଯେ ମତି
ପତିଭକ୍ତା ସ୍ତିରୀଙ୍କର ହୁଏ ସଦଗତି ।
ମୁହିଁ ଦେଖିଲି ତୋହର ଭାଗ୍ୟବତୀ ପଣ
ଅର୍ଦ୍ଧଆତ୍ମା କରିଛନ୍ତି ତୋତେ ନାରାୟଣ ।
ତୋର ଯୋଗୁଁ ଇନ୍ଦ୍ରଠାରେ ଅପ୍ରୀତି ହୋଇଲେ
ତାକୁ ଜିଣି ପାରିଜାତ ତୋତେ ଆଣି ଦେଲେ
ଗୋସିଂହ ଦଇତ ବଧ କରାଇଲୁ ଏକା
ଏବେ ବଧ କରାଇଲୁ ଦନୁଜ ନାରକା ।
ଜାଣିଣ ଖଟିଛୁ ତୁହି ସ୍ୱାମୀର ପ୍ରକୃତି
ତେଣୁ ସତ୍ୟଭାମା ତୁହି ଅଟୁ ଭାଗ୍ୟବତୀ ।
ପୁରୁଷ ବେଭାରେ ଜାଣ ଚଉଷଠି କଳା
ଏଥକୁ ଶୀତଳକାରୀ ଅଟନ୍ତି ଅବଳା ।
ପରେ ଜନ୍ମ ହୋଇ ହୁଏ ହୃଦର ବଲ୍ଲଭୀ
ପୁତ୍ର ପୁତ୍ରୀ ଜନମିଲେ ବୋଲାଏ ସେ ତ୍ରିଭି ।
ତିନି ଅକ୍ଷର ଅଟଇ ସ୍ତିରୀଙ୍କର ନାମ
ଏ ବିଧି ତିନି ଅକ୍ଷରେ ଉତପତ୍ତି ବ୍ରହ୍ମ ।
ପତି ଆସନ୍ତେ ଆସନ କରି ପରିତ୍ୟଜ୍ୟା
ପତି ପ୍ରୀତିରେ ମୋହିତ ମଣ୍ଡଣି ସୁଶଯ୍ୟା ।
ଆଗେ ସତ୍ୟା ଏହିପରି ଖଟିଲେ ସ୍ୱାମୀକି
ମନ୍ତ୍ର ମଉଷଧି ଆଉ ଲୋଡ଼ିବ କାହିଁକି ।

ସେ ଯେ ଅପର୍ଣ୍ଣା ଅନାଦି ପୁଣି ସିଦ୍ଧବୁଦ୍ଧି
ସତ୍ୟଭାମାକୁ ସୁବାକ୍ୟ କହିଣ ପ୍ରବୋଧି ।
ପୁଣି ବୋଇଲେ ତୁମ୍ଭେ ତ ଜଗତର ମାତ
ମୋତେ ପୁଚ୍ଛିଲ ତୁମ୍ଭଠୁଁ ଜାଣେ କି ବହୁତ ।
ଏହାଶୁଣି ସତ୍ୟଭାମା ଆନନ୍ଦିତ ହେଲେ
ଧନ୍ୟ ଧନ୍ୟ ଦ୍ରୌପଦୀଙ୍କି ବହୁ ପ୍ରଶଂସିଲେ ।
ତେଣେ ଶ୍ରୀକୃଷ୍ଣ ଆବର ଧର୍ମ ଯୁଧିଷ୍ଠିର
ଦୁଃଖ ସୁଖ କଥା କ୍ଷଣେ ହେଲା ଦୁହିଙ୍କର ।
ଯୁଧିଷ୍ଠି ବୋଇଲେ ସଦା ଆମ୍ଭ ଦୁଃଖ ଏହି
କେବେ ତାରିବୁ ଆମ୍ଭଙ୍କୁ ତୁହି ଦୟାବହି ।
ଶ୍ରୀକୃଷ୍ଣ ବୋଇଲେ ଦେବ ଆଉ କିଛି ଦିନେ
ବନବାସ ଦୁଃଖ ଯିବ ନ ଭାବନ୍ତୁ ମନେ ।
ଏହା କହିଣ ତାହାଙ୍କ ଚରଣେ ନମିଲେ
ବିଦାୟ ହୋଇ ଆପଣା ରଥରେ ବସିଲେ ।
ସତ୍ୟଭାମା କୃଷ୍ଣ ଦୁହେଁ ରଥେ ବସିଗଲେ
ଆପଣା ଭୁବନେ ଯାଇ ପ୍ରବେଶ ହୋଇଲେ ।
ହେ ବ୍ରଜରାଜ ନନ୍ଦନ ଚିକ୍କଣ କାଳିଆ
କଦମ୍ବମୂଳ ବିହାର ହେ ବାଙ୍କଚୂଳିଆ ।
ଦୁଷ୍ଟଙ୍କ ଦର୍ପଦଳନ ହେ ବନମାଳିଆ
ସର ଲବଣୀ ଖାଇଲ କରି ଚୋରାଣିଆ ।
ଯମୁନାରେ ହୋଇଥିଲ ଅନେକ ଘାଟିଆ
ଠକିଲ ଗୋପୀଙ୍କୁ ତୁମ୍ଭେ ହୋଇଣ ବଣିଆ ।
କାଳିକି ଦଳିଲ ଫେରୁପରେ ହୋଇ ଠିଆ
କେ କହିବ ତବ ଲୀଳା ହେ ଚକାଡୋଳିଆ ।
ଏହି ଭିକ୍ଷା ମାଗେ ମୁହିଁ ହେ ନବଘନିଆ
ମୋତେ ସାହା ହୁଅ କହେ ଶାରଳା ଦାସିଆ ।



## ନଳରାଜା ଉପାଖ୍ୟାନ

କହନ୍ତି ଅଗସ୍ତି ଆହେ ମନୁ ମହୀପତି
ଏ ଉତ୍ତାରୁ ଯାହା ହେଲା ଶୁଣ ଦେଇ ମତି ।
ଶ୍ରୀକୃଷ୍ଣ ତ ଦ୍ୱାରାବତୀପୁରେ ବିଜେକଲେ
ଏ ସମୟେ ବ୍ୟାସଦେବ ଆସି ପ୍ରବେଶିଲେ ।
ପାଣ୍ଡବ ତାହାଙ୍କୁ କଲେ ଭକ୍ତିରେ ପୂଜନ
ବସିବାକୁ ଦେଲେ ଆଣି କୁଶର ଆସନ ।
ମୁନି ତାହାଙ୍କୁ ବାଞ୍ଛିଲେ ବହୁତ କଲ୍ୟାଣ
ଦୁଃଖେ ଯୁଧିଷ୍ଠିର ଦେବ କହିଲେ ବଚନ ।
ଶୁଣ ତାତ ପୁଣ୍ୟବନ୍ତ ଅଟେ ଦୁର୍ଯ୍ୟୋଧନ
ରାଜା ହେଲା ଆମ୍ଭଙ୍କୁ ଯେ ନ ମିଳଇ ଅନ୍ନ ।
ଯେଉଁଦିନ ଯାଉ ବନଫଳ ଆମ୍ଭେ ଖାଉ
ଅଳସ ଜାତ ହୋଇଲେ ଉପବାସେ ଶୋଉ ।

ବଦୟନ୍ତି ବ୍ୟାସ ତୁମ୍ଭେ ଶୁଣ ଯୁଧିଷ୍ଠିର
ଦୁଃଖ ସହିଲେ ଯେ ସୁଖ ହୋଇବ ତୁମ୍ଭର ।
ସତ୍ୟେ ଇକ୍ଷ୍ୱାକୁ ବଂଶରେ ନଳ ନରପତି
ମହା ଧର୍ମଶୀଳ ରାଜା ପାଇଲାକ ଶାସ୍ତି ।
ତୁମ୍ଭ ପଞ୍ଚଭ୍ରାତା ତୁଲେ ତୁମ୍ଭର ଯୁବତୀ
ବଶିଷ୍ଠ ମାର୍କଣ୍ଡ ଆଦି ଲୋମଶ ଅଛନ୍ତି ।
ଯୁଧିଷ୍ଠିର ପୁଚ୍ଛାକଲେ ଶୁଣି ନଳକଥା
କିସମର୍ଥେ ନଳରାଜା ପାଇଲା ଅବସ୍ଥା ।
ବ୍ୟାସ ବୋଇଲେ କରଞ୍ଜ ନଦୀକୂଳ ପାଶ
ନୈଷଧ ବୋଲିଣ ତହିଁ ଅଛି ଏକଦେଶ ।
ବୀରସେନ ବୋଲି ଏକ ତହିଁର ରାଜନ
ଅଙ୍ଗଦସେନର ସେହି ଅଟଇ ନନ୍ଦନ ।
ବୀରସେନ ପତ୍ନୀ ନାମ ଅଟେ ଋତୁମତୀ
ନଳ ନାମରେ ତାହାର ହୋଇଲା ସନ୍ତତି ।
ରୂପେ କନ୍ଦର୍ପ ସମାନ ପୁଣି ଜିତେନ୍ଦ୍ରିୟ
ତେଜସ୍ୱୀ ଯଶସ୍ୱୀ ଅକ୍ଷପ୍ରିୟା ଅତିଶୟ ।
କୁଣ୍ଡିନଗ୍ର ବୋଲି ଅଛି ବିଦର୍ଭ ଦେଶରେ
ତହିଁର ରାଜା ଭୀମକ ନରେନ୍ଦ୍ର ନାମରେ ।
ରୋମାଞ୍ଚୀ ନାମରେ ତାର ଏକଇ ମହିଷୀ
ତାର ଗର୍ଭେ ଜାତହେଲେ କନ୍ୟା ତିନିଶିଷି ।
ଜ୍ୟେଷ୍ଠ ଦୁହିତାର ନାମ ଅଟେ ଦମୟନ୍ତୀ
ଦମ ଯେ ଦାନ୍ତ ଦମନ ଏ ତିନି ସନ୍ତତି ।
ଅତ୍ୟନ୍ତ ସୁନ୍ଦରୀ ସେହି ରୂପେ ବରାଙ୍ଗନା
ସୁରାସୁର ନର ଦେଖି ହେବେ ମୁଗ୍ଧମନା ।
କାମଦେବ ମୋହଯିବ ତା ରୂପକୁ ଦେଖି
ଦିନକର ନାଥ ଯାଇ ନ ପାରେ ଉପେକ୍ଷି ।
ନୈଷଧ ଦେଶରେ ଅଛି ମାନ ସରୋବର
ହଂସଯୂଥ ଚରନ୍ତି ଯେ ତହିଁ ନିରନ୍ତର ।
ଦିନେ ନଳରାଜା ତହିଁ ହଂସେକ ଧଇଲେ
ଆବର ହଂସ ଯାଇଣ ଗଗନେ ଉଠିଲେ ।
ହଂସ ବୋଲେ ମୋତେ ନାଶ ନ କର ନୃପତି
ମୁହିଁ ଏକ କନ୍ୟା ତୋତେ କରାଇବି ପ୍ରାପ୍ତି ।
କୁଣ୍ଡିନଗ୍ରେ ଭୀମସେନ ନାମେ ଅଛି ରାୟେ
ଦମୟନ୍ତୀ ବୋଲି ତାର ଅଛି ଦୁହିତାଏ ।
ଯେବେ ଆମ୍ଭଠାରେ ପ୍ରିୟଭାବ ରଖିଥିବୁ
ସେ ସୁନ୍ଦରୀ କନ୍ୟା ତୋତେ ଭେଟ କରାଇବୁ
ଶୁଣିକରି ନଳରାଜା ହୋଇଲେ ଆଶ୍ଚର୍ଯ୍ୟ
ପକ୍ଷୀ ନର ପରି କହେ ଶୁଣିଲି ମୁଁ ଆଜ ।
ଅନେକ ରତ୍ନେ ଭୂଷଣ ତାକୁ କଲେ ରାଜା
ବୋଇଲେ ବିଦର୍ଭ ଦେଶେ ଏବେ ଉଡ଼ି ଯା ଯା

ମୋର କଥାମାନ ଦମୟନ୍ତୀକୁ କହିବୁ
ଯେମନ୍ତେ ତାହାର ପ୍ରୀତି ମୋର ବଢ଼ାଇବୁ ।
ଶୁଣିକରି ହଂସପକ୍ଷୀ ବେଗେ ଉଡ଼ିଗଲା
ବିଦର୍ଭ ଦେଶେ ପୋଖରୀ ପାଖରେ ମିଳିଲା ।
ପୋଖରୀରେ ଚଳିବାର ଦେଖି ଦମୟନ୍ତୀ
ସନ୍ନିଧିକି ସେ ହଂସକୁ ରାଇଲେ ତଡ଼ତି ।
ଦମୟନ୍ତୀ ପଚାରିଲେ ସତ କହ ହଂସ
ତୋତେ ଦେଖି କିପା ଜନ୍ମେ ମନରେ ହରଷ ।
ପକ୍ଷୀ ବୋଇଲାକ ତୁମ୍ଭେ ଶୁଣ ସୁକୁମାରୀ
ଆମ୍ଭେ ଅଟୁ ଦେବଦୂତ ତୋର ଉପକାରୀ ।
ନୈଷଧ ଦେଶର ଜାଣ ବୀରସେନ ରାଜ
ନଳ ନାମରେ ଅଛନ୍ତି ତାହାଙ୍କ ଆତ୍ମଜ ।
ତାଙ୍କ ସରୋବରରେ ଥିଲି ଦେଖିଲି ତାହାନ୍ତ
ଅତ୍ୟନ୍ତ ସୁନ୍ଦର ସେହୁ ମଦନ ସଂଜାତ ।
ନଳଙ୍କର ଚିତ୍ରପଟ ଦେଖ ଆଗୋ ଏହି
ଏହା ସମାନ ସୁନ୍ଦର କ୍ଷିତି ମଧ୍ୟେ ନାହିଁ ।
ତୋହର ସମାନ କେହି ନାହାନ୍ତି ମହୀରେ
ତୁମ୍ଭେ ଦୁହେଁ ଏକଯୋଗେ ହେବ ଯେ କାଳରେ
ରତି କାମ ପ୍ରାୟ ଶୋଭା ଦିଶିବ ଯେ ଦୁଇ
ହଂସ କହିଲା ତାହାକୁ ପଟାନ୍ତର ନାହିଁ ।
କହିଲେ ଅନେକ ମଣାଇଣ ହଂସପନ୍ତି
ନଳପରେ ସ୍ନେହ ବଢ଼ାଇଲା ଦମୟନ୍ତୀ ।
ଶୁଣିକରି ଦମୟନ୍ତୀ କହଇ ବଚନ
ଆରେ ହଂସ ତୋହଠାରେ ଗଲି ମୁଁ ଶରଣ ।
ଯେପରି ହେବ ମୋହର ନଳ ସଙ୍ଗେ ପ୍ରୀତି
ଆରେ ହଂସବର ତୁହି କର ସେହିମତି ।
ହଂସ ବୋଇଲାକ ତୋର କର୍ମହିଁ ସବଳ
ମୁହିଁ ଆଣି ଭେଟାଇବି ତୋ ପାଶରେ ନଳ ।
ପଞ୍ଚ ଦିବସକୁ କଣ୍ଟ କରିଣ ସେ ଗଲା
ଯାଇଣ ନଳ ଆଗରେ ବାରତା କହିଲା ।
ବୁଡ଼ିଲା ସୁନ୍ଦରୀ ଯେ ତୋହର ପ୍ରୀତିଆଶେ
କେମନ୍ତେ ହୋଇବୁ ଯାଇ ନଳ ତାର ପାଶେ ।
ପାଞ୍ଚଦିନ ମଧ୍ୟେ ଯେବେ ବିଦର୍ଭକୁ ଯିବୁ
ସେଠାରେ ଦମୟନ୍ତୀକୁ ନିଶ୍ଚୟ ପାଇବୁ ।
ନଳକୁ ଏହା କହିଣ ଉଡ଼ିଗଲା ହଂସ
ବୈଦର୍ଭୀ ନଳକୁ ଭାବି ମନରେ ବିରସ ।
ସ୍ନାନ ଭୋଜନକୁ ସେହୁ ମଣେ ବିଷପିତା
ନଳକୁ ମନ ମଧ୍ୟରେ ସଦା କରେ ଚିନ୍ତା ।
ମୃଦୁସୁଲୀ ତାର ମୁଖ ବିରସ ଦେଖିଣ
ପୁଚ୍ଛିଲା କାହିଁକି ସଖି ଶୁଖିଛି ବଦନ ।

ଦାସୀ ଆଗେ ଦମୟନ୍ତୀ ସକଳ କହିଲା
ସେ ଯାଇ ରାଜାର ଆଗେ ସବୁ ଜଣାଇଲା ।
ଝିଅ ପିତାଘରେ ଥାଇ ହେଲେ ରଜୋବତୀ
ଆପଣାର ପିତୃଲୋକେ ଲଭନ୍ତି ଅଗତି ।
ଶୁଣି ବିରସେ ଭାଳିଣ ଭୀମ ଚକ୍ରବର୍ତ୍ତୀ
ସ୍ୱୟମ୍ବର କରିବା ଯେ ରାଜାଙ୍କୁ ନିମନ୍ତ୍ରି ।
ପୃଥ୍ୱୀରାଜାଙ୍କୁ କରିବାପାଇଁ ନିମନ୍ତ୍ରଣ
ସକଳଦେଶେ ପେଷିଲେ ଡାକି ଚାରଗଣ ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଦିଗର
ସ୍ୱୟମ୍ବରକୁ ଅଇଲେ ସର୍ବ ନରବର ।
ରଥ ଗଜ ସୈନ୍ୟ ଆଉ ଅଶ୍ୱ ଅପ୍ରମିତ
ତିନି ଯୋଜନ ମାଡ଼ିଣ ରହିଲେ ସମସ୍ତ ।
ବାଜଇ ଯେ ବିଜିଘୋଷ ଟମକ ଦାଉଣ୍ଡି
ବହୁ ରତ୍ନମାନଙ୍କରେ ରଥ ଅଛି ମଣ୍ଡି ।
ଉତ୍ତରୁ ଚାଳିଶସସ୍ର ପଶ୍ଚିମରୁ ତେତେ
ଦକ୍ଷିଣରୁ ଅୟୁତ ଯେ ପୂର୍ବରୁ ଅୟୁତେ ।
ବହୁରତ୍ନ ଅଳଙ୍କାରେ ମଣ୍ଡିଛନ୍ତି କାୟେ
ଭୀମସେନ କଟକରେ ପ୍ରବେଶିଲେ ରାୟେ ।
ବହୁ ଆନନ୍ଦ ଉତ୍ସବ ନଗରେ ହୁଅଇ
ଉତ୍ସବ ଦେଖି ନାରଦ ମିଳିଲେକ ତହିଁ ।
ନାରଦଙ୍କୁ ଦେଖିକରି ଭୀମସେନ ରାଜା
ତାହାଙ୍କ ପାଦତଳରେ କଲେ ଦିବ୍ୟପୂଜା ।
ଆସନ ପାଇ ବସିଲେ ନାରଦ ମହର୍ଷି
କିସ ଉତ୍ସବ ବୋଲିଣ ସଭାରେ ପ୍ରକାଶି ।
ବୋଲେ ଭୀମରାଜା ତୁମ୍ଭେ ଶୁଣ ବ୍ରହ୍ମଯତି
ଦୁହିତା ନାମ ମୋହର ଅଟେ ଦମୟନ୍ତୀ ।
ତାହାପାଇଁ ବର ମୁହିଁ କାହିଁ ନ ପାଇଲି
ସେଥିପାଇଁ ସ୍ୱୟମ୍ବର ଏବେ ଆରମ୍ଭିଲି ।
ନାରଦ ଦେଖିଲେ ଯାଇ ଦମୟନ୍ତୀ ରୂପ
ଆକାଶ ଇନ୍ଦ୍ର ପୁରରେ ନାହିଁ ଏ ସ୍ୱରୂପ ।
ତକ୍ଷଣେ ମହାତମା ଯେ ଗଲେ ଅନ୍ତରୀକ୍ଷେ
କହିଲେ ଅମରସ୍ୱର୍ଗେ ଯାଇ ସହସ୍ରାକ୍ଷେ ।
ଆହେ ଇନ୍ଦ୍ର ମଧ୍ୟପୁରେ ସମ ଚକ୍ରବର୍ତ୍ତୀ
ଅଶ୍ୱସେନର ନନ୍ଦନ କାର୍ତ୍ତିକର ନାତି ।
ଦମୟନ୍ତୀ ବୋଲି ତାର ଅଟଇ ନନ୍ଦିନୀ
ତୋ ଅଭିଷେକେ ଯୋଗାଏ ଶୁଣ ବଜ୍ରପାଣି ।
ରାଜା ନିମନ୍ତ୍ରିଣ ତହିଁ କରେ ସ୍ୱୟମ୍ବର
ତିନିପୁରେ ସେ ବାଳିକୁ ନାହିଁ ପଟାନ୍ତର ।
ନାରଦ ମୁଖୁଁ ବଚନ ଶୁଣିଣ ମଘବା
ମାତଳିକୁ ଆଜ୍ଞା ଦେଲେ ରଥ ସାଜ ଯିବା ।
ଇନ୍ଦ୍ରକୁ କହି ନାରଦ ତହୁଁ ଗଲେ ବେଗେ
ଦମୟନ୍ତୀ କଥା କୁହେ କୁବେରଙ୍କ ଆଗେ ।
ତୋର ଅଳକାପୁରକୁ ଯୋଗାଇବ ସେହି
ପାରୁ ଯେବେ ଧନପତି ଘେନିଆସ ଯାଇ ।
ଶୁଣିଣ ବାହାର ହେଲା କୁବେର ତୁରିତ
ତତକ୍ଷଣେ ଆରୋହିଲା ସେ କଣୟ ରଥ ।
କୁବେରକୁ ଚଳାଇଣ ନାରଦ ମହର୍ଷି
ଅଗ୍ନି ଦେବତାଙ୍କ ପାଶେ କହିଲେ ସେ ଆସି ।
ଆହେ ଅଗ୍ନି ତୁମ୍ଭ ତେଜେ ପୃଥ୍ୱୀ ହେବ ଦହି
ଦମୟନ୍ତୀ ତେଜ ଆଗେ ତୁମ୍ଭ ତେଜ କାହିଁ ।
ଶୁଣିକରି ବୈଶ୍ୱାନର ଚଳିଲେ ବହନ
ସେଠାରୁ କଳହପ୍ରିୟ ଗଲେ ତତକ୍ଷଣ ।
ବରୁଣ ଅଗ୍ରତେ ଯାଇ କହିଲେ ସେ ପୁଣି
ଭୀମସେନ କଟକକୁ ଯାଅ ଏହିକ୍ଷଣି ।
ଜଳଭୁବନର ତୁହି ଅଟୁ ଅଧିପତି
ଏ ପୁରକୁ ଅଳଙ୍କାର ଅଟେ ଦମୟନ୍ତୀ ।
ବରୁଣ ବାହାର ହେଲେ ନାରଦଙ୍କ ବୋଲେ
ଗଙ୍ଗାକୂଳରେ ଚାରିହେଁ ଭେଟ ଯେ ହୋଇଲେ
ଚାରିଦିଗପାଳେ ତହିଁ ଚଳିଲେ ହରଷେ
ସବୁରି ମନ ବଳିଛି ଦମୟନ୍ତୀ ଆଶେ ।
ଏକ ଏକ ରୂପ ଧରି ବସିଛନ୍ତି ତହିଁ
ମର୍ତ୍ତ୍ୟର ଲୋକ ପରାୟେ ଦିଶୁଛନ୍ତି ସେହି ।
ନଳରାଜା ଚଳିଯାନ୍ତି ଚଢ଼ି ଦିବ୍ୟରଥେ
ଦିଗପାଳଙ୍କ ସହିତ ଭେଟ ହେଲେ ପଥେ ।
ଇନ୍ଦ୍ର ପୁଚ୍ଛା କଲେ ତୁମ୍ଭେ ଯାଅ କେଉଁଠାକୁ
ନଳ ବୋଲେ ଯାଏ ସ୍ୱୟମ୍ବର ଦେଖିବାକୁ ।
ଇନ୍ଦ୍ର ବୋଇଲେ ନଳକୁ ଏକାନ୍ତରେ ରାଇ
ଦମୟନ୍ତୀ ପାଶେ ଯାଅ ଆମ୍ଭ ଦୂତ ହୋଇ ।
ମୁହିଁ ଅଟେ ଦେବରାଜ ଅମରାଧିପତି
ସଭାରେ ବରଣ କରୁ ମୋତେ ଦମୟନ୍ତୀ ।
ଅଗ୍ନିଦେବତା କହିଲେ ଡାକିଣ ନଳକୁ
ମୋର ରୂପ ଗୁଣ କହ ସେ ଦମୟନ୍ତୀକୁ ।
ଆମ୍ଭଙ୍କୁ ବରଣ କରୁ ସ୍ୱୟମ୍ବର ସ୍ଥାନେ
ଅନେକ ଭୋଗ କରିବ ଆମ୍ଭର ଭବନେ ।
କୁବେର ଏକାନ୍ତେ ଡାକି କହିଲେ ନଳକୁ
ଯେପରି କି ଦମୟନ୍ତୀ ବରିବ ଆମ୍ଭଙ୍କୁ ।
ମହିଁ ରକ୍ଷାପାଳ ଅଟେ ଦେବ ଭଣ୍ଡାରର
ଆମ୍ଭଙ୍କୁ ବରିଲେ ଭୋଗ କରିବ ଅପାର ।
ଏପରି କହିଲେ ଡାକି ନଳକୁ ବରୁଣ
ଦମୟନ୍ତୀ ପାଶେ କହ ମୋ କଥା ଯାଇଣ ।

ମୁଁ ବାରାନିଧି ଠାକୁର ନାମ ରତ୍ନାକର
ଦମୟନ୍ତୀ ଅନୁରୂପେ ମୁହିଁ ସିନା ବର ।
ଇନ୍ଦ୍ରକୁ ବରିଲେ ତାର ସୁଖ କାହିଁ ହେବ
ଅପ୍‌ସରାଙ୍କ ଯୋଗୁଁ ସେହି ଦୁଃଖହିଁ ପାଇବ ।
କୁବେର ଭାରିଯା ନାମ ଅଟେ ହାରାବତୀ
ତାହାକୁ ଛାଡ଼ିଯାଇ ନ ପାରେ ଆନ କତି ।
ଲୁଦୁବୁଦୁ ବ୍ୟାଧି ଅଛି ଅଗ୍ନିଦେବତାର
ସ୍ତିରୀଙ୍କୁ ରମିବାପାଇଁ ଶକ୍ତି କାହିଁ ତାର ।
ଦମୟନ୍ତୀ ଆଗେ ଏହା କହିବୁ ସକଳ
ଏହା କହି ହୃଦୁଁ କାଢ଼ି ଦେଲେ ଜୟମାଳ ।
ଇନ୍ଦ୍ର ଦେଲେକ ତିମିର ବିଦାରଣ ମଣି
ବଶୀକରଣ ଅଞ୍ଜନ ଦେଲେ ଅଗ୍ନି ଆଣି ।
କୁବେର ଦେବତା ଦେଲେ ମୋହନଯେ ବିଦ୍ୟା
ଚିରକାଳକୁ ତା ପକ୍ଷେ ହୋଇଲା ସୁବିଧା ।
ନଳ ବୋଇଲେକ ତାଙ୍କ ପାଦରେ ପ୍ରଣମି
ପୁଂସ ହୋଇ ସ୍ତିରୀଦୂତ କେହ୍ନେ ହେବି ସ୍ୱାମୀ
ନ ଗଲେ ମରିବି ତୁମ୍ଭମାନଙ୍କର ଶାପେ
ସ୍ତ୍ରୀଦୂତ ହେଲେ ପଡ଼ିବି ମୁହିଁ ଜୀର୍ଣ୍ଣକୂପେ ।
ଦେବତାଏ ବୋଇଲେ ତୁ କିପାଁ ଏହା କହୁ
ପାପପୁଣ୍ୟ ଯାହା ହୁଏ ଆମ୍ଭେ ତାହା ବହୁ ।
ଦଧିବାମନ ସୁମରି କର ହୋ ଗମନ
ଜଣାଯିବ କାର୍ଯ୍ୟସିଦ୍ଧି ହେଲେ ତୁମ୍ଭ ଗୁଣ ।
ଦେବଙ୍କ ବାକ୍ୟେ ଚଳିଲେ ତହୁଁ ସୂର୍ଯ୍ୟବଂଶୀ
ପୁଣି ବୋଲେ ପୁରେ କେହ୍ନେ ପାରିବି ମୁଁ ପଶି
ଉଲୁକ ବିଦ୍ୟା ତାହାକୁ ଅଗ୍ନି ଶିଖାଇଲେ
ତୁ ସର୍ବ ଦେଖିବୁ ତୋତେ ନ ଦେଖିବେ ଭଲେ
ବରୁଣ ଦେବତା ଦେଲେ ପାଦୁକାର ମନ୍ତ୍ର
ନବଦ୍ୱୀପ ବୁଲିବୁ ତୁ କ୍ଷଣକର ମାତ୍ର ।
ଇନ୍ଦ୍ର ଦେବତା ତାହାକୁ ଦେଲେକ ଅଞ୍ଜନ
ଏହାକୁ ଘେନି ଚାହିଁଲେ ଦିଶେ ତ୍ରିଭୁବନ ।
ମୋହନ ବିଦ୍ୟାକୁ ତହିଁ କୁବେର ବିହିଲେ
ତାହାପାଇ ନଳରାଜା ଆନନ୍ଦିତ ହେଲେ ।
ସେଠାବରୁ ନଳରାଜା ଚଳିଗଲେ ଖରେ
ପ୍ରବେଶ ହୋଇଲେ ଯାଇ ଦମୟନ୍ତୀ ପୁରେ ।
ନଳ ନିମନ୍ତେ ବାଳିକା ହୋଇଛି ବିରହୀ
ନଳର ରୂପ କେମନ୍ତେ ଦେଖିବଇଁ ମୁହିଁ ।
ଏମନ୍ତ ବିଚାର କରି ଭାଳଇ ଯୁବତୀ
ଏ ସମୟେ ନଳ ତହିଁ ମିଳିଲାକ ଧାତି ।
ଅଭୂତେ ପୁରୁଷେ ଦେଖି ବିଚାରଇ ବାଳୀ
କେବଣ ଦିଗପାଳ ତୁ ମନର ହିଆଳି ।
ବୋଇଲେ ରାଜନ ମୁହିଁ ଅଟଇ ଗୋ ନଳ
ଦମୟନ୍ତୀ ବୋଲେ କାର୍ଯ୍ୟ ହୋଇଲା ସଫଳ
ଯେବେଣ ରୂପ ତାଙ୍କର କହୁଥିଲା ହଂସ
ତହୁଁ ସହସ୍ର ଗୁଣରେ ରୂପ ପରକାଶ ।
ଶ୍ରୀକରେ ଘେନିଣ ଦିବ୍ୟ ନୀଳୋତ୍ପଳ ମାଳା
ନଳର ପାଶେ ପ୍ରବେଶ ହୋଇଲା ଅବଳା ।
ନଳ ବୋଇଲାକ ମୋତେ ବରିବୁ କେମନ୍ତ
ମୁହିଁ ଆସିଅଛି ଦେବଙ୍କର ହୋଇ ଦୂତ ।
ତୋ ପାଶେ ବରୁଣ ଇନ୍ଦ୍ରକୁବେର ଯେ ଅଗ୍ନି
ଦୂତକରି ପେଷିଛନ୍ତି ମୋତେ ସୁବଦନୀ ।
ଚାରିଦିଗପାଳେ ଯିବେ ତୁମ୍ଭ ସ୍ୱୟମ୍ବରେ
ତାହାକୁ ବରିବ ତୁମ୍ଭେ ନ ବର ଗୋ ମୋରେ ।
ଦମୟନ୍ତୀ ବୋଲେ ମୋର ଦେବକାର୍ଯ୍ୟ ନାହିଁ
ହଂସ ଯେବେଣ ଦିନରୁ ଗଲା ମୋତେ କହି ।
ସେ ଦିନରୁ ସଂକଳପ କରିଅଛି ମୁହିଁ
ନଳ ବ୍ୟତିରେକେ ମୋର ଅନ୍ୟ ପତି ନାହିଁ ।
ନଳରାଜା ବୋଇଲେ ତୁ ମୋତେ ଯେ ବରିଲେ
ମୁହିଁ ବର୍ତ୍ତି ପାରିବି କି ଦେବେ କୋପକଲେ ।
ଦମୟନ୍ତୀ ବୋଇଲେ ଯେ ମୋର ଯେହ୍ନେ ବାଞ୍ଛା
କି କରିବେ ଦିଗପାଳେ ମୋର ତୋର ଇଚ୍ଛା ।
ସ୍ୱୟମ୍ବର ସ୍ଥାନରେ ତୁ ଥିବୁ ଆପେ ରହି
ମାଳା ଦେଇକରି ତୋତେ ବରିବଇଁ ମୁହିଁ ।
ଏମନ୍ତ ବଚନ ଶୁଣି ବାହୁଡ଼ିଲେ ନଳ
ପ୍ରବେଶ ହୋଇଲେ ଯହିଁ ଛନ୍ତି ଦିଗପାଳ ।
ଦମୟନ୍ତୀ ଭେଟିଲି ମୁଁ ତୁମ୍ଭର ନିମନ୍ତେ
ତୁମ୍ଭନ୍ତ ଛାଡ଼ିଣ ସେହି ବର ଲୋଡ଼େ ମୋତେ ।
ଯଦ୍ୟପି ସେ କନ୍ୟା ଆସି ମୋତେ ଯେ ବରିବ
ତୁମ୍ଭେମାନେ ବଳାତ୍କାରେ ତାକୁ ଘେନିଯିବ ।
ଦେବତାଏ ବୋଇଲେ ତୁ ଥାଅ ଆମ୍ଭ କତି
ତୋ ପାଶେ ଆସିଲେ ହରିନେବୁ ଦମୟନ୍ତୀ ।
ଦିଗପାଳଙ୍କର ରୂପ ରାଜାଗଣ ଦେଖି
ପିଛଡ଼ା ନ ପକାଇଣ ଚାହିଁଲେ ନିରେଖି ।
ବୋଇଲେ ନର ନୁହନ୍ତି ଏହୁ ଦେବଗଣ
କନ୍ୟା ଲୋଭେ ଆସିଛନ୍ତି ସ୍ୱୟମ୍ବର ସ୍ଥାନ ।
ତାଙ୍କ ସଙ୍ଗତରେ ଅଛି ସୁକୁମାର ନଳ
ସେହୁ ଦିଶୁଅଛି ହାଦେ ସମ ଦିଗପାଳ ।
ଶୁଣ ଆହେ ଯୁଧିଷ୍ଠିର ଆମ୍ଭର ବଚନ
ନଳ ତରିଲା ମହତ କରି ଦରଶନ ।
ଜୟ ବାସବ ଦେବତା ତୋର ଦିବ୍ୟରୂପ
କାମିନୀ ମନମୋହନ କନ୍ଦର୍ପ ସ୍ୱରୂପ ।

ସ୍ୱର୍ଗେ ବିଳାସିନୀ ଛନ୍ତି ଚଉଷଠି କୋଟି
ଏକ ପୁରୁଷକେ ତୁହି ଧନ୍ୟ ତୋ ଦର୍ପଟି ।
କୋଟିଏ କୁମାରୀ ତୋର ସକଳେ ସୁନ୍ଦରୀ
ସଂସ୍ରଯୋନି ହେଲୁ ତୁହି ପରଦାର ହରି ।
କାମୁକ ପୁରୁଷ ତୁହି କାମିନୀରେ ଭୋଳା
ସଦା କଉତୁକେ ସ୍ତିରୀଅଙ୍ଗେ କରୁ ଖେଳା ।
ଏକ ଧାରଣାକେ ପାରୁ ସସ୍ର ନାରୀ ରମି
ଦିବାରାତ୍ରେ ସ୍ୱାମୀ ତୁହି ରତିରସେ ଶ୍ରମି ।
କୋଟିଏ ବ୍ରହ୍ମାଣ୍ଡେ ତୁହି ରାଜା ସୁନାସୀର
ସକଳ ଦେବଙ୍କ ପରେ ତୋର ଅଧିକାର ।
ତୋର ଆଜ୍ଞାରେ ଚଳନ୍ତି ବାରିଦ ପବନ
ଯମଦର୍ପ ନିସୂଦନ ଅମର ରାଜନ ।
ବୃନ୍ଦାରକ ନାଥ ତୋର ପାଦେ ଅନୁବ୍ରତେ
ଶରଣ ମାଗେ ଶାରଳାଦାସ ନିତ୍ୟେ ନିତ୍ୟେ



## ଦମୟନ୍ତୀର ସ୍ୱୟମ୍ବର ଓ ନଳ ଦମୟନ୍ତୀଙ୍କର ବନବାସ ଏବଂ ବିଚ୍ଛେଦ

କହୁଛନ୍ତି ବ୍ୟାସଦେବ ଶୁଣ ଯୁଧିଷ୍ଠିର
ଆରମ୍ଭିଲେ ଦମୟନ୍ତୀ ପାଇଁ ସ୍ୱୟମ୍ବର ।
ଭୀମସେନ ବୋଲେ ଶୁଣ ସକଳ ନୃପତି
ସ୍ୱୟମ୍ବରା କନ୍ୟା ମୋର ଅଟେ ଦମୟନ୍ତୀ ।
ଏହାର ମନକୁ ଜାଣ ଯେ ବର ଆସିବ
ବରଣମାଳା ଦେଇଣ ତାହାକୁ ବରିବ ।
ଏସନକ ସମୟରେ ଭୀମ ନୃପମଣି
କନ୍ୟା ବେଶକରି ସ୍ୱୟମ୍ବର ସ୍ଥଳେ ଆଣି ।
ସୁନନ୍ଦା ନାମିନୀ ଦମୟନ୍ତୀ ମୃଦୁସୁଲୀ
ରାଜାଙ୍କର ରୂପ ଗୁଣ କହଇ ବିସ୍ତାରି ।
ଯାହାର ଯେପରି ଗୁଣ ଅଛି ଏ ମହୀରେ
ସୁନନ୍ଦା କହିଲା ଦମୟନ୍ତୀର ଆଗରେ ।
କେହି ନ ରୁଚଇ ଏବେ ତାହାର ମନକୁ
ଅନୁସରି ଚଉକତି ଲୋଡ଼ଇ ନଳକୁ ।
କେବଣ ନରପତିକୁ ନୋହେ ତାର ଇଚ୍ଛା
ଏକମାତ୍ର ନଳକୁ ସେ କରୁଥାଏ ବାଞ୍ଛା ।
ଐଶାନ୍ୟରେ କରିଛନ୍ତି ବିଜେ ଦେବଗଣ
ତାଙ୍କପାଶେ ଦେଖେ ଦେବୀ ସେ ନଳରାଜନ
ଶ୍ରୀଭୁଜେ ସୁନ୍ଦରୀ ଘେନି ରତନର ମାଳୀ
ପାଇଲି ସ୍ୱାମୀ ମୋହର ମନର ହିଆଳି ।
ଦିଗପାଳଙ୍କ ସମୀପେ କୁମାରୀ ଆସନ୍ତେ
ମୋତେ ବରିବ କି ଇନ୍ଦ୍ର ବିଚାରଇ ଚିତ୍ତେ ।
କୁବେର ବିଚାରେ ମୁହିଁ ଅଟେ ଧନପତି
ମୋତେ ଅବା ବରିବ ଏ ଧନେ କରି ମତି ।
ବରୁଣ ବିଚାରେ ମୁହିଁ ଜଳ ଅଧୀଶ୍ୱର
କି ଅବା ବରିବ ମୋତେ ଆସେ ନାରୀବର ।
ଅଗ୍ନି ବିଚାରନ୍ତି ମୁହିଁ ଗୁରୁ ତ୍ରିଲୋକର
ମାନ୍ୟ ଆଶେ ହେବ ଅବା ଭାରିଯା ମୋହର
ଏହିପରି ବିଚାରନ୍ତି ଦିଗପାଳମାନେ
ନଳ ବିନା ଦମୟନ୍ତୀ ନ ଇଚ୍ଛଇ ଆନେ ।
ଦେବତାଏ ଜାଣିଲେ ଯେ ଦମୟନ୍ତୀ ମତି
ନଳ ବ୍ୟତିରେକ ଆନେ ନ ବରିବ ସତୀ ।
ତହୁଁ ଦିଗପାଳମାନେ କରିଣ ବିଚାର
ନଳରାଜା ଅନୁରୂପେ ହୋଇଲେ ଆକାର ।
ପାଞ୍ଚ ନଳରୂପ ଦେଖି ଭାଳଇ ସୁନ୍ଦରୀ
କିଏ ସେ ନଳ ବୋଲିଣ ନ ନ ପାରିଲା ବାରି
ଦମୟନ୍ତୀ ପ୍ରଣମିଲେ ଦେବତାଙ୍କ ପାଦେ
ନଳକୁ ବରିବି ମୋତେ ଦେଖାନ୍ତୁ ନା ହାଦେ
ଦେବତାଏ ବୋଇଲେକ ତୋହର ହିଆଳି
ଅନୁରୂପ ଚିହ୍ନିଦିଅ ବରଣର ମାଳୀ ।
ଦମୟନ୍ତୀ ବୋଇଲା ମୁଁ ମାନବୀ ଅଟଇ
ଦେବତାଙ୍କୁ ବରିବି ଯେ କେଉଁପରି ମୁହିଁ ।
ତୁମ୍ଭ ମାୟା ବୁଝିବାକୁ ମୁହିଁ କି ସକ୍ଷମ
ସଦୟ ହୋଇଣ ପ୍ରଭୁ ରଖ ମୋର ଧର୍ମ ।
ବହୁତ ବିନୟ ସ୍ତବେ ବୋଲେ ଦମୟନ୍ତୀ
ମନ ମଧ୍ୟରେ ନଳକୁ କରିଅଛି ମତି ।
ମୋର ସତୀତ୍ୱ ବିନାଶ ନ କର ଆପଣ
ସ୍ୱ ସ୍ୱ ରୂପ ଧର ନଳେ କରେ ମୁଁ ବରଣ ।
ଏପରି ସ୍ତବେ ଜଣାନ୍ତେ ତାଙ୍କୁ ଦମୟନ୍ତୀ
ଶୁଣିକରି ଦେବତାଏ ଲଭିଲେକ ଶାନ୍ତି ।
ତହୁଁ ଦେବେ ଧରିଲେକ ଯେ ଯାହା ରୂପକୁ
ଦମୟନ୍ତୀ ତୋଷ ହେଲା ଦେଖିଣ ନଳକୁ ।
ଶ୍ରୀକରେ ସୁନ୍ଦରୀ ତହୁଁ ଘେନି ରତ୍ନମାଳ
ଯାଇଣ ପ୍ରବେଶ ହେଲା ଯହିଁ ଥିଲେ ନଳ ।
ଦେବଙ୍କୁ ବୋଇଲେ ନଳ ତୁମ୍ଭେ ଯାଅ ସ୍ୱର୍ଗେ
ତେବେ ବରଣମାଳାକୁ ଘେନିବଇଁ ଯୋଗେ ।
ଏପରି କହିଲେ ଯହୁଁ ନୈଷଧ ରାଜନ
ଶୁଣିଣ ହରଷ ହେଲେ ତହୁଁ ଦେବଗଣ ।
ତୁଷ୍ଟ ହୋଇ ଏହି ବର ଚାରିଜଣ ଦେଲେ
ଅଲକ୍ଷିତ ବିଦ୍ୟାଗୋଟି ବାସବ କହିଲେ ।
ଅମୃତ ଦେଲେକ ତୋଷେ ଜଳର ଈଶ୍ୱର
ଯହିଁ ଜଳ ଚାହିଁ ତହିଁ ପାଅ ନୃପବର ।

ଅଗ୍ନି କହିଲେ ଯା ଇଚ୍ଛା କରିବ ରନ୍ଧନ
ବିନା ଅଗ୍ନିରେ ତା ସିଦ୍ଧ ହେବ ତତକ୍ଷଣ ।
କୁବେର ବୋଇଲେ ତୁମ୍ଭେ ଶୁଣ ନରଈଶ
ଯେତେ ଧନ ଚାହିଁବ ତା ମିଳିବ ଅବଶ୍ୟ ।
ଏ ବରଦେଇ ଅଦୃଶ୍ୟ ହେଲେ ଦେବଲୋକେ
ତପୂରେ ନଳରାଜନ ବସିଲେ ପୁଲକେ ।
ଦେଖିଣ ହରଷ ଭୀମରାଜାର ଦୁଲାଳୀ
ନଳକଣ୍ଠେ ଲମ୍ବାଇଲେ ବରଣର ମାଳୀ ।
ବୈଦର୍ଭୀ ନଳକୁ ଯହୁଁ ବରମାଳା ଦେଲେ
ନୃପତିଏ ନିଜ ନିଜ ରାଜ୍ୟେ ଚଳିଗଲେ ।
ବହୁତ ସାନନ୍ଦ ହେଲେ ଭୀମସେନ ରାଜା
ବହୁତ ସମ୍ପଦେ କଲେ ନଳଙ୍କର ପୂଜା ।
ଭୀମସେନ ରାଜା ବିଭା ଯୋଗାଡ଼ ଆଣିଲେ
ବହୁ ସମ୍ଭାରେ ଝିଅକୁ ନଳେ ବିଭାଦେଲେ ।
କନ୍ୟାଘେନି ନଳରାଜା ପ୍ରବେଶିଲେ ଦେଶେ
ପୁରଜନମାନେ ଆସି ଦେଖନ୍ତି ହରଷେ ।
ନଳ ଦମୟନ୍ତୀ ଦୁହେଁ ହେଲେ ଏକଯୋଗ
ସୁନ୍ଦରୀ ଘେନିଣ ରାଜା କରେ ବଇଭୋଗ ।
ଏମନ୍ତେ ଦମୟନ୍ତୀର ସ୍ୱୟମ୍ବର ଶୁଣି
ସତ୍ୟ ତ୍ରେତା ଦ୍ୱାପର ଯେ କଳି ସଙ୍ଗେ ପୁଣି ।
ଏକତ୍ରରେ ଆସୁଛନ୍ତି ଦମୟନ୍ତୀ ଆଶେ
ପବନୁ ବେଗ ହୋଇଣ ଚଳନ୍ତି ହରଷେ ।
ଯାନ୍ତେଣ ପଥେ ଇନ୍ଦ୍ରାଦି ଦେବତାଏ ଦେଖି
ପୁଚ୍ଛିଲେ ତୁମ୍ଭେ ଚାରିହେଁ ଯାଉଛ କାହିଁକି ।
ଚାରିହେଁ ବୋଇଲେ ଆମ୍ଭେ ଯିବୁ ମର୍ତ୍ତ୍ୟପୁର
ଦେଖିବୁ ଭୀମରାଜାର ପୁତ୍ରୀ ସ୍ୱୟମ୍ବର ।
ଇନ୍ଦ୍ର ବୋଲେ ଥିଲୁ ଆମ୍ଭେ ଚାରି ଦିଗପାଳ
ଆମ୍ଭମାନଙ୍କୁ ନ ବରି ବରିଲା ସେ ନଳ ।
ନୈଷଧ ଦେଶେ ବିଳସେ ଦମୟନ୍ତୀ ନାରୀ
ଏହାଶୁଣି କୋପ କଲେ ସେହି ଯୁଗଚାରି ।
ଆମ୍ଭେ ଚାରିଯୁଗ ଜାଣ ସୃଷ୍ଟି ଅଧିକାରୀ
ବିହନ୍ତା ପୁରୁଷ ତୁମ୍ଭେ ଅଟ ଦେବ ଚାରି ।
ତୁମ୍ଭଙ୍କୁ ନ ବରି ସେହି ବରିଲାକ ନର
ଆବର କି କଥା ଅଛି ଏଥିକି ବିଚାର ।
ଆମ୍ଭେମାନେ ହରିବା ଯେ ନଳର ସମ୍ପଦ
ଯେମନ୍ତ ପ୍ରକାରେ ନଳେ ପଡ଼ିବ ପ୍ରମାଦ ।
ଇନ୍ଦ୍ର ବୋଇଲେକ ନଳ ଧର୍ମୀ ସତ୍ୟବାଦୀ
ଦାନ ଧ୍ୟାନ ଯଜ୍ଞକର୍ମେ ସର୍ବତ୍ର ପ୍ରସିଦ୍ଧି ।
ଯୁଗ ପୁରୁଷେ ବୋଇଲେ ନ ଜାଣ ଯେ ତୁମ୍ଭେ
ଧର୍ମରେ କଷଣ ସିନା ଦେଇପାରୁ ଆମ୍ଭେ ।
ଇନ୍ଦ୍ର ବୋଇଲେକ ତୁମ୍ଭେ ବିହନ୍ତା ପୁରୁଷ
ଆମ୍ଭ ବୋଲ କର ଧର୍ମ ନଳକୁ ନ ନାଶ ।
ଇନ୍ଦ୍ରଙ୍କ ବଚନ କେହି ନ ଘେନିଲେ ରାଗେ
ନୈଷଧ ଦେଶକୁ ତହୁଁ ଚଳିଗଲେ ବେଗେ ।
ଚାରିଯୁଗେ ଯାଇଁ ତହିଁ ରହିଲେ ଗୁପତେ
ନଳରାଜାଙ୍କର ଛିଦ୍ର ପାଇବା ନିମନ୍ତେ ।
କହନ୍ତି ବ୍ୟାସମୁନି ଯେ ଶୁଣ କୁନ୍ତୀସୁତ
ବଡ଼ାଇ ଧର୍ମବନ୍ତ ସେ ନଳ ନରନାଥ ।
ପୁତ୍ର ସମାନ କରିଣ ପାଳଇ ପରଜା
ମାଣେ ଭୂମିରୁ ଚିନାଏ ନିଅଇ ସେ ସଞ୍ଜା ।
ଅତିଥି ଅଭ୍ୟାଗତଙ୍କୁ କରଇ ସଦୟେ
ଦୁଃଖୀ ଲୋକଙ୍କୁ ଦେଖିଲେ ଧନ ଯାଚିଦିଏ ।
ଯେ ଯେତେ ମାଗଇ ଦିଏ ତାର ମନ ଇଚ୍ଛା
ଏହିପରି ନଳରାଜା ପୂରାଏ ତା ବାଞ୍ଛା ।
କୋଟି କୋଟି ଯାଗରେ ସେ ଦିଅଇ ଆହୁତି
ଦେବ ବିପ୍ରଙ୍କ ଠାରେ ସେ ସଦା କରେ ଭକ୍ତି ।
ଯେ ଯେତେ ମାଗଇ ରାଜା ତାହାଙ୍କୁ ଦିଅଇ
କଉଣସିକାଳେ କେଭେ ମିଛ ନ କହଇ ।
ପରସ୍ତିରୀଠାରେ ତିଳେ ନ ବଳଇ ମତି
ଏକ ପତ୍ନୀ ତାହାଙ୍କର ଅଟେ ଦମୟନ୍ତୀ ।
ଦମୟନ୍ତୀକି ଯେ ଧନ ରାଜା ଦ୍ୟନ୍ତି ନେଇ
ବୋଲନ୍ତି ଅଭ୍ୟାଗତଙ୍କୁ ଦେଉଥିବୁ ତୁହି ।
ରାତ୍ର ପ୍ରହରେକ ଥାଉ ସାରି ନିତ୍ୟକର୍ମ
ଦେବାର୍ଚ୍ଚନାଦି ବଢ଼ାଇ କରନ୍ତି ବିଶ୍ରାମ ।
ଯଦି ପ୍ରଜାଏ କରନ୍ତି ବହୁ ଅପରାଧ
ତଥାପି ରାଜ୍ୟେ ତାହାର ନାହିଁ ଶିରଚ୍ଛେଦ ।
ଅନୁବ୍ରତେ ଧର୍ମପଥ ରାଜା ଆଚରଇ
କଷଣ ପୁରୁଷ ପାଶେ ପଶି ନ ପାରଇ ।
ଅନୁବ୍ରତେ ଟାକି ବସି ଥାଆନ୍ତି ଗୁପତେ
ଛିଦ୍ର ନ ପାଇଲେ ବାରବର୍ଷ ପରିଯନ୍ତେ ।
ଦିନେ ନଳରାଜା ପଶାଖେଳ ଆରମ୍ଭିଲେ
ଛିଦ୍ର ପାଇ ଚାରିଯୁଗ ତହିଁ ବିଶ୍ରାମିଲେ ।
ତୁଳମାସ ଶୁକ୍ଳପକ୍ଷ ଦ୍ୱାଦଶୀର ଦିନ
ଅଚ୍ଛ ଶୌଚ କଲେ ପାଦ ସନ୍ଧ୍ୟାର କାରଣ ।
ଏତେ ଛିଦ୍ର ପାଇ କଳି ପଶେ ତାଙ୍କ ଦେହେ
ନିଜ ବୁଦ୍ଧି ହୀନ ହେଲା ରାଜାର ହୃଦୟେ ।
ସନ୍ଧ୍ୟାକାର୍ଯ୍ୟ ଶେଷକଲେ ନୈଷଧେ ରାଜନ
ସେ ଦିନରୁ ଭ୍ରମକଲା କଳି ତାଙ୍କ ମନ ।
ତା ପର ଦିବସ ରାଜା ସାରିଲେ ଭୋଜନ
ବୈଦର୍ଭୀ ସାରିଲେ ମଧ୍ୟ ଭୋଜନାଦି କର୍ମ ।

ତାମ୍ବୁଳ ଭୁଞ୍ଜିଣ ରାଜା ବସିଲେ ସୁଖରେ
ପଶାଖେଳିଲେକ ରାଣୀ ସଙ୍ଗେ ପଲ୍ୟଙ୍କରେ
ପୁଷ୍କର ନାମରେ ଥିଲା ରାଜାର ସୋଦର
ତାହାର ସଦନେ କଳି ଗଲାକ ସତ୍ୱର ।
ଗୁପ୍ତେ କହେ ଶୁଣ ନଳରାଜାର ସୋଦର
ଯଦ୍ୟପି ବୈଭବ ଚାହଁ ମୋର କଥାକର ।
ନଳର ସହିତେ ଯାଇ ପଶାଖେଳ ତୁମ୍ଭେ
ତୁମ୍ଭର ସହାୟ ହୋଇ ଜିତାଇବୁ ଆମ୍ଭେ ।
କଳିଠାରୁ ଏହା ଯହୁଁ ପୁଷ୍କର ଶୁଣିଲା
ଖେଳିବାପାଇଁ ସେ ଯାଇଁ ନଳକୁ ଡାକିଲା ।
ବୋଇଲା କି ଖେଳ ବସି ନିଜ ସ୍ତ୍ରୀ ସଙ୍ଗରେ
ଖେଳିବାକୁ ଥିଲେ ବାଞ୍ଛା ଖେଳ ମୋ ତୁଲରେ
ଏପରି ଶୁଣିଣ ନଳ ପୁଷ୍କରର ଦମ୍ଭ
ଅହଙ୍କାରେ କ୍ଷଣମାତ୍ରେ ନ କଲେ ବିଳମ୍ବ ।
ଖେଳରେ ବସିଲେ ନଳ ପୁଷ୍କର ଦ୍ୱିଜଣ
ବିବିଧ ରତ୍ନ ରଜତ ରଖିଲେକ ପଣ ।
ଦ୍ୱାପରଯୁଗ ହୋଇଲା ତହିଁ ପଶା ସାର
କଳି ରହିଲା କାଠିରେ ହେ ମନୁ ନୃବର ।
ପୁଷ୍କରର ବବ ଅକ୍ଷ ଦ୍ୱାପର ପ୍ରଭାବେ
ଅନ୍ୟଥା ନ ହୁଏ ଦାନ ଯାହା ମାଗେ ଯେବେ
ପୁଣି କ୍ରୋଧରେ ସେ ପଣ କରୁଥାନ୍ତି ନଳ
ମାୟା ବୁଝି ନ ପାରିଲେ ହେଲେ ମତିଭୋଳ ।
ସୁହୃଦ ବାନ୍ଧବ ମନ୍ତ୍ରୀ ଯେତେ ପୁରନର
ନିବାରିବାର ଶକତି ନୋହିଲା କାହାର ।
ପୁଣି ତାଙ୍କ ବନ୍ଧୁ ଯେତେ ଏକତ୍ର ହୋଇଲେ
ଦମୟନ୍ତୀ ପାଶେ ଯାଇ ବୁଝାଇ କହିଲେ ।
ଅକ୍ଷକ୍ରୀଡ଼ାରେ ସକଳ ହାରନ୍ତି ନୃପତି
ତାଙ୍କ ପାଶେ ଯାଇ ତାଙ୍କୁ ନିବର୍ତ୍ତାଅ ସତୀ ।
ଏହା ଶୁଣି ଦମୟନ୍ତୀ ଆଶ୍ଚର୍ଯ୍ୟ ହୋଇଲେ
ଅତିଶୀଘ୍ର ରାଜା ପାଶେ ଯାଇଁ ପ୍ରବେଶିଲେ ।
ରାଜାଙ୍କୁ କହନ୍ତି ଭୈମୀ ବିନୟ କରିଣ
ଦ୍ୱାରେ ଅଛନ୍ତି ଅମାତ୍ୟ ପାତ୍ର ମିତ୍ରଗଣ ।
ଆଜ୍ଞାକର ସର୍ବେ ଆସି କରନ୍ତୁ ଦର୍ଶନ
ତେଜନ୍ତୁ ଏ ପଶାଖେଳ ରାଜ୍ୟେ ଦିଅ ମନ ।
କଳିରେ ଆଚ୍ଛନ୍ନ ରାଜା ନ ଶୁଣନ୍ତି ବାଣୀ
ମଥା ଟେକିଣ ଭୈମୀଙ୍କି ନ ଚାହିଁଲେ ପୁଣି ।
ବାର ବାର କହି ଭୈମୀ ବାରି ନ ପାରିଲେ
ମତିଭ୍ରମ ହେଲେ ରାଜା ନିଶ୍ଚୟ ଜାଣିଲେ ।
ଅନ୍ତଃପୁରେ ଗଲେ ଭୈମୀ କରିଣ କ୍ରନ୍ଦନ
ନିଜ ନିଜ ଗୃହେ ଗଲେ ଫେରି ପୁରଜନ ।

ଏହିପରି ବହୁଦିନ ଖେଳି ନରଈଶ
କ୍ରମେ କ୍ରମେ ବଇଭବ ହୋଇଲାକ ଶେଷ ।
ଅକ୍ଷବିନା ନୃପତିର ନାହିଁ ଅନ୍ୟେ ମନ
ସକଳ ତେଜି ଖେଳନ୍ତି ରାଜା ଅନୁକ୍ଷଣ ।
ତା ଦେଖି ବୈଦର୍ଭୀ ମନେ ଆତଙ୍କ ହୋଇଲେ
ବୃହତସେନୀ ଧାତ୍ରୀଙ୍କୁ ଡାକିଣ କହିଲେ ।
ବାର୍ଷ୍ଣେୟ ସାରଥିଙ୍କୁ ତୁ ଶୀଘ୍ର ଡାକିଆଣ
ଆଜ୍ଞାମାତ୍ରେ କହେ ଧାତ୍ରୀ ସୂତଙ୍କୁ ଯାଇଣ ।
ଶୁଣିଲାମାତ୍ରେ ସାରଥି ଆସିଲା ସେକ୍ଷଣ
ସାରଥିକି ଦେଖି ଭୈମୀ କହିଲେ ଏସନ ।
ସର୍ବନାଶ ହେଲା ଏହା କଲେକ ରାଜନ ।
ଏ ମହା ବିପଦୁ ତୁମ୍ଭେ କର ହେ ତାରଣ ।
ଇନ୍ଦ୍ରସେନ ପୁତ୍ର ଆଉ ଇନ୍ଦ୍ରସେନୀ ଝିଅ
ମୋର ଜ୍ଞାତିଘରେ ଯାଙ୍କୁ ଛାଡ଼ିଆସ ଯାଅ ।
ବିଳମ୍ବ ନ କରି ରଥ ଆଣ ଶୀଘ୍ରଗତି
ଆଜ୍ଞାମାତ୍ରେ ରଥ ସାଜି ଆଣିଲା ସାରଥି ।
ରଥେ ବସାଇଣ ଦୁଇ କୁମାର କୁମାରୀ
ମୁହୂର୍ତ୍ତକେ ପ୍ରବେଶିଲା ସେ କୁଣ୍ଡୀ ନଗରୀ ।
ରଥ ଅଶ୍ୱ ସହିତରେ ରଖି ରାଜପୁରେ
ପୁଣି ମିଳିଲା ବାର୍ଷ୍ଣେୟ ନୈଷଧ ନଗରେ ।
ପୁଷ୍କର ସହିତେ ପଶା ଖେଳୁଛନ୍ତି ନଳ
ରାଜ୍ୟ ଧନ ସହିତରେ ହାରିଣ ସକଳ ।
ବସନ ଭୂଷଣ ଆଉ ରତ୍ନ ଅଳଙ୍କାର
ସବୁ ହାରିଲେଣି ଖେଳେ ନଳ ନୃପବର ।
ଏକାଳେ ପୁଷ୍କର ହସି କହିଲା ବଚନ
ଆଉ କିସ ଅଛି ଏବେ ଶୀଘ୍ର କର ପଣ ।
ମୁହିଁ ଦେଖୁଛି ତୁମ୍ଭର ଆଉ କିଛି ନାହିଁ
ଦମୟନ୍ତୀ ରାଣୀ ପଣ କର ନରସାଇଁ ।
ଏହାଶୁଣି ନଳ କଲେ ରଙ୍ଗ ନେତ୍ର ବର୍ଣ୍ଣ
କହିବାକୁ ଶକ୍ତି ନାହିଁ ବିରସ ବଦନ ।
ପୁଷ୍କର ବୋଇଲା ଯେବେ ନ ଖେଳିବୁ ରାଜା
ମୋହର ରାଜ୍ୟରୁ ତୁହି ବାହାର ହୋଇଯା ।
ଶୁଣି ରାଜା ଭୂଷଣାଦି ଯା ଥିଲା ଶରୀରେ
ସବୁ କାଢ଼ି ସମର୍ପିଲେ ପୁଷ୍କର ହସ୍ତରେ ।
ଏକ ବସ୍ତ୍ର ହୋଇ ରାଜା ବାହାର ହୋଇଲେ
ଅନ୍ତଃପୁରେ ଥାଇ ରାଣୀ ବୈଦର୍ଭୀ ଶୁଣିଲେ ।
ସେ ମଧ୍ୟ ଅଙ୍ଗଭୂଷଣ ସବୁ କାଢ଼ି ଦେଇ
ରାଜା ସଙ୍ଗରେ ଚଳିଲେ ଏକବସ୍ତ୍ରା ହୋଇ ।
ଆଜ୍ଞା ଦେଲେକ ପୁଷ୍କର ଡାକି ଅନୁଚରେ
ଏ କଥା ପ୍ରକାଶ କର ବୁଲିଣ ନଗରେ ।

ନଳରାଜା ପ୍ରବେଶିବେ ସନ୍ନିଧେ ଯାହାର
ସେ ତାକୁ ରଖିଲେ ହେବ ସବଂଶେ ସଂହାର ।
ଆଜ୍ଞାମାତ୍ରେ ରାଜ୍ୟ ବୁଲି ଜଣାଇଲେ ଚାର
ରାଜାଜ୍ଞା ପାଇ ସବୁରି ହୃଦେ ହେଲା ଡର ।
ତିନିଦିନ ଥିଲେ ରାଜା ନଗର ଭିତରେ
ନ ଗଲେ କେ ରାଜାପାଶେ ପୁଷ୍କର ଭୟରେ ।
ପଚାରିଲେ ନାହିଁ କିବା ନ ଗଲେ ନିକଟେ
କ୍ଷୁଧା ତୃଷା ପାଇ ନଳ ଗଲେ ନଦୀତଟେ ।
ତିନିଦିନ ତିନି ରାତ୍ର କରି ଜଳପାନ
ତଦପରେ କଲେ ଘୋରବନକୁ ଗମନ ।
ଦିନ ହରନ୍ତି ସେ ବନେ କନ୍ଦମୂଳ ଖାଇ
ଦିନେକ ବନସ୍ତେ କିଛି ନ ପାଇଲେ ସେହି ।
ସେ ବନ ତେଜିଣ ରାଜା ଅନ୍ୟ ବନେ ଗଲେ
ସେହିଠାରେ ପାଞ୍ଚଦିନ ଉପାସେ ରହିଲେ ।
ଶରୀର କ୍ଷୀଣ ହୋଇଲା ଚାଲି ନ ପାରନ୍ତି
ରାଜା ରାଣୀ ଦୁହେଁ ବସି ଦୈବ ସୁମରନ୍ତି ।
ବିଛାମାସ ଶୁକ୍ଳପକ୍ଷ ଦଶମୀର ଦିନ
ଶଉରୀବାର ଶ୍ରବଣା ଋକ୍ଷ ବିଦ୍ୟମାନ ।
ନଳ ଦମୟନ୍ତୀ ଲତାତଳେ ଛନ୍ତି ବସି
ସୁବର୍ଣ୍ଣ କପୋତ ଏକ ଦେଖାଦେଲା ଆସି ।
ସେ ସ୍ୱର୍ଣ୍ଣ କପୋତ ଦେଖି ନଳ ନରରାଣ
ଲୋଭବଶେ କପୋତକୁ ଧରି ଲୋଡ଼େ ପୁଣ
ପିନ୍ଧିଲା ବସନ ଖଣ୍ଡି ଫିଟାଇଣ ରାୟେ
କପୋତର ଉପରକୁ ବେଗେ ଫିଙ୍ଗିଦିଏ ।
ମାୟାକପୋତ ପ୍ରତ୍ୟକ୍ଷେ ଜାଣ କଳିକାଳ
ବସ୍ତ୍ର ଘେନି ଉଡ଼ିଗଲା ଆକାଶ ମଣ୍ଡଳ ।
ଲଜ୍ଜାରେ ନ ଆସେ ନଳ ଲତାର ଭିତରୁ
ପକ୍ଷୀ ଘେନିଗଲା ବସ୍ତ୍ର ରାଜା ଧରୁ ଧରୁ ।
ସ୍ୱାମୀଙ୍କୁ ଉଲଗ୍ନ ଦେଖି ଦେବୀ ଦମୟନ୍ତୀ
ପିନ୍ଧାଇଲେ ନିଜ ଶାଢ଼ୀ ପଣନ୍ତେ ଝଟତି ।
ଏକଇ ବସ୍ତ୍ର ପିନ୍ଧିଲେ ସେ ସ୍ୱାମୀ ଭାରିଯା
ସମସ୍ତ ଲଜ୍ଜାକୁ ମନୁ ଦୂରେ କଲେ ତେଜ୍ୟା ।
ଏ ରୂପେ ବୁଲନ୍ତି ଦୁହେଁ ଗହନ ବନସ୍ତେ
ମଣ୍ଡପଟିଏ ଦେଖିଲେ ବନେ ଅଦଭୂତେ ।
ସେହି କଳିକାଳ ନିଜେ ମଣ୍ଡପେକ ହୋଇ
ପତି ପତ୍ନୀ ଛଡ଼ାଇବା ଆଶେ ଥିଲା ତହିଁ ।
ନଳ ବୋଇଲେକ ତୁମ୍ଭେ ଶୁଣ ଆଗେ ସତୀ
ପିତା ରାଜ୍ୟକୁ ତୋହର ଯାଅ ଯା ଝଟତି ।
ଦମୟନ୍ତୀ ବୋଲେ ନାଥ ଏହା କିପାଁ କହ
କି ନିମନ୍ତେ ଯିବି ମୁହିଁ ପିତାଙ୍କର ଗୃହ ।
ନଳ ବୋଇଲେକ ମୁହିଁ ଅଟେ ମହାଦୁଃଖୀ
ପିତାଘର ଗଲେ ତୁହି ହୋଇବୁ ଗୋ ସୁଖୀ ।
ବୈଦର୍ଭୀ ବୋଲେ କେମନ୍ତେ କରିଯିବି ତ୍ୟଜ୍ୟା
ଦୁଃଖର କାଳକୁ ଜାଣ ଲୋଡ଼ାହିଁ ଭାରିଯା ।
ନାନାରୂପେ ଯେବେ ଧନ୍ଦି ହେଉଥାଏ ପତି
ଭାର୍ଯ୍ୟା ତାକୁ ଉପଦେଶ ଦିଏ ନିତିପ୍ରତି ।
ବିପଦ କାଳରେ ଯେବେ ଭ୍ରମ ହୁଏ ବୁଦ୍ଧି
ସେ ସମୟେ ଭାରିଯା ଯେ ଅଟଇ ମୌଷଧି ।
ଭାର୍ଯ୍ୟାହିଁ ବନ୍ଧୁ କୁଟୁମ୍ବ ଜାଣ ପ୍ରାଣନାହା
ଅର୍ଦ୍ଧାଙ୍ଗୀ ଅଟେ ଭାରିଯା ପୁରୁଷର ତାହା ।
ଯେବଣ ସ୍ତିରୀ ଯାଆନ୍ତି ସ୍ୱାମୀଙ୍କୁ ଉପେକ୍ଷି
ସେହି ସ୍ତିରୀ ଜାଣ ନିଶ୍ଚେ ହୁଏ ବଡ଼ ଦୁଃଖୀ ।
ତୁମ୍ଭର ମୋହର ଯାହା ହୋଇଅଛି ସତ୍ୟ
ସେ କଥା ଏବେ ପାସୋରି ଦେଲ କି ହେନାଥ
ନଳ ବୋଲେ ବସ୍ତ୍ରହୀନ ଦେହ ହୀନତେଜ
ଏକାଳେ ବନ୍ଧୁ ଘରକୁ ଯିବା ବଡ଼ ଲାଜ ।
ଆବର କହୁଛି ଶୁଣ ବିପତ୍ତିର କାଳେ
ବନ୍ଧୁହିଁ ନ ପଚାରନ୍ତି କର୍ମର ଅବଳେ ।
ଦମୟନ୍ତୀ ବୋଲେ ଯେବେ ଏହା ଭାଳ ହୃଦେ
ଏ ମଣ୍ଡପେ ବସି ରାତ୍ର ବଞ୍ଚିବାକ ହାଦେ ।
ଏତେ ବିଚାରି ମଣ୍ଡପେ ବସିଲେ ସେ ବେନି
ନିଦ୍ରାର ଆଳସ୍ୟେ ତହିଁ ଶୋଇଲା କାମିନୀ ।
ନଳର ସେ ସୀମସ୍ଥାନେ ମସ୍ତକକୁ ଦେଇ
ଶୋଇଲେକ ଦମୟନ୍ତୀ ଅତି ସୁଖ ପାଇ ।
ନିଦ୍ରାରେ ଅଚେତ ଯହୁଁ ହେଲେ ଦମୟନ୍ତୀ
ତା ଦେଖି ବିଚାର କଲେ ନଳ ନରପତି ।
ଯାକୁ ଇଚ୍ଛା କରିଥିଲେ ଚାରି ଦିଗପାଳେ
ତାହାଙ୍କୁ ତେଜି ଏ ମୋତେ ବରିଲା ସେକାଳେ
ସେହି ଦେବତାମାନେ ଯେ ହୋଇଲେ ନିରାଶ
ତାହାଙ୍କ ଯୋଗରୁ ମୋର ହେଲା ରାଜ୍ୟ ନାଶ
ଏହି ଦମୟନ୍ତୀ ମୋତେ କାଳସର୍ପ ହେଲା
ଚନ୍ଦନ ତରୁରେ କାଳସର୍ପ ଯେ ବଢ଼ିଲା ।
ଅବିଗୁଣ ବାଛିକରି ତହୁଁ ନଳରାୟେ
ପଳାଇ ଯିବାକୁ ତହିଁ ଲୋଡ଼ଇ ଉପାୟେ ।
ଏତେବେଳକୁ ମୋତେ ତ ପଡ଼ିଛି ଆପଦ
ସୁନ୍ଦରୀ ଭାରିଯା ଥିଲେ ବହୁତ ପ୍ରମାଦ ।
ଏହି ମୋର ସଙ୍ଗେ ଥିଲେ କଷଣ ପାଇବ
ପିତା ଘରକୁ ଗଲେ ଏ ସୁଖରେ ରହିବ ।
ଏପରି ବିଚାର ନଳ ବିକଳ ହୁଅଇ
କିପରି ଯିବି ଏଠାରୁ ଉପାୟ ପାଞ୍ଚଇ ।

ଶାଢ଼ୀକୁ ଧରି ଚିରିଲେ ଚିଆଁଇବ ନାରୀ
କେମନ୍ତେ ପ୍ରକାରେ ମୁହିଁ ଏଥୁ ହେବି ପାରି ।
ତ୍ରୈଲୋକ୍ୟ ମୋହିନୀ ଏହୁ ରାଜାର ଦୁହିତା
ବିପଦକାଳରେ ମୋତେ ହେଲା ବିଷପିତା ।
ନଳ ଭାବୁଛନ୍ତି ବସି ଏମନ୍ତ ସମୟେ
ଶୂନ୍ୟରୁ ଖସି ପଡ଼ିଲା କଟାରୀ ଗୋଟିଏ ।
ଦେଖିକରି ନଳରାଜା ଆନନ୍ଦିତ ମତି
କଟାରୀ ଘେନି କାଟିଲେ ପଣତ ଝଟତି ।
ତହୁଁ ପଳାଇଣ ନଳ ବନେ ଯାଉଛନ୍ତି
ପୁଣି ପୁଣି ଲେଉଟିଣ ପଛକୁ ଚାହାନ୍ତି ।
ବୋଲୁଛନ୍ତି ବ୍ୟାସମୁନି ଶୁଣ ହେ ଯୁଧିଷ୍ଠି
ଚିଆଇଁଣ ଦମୟନ୍ତୀ କରଯୋଡ଼ି ଉଠି ।
ବେନି ହସ୍ତରେ ସୁନ୍ଦରୀ ମଳି ବେନି ଆଖି
କାହିଁଗଲେ ପ୍ରାଣନାଥ ଚାହିଁଲା ନିରୀକ୍ଷି ।
ସ୍ୱାମୀକୁ ନ ଦେଖି ତହିଁ ହୋଇଲା ବିକଳ
ବୁଦାଯାକ ଖୋଜିଲା ସେ ହୋଇ ମତିଭୋଳ
ଆହା ପ୍ରାଣନାଥ ମୋତେ କେଣେ ଛାଡ଼ିଗଲ
ନ ଦେଖି ସେ ମୂର୍ଚ୍ଛାଯାଇ ପଡ଼ିଲା ଭୂତଳ ।
ଦୁଃଖିନୀ ସଙ୍ଗାତ ମୋର ଛାଡ଼ିଗଲେ କେଣେ
ପୋଷିବା ଭୟରେ ଅବା ଉପେକ୍ଷିଲ ବନେ ।
କିବା ସ୍ୱାମୀକୁ ଭକ୍ଷିଲେ ବନ ହିଂସ୍ରଜୀବେ
କେମନ୍ତେ ବଞ୍ଚିବି ଅବା ସ୍ୱାମୀର ଅଭାବେ ।
ସାଷ୍ଟାମ ହୋଇଣ ବନେ ଖୋଜେ ଦମୟନ୍ତୀ
ନାଥ ନାଥ ବୋଲିକରି ଡାକେ ଚଉକତି ।
ତୁମ୍ଭ ହେତୁ ଉପେକ୍ଷିଲି ଦେବତାଙ୍କୁ ମୁହିଁ
କେଉଁପରି ଗଲ ନାଥ ଏକା ଛାଡ଼ିଦେଇ ।
ଏଡ଼େ ଭାବ ଛାଡ଼ି ନାଥ କରିଗଲ ଭିନ୍ନ
ମୋର ଛାରପାଇଁ ତୁମ୍ଭେ ପାଇଲ କଷଣ ।
ଦଇବ ପୁରୁଷ ମୋତେ ଦିଅ ହେ ମରଣ
ଏ ନିର୍ଲ୍ଲଜ ଆତ୍ମା ମୋର ଯାଉ ଏହିକ୍ଷଣ ।
ଏରୂପେ କହି କାନ୍ଦିଣ ବୁଲଇ ବନସ୍ତେ
ଅଜଗରେକ ଦେଖି ଯାଇ ବନପଥେ ।
ତେଣୁ ଅଜଗର ଦେଖି ଧାଇଁଲା ତଡ଼ତି
ଗର୍ଜିଣ ଆସି ଧଇଲା ସେହି ଦମୟନ୍ତୀ ।
ନିରେଖ ହୋଇ ସୁନ୍ଦରୀ ଆରତେ ଡାକଇ
ସର୍ପ ଗିଳୁଅଛି ରଖ ନଳ ନରସାଇଁ ।
ଅଜ ନାମରେ ଶବର ବନେ ବୁଲୁଥିଲା
ନାରାଚେକ ବିନ୍ଧି ସେହି ସର୍ପକୁ ବଧିଲା ।
ଦମୟନ୍ତୀକି କାଢ଼ିଣ ଆଣିଲା ତା ଗର୍ଭୁ
ଭୈମୀ ବୋଲେ ଏ ବିପଦୁଁ ରଖିଲୁ ତୁ ବାବୁ ।

କି ଦେଇ ଶୁଝିବି ତୋର ଉପକାର ମୁହିଁ
ହେ କିରାତ ବୁଲେ ସ୍ୱାମୀ ବିଚ୍ଛେଦିନୀ ହୋଇ
କିରାତବୋଲେ ତୋ ସ୍ୱାମୀ ଯେବେକଲାତେଜ୍ୟା
ମୁହିଁ ବନପତି ମୋର ହୁଅ ତୁ ଭାରିଯା ।
ବହୁରସ ମୋହଠାରୁ ପାଇବୁ ତୁ ବାଳୀ
ତୋତେ କରିଥିବି ମୋର ମନର ହିଆଳି ।
କୋଳ କରିବାକୁ ବ୍ୟାଧ ପାଶକୁ ଆସିଲା
ଦମୟନ୍ତୀ କୋପନେତ୍ରେ ସେହୁ ନାଶଗଲା ।
ଅନାଥିନୀ ନାରୀପରି କାନ୍ଦେ ଦମୟନ୍ତୀ
କାହିଁଗଲ ବନେ ଆହେ ନୈଷଧର ପତି ।
କେବଣ ଲତାରେ ଲୁଚିଅଛ ପ୍ରାଣନାଥ
ଏବେ ମୋତେ ଦୟାକରି ଦିଅନ୍ତୁ ସାକ୍ଷାତ ।
ମୁହିଁ ତୁମ୍ଭ ଦାସୀମୋର ଅନ୍ୟେ ନାହିଁ ମତି
କେବଣ ଦୋଷରେ ସ୍ୱାମୀ ଦେଲ ଏଡ଼େ ଶାସ୍ତି
ବନେ ବନେ ଖୋଜି କାନ୍ଦେ ବାଳିକା ପରାୟ
ଏକ ମୁହୂର୍ତ୍ତକୁ ମଣେ କୋଟିଯୁଗ ପ୍ରାୟ ।
ମହାଘୋର ବନେ ଯାଇ ହୋଇଲେ ପ୍ରବେଶ
ନାନା ଜାତି ପଶୁ ତହିଁ ଦେଖିଲେ ବିଶେଷ ।
ସିଂହ ବ୍ୟାଘ୍ର ଭଲ୍ଲୁକ ଯେ ଗଣ୍ଡା କୃଷ୍ଣସାର
ମୃଗ ମୃଗୀଯୂଥ ପୁଣି ମହିଷ ମାର୍ଜାର ।
ଶଲ୍ଲକୀ ନକୁଳ ଗଧ ମୂଷିକ ବାନର
ନଭମାର୍ଗ ସ୍ପର୍ଶେ ନାନାଜାତି ତରୁବର ।
ଶାଳ ତାଳ ପିଆଶାଳ ଅର୍ଜ୍ଜୁନ ଚନ୍ଦନ
ଶିମୁଳୀ ଖର୍ଜ୍ଜୁର ଜାମୁ କଦମ୍ବ କାଞ୍ଚନ ।
ଆମ୍ବଡ଼ା କଇଥ ବେଲ ଅଶ୍ୱତ୍ଥ ବଦରୀ
ଅଶୋକ ଚମ୍ପକ କେନ୍ଦୁ ଗଛ ଆଦିକରି ।
ବାମ୍ପୀ ହ୍ରଦ ସରୋବର ତଡ଼ାଗାଦିମାନ
ସେହିଠାରେ ରହିଅଛି ବହୁ ରମ୍ୟସ୍ଥାନ ।
ଯାହା ଯାହା ଦେଖେ ଭୈମୀ ଅନ୍ୟେନାହିଁ ମନ
ସ୍ୱାମୀ ଅନ୍ୱେଷଣେ ଭ୍ରମେ ଗହନ କାନନ ।
ଯାହାକୁ ଦେଖନ୍ତି ଭୈମୀ ପୁଚ୍ଛନ୍ତି ତାହାକୁ
ଦେଖିଛ କି ତୁମ୍ଭେମାନେ ମୋହର ସ୍ୱାମୀଙ୍କୁ ।
ସିଂହଗ୍ରୀବ ତାହାଙ୍କର ବିଶାଳ ଲୋଚନ
ଆଜାନୁ ଲମ୍ବିତ ଭୁଜ ଅର୍ଦ୍ଧାଙ୍ଗ ବସନ ।
ଆହେ ସିଂହ ମହାତେଜା ବନର ଈଶ୍ୱର
ବନର ବୃତ୍ତାନ୍ତ ଯେତେ ତୋତେ ତ ଗୋଚର
ସତ କହ ନାଥ ମୋର ଗଲେ କେଉଁ ଦିଗେ
ଅନାଥିନୀ ମୁହିଁ ତୋତେ ଏହି ଭିକ୍ଷା ମାଗେ ।
ତହୁଁ କିଛି ଦୂର ଯାଇଁ ସରିତେ ଦେଖିଲେ
ତାହାକୁ ପ୍ରଣାମ କରି କାନ୍ଦିଣ କହିଲେ ।

ଦେଖିଥିଲ କି ମୋ ପତି ନଳ ନରବର
ତାଙ୍କ କଥା କହି ମୋର ହୃଦ ଶାନ୍ତିକର ।
କ୍ଷୁଧା ପିପାସାରେ ଅତି ଆକୁଳିତ ହୋଇ
ତୋର ତୀରେ ଜଳପାନେ ଆସିଥିବେ ସେହି
ସେହି ନୀରେ ହଂସଶ୍ରେଣୀ ଦେଖି ଦମୟନ୍ତୀ
ଭାଳନ୍ତି ଏହାଙ୍କ ଯୋଗେ ଲଭିଥିଲି ପତି ।
ସେମାନଙ୍କୁ ଚାହିଁ ସତୀ ବୋଲନ୍ତି ଏମନ୍ତ
ତୁମ୍ଭେ ଦେଖିଥିଲ କି ହେ ନଳ ନରନାଥ ।
ହଂସ ବୋଇଲେ ପୁରୁଷ ଏକ ଆସିଥିଲା
ଏହିଠାରୁ ଜଳ ପିଇ ବନମାର୍ଗେ ଗଲା ।
ଏପରି ସନ୍ଦେଶ ପାଇ ତହୁଁ ଦମୟନ୍ତୀ
ବିକଳ ହୋଇ ଖୋଜିଲେ ବନ ଚଉକତି ।
ନ ଦେଖି ନଳକୁ କାହିଁ ଉଚ୍ଚରେ କାନ୍ଦିଲେ
ଜୀବନ ହାରିବା ପାଇଁ ମନେ ବିଚାରିଲେ ।
ବୋଇଲେ ବନଜୀବଙ୍କୁ ବନେ ଅଛ ରହି
ମୁହିଁ ଅନାଥିନୀ ମୋତେ ତୁମ୍ଭେ ଯାଅ ଖାଇ ।
ବ୍ୟାଘ୍ରପାଖେ ଯାଇ ବୋଲେ ଭକ୍ଷ ମୋତେ ମାରି
ସତୀ ତେଜ ଦେଖି ସେହି ଗଲା ଅପସରି ।
ଏହିରୂପେ କହି କହି ଯାଉଁ କେତେ ଦୂର
ପଥମଧ୍ୟେ ଦେଖି ଏକ ଉଚ୍ଚ ଗିରିବର ।
ତାହାକୁ ପୁଚ୍ଛିଲେ ଭୈମୀ କରିଣ ରୋଦନ
ଅତିଉଚ୍ଚ ତୋର ଶୃଙ୍ଗ ପରଶେ ଗଗନ ।
ବହୁଦୂର ତୋର ଦୃଷ୍ଟି ପଡ଼େ ଗିରିବର
କହ କେଉଁଠାରେ ଛନ୍ତି ମୋ ପ୍ରାଣଈଶ୍ୱର ।
ପଦ୍ମକେଶର ପରାୟେ ବର୍ଣ୍ଣ ତାହାଙ୍କର
ଶ୍ରୀମୁଖ ନିନ୍ଦା କରଇ ପୂର୍ଣ୍ଣ ଶଶଧର ।
ବୀରସେନ ସୁତ ସେହି ନୈଷଧ ଈଶ୍ୱର
ଦେଖିଅଛ କି ମୋ କାନ୍ତ କହ ଗିରିବର ।
ଏପରି ଗିରି ପୃଷ୍ଠରେ ଭ୍ରମି କେତେ ଦିନ
କ୍ଷୁଧା ତୃଷାରେ କାତର ବଦନ ମଳିନ ।
ଅନୁବ୍ରତେ ଦୁଇନେତ୍ରୁ ବହେ ଜଳଧାର
କହି ନ ପାରନ୍ତି କଥା ଧୂଳିରେ ଧୂସର ।
ସେହିଠାରୁ ଚଳିଗଲେ ଉତ୍ତର ମୁଖରେ
ପ୍ରବେଶିଲେ ପୌଲସ୍ତିଙ୍କ ନାତିର ମଠରେ ।
ଅନାହାରୀ ବାତାହାରୀ ଦୀର୍ଘନିଶ ଦାଢ଼ି
ହାତ ଗୋଡ଼ ସର୍ପତୁଲ୍ୟ ନଖ ମୋଡ଼ି ମୋଡ଼ି ।
ଦେଖି ଦମୟନ୍ତୀ ତାଙ୍କୁ ଭୂମିଷ୍ଠ ହୋଇଣ
ପ୍ରଣାମ କରି କହିଲେ କରକୁ ଯୋଡ଼ିଣ ।
ଭୈମୀଙ୍କୁ ଦେଖି ପୁଚ୍ଛିଲେ ମଧୁର ବଚନେ
କିଏ ତୁମ୍ଭେ କାହିଁପାଇଁ ଭ୍ରମୁଛ କାନନେ ।
ତୁମ୍ଭ ରୂପ ସମାନରେ ନାହିଁ ଏ ଧରିତ୍ରୀ
ଈଶ୍ୱରଙ୍କୁ ତେଜି କିବା ଭ୍ରମୁଛ ପାର୍ବତୀ
ତ୍ରୈଲୋକ୍ୟ ମୋହିନୀ ଅଟେ ତୁମ୍ଭ ରୂପରାଶି
ବାଳୁତ ପ୍ରାୟେ କାନ୍ଦୁଛ ବନେ କିପାଁ ପଶି ।
କି ଅବା ରାକ୍ଷସୀ ଅବା ବନର ଦେବତୀ
ଆମ୍ଭ ଆଗେ ସତ କହ ଆଗୋ ରୂପବତୀ ।
ବୋଇଲେକ ଦମୟନ୍ତୀ ନଳ ମୋର ସ୍ୱାମୀ
ମୋତେ ଛାଡ଼ିକରି ସେହି ହେଲେ ବନଗାମୀ
ଅନ୍ନହୀନ ବସ୍ତ୍ରହୀନ କ୍ଷୀଣ ମୋର କାୟ
ସ୍ୱାମୀଙ୍କ ବିହୀନେ ମୋର ଚିତ୍ତ ନୁହେଁ ଥୟ ।
ହେ ମହର୍ଷି ମୁହିଁ ଅଟେ ପତି ବିରହିଣୀ
କେଉଁଠାରେ ପାଇବି ମୁଁ ମୋର ଗୁଣମଣି ।
ଅନ୍ୱେଷଣ କରେ ସଦା ତାଙ୍କ ରୂପ ଧ୍ୟାନ
ହଜିଲା ଧନ ପାଇଲେ ରହିବ ଜୀବନ ।
ଆଜ୍ଞାକର ମୁନିରାଜ କେଉଁ ଦେଶେ ଯିବି
ସତେ କି ମୁହିଁ ତାଙ୍କର ଦର୍ଶନ ପାଇବି ।
ଏହାଶୁଣି ମୁନି ତାଙ୍କୁ କଲେକ ଆଶ୍ୱାସ
ନ କର ରୋଦନ ତୁମ୍ଭ ଦୁଃଖ ହେଲା ଶେଷ ।
ଅଳ୍ପଦିନେ ତୁମ୍ଭ ରାଜ୍ୟ ପତିଙ୍କୁ ପାଇବ
ପୁତ୍ରକନ୍ୟା ସହ ସୁଖେ ଦିବସ ହରିବ ।
ଯାଅ ଏବେ ଦମୟନ୍ତୀ ଖୋଜ ବନେ ପଶି
ଏତେ ବୋଲି ଅନ୍ୟ ବନେ ଗଲେ ମହାଋଷି ।
ଦମୟନ୍ତୀ ପତି ନାମ ଧରିଣ କାନ୍ଦିଲେ
ପତି ଉଦ୍ଦେଶ୍ୟେ ସେଠାରୁ ଗମନ କରିଲେ ।
ନଦନଦୀ କଣ୍ଟକ ସେ ଗିରି ଘୋରବନେ
ଦିବାରାତ୍ର ଚଳନ୍ତି ସେ ବିରସ ବଦନେ ।
ଯାଉଁ ଯାଉଁ ଦେଖିଲେକ ଏକ ନଦୀତୀରେ
ବହୁଦ୍ରବ୍ୟ ନେଇଯାନ୍ତି ବହୁ ବଣିଜାରେ ।
ସେ ଦ୍ରବ୍ୟମାନ ବଳଦେ ଶକଟେ ଲଗାଇ
ଚୋଖା ଚୋଖା ତୁରଙ୍ଗମ ସଙ୍ଗରେ ଚଳାଇ ।
କାବେରୀ ନଦୀକୁ ସର୍ବେ ହୋଇଗଲେ ପାରି
ଦେଖିଲେ ବଟମୂଳରେ ବସିଛି ସୁନ୍ଦରୀ ।
କେଶବାସ ଅସମ୍ଭାଳ ଶରୀର ମଳିନ
କେତେକ ପ୍ରଶଂସା କଲେ ତାହାଙ୍କୁ ଦେଖିଣ ।
କେତେକ ଭୈମୀଙ୍କୁ ଦେଖି ବିସ୍ମୟ ହୋଇଲେ
ବେଶକୁ ଦେଖିଣ କେହି ଭୟେ ପଳାଇଲେ ।
କେବେ ହସେ କେବେକାନ୍ଦେ ଯେସନେ ବାତୁଳି
ରାକ୍ଷସୀ ମାନବୀ କିବା ପିଶାଚୀ ଏ ବାଳୀ ।
ଦୟାଭାବ ବହି କେହି ପୁଚ୍ଛଇ ଏସନ
କିଏ ତୁମ୍ଭେ ଏକା ବୁଲ ଏ ନିର୍ଜନ ବନ ।

ବୈଦର୍ଭୀ କହିଲେ ନୁହେଁ ପିଶାଚୀ ରାକ୍ଷସୀ
ନଳଙ୍କୁ ଖୋଜୁଛି ବନେ ଅଟେ ମୁଁ ମାନୁଷୀ
ଏ ଅରଣ୍ୟ ମଧ୍ୟେ ନଳ ଛାଡ଼ିଗଲେ ମୋତେ
ସତକହ ଦେଖିଥିଲେ ତାଙ୍କୁ ଏ ବନସ୍ତେ ।
ସାଧବେକ ବୋଲେ କିସ ପୁଛ ନଳବୃକ୍ଷ
ବୁଦାମାନଙ୍କରେ ସେହି ଥାଏ ଗୋ ପ୍ରତ୍ୟକ୍ଷ ।
ତାକୁ ଜନେ କାଟି ବାଡ଼େ ଚାଳେ ବତା କରି
ସେ ନଳରେ ତୋର କିସ କାର୍ଯ୍ୟ ଗୋ ସୁନ୍ଦରୀ
ସେ କଥା ଭୁଲିଣ ଏବେ ମୋ ବଚନ ଶୁଣ
ବାଣିଜ୍ୟ ଚଳଇ ମୋର ଚାରିଲକ୍ଷ ଜାଣ ।
ବାତୁଳ ଭାବ ତୋହର ସର୍ବ ଛଡ଼ାଇବି
ପ୍ରାଣର ସମାନ କରି ତୋତେ ମୁଁ ପାଳିବି ।
ଏତେ ବୋଲି ଦେଖାଇଲା ଦେବାଙ୍ଗ ବସନ
ଆବର ଦେଖାଇଲା ସେ ଅଷ୍ଟରତ୍ନମାନ ।
ଏହିସବୁ ଭୋଗ କର ଆଗୋ ପ୍ରିୟସହି
ଅକାରଣେ ନ ନାଶ ତୁ ଯଉବନ ଦେହୀ ।
ମୁହିଁ ସାଧବ ଅଟଇ ପୁଣି ବଣିଜାର
ମୋର ସମସ୍ତ ବାଣିଜ୍ୟ ସୁଖେ ଭୋଗ କର ।
ସାଧବ ବଚନ ଶୁଣି କୋପକରି ସତୀ
ବୋଲେ ଆରେ ପାପୀ ଶୁଣ ନଳ ମୋର ପତି
ସତୀନାରୀକୁ ତୁହିରେ ଝିଙ୍ଗାସୁ ଏମନ୍ତ
ମୋର ଶାପେ ହାତୀମାନେ ନାଶନ୍ତୁ ତୋ ବିତ୍ତ
ଏପରି ଶାପ ଦେଇଣ ଦମୟନ୍ତୀ ଗଲା
ଆବର ଜଣେ ବଣିକ ତାହାଙ୍କୁ କହିଲା ।
ତୁମ୍ଭେ ଯାହା ପୁଚ୍ଛାକଲ ତୁମ୍ଭ ବିନା ଆଉ
ଏ ବନସ୍ତେ ଅନ୍ୟ ଜନ ଆମ୍ଭେ ଦେଖିନାହିଁ ।
ଚେଦିରାଜ୍ୟେ ଯାଉ ଆମ୍ଭେ ବାଣିଜ୍ୟ ହେତୁରେ
ଆସ ଯେବେ ଯିବ ତୁମ୍ଭେ ନେବୁ ସଙ୍ଗତରେ ।
ଆଶ୍ୱାସ ପାଇ ତା ସଙ୍ଗେ ଗଲେ ଦମୟନ୍ତୀ
ପଥେ ପଥେ ପତିଙ୍କୁ ସେ ଅନ୍ୱେଷିଣ ଯାନ୍ତି ।
କେତେଦୂରେ ଦେଖିଲେ ସେ ଏକ ସରୋବର
ତହିଁରେ ଶୋଭା ପାଉଛି କୁମୁଦ କହ୍ଲାର ।
ସେହିଠାରେ ପ୍ରବେଶନ୍ତେ ସୂର୍ଯ୍ୟ ହେଲେ ଅସ୍ତ
ତହୁଁ ନ ଯାଇ ରହିଲେ ବଣିକ ସମସ୍ତ ।
ରନ୍ଧନ ଭୋଜନ କରି ସେଠାରେ ଶୋଇଲେ
ଦମୟନ୍ତୀ ମଧ୍ୟ ସେହି ଠାବରେ ରହିଲେ ।
ନିଶାକାଳେ ହସ୍ତୀଗଣ ତହୁଁ ଜଳପିଇ
ଆସନ୍ତେ ଦେଖିଲେ ବହୁଜନ ଛନ୍ତି ଶୋଇ ।
ଯେ ସାଧବ ବୈଦର୍ଭୀକି କରୁଥିଲା ଆଶ
ତା ଦଳ ମଧ୍ୟରେ ହସ୍ତୀ ହୋଇଲେ ପ୍ରବେଶ ।
ସେମାନଙ୍କ ମଧ୍ୟେ ପଶି ତାହାକୁ ଦଳିଲେ
ଦନ୍ତେ ଚିରିଲେ କାହାକୁ ଶୁଣ୍ଢେ ଫିଙ୍ଗିଦେଲେ ।
ଏରୂପେ କରନ୍ତେ ତହିଁ ମାତଙ୍ଗ ସକଳ
ସେ ବଣିକଗଣ ଉଠି କଲେ ମହାଗୋଳ ।
ପ୍ରାଣଭୟେ କିଏ କେଣେ ଗଲେ ପଳାଇଣ
ଦମୟନ୍ତୀ ଏକ ବୃକ୍ଷେ କଲେ ଆରୋହଣ ।
ଦମୟନ୍ତୀ ଶାପ କେଭେ ଆନ ଯେ ନୋହିଲା
ସେ ସାଧବର ସକଳ ଦ୍ରବ୍ୟ ନାଶଗଲା ।
ବୃକ୍ଷପରେ ରହି ସତୀ କରନ୍ତି ରୋଦନ
ହାୟ ବିଧି ମୋର ଭାଲେ ଥିଲୁ ଯା ଲେଖିଣ ।
ଜନମକାଳରୁ ମୁହିଁ ଜାଣୁଅଛି ମନେ
କଉଣସି ପାପକର୍ମ କରିନାହିଁ ଦିନେ ।
ତେବେ କିପାଁ ବିଧି ମୋର କଲୁ ଏହି ଗତି
ଅଧିକ ସନ୍ତାପ ମୋର ଉପୁଜାଅ ନିତି ।
ମୋର ସ୍ୱୟମ୍ବରେ ଦେବଗଣ ଆସିଥିଲେ
ଫେରିଯିବା ଯୋଗେ କିବା ମନେ କ୍ରୋଧକଲେ
ସେହି ହେତୁ ଦେଖୁନାହିଁ ଅନାଶ୍ରୟ ମୋର
ଏତେକଷ୍ଟେ ପାପଆତ୍ମା ନ ଛାଡ଼େ ଶରୀର ।
ଏଥୁଅନ୍ତେ ରାତ୍ରଶେଷେ ଯେହୁ ଯହିଁ ଥିଲେ
ଚାରିଆଡ଼ୁ ଆସି ପୁଣି ଏକାଠି ହୋଇଲେ ।
ଭୟମନେ ସେହିଠାରୁ ଯାନ୍ତି ଶୀଘ୍ରଗତି
କେତେଦିନେ ଚେଦିରାଜ୍ୟେ ପ୍ରବେଶିଲେ ସତୀ
ଶ୍ରୀମୁଖ ବିବିର୍ଣ୍ଣ କୃଶ ଅଙ୍ଗେ ଅର୍ଦ୍ଧବାସ
ଧୂଳିରେ ଧୂସର ଅଙ୍ଗ ଲୁଖୁରା ସୁକେଶ ।
ଏରୂପେ ନଗର ଦାଣ୍ଡେ ହୁଅନ୍ତେ ପ୍ରବେଶ
ଧାଇଁଲେ ଲୋକ ଗହଳେ ଦେଖି ତାର ବେଶ
ଯୁବା ବୃଦ୍ଧ ନଗରର ଯେତେ ନାରୀଗଣ
ତାହାଙ୍କର ଚଉପାଶେ ଚାଲନ୍ତି ବେଢ଼ିଣ ।
କେହି କାଦୁଅ ଫିଙ୍ଗନ୍ତି କେହି ଫିଙ୍ଗେ ଧୂଳି
ଏହା କରନ୍ତି ଭୈମୀଙ୍କୁ ଲୋକେ ହୋଇ ମେଳି
ସୁବାହୁ ରାଜାର ମାତା କୋଠାପରେ ଥିଲେ
ମୁଦୁସୁଲୀକୁ ଡାକିଣ ତାହାକୁ ବୋଇଲେ ।
ଏହି ଦେଖ ନାରୀଟିଏ ଦାଣ୍ଡରେ ସେ ଆସେ
ଲୋକମାନେ ବେଢ଼ିଛନ୍ତି ତାର ଚଉପାଶେ ।
ଶୀଘ୍ର ଯାଇଣ ତାହାକୁ ତୁହି ଡାକି ଆଣ
ଆଜ୍ଞାମାତ୍ରେ ଦାସୀ ତାକୁ ଆଣିଲା ବହନ ।
ଭୈମୀକୁ ଦେଖି ପୁଚ୍ଛିଲେ ସେହି ରାଜମାତା
ଦିଅ ତୋର ପରିଚୟ କାହାର ବନିତା ।
ନିଜ ରୂପ ଲୁଚାଇଛୁ ତୁହି କି କାରଣ
ମେଘ ଘୋଡ଼ାଇଛି କିବା ରବିର କିରଣ ।

ଦମୟନ୍ତୀ କହେ ଶୁଣ ଆଗେ ରାଜମାତ
ମୁହିଁ ଅଟଇ ସୈରିନ୍ଧ୍ରୀ ମାନୁଷୀ ସାକ୍ଷାତ ।
ଜୁଆଖେଳେ ହାରି ସ୍ୱାମୀ ପଶିଲେ କାନନେ
ବହୁଗୁଣ ତାଙ୍କ କହି ନୁହଇ ବଚନେ ।
ତାଙ୍କ ସଙ୍ଗେ ଥିଲି ମୁହିଁ ଛାଡ଼ିଗଲେ ମୋତେ
ତାଙ୍କୁ ଖୋଜି ଖୋଜି ଆସି ମିଳିଲଇଁ ଏଥେ ।
ଏହାକ ହି ଦମୟନ୍ତୀ କରିଲେ ରୋଦନ
ଆଶ୍ୱାସିଣ ରାଜାମାତା କହନ୍ତି ବଚନ ।
ନ କାନ୍ଦ ନ କାନ୍ଦ ଝିଅ ଚିତ୍ତ କର ସ୍ଥିର
ବିଦୀର୍ଣ୍ଣ ହୁଏ ହୃଦୟ ଦୁଃଖ ଦେଖି ତୋର ।
ପାଇବୁ ସ୍ୱାମୀର ଦେଖା ରହ ମୋର ବାସେ
ଲୋକ ପଠାଇବି ତୋର ପତିର ଉଦ୍ଦେଶ୍ୟେ ।
ଭୈମୀ କହେ ଏତେ ଯଦି କରୁଣା ମୋଠାରେ
ତେବେ ମୁଁ ରହିବି ଯାଇ ତୁମ୍ଭର ମନ୍ଦିରେ ।
ପୁରୁଷ ସହିତେ ଯେହ୍ନେ ଦେଖା ନ ହୋଇବ
ପୁରୁଷଙ୍କ ନିକଟକୁ ମୋତେ ନ ପେଷିବ ।
ନ ଛୁଇଁବି ଉଚ୍ଛିଷ୍ଟ ମୁଁ ନ ଘଷିବି ଗୋଡ଼
ପୂର୍ବରୁ ଏ ବ୍ରତମାନ କରିଅଛି ଦୃଢ଼ ।
ବୃଦ୍ଧଦ୍ୱିଜ ପଠାଇବେ ସ୍ୱାମୀ ଅନ୍ୱେଷଣେ
ଏତେକ କଲେ ରହିବି ତୁମ୍ଭର ସଦନେ ।
ଏହିରୂପେ ହେବ ବୋଲି କହେ ରାଜମାତା
ୟା କହି ଡାକିଲେ ତାର ସୁନନ୍ଦା ଦୁହିତା ।
ଦାସୀ ପରିବାରୀଙ୍କୁ ସେ ପୁଣି ଡକାଇଲେ
ଦମୟନ୍ତୀଙ୍କୁ ଆପଣେ ସ୍ନାନ କରାଇଲେ ।
ପିନ୍ଧାଇଲେ ବାଛି ଏକ ପାଟର ବସନ
ପୁନଶ୍ଚ ଦେଲେକ ତାଙ୍କୁ ଉତ୍ତମ ଭୋଜନ ।
ଭୋଜନ ଶେଷେ ବୈଦର୍ଭୀ ଦୁଃଖିତେ ବସିଲେ
ରାଜମାତା ତାଙ୍କୁ ପୁଣି ଏମନ୍ତ ବୋଇଲେ ।
ନ କର ବିରସ ମନ ଆଗୋ ସୁବଦନି
ତୋହର ସଙ୍ଗେ ମିତଣୀ ହେବ ମୋ ନନ୍ଦିନୀ ।
ଏହା କହି ସୁନନ୍ଦାକୁ ବୋଇଲେ ଲୋ ଝିଅ
ଏହା ସଙ୍ଗତରେ ମାଗୋ ମିତଣୀ ତୁ ହୁଅ ।
ବୈଦର୍ଭୀ ସୁନନ୍ଦା ଦୁହେଁ ମିତଣୀ ହୋଇଲେ
ଶାରଳା ଦାସ ଶାରଳା ଚିନ୍ତି ଏହା ବୋଲେ ।



## ନଳଙ୍କର ଅଯୋଧ୍ୟା ପ୍ରବେଶ ଓ ବାହୁକ ସାରଥି ନାମ ଧାରଣ

ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଯୁଧିଷ୍ଠିର
ନଳରାଜା କଥା ଶୁଣି ମନଦୁଃଖ ହର ।
ଅର୍ଦ୍ଧ ଶାଢ଼ୀ କାଟି ନଳ କରି ପରିଧାନ
ବାୟୁବେଗେ ସେହିଠାରୁ କଲେ ପଳାୟନ ।
ଦିବାରାତ୍ର ବୁଲି ବୁଲି ଗହନ ବନରେ
ଆଉ ଚଳି ନ ପାରନ୍ତି ଅବଶ ଶରୀରେ ।
ଏକସ୍ଥାନେ ବସି ପତ୍ନୀଦୁଃଖେ ହୋଇ ଦୁଃଖୀ
ଭାଳେ କିପାଁ ମୁଁ ଚାଣ୍ଡାଳ ଅଇଲି ଉପେକ୍ଷି ।
ଆହା ପ୍ରାଣ ପ୍ରିୟା ତୋତେ ଅଇଲି ମୁଁ ତ୍ୟାଗୀ
ମୋହର ଥାଆନ୍ତେ ତୁହି ହେଲୁ ଦୁଃଖଭୋଗୀ
ତୁହି ବିଚାରିଣ ମୋତେ ବୋଲୁଥିଲୁ ଯାହା
କାଳେ ମିଳିଲାକ ପ୍ରିୟେ ଜାଣିଛି ମୁଁ ତାହା ।
ପ୍ରିୟାଗୁଣ ସୁମରିଣ କାନ୍ଦେ ନରପତି
ପୁଣି ବନେ ବନେ ଭ୍ରମି ଲୋଡ଼େ ଦମୟନ୍ତୀ ।
ପଶ୍ଚିମ ଦିଗକୁ ନଳ କଲେ ଆଗମନ
ବୃଷ ମାସରେ ଶୁକ୍ଳ ଚଉଠିର ଦିନ ।
ବୈଦର୍ଭୀଙ୍କ ଗୁଣ ଗୁଣି ନଳ ଯାନ୍ତି ଚଳି
ମହାସର୍ପରୂପେ ମିଳେ ତାଙ୍କ ଆଗେ କଳି ।
ନଳ ନୃପତି ଚାହିଁଲେ ଯହୁଁ ସେ ସର୍ପକୁ
ବଦନ ବିସ୍ତାର କରି ଗିଳିଲା ତାହାଙ୍କୁ ।
ଚରଣଠାରୁ ଗିଳିଲା କଟି ପରିଯନ୍ତେ
ହା ପ୍ରିୟେ ବୋଲି ଚିନ୍ତିଲେ ନଳ ହୃଦଗତେ ।
ଏହାଶୁଣି ବୋଲେ ସର୍ପ ତୁହି କିସ କଲୁ
ପୁରୁଷ ହୋଇଣ ଧିକ ସ୍ତିରୀକି ଡାକିଲୁ ।
ବିଚକ୍ଷଣ ପୁରୁଷ ତୁ ଅଟୁ ମହାରାୟେ
ତୋହର ପ୍ରକୃତି ହେଲା ଦଶରଥ ପ୍ରାୟେ ।
ଏ ଆଗତ ଗ୍ରନ୍ଥ କହିଥିଲେ ବାଲମୀକ
ପାତାଳପୁରେ ଶୁଣିଲେ ଏହା ନାଗଲୋକ ।
ପର୍ଶୁରାମ ପୃଥିବୀରେ ରାଜାଙ୍କୁ ସଂହରି
ପ୍ରବେଶ ହୋଇଲେ ସେହି ଅଯୋଧ୍ୟାନଗରୀ
ପର୍ଶୁରାମ ଦିଗବିଜେ ଶୁଣି ଅଜଶିଷ୍ୟ
ରାଣୀଙ୍କ ମେଳେ ଲୁଚିଲେ ଧରି ସ୍ତିରୀବେଶ ।
କବରୀଭାରକୁ ବାନ୍ଧି ପିନ୍ଧି ଅଳଙ୍କାର
ଗୋପ୍ୟହେଲେ ଦଶରଥ ସ୍ତିରୀଙ୍କ ସଙ୍ଗର ।
ଶ୍ରୀକରେ ପରଶୁ ରାମ ଧରି ପର୍ଶୁ ଅସି
ବଳାତ୍କାରେ ଅନ୍ତଃପୁରେ ନ ପାରିଲେ ପଶି ।
ସାତଶ ପଞ୍ଚାଶ ରାଣୀ ତାହାଙ୍କର ଥିଲେ
ପରଶୁରାମଙ୍କୁ ସ୍ୱାମୀ ଦାନ ସେ ମାଗିଲେ ।
ଦଶରଥ ରାଜା ତହିଁ ସ୍ତିରୀବେଶ ହୋଇ
କଉଶଲ୍ୟା ରାଣୀଙ୍କୁ ସେ ଅଛନ୍ତି କୁଣ୍ଢାଇ ।
ପରଶୁରାମ ହସିଲେ ଦଶରଥ ଦେଖି
ସ୍ତିରୀ ହୋଇଛି ପୁରୁଷ ବେଶକୁ ଉପେକ୍ଷି ।

ପୂର୍ବରୁ ଯେ କଥା ଅଛି ଏହି ପରକାର
ଦଶରଥ ସ୍ତିରୀଯୋଗୁ ପାଇଲା ନିସ୍ତାର ।
ତୁହି ଏବେ ସ୍ତିରୀକି ଯେ କଲୁ ସୁମରଣ
ତୋତେ ଭକ୍ଷିବାର ମୋର ଭଲ ନୁହେଁ ଜାଣ ।
ଏହି ପରକାରେ ସର୍ପ ନଳଙ୍କୁ କହିଲା
ଉଦ୍‌ଗାରି ପକାଇ ତାଙ୍କୁ ତହିଁ ଚଳିଗଲା ।
ଏ ସମୟେ ପୂର୍ବଦିଗୁଁ ବନ ପୋଡ଼େ ଅଗ୍ନି
ସେହିଆଡୁ ଶୁଭୁଅଛି ଆର୍ତ୍ତସ୍ୱର ଧ୍ୱନି ।
ପୁଣ୍ୟଶ୍ଲୋକ ନଳରାଜା ରକ୍ଷାକର ମୋରେ
ନ ରଖିଲେ ମରିବି ମୁଁ ଅନଳ ମଧ୍ୟରେ ।
ତା କରୁଣ ସ୍ୱର ଶୁଣି ନଳ ନରରାଣ
କହିଲେ କିଏ ସେ ମୋତେ ଡାକେ ପୁଣ ପୁଣ ।
ଶୁଣି ପ୍ରଣିପାତ କଲେ କରି ନିବେଦନ
ମୁଁ ଅନନ୍ତ ବାସୁକୀର ଭାଇ ହେ ରାଜନ ।
ଚଳିତ ନ ପାରୁ ତୁହି କେବଣ କାରଣ
ତାହା ମୋ ଆଗେ ସଞ୍ଚପି କହରେ ବହନ ।
ସର୍ପ କହେ ଶୁଣ ଦେବ ମୋର ପୂର୍ବକୃତ
ଯେଣୁ ମୁହିଁ ଚଳି ନ ପାରଇ ଅଶକତ ।
ଶୂଦ୍ରକ ନାମରେ ତହିଁ ଏକ ସତ୍ୟଯୁଗେ
ନାରଦ ମହର୍ଷି ଯାଇଥିଲେ ଗଙ୍ଗା ଲାଗେ ।
ମୁହିଁ ଗିଳି ଦେଲି ତାହାଙ୍କର ମନଦଣ୍ଡ
କୋପେ ଶାପଦେଲେ ମୋତେ ହୋଇପରଚଣ୍ଡ
ତୋହର ମୁଖରେ ପଡ଼ି ବର୍ତ୍ତିବେ କି ଜନ
ନିର୍ବଳ ହୋଇଣ ତୁହି ପଡ଼ିଥାଅ ବନ ।
ଭକ୍ତିରେ ମନାଇ ମାଗିଲି ମୁଁ ଅନୁଗ୍ରହ
ମୁକତି କାରଣ ମୋତେ କହିବା ସନ୍ଦେହ ।
ନାରଦ ବୋଇଲେ ସର୍ପ ତୁହି ସତ୍ୟଯୁଗେ
ନଳେ ଭେଟିବୁ ପରଶବନର ଯେ ଭାଗେ ।
ବନପୋଡ଼ି ବେଳେ ତୁହି ଭେଟିବୁ ନଳଙ୍କୁ
ଉଦ୍ଧାର ପାଇଁ ପ୍ରାର୍ଥନା କରିବୁ ତାହାଙ୍କୁ ।
ସେ ତୋତେ ଛୁଇଁଲେ ଶାପୁ ହୋଇଯିବୁ ମୁକ୍ତ
ସେହିଯାଏ ଏହିଠାରେ ଥାଅ ତୁ ନିୟତ ।
ନାରଦ ଶାପରେ ଅଙ୍ଗ ଅଚଳ ଅଟଇ
ବନ ପୋଡ଼େ ଏଥୁ ମୋତେ ରଖ ନରସାଇଁ ।
ତବ ରୂପ ଦେଖି ମୋର ଦଶା ହେଲା ଶେଷ
ଶାପ ମୁକ୍ତ ହେବି ତୁମ୍ଭେ ମୋତେ କଲେ ସ୍ପର୍ଶ
ବିଳମ୍ବ ନ କରି ମୋତେ କରନ୍ତୁ ଉଦ୍ଧାର
ନ ରଖିଲେ ଅଗ୍ନି ମୋର ପୋଡ଼ିବ ଶରୀର ।
ଗିରିତୁଲ୍ୟ ଦେଖି ମୋତେ ଆଶଙ୍କା ନ କର
ଆପଣ ଘେନିଲେ ଦେହ କ୍ଷୁଦ୍ର ହେବ ମୋର ।
ଶୁଣି ନଳ ତାକୁ ଯହୁଁ ହସ୍ତରେ ଧଇଲେ
ଆଜିଠାରୁ ତୁମ୍ଭ ସଖା ହେଲି ସର୍ପ ବୋଲେ ।
କରିବି ତୁମ୍ଭର ମୁହିଁ ଏକ ଉପକାର
ଏହିଠାରୁ କୋଳକରି ନିଅ କିଛି ଦୂର ।
ପାଦ ଗଣି ଗଣି ମୋତେ ଏହିଠାରୁ ନିଅ
ଦଶ ପାହୁଣ୍ଡ ଚଳିଲେ ଗଣି ନଳରାୟ ।
ଦଶଡାକ ଶୁଣି ସର୍ପ ଦଂଶନ୍ତି ନଳକୁ
ଛାଡ଼ିଣ ଅନ୍ତର ରାଜା ହୋଇଲେ ତାହାକୁ ।
ଯେତେବେଳେ ନଳରାଜା ଛାଡ଼ିଦେଲେ ସର୍ପ
ସେ ନଳରାଜାର ରୂପ ହୋଇଲା କୁରୂପ ।
କୁବୁଜ ରୂପ ହୋଇଲା କେଶ ଯେ ପିଙ୍ଗଳ
ତକ୍ଷଣେ ବିରୂପ ହୋଇଗଲା ଦେହେ ନଳ ।
ଏସନ ରୂପ ଦେଖି ସେ ପଚାରେ ସର୍ପକୁ
କି ଦୋଷେ ଦଂଶନ କଲୁ କହ ସର୍ପ ମୁକୁ ।
ବୋଇଲେରେ ସର୍ପଜାତି ସ୍ୱଭାବ ତୁମ୍ଭର
ଉପକାରୀ ଜନେ ଦଂଶୁ ଦୋଷ ନାହିଁ ତୋର ।
ଦୟା ବହି ତୋହର ମୁଁ କଲି ଉପକାର
ତା ବଦଳେ ମିତ୍ର ଦେଲୁ ଏହି ପୁରସ୍କାର ।
ସର୍ପ କହେ ଉପକାର କରିଛି ନୃପତି
ଦେଖନ୍ତୁ ହୋଇଲା ତବ କୁତ୍ସିତ ମୂରତି ।
ଦୁଃଖର ସମୟେ ତବ ନୃପତି ଲକ୍ଷଣ
ଜଣା ନୋହିବ ବୋଲିଣ କରିଛି ବିବର୍ଣ୍ଣ ।
କେହି ଜାଣି ନ ପାରିବେ ଯହିଁ ପ୍ରବେଶିବ
ମୋତେ ସୁମରିଲେ ନିଜ ରୂପକୁ ପାଇବ ।
ଋତୁପର୍ଣ୍ଣ ରାଜାଘରେ ସାରଥି ହୋଇବ
ଅଳ୍ପଦିନେ ଭାର୍ଯ୍ୟା ପୁତ୍ର ଦୁହିତା ପାଇବ ।
ପୁନରପି ରାଜ୍ୟେ ଯାଇ ହେବ ନରପତି
ଏହା କହି ବସ୍ତ୍ର ଏକ ଦେଲାକ ଝଟତି ।
ନ କରନ୍ତୁ ମନେ ଦୁଃଖ ହେ ନର ଈଶ୍ୱର
ମୋ ଦଂଶନ ଆପଣଙ୍କ ହେବ ଉପକାର ।
ଏହା କହି ସର୍ପ ତହୁଁ ହେଲା ଅନ୍ତର୍ଦ୍ଧାନ
ନଳରାଜା ସେହିଠାରୁ କରିଲେ ଗମନ ।
ଭ୍ରମୁଥାଇ ନଳ ଦମୟନ୍ତୀ ପ୍ରତିଆଶେ
ଦେଖିଲା ସେ ଅଷ୍ଟବକ୍ର ଋଷି ବନବାସେ ।
କଳିର ଚେଷ୍ଟାରେ ଚଳନ୍ତି ସେ ବନଭାଗେ
ପାଇଲେ ଦେଖିଣ ମହାଋଷି ବଇରାଗେ ।
କରପତ୍ର ଯୋଡ଼ି ଉଭା ହୋଇଛନ୍ତି ନଳ
ଅଷ୍ଟବକ୍ର ବୋଇଲେ ତୁ କାହିଁର ବାତୁଳ ।
ଆମ୍ଭେ ଯେ ଅଟୁରେ ହାଦେ ଅଷ୍ଟବକ୍ର ମୁନି
ତେଣୁକରି ଖତାଇ ଆମ୍ଭଙ୍କୁ ହେଉ ପୁଣି ।

ନଳ ବୋଲଇ ତୁମ୍ଭଙ୍କୁ ଖତାଇ ନୁହେ ତ
ମୋର ରୂପ ମୁନି ଆହେ ଦଇବେ ଏମନ୍ତ ।
ମନ୍ଦର ସନ୍ନିଧେ ନଇଷଧ ନାମେ ଦେଶ
ଇକ୍ଷ୍ୱାକୁ ନୃପତି ଅମଳିନ ସୂର୍ଯ୍ୟବଂଶ ।
ସେହି ବଂଶେ ଥିଲେ ଅଭ୍ୟନ୍ତର ନରପତି
ମୋ ନାମ ନଳ ମୁଁ ଅଟେ ତାହାଙ୍କ ସନ୍ତତି ।
ଆଶୀର୍ବାଦ କରି ମୁନି ପୁଚ୍ଛନ୍ତେ ତାହାଙ୍କୁ
ସବୁ କଥା ଫେଡ଼ି ରାଜା କହିଲେ ମୁନିଙ୍କୁ ।
ପଶାଖେଳେ ରାଜ୍ୟ ଧନ ସକଳ ହରାଇ
ବନେ ବନେ ବୁଲୁଥିଲି ଭାରିଯାକୁ ନେଇ ।
ଏକଦିନେ ଶୋଇଥିଲା ଏ ବନ ମଧରେ
ତାକୁ ତେଜି ବୁଲି ବୁଲି ଭାଳୁଛି ମନରେ ।
କି କରିବି କାହିଁ ଯିବି ତା ଦେଖା ପାଇବି
ନ ପାଇଲେ ତାହା ଲାଗି ଜୀବନ ତେଜିବି ।
ରାଜା ମନ ଭାବ ଜାଣି ବୋଇଲେକ ଯତି
ନ କର ସନ୍ତାପ ରାଜା ଧୈର୍ଯ୍ୟଧର ମତି ।
ଅଳ୍ପଦିନେ ହେବ ତୁମ୍ଭ ଦୁଃଖ ବିମୋଚନ
ଅବଶ୍ୟ ପାଇବ ଭାର୍ଯ୍ୟା ପୁତ୍ର ରାଜ୍ୟ ଧନ ।
ନଳ ବୋଇଲେ ମୋ ଅଙ୍ଗେ ଭୁଜଙ୍ଗ ଦଂଶିଲା
ମୋହର ରୂପକୁ ସେହି ବିରୂପ କରିଲା ।
ମୁହିଁ ତୁମ୍ଭଙ୍କୁ କଥାଏ ପୁଚ୍ଛିବି ମୁନି ହେ
ଏମନ୍ତ ପ୍ରପଞ୍ଚ କିପାଁ ହେଲା ତୁମ୍ଭ କାୟେ ।
ଅଷ୍ଟବକ୍ର ବୋଲେ ତୁମ୍ଭେ ଶୁଣ ଆଦି କଥା
ଅନୁସାର ବୋଲି ସତ୍ୟଯୁଗର ବାରତା ।
ସେ ଯୁଗରେ ବିଷ୍ଣୁ ଅବତାର ନୀଳାମ୍ବର
ଶୁଦ୍ଧ ସ୍ଫଟିକ ପରାୟେ ଶରୀର ତାଙ୍କର ।
କରକଞ୍ଜ ନାମେ ଏକ ଇନ୍ଦ୍ର ଯେ ଦେବତା
ଐରାବତ ନାମରେ ଯେ ଏକ ପୁଷ୍ପଦନ୍ତା ।
ତଡଙ୍ଗ ଦେଶର ରାଜା ନାମ ଇନ୍ଦ୍ର ସିଂହ
ବଡ଼ ପ୍ରତାପୀ ଅଟଇ ସେହି ମହାଭାଗ ।
ବ୍ୟଙ୍ଗସି ନାମରେ ଦୈତ୍ୟରାଜ ଉପସ୍ଥିତ
ଶୂରବନ୍ତ ପଣେ ସେହି ବଡ଼ାଇ ଶକତ ।
ଦୁହିତାକୁ ଘେନିଣ ସେ ଦାସ ଯେ ରାଜନ
ଇନ୍ଦ୍ର ସିଂହ ନୃପତିଙ୍କୁ କରିଲା ପ୍ରଦାନ ।
ଧନୁ ପୂର୍ଣ୍ଣମୀରେ ସେହୁ ସମସ୍ତ ଯୁବତୀ
ହୋଇଲେ ସମସ୍ତେ ଏକଦିନେ ଗର୍ଭବତୀ ।
ସୁମନ୍ତକ ନରଇନ୍ଦ୍ର ହେଲା ସିଂହମାସେ
ବର୍ତ୍ତାନ୍ତି କନ୍ୟାକୁ ରାଜା ମନର ହରଷେ ।
କଉତୁକେ ନୃପତିକି କନ୍ୟା ବର ମାଗି
ବୋଇଲେ ଆମ୍ଭଙ୍କୁ ଦେବୁ ରଷି ମାଂସଭୋଜି
କାର୍ତ୍ତିକ ବୋଲିଣ ଏକଗୋଟି ମହାରଷି
ତାଙ୍କର ମାଉଁସ ଆହୋ ଆମ୍ଭଙ୍କୁ ଦିଅସି ।
ତାହାଙ୍କର ବଚନରେ ଚଳିଲା ଦର୍ପିଷ୍ଠ
କାର୍ତ୍ତିକ ରଷି ଭେଟିଲେ ବୈତରଣୀ ତଟ ।
ଆହ୍ନିକ ସାରି ପୁଣି କରମ ବିଧାନେ
ଏସନକ ସମୟରେ ଦେଖି ଯାତୁଧାନେ ।
କାର୍ତ୍ତିକ ମହର୍ଷିଙ୍କୁ ସେ ଘେନିଣ ଅଇଲା
କନ୍ୟାଙ୍କର ଆଗେ ଅଷ୍ଟଖଣ୍ଡ କରିଦେଲା ।
ଆଠ ଭାଗ କରି ତାକୁ ଅଗ୍ନି ମଧେ ଭରି
ପୋଡ଼ଇ ଅସୁର ଅଗ୍ନି ପ୍ରଜ୍ୱଳିତ କରି ।
ରାନ୍ଧନ୍ତେ ହେଲା ଅଢ଼ାଇ ପ୍ରହର ଯେ ରାତି
ମହୀ ଭ୍ରମି ଆସୁଛନ୍ତି ଅଷ୍ଟ ଯେ ଯୁବତୀ ।
ଅମ୍ବିକା ଅମ୍ବାଳିକା ଅମ୍ବେକ ଅମ୍ବୁବତୀ
ଅମ୍ବା ଆର୍ଦ୍ରା ଆର୍ଦ୍ରାବଳୀ ଅମ୍ବର ଯୁବତୀ ।
ଆକାଶେ କ୍ଷେପନ୍ତି ସେହି ଭ୍ରମନ୍ତି ସେ ନିଶା
ପୋଡ଼ନ୍ତେଣ ମାଂସମାନ ଭେଟିଲେକ ଯୋଷା
ଦେଖି ଭୟେ ପଳାଇଲେ ଇନ୍ଦ୍ର ସିଂହ ନାରୀ
ସ୍ୱାମୀ ସଙ୍ଗେ ରହି ନ ପାରିଲେ ତ୍ରାସକରି ।
ଲହ ଲହ ଜିହ୍ୱା ତାଙ୍କ ବିକଟାଳ ମୂର୍ତ୍ତି
ହସ୍ତ ଭରିଣ ଅମ୍ବିକା ଦରାଣ୍ଡି ଲୋଡ଼ନ୍ତି ।
କାଢ଼ିଲା ଅମ୍ବିକା ସେହୁ ମାଂସ ଆଠଖଣ୍ଡି
ଅଢ଼ାଇ ପ୍ରହର ଯାଏ ଥିଲା ସେହି ପୋଡ଼ି ।
ଶଙ୍ଖବର୍ଣ୍ଣ ପ୍ରାୟେ ପୋଡ଼ା ମାଉଁସ ଦିଶଇ
ଦେଖି ବିଚାରନ୍ତି କେଉଁ ରଷିମାଂସ ଏହି ।
ଖୋଜି ରାକ୍ଷସୁଣୀ ବିଚାରନ୍ତି ପୁଣି ମନେ
ଏକତ୍ର କରି ପିଣ୍ଡକୁ କରିବା ଦହନେ ।
ମହା ଭୟଙ୍କର ଯେ ବିକଟ ମହାଘୋର
ଚନ୍ଦ୍ର ଅସ୍ତ ହେଲେ ରାତ୍ରି ଅଢ଼ାଇ ପ୍ରହର ।
କେ ମୁଣ୍ଡ କେହ ଗଣ୍ଡି କେହୁ ପିଠିର କତିକି
ହୃଦଖଣ୍ଡ ଲଗାଇଲେ ଡାହାଣରେ ଟେକି ।
ପଞ୍ଜରା ନେଇଣ ଲଗାଇଲେ ବାମକରେ
କେ ନେଇ ଚରଣ ଲଗାଇଲା କେ ପିଠିରେ ।
ଅନ୍ୟ ଅନ୍ୟ ସ୍ଥାନେ ନେଇ ଲଗାଇଲେ ବାଳା
ଜୀବ ସଞ୍ଜୀବନୀ ମନ୍ତ୍ରେ ଜୀବନ୍ୟାସ କଲା ।
ଶୁଣ ଆହେ ନଳରାଜା କହେ ବକ୍ରଯତି
ଏକ ଶରୀର ହୋଇଲା ତେଣୁ ଅଷ୍ଟମୂର୍ତ୍ତି ।
ବୋଇଲେ ଏରୂପେ ଯାଅ ଅଯୋଧ୍ୟା ନଗର
ସାରଥି ହୁଅ ତୁ ଯାଇଁ ରତୁପର୍ଣ୍ଣଙ୍କର ।
ରାଜା ବାକ୍ୟେ ଅଷ୍ଟବକ୍ର କହିଲେ ଏମନ୍ତ
ସର୍ପ ଯାହା କହିଅଛି ଏକଥା ଯଥାର୍ଥ ।

ଅଯୋଧ୍ୟାକୁ ଗଲେ ତୁମ୍ଭ ଦଶା ପାଲଟିବ
ସେହିଠାକୁ ଚଳ ଏବେ ଆହେ ନରଧବ ।
ନଳ ତାହାଙ୍କୁ ପୁଛିଲେ କେଉଁବାଟେ ଯିବି
ଅଳ୍ପଦିନେ ଅଯୋଧ୍ୟାରେ ପ୍ରବେଶ ହୋଇବି ।
ଅଷ୍ଟବକ୍ର ବୋଇଲେକ ନଳ ନୃପତିଙ୍କୁ
ଏକ ମୁଖେ ଯାଅ ତୁମ୍ଭେ ଉତ୍ତର ଦିଗକୁ ।
ଶୁଣିଣ ନଳ ତାହାଙ୍କୁ ପ୍ରଣାମ କରିଣ
ଧୀରେ ଧୀରେ ସେହିଠାରୁ କରିଲେ ଗମନ ।
ଦମୟନ୍ତୀ ଗୁଣ ଗୁଣି ସର୍ବଦା କାନ୍ଦନ୍ତି
ହା ପ୍ରିୟେ ତୋତେ ଛାଡ଼ିଲି ମୁଁ ଅଜ୍ଞାନ ମତି
ନବ ଦିବସେ ବସନ୍ତ ଚକ୍ରବର୍ତ୍ତୀ ଦେଶେ
ପ୍ରବେଶି ତହିଁ ଭ୍ରମିଲେ ପତ୍ନୀର ଉଦ୍ଦେଶ୍ୟେ ।
ସ୍ତିରୀକୁଳେ ଧନ୍ୟ ତୁହି ଆଗେ ଦମୟନ୍ତୀ
ମୁଁ ତୋତେ ଛାଡ଼ି ଅଇଲି ଧିକ ତୋର ମତି ।
ସୂର୍ଯ୍ୟବଂଶେ ଜନ୍ମି ରଖେ ଅପଖ୍ୟାତି ମୁହିଁ
ନିର୍ଲ୍ଲଜ ଆତ୍ମା ମୋହର କିପାଁ ଛାଡୁ ନାହିଁ ।
ପୁଣି ବିଚାରନ୍ତି ଝାସ ଦେବଇଁ ପ୍ରୟାଗେ
ଧିକ ଧିକ ପ୍ରାଣ କହି ଯାନ୍ତି ବନମାର୍ଗେ ।
ଯାଉଁ ଯାଉଁ ବନେ ଏକ ବ୍ୟାଘ୍ରକୁ ଭେଟିଲେ
ତା ବିକ୍ରମ ମୂର୍ତ୍ତି ଦେଖି ତା ପାଶକୁ ଗଲେ ।
ତାହାକୁ ଦେଖି ବୋଇଲେ ଖାଅ ମୋତେ ତୁହି
ରାଜା କଥା ଶୁଣି ସେହି ଗଲା ଆଡ଼ ହୋଇ ।
ଚଳନ୍ତି ରାଜା ଧବଳମୁଖୀ ନଦୀ ତଟେ
ଅଯୋଧ୍ୟା ନଗ୍ର ବସଇ ତାହାର ନିକଟେ ।
ରତୁପର୍ଣ୍ଣ ନେପାଳକୁ ଯୁଦ୍ଧକରି ଗଲା
ପଦ୍ମେକ ରଥୀ ଦ୍ୱିପଦ୍ମ ହସ୍ତୀ ନେଇଥିଲା ।
ଯୁଦ୍ଧ କରନ୍ତେ ଏତେକ ମଲେ ତହିଁ ଥାଟ
ରତୁପର୍ଣ୍ଣ ପଳାଇଣ ଆସେ ରଣବାଟ ।
ବନସ୍ତେ ପଳାଏ ରାଜା ଏକ ରଥଗୋଟି
କାଶୀ ନଦୀକୂଳେ ନଳ ତାହାଙ୍କୁ ଯେ ଭେଟି ।
ପଚାରିଲେ ନଳ ତାଙ୍କୁ ତୁମ୍ଭେ ଅଟ କିଏ
ସେ ବୋଲେ ମୁଁ ରତୁପର୍ଣ୍ଣ ଅଯୋଧ୍ୟାର ରାୟେ
ପର ରାଷ୍ଟ୍ରରେ ମୋହର ହେଲା ଦଣ୍ଡଭଗ୍ନ
ତେଣୁ ଭୟେ ରାଜ୍ୟକୁ ମୁଁ କରେ ପଳାୟନ ।
ନଳ ବୋଲେ ଭୟତେଜ ହେବି ତୋ ସାରଥି
ଏକ ନିମିଷେ ଜିଣିବୁ ତୁହି ସେ ବିଭୂତି ।
ବାହୁକ ନାମ ମୋହର ଶୁଣ ନରପତି
ଅଶ୍ୱିନୀ କୁମାରଙ୍କ ମୁଁ ଅଟେ ପଣନାତି ।
ହେ ରାଜା ଉତ୍ତମରୂପେ ଜାଣେ ରଥ ବାହି
ମୋହର ଥିଲେ ତୋହର ପରାଜୟ ନାହିଁ ।

ଏହା ଶୁଣି ରତୁପର୍ଣ୍ଣ ନଳେ କଲେ ପୂଜା
ବାହା ମୋର ରହୁବର ବୋଲନ୍ତେ ସେ ରାଜା
ସେହିଠାରେ ନଳ ତାର ହୋଇଲା ସାରଥି
ରାଜାଙ୍କ ରଥ ବାହିଲେ ପବନୁ ଝଟତି ।
ପଥେକେତେ ବିଦ୍ୟା ଶିକ୍ଷା ତାକୁ ଦେଲେ ନଳ
ତତକ୍ଷଣେ ସାଧକରି ବୋଲେ ମହୀପାଳ ।
ସାଧୁ ସାଧୁ ସୂତ ତୁମ୍ଭେ ଅଟ ମହାଯୋଧୀ
ମୋତେ ଶିଖାଇଣ ଦେଲ ଅସ୍ତ୍ର ମନଭେଦୀ ।
ତୁମ୍ଭ ଯୋଗେ ପାଇବି ମୁଁ ଧ୍ୱଂସି ଶତ୍ରୁବଳ
ବିଳମ୍ବ ନ କରି ରଥ ଚଳାଅ ଚଞ୍ଚଳ ।
ଶୁଣି ନଳ ଚଳାଇଲେ ଶୂନ୍ୟେ ରଥଗୋଟି
ପଥେ ନେପାଳ ରାଜାଙ୍କୁ ରତୁପର୍ଣ୍ଣ ଭେଟି ।
ରଣ ଜୟ କରିଯାଏ ନେପାଳ ରାଜନ
ଆଗେ ଉଗାଳିଲେ ପୁଣି ତାକୁ ରତୁପର୍ଣ୍ଣ ।
ରୁଦ୍ରପାଦ ନାମ ଅଟେ ନେପାଳ ରାଜନ
ଯାଉଥିଲା ଘେନି ନବସାଗର ସଇନ୍ୟ ।
ରତୁପର୍ଣ୍ଣ ମନଭେଦୀ ଶରକୁ ପେଷିଲେ
ସେ ପ୍ରହାରେ ନବସୈନ୍ୟ ଭୂତଳେ ଲୋଟିଲେ
ସୈନ୍ୟପତ୍ତୁ ପଳାଇଲେ ତହୁଁ ରୁଦ୍ରପାଦ
ଖଡ୍‌ଗେ ରତୁପର୍ଣ୍ଣ କଲା ତାର ଶିରଚ୍ଛେଦ ।
ରୁଦ୍ରପାଦ ଶିର କାଟି ଚକ୍ଷୁର ପଲକେ
ପ୍ରବେଶ ହୋଇଲେ ଯାଇ ନେପାଳ କଟକେ ।
ବହୁ ଧନ ରତ୍ନମାନ ପୂରାଇଣ ରଥ
ଅଯୋଧ୍ୟାରେ ପରବେଶ ହେଲେ ନରନାଥ ।
ରାଜ୍ୟେ ରାଜ୍ୟେ କଲେ ବହୁ ଉତ୍ସବ ନରେଶ
ବାହୁକକୁ ଦେଲେ ରାଜା ବହୁ ପଉରୁଷ ।
ବହୁ ସମାଦର କରି ନଳକୁ ରଖିଲେ
ସ୍ନାହାନ ଭୋଜନମାନ ତାଙ୍କୁ କରାଇଲେ ।
ପୁଚ୍ଛାକଲେ ତଦପରେ ଅଯୋଧ୍ୟାର ରାୟେ
ଦିଅ ପରିଚୟ ମୋତେ ତୁମ୍ଭେ ଅଟ କିଏ ।
ନଳ କହିଲେ ନୈଷଧ ରାଜାଙ୍କ ସାରଥି
ବାହୁକ ମୋହର ନାମ ଶୁଣ ନରପତି ।
ଆଉ ଏକ ମହାବିଦ୍ୟା ଜାଣିଛି ରାଜନ
ବିନା ଅଗ୍ନି ଜଳେ କରିପାରିବି ରନ୍ଧନ ।
ଏମନ୍ତ ଶୁଣି ଆଶ୍ୱାସି କହିଲେ ନରେଶ
ଯାହା ଚାହିଁବ ତା ଦେବି ରହ ମୋର ପାଶ ।
ମୋ ଅଶ୍ୱପାଳଙ୍କ ପରେ ତୁମ୍ଭେ ହେବ ଶ୍ରେଷ୍ଠ
ସବୁଦିନେ ରହିଥିବ ମୋହର ନିକଟ ।
ଏହା ଶୁଣି ନଳରାଜା ରହିଲେ ସେଠାରେ
ଦିବସ ରଜନୀ ନିଦ୍ରା ନ ଆସେ ନେତ୍ରରେ ।

ଅନ୍ନ ଜଳ ନ ରୁଚଇ ପତ୍ନୀଙ୍କୁ ସୁମରି
କାହିଁଗଲ ପ୍ରାଣପ୍ରିୟେ ରହିଛ କିପରି ।
କିସ କରୁଥିବ ସେହି ମୋହର ବିହୀନେ
ଅନାହାରେ କଷ୍ଟେ ରହିଥିବ କି ଜୀବନେ ।
କେତେ କାନ୍ଦୁଥିବ ପ୍ରିୟା ମୋତେ ନ ଦେଖିଣ
କେଡ଼େ କୁକର୍ମ କଲି ମୁଁ ନିଷ୍ଠୁର ମୋ ପ୍ରାଣ ।
ଭୟଙ୍କର ସିଂହ ବ୍ୟାଘ୍ର ନିର୍ଜନ ବନସ୍ତେ
ଏକାକିନୀ ବଞ୍ଚୁଥିବ ବନେ ସେ କେମନ୍ତେ ।
ପତିଭକ୍ତା ଅନୁରକ୍ତା ମୋଠାରେ ସତତ
ତୁମ୍ଭଙ୍କୁ ଛାଡ଼ି ରହିଛି ହୋଇ ମୃତବତ ।
ବୈବସ୍ୱତ ପୁଚ୍ଛାକଲେ ଶୁଣିମା ଅଗସ୍ତି
ଚେଦିରାଜା ନଗ୍ରେ ରହିଛନ୍ତି ଦମୟନ୍ତୀ ।
ନଳ ଯାଇଣ ରହିଲେ ଅଯୋଧ୍ୟା ନଗରୀ
ଏହାପରେ କିସ ହେଲା କହନ୍ତୁ ବିସ୍ତାରି ।
ଅଗସ୍ତି ବୋଇଲେ ଶୁଣ ହେ ମନୁ ରାଜନ
ଅଯୋଧ୍ୟାକୁ କଉଶିକ ନଅଶ ଯୋଜନ ।
କଉଶିକ ନଗ୍ରଠାରୁ ଉଜାଣିକା ଦେଶ
ପାଞ୍ଚସସ୍ର କୋଶ ଅଟେ ଜାଣ ହେ ନରେଶ ।
ସେଠାରୁ କାର୍ତ୍ତିକ ଦେଶ ତିନିସସ୍ର ଯୁଣ
ତହିଁକି କନାଉଜ ଯେ ପାଞ୍ଚଶ ଯୋଜନ ।
କନାଉଜ ନରପତି ଯୋଜନର ଅନ୍ତେ
ଅଯୋଧ୍ୟା ନଗରେ ନଳ ଅଛନ୍ତି ନିର୍ଶ୍ଚିନ୍ତେ ।
ମନୁ ବୋଇଲେକ ଏହୁ ବହୁ ଦୂର ବାଟ
ନଳ ଦମୟନ୍ତୀ ଦୁହେଁ କେମ୍ନେ ହେଲେ ଭେଟ
ଏହା ବିସ୍ତାରିଣ ମୋତେ କହ ତପୋବନ୍ତ
ତୁମ୍ଭ ମୁଖରୁ ଶୁଣିଲେ ହେବି ତୋଷଚିତ୍ତ ।
ବଦୟନ୍ତି ଶୁଦ୍ରମୁନି ଶ୍ରୀ ଶାରଳା ଦାସ
ନଳର ଚରିତ ବନପର୍ବେ ସୁଧାରସ ।

■ ■ ■

## ଦମୟନ୍ତୀଙ୍କର ଦ୍ୱିତୀୟ ସ୍ୱୟମ୍ବର

ଅଗସ୍ତି ବୋଇଲେ ଶୁଣ ମନୁ ଦଣ୍ଡଧର
ସେହି କଥା କହୁଅଛି କରିଣ ବିସ୍ତାର ।
ଏଥୁଅନ୍ତେ ଭୀମସେନ ଦମୟନ୍ତୀ ପିତା
ଭାର୍ଯ୍ୟାସହ ନଳ ବନେ ଯିବାର ବାରତା ।
ଦୂତମାନଙ୍କ ମୁଖରୁ ଶୁଣି ନରବର
ରାଣୀସହ ଶୋକ କଲେ ହୋଇଣ କାତର ।
ପୁନରପି ଧୈର୍ଯ୍ୟଧରି ଭୀମ ନରପତି
ସହସ୍ର ସହସ୍ର ଦ୍ୱିଜ ବସାଇଣ କତି ।
ବୋଇଲେ ତାହାଙ୍କୁ ତୁମ୍ଭେ ଯାଇ ଏହିକ୍ଷଣେ
ନଳ ଦମୟନ୍ତୀ ଯାଇ କର ଅନ୍ୱେଷଣ ।
ପାଇଣ ତାହାଙ୍କ ବାର୍ତ୍ତା ଯେ ଆସି କହିବ
ରତନ ଭୂଷଣ ଦେବି ସହସ୍ରେକ ଗାବ ।
ଏମନ୍ତ କହିଲେ ଯହୁଁ ଭୀମ ନରସାଇଁ
ସୁଦେବ ଦେବ ଯେ ବସୁ ବିଷ୍ଣୁ ଚାରିଭାଇ ।
ଏମାନେ କହିଲେ ରାଜା ଦିଅନ୍ତୁ ଆଦେଶ
ଆମ୍ଭେମାନେ ଖୋଜିଯିବୁ ବୁଲି ଦେଶଦେଶ ।
ସେମାନଙ୍କ କଥା ଶୁଣି ରାଜା ଆଜ୍ଞାଦେଲେ
ଦେଶେ ଦେଶେ ବୁଲି ତୁମ୍ଭେ ଖୋଜହେ ସକଳେ
ଏହା କହି ଧନ ରତ୍ନ ଆବର ବସନ
ବ୍ରାହ୍ମଣମାନଙ୍କୁ ଦେଇ ପେଷିଲେ ରାଜନ ।
ରାଜାଙ୍କଠାରୁ ବ୍ରାହ୍ମଣେ ଧନରତ୍ନ ପାଇ
ଖୋଜି ଖୋଜି ଚଳିଲେ ସେ ନଗ୍ରେ ନଗ୍ରେ ଯାଇ
ବନ କନ୍ଦର ପର୍ବତ ଖୋଜନ୍ତି ବୁଲିଣ
କେଉଁ ସ୍ଥାନେ ନ ଛାଡ଼ନ୍ତି ତିଳେକ ପ୍ରମାଣ ।
ସୁଦେବ ନାମରେ ଦ୍ୱିଜ ଭ୍ରମି ନାନା ଦେଶ
ସୁବାହୁ ରାଜାର ପୁରେ ହୋଇଲା ପ୍ରବେଶ ।
ଖୋଜଇ ସେଠାରେ ବୀର ବୁଲି ଚଉକତି
ପୁଚ୍ଛେ ଦମୟନ୍ତୀ ଏହି ରାଜ୍ୟେ କି ଅଛନ୍ତି ।
ପୁଚ୍ଛନ୍ତେ ଏମନ୍ତ କଥା ତହିଁ ଗୋଳ ହେଲା
ସୁବାହୁ ରାଜାର ଦାସୀ ଦାଣ୍ଡେ ଶୁଣିଗଲା ।
ପୁର ମଧ୍ୟେ ଯାଇ ବୋଲେ ଗୋଟିଏ ବ୍ରାହ୍ମଣ
ପୁଚ୍ଛେ ଦମୟନ୍ତୀ ଏଥି ଅଛି କେହି ଜାଣ ।
ଦାସୀ ମୁଖୁଁ ଦମୟନ୍ତୀ ଶୁଣି ଏ ବାଣୀକି
କେ ଖୋଜେ ବୋଲି ଅଇଲେ ଦେଖିବା ପାଇଁକି
ନଗ୍ରଲୋକଠାରୁ ଦ୍ୱିଜ ଶୁଣନ୍ତି ଏପରି
ସୈରିନ୍ଧ୍ରୀ ନାମେ ନାରୀଏ ଅଛି ରାଜପୁରୀ ।
ସେ କଥା ଶୁଣିଣ ଦ୍ୱିଜ ରାଜାଙ୍କ ନବର
ଦୁଆରେ ପ୍ରବେଶ ହେଲେ ଯାଇଣ ସତ୍ୱର ।
ତେଣୁ ସୁନନ୍ଦା ସହିତେ ବୈଦର୍ଭୀ ଆସନ୍ତେ
ସୁଦେବ ଦ୍ୱିଜ ଦେଖିଲେ ଚାହିଁ ତାଙ୍କୁ ନେତ୍ରେ ।
ଚନ୍ଦ୍ରାନନୀ ବିଶାଳାକ୍ଷୀ ଦୀର୍ଘ ମୁକ୍ତକେଶା
ଚାରୁ ପୀନ ପୟୋଧର ସୁନାସା ସୁକେଶା ।
ପଦ୍ମବନ କରୀବର ମନ୍ଥିଲେ ଯେସନେ
ଶୋଭାହୀନ ଦମୟନ୍ତୀ ଦିଶନ୍ତି ତେସନେ ।
କ୍ଷିତିମଧ୍ୟେ ନାହିଁ କେହି ଏରୂପେ ସୁଷମା
ଏହି ସେ ସୈରନ୍ଧ୍ରୀ ହେବେ ବିଦର୍ଭୀ ଚନ୍ଦ୍ରମା ।
ସ୍ୱାମୀ ବିଚ୍ଛେଦରେ କୃଶା ବିବର୍ଣ୍ଣ ବଦନୀ
ଏହା ଦେଖି ତାଙ୍କ ପାଶେ ମିଳେ ଦ୍ୱିଜମଣି ।
ଭଲରୂପେ ଚିହ୍ନି ଭୈମୀ ସୁଦେବ ପଣ୍ଡାକୁ
ଲଜ୍ଜା ପରିତ୍ୟାଗ କରି ଡାକିଲେ ପାଶକୁ ।

କୁଳବିପ୍ର ଜାଣି ତାଙ୍କ ପାଦେ ପ୍ରଣମିଲେ
ଅତି ଉଚ୍ଚରେ କାନ୍ଦିଣ ଧରାରେ ଲୋଟିଲେ ।
ସୈରିନ୍ଧ୍ରୀର ଦଶା ଦେଖି ସୁନନ୍ଦା ନୟନେ
କୁଣ୍ଢାଇ ଶାନ୍ତ କରିଲେ ମଧୁର ବଚନେ ।
ଶୋକେ ଅସମ୍ଭାଳ ହୋଇ ପୁଚ୍ଛେ ଦମୟନ୍ତୀ
ବିଦର୍ଭ ଦେଶ ଲୋକେ ତ କୁଶଳେ ଅଛନ୍ତି ।
ସୁଖେ ରହିଅଛନ୍ତି ତ ମୋ ପୁତ୍ର ଦୁହିତା
କୁଶଳରେ ଅଛନ୍ତି ତ ମୋର ପିତାମାତା ।
କୁଶଳେ ଆସିଛନ୍ତି ତ ମୋଠାକୁ ଆପଣ
ଏହା ଶୁଣିଣ ତାହାଙ୍କୁ ବୋଇଲେ ବ୍ରାହ୍ମଣ ।
ପୁତ୍ର କନ୍ୟା ଦୁଇ ତବ କୁଶଳେ ଅଛନ୍ତି
ତୁମ୍ଭ ଶୋକେ ପିତା ମାତା ପ୍ରାଣେ ମାତ୍ର ଛନ୍ତି ।
ତୁମ୍ଭ ଅନ୍ୱେଷଣେ ପିତା ବହୁ ଦ୍ୱିଜବର
ଚାରିଦିଗେ ପେଷିଛନ୍ତି ପାଇଲେ ଖବର ।
ତେବେ ଜାଣ ଆଗୋ ମାତା ଜୀବନ ରଖିବେ
ନ ପାଇଲେ ପିତା ମାତା ନିଶ୍ଚୟ ମରିବେ ।
ତୁମ୍ଭ ହେତୁ ବୁଲି ମୁହିଁ ଦେଶ ଦେଶାନ୍ତର
ଏଠାରେ ଦେଖିଲି ଧନ୍ୟ ଭାଗ୍ୟ ଯେ ମୋହର
ଗଲେ ତାଙ୍କୁ କହି ଏବେ କରାଇବି ସୁଖୀ
ଆଉ କଦାପି ମନରେ ନ ହୁଅନ୍ତୁ ଦୁଃଖୀ ।
ଏହାଶୁଣି ଦମୟନ୍ତୀ ବିକଳେ କାନ୍ଦିଲେ
ବନେ ଶୋଇଥିଲି ନାଥ କାହିଁ ଛାଡ଼ିଗଲେ ।
ତାଙ୍କୁ ଖୋଜି ଖୋଜି ହେଲା ବାତୁଳୀ ପରାୟ
ରାଜମାତା ଦେଖି ମୋତେ ହୋଇଲେ ସଦୟ
ବୋଧଦେଲେ ତୁମ୍ଭ ପତି ଆଣିବୁ ଖୋଜାଇ
ସେ ହେତୁରୁ କିଛି ଦୁଃଖ ପସୋରିଛି ମୁହିଁ ।
ସ୍ୱାମୀଙ୍କର କୁଶଳ କି ଜାଣ ବିପ୍ରବର
କିପରି ବାର୍ତ୍ତା ପାଇଲେ ମୋହର ପିଅର ।
ସୁଦେବ ବୋଲେ ନ ଜାଣେ ତୁମ୍ଭ ସ୍ୱାମୀ କଥା
ଦୂତମୁଖୁ ପିତା ଅବା ପାଇଥିବେ ବାର୍ତ୍ତା ।
ଭୋ ମାତ ବିଦର୍ଭ ଦେଶେ ଚାଲ ଏବେ ଯିବା
ତୁମ୍ଭଙ୍କୁ ତହିଁ ଛାଡ଼ିଣ ନଳଙ୍କୁ ଖୋଜିବା ।
ଏହିପରି କଥାବାର୍ତ୍ତା ରାଜମାତା ଶୁଣି
ବିପ୍ରପାଶେ ପରବେଶି ପୁଚ୍ଛିଲେ ସେକ୍ଷଣି ।
କାହାର ତନୟା ଏହି କାହାର ଘରଣୀ
କି କାରଣେ ସ୍ଥାନଭ୍ରଷ୍ଟ ହେଲା ଏ ତରୁଣୀ ।
ଯେବେ ତୁମ୍ଭେ ଜାଣ ଏହା କହ ଦ୍ୱିଜବର
ଶୁଣିଣ ସୁଦେବ ତାଙ୍କୁ ଦେଲେ ଏ ଉତ୍ତର ।
ବିଦର୍ଭ ଈଶ୍ୱର ଭୀମ ରାଜାଙ୍କର ସୁତା
ପୁଣ୍ୟଶ୍ଳୋକ ନଳଙ୍କର ଅଟନ୍ତି ବନିତା ।
ଯାଙ୍କ ସ୍ୱାମୀ ରାଜ୍ୟ ଧନ ପଶାରେ ହାରିଲେ
ଅରଣ୍ୟେ ପଶିଲେ ଏହା କେହି ନ ଜାଣିଲେ ।
ଯାଙ୍କ ହେତୁ ସସ୍ର ସସ୍ର ଦ୍ୱିଜଗଣ ଜାଣ
ଦେଶଦେଶାନ୍ତରେ ଖୋଜି କରନ୍ତି ଭ୍ରମଣ ।
ମୋର ଭାଗ୍ୟ ତୁମ୍ଭଘରେ ଦେଖା ଯେ ପାଇଲି
ଭୂରୁ ମଧ୍ୟେ ତିଳଚିହ୍ନ ଦେଖି ମୁଁ ଚିହ୍ନିଲି ।
ବିଶେଷତଃ କ୍ଷିତି ମଧ୍ୟେ ନାହିଁ ଯାଙ୍କ ସମା
କାନ୍ତାକାନ୍ତ ଏ ଦୁହିଙ୍କୁ ନାହିଁ ତ ଉପମା ।
ଏହାଶୁଣି ରାଜମାତା ଅତି ହରଷରେ
ଦମୟନ୍ତୀ କୋଳେ ଧରି ଆନନ୍ଦାଶ୍ରୁ ଝରେ ।
ଏତେ ଦିନେ ଗୁପ୍ତଭାବେ ରହି ମୋର ଘରେ
ପରିଚୟ ନ ଦେଲୁ ମା କେଉଁ କାରଣରେ ।
ତୁମ୍ଭର ଜନନୀ ଅଟେ ମୋହର ଭଉଣୀ
ସୁଦାମା ନରପତିଙ୍କ ଆମ୍ଭେ ଯେ ଦୁଲଣୀ ।
ବୀରବାହୁ ମୋର ପତି ଭୀମ ତୁମ୍ଭ ପିତା
ସେ କାରଣୁ ତୁହି ମୋର ଭଗିନୀ ଦୁହିତା ।
ଏହି ରାଜ୍ୟ ଧନ ତୁହି ନିଜ ପରି ମଣ
ଏହି କହି ବୈଦର୍ଭୀକି କରିଲେ ସମ୍ମାନ ।
ଶୁଣି ଦମୟନ୍ତୀ ତାଙ୍କୁ ପ୍ରଣାମ କରିଲେ
ଅତି ବିନୟ ଭାବରେ ସକଳ କହିଲେ ।
ପିତାମାତା ହୀନ ମୋର ଦୁଇ ଶିଶୁଛନ୍ତି
ଜନକ ଜନନୀ ପୁଣି ଦୁଃଖିତେ ଅଛନ୍ତି ।
ଆଜ୍ଞା କର ପିତାରାଜ୍ୟେ କରିବି ଗମନ
ଶୁଣି ରାଜମାତା ଆଜ୍ଞାଦେଲେ ସେହିକ୍ଷଣ ।
ପୁତ୍ରଠାରୁ ରାଜମାତା ଘେନି ଅନୁମତି
ଦମୟନ୍ତୀ ସଙ୍ଗେ ଦେଲେ ବହୁତ ସମ୍ପତ୍ତି ।
ଦୋଳାରେ ଚଢ଼ାଇ ତାଙ୍କୁ ବହୁତ ଆଦରେ
ସେହିଦିନ ପଠାଇଲେ ବିଦର୍ଭ ନଗରେ ।
ଦମୟନ୍ତୀ ପିତ୍ରାଳୟେ ହୋଇ ଉପସ୍ଥିତ
ଜ୍ଞାତିବନ୍ଧୁ ଗଣ ସଙ୍ଗେ କରିଲେ ସାକ୍ଷାତ ।
ଜ୍ଞାତିବନ୍ଧୁଗଣ ମଧ ଆନନ୍ଦ ମନରେ
ଗ୍ରହଣ କଲେକ ତାଙ୍କୁ ମହାସମାଦରେ ।
କୁଶଳେ ଅଛନ୍ତି ପିତା ମାତା କନ୍ୟା ସୁତ
ଏହାଦେଖି ଦମୟନ୍ତୀ ହେଲେ ଆନନ୍ଦିତ ।
ବିଦର୍ଭରେ ଥିଲେ ଯେତେ ଦେବତା ବ୍ରାହ୍ମଣ
ସେମାନଙ୍କ ପୂଜାପାଇଁ କଲେ ଆୟୋଜନ ।
କନ୍ୟା ପାଇଁ ନରପତି ହୋଇ ଆନନ୍ଦିତ
ସୁଦେବ ବ୍ରାହ୍ମଣେ ଦେଲେ ସମ୍ପଦ ବହୁତ ।
ସହସ୍ର ସଂଖ୍ୟକ ଗୋରୁ ରଜତ କାଞ୍ଚନ
ଗ୍ରାମ ଭୂମି ଆଦି ଯେତେ ଦ୍ରବ୍ୟ କଲେ ଦାନ ।

ସେହି ରାତ୍ରେ ମାତାପାଶେ ଯାଇ ଦମୟନ୍ତୀ
ବୋଇଲେ ଜନନୀ ଶୁଣ ମୋହର ବିନତି ।
ଯଦି ମୋହ ଜୀବନରେ ଥାଏ ପ୍ରୟୋଜନ
କରାଅ ନଳରାଜାଙ୍କୁ ବେଗେ ଅନ୍ୱେଷଣ ।
କନ୍ୟା କଥା ଶୁଣି କିଛି ନ ଦେଲେ ଉତ୍ତର
ଅଶ୍ରୁ ବିସର୍ଜ୍ଜନ ମାତା କଲେ ନିରନ୍ତର ।
ଦମୟନ୍ତୀ କଥା ଶୁଣି ଜନନୀ କାନ୍ଦନ୍ତେ
ଅନ୍ତଃପୁରେ ଯେତେ ଥିଲେ କାନ୍ଦିଲେ ସମସ୍ତେ
ଅନନ୍ତର ରାଜାପାଶେ ହୋଇ ଉପସ୍ଥିତ
ଜଣାଇଲେ ମହାରାଣୀ ଶୁଣ ଆହେ କାନ୍ତ ।
ଆମ୍ଭ କନ୍ୟା ପତି ବିନା ହୋଇଛି କାତର
ପତିବିନା ପ୍ରାଣରକ୍ଷା ନ ହେବ ତାହାର ।
ଲଜ୍ଜା ତେଜି ସବୁ କଥା କହୁଛି ମୋଠାରେ
ଆପଣ ପ୍ରତିବିଧାନ କରନ୍ତୁ ଏଥିରେ ।
ଅନୁମତି କର ଡାକି ପାଶେ ଦୂତଗଣେ
ନଳଙ୍କୁ ଖୋଜିବା ପାଇଁ ଯାଆନ୍ତୁ ସେମାନେ ।
ମହାରାଜା ଭୀମ ରାଣୀ ବଚନକୁ ଶୁଣି
ଦୂତଙ୍କୁ ଡକାଇ ଆଣି କହିଲେ ସେ ପୁଣି ।
ଆହେ ଦୂତମାନେ ଘେନ ମୋହର ବଚନ
ଏହିକ୍ଷଣି ବେଗେ କର ଏଠାରୁ ଗମନ ।
ବିଳମ୍ବ ନ କରି ତୁମ୍ଭେ ରାତ୍ର ଦିବସରେ
ମହାରାଜ ନଳ ଖୋଜ ଦେଶ ଦେଶାନ୍ତରେ ।
ଦୂତଗଣ ଏହିରୂପେ ରାଜା ଆଜ୍ଞା ପାଇ
ଜଣାଇଲେ ଦମୟନ୍ତୀ ପାଶେ ସର୍ବେ ଯାଇଁ ।
ଆଗୋ ଦେବୀ କରିଛନ୍ତି ରାଜା ଆଜ୍ଞାଦାନ
ନଳ ମହାରାଜା ଖୋଜି ଆଣିବା କାରଣ ।
ଅତଏବ ଆମ୍ଭେମାନେ କରୁଛୁ ବିନତି
କିଛି କହିବାର ଥିଲେ କର ଅନୁମତି ।
ଦୂତବାକ୍ୟେ ଦମୟନ୍ତୀ ବୋଇଲେ ବଚନ
ଯେଉଁ ରାଜ୍ୟେ ତୁମ୍ଭେମାନେ କରିବ ଗମନ ।
ଉପସ୍ଥିତ ହୋଇ ରାଜସଭାର ମଧ୍ୟରେ
ପୁଣ ପୁଣ ଏହି କଥା ବୋଲିବ ସେଠାରେ ।
ଆହେ ଶଠ କି କଥା ବା ବୋଲିବୁ ତୁମ୍ଭଙ୍କୁ
ଏକାକିନୀ ବନେ ଛାଡ଼ି ଆପଣା ଭାର୍ଯ୍ୟାକୁ ।
ଅର୍ଦ୍ଧଖଣ୍ଡେ ଘେନି ଭାର୍ଯ୍ୟା ପିନ୍ଧିବା ବସନ
ଆସିଅଛ ଗୁପତରେ କରି ପଳାୟନ ।
ଆଜିଯାଏ ସେହି ନାରୀ ତୁମ୍ଭ ଅପେକ୍ଷାରେ
ପ୍ରାଣ ଧରି ରହିଅଛି ବହୁତ କ୍ଳେଶରେ ।
ସେହି ଅର୍ଦ୍ଧବସ୍ତ୍ର ଖଣ୍ଡ ପିନ୍ଧି ସେ ରମଣୀ
ତୁମ୍ଭ ପାଇଁ ଭାଳୁଅଛି ଦିବସ ଯାମିନୀ ।
ଅତଏବ ତୁମ୍ଭେ ଏବେ ହୋଇ କୃପାବାନ
ଅବିଳମ୍ବେ ଯାଇ ତାଙ୍କୁ ଦିଅ ଦରଶନ ।
ଆହେ ଦୂତ ଏହିକଥା ବୋଲି ବାର ବାର
କରାଇବ ଆମ୍ଭ ପ୍ରତି କରୁଣା ସଞ୍ଚାର ।
ଅନଳ ପବନେ ଯେହ୍ନେ ହୋଇ ପ୍ରଜ୍ୱଳିତ
ଅଳ୍ପକାଳ ମଧ୍ୟେ କରେ ବନ ଭସ୍ମୀଭୂତ ।
ଆହୁରି ବୋଲିବ ମଧ୍ୟ ସାଧୁଲୋକମାନେ
ବିବାହିତ ରମଣୀଙ୍କୁ ରଖନ୍ତି ଯତନେ ।
କରିଅଛ ତୁମ୍ଭେ ତାହା ବିପରୀତ ଜାଣ
ଏହା କି ଅଟଇ ତୁମ୍ଭ ଧାର୍ମିକତାପଣ ।
ଧାର୍ମିକ ଦୟାଳୁ ତୁମ୍ଭେ ସୁଶୀଳ କୁଳୀନ
ଭାଗ୍ୟଦୋଷେ ହେଲ କିପାଁ ଏଡ଼େ କର୍ମହୀନ
ପୂର୍ବେ ତୁମ୍ଭେ କେତେଥର ଆପେ ଅଛ କହି
ନିଷ୍ଠୁରତାଠାରୁ ମହାପାପ କିଛି ନାହିଁ ।
ହେଲାଣି ଅନେକ ଆଉ କିବା ପ୍ରୟୋଜନ
ବେଳେ ମାତ୍ର କୃପାକରି ଦିଅ ଦରଶନ ।
ଆହେ ଦୂତଗଣ ଶୁଣି ଏହି ସର୍ବକଥା
ଯେ ଦେବ ଉତ୍ତର ତାଙ୍କୁ ପୁଛିବ ବାରତା ।
ତାଙ୍କ ନାମ ଧାମ ପୁଣି ଜାତି ବ୍ୟବସାୟ
ପାଇବ ତାହାଙ୍କ ଠାରୁ ଯାହା ପରିଚୟ ।
ଗୁପତେ ବୋଲିବ ଆସି ସବୁ ଆମ୍ଭଠାରେ
ପ୍ରକାଶ କରିବ ନାହିଁ ଅନ୍ୟର ଆଗରେ ।
ଦମୟନ୍ତୀଠାରୁ ଆଜ୍ଞା ପାଇ ଦୂତଗଣ
ନାନାଦେଶ ଦେଶାନ୍ତରେ କଲେ ପର୍ଯ୍ୟଟନ ।
କେତେ ଗ୍ରାମ କେତେ ଦେଶ ଆଶ୍ରମ ନଗର
ଖୋଜିଲେ ନଳଙ୍କୁ ଦିବାରାତ୍ର ନିରନ୍ତର ।
କାହିଁ ନ ପାଇଲେ ବୁଲି ତାହାଙ୍କ ସନ୍ଧାନ
ଏହିରୂପେ ବହିଗଲା ଖୋଜୁ କିଛି ଦିନ ।
ପର୍ଣ୍ଣାଦ ନାମରେ ଅଛି ଏକଜଣ ଦୂତ
ବିଦର୍ଭ ନଗର ମଧ୍ୟେ ହୋଇ ଉପସ୍ଥିତ ।
ଦମୟନ୍ତୀଙ୍କ ନିକଟେ ପରବେଶ ହେଲେ
ଫିଟାଇ ସବୁ ବୃତ୍ତାନ୍ତ ତାହାଙ୍କୁ କହିଲେ ।
ଆଗୋ ଦେବୀ ଯାଉଥିଲି ନଳ ଅନ୍ୱେଷଣେ
ଆଣିଛି ସମ୍ବାଦ କିଛି ଶୁଣନ୍ତୁ ଆପଣେ ।
ଖୋଜି ଖୋଜି ଅଯୋଧ୍ୟାରେ ହେଲି ଉପସ୍ଥିତ
ଋତୁପର୍ଣ୍ଣ ରାଜା ତହିଁ କରନ୍ତି ରାଜତ୍ୱ ।
ଉଚ୍ଚାରଣ କଲି ସଭାମଧ୍ୟେ ପୁଣ ପୁଣ
ଦେଇଥିବା ଆପଣଙ୍କ ଉପଦେଶ ମାନ ।
କେହି କର୍ମଚାରୀ ଅବା ଆପେ ନୃପବର
ମୋବାକ୍ୟେ ସେମାନେ କିଛି ନ ଦେଲେ ଉତ୍ତର

ସ୍ଥାନାନ୍ତର ଯିବା ପାଇଁ ହେଉଛି ଉଦ୍ୟତ
ଏକ କର୍ମଚାରୀ ଆସି ହେଲା ଉପସ୍ଥିତ ।
ସେହି କର୍ମଚାରୀ ନାମ ଅଟଇ ବାହୁକ
ଦେଖିବାକୁ ଅତିଶୟ କଦର୍ଯ୍ୟ ସେ ଲୋକ ।
ରାଜାଙ୍କ ସାରଥି ହୋଇ ଅଛଇ ସେଠାରେ
ଅତିଶୟ ନିପୁଣ ସେ ଅଶ୍ୱ ଚାଳନାରେ ।
ରନ୍ଧନରେ ପୁଣି ସେହି ଅଟଇ ନିପୁଣ
ମୋର ପାଶେ ଧୀରେ ଧୀରେ କଲା ଆଗମନ
ଦୁଇନେତ୍ରୁ ବହୁଅଛି ଅଶ୍ରୁଧାର ତାର
ନିତାନ୍ତ ଦୁଃଖରେ କ୍ଷୀଣ ହୋଇଛି ଶରୀର ।
କିଛିକାଳ ପାଇଁ କରି ସମ୍ବରଣ ଖେଦ
ପୁଚ୍ଛାକରି ମୋତେ ସର୍ବକୁଶଳ ସମ୍ବାଦ ।
ବୋଇଲେ ସଦ୍‌ବଂଶେ ଜାତ ହୋଇଛି ସେ ସତୀ
ପତି ପରାୟଣା ସାଧ୍ୱୀ ଧର୍ମେ ଯାର ମତି ।
ବିଷମ ଦୁର୍ଦ୍ଦଶା ମଧ ହେଲେ ଉପସ୍ଥିତ
ଆପଣାର ଧର୍ମରକ୍ଷା କରିବ ସତତ ।
ସ୍ୱାମୀପ୍ରତି କଦାଚ ସେ ନ କରଇ ରୋଷ
ଏଥିପାଇଁ ପରକାଳେ କରେ ସ୍ୱର୍ଗବାସ ।
ନିରନ୍ତର ଥାଏ ତାର ଧର୍ମମାର୍ଗେ ମତି
ଅସତ କର୍ମରେ କେଭେ ନ ଜନ୍ମେ ପ୍ରବୃତ୍ତି ।
ଯେବେହେଁ ନୈଷଧପତି ନଳ ମହାରାଜା
ଅକାରଣେ ଛାଡ଼ି ଆସି ଅଛନ୍ତି ଭାରିଯା ।
ଏଥିପାଇଁ ହେବେ ନାହିଁ ରୁଷ୍ଟ ଦମୟନ୍ତୀ
ତେଣୁ ସେ ସକଳ ଦୁଃଖ ଅବସ୍ଥା ଜାଣନ୍ତି ।
ଅରଣ୍ୟରେ ପକ୍ଷୀ ଘେନିଯିବାରୁ ବସନ
ସନ୍ତାପରେ ହୋଇଥିଲେ ନଳ ଜ୍ଞାନଶୂନ୍ୟ ।
ସେହି ନଳ ପାଇ ନାନା ଯନ୍ତ୍ରଣା ସଂପ୍ରତି
କେବଳ ଆପଣା ପ୍ରାଣ ରକ୍ଷା କରୁଛନ୍ତି ।
ବିଶେଷରେ ରାଜ୍ୟଭ୍ରଷ୍ଟ ଶିରୀଭ୍ରଷ୍ଟ ହୋଇ
ଦେଶେ ଦେଶେ ବୁଲି କଷ୍ଟ ପାଉଛନ୍ତି ସେହି ।
କ୍ଷୁଧା ପିପାସାରେ ହୋଇ ନିତାନ୍ତ କାତର
ଭାଳୁଛନ୍ତି ଦମୟନ୍ତୀ ପାଇଁ ନିରନ୍ତର ।
ଚିନ୍ତାକରି ନଳଙ୍କର ଏହି ସର୍ବକ୍ଳେଶ
କରିବେ ସେ ଦମୟନ୍ତୀ କ୍ଷମା ସର୍ବଦୋଷ ।
ବାହୁକ ମୁଖରୁ ଏହି ବଚନ ମୁଁ ଶୁଣି
ଆସୁଅଛି ସେ ସ୍ଥାନରୁ ହେ ରାଜନନ୍ଦିନୀ ।
ସବୁକଥା ଜଣାଇଲି ଆପଣଙ୍କଠାରେ
କରନ୍ତୁ ବିଧାନ ଯାହା କର୍ତ୍ତବ୍ୟ ଏଥିରେ ।
ପର୍ଣ୍ଣାଦ ମୁଖରୁ ଏହି ସବୁକଥା ଶୁଣି
ବହୁତ ରୋଦନ କଲେ ରାଜାଙ୍କ ନନ୍ଦିନୀ ।
କାନ୍ଦି କାନ୍ଦି ମାତା ପାଶେ ହେଲେ ଉପସ୍ଥିତ
ଜଣାଇଲେ ଏକ ଏକ ସକଳ ବୃତ୍ତାନ୍ତ ।
ବୋଇଲେ ଏ ସବୁ କଥା ନ ବୋଲ ପିତାଙ୍କୁ
ଡକାଇ ଆଣ ମା ବେଗେ ସୁଦେବ ବିପ୍ରଙ୍କୁ ।
ଅଯୋଧ୍ୟାକୁ ପୁଣି ତାଙ୍କୁ କରାନ୍ତୁ ପ୍ରେରଣ
ସେ ଆଣି ପାରିବେ ନିଶ୍ଚେ ନଳଙ୍କ ସନ୍ଧାନ ।
ଅନନ୍ତର ଦମୟନ୍ତୀ ସୁଦେବ ଦ୍ୱିଜକୁ
ବହୁ ଧନରତ୍ନ ଦେଇ ତୋଷି ତା ମନକୁ ।
ବୋଇଲେ ହେ ବିପ୍ର ନଳ ଆସିଲେ ଏଠାକୁ
ଆହୁରି ସମ୍ପଦ ଦାନ କରିବି ତୁମ୍ଭଙ୍କୁ ।
ତୁମ୍ଭେ ମୋର ଉପକାର କରିଛ ବହୁତ
ତୁମ୍ଭ ଯୋଗୁଁ ହେଲା ମାତା ପିତାଙ୍କ ସାକ୍ଷାତ ।
ବର୍ତ୍ତମାନ କର ଆଉ ଏକ ଉପକାର
ତୁମ୍ଭ ଯୋଗୁ ହେବ ପୂର୍ଣ୍ଣ ବାସନା ମୋହର ।
ବେଗହୋଇ ଯାଅ ତୁମ୍ଭେ ଅଯୋଧ୍ୟା ନଗରେ
ଜଣାଇବ ଋତୁପର୍ଣ୍ଣ ରାଜାଙ୍କ ପାଶରେ ।
ହେ ରାଜନ ଆଣିଅଛି ମୁହିଁ ସମାଚାର
ଭୀମସୁତା ଦମୟନ୍ତୀ ହେବ ସ୍ୱୟମ୍ବର
ଆସନ୍ତା କାଲିରେ ଅଛି ଦିନ ନିରୂପିତ
ରାଜାଏ ହେଲେଣି ଯାଇ ତହିଁ ଏକତ୍ରିତ ।
ସୂର୍ଯ୍ୟୋଦୟ ସମୟରେ କାଲି ଦମୟନ୍ତୀ
ବରଣ କରିବେ ନିଶ୍ଚେଁ ଆନ ଏକ ପତି ।
ଦମୟନ୍ତୀ ବୁଝିଛନ୍ତି ଏମନ୍ତ ମନରେ
ନଳ ମହାରାଜା ଆଉ ନାହାନ୍ତି ପ୍ରାଣରେ ।
ଯିବାପାଇଁ ଆପଣଙ୍କ ତହିଁ ଥିଲେ ଚିତ୍ତ
ଏହି କ୍ଷଣି ହେ ନରେଶ ହେଉନ୍ତୁ ପ୍ରସ୍ତୁତ ।
ଦମୟନ୍ତୀ ଏହି ରୂପେ ବୋଲି ସୁଦେବଙ୍କୁ
ତତକ୍ଷଣେ ପଠାଇଲେ ଅଯୋଧ୍ୟାପୁରକୁ ।
ଅଯୋଧ୍ୟା ନଗ୍ରରେ ବିପ୍ର ପ୍ରବେଶ ହୋଇଲେ
ଋତୁପର୍ଣ୍ଣ ରାଜାଠାରେ ସବୁ ଜଣାଇଲେ ।
ଅଗସ୍ତି ବୋଇଲେ ଶୁଣ ହେ ମନୁରାଜନ
ସୁଦେବ ମୁଖରୁ ଶୁଣି ରାଜା ଋତୁପର୍ଣ୍ଣ ।
ଦମୟନ୍ତୀ ସ୍ୱୟମ୍ବର ହେବାର ବୃତ୍ତାନ୍ତ
ବାହୁକକୁ ଡାକିଲେ ସେ ପାଶକୁ ତ୍ୱରିତ ।
ବୋଇଲେ ବାହୁକ ଆହେ ଶୁଣିଲି ବାରତା
କାଲି ସ୍ୱୟମ୍ବର ହେବେ ଭୀମରାଜ ସୁତା ।
ବିଦର୍ଭ ରାଜନ ଦିନ କରିଛନ୍ତି ସ୍ଥିର
ଦୂତମୁଖୁ ଶୁଣିଲି ଯେ ଏହି ସମାଚାର ।
ଆମ୍ଭର ନିତାନ୍ତ ଇଚ୍ଛା ତହିଁ ଯିବାପାଇଁ
ସେଠାକୁ ଯିବାର କିଛି ସହଜ ନୁହଇ ।

ଅଶ୍ୱ ଚାଳନାରେ ତୁମ୍ଭେ ଅଟ ଯେ ନିପୁଣ
କରି ପାରିବ କି ଆମ୍ଭ ଅଭିଳାଷ ପୂର୍ଣ୍ଣ ।
ପ୍ରବେଶ ହୋଇ ପାରିଲେ ବିଦର୍ଭ ନଗରେ
ଦେଖିବୁଁ ଯେ ସ୍ୱୟମ୍ବର କାଲି ପ୍ରଭାତରେ ।
ଦମୟନ୍ତୀ ସ୍ୱୟମ୍ବର କରିଣ ଶ୍ରବଣ
ବାହୁକ ହୃଦୟ ହେଲା ଦୁଃଖରେ ବିଦୀର୍ଣ୍ଣ ।
ପୁଣ ପୁଣ ମନ ମଧ୍ୟେ କଲେ ଏ ବିଚାର
ସତେ କି ସେ ଦମୟନ୍ତୀ ହେବ ସ୍ୱୟମ୍ବର ।
ଅଥବା ପାଇବାପାଇଁ ଆମ୍ଭଙ୍କୁ ସୁନ୍ଦରୀ
ଏହିରୂପେ କରିଅଛି ଅପୂର୍ବ ଚାତୁରୀ ।
ଧିକ ଧିକ ଜ୍ଞାନ ମୋର ଧିକ ମୋ ଜୀବନେ
ପତିପ୍ରାଣା ରମଣୀକୁ ତେଜିଲି ଯା ବନେ ।
ଚଞ୍ଚଳ ଅଟଇ ନାରୀମାନଙ୍କ ଚରିତ
ଏରୂପ ଘଟିବା କିଛି ନୁହଇ ବିଚିତ୍ର ।
ଅଥବା କରିଛୁ ଆମ୍ଭେ ଯେପରି ଅନ୍ୟାୟ
ତାହା ପ୍ରତି ଦୋଷ ଦେବା ନୁହଇ ବିଧେୟ ।
ଦମୟନ୍ତୀ ଆମ୍ଭପାଇଁ ଥିବ ଉତ୍କଣ୍ଠିତା
ବିଶେଷରେ ପାଶେ ଛନ୍ତି ନନ୍ଦନ ଦୁହିତା ।
ଅତଏବ ଭଲରୂପେ ଯାଉଅଛି ଜଣା
ସ୍ୱୟମ୍ବର କଥାମାନ ସବୁ ପ୍ରତାରଣା ।
ଆଜି ପ୍ରବେଶିଲେ ଯାଇ ବିଦର୍ଭ ନଗରେ
ସକଳ ବୃତ୍ତାନ୍ତ ଜଣାଯିବ ସାକ୍ଷାତରେ ।
ଋତୁପର୍ଣ୍ଣ ପ୍ରାର୍ଥନାରେ କଲେ ସନମତ
ନ ରହିବ କିଛି କାଲି କଥା ଅବିଦିତ ।
ବାହୁକ ଏତେକ କଥା ମନେ କରି ସ୍ଥିର
ବୋଇଲେ ସେ ଋତୁପର୍ଣ୍ଣେ ଯୋଡ଼ି ବେନିକର
ଆପଣ ଯାଇଁ ପ୍ରସ୍ତୁତ ହୁଅନ୍ତୁ ବେଗରେ
ଆଜି ପ୍ରବେଶାଇ ଦେବି ବିଦର୍ଭ ନଗରେ ।
ବାହୁକ ସେଠାରେ ଅଶ୍ୱଶାଳକୁ ଯାଇଣ
ଫିଟାଇ ଆଣିଲେ ଏକ ଅଶ୍ୱକୁ ବାଛିଣ ।
ଅତି କ୍ଷୀଣ ଦେହ ତାର ଗମନେ ନିପୁଣ
ଉଚ୍ଚୈଶ୍ରବା ଅଂଶେ ଜାତ ସର୍ବେ ସୁଲକ୍ଷଣ ।
ବେଗଗାମୀ ସୁଶିକ୍ଷିତ ସିନ୍ଧୁଦେଶ ଜାତ
ତାହାର ଦେହରେ ଅଛି ଦଶଟା ଆବର୍ତ୍ତ ।
ତାର ହନୁଦେଶ ଅଟେ ପ୍ରଶସ୍ତ ବିଶାଳ
ନିତମ୍ବ ଅଟେ ବିସ୍ତୃତ ଆବର ମାଂସଳ ।
ସେ ଅଶ୍ୱ ଗୋଟାକୁ ଦେଖି ରାଜା ଋତୁପର୍ଣ୍ଣ
କ୍ରୋଧେ ପ୍ରଜ୍ୱଳିତ ହୋଇ ବୋଇଲେ ବଚନ ।
ହେ ବାହୁକ ତୁମ୍ଭେ ଅଟ କେମନ୍ତ ନିର୍ବୋଧ
କିପାଁ କାର୍ଯ୍ୟକର ଆମ୍ଭ ଇଚ୍ଛାର ବିରୁଦ୍ଧ ।

ଆଉ କି ନାହାନ୍ତି ଅଶ୍ୱ ଆମ୍ଭ ଅଶ୍ୱଶାଳେ
ବାଛି ଆଣିଅଛ ଭଲ ଅଶ୍ୱ ବୁଦ୍ଧିବଳେ ।
ନିତାନ୍ତ ଦୁର୍ବଳ ଏହି ପୁଣି ଅଶକତ
କିପରି ଦୁର୍ଗମ ବାଟେ ଘେନିଯିବ ରଥ ।
ବୋଇଲେ ବାହୁକ ଆହେ ଶୁଣନ୍ତୁ ରାଜନ
ଏହି ଅଶ୍ୱଗୋଟି ଅଟେ ସର୍ବ ସୁଲକ୍ଷଣ ।
ମସ୍ତକରେ ଦୁଇଗୋଟି ଗୋଟିଏ କପାଳେ
ପାର୍ଶ୍ୱେ ଉପପାର୍ଶ୍ୱେ ଚାରି ଦୁଇ ବକ୍ଷସ୍ଥଳେ ।
ପଶ୍ଚାତରେ ଏକଗୋଟା ଅଛି ପ୍ରକାଶିତ
ସବୁସୁଦ୍ଧା ଦଶଗୋଟା ବହିଛି ଆବର୍ତ୍ତ ।
ନିଶ୍ଚୟ ମୋହର ଅଛି ବିଶ୍ୱାସ ଏମନ୍ତ
ବିଦର୍ଭ ନଗରେ ବେଗେ ହେବ ଉପସ୍ଥିତ ।
ଅଥବା ଏଥିରେ ଯଦି ନ ହେବଟି ରୁଚି
ଯେ ଅଶ୍ୱ ବୋଲିବେ ତାକୁ ଆଣିବି ମୁଁ ବାଛି ।
ଏତେକ ବଚନ ଶୁଣି ବୋଇଲେ ରାଜନ
ହେ ବାହୁକ ଅଶ୍ୱ ଶାସ୍ତ୍ରେ ତୁମ୍ଭେ ତ ନିପୁଣ ।
ଯେଉଁ ସର୍ବ ଅଶ୍ୱ ତୁମ୍ଭ ମନକୁ ରୁଚଇ
ସେହି ଅଶ୍ୱମାନ ତୁମ୍ଭେ ରଥେ ଯୋଚ ନେଇ ।
ଏହାଶୁଣି ବାହୁକ ଯେ ଧାଇଁ ଧାତିକାରେ
ସେହିପରି ଚାରିଅଶ୍ୱ ଯୋଚିଲେ ରଥରେ ।
ବାଗ ଦଉଡ଼ି ଧରିଣ ବାହୁକ ବସିଲେ
ଅଯୋଧ୍ୟାର ଛତ୍ରଧାରୀ ରଥେ ବିଜେ କଲେ ।
ଇଙ୍ଗିତ ମାତ୍ରକେ ବେଗେ ଧାଇଁଲେକ ଅଶ୍ୱେ
ଉଡ଼ି ଯାଉଛନ୍ତି କିବା ପକ୍ଷୀଏ ଆକାଶେ ।
ବାର୍ଷ୍ଣେୟ ସାରଥି ବସି ଅଛନ୍ତି ପାଶରେ
ଅଶ୍ୱଗଣ ଧାଉଁଛନ୍ତି ପବନ ବେଗରେ ।
ଋତୁପର୍ଣ୍ଣ ନରନାଥ ଦେଖି ରଥଗତି
ବିସ୍ମୟ ହୋଇ ମଣିଲେ ଆଚମ୍ବିତ ଅତି ।
ରଥ ବେଗଗତି ଦେଖି ବାର୍ଷ୍ଣେୟ ଭାଳନ୍ତି
ଏହୁ ହୋଇବ କି ଅବା ମାତଳି ସାରଥି ।
କିବା ଶାଳିହୋତ୍ର ଧରି ନର କଳେବର
କପଟେ ହୋଇଅଛନ୍ତି ମର୍ତ୍ତ୍ୟେ ଅବତାର ।
ହେବେ ବା ନୈଷଧପତି ମହାରାଜା ନଳ
ସେହି ଯେ ଜାଣନ୍ତି ଅଶ୍ୱ ଚାଳନ କୌଶଳ ।
ଏ ତିନିରୁ ଜଣେ କେହି ହେବ ଏ ବାହୁକ
ମୋର ଜାଣିବାରେ ଏହି ନୁହେଁ ତୁଚ୍ଛଲୋକ ।
ଦୈବ ଦୁର୍ବିପାକ ଅବା ଶାସ୍ତ୍ରୀୟ ବିଧିରେ
କେତେ ଲୋକ ବୁଲୁଛନ୍ତି କପଟ ବେଶରେ ।
କିନ୍ତୁ ଏ ବାହୁକ ନୁହେଁ ନୈଷଧ ରାଜନ
ଏହାଙ୍କର ଶରୀର ତ ଦିଶୁଛି ବିବର୍ଣ୍ଣ ।

ନଳ ମହାରାଜାଠାରେ ଅଛି ଯେଉଁ ଗୁଣ
ବାହୁକ ଅଟଇ ସେହି ଗୁଣରେ ନିପୁଣ ।
ଏହିପରି ମନେ ମନେ ବିଚାରି ବାର୍ଷ୍ଣେୟ
ବହୁତ ଆନନ୍ଦ ହେଲା ମନେ ତା ଉଦୟ ।
ଋତୁପର୍ଣ୍ଣ ମଧ ଦେଖି ବାହୁକର ଗୁଣ
ବୋଇଲେ ବାହୁକ ତୁମ୍ଭ ଶିକ୍ଷା ଧନ୍ୟ ଧନ୍ୟ ।
ହେ ବିଲଙ୍କପତି ଶୁଣ ଏଥୁ ଅନନ୍ତରେ
ରଥ ବାହି ଯାଉଛନ୍ତି ବାହୁକ ବେଗରେ ।
କେତେ ନଦ ନଦୀ ବନ ଉପବନ ଗ୍ରାମ
ମୁହୂର୍ତ୍ତ ମଧ୍ୟରେ ଗଲେ କରି ଅତିକ୍ରମ ।
ପବନ ସମାନ ରଥ ଯାଉଅଛି ଉଡ଼ି
ଋତୁପର୍ଣ୍ଣଙ୍କର ଖସି ପଡ଼ିଲା ପାଛୁଡ଼ି ।
ବୋଇଲେ ରାଜନ ତହୁଁ ଶୁଣ ହେ ବାହୁକ
ଅଶ୍ୱଡ଼ୋର ଭିଡ଼ି ରଖ ତୁମ୍ଭେ ମୁହୂର୍ତ୍ତେକ ।
ରଥର ପ୍ରବଳ ଗତି ହେତୁ ପବନରେ
ଆମ୍ଭ ଉତ୍ତରୀୟ ଖସି ପଡ଼ିଛି ବାଟରେ ।
ରଖ ରଥ ଯାଆନ୍ତୁ ସେ ବାର୍ଷ୍ଣେୟ ଓହ୍ଲାଇ
ଆମ୍ଭ ଉତ୍ତରୀୟ ଖଣ୍ଡ ଆଣନ୍ତୁ ଉଠାଇ ।
ଋତୁପର୍ଣ୍ଣଙ୍କୁ ବାହୁକ ବୋଇଲେ ଏ ଗିର
ଉତ୍ତରୀୟ ରହିଲାଣି ଯୋଜନ ଅନ୍ତର ।
କିପାଇଁ ବାର୍ଷ୍ଣେୟ ଯାଇ ଆଣିବେ ବସନ
ରଖିବା ଏଠାରେ ରଥ କିବା ପ୍ରୟୋଜନ ।
ଏହିରୂପେ ଯାଉଛନ୍ତି ପ୍ରବଳ ବେଗରେ
ଗୋଟିଏ ବାହାଡ଼ା ବୃକ୍ଷ ଦେଖିଲେ ବାଟରେ ।
ବାହୁକେ ଚାହିଁ ବୋଇଲେ ରାଜା ଋତୁପର୍ଣ୍ଣ
ଗଣନ ବିଦ୍ୟାରେ ଆମ୍ଭେ ଅଟୁ ଯେ ନିପୁଣ ।
ଯେତେ ଫଳ ପତ୍ର ଅଛି ବାହାଡ଼ା ବୃକ୍ଷରେ
ଦେଖ ଆମ୍ଭେ ଗଣିଦେବା ଅତି ସହଜରେ ।
ଜଗତରେ କେହି ନାହିଁ ଏହିପରି ଜାଣ
କଦାଚିତ ସବୁବିଦ୍ୟା ବିଷୟେ ନିପୁଣ ।
ଏହି ବାହାଡ଼ା ବୃକ୍ଷରେ ଫଳ ପତ୍ର ଯେତେ
ତଳେ ପଡ଼ିଅଛି ପୁଣି ଯେତେକ ଏକତ୍ରେ ।
ଗଣି ଦେଉଅଛୁ ଆମ୍ଭେ ଏହିଠାରେ ବସି
ଶଏ ଏକୋତ୍ତର ଫଳ ପଡ଼ିଅଛି ଖସି ।
ଦୁଇସହସ୍ର ପଞ୍ଚାନବେ ଫଳ ଅଛି ଡାଳେ
ଏକଶତ ଏକ ପତ୍ର ପଡ଼ିଅଛି ତଳେ ।
ପାଞ୍ଚକୋଟି ପତ୍ର ଅଛି ଡାଳମାନଙ୍କରେ
ଏହି ସଂଖ୍ୟା ଅଛି ଫଳ ପତ୍ର ଏ ବୃକ୍ଷରେ ।
ଇଚ୍ଛାହେଲେ ବୃକ୍ଷଠାକୁ ଯାଇ ତୁମ୍ଭେ ଗଣ
ଆଉ କଥା ସତ୍ୟ ମିଥ୍ୟା ପାଇବ ପ୍ରମାଣ ।
ଋତୁପର୍ଣ୍ଣ କଥା ଶୁଣି ବାହୁକ ବୋଇଲେ
ଭଲା ଦେଖାଯିବ ଆମ୍ଭେ ବୃକ୍ଷମୂଳେ ଗଲେ ।
ନ ଗଣିଲେ ଫଳ ପତ୍ର ନୋହିବ ବିଶ୍ୱାସ
ଏତେ ବୋଲି ରଜ୍ଜୁ ଭିଡ଼ି ଠିଆ କଲେ ଅଶ୍ୱ ।
କ୍ଷଣକାଳ ପାଇଁ ରଜ୍ଜୁ ଧରନ୍ତୁ ବାର୍ଷ୍ଣେୟ
ନ ଗଣିଲେ ଫଳ ପତ୍ର ନ ଯିବ ସନ୍ଦେହ ।
ଏହାଶୁଣି ଋତୁପର୍ଣ୍ଣ ବୋଲେ ହେ ବାହୁକ
କିପାଇଁ କାଟିବା କାଳ ଏଥେଁ ଅନର୍ଥକ ।
କିଛିକାଳ ପାଇଁ ଯଦି ରହୁ ଏ ସ୍ଥାନରେ
ପ୍ରବେଶି ପାରିବୁ ନାହିଁ କେଭେଁ ବିଦର୍ଭରେ ।
ବୋଇଲେ ବାହୁକ ଆହେ ଶୁଣ ନରପତି
ଆପଣଙ୍କଠାରେ ମୋର ଏତିକି ବିନତି ।
ଅଳପ ସମୟ ପାଇଁ ରୁହନ୍ତୁ ଏ ସ୍ଥାନେ
ଆସୁଅଛି ଫଳପତ୍ର ଗଣି ଏହିକ୍ଷଣେ ।
ଅଥବା ବାର୍ଷ୍ଣେୟ ବସି ଘୋଡ଼ାରଜ୍ଜୁ ଧରି
ଚଳାଇ ନେଉନ୍ତୁ ରଥ ବିଦର୍ଭ ନଗରୀ ।
ବୋଇଲେ ରାଜନ ତୁମ୍ଭ ସମାନ ସାରଥି
ହେ ବାହୁକ କଦାଚିତେ ଜଗତେ ନାହାନ୍ତି ।
ତୁମ୍ଭେ କରିବାରୁ ଆମ୍ଭ ସାରଥ୍ୟ ସ୍ୱୀକାର
ବିଦର୍ଭ ନଗରେ ହୋଇଅଛୁ ଅଗ୍ରସର ।
ପୁଣ ପୁଣ ତୁମ୍ଭଠାରେ କରୁଛୁ ବିନତି
ବାଧା ଦିଅ ନାହିଁ ଆହେ ବାହୁକ ସାରଥି ॥
ଆଜି ଯଦି ବିଦର୍ଭରେ ହେବୁ ଉପସ୍ଥିତ
ତୁମ୍ଭ ଉପକାର ଆମ୍ଭେ ମଣିବୁ ବହୁତ ।
କରାଇଲେ କାଲି ପ୍ରାତଃ ସଭା ଦରଶନ
କରିବୁ ତୁମ୍ଭ ବାସନା ସର୍ବ ପରିପୂର୍ଣ୍ଣ ।
ଏହାଶୁଣି ବାହୁକ ଯେ ବୋଇଲେ ବଚନ
ଆହେ ମହାରାଜ ଶୁଣ ମୋର ନିବେଦନ ।
ନ ଗଣି ଏ ଫଳପତ୍ର ନ ପାରଇ ଯାଇ
ଏତିକି ପ୍ରାର୍ଥନା ରକ୍ଷା କର ନରସାଇଁ ।
ଋତୁପର୍ଣ୍ଣ ହୋଇ ତହିଁ ଅଗତ୍ୟା ସମ୍ମତ
ବୋଇଲେ ବାହୁକ ଗଣିଆସ ଫଳ ପତ୍ର ।
ଏକମାତ୍ର ଡାଳେ ଥିବ ପତ୍ର ଗଣିଆସ
ସହଜେ ହେବଟି ଆମ୍ଭ କଥାରେ ବିଶ୍ୱାସ ।
ତକ୍ଷଣ ବାହୁକ ହୋଇ ରଥୁ ଅବତୀର୍ଣ୍ଣ
କଲେ ଯାଇ ସେ ବାହାଡ଼ା ବୃକ୍ଷକୁ ଛେଦନ ।
ଫଳପତ୍ରମାନ ଗଣି ହେଲେ ଆଚମ୍ବିତ
ବୋଇଲେ ରାଜନ ତୁମ୍ଭ ବିଦ୍ୟା ଅଦଭୂତ ।
ଗଣିଲ ଏ ଫଳ ପତ୍ର ଯେ ବିଦ୍ୟା ବଳରେ
ଦୟାକରି ସେହି ବିଦ୍ୟା ବୋଲ ମୋ ଆଗରେ

ବୋଇଲେ ଏ କଥା ଶୁଣି ଅଯୋଧ୍ୟାର ନାଥ
ଗଣନା ବିଦ୍ୟାରେ ଆମ୍ଭେ ଅତ୍ୟନ୍ତ ପଣ୍ଡିତ ।
ଅଦ୍ୱିତୀୟ ଆମ୍ଭେ ଅଟୁ ପଶା ଖେଳିବାରେ
ନ ଥିବ ଜଗତେ କେହି ଆମ୍ଭ ସମାନରେ ।
ବୋଇଲେ ବାହୁକ ନୃପେ ଆହେ ନରରାଣ
ମୋହଠାରୁ ଅଶ୍ୱବିଦ୍ୟା କରନ୍ତୁ ଗ୍ରହଣ ।
ଦେଉନ୍ତୁ ଗଣନାବିଦ୍ୟା ତା ପରିବର୍ତ୍ତରେ
ଉପକୃତ ହେବୁଁ ଦୁଇଜଣ ପରସ୍ପରେ ।
ବାହୁକ ବାକ୍ୟେ ବୋଇଲେ ରାଜା ଋତୁପର୍ଣ୍ଣ
ଆମ୍ଭଠାରୁ ସଂଖ୍ୟା ବିଦ୍ୟା ନିଅ ଏହିକ୍ଷଣ ।
ତୁମ୍ଭ ଅଶ୍ୱବିଦ୍ୟା ଏବେ ଥାଉ ତୁମ୍ଭଠାରେ
କରିବୁ ଯେ ବିଦ୍ୟା ଶିକ୍ଷା ଆମ୍ଭେ ଏ ଉତ୍ତାରେ
ଏହା କହି ଅଯୋଧ୍ୟାରେ ରାଜା ଋତୁପର୍ଣ୍ଣ
ବାହୁକକୁ ସଂଖ୍ୟାବିଦ୍ୟା କଲେକ ପ୍ରଦାନ ।
ଏଥୁ ଅନନ୍ତରେ ସେହୁ ପାପମତି କଳି
କର୍କୋଟକ ତୀକ୍ଷ୍ଣ ବିଷ ଉକାଳି ଉକାଳି ।
ନଳଙ୍କ ଦେହୁ ବାହାରି ଗଲା ତତକ୍ଷଣ
ଦମୟନ୍ତୀ ଶାପ ତାର ହେଲା ବିମୋଚନ ।
ପୁଣ୍ୟଶ୍ଳୋକ ନଳରାଜା କଳି ଆକ୍ରମଣେ
ବିଶେଷ ଯନ୍ତ୍ରଣା ପାନ୍ତି ରାତ୍ର ଦିନମାନେ ।
ନ ଥିଲା ତାହାଙ୍କ ଜ୍ଞାନ ନଥିଲା ବିଚାର
କରୁଥିଲେ ବ୍ୟବହାର ବାତୁଳ ପ୍ରକାର ।
ଏତେବେଳେ ପାଇ ସେହି କଳିର ସାକ୍ଷାତ
କ୍ରୋଧେ ଶାପ ଦେବାପାଇଁ ହୋଇଲେ ଉଦ୍ୟତ
ଏହା ଦେଖି ଦୁଷ୍ଟକଳି ଭୟେ ଥରି ଥରି
ବୋଇଲା ସେ ହାତ ଯୋଡ଼ି ଆହେ ଦଣ୍ଡଧାରୀ
ଆପଣଙ୍କଠାରେ ସତ୍ୟ କରିଅଛି ପାପ
କୃପାକରି ଏବେ ମୋତେ ନ ଦିଅନ୍ତୁ ଶାପ ।
କରନ୍ତୁ କରୁଣା କରି କ୍ରୋଧ ସମ୍ବରଣ
ଆପଣଙ୍କ ମହାକୀର୍ତ୍ତି କରିବି ସ୍ଥାପନ ।
ଯେଉଁଦିନ ଦମୟନ୍ତୀ ସତୀଙ୍କୁ ନିର୍ଦ୍ଦୋଷେ
ପଳାଇଲେ ପରିତ୍ୟାଗ କରି ଅନ୍ୟ ଦେଶେ ।
ସେହିଦିନ ମହାକଷ୍ଟ ପାଇ ମହାସତୀ
କ୍ରୋଧରେ ଅସ୍ଥିର ହୋଇ ଶାପ ଦେଇଛନ୍ତି ।
ସେହି ମହାଶାପେ ପୁଣି କର୍କୋଟକ ବିଷେ
ରହିଥିଲି ଆପଣଙ୍କ ଦେହେ ମହାକ୍ଳେଶେ ।
ଏତେବେଳେ ଦମୟନ୍ତୀ ଶାପୁ ହୋଇ ମୁକ୍ତି
ଆହେ ମହାରାଜ ହେଲି ସ୍ୱରୂପକୁ ପ୍ରାପ୍ତି ।
ଆପଣଙ୍କ ଶ୍ରୀଚରଣେ ପଶୁଛି ଶରଣ
କ୍ରୋଧେ ଆଉ ଶାପ ମୋତେ ନ କର ପ୍ରଦାନ
ଆପଣ ଯଦ୍ୟପି ଶାପ ନ ଦେବଟି ମୋତେ
ଆଜଦିନଠାରୁ ନିଶ୍ଚେ ଯେ ଲୋକ ଜଗତେ ।
ଆପଣଙ୍କ ପୁଣ୍ୟନାମ କରିବ ସ୍ମରଣ
ମୋହର ଭୟରୁ ମୁକ୍ତ ପାଇବ ସେ ଜାଣ ।
କ୍ରୋଧ ସମ୍ବରଣ କରି ନଳ ମହାରଥୀ
କହିଲେ ଅନେକ କଳି ସହିତରେ କଥା ।
ଅନନ୍ତର ଆନଲୋକ ଦୃଷ୍ଟି ଅଗୋଚରେ
ପ୍ରବେଶିଲା କଳି ଯାଇ ବାହାଡ଼ା ବୃକ୍ଷରେ ।
କରିବାରୁ କଳି ଯାଇ ତାହାକୁ ସ୍ୱରଶ
ତତକ୍ଷଣେ ସେହି ବୃକ୍ଷ ହୋଇଗଲା ହ୍ରାସ ।
ନଳରାଜା କଳିଠାରୁ ହୋଇଲେ ମୁକତ
କିନ୍ତୁ ତାଙ୍କ ପୂର୍ବରୂପ ନୋହିଲା ପ୍ରାପତ ।
ଆନନ୍ଦମନରେ ଯାଇଁ ବସିଲେ ରଥରେ
ବାହିଗଲେ ବିଦର୍ଭକୁ ପବନ ବେଗରେ ।
ନୟନମାର୍ଗରୁ ଦୂରେ ହୋନ୍ତେ ଋତୁପର୍ଣ୍ଣ
ଧୀରେ ଧୀରେ କଳି କଲା ସ୍ୱସ୍ଥାନେ ଗମନ ।
ଋତୁପର୍ଣ୍ଣ ପ୍ରବେଶିଲେ ବିଦର୍ଭ ନଗରେ
ରଜନୀ ପ୍ରବେଶ ହେବା କିଞ୍ଚିତ ପୂର୍ବରେ ।
ବିଦର୍ଭର ନରପତି ଶୁଣି ଏ ବୃତ୍ତାନ୍ତ
ପାଛୋଟି ଆଣିବା ପାଇଁ ପଠାଇଲେ ଦୂତ ।
ଘର୍ଘରିତ ଶବ୍ଦ କରି ରଥ ଚକମାନ
ଉପସ୍ଥିତ ହେଲେ ମହାରାଜା ଋତୁପର୍ଣ୍ଣ ।
ନଳରାଜା ଆଗମନେ ରଥ ଆଉ ଅଶ୍ୱ
ପୂର୍ବେ କରୁଥିଲେ ଯେହ୍ନେ ସନ୍ତୋଷ ପ୍ରକାଶ ।
ଋତୁପର୍ଣ୍ଣ ଆଗମନେ ତେହ୍ନେ ଅଶ୍ୱଗଣ
ଆନନ୍ଦରେ ହ୍ରେଷାରବ କଲେ ଘନ ଘନ ।
ରଥଚକ ଶବଦରେ ପୂରିଲା ମେଦିନୀ
ବିଚାରିଲେ ଦମୟନ୍ତୀ ସେହି ଶବ୍ଦଶୁଣି ।
ପୂର୍ବକାଳେ ଯେଉଁପରି ନଳଙ୍କର ରଥ
ସେହିପରି ଏହି ରଥ ହୁଏ ନିନାଦିତ ।
ପ୍ରାସାଦ ମଧ୍ୟରେ ଥିବା କେକୀ ହସ୍ତୀ ଅଶ୍ୱ
ସେହି ଶବ୍ଦ ଶୁଣି କଲେ ଆନନ୍ଦ ପ୍ରକାଶ ।
ଦମୟନ୍ତୀ ଚତୁର୍ଦ୍ଦିଗ କରି ନିରୀକ୍ଷଣ
ବୋଇଲେ ଆନନ୍ଦ କିପାଁ ହେଉଅଛି ମନ ।
ସତେ କି ମୋହର ପୁଣି ଫିଟିବ କପାଳ
ନୟନେ ଦେଖିବି ଆଜ ମହାରାଜ ନଳ ।
ନ ପାଇଲେ ଆଜଦିନ ନାଥ ଦରଶନ
ପ୍ରତିଜ୍ଞା କରୁଛି କେଭେ ନ ରଖିବି ପ୍ରାଣ ।
ନ ବୋଲିବେ ଆଜି ଯଦି କଥା ଗୁଣମଣି
ନିଶ୍ଚୟ ନିଶ୍ଚୟ ହେବି ଜୀବନ ଘାତିନୀ ।

ଆଜି ନ ଦେଖିବି ଯେବେ କମଳ ବଦନ
ଜ୍ୱଳନ୍ତ ଅନଳେ ନିଶ୍ଚେ ତେଜିବି ଜୀବନ ।
ମିଥ୍ୟା କଥା କେଭେ ମୁହିଁ ତାଙ୍କୁ କହି ନାହିଁ
ତାହାଙ୍କ ଅପ୍ରିୟ କାର୍ଯ୍ୟ କରିନାହିଁ ମୁହିଁ ।
କ୍ଷମାଶୀଳ ପ୍ରଭୁ ମୋର କୃପାଳୁ ବଦାନ୍ୟ
ପ୍ରାଣନାଥ ମୋହପ୍ରତି ସଦା କୃପାବାନ ।
କେଭେ ସେ ଦେଖି ନାହାନ୍ତି ମୁଖ ପରନାରୀ
ଆବର କରି ନାହାନ୍ତି ଅନିଷ୍ଟ କାହାରି ।
ଏକମନେ ମୁହିଁ ତାଙ୍କୁ କରୁଅଛି ଧ୍ୟାନ
ତାଙ୍କ ବିନା ହୃଦ ମୋର ହେଉଛି ବିଦୀର୍ଣ୍ଣ ।
କେବଳ ପାଇବାପାଇଁ ତାଙ୍କ ଦରଶନ
ଆଜିଯାଏ କରିଅଛି ଜୀବନ ଧାରଣ ।
ଏହିପରି ନଳଙ୍କର ଗୁଣକୁ ସୁମରି
ବହୁତ ବ୍ୟାକୁଳ ହେଲେ ଭୀମଙ୍କ କୁମାରୀ ।
ଅନନ୍ତର ପାଇବାକୁ ନଳଙ୍କ ଦର୍ଶନ
ସଉଧ ଶିଖରେ ଯାଇଁ କଲେ ଆରୋହଣ ।
ବସି ଅଛନ୍ତି ବାହୁକ ବାର୍ଷ୍ଣେୟ ରଥରେ
ପ୍ରବେଶିଲେ ଋତୁପର୍ଣ୍ଣ ରାଜା ସିଂହଦ୍ୱାରେ ।
ବାହୁକ ବାର୍ଷ୍ଣେୟ ଦୁହେଁ ରଥରୁ ଓହ୍ଲାଇ
କ୍ଳାନ୍ତ ଅଶ୍ୱଗଣ ଦେଲେ ରଥରୁ ଫିଟାଇ ।
ରଥପରୁ ଓହ୍ଲାଇଣ ଅଯୋଧ୍ୟାର ନାଥ
ବିଦର୍ଭ ରାଜାଙ୍କ ପାଶେ ହେଲେ ଉପସ୍ଥିତ ।
ନ ଦେଖିଣ ସ୍ୱୟମ୍ବର ହୋଇଲେ ବିସ୍ମିତ
କେଡ଼େ ମନ୍ଦକର୍ମ କଲି ଆସିକରି ଏଥ ।
ଭୀମ ମହାରାଜା ତାଙ୍କୁ ବହୁତ ଆଦରେ
ଆସନରେ ବସାଇଲେ ଆପଣା ପାଶରେ ।
ଭୀମରାଜା କହିଲେକ ହେ ଅଯୋଧ୍ୟାନାଥ
କହ ଏଠାକୁ ଅଇଲ କିପାଁ ଅକସ୍ମାତ ।
ଶୁଣି ଅଯୋଧ୍ୟାର ପତି ହୋଇଲେ ବିସ୍ମୟ
ମିଥ୍ୟା ସ୍ୱୟମ୍ବର ବୋଲି ଜାଣିଲେ ନିଶ୍ଚୟ ।
ସ୍ୱୟମ୍ବର ହେଲେ ଆସିଥାନ୍ତେ ରାଜାଗଣ
ଏହା ବିଚାରି ତାହାଙ୍କୁ କହିଲେ ବଚନ ।
ଅନ୍ୟକାରଣ ହେତୁରୁ ଏଣେ ଆସିଥିଲି
ତୁମ୍ଭ ସମ୍ଭାଷଣ ହେତୁ ଏଠାକୁ ଅଇଲି ।
ଭୀମ କହିଲେକ ବଡ଼ ଭାଗ୍ୟ ଯେ ମୋହର
ସେହେତୁ ଏଥେ ବସିଲେ ଅଯୋଧ୍ୟା ଈଶ୍ୱର ।
ଶ୍ରମ ପାଇଅଛ ଆଜି ରହ ମୋର ବାସ
ଏହା କହି ଦେଲେ ତାଙ୍କୁ ଅପୂର୍ବ ଆବାସ ।
ସେଠାରେ ରହିଲେ ଯାଇ ଅଯୋଧ୍ୟାର ପତି
ଅଶ୍ୱଶାଳେ ଚଳିଗଲେ ବାହୁକ ସାରଥି ।
ଅଶ୍ୱଗଣ ପରିଚର୍ଯ୍ୟା କରିଣ ବାନ୍ଧିଲେ
ପ୍ରାସାଦ ଉପରେ ଥାଇ ବୈଦର୍ଭୀ ଦେଖିଲେ ।
ଋତୁପର୍ଣ୍ଣ ରାଜା ଆଉ ସାରଥି ତାହାର
ନଳ ରାଜାଙ୍କୁ ନ ଦେଖି ହୋଇଲେ କାତର ।
ଏତେ ଭାଳି ପଠାଇଲେ କେଶିନୀ ଦୂତୀକୁ
ଯାଅ ବେଗେ କେଶିନୀ ତୁ ପୁଚ୍ଛ ସାରଥିକୁ ।
ଦେଖିଲେ ତାହାଙ୍କ ମୁଖ ହୃଷ୍ଟ ହେବ ମନ
ଶୀଘ୍ର ଆସି କହ ମୋତେ ବୁଝିଣ କାରଣ ।
ଏହା ଶୁଣିଣ କେଶିନୀ ଗଲା ଶୀଘ୍ରଗତି
ମଧୁର ବଚନ କହେ ସାରଥିର ପ୍ରତି ।
ରାଜକନ୍ୟା ଦମୟନ୍ତୀ ଏଠାକୁ ପେଷିଲେ
କି ହେତୁ ଏଥେ ଅଇଲ କହ ତୁମ୍ଭେ ଭଲେ ।
ବାହୁକ ବୋଇଲା ମୋର ଅଯୋଧ୍ୟା ବସତି
ଋତୁପର୍ଣ୍ଣ ରାଜାଙ୍କର ଅଟେ ମୁଁ ସାରଥି ।
ଏହିଠାରୁ ଯାଇଥିଲେ ଏକ ଦ୍ୱିଜବର
କହିଲେ ଭୈମୀର ହେବ ପୁଣି ସ୍ୱୟମ୍ବର ।
ରାତ୍ର ଶେଷେ କରିବେ ସେ ଆଉ ଏକ ସ୍ୱାମୀ
ଏହି ହେତୁ ଋତୁପର୍ଣ୍ଣ ଅଇଲେ ଏ ଭୂମି ।
ଶତେକ ଯୋଜନ ଦୂରୁ ଆସିଲେ ନୃପତି
ବାହୁକ ମୋହର ନାମ ମୁଁ ତାଙ୍କ ସାରଥି ।
ପୁଣ୍ୟଶ୍ଳୋକ ନଳରାଜା ବୀରସେନ ସୁତ
ପୂର୍ବରେ ଥିଲଇଁ ମୁହିଁ ତାହାଙ୍କର ସୂତ ।
ତାଙ୍କ ଭାର୍ଯ୍ୟା ଭୈମୀଙ୍କର ଏପରି ଆଚାର
ଶୁଣିଣ ଉଦ୍‌ବିଗ୍ନ ହେଲା ମାନସ ମୋହର ।
ଦ୍ୱିତୀୟ ବୟସେ ଏହା ତୃତୀୟ କି ହେବ
ଦୈବ ଯାହା କରେ ତାହା କେ ଆନ କରିବ ।
ପୁଣି କେଶିନୀ ବୋଇଲା ବାହୁକର ପ୍ରତି
ତୁ ଯଦି ବାହୁକ କାହିଁ ରହିଲେ ନୃପତି ।
ଅର୍ଦ୍ଧବସ୍ତ୍ରେ ଏକାକିନୀ ରଖି ଘୋରବନେ
ଅନୁରକ୍ତା ନାରୀ ଛାଡ଼ିଲେକ ସେ କେସନେ ।
ସେହି ବସ୍ତ୍ର ପିନ୍ଧିକରି ଅଛନ୍ତି ଅଦ୍ୟାପି
ନ ରୁଚଇ ଅନ୍ନଜଳ ପୁଣ୍ୟଶ୍ଳୋକ ଜପି ।
ଏମନ୍ତ ଶୁଣି ବ୍ୟଥିତ ହେଲେ ରାଜା ନଳ
ବାରିଧାରା ପରି ନେତ୍ରୁ ବହେ ଅଶ୍ରୁଜଳ ।
ରାଜା ବୋଇଲେ ସେ ଅଟେ କୁଳବତୀ ନାରୀ
ସ୍ୱାମୀର ବିଶ୍ୱାସ କଥା ରଖେ ଗୁପ୍ତକରି ।
ଆପଣା ମରଣ ବାଞ୍ଛେ ସ୍ୱାମୀର କାରଣ
ତଥାପି ସ୍ୱାମୀର ନିନ୍ଦା ନ କରେ ବଖାଣ ।
ବିବସ୍ତ୍ର ହୋଇଣ ଯେହୁ ପଶିଲେ କାନନ
ଅଳ୍ପ ଭାଗ୍ୟ ନୁହେଁ ସେହି ପାଇଲା ଜୀବନ ।

ଏପରି ଲୋକଙ୍କୁ କ୍ରୋଧକଲା ଯୋଗ୍ୟ ନୁହେଁ
ରାଜ୍ୟଭ୍ରଷ୍ଟ ଜ୍ଞାନଭ୍ରଷ୍ଟ ପ୍ରାଣେ ମାତ୍ର ରହେ ।
ୟା କହି ଶୋକେ କାନ୍ଦିଲେ ତହିଁ ନରବର
କେଶିନୀ ସବୁ କହିଲେ ଭୈମୀର ଆଗର ।
ଭୈମୀ କହିଲେକ ଏହି ନୁହେଁ ଅନ୍ୟଜନ
ପୁନରପି ଯାଇ ବୁଝ ତାଙ୍କର ଲକ୍ଷଣ ।
କି ଆଚାର କି ବିଚାର କେଉଁ କର୍ମ କରେ
ବୁଝି ଆସିଣ ସତ୍ୱର କହ ମୋ ଆଗରେ ।
ଆଜ୍ଞାପାଇଁ ଦାସୀ ତହୁଁ କରିଲେ ଗମନ
ଦେଖିଣ ସକଳ କର୍ମ ଅଇଲା ବହନ ।
କେଶିନୀ କହିଲା ଶୁଣ ଆଗୋ ରାଜଜେମା
ଦେଖିଲି ଯେ ବାହୁକର ଅପାର ମହିମା ।
ରନ୍ଧନ ସାମଗ୍ରୀମାନ ଋତୁପର୍ଣ୍ଣ ନୃପେ
ମାଂସ ଆଦି ପଠାଇଣ ଦେଲେ ତୁମ୍ଭ ବାପେ ।
ସେ ସର୍ବ ସାମଗ୍ରୀ ଦେଲେ ବାହୁକର କରେ
ଦେଖି ତା କାର୍ଯ୍ୟ ଆଶ୍ଚର୍ଯ୍ୟ ହୋଇଲି ଅନ୍ତରେ
ଶୂନ୍ୟ କୁମ୍ଭକୁ କରନ୍ତେ ସେହି ଦୃଷ୍ଟିପାତ
ଜଳେ ପୂର୍ଣ୍ଣ ହୋଇଗଲା ଏ ବଡ଼ ଅଦ୍ଭୁତ ।
ସେ ଜଳରେ ମାଂସଆଦି ଧୋଇଲେ ସକଳ
ତୁଚ୍ଛା ତୃଣ କାଷ୍ଠ ଥିଲା ନ ଥିଲା ଅନଳ ।
ତୃଣକେରା ନେଇଦେଲେ ସେ କାଷ୍ଠ ମଧ୍ୟରେ
ଦୃଷ୍ଟିମାତ୍ରେ ତୃଣ କାଷ୍ଠ ଜଳିଲା ଇଚ୍ଛାରେ ।
କ୍ଷଣମାତ୍ରେ ସର୍ବଦ୍ରବ୍ୟ ରନ୍ଧନ କରିଲେ
ଏବେ ସକଳ ବୁଝିଲି ବୈଦର୍ଭୀ କହିଲେ ।
ପୁଣି କହିଲେ କେଶିନୀ ଯାଅ ଆଉ ଥରେ
ତାଙ୍କ ରନ୍ଧନ ବ୍ୟଞ୍ଜନ ମାଗିଆଣ ଥରେ ।
କେଶିନୀ ବାହୁକଠାରୁ ମାଗିଣ ବ୍ୟଞ୍ଜନ
ଦମୟନ୍ତୀ ପାଶେ ନେଇ ଦେଲା ସେ ତକ୍ଷଣ ।
ଖାଇଣ ବ୍ୟଞ୍ଜନ ଭୈମୀ ହରଷ ହୋଇଲେ
ନିଶ୍ଚୟ ଏ ନଳ ବୋଲି ମନେ ବିଚାରିଲେ ।
ପୁଣି ପୁତ୍ର କନ୍ୟା ଦେଲେ କେଶିନୀ ସହିତେ
ଦେଖି କି କହିବେ ବୁଝିଆସ ତୁ ତୁରିତେ ।
କେଶିନୀ ସଙ୍ଗରେ ଦେଖି ନନ୍ଦନ ନନ୍ଦିନୀ
ଶୀଘ୍ର ଉଠି କୋଳ କଲେ ନଳ ନରମଣି ।
ଦୁହିଙ୍କର ମୁଖ ଦେଖି କଲେକ କ୍ରନ୍ଦନ
ପୁଣି ପୁଣି ଚୁମ୍ବଦେଇ କଲେ ଆଲିଙ୍ଗନ ।
କେତେକ୍ଷଣେ କହିଲେକ କେଶିନୀର ପ୍ରତି
ଦୁଇଶିଶୁ ଦେଖି ମୋର ସ୍ଥିର ନୁହେଁ ମତି ।
ଏହିପରି କନ୍ୟା ପୁତ୍ର ଅଛନ୍ତି ମୋହର
ବହୁଦିନୁ ଦେଖି ନାହିଁ ମୁଖ ଦୁହିଙ୍କର ।
ସେହି ଅନୁତାପେ ଅଶ୍ରୁ ହୋଇଲା ପତନ
ଅପତ୍ୟ ବିଛେଦ ତାପ ନୁହେଁ ସମ୍ବରଣ ।
ଏ ଘଟଣା ଦେଖି କିଏ ଭାବିବ କି କଥା
ନେଇଯାଅ ଶୀଘ୍ର ତୁହି ଏହି ସୁତ ସୁତା ।
ଏମନ୍ତ ଶୁଣିଣ ତହୁଁ କେଶିନୀ ଚଳିଲା
ଏହି ସବୁକଥା ଯାଇ ଭୈମୀଙ୍କୁ କହିଲା ।
ଶୁଣିଣ ବୈଦର୍ଭୀ ବ୍ୟଗ୍ର ହୋଇଲେ ଦର୍ଶନେ
ଶୀଘ୍ର ଯାଇ ଜଣାଇଲେ ମାତା ସନ୍ନିଧାନେ ।
ଆଜ୍ଞା ଯଦି କର ଯିବି ବାହୁକ ପାଶକୁ
ଶୁଣି ଏ ବୃତ୍ତାନ୍ତ ରାଣୀ ଆଜ୍ଞାଦେଲେ ତାକୁ ।
ତନୟ ତନୟା ସଙ୍ଗେ ଘେନିଣ କାମିନୀ
ପତି ଦରଶନେ ଯାଉ ଅଛଇ କେଶିନୀ ।
ଅଶ୍ୱଶାଳେ ପ୍ରବେଶିଲେ ଯାଇ ଦମୟନ୍ତୀ
ଜଟିଳା ମଳିନା ଜୀର୍ଣ୍ଣବାସ ପିନ୍ଧିଛନ୍ତି ।
ସ୍ୱାମୀ ଯହିଁ ବସିଛନ୍ତି ତହିଁ ପ୍ରବେଶିଲେ
ଦୁଃଖାନଳେ ଅଙ୍ଗ ଜଳେ ନେତ୍ରୁ ଅଶ୍ରୁଗଳେ ।
ସକରୁଣେ କହିଲେକ ତାଙ୍କୁ ମୃଦୁଭାଷ
ହେ ବାହୁକ ଦେଖିଛ କି ଏମନ୍ତ ପୁରୁଷ ।
କ୍ଷୁଧା ତୃଷା ପରିଶ୍ରମେ ନିଦ୍ରିତା ନାରୀରେ
ବନେ ଏକା ଛାଡ଼ିଗଲେ କେମନ୍ତ ପ୍ରକାରେ ।
ନଳ ପୁଣ୍ୟଶ୍ଳୋକ ବୋଲି ନାମ କିଏ ଦେଲା
ଏପରି ନିଷ୍ଠୁର ବୋଲି ଜାଣି କି ନ ଥିଲା ।
ସଦା ଅନୁରକ୍ତା ପୁଣି ପୁତ୍ରର ଜନନୀ
କଉଣସି ଦୋଷେ ସେହୁ ଦୋଷୀ ନୁହେଁ ପୁଣି
ଅଗ୍ନି ବରୁଣ କୁବେର ଇନ୍ଦ୍ରଙ୍କୁ ତେଜିଣ
ନୈଷଧ ପତିଙ୍କୁ ହର୍ଷେ କରିଲା ବରଣ ।
ସେ ପୁଣି ସଭା ମଧ୍ୟରେ କରିଥିଲେ ସତ୍ୟ
ପ୍ରାଣ ସମ କରିଥିବି ତୁମ୍ଭଙ୍କୁ ମୁଁ ନିତ୍ୟ ।
ନଳ ଏଡ଼େ ସତ୍ୟବାଦୀ କରିଲେ ଏମନ୍ତ
ଅନ୍ୟଲୋକେ କି କରିବେ ଭାବଇ ସତତ ।
ଭୈମୀ କଥା ଶୁଣି ଲାଜେ କହେ ନୃପମଣି
ପ୍ରାପ୍ତେ କି ଛାଡ଼ିବି ତୁମ୍ଭ ପରାୟ ରମଣୀ ।
ରାଜ୍ୟଭ୍ରଷ୍ଟ ଲକ୍ଷ୍ମୀ ଭ୍ରଷ୍ଟ କଲା ଯେଉଁ ଦୁଷ୍ଟ
ଆମ୍ଭଙ୍କୁ ସଙ୍ଗ ଛଡ଼ାଇ ଦେଲା ସେହୁ କଷ୍ଟ ।
ତୁମ୍ଭଙ୍କୁ ଛାଡ଼ିଣ ବନେ ଦେଖ ଚନ୍ଦ୍ରାନନେ
ଅସ୍ଥି ଚର୍ମ ଧରି ମାତ୍ର ରହିଛି ଜୀବନେ ।
ଏହା ନ ଭାବିଣ ମୋତେ ଜୀବିତରେ ଦେଖି
ଏହିପରି କହୁଅଛ ଆଗୋ ଶଶୀମୁଖୀ ।
କଳି ଛାଡ଼ିଯିବାରୁ ମୁଁ ଦେଖିଲି ତୁମ୍ଭଙ୍କୁ
କ୍ରୋଧ ସମ୍ବରଣ କର ଦେଖିଲ ଆମ୍ଭଙ୍କୁ ।

ଯେଉଁ ନାରୀ ପତିବ୍ରତା ସତୀ ଶିରୋମଣି
ପତି ଦୋଷ ନ ଧରିବ ପ୍ରଶଂସା ବଖାଣି ।
ଆଉ ଶୁଣିଲି କହିଲା ଏକ ଦ୍ୱିଜବର
ଅନ୍ୟ ପତି ବରିବ ଯେ କରି ସ୍ୱୟମ୍ବର ।
ଅଯୋଧ୍ୟାରେ ଥାଇ ଏହା ଶୁଣୁ ମୋର ଶ୍ରୁତି
ଦେଖିବାକୁ ଆସିଅଛି ତୁମ୍ଭ ଅନ୍ୟ ପତି ।
ଏ କୁତ୍ସିତ କର୍ମ କେହି ରାଜକୁଳେ ଜନ୍ମି
କରିଛି କି କହ ତୁମ୍ଭେ ଆଗୋ ସୁବଦନି ।
ନଳ ନରପତିଙ୍କର ଏହି ବାଣୀ ଶୁଣି
ଦମୟନ୍ତୀ କହିଲେକ ଯୋଡ଼ି ବେନିପାଣି ।
ପୂର୍ବେ ଦ୍ୱିଜେ ପେଷିଥିଲି ତୁମ୍ଭ ଅନ୍ୱେଷଣେ
ବହୁଦ୍ୱିଜ ଖୋଜିଲେକ ଯାଇ ସ୍ଥାନେ ସ୍ଥାନେ ।
ପର୍ଣ୍ଣାଦ ନାମରେ ଦ୍ୱିଜ ଅଯୋଧ୍ୟାକୁ ଗଲା
ତୁମ୍ଭ କଥା ଶୁଣି ଆସି ମୋ ଆଗେ କହିଲା ।
ତବହେତୁ ମହାରାଜ ତେଜି କୁଳ ଲାଜ
କେବଳ ଅଯୋଧ୍ୟା ଦେଶେ ପେଷିଥିଲି ଦ୍ୱିଜ ।
କର୍ତ୍ତବ୍ୟ ବଚନ ମନେ ତୁମ୍ଭ ବିନୁ ଆନେ
ସତ୍ୟ କହୁଛି ନ ଚାହେଁ ନୟନର କୋଣେ ।
ଯଦି କର ପାପଜ୍ଞାନ ତୁମ୍ଭେ ରାଜମଣି
ତୁମ୍ଭ ସାକ୍ଷାତେ ଜୀବନ ତେଜିବି ଏକ୍ଷଣି ।
ଚନ୍ଦ୍ର ସୂର୍ଯ୍ୟ ବାୟୁ ମୋର ରହିଛନ୍ତି ସାକ୍ଷୀ
ଯଦି ମୁହିଁ ପତିବ୍ରତା କହିବେ ସେ ଡାକି ।
ଏପରି କହିଲେ ଯହୁଁ ଭୀମରାଜ ସୁତା
ଶୂନ୍ୟ ପୁଷ୍ପବୃଷ୍ଟି ହେଲା କହନ୍ତି ସବିତା ।
ତେଜ ରାଜା ମନସ୍ତାପ ତୁମ୍ଭର କାମିନୀ
ସ୍ୱଧର୍ମରେ ରହିଅଛି ନୁହଇ ପାପିନୀ ।
ଯେଉଁଦିନୁ ଗଲ ତୁମ୍ଭେ ବନେ ତେଜ୍ୟାକରି
ଏହାକୁ ରଖିଛି ମୁହିଁ ଆହେ ଦଣ୍ଡଧାରୀ ।
ସର୍ବଦା ତବ ଦୁଃଖରେ ଦୁଃଖିତା ଅଟଇ
ଅନ୍ୟ କେଉଁ କଥା ତୁମ୍ଭେ ମନେ ଭାବନାହିଁ ।
ଅକସ୍ମାତେ ଏହି ବାଣୀ ଶୂନ୍ୟରୁ ଶୁଭିଲା
ତା ସଙ୍ଗେ ଦୁନ୍ଦୁଭି ଧ୍ୱନି ଅକସ୍ମାତେ ହେଲା ।
ଶୁଣି ରାଜା ଶାନ୍ତହେଲେ ଗଲା ମନୁ ଭ୍ରାନ୍ତି
ଭାବିଲେ ଏହାର ନିଶ୍ଚେଁ ଧର୍ମେ ଥାଏ ମତି ।
ତତ୍ପରେ ପ୍ରିୟାକୁ ଧରି ପାଶରେ ବସାଇ
ବୋଇଲେ ତୁମ୍ଭ ଚରିତ୍ର ଧନ୍ୟ ଗୋ ଅଟଇ ।
କର୍କୋଟକ ଦତ୍ତ ବସ୍ତ୍ର କରି ପରିଧାନ
ନିଜରୂପ ହେଲେ ନାମ କରିଣ ସ୍ମରଣ ।
ଚାରି ବରଷରେ ଦେଖା ହେଲା ଦୁହିଙ୍କର
ପୁନଃ ପୁନଃ ଆଲିଙ୍ଗନ କଲେ ଶିଷ୍ଟାଚାର ।
ଦୁହେଁ ଦୁହିଁଙ୍କର ଦୁଃଖ କୁହାକୁହି ହେଲେ
ପ୍ରଭାତ ଉଦୟେ ଭୀମନୃପଙ୍କୁ ଭେଟିଲେ ।
ଜୁଆଇଁଙ୍କୁ ଦେଖି ରାଜା ଆନନ୍ଦ ଅପାର
ଆଲିଙ୍ଗନ କରି କହେ ଏ ସର୍ବ ତୁମ୍ଭର ।
ଋତୁପର୍ଣ୍ଣ ଶୁଣିଲେ ଏ ସର୍ବ ସମାଚାର
ଜାଣିଲେ ଯେ ନଳରାଜା ବାହୁକ ଆମ୍ଭର ।
ଦମୟନ୍ତୀର ପ୍ରତ୍ୟଶା ଛାଡ଼ି ନରପତି
ଗଲେ ଯେଉଁଠାରେ ଥିଲେ ନଇଷଧ ପତି ।
ଋତୁପର୍ଣ୍ଣ କହେ ବଡ଼ ଭାଗ୍ୟ ଯେ ମୋହର
ତେଣୁ ମିଳନ ହୋଇଲା ଆମ୍ଭ ଦୁହିଙ୍କର ।
ଅଜ୍ଞାତରେ ଦୋଷମାନ କ୍ଷମିବ ମୋହର
ଶୁଣିଣ ନୈଷଧ ପତି କହିଲେ ଏ ଗିର ।
କେତେବେଳେ ଦୋଷୀ ତୁମ୍ଭେ ନୁହଁ ମମସ୍ଥାନେ
କଦାପି ମୋହର କ୍ରୋଧ ନ ହୁଅଇ ମନେ ।
ତ୍ରାସିତ କଲି ତ୍ରାସରେ ବଡ଼ ଦୁଃଖ ପାଇ
ରହିଥିଲି ତୁମ୍ଭ ପାଶେ ଆନନ୍ଦିତ ହୋଇ ।
ତୁମ୍ଭ ଆଶ୍ରୟେ କାଟିଲି ବିପଦ ସମୟ
ମହାସୁଖେ ଥିଲି ଯଥା ନିଜର ଆଳୟ ।
ବିପଦ ସମୟେ ଯାରେ ଯେହୁ ରଖେ ପାଖେ
ଧର୍ମରେ ବଢ଼ଇ ସେହି ଧର୍ମ ତାକୁ ରଖେ ।
ଅତଏବ ଶୁଣ ରାଜା କରେ ନିବେଦନ
ଏମନ୍ତ ବିପଦେ ଯେହୁ ରଖେ ସେହୁ ଧନ୍ୟ ।
ହୋଇଲି ପରମ ସଖା ଆଉ କି କହିବି
ଗାଇବି ତୁମ୍ଭର ଗୁଣ ଯେତେକାଳ ଥିବି ।
ପରସ୍ପରେ ଆଲିଙ୍ଗନ ବିନିମୟେ କଲେ
ଅଶ୍ୱବିଦ୍ୟା ଦେଇ ତାଙ୍କୁ ଅକ୍ଷବିଦ୍ୟା ନେଲେ ।
ଆପଣା ସାରଥି ଘେନି କୋଶଳର ରାୟ
ଆପଣା ରାଜ୍ୟକୁ ଗଲେ ହୋଇଣ ବିଦାୟ ।
ତଦପରେ ନଳରାଜା ଶ୍ୱଶୁରଙ୍କୁ କହି
ନୈଷଧ ରାଜ୍ୟକୁ ଗଲେ କେତେ ସୈନ୍ୟ ନେଇ
ଏକ ରଥ ଷୋଳହସ୍ତୀ ପଞ୍ଚଶତ ଅଶ୍ୱ
ଦୁଇଶତ ପଦାତିକ ନେଇଣ ନରେଶ ।
ନିଜ ରାଜ୍ୟରେ ଯାଇଣ ପ୍ରବେଶ ହୋଇଲେ
ପୁଷ୍କର ସମୀପକୁ ସେ ଅତି ଶୀଘ୍ର ଗଲେ ।
ତାହାକୁ କହିଲେ ତୋତେ ନିଜ ରାଜ୍ୟ ଦେଲି
ଖେଳରେ ହାରିଣ ମୁହିଁ ବନରେ ପଶିଲି ।
ତୁମ୍ଭ ସଙ୍ଗେ ଖେଳିବାକୁ ଇଚ୍ଛା ପୁନର୍ବାର
ଆପଣାର ଆତ୍ମା ପଣ କରିବା ଏଥର ।
ଜିଣିଲେ ତୁମ୍ଭର ଆତ୍ମା ହୋଇବ ଆମ୍ଭର
ହାରିଲେ ମୋହର ଆତ୍ମା ହୋଇବ ତୁମ୍ଭର ।

ଦ୍ୟୁତକ୍ରୀଡ଼ା କରିବି ମୁଁ ଆଗ ପଶାସାର
ତା ନ ହେଲେ ବେଗେ ଉଠ ଧରି ଧନୁଶର ।
ନଳଙ୍କ ବଚନ ଶୁଣି ପୁଷ୍କର ହସିଲେ
ତୁମ୍ଭଙ୍କୁ ଦେଖିଣ ବଡ଼ ଭାଗ୍ୟବାନ ବୋଲେ ।
ଦମୟନ୍ତୀ ସହ ତୁମ୍ଭେ ପ୍ରବେଶିଲେ ବନେ
ଏହି ତାପ ଅନୁକ୍ଷଣେ ଜାଗେ ମୋର ମନେ ।
ଦମୟନ୍ତୀ ଖେଳରେ ନ କଲେ ରାଜା ପଣ
ମୋହର ବାଞ୍ଛିତ ବିଧି କରିଲା ଘଟନ ।
ଏହା କହି ପଶା ସାର ପୁଷ୍କର ଆଣିଲେ
ଆତ୍ମା ପଣ କରି ଦୁହେଁ ଖେଳରେ ବସିଲେ ।
ଦେଖନ୍ତୁ ଧର୍ମର କର୍ମ ଆହେ ସର୍ବଜନ
ଦୁଷ୍ଟ କଳି ଦ୍ୱାପର ଏ ନାହାନ୍ତି ସେକ୍ଷଣ ।
ସାର ଧରିଣ ଫିଙ୍ଗନ୍ତେ ନଳ ଦଣ୍ଡଧାରୀ
ସେକ୍ଷଣି ଧର୍ମ ନୌକାରେ ହୋଇଲେ ସେ ପାରି
ଜିଣିଲେ ନୈଷଧପତି ହାରିଲେ ପୁଷ୍କର
ଭାଳଇ ପୁଷ୍କର ମନେ ହୋଇଲା ଦୁଷ୍କର ।
ଏମନ୍ତ ବିଚାରି ତାର ଉଡ଼ିଲା ଜୀବନ
ସର୍ବାଙ୍ଗ କମ୍ପେ ଲୋତକ ଜର୍ଜର ନୟନ ।
ସେ ଧାର୍ମିକ ଧର୍ମଭୀରୁ ଦୟାର ସାଗର
ଅନୁଜେ ଚାହିଁ ବୋଇଲେ ନଳ ଦଣ୍ଡଧର ।
ନ ଡର ପୁଷ୍କର ତୁମ୍ଭେ ନାହିଁ ତୁମ୍ଭ ଦୋଷ
ଯାହା କରିଛ ମନରେ ନ ହୁଅ ବିରସ ।
କଳି ଏହା କଲା ସବୁ ଦୈବ ନିବନ୍ଧନ
ପୂର୍ବପରି ରହିଁ କର ହରଷିତ ମନ ।
ତୁମ୍ଭ ପ୍ରତି ପ୍ରୀତି ମୋର ଥିଲା ଯେଉଁପରି
ସନ୍ଦେହ ନ କର ସଦା ଥିବ ସେହିପରି ।
ଏହା ଶୁଣି କରଯୋଡ଼ି ବୋଇଲେ ପୁଷ୍କର
ତବ କୀରତି ଘୋଷିବେ ଦେବ ସୁର ନର ।
ବହୁ ଦୋଷେ ଦୋଷୀ ମୁହିଁ ତା ସବୁ କ୍ଷମିଲେ
ତବ ତୁଲ୍ୟ କ୍ଷମାଶୀଳ ନାହିଁ ରବିତଳେ ।
ଏହା ଶୁଣିଣ ପୁଷ୍କର କରିଲେ ପ୍ରଣାମ
ଆଶ୍ୱାସ କରିଲେ ତାଙ୍କୁ ନଳ ନରୋତ୍ତମ ।
ପାତ୍ର ମିତ୍ରଗଣ ଆଉ ନଗରର ପ୍ରଜା
ସର୍ବଲୋକେ ଆନନ୍ଦିତ ନଳ ହେଲେ ରାଜା ।
ଦ୍ୱିଜଗଣେ ପଠାଇଣ ବୈଦର୍ଭୀ ଆଣିଲେ
ଦୀର୍ଘକାଳ ମହାସୁଖେ ରାଜତ୍ୱ କରିଲେ ।
କେତେଦିନ ନରପତି ଚିନ୍ତି ମନେ ମନ
ଇନ୍ଦ୍ରସେନେ ରାଜ୍ୟଭାର କରିଲେ ଅର୍ପଣ ।
ନିଜ ପୁତ୍ରେ ରାଜା କରି ନଳ ନରପତି
ସ୍ୱର୍ଗଲୋକେ ଗଲେ ସଙ୍ଗେ ଘେନି ଦମୟନ୍ତୀ ।
ଋଷି ବୋଇଲେ ଯୁଧିଷ୍ଠି ଶୁଣିଲେ ସକଳ
ତୁମ୍ଭଠାରୁ ବଳି ଦୁଃଖ ପାଇଥିଲେ ନଳ ।
ସମ୍ପଦ କାହାର କେବେ ନ ରହଇ ଚିର
କ୍ଷଣମାତ୍ର ରହେ ଯେହ୍ନେ କୁଆରର ନୀର ।
ଆସି ନ ପାରଇ ସୁଖ ନ ଯାଇ ତା ଦୁଃଖ
ସଦାକାଳେ ଭୋଗିବାକୁ ହୁଏ ଦୁଃଖ ସୁଖ ।
ପରମାର୍ଥ ଚିନ୍ତା ରାଜା କର ଅନୁକ୍ଷଣ
ଦୁଃଖ ସୁଖ ହୁଏ ସବୁ କର୍ମ ନିବନ୍ଧନ ।
ନଳର ଚରିତ ଆଉ ନଳର ଶାସନ
ଏକମନ ହୋଇ ଯେବେ ଶୁଣେ କେହି ଜନ ।
ଖଣ୍ଡଇ ବିପଦ ଭୟ ପାଏ ବାଞ୍ଛା ଫଳ
ବଂଶ ବୃଦ୍ଧି ହୁଏ ତାର ସୁଖେ କାଟେ କାଳ ।
କଦାପି କଳିର ବାଧା ନ ହୁଅଇ ତାରେ
ଯେତେକ ସଙ୍କଟ ଭୟ ତହିଁରୁ ସେ ତରେ ।
ତୁମ୍ଭ ଦୁଃଖ ନରପତି ଯିବ ଅଳ୍ପଦିନେ
ଏତେ କହି ଅକ୍ଷବିଦ୍ୟା ଦେଲେ ସେ ରାଜନେ
ସବୁଙ୍କୁ ସମ୍ଭାଷି ମୁନି କରିଲେ ଗମନ
ପ୍ରଣାମ କରିଲେ ତାଙ୍କୁ ଧର୍ମଙ୍କ ନନ୍ଦନ ।
କାମ୍ୟବନେ ଧର୍ମପୁତ୍ର ତିନି ସହୋଦର
ଅର୍ଜୁନ ବିଚ୍ଛେଦ ସଦା କାତର ଅନ୍ତର ।
ପୁଣ୍ୟ କଥା ଭାରତର ଶୁଣେ ପୁଣ୍ୟବାନ
ପୃଥିବୀରେ ସୁଖ ନାହିଁ ଏହାର ସମାନ ।
ଜୟ ଜୟ ଜଗନ୍ନାଥ ସଙ୍କଟ ତାରଣ
ଏ କଳି ପାପ ମୋହର କର ବିନାଶନ ।
ତବ ଶ୍ରୀଚରଣେ ସଦା ରହୁ ମୋର ମତି
ଶାରଳା ଦାସର ଘେନ ଏହୁ ଯେ ବିନତି ।



## ବଳରାମଙ୍କର ଜନ୍ମ ଓ ରେବତୀ କନ୍ୟା ସହିତ ବିବାହ

କହନ୍ତି ମନୁରାଜନ ହେ ଅଗସ୍ତି ଶୁଣ
ଭାରତ ଶୁଣାଇ ମୋତେ କରିଲ କାରଣ ।
ପାପ କଲ୍ମଷ ଅଙ୍ଗରୁ କଲି ପ୍ରକ୍ଷାଳନ
କହନ୍ତି ଅଗସ୍ତି ପୁଣି ଶୁଣ ହେ ରାଜନ ।
ସତ୍ୟ ପ୍ରବେଶେ ଅସତ୍ୟ ଯେହ୍ନେ ନଷ୍ଟହୁଏ
ଏହା ଶୁଣନ୍ତେ ତେମନ୍ତ ପାପ ଧ୍ୱଂସଯାଏ ।
ଅଗ୍ନି ସଂଯୋଗେ ଯେପରି କୁଟା ଯାଏ ପୋଡ଼ି
ତେହ୍ନେ ପାପ ଧ୍ୱଂସ ହୁଏ ମହାଯୋଗେ ପଡ଼ି ।
ଶ୍ରୀ ଶ୍ରୀ ଜଗନ୍ନାଥଙ୍କର ନାମାଭ୍ୟାସ କର
ହୃଦୟରୁ ପାପମନ ହୋଇଯିବ ଦୂର ।

ଶୁଣି ସନ୍ତୋଷ ହୋଇଲେ ପଣ୍ଡୁ ଜ୍ୟେଷ୍ଠସୁତ
ପୁଣ୍ୟସ୍ଥାନକୁ ଚଳିଲେ ଋଷିଙ୍କ ସହିତ ।
ଇନ୍ଦୁ କିରଣ ବୋଲିଣ ଅଟେ ଏକବନ
ଜୟଭଦ୍ରା ନଦୀ କରେ ଉତ୍ତରେ ଗମନ ।
ସେ ନଦୀରେ ଧର୍ମସୁତ ସ୍ନାନ ଦାନ କଲେ
କୋମଳ ପତ୍ର ଭକ୍ଷିଣ ସେ ବନେ ରହିଲେ ।
ସେଠାରୁ ଯାଇ ପ୍ରବେଶ ରୈବତ ଗିରିରେ
ରେବାନଦୀ ବହେ ତହିଁ ପଶ୍ଚିମ ପ୍ରସ୍ଥରେ ।
ରଇବତ ଋଷିଙ୍କର ତପସ୍ଥାନ ସେହି
ମହା ବ୍ରହ୍ମବେତ୍ତା ବ୍ରହ୍ମଋଷି ସେ ବୋଲାଇ ।
ଶୋଇଥିଲେ ଦକ୍ଷିଣକୁ କରିଣ ସେ ଶିର
ପ୍ରଣିପାତ ହେଲେ ଯାଇଁ ତାଙ୍କୁ ଯୁଧିଷ୍ଠିର ।
କଲ୍ୟାଣ କରି ଉଠିଲେ ତହୁଁ ତପୋବନ୍ତ
ଯୁଧିଷ୍ଠି ବୋଇଲେ ତୁମ୍ଭେ କିପାଁ ମୌନବ୍ରତ ।
ଭୋ ମୁନି ମୋହର ଦଣ୍ଡ ପ୍ରଣାମ ବ୍ୟତୀତ
ଚେତନ ମାର୍ଗ ଥିବାର ନ ଚିହ୍ନେ କିଛି ତ ।
ଶୁଣି କହନ୍ତି ମହର୍ଷି ଶୁଣ ଧର୍ମସୁତ
ରୈବତ ଗିରିର ରାଜା ବିଶ୍ୱାବସୁ ସୁତ ।
ବିଶ୍ୱାବସୁ ପୁତ୍ର ନାମ ଅଟେ ଉମାବସୁ
କାନ୍ତିବସୁ ବୋଲିକରି ତାଙ୍କ ଦୁଇ ଶିଶୁ ।
କାନ୍ତିବସୁର ଜନମ ହେଲେ ଚାରିସୁତ
ରୁଦ୍ର ବସୁ ରୁବ ରୁକ୍ଷ ପୁଣି ରକ୍ଷପାତ ।
ବଡ଼ ଧାର୍ମିକ ହୋଇଲେ ସେହି ଚାରିଜଣ
ସାଧନେ ବସିଲେ ପାଞ୍ଚସସ୍ର ବର୍ଷ ଜାଣ ।
କହିଲେ ନ ସରିବ ଯେ ଏହାଙ୍କ ଚରିତ
ବାସ ଆସନ ବୋଲିଣ ତାଙ୍କ ବେନିସୁତ ।
ରୁଦ୍ର ବସୁଙ୍କର ଏବେ ହୋଇଲା ନନ୍ଦନ
ଏହାଙ୍କର କୀର୍ତ୍ତି ହେଲା ଅତି ଅକଥନ ।
ଏହାଙ୍କର ସୁତ ହେଲା ଏକାଙ୍ଗ ତ୍ରିଦଣ୍ଡୀ
ଜାତ ମାତ୍ରକେ ରଚିଲେ ଏହୁ ବେଦକାଣ୍ଡି ।
ଏହାଙ୍କର ସୁତ ହେଲା ଅରୁଣ କଲ୍ଲୋଳ
ବାଳୁତ ଖେଳେ କ୍ଷେପିଲେ ଏହୁ ସିନ୍ଧୁଜଳ ।
ଏହାଙ୍କ ନନ୍ଦନ ହେଲା ଇଚ୍ଛା ବୀରଧୂକ୍ଷ
ବୀରଧୂକ୍ଷଠାରୁ ଜାତ ହେଲା ବିରୂପାକ୍ଷ ।
ଏହା ନନ୍ଦନ ହୋଇଲା ନାମ ନରମାଳି
ନରମାଳି ସୁତ ହେଲା ମହା ବେଳାବଳୀ ।
ହରଜିତ ସରଜିତ ଯାଙ୍କ ଦୁଇ ସୁତ
ସାବଧାନେ ଶୁଣ ଏବେ ତାଙ୍କର ଚରିତ ।
ସାତ ସମୁଦ୍ର ସେମାନେ ପାରନ୍ତି ସେ ଡେଇଁ
ପୁଣ୍ୟବଳେ ମରଣ ଯେ ହେଲା ପରାଜୟୀ ।

ଜୟନ୍ତିକ ବୋଲି ହେଲା ଏହାଙ୍କର ସୁତ
ତାହାଙ୍କ ଅଂଶରୁ ମୁହିଁ ହୋଇଲଇଁ ଜାତ ।
ଧର୍ମବଳେ କରିପାରେ ମୁହିଁ ନବଯୁଗ
ସାଧଇ ମୁଁ ବହୁବିଦ୍ୟା ଯେତେ ଯୋଗମାର୍ଗ ।
ସମ୍ପୂର୍ଣ୍ଣ ରଜନୀ ଯହୁଁ ଦଶଦଣ୍ଡ ହେଲା
ମୋ ଅଙ୍ଗରୁ କନ୍ୟା ଏକ ଜନମ ଲଭିଲା ।
ବତ୍ରିଶ ଲକ୍ଷଣେ ସେହୁ ହେଲା ଗୁଣବତୀ
ଚୌରାଶୀ ଲକ୍ଷଣେ ଲକ୍ଷ୍ମୀ ପରାୟ ମୂରତି ।
ବଡ଼ ସୁନ୍ଦରୀ ସେ ପୁଣି ଅତି ସୁଲକ୍ଷଣୀ
ଜନ୍ମ ହୋଇଲା ମାତ୍ରକେ କଲା ବେଦଧ୍ୱନି ।
ଋକବେଦ ଅଧୟନ କରିଲା କୁମାରୀ
କ୍ଷୀରପାନ ନ କଲା ସେ ନୋହିଲା ଆହାରୀ ।
ଏହିରୂପେ ଲକ୍ଷବର୍ଷ ତାର ବହିଗଲା
ମନର ବାସନା ମୋତେ କିଛି ନ କହିଲା ।
ମହା ବ୍ରହ୍ମବାକ୍ୟ ବିନା ଇଚ୍ଛା ନାହିଁ ଆନେ
ଶୁକ୍ଳାମ୍ବର ପୁରୁଷକୁ ବାଞ୍ଛାକରେ ମନେ ।
ଦିନେ ପୁଚ୍ଛାକଲି ମୁହିଁ ଶୁଣ ମହାଧାୟି
ପୁରୁଷ ବାଞ୍ଛା କି ତୋର ଚିତ୍ତେ ନ ବଳଇ ।
ମୋହର ବଚନ ଶୁଣି ମୋତେ ସେ ବୋଲଇ
ଏ ତିନି ଭୁବନେ ମୋର ସ୍ୱାମୀ ଅଛି କାହିଁ ।
ମୋ ପାଇଁକି କରିନାହିଁ ତାହା ପ୍ରଜାପତି
ସ୍ୱାମୀକି ଦେଖିଲେ ମୁହିଁ ହେବି ରଜୋବତୀ ।
ଶ୍ରମ ପାଇ ଗଲି ତାର କଥା ଶୁଣିକରି
ପିତାମହଙ୍କ ନିକଟେ ଯଶୋବନ୍ତ ପୁରୀ ।
ପିତା ସନ୍ଧ୍ୟା ସୁମରଣା କରିବା ବେଳରେ
ଉଭା ହେଲି ଯାଇ ତାଙ୍କ ଆସ୍ଥାନ ତଳରେ ।
ସେହି ଭୁବନରେ ଜାଣ ନାହିଁ ଦିବାରାତି
ନିତ୍ୟକର୍ମ ସମାପନ କରି ବେଦପତି ।
ବକ୍ର ଭାବରେ ଚାହିଁଲେ ମୋ ପ୍ରତି କିଞ୍ଚିତ
ଆସ୍ଥାନ ତଳରେ ଥାଇ କଲି ପ୍ରଣିପାତ ।
ବିଧାତା ବୋଇଲେ ତୋର କିପାଁ ଆଗମନ
ମୁଁ ବୋଇଲି ଶୁଣ ପ୍ରଭୁ ହୋଇ ସାବଧାନ ।
ହେ ଜଗତପିତା ମୋର ଦୁହିତାଏ ଅଛି
ଶୁକ୍ଳାମ୍ବର ପୁରୁଷକୁ ସେ ନିତ୍ୟ ଧ୍ୟାଉଛି ।
ପିତା ବୋଇଲେ ଅଇଲୁ ଆମ୍ଭର ସମୀପ
ତୁନି ହୋଇଣ ରହିଲୁ ନ କହି ସ୍ୱରୂପ ।
ସତ୍ୟ ସପ୍ତଦଶ ଲକ୍ଷ ସସ୍ରବର୍ଷ ଗଲା
ତ୍ରେତାଯୁଗ ବାରଲକ୍ଷ ବର୍ଷ ଭୋଗକଲା ।
ଯେଉଁଦିନ ଦର୍ଶନ ତୁ କରିଲୁ ଆମ୍ଭଙ୍କୁ
ସେହିଦିନୁ ଦୁଇଯୁଗ ଭୋଗିଲୁ ବୃଥାକୁ ।

ତୋର କନ୍ୟା ପୁଣ୍ୟବଳ ଅଛଇ ବହୁତ
ଯାର ଭାର୍ଯ୍ୟା ହେବ ତାହା ଶୁଣ ଦେଇ ଚିତ୍ତ ।
ମଥୁରା ନଗର ଅଛି ଯମୁନା ତଟରେ
ଗୋପପୁର ବସିଅଛି ତାର ନିକଟରେ ।
ନନ୍ଦ ମହାଖୁଡ଼ ବୋଲି ଜଣେ ତହିଁ ଅଛି
ଅଶୀପଦ୍ମ ଘରେ ସେହୁ ରାଜନ ହୋଇଛି ।
ଷୋଳସହସ୍ର ଗୋପାଳମାନଙ୍କର ଗାଈ
ପାଞ୍ଚକ୍ରୋଶ ମାଡ଼ିଣ ଯେ ଚରନ୍ତି ସେ ଯାଇ ।
ପ୍ରଥମେ ତାହାର ଥିଲା ଆଦି ଯେ କପିଳା
କପିଳାର ତହୁଁ ଜାତ ହୋଇଲା ବଉଳା ।
ବଉଳାଠାରୁ ହୋଇଲା ନନ୍ଦିନୀ ଅବନୀ
ଅବନୀ ଦୁହିତା ହେଲା ପୁଣିହିଁ ଅଶ୍ୱିନୀ ।
ଅଶ୍ୱିନୀ ଗାଭୀ ଦୁହିତା ହୋଇଲା ସୁରଭୀ
ସୁରଭୀଠାରୁ ହୋଇଲା ବସା ମହାଦେବୀ ।
ରୈବତ କ୍ଷୀର ସମୁଦ୍ର ଚଉବିଂଶ ଯୁଣ
କ୍ଷୁଧାରେ ଏ ମହାଦେବୀ କରିଦେଲା ପାନ ।
ଏହାର ନନ୍ଦିନୀ ନାମ କୃତ୍ତିକା ହୁଅଇ
ଏହାର ତହୁଁ ଜନ୍ମିଲେ ଅଶୀପଦ୍ମ ଗାଈ ।
କୃତ୍ତିକା ଗାଭୀର ଜ୍ୟେଷ୍ଠ ଦୁହିତା ରୋହିଣୀ
ଯମୁନାର କୂଳେ ତୃଣ ଚରି ପିଏ ପାଣି ।
ରୋହିଣୀ ବୋଲି କରିଣ ଅଟେ ଯେଉଁ ଗାଈ
କ୍ଷୀର ସମୁଦ୍ର ଯାଠାରୁ ଉପୁଜି ଅଛଇ ।
ସେ ରୋହିଣୀ ଯମୁନାରେ ପାଣିପାନ ସ୍ଥଳେ
ଗୋଟିଏ ବିନ୍ଦୁଭାସିଣ ଆସିଲା ସେ ଜଳେ ।
ଶୁଦ୍ଧ ସ୍ଫଟିକ ପରାୟେ ଦିଶେ ଇନ୍ଦୁ ଜିଣି
ଦେବୀ ଗର୍ଭରେ ପଶିଲା ପିଉ ପିଉ ପାଣି ।
ଭ୍ରମେ କୁମର ରୋହିଣୀ ହୃଦୟ ମଣ୍ଡଳେ
ଧାଡ଼ିକାରେ ବାହାରିଲା ବାମନେତ୍ର ଡୋଳେ ।
ଶୁକ୍ଲାମ୍ବର ସେ ଶରୀର ସ୍ୱଚ୍ଛ ତେଜ ଜାଣି
ପୁତ୍ର ଦେଖି ମୂର୍ଚ୍ଛାଗତ ହୋଇଲା ରୋହିଣୀ ।
ଅତ୍ୟନ୍ତ ସୁନ୍ଦର ଶିରେ ଶୋଭା ସପ୍ତଫେଣୀ
ପୁତ୍ରପାଦ ଘାତେ ଦଲ ଦଳିତ ମେଦିନୀ ।
କୁମରର ବିକାଶିଲା ନିଜ ଡୋଳା ବେନି
ଦିନକର ନାଥଙ୍କର ତେଜ ହେଲା ହାନି ।
ନେତ୍ର କଟାକ୍ଷ ଦେଖିଣ ପଳାଇଲେ ଗାଈ
ଅଣାକାର ବଳଦ ଯେ ରଖେ ସୁତ ନେଇ ।
ଦକ୍ଷିଣ ନୟନ ସୂର୍ଯ୍ୟ ବାମ ନେତ୍ର ଶଶୀ
ବାଳୁତର ବେନିନେତ୍ରେ ବେନି ତେଜ ଦିଶି ।
ଗୋରୁ ବିହରିବା ଦେଖି ଦଉଡ଼ଇ ନନ୍ଦ
ଗୃହାଳେ କୁମର ଦେଖି ହୋଇଲା ଆନନ୍ଦ ।
ବିଚାରଇ ଅଦଭୂତେ କିଏ ପ୍ରସବିଲା
ରୋହିଣୀ ମୂର୍ଚ୍ଛିତ ହୋଇ ପଡ଼ିଛି ଦେଖିଲା ।
ଆକାଶର ବାଣୀ ତାକୁ ଶୁଭେ ଘନ ଘନ
ପ୍ରତିପାଳ ଆହେ ନନ୍ଦ ନୁହେଁ କା ନନ୍ଦନ ।
ଅଦଭୂତ ବାଣୀ ତହୁଁ ଶୁଣେ ନନ୍ଦଖୁଡ଼
ଇଚ୍ଛାକରି ଧାଇଁଲା ସେ କରିବାକୁ କ୍ରୋଡ଼ ।
ସେ ବାଳକର ଗୁରୁତା ଜିଣି ମନ୍ଦରକୁ
କାହାର ଦର୍ପ ଅଛଇ ତାକୁ ତୋଳିବାକୁ ।
ନନ୍ଦନ ଚାହିଁ ଦିଅନ୍ତେ ନନ୍ଦ ହେଲା ମୂର୍ଚ୍ଛା
ଉଠି ବସିଲା କୁମର ଆପଣାର ଇଚ୍ଛା ।
ଅମୃତ ଦୃଷ୍ଟିରେ ପୁଣି ଚାହେଁ ପୁତ୍ରମଣି
ସାଷ୍ଟାମ ପାଇଲା ତହୁଁ ନନ୍ଦ ନୃପମଣି ।
ଗୋଗୋଷ୍ଠେ କ୍ଷେପଇ ସେହୁ ନ ଯାଇ କା ଘରେ
ତା ନିକଟେ ଖଟିଥାଏ ନନ୍ଦ ଯତନରେ ।
ରୋହିଣୀ ବୋଲେ ସଙ୍କଟୁ କଲୁ ପରିତ୍ରାଣ
ତୋର ନାମ ଆଜିଠାରୁ ହେଉ ସଙ୍କର୍ଷଣ ।
ନନ୍ଦ ବୋଇଲା ତୁ ମହାବଳ ଯେ ଉତ୍ତମ
ଗୋଗୋଷ୍ଠର ମଧ୍ୟେ ତୋର ନାମ ବଳରାମ ।
ଯଶୋଦା ବୋଲେ ତୋ ନୀଳଜୀମୂତ ଶରୀର
ମୁହିଁ ନାମ ଦେଲି ତୁହି ସ୍ୱୟଂ ନୀଳାମ୍ବର ।
ଗୋପାଳୁଣୀ ବୋଲେ ପୁଣ୍ୟ ଅଟେ ତୋ ଜନମ
ତେଣୁ ତୋର ନାମ ଦେଲୁ କାମପାଳ ନାମ ।
ବଳାନ୍ତକ ବୋଲିକରି ଏକ ନୃପବର
ଲଙ୍ଗଳ ସହ ମିଳିଲା ସେଠାରେ କୁମର ।
ପଞ୍ଚବକ୍ର ଦେଖି ସେହି ଲଙ୍ଗଳ ଗଠନ
ତାକୁ ବଳରାମ ନେଲେ ହରଷ ହୋଇଣ ।
ନୃସିଂହ ଦୁର୍ଭାର ବୋଲି ଏକଗୋଟି ଗିରି
ତାକୁ ଉପାଡ଼ିଲେ ରାମ କିଞ୍ଚିତେ ବିଚାରି ।
ବାମେ ଲଙ୍ଗଳ ଡାହାଣ ହସ୍ତେ ସଉନନ୍ଦ
ଗୋଗୋଷ୍ଠେ ଖେଳନ୍ତି ଦେବ ହୋଇଣ ଆନନ୍ଦ
ଏବେ ରଇବତ ବେଗେ କର ତୁ ଗମନ
ତାକୁ ତୋ ରେବତୀ କନ୍ୟା କରାଅ ପ୍ରଦାନ ।
ତହୁଁ ମୁଁ ବୋଇଲି ଦେବ ଏ ବଡ଼ ବିଚିତ୍ର
ଅଦଭୂତେ କେଉଁଠାରେ ଉପୁଜିଲା ପୁତ୍ର ।
ରୋହିଣୀକୁ ଆଦେଶ ବା ହୋଇଲା କେମନ୍ତେ
କାମପାଳ ଉତପତ୍ତି କହିଦେବା ମୋତେ ।
ଶୁଣ ବୈବସ୍ୱତ ମନୁ କହନ୍ତି ବିରଞ୍ଚି
ନିରାକାର ବାକ୍ୟ ଯାହା ପୂର୍ବେ ଥିଲି ସଞ୍ଚି ।
କୃଷ୍ଣ ଯେବେ ଉତପତ୍ତି ହେବେ ନରରୂପେ
ଚିହ୍ନି ନ ପାରିବେ ତାଙ୍କୁ ସେହି କଉଣପେ ।

ମନୁଷ୍ୟମାନେ ଚିହ୍ନିବେ କିଞ୍ଚିତ ପ୍ରକାରେ
ନାରାୟଣ ବିନାଶିବେ ତାଙ୍କୁ ଉପାୟରେ ।
ନିରାକାର ବୋଲି ବୋଲୁ ଯେବଣ ପୁରୁଷ
ସେହି ବିନ୍ଦୁ ନିରାକାର ପୁରୁଷଙ୍କ ଅଂଶ ।
ନଈରେ ସେ ବିନ୍ଦୁ ହେଲା ଫେଣର ସ୍ୱଭାବ
ସେ ଫେଣରୁ ଜାତ ପୁଣି ହୋଇଲେକ ଡିମ୍ବ ।
ସେ ଡିମ୍ବ ହେଲା ଅବ୍ୟୟ ପୁଣି ନିରାକାର
ଅବିଶ୍ରାମରେ କ୍ଷେପିଲା ଜଳର ଭିତର ।
କାଳ ଅନୁରୂପେ ଯୁଗ କରେ ଉଦ୍ଧାରଣ
ନାନା ରୂପ ପୃଥିବୀରେ ଧରେ କ୍ଷଣ କ୍ଷଣ ।
ସେହି ନିରାକାର ଡିମ୍ବ ଜଳେ ଖେଳୁଥିଲା
ସେ ଆଦି ଶକତି ଜଳେ ମୁଖ ବୁଡ଼ାଇଲା ।
ସେହିଦିନ ରୋହିଣୀର ଗର୍ଭେ ସମ୍ଭାଇଲା
ତହୁଁ ଶୁକ୍ଳାମ୍ବର ବିଷ୍ଣୁ ନାମକୁ ବହିଲା ।
ଏହି ଅନାଦି ଦୁହିତା ନାମ ଯେ ରେବତୀ
ମହାମାୟା ଅବତାର ଅନାଦି ଶକତି ।
ସେ ନିରାକାର ପ୍ରଭୁର ଉଦରୁ ତାହାର
ତହୁଁ ଅବତାର ବ୍ରହ୍ମା ବିଷ୍ଣୁ ମହେଶ୍ୱର ।
ସେହି ଅନାଦି ପୁରୁଷ ଯାହା କରେ ଇଚ୍ଛା
ଜାତ ଅନ୍ତ କରଇ ସେ ତାର ମନୋବାଞ୍ଛା ।
ମାତା ହୋଇ ପଛେ ପୁଣି ସେହୁ ଭାର୍ଯ୍ୟାହୁଏ
କ୍ଷଣକେ ବାଳିକା କ୍ଷଣେ ଅଗ୍ନିରୂପ ବହେ ।
ଅନାଦି ମାହେଶ୍ୱରୀ ସେ ଅଟେ ନିରଞ୍ଜନୀ
ସୁଖ ଭୋଗୁ ଶୁକ୍ଳାମ୍ବର ପୁରୁଷକୁ ଘେନି ।
ବଲ୍ଲଭ ପାଇଲା ସେହୁ ତାର ଇଚ୍ଛାମତେ
ସଙ୍କର୍ଷଣେ ଦାନକର ତୋ କନ୍ୟା ତୁରିତେ ।
ମୁଁ ବୋଇଲି ନାଗମାନେ ଅଛନ୍ତି ତା ମାଥେ
ଫୁଫୁକାର ଶବଦକୁ କରନ୍ତି ନିରତେ ।
ମୋହର ନନ୍ଦିନୀ ଅଟେ ଅତ୍ୟନ୍ତ ବାଳିକା
ତେଣୁ କନ୍ୟା ଦେବାକୁ ମୁଁ କରୁଅଛି ଶଙ୍କା ।
ଶୁଣିଣ ମନୁ ବିଧାତା କହନ୍ତି ବୁଝାଇ
ସେ ଫଣୀମାନଙ୍କୁ ଚିନ୍ତା କରୁ କାହିଁପାଇଁ ।
ବିରାଳ ଚନ୍ଦ୍ରକେଶ୍ୱର କେତେ ହେଲା ଅବ୍ଦ
ଶତମନୁ ତହୁଁ ସଞ୍ଚି ହୋଇଲେ ଯୁଗାବ୍ଦ ।
ଏହାଙ୍କର ଉତପତ୍ତି କେ ପାରିବ କହି
ସେ ଶତମନୁ ପୁରୁଷ ହେଲେ ଜଳଶାୟୀ ।
ସମସ୍ତେ ଗଲେଣି ସେହି ସାର ବଇକୁଣ୍ଠେ
ଭେଟିଲେ ପାତାଳବାସୀମାନଙ୍କ ନିକଟେ ।
ପ୍ରଳୟକାଳରେ ଦେବେ ହୋଇଯାନ୍ତେ ଲୀନ
ସପ୍ତଲୋକ ପ୍ରାଣୀ କଲେ ତା ସଙ୍ଗେ ଗମନ ।
ସକଳ ଲୀନ ହୁଅନ୍ତେ ଜଳ ଥାଏ ରହି
ଯେ ପରମ ନିରାକୁଳ ଥାଏ ଶୂନ୍ୟଦେହୀ ।
ଯେଉଁ ପୁର ଅଣାକାର ପୁରୁଷରେ ଶ୍ରେଷ୍ଠ
ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ପଶିବାକୁ କଷ୍ଟ ।
ଶୁଣ ତୁହି ଚଇତନ ନୀଳାମ୍ବର କଥା
ସେହି ପୁର ଦେଖିବାକୁ ସେ ହେଲା ଶକତା ।
କୁମ୍ଭକ ନାମେ ଗରୁଡ଼ ସେଠାରେ ଅଛଇ
ଅଶୀଯୋଜନ ବିସ୍ତାର ପକ୍ଷ ତା ଅଟଇ ।
ସେହି ଗରୁଡ଼ ବାହାର ହେଲା ଯେତେବେଳେ
ଭୟେ ପଶିଲେ ସକଳେ ପାତାଳର ଜଳେ ।
ସେ ନିରଞ୍ଜନ ପୁରୁଷ ତହିଁ ଶୋଇକରି
ଶରଣ ରକ୍ଷଣ ବୋଲି ଡାକଇ ଫୁକାରି ।
ସପତ ମନୁ ସର୍ପକୁ ଦେଖି ନୀଳାମ୍ବର
ବୋଇଲେ ମୋପୁଣ୍ୟେ ବିଜେକଲେ ଏତେଦୂର
ମୋତେ କଟାଳ କରୁଛି ବିନତା କୁମର
ଶରଣ ରକ୍ଷକ ନାଥ ବାରେ ଦୟାକର ।
ଶୁଣିଣ ପରମାନନ୍ଦ ମନେ ଦୟାକଲେ
ସେ ସପତ ମନୁସ୍ୱର୍ଗ କାୟା ଗୁପ୍ତକଲେ ।
ସପତନାଥ ଉଦ୍ଧାର କଲେ କାମପାଣି
ତେଣୁ ମସ୍ତକେ ରହିଲେ ସେ ସପତଫଣୀ ।
ବଳରାମଙ୍କ ଶରୀର ଅଟଇ ଅଭିନ୍ନ
ଦେଖିଣ ଶାନ୍ତି ଭଜିଲା ବିନତା ନନ୍ଦନ ।
ସେ ସପ୍ତ ମନୁ ରହିଲେ ନୀଳାମ୍ବର ଦେହେ
ନୁହନ୍ତି ସେ ଭିନ୍ନାଭିନ୍ନ ସର୍ବେ ଏକ ପ୍ରାୟେ ।
ତୁ ବଡ଼ ଭାଗ୍ୟ ଅର୍ଜିଛୁ ଶୁଣରେ ରାଜନ
ତୋ କନ୍ୟା ବଳରାମଙ୍କୁ କର ସଂପ୍ରଦାନ ।
ପୁଣି ବିନୟ ଭାବରେ ପିତାଙ୍କୁ ପୁଚ୍ଛଇ
କାମପାଳ ପିତାମାତା କିଏ ସେ ଅଟଇ ।
ଧାତା ବୋଇଲେ ପୂର୍ବରୁ ପାଇଛି ସେ ବର
ତେଣୁ ନନ୍ଦ ଯଶୋଦା ଯେ ପିତା ମାତା ତାର
ଆବର ପୁଚ୍ଛିଲେ ତହିଁ ପୂର୍ବେ ଭେଟ କାହିଁ
ଏ କଥାରେ ସାକ୍ଷୀ ମୋତେ କୁହ ଦେବସାଇଁ
ଶୁଣି ବିଧାତା ବୋଇଲେ ଶୁଣରେ ରାଜନ
ଯାହା ପୁଚ୍ଛିଲେ କହୁଛି ତାର ବିବରଣ ।
ଶ୍ରୀରାମ ମୂରତି ହେଲେ ସପ୍ତମାବତାରେ
ଜନମ ଲଭିଲେ ଯାଇ ଦଶରଥ ଘରେ ।
ରାବଣ ମାରିବା ପାଇଁ ଦେବ ରଘୁନାଥ
ଭାଇ ଭାର୍ଯ୍ୟା ସଙ୍ଗେ ଘେନି ଚଳିଲେ ବନସ୍ତ ।
ଦଣ୍ଡକାରଣ୍ୟେ ରହିଲେ ତେର ବର୍ଷଯାଏ
ଜାନକୀଙ୍କ ହରିନେଲା ବିଶ୍ରବା ତନୟେ ।

ଶ୍ରୀରାମଚନ୍ଦ୍ରଙ୍କୁ ଭୟ ନ କଲା ମନରେ
ସୀତା ଗୋପ୍ୟକଲା ଲଙ୍କା ଅଶୋକ ବନରେ
ସୀତା ଖୋଜି ଖୋଜି ରାମ କ୍ଷୁଧାର୍ତ୍ତ ହୋଇଲେ
ଏକ ଗୋରୁ ପଲ ଭେଟ ଭାଇ କରାଇଲେ ।
କ୍ଷୁଧାର୍ତ୍ତ ବୋଲି ମାଗନ୍ତେ ଯାଇ ଦୁଧସର
ମାର ବୋଲି ଲକ୍ଷ୍ମଣଙ୍କୁ ଧଇଲେ ସତ୍ୱର ।
ଦଇବେ ଗୋଟିଏ ଅନ୍ଧ ଥିଲା ସେଠାବରେ
ବୋଲେ ଦୁଧ ନେବୁ ଧନ ଅଛି କି ସଙ୍ଗରେ ।
ମହା ଯାଗୁଁ ଜାତ ହେଲା ଏ ଅମୂଲ୍ୟ ମୁଦି
ତାକୁ ପୂର୍ବରୁ ସଞ୍ଚିତ କରିଥିଲେ ବିଧି ।
ଲକ୍ଷ୍ମଣ ବୋଲେ ଗୋପାଳ ଘେନ ଏହି ମୁଦି
ଯାକୁ ଘେନି ଦୁଗ୍ଧ ଦିଅ ଏକ ଚଉପଦୀ ।
ମୁଦି ଘେନି ଏକ ପୁଟି ଦୁଗ୍ଧ ତାଙ୍କୁ ଦେଲେ
ରଘୁନାଥ ପାନ କରି ସନ୍ତୋଷ ହୋଇଲେ ।
ପଞ୍ଚଗୋଟି ରତ୍ନ ସେହି ମୁଦିରେ ଲାଗିଛି
ମୂର୍ଖ ଗୋପାଳ ସେ କଥା ନ ଜାଣନ୍ତି କିଛି ।
ନାକରେ ସୁଙ୍ଘନ୍ତି ତାକୁ ନ ମିଳଇ ଗନ୍ଧ
ଚୋବାଇ ବୋଲନ୍ତି ଏତେ ନ ମିଳେ ଆସ୍ୱଦ ।
କର୍ଣ୍ଣ କଡିରେ ତାହାକୁ ନେଇ ବଜାଇଲେ
ଏଥେ ଶବ୍ଦ ନାହିଁ ବୋଲି ଫୋପଡ଼ାଇ ଦେଲେ
କେ ବୋଇଲା ତା ଶରୀର ଦିଶଇ ନିର୍ମଳ
କେ ବୋଲେ ପାଣିକି ଫିଙ୍ଗ ଏଥେ କେଉଁଫଳ
ଯଶୋବନ୍ତୀ ନାମେ ଅନ୍ଧ ଗୋପାଳର ନାରୀ
ତାହାଙ୍କୁ ରଖିଲା ନେଇ ଅତି ଯତ୍ନ କରି ।
ଦୁଗ୍ଧପାନ କରି ରାମ ହେଲେ ସୁସ୍ଥଦେହ
ଅମୂଲ୍ୟ ରତ୍ନ ମୁଦିରେ ନାହିଁ କିଛି ସ୍ନେହ ।
ଗୋପାଳ ଜାତିଟା ହୀନ ଲକ୍ଷ୍ମଣ ବୋଇଲେ
କ୍ଷୀରପୁଟି ପାଇଁ ମହାମର୍ଦ୍ଧ ମୁଦି ନେଲେ ।
ଶ୍ରୀରାମ ବୋଇଲେ ମୁଦି ଯାଉ ତୁ ନ କହ
କ୍ଷୀର ଟୋପାକର ପାଇଁ ସୁସ୍ଥ ହେଲ ଦେହ ।
ଲକ୍ଷ୍ମଣଙ୍କୁ ବୁଝାଇଣ କରିଲେ ଗମନ
ସେ ରତ୍ନମୁଦିର କଥା ନ ପକାଅ ମନ ।
ରାବଣକୁ ବଧ କରି ବାହୁଡ଼ିବା କାଳେ
ପୁଣିହିଁ ଭେଟିଲେ ରାମ ସେ ସବୁ ଗୋପାଳେ
ମାଳଞ୍ଚ ନଦୀରେ ରାମ ସନ୍ଧ୍ୟା ଯେ କରନ୍ତି
ଲକ୍ଷ୍ମଣ ବୋଇଲେ ସୁଗ୍ରୀବର ପ୍ରଜାପତି ।
କପିବଳ ଘେନି ତୁମ୍ଭେ ଆହେ ନୃପରାଣ
ଗୋଧନ ପଲକୁ ବେଗେ ଅଡ଼ାଇଣ ଆଣ ।
ଲକ୍ଷ୍ମଣ ବାକ୍ୟେ ସୁଗ୍ରୀବେ କପିବଳ ଘେନି
ଗୋରୁପଲକୁ ବେଢ଼ିଲେ କିଛି ହିଁ ନ ମାନି ।
ଗୋଡ଼ାନ୍ତି ଗୋପାଳମାନେ ବହୁ ଦ୍ୱନ୍ଦ୍ୱ କରି
କି ଗୋଳ ବୋଲି ପୁଛିଲେ ରାବଣ ବଇରୀ ।
ଲକ୍ଷ୍ମଣ ବୋଇଲେ ଅନ୍ଧ ଗୋପାଳର ପଲ
ଦୁଧ ଦେଇ ନେଇଥିଲା ମୁଦି ମହାମୂଲ୍ୟ ।
ତା ଗୋରୁପଲ ସୁଗ୍ରୀବ ଆଣନ୍ତେ ଅଡ଼ାଇ
ସେହି ଗୋଳ ଶୁଭୁଅଛି ଆହେ ସୀତାସାଇଁ ।
ଶ୍ରୀରାମ ହସିଲେ ଶୁଣି ଲକ୍ଷ୍ମଣ ବଚନ
ବୋଇଲେ ଉପକାରୀକି କିପାଁ ଏ କଷଣ ।
କ୍ଷୀର ଠୋଲାଏ ଯଦ୍ୟପି ସେ ଦେଇ ନ ଥାନ୍ତା
ଆଉ କି ଜୀବନ ମୋର ଏତେକାଳ ଥାନ୍ତା ।
ଆରେ ବାବୁ ହନୁମନ୍ତ ଡାକ ଗୋପାଳଙ୍କୁ
ସୁଖେ ଥାନ୍ତୁ ନେଇଣ ସେ ଗୋଧନପଲକୁ ।
ସ୍ୱାମୀଙ୍କ ବଚନ ଶୁଣି ଚଳିଲା ମାରୁତି
ଉଭୟ କୁଳରେ ଦ୍ୱନ୍ଦ୍ୱ କରାଇଲା ଶାନ୍ତି ।
ପୁଣି ଅନ୍ଧ ଗଉଡ଼କୁ ବୋଲଇ ମାରୁତି
ରାମଦର୍ଶନ କରିବୁ ଆସ ଶୀଘ୍ର ଗତି ।
କେବଣ ଶ୍ରୀରାମ ବୋଲି ବୋଲଇ ଗଉଡ଼
ହନୁ ବୋଇଲେ କହୁଛି ଶୁଣ ଆରେ ମୂଢ଼ ।
ଯେ ଶ୍ରୀରାମ ସପ୍ତଶାଳା କରିଣ ଛେଦନ
ଏକ କାଣ୍ଡକରେ ବାଳୀ ଯେ କଲେ ନିଧନ ।
ସେ ଶ୍ରୀରାମ ଦଶରଥ ରାଜାଙ୍କର ସୁତ
ଯେ ଶ୍ରୀରାମ ଲଙ୍କା ଯାଇ ମାଇଲେ ଦଇତ ।
ଅନ୍ଧ ଗୋପାଳ ସାନନ୍ଦ ହୋଇଲାକ ଶୁଣି
ଶତଭାର ସଜାଡ଼ିଣ ଅଧାମ ଲବଣୀ ।
ହନୁକର ଧରି ଚାଲେ ସେ ଗୋପାଳ ଅନ୍ଧ
ପାଶେ ବସି ବୋଲେ ଦେଖା ମୋତେ ରାମଚନ୍ଦ୍ର
ହନୁ ବୋଇଲେ ଅନ୍ଧ ତୁ ନମସ୍କାର କର
ଦୟା କରିଛନ୍ତି ତୋତେ ଶ୍ରୀକୋଦଣ୍ଡଧର ।
ଅନ୍ଧ ବୋଇଲା ତୁ ସ୍ୱାମୀ ରକ୍ଷାକରୁ ସୃଷ୍ଟି
ତିନିଲୋକରେ ବନ୍ଦିତ ତୋର ପାଦଗୋଟି ।
ସୁରବର ସୁନ୍ଦର ତୁ ଜଗତ ବତ୍ସଳ
ସଦା ପ୍ରସନ୍ନ ତୋହର ଶ୍ରୀମୁଖ କମଳ ।
ରାଜୀବ ଲୋଚନ ପ୍ରଭୁ ଶ୍ରୀରାମ ଗୋବିନ୍ଦ
ସହସ୍ର ପ୍ରଣାମ କରେ ତୋ ପାଦରେ ଅନ୍ଧ ।
ଦୁଃଖୀଜନ ପ୍ରାଣବନ୍ଧୁ କେଉଁଠାରେ ଅଛୁ
ଏହା କହି ଦରାଣ୍ଡନ୍ତେ ଫିଟିଗଲା ଚକ୍ଷୁ ।
ସେ ଗୋପାଳ କେତେଯୁଗ ଅନ୍ଧ ହୋଇଥିଲା
ଶ୍ରୀରାମଚନ୍ଦ୍ର ଦର୍ଶନେ ତା ନେତ୍ର ଫିଟିଲା ।
ପଞ୍ଚସ୍ତରି ଗଣ୍ଡାଯୁଗ ପରେ ଚକ୍ଷୁପାଏ
କରୁଣାକର ଶ୍ରୀନାଥ ହୋନ୍ତେ ବରୋଦୟେ ।

ତ୍ରୈଲୋକ୍ୟ ବନ୍ଦନ ନାଥ ଯେଉଁ ନାମ ଗୋଟି
ତାଙ୍କ ଦରଶନେ ଅନ୍ଧ ଚକ୍ଷୁ ଗଲା ଫିଟି ।
ଶତ ସହସ୍ର ପ୍ରଣମି ହୋଇଲା ଗୋପାଳ
ଦେଖଇ ରାମ ଲକ୍ଷ୍ମଣ ଋକ୍ଷ କପିବଳ ।
ଅନ୍ଧ ନେତ୍ର ପ୍ରାପ୍ତ ହେଲେ ଯେପରି ଆନନ୍ଦ
ସେ ଆନନ୍ଦ ଦିଅ ହୃଦେ ବସି ହେ ଗୋବିନ୍ଦ ।
ଶ୍ରୀରାମ ବୋଇଲେ ସାଧୁ ଜୀବନ ତୋହର
ଅକ୍ଷୟ ଅବତାର ତୁ ପ୍ରାଣବନ୍ଧୁ ମୋର ।
ତୋ ଉପକାର ଘେନିଣ ମୁହିଁ ହଦଗତେ
ଏକ ଚଉପଦୀ କ୍ଷୀର ଦେଲୁ ଯେଣୁ ମୋତେ ।
ଆଜିଠାରୁ ହେଲୁ ତୁହି ମୋ ଧର୍ମ ପିଅର
ତୋ ଘରଣୀ ହେଲେ ଜାଣ ଜନନୀ ମୋହର
ତୋର କ୍ଷୀର ପାନ କରି ହେଲା ମୋର ବଳ
ସକ୍ଷମ ହୋଇ ଛେଦିଲୁ ବୃକ୍ଷ ସପ୍ତଶାଳ ।
ଲକ୍ଷେ ସିଂହ ପରାକ୍ରମ ଯେଉଁ ବାଳୀବୀର
ତାହାକୁ ମାଇଲି ମୁହିଁ ପୁଣ୍ୟବଳେ ତୋର ।
ତୋର ପ୍ରସାଦେ ବାନ୍ଧିଲି ଯାଇଣ ବାରିଧି
ତୋ ପ୍ରସାଦେ ରକ୍ଷବଳ ପକାଇଲି ଛେଦି ।
ତୋ ପ୍ରସାଦେ ପ୍ରାପ୍ତହେଲା ମୋର ମହାସତୀ
ତୋ ପ୍ରସାଦେ ଯାଉଅଛି ହୋଇବି ନୃପତି ।
କହୁଁ କହୁଁ କମ୍ପମାନ ହୋଇଲା ଶରୀର
ଇଚ୍ଛା କରନ୍ତି କରିବା ଆମ୍ଭେ ନମସ୍କାର ।
ଏହି କଥା ମନମଧ୍ୟେ ବିଚାର କରନ୍ତେ
ଆକାଶ ବାଣୀ ହୋଇଲା ତାଙ୍କୁ ଏହିମତେ ।
ତୁମ୍ଭେ ଯେବେ ନମସ୍କାର କରିବ ସଂପ୍ରତି
ପିତାମହ ସମାନରେ ହୋଇବ ସେ ଯତି ।
କହ୍ନା ଅବତାରେ ତୁମ୍ଭେ ଦ୍ୱାପର ଯୁଗରେ
ନନ୍ଦ ଖୁଡ଼ ଏହା ନାମ ହୋଇବ ଗୋପରେ ।
କଂସ ଡରେ ବସୁଦେବ ପାଳଟି ଭେଟିବ
ଗୋପାଳ ମେଳେ ଗୋଗୋଷ୍ଠେ ଥାଇଣ ବଢ଼ିବ
ଏ ଅନ୍ଧ ଗଉଡ଼ ତେବେ ହେବ ତୁମ୍ଭ ପିତା
ଏହା ପତ୍ନୀ ଯଶୋବନ୍ତୀ ଜାଣ ହେବ ମାତା ।
କ୍ଷୀର ଲବଣୀ ଅଧାମ ଖାଇ ହେବ ତୃପ୍ତି
କିପାଁ ତୁମ୍ଭେ ଦଣ୍ଡବତ ଇଚ୍ଛୁଛ ସଂପ୍ରତି ।
ତୁମ୍ଭେ ବୋଇଲ କା ପାଇଁ ଉଦ୍ଧାରିଲ ସୀତା
ସର୍ବଦା ରମିବ ଷୋଳସହସ୍ର ବନିତା ।
ମୋତେ ଏ କଥା କହିଲେ ଜଗତର ଗୁରୁ
ଏତେ କଥା ଶୁଣିଲୁ ତ ସ୍ୱର୍ଗୁ ଆସିବାରୁ ।
ରୁଦ୍ର ଅବତାର ହେଲେ ସଙ୍କର୍ଷଣ ରୂପେ
ତୁହି ଯାହା ପଚାରିଲୁ କହିଲି ସ୍ୱରୂପେ ।
ତାହା ଶୁଣି ଆନନ୍ଦିତ ହୋଇଲଇଁ ମୁହିଁ
ସ୍ୱର୍ଗ ତେଜି ନିଜ ରାଜ୍ୟେ ଆସେ ବେଗ ହୋଇ
ରେବତୀକି ସଙ୍ଗେ ଘେନି ଚଳିଲି ଗୋଗୋଷ୍ଠେ
ଦେଖିଲି ସେ ଗୋପପୁରେ ଯମୁନା ନିକଟେ ।
ପାଞ୍ଚକ୍ରୋଶ ଆୟତନ ଅଟେ ସେ ନଗର
ଗୋପାଳେ ଗନ୍ଧର୍ବ ପ୍ରାୟ କରନ୍ତି ବିହାର ।
ବଳରାମଙ୍କୁ ଦେଖିଣ କଲି ତୋଷମନ
ତାଙ୍କୁ ଦୁହିତାକୁ ଶୀଘ୍ର କରିଲି ପ୍ରଦାନ ।
କନ୍ୟା ସମର୍ପଣ କଲି ଏହି ପର୍ବତରେ
କାଳ ବଞ୍ଚାଉଛି ମୁହିଁ କାଳର କ୍ରମରେ ।
ରେବତୀର ପିତା ମୁହିଁ ରାମଙ୍କ ଶ୍ୱଶୁର
ଏହା ଶୁଣିଣ ବିନୟ ହେଲେ ଯୁଧିଷ୍ଠିର ।
ଶ୍ରୀ ଶାରଳାଦାସ କହେ ଏ ବନପର୍ବରେ
ପଢ଼ି ଶୁଣି ପାପ ନାଶ ସର୍ବ ନାରୀ ନରେ ।



## ଭୀମଙ୍କର ବନ ବିହାର ଓ କାଳଞ୍ଜୀ ରାକ୍ଷସୀ ସହିତ ଗାନ୍ଧର୍ବ ବିବାହ

ଏଥୁଅନ୍ତେ ବୈବସ୍ୱତ ମନୁ ଦଣ୍ଡଧର
ଅଗସ୍ତି ମୁନିଙ୍କ ପାଦେ କରି ନମସ୍କାର ।
ବୋଇଲେ ବଳରାମଙ୍କ ବିବାହ ଶୁଣିଲି
ଏ ଅପୂର୍ବ କଥାରେ ମୁଁ ଆନନ୍ଦିତ ହେଲି ।
ଏ ପରେ ପାଣ୍ଡବମାନେ କିସ କଲେ କାହିଁ
ସେହି କଥା ଶୁଣିବାକୁ ମାନସ ବଳଇ ।
ରାଜା ଭକ୍ତିଭାବ ଦେଖି ବୋଇଲେ ଅଗସ୍ତି
ହେ ରାଜା ଶ୍ରବଣ କର ସ୍ଥିର କରି ମତି ।
ରୈବତ ପର୍ବତ ତେଜି ଗଲେ ପଞ୍ଚବୀରେ
ପ୍ରବେଶ ହୋଇଲେ ଯାଇ କାଳେୟ ବନରେ ।
ସେ ବନରେ ଧବଳାଙ୍ଗୀ ରେବା ନାମେ ନଈ
ଦକ୍ଷିଣେ ଶରଣଭଦ୍ରା ନଦୀରେ ମିଶଇ ।
କାଳିନ୍ଦୀ ନଦୀର ତୀରେ କାଳବର ବନ
କାଳଦମନର ଥିଲା ଏଥେଁ ବାସସ୍ଥାନ ।
କାଳିନ୍ଦୀ ବୋଲିଣ ଥିଲା ଏକ ଅପସରୀ
କାଳଚକ୍ର ବିପ୍ରର ସେ ହେଲା ସେବାକାରୀ ।
କୋପେ ତାକୁ ଶାପଦେଲେ ସହସ୍ର ନୟନ
ପରପୁଂସ ସେବାକରି ଯାଉ ତୋର ଦିନ ।
ତା ବଂଶେ ଜାତ କାଳଞ୍ଜି ନାମେ ଅସୁରୁଣୀ
କାଳବର ପର୍ବତରେ ଥିଲା ସେହୁ ପୁଣି ।
ଭୀମସେନ ଯାଉଅଛି ବନ ଭ୍ରମଣକୁ
ଦେଖଇ ଯୁବତୀ ମାର ଅବତାର ତାକୁ ।

ଅନଙ୍ଗର ଅବତାର ତାହାକୁ ଦିଶନ୍ତେ
ସ୍ୱାମୀ କରିବା ନିମନ୍ତେ ବଳିଲା ତା ଚିତ୍ତେ ।
ତହୁଁ ସର୍ବ ଅଳଙ୍କାରେ ହୋଇଲା ଭୂଷଣ
ମୋହିଲା ପବନସୁତ ମନକୁ ଯାଇଣ ।
ଦେଖି ଭୀମ ପଚାରିଲା ତୁ କାହାର ବାମା
ପ୍ରତି ତେଜ ବିକାଶୁଛୁ ତୁହି ତ ସୁଷମା ।
ଏ ରୂପ ଯୌବନ ଘେନି କିପାଁ ବନବାସେ
କାହିଁକି ତୁ ତପ କରୁ କିସ ଅଭିଳାଷେ ।
କାମିନୀ ବୋଲେ ମହିଷା ପୁତ୍ର ମୟେମର
ତାର ପୁତ୍ର ଜଟାସୁର କୁମାରୀ ମୁଁ ତାର ।
କେଶୀ ଦାନବ ଅଟଇ ମୋର ବଡ଼ଭାଇ
ବିଭା ନୋହିଲଇଁ ଇଚ୍ଛାବରକୁ ନ ପାଇ ।
ତୋତେ ଦେଖିକରି ମୋର ବଳୁଅଛି ମତି
ମୁହିଁ ହେବି ତୋର ନାରୀ ତୁ ମୋହର ପତି ।
ଚାଲ ଆହେ ସ୍ୱାମୀ ତୋର କୁଟୀରକୁ ଯିବା
ମୋ ଅନୁମତିରେ ନାଥ ମୋତେ ହୁଅ ବିଭା ।
ତାହାଶୁଣି ଭୀମ ବୋଲେ ଶୁଣ ଗୋ ସୁନ୍ଦରୀ
ମୋହର ଭାର୍ଯ୍ୟା ଅଛଇ ଦ୍ରୁପଦ କୁମାରୀ ।
ତା ଛଡ଼ା ଆନରେ ମୋର ନ ବଳଇ ମତି
ମୋର ଆଶା ତ୍ୟାଗକରି ଖୋଜ ଅନ୍ୟ ପତି ।
ଅସୁରୀକି ଏହା କହି କରିଲେ ଗମନ
ସେ ଅସୁରୀ ପଛେ ପଛେ ହେଲା ଧାବମାନ ।
ଯୁଧିଷ୍ଠିର ଯାଜ୍ଞସେନୀ ଛନ୍ତି ଆଶ୍ରମରେ
ଭୀମ ପ୍ରବେଶ ହୋଇଲେ ଆସି ସନ୍ନିଧିରେ ।
ପଛେ ଗୋଡ଼ାଇଛି ଜଟାସୁରର ଦୁହିତା
ଯୁଧିଷ୍ଠି ବୋଇଲେ ବାବୁ ଏ କାହା ବନିତା ।
ଭୀମ ବୋଲେ ଏ ବନର ଏ ଅଧିକାରିଣୀ
ଜଟାସୁର ଦାନବର ଅଟଇ ଦୁଲଣୀ ।
ଏ କନ୍ୟା ଗୋଟିକ ନାମ ଅଟଇ କାଳଞ୍ଜୀ
ମୋତେ ଦେଖି ମୋର ସଙ୍ଗେ ଗୋଡ଼ାଇ ଆସିଛି
ଧର୍ମ ବୋଇଲେ ଯଦ୍ୟପି ଏ ବନଈଶ୍ୱରୀ
ତେବେ ସୁଖ ଭୋଗକର ଯାକୁ ଘେନିକରି ।
ଅରଜୁନ ସହଦେବ ଏମନ୍ତ ସମୟେ
ମୃଗଭାର ଘେନି ତହିଁ ହୋଇଲେ ବିଜୟେ ।
କାଳଞ୍ଜୀ ବୋଇଲେ ତୁମ୍ଭେ ପାଞ୍ଚଜଣ କିସ
ଭୀମ ବୋଲେ ଆମ୍ଭେମାନେ ଏକପିତା ଶିଷ୍ୟ
ରାକ୍ଷସୀ ବୋଇଲେ ମୋତେ ହେଉଛି ସମ୍ଭବ
ଏ ଏକସ୍ତିରୀକି ପରା ତୁମ୍ଭେ ପାଞ୍ଚଧବ ।
ଲାଜ ସଙ୍କୋଚ ତୁମ୍ଭେ ତ କିଛି ନ ବିଚାର
ଧାର୍ମିକ ହୋଇ ଅରଣ୍ୟେ କର ଏ ବେଭାର ।

ଏହା କହି ଦ୍ରୌପଦୀକି ବୋଲଇ ବଚନ
ମୁଁ ଯାହା କହୁଛି ଶୁଣ ହୋଇ ସାବଧାନ ।
ତୁମ୍ଭେ ଚାରିଭ୍ରାତ ଘେନି ଥାଅ ସାଆନ୍ତାଣୀ
ମୁହିଁ ଏକ ଜଣକର ହୋଇବି ଘରଣୀ ।
ମୌନେ ବସିଅଛ କିପାଁ ନ ଦିଅ ଉତ୍ତର
ରାକ୍ଷସୀ କି ଦେଖି ଦେବୀ ହେଲେ ଭୟାତୁର
ଭୀମ ବୋଲେ ଇଚ୍ଛା ଅବା ଥିବଟି ତାହାର
କ୍ଷଣେ ବିଚାର କରିବା ରହ ରାମାବର ।
ହିଡ଼ିମ୍ବିନୀ ବୋଲି ମୋର ଅଛି ଭାରିଯାଏ
ତେଣୁ ଏ ନାରୀ ନିଶ୍ଚୟ ମୋତେ ନ ଯୋଗାଏ
ଅତି ସୁନ୍ଦର ପୁରଷ ଅଟୁ ତୁ ଅର୍ଜ୍ଜୁନ
ଅତି ସୁନ୍ଦରୀ ନାରୀକି ରଖ ତୁ ବହନ ।
ଅର୍ଜ୍ଜୁନ ବୋଇଲେ ମୋର ସୁଭଦ୍ରା ଘରଣୀ
ଦୈତ୍ୟ ନିସୂଦନ ହେବ ମୋର ଲାଗି ପୁଣି ।
ଜଳେ ଅନଳେ ଯାହାର ଏକରଥ ଚଳେ
କାହିଁ ତାହାର ମିଳନ ଅସୁରର କୁଳେ ।
ଅର୍ଜ୍ଜୁନ ନିରାଶେ ଭୀମ ବୋଲନ୍ତି ନକୁଳେ
ଏ କନ୍ୟାଟି ସମ୍ଭାଳ ତୁ ମନ କୁତୂହଳେ ।
ନକୁଳ ବୋଇଲେ ମୁହିଁ ଅଟେ ମହାଯତି
ଏକ ଭାରିଯାରୁ ଆନେ ନ ବଳଇ ମତି ।
ତହୁଁ ଭୀମସେନ ବୋଲେ ସହଦେବ ଶୁଣ
ମୋ ଆଶ୍ରେ କରି ଏ କନ୍ୟା ହେଲା ଅକାରଣ
ସହଦେବ ବୋଲେ ମୋର ଦ୍ରୌପଦୀ ଭାରିଯା
ତାହା ବିନା ଆନ ନାରୀ ସବୁ କରେ ତେଜ୍ୟା
ତିନିଙ୍କ ନିରାଶବାଣୀ ଭୀମସେନ ଶୁଣି
ବିନୟରେ ପୁଚ୍ଛା କଲେ ଯୁଧିଷ୍ଠିଙ୍କି ପୁଣି ।
ସ୍ୱାମୀ ବଂଶେ ନିଷ୍କଳଙ୍କ ଯେବଣ ଅସୂରୀ
ତାକୁ ଗ୍ରହଣ କରନ୍ତୁ ସେ ଅତି ସୁନ୍ଦରୀ ।
ତାହାଶୁଣି ଯୁଧିଷ୍ଠିର କରନ୍ତି ଭାବନା
ବିଚାରନ୍ତି ମନେ ଏହା ବଡ଼ ବିଡ଼ମ୍ବନା ।
ଏହିପରି ବଚନକୁ ଭୀମମୁଖୁ ଶୁଣି
କୁପିତ ହୋଇଣ ବୋଲେ ଦ୍ରୁପଦ ଦୁଲଣୀ ।
ଆହେ ଭୀମସେନ ତୁମ୍ଭେ ଅଟ ବଡ଼ ମନ୍ଦ
ତୁମ୍ଭର ହେତୁରୁ ଏବେ ଉପୁଜିବ ଦ୍ୱନ୍ଦ୍ୱ ।
ଅସୁରୀ ଗୋଟିଏ କେଉଁ ବନରୁ ଆଣିଣ
ମୋ ସୁଖ ପଥେ କଣ୍ଟକ କରାଉଛ ପୁଣ ।
ତୁମ୍ଭ କର୍ମକୁ ପାଇଲ ତୁମ୍ଭେ ତାକୁ ନିଅ
ଚନ୍ଦନ ବୃକ୍ଷକୁ କାଳସର୍ପ କିପାଁ ଦିଅ ।
କହୁଁ କହୁଁ ରୋଷକଲେ ଦ୍ରୁପଦ ଦୁଲାଳୀ
ଭୀମ ବୋଲେ ଅପମାନ ତୋ ଲାଗି ପାଇଲି

ଆଲୋ କାଳଞ୍ଜୀ ତୋହର ଭଲଗତି ନାହିଁ
ଆଉ କି ଭାବନା କରୁ ଗାଲେ ହାତଦେଇ ।
ଅସୁରୀ ବୋଇଲା ମୁହିଁ କେଉଁଆଡ଼େ ଯିବି
ତୁମ୍ଭଠାରୁ ବଳବନ୍ତ କେଉଁଠୁଁ ପାଇବି ।
ତୁମ୍ଭେ ମୋତେ ନେଇ ଅବା ଜଳେଫିଙ୍ଗି ଦେବ
ପାଇଲା ନିଧିକି କିଏ ତଥାପି ଛାଡ଼ିବ ।
ଦ୍ରୌପଦୀକି ବୋଲେ ପୁଣି ସ୍ତିରୀଜନ୍ମ ପାଇ
ସ୍ତିରୀଙ୍କ ବେଦନା ଟିକେ ନ ଜାଣୁ କିପାଇଁ ।
ସ୍ୱାମୀ ବିରହିଣୀ ମୁହିଁ ହୋଇଅଛି ଅତି
ଦୟା କିପାଁ ନ ବସେ ଗୋ ମୋର ଦୁଃଖ ପ୍ରତି
ସତୀ ବୋଇଲେ ଅସୁରୀ ଆଲୋ ଅଲକ୍ଷଣୀ
ସୁଜନଜନ ଇଚ୍ଛୁ ତୁ ତୁହି ତ ନ ଜାଣି ।
ଦ୍ରୌପଦୀ ବାକ୍ୟେ ଅସୁରୀ ଅତି କୋପଭରେ
କାଳସର୍ପ ଗର୍ଜ୍ଜେ ଯେହ୍ନେ ଯଷ୍ଟି ପ୍ରହାରରେ ।
ବୋଲେ ଏକସ୍ତିରୀ ହୋଇ ତୋ ପାଞ୍ଚଟା ପତି
ଅଭ୍ୟାଗତ ପଡ଼ିଲେ କି ସମ୍ଭାଳି ନ ନ୍ୟନ୍ତି ।
ଆଲୋ ଏହିକ୍ଷଣି ତୋତେ କରିବି ଭକ୍ଷଣ
ମୋତେ ପ୍ରାପ୍ତ ହେବ ତୋର ପତି ପାଞ୍ଚଜଣ ।
ଏତେ ବୋଲି କାୟା ତାର ବଢ଼ାଏ ସତ୍ୱରେ
ତୁଣ୍ଡ ବିସ୍ତାରେ ସହସ୍ର ଯୋଜନ ଆକାରେ ।
ବେନି ଯୋଜନ ହୋଇଲା ତାର ବାହା ଦୁଇ
ସତୀ ଉପରକୁ ତହୁଁ ପଡ଼ିଲାକ ଡେଇଁ ।
ଅସୁରୀ ଧାଇଁବା ଦେଖି ପଳାନ୍ତି ଦ୍ରୌପଦୀ
ଭୟରେ ଲୁଚିଲେ ଯାଇଁ ଭୀମ ପଛକତି ।
ଯୁଧିଷ୍ଠିରଙ୍କୁ ପାପିଷ୍ଠୀ ପକାଇଲା ପେଲି
ତହୁଁ ଧର୍ମ ଘୁଞ୍ଚିଗଲେ ଧର୍ମ ଧର୍ମ ବୋଲି ।
ଦ୍ରୌପଦୀ ଡାକ ପାରିଲେ ଧନଞ୍ଜୟେ ବୋଲି
ରକ୍ଷାକର ମୋତେ ଆସି ମୁଁ ଶରଣ ଗଲି ।
ଧାଇଁ ଯାଇ ଦ୍ରୌପଦୀଙ୍କି ପାର୍ଥ କରେ କୋଳ
ଅସୁରୁଣୀକି ବୋଇଲେ ହୋଇବୁ ନିଷ୍ଫଳ ।
କିସ ଅର୍ଜିବୁ ଏହାକୁ କରିଣ ଭକ୍ଷଣ
ଦେବୁ ସ୍ୱାମୀ ତୋତେ ଆଗୋ ଆମ୍ଭ କଥା ଶୁଣ
ଅର୍ଜୁନ ବଚନେ ବୋଲେ ସେହି ନିଶାଚରୀ
ଧର୍ମ ବିଚାର ଯଦ୍ୟପି ଥାଆନ୍ତା ତୁମ୍ଭରି ।
ପୁଂସରେ ହୀନ ହୁଅନ୍ତେ କିପାଁ ପାଞ୍ଚଭାଇ
ଗୋଟିଏ ପତ୍ନୀ ତା ଭିନ୍ନ ଅନ୍ୟଗତି ନାହିଁ ।
ଏହାକୁ ଭକ୍ଷି ହୋଇବି ତୁମ୍ଭର ଘରଣୀ
ତୁମ୍ଭ ପାଞ୍ଚଜଣଙ୍କର ହେବି ହୃଦମଣି ।
ମୁହିଁ ଯେତେ ଯେତେ ବିଦ୍ୟା ଅଭ୍ୟାସ କରିଛି
ଆନ ନାରୀଠାରୁ ତୁମ୍ଭେ ନ ପାଇବ କିଛି ।
ଚଉଷଠି ପରିବନ୍ଧେ ବାଆସ୍ତରି କ୍ରୀଡ଼ା
ରାତ୍ରେ ସେବି ତୁମ୍ଭ ମନୁ ଛଡ଼ାଇବି ବ୍ରୀଡ଼ା ।
ଏମନ୍ତ ଭାବରେ ମୁହିଁ କରାଇବି ରତି
ମୋତେ ତେଜି ତୁମ୍ଭେ କିପାଁ ଯିବ ଆନ କତି ।
ସ୍ତମ୍ଭନ ମୋହନ ଆଉ ବଶ୍ୟ ଉଚ୍ଚାଟନ
ପ୍ରେମ କୁତୂହଳ ବଶ ଧରଣ ଧାରଣ ।
ନିର୍ଭୟ ହୋଇଣ କରାଇବି ମୁଁ ରମଣୀ
ଶତେପୁଂସ ହେଲେ ନ ପାରିବେ ମୋତେ ଜିଣି
ପାଞ୍ଚଭାଇ ବୋଇଲେ ତୁ କରୁ ବଡ଼ ଗର୍ବ
ନାରୀବୋଲେ ଅତିଥିକୁ କିପାଁ ସରୁ ଭାବ ।
କୋମଳ ଭାବେ ବଚନ ବୋଇଲେ ପାଞ୍ଚାଳୀ
ଶାନ୍ତହୁଅ ଆଉ ମୋତେ ନ ଦିଅ ତୁ ଗାଳି ।
ତୋର ରୂପ ଦେଖି ସିନା ଭୟ କଲି ଚିତ୍ତେ
ବଳିଷ୍ଠ ଭୀମକୁ ଏବେ ସମର୍ପିଲି ତୋତେ ।
ଶୁଣି ଆନନ୍ଦିତା ହେଲା ରାକ୍ଷସୀ କାଳଞ୍ଜି
ବୋଲେ ଭୀମ ମୋର ଭର୍ତ୍ତା ଲେଖିଛି ବିରଞ୍ଚି
ଭୀମକୁ ଚାହିଁ ଦ୍ରୌପଦୀ ବୋଲନ୍ତି ସଧୀରେ
ତୋର ଭୟରେ ଲୁଚଇ ଅଗ୍ନିର ଭିତରେ ।
ଯେବେ ରାକ୍ଷସୀ ଆଣିଛୁ ଏବେ ତୋତେ ଖାଉ
ନୋହିଲେ ମାର ଏ ଦୁଷ୍ଟା ମୋର ଶଲଯାଉ ।
ଗନ୍ଧର୍ବ ମତରେ ବିଭା ହେଲା ସମାପନ
କଳାମେଘ ପର୍ବତକୁ ନିଏ ଭୀମସେନ ।
ଯିବାକାଳରେ ବୋଇଲେ ଦ୍ରୁପଦ ଦୁହିତା
ଶୁଣ ଭୀମ ହୋଇଥିବୁ ଯେବେ ମୋର ଭର୍ତ୍ତା
ତେବେ ଭାଙ୍ଗିବୁ ଏ ମତ୍ତଦାନବୀର ଗର୍ବ
ବିଅର୍ଥ ନୋହିବ ଯେହ୍ନେ ମୋ କହିବା ସର୍ବ ।
ଅଲଙ୍ଘ୍ୟ ଦ୍ରୌପଦୀ ବାକ୍ୟ ହୋଇବ କି ଆନ
ଏହା କହି ସେଠାବରୁ ଗଲା ଭୀମସେନ ।
ତିନିଦିନ ସେ ପର୍ବତେ ରହିଲା ପାବନି
ନବ ପରିଣିତା ଭାର୍ଯ୍ୟା ସଙ୍ଗତରେ ଘେନି ।
ଭୋଜନରେ ରମଣରେ ଅତୃପତ ଭୀମା
ସମରେ ଅତୃପତି ତା ଅଟଇ ଗାରିମା ।
ଶୃଙ୍ଗାର ସମରେ ତାକୁ ହାରିଲା ସୁନ୍ଦରୀ
ଛାଡ଼ ଛାଡ଼ ନାଥ ବୋଲି ଶରଣ ଫୁକାରି ।
ଦ୍ୱିଗୁଣ ଛାଡ଼ିବ ଆଜ୍ଞା ପାଣ୍ଡବ ପାବନି
କରେ ରତିରଙ୍ଗ ଗାଢ଼େ ଆକର୍ଷିଣ ଘେନି ।
ଆକର୍ଷିଣ ନ ଛାଡ଼ଇ ପାଣ୍ଡବ ସନ୍ତତି
ନ ସରେ ଶୃଙ୍ଗାର ପରବେଶ ହେଲା ରାତି ।
ଉଦେ ଗଗନ ଚନ୍ଦ୍ରମା ଶଶାଙ୍କ ବିହାରୀ
ଅସାଷ୍ଟମ ହୋଇକରି ଢଳିଲା ସୁନ୍ଦରୀ ।

ସମ୍ବାଦ ନ ଦିଅଇ ସେ ଶରୀର ନିର୍ମଳ
ଶରଣ ନ ରଖଇ ସେ ଭାରତର ମଲ୍ଲ ।
ପ୍ରତିଜ୍ଞା ବଚନ ନ ସରଇ କଦାଚିତ
ସେହି ଶୃଙ୍ଗାର କରନ୍ତେ ସୂର୍ଯ୍ୟ ଗଲେ ଅସ୍ତ ।
ଅଗ୍ନି ମିଶ୍ରିତ ହୋଇଣ ଗଲା ଭୃଗୁମୁଖୀ
ସମସ୍ୟା ନ ଦେଉ ଭୀମ ବୋଲେ ଶଶୀମୁଖୀ
ଦୁଇଦିନ ଦୁଇରାତି ହୋଇଲା ଶୃଙ୍ଗାର
ଆଳସ୍ୟ ଛାଡ଼ିଲା ସେହି ଅସୁରୀ ଶରୀର ।
ତିନିଦିନ ଅନ୍ତେ ସେହି ପ୍ରମତ୍ତା ରାକ୍ଷସୀ
ଶରୀର ଛାଡ଼ି ହୋଇଲା ପ୍ରେତପୁର ବାସୀ ।
ଭୀମ ବିହାରରେ ଯହୁଁ ମିଳିଲା କାମିନୀ
କାଳିନ୍ଦୀ ନଦୀରେ ନେଇ ମେଲିଲା ପାବନି ।
ସେ ନଦୀରେ ସ୍ନାନକରି ପ୍ରବେଶ କୁଟିରେ
ଦ୍ରୌପଦୀ ଦେଖି ତାହାକୁ ପୁଚ୍ଛନ୍ତି ଶ୍ଳେଷରେ ।
କିହୋ ଭୀମ ତୁମ୍ଭ ନବପରିଣିତା ନାରୀ
କିସ କରୁଛନ୍ତି ସଙ୍ଗେ ନାହାନ୍ତି ତୁମ୍ଭରି ।
ତାହାଶୁଣି ଭୀମ ବୋଲେ ଶୁଣ ଶଶୀମୁଖି
ତାର ପିଣ୍ଡୁ ପ୍ରାଣ ଛାଡ଼ି ଗଲାକ ଉପେକ୍ଷି ।
ତହୁଁ ତାହାକୁ ନଦୀରେ ଦେଇଛି ଭସାଇ
ତୁମ୍ଭ ଆଜ୍ଞା ଅବଜ୍ଞାକୁ ମୋର କ୍ଷମ କାହିଁ ।
ଜୟ ଜୟ କାମସେଣା ଜୟ ଗୋ କାମାକ୍ଷୀ
ଦୁସ୍ତର ବିପଦୁ ରଖ ହୋଇଣ ସାପକ୍ଷୀ ।
ପଣ୍ଡିତ ନୁହଇ ମୁହିଁ ଶାସ୍ତ୍ର ନ ଜାଣଇ
ସାଧନା ଭାବନା ପୂର୍ବକୃତ୍ୟ ମୁଁ ଭାବଇ ।
ଅଭୟା ଅପର୍ଣ୍ଣା ତୁହି ଝଙ୍କଡ଼ବାସିନୀ
ତୋ ପୁରେ ଯମ ନ ପଶେ ତୋର ଭୟଘେନି
ଶିବଙ୍କର ସିଂହଦ୍ୱାରେ ଥିଲି ଦ୍ୱାରପାଳ
କିଞ୍ଚିତ ଦୋଷେ ମନୁଷ୍ୟ ହୋଇଲି କେବଳ ।
କିଛି ବୟସରେ ମୋର ହୋଇଲା ଭାବନା
ତେଣୁ ହୃଦେ ବିକାଶିଲା ମନର କାମନା ।
ଅନନ୍ତମୂର୍ତ୍ତିକୁ ମୁହିଁ ଚିରକାଳ ଭାବେ
ଚତୁର୍ଥ ଆରଣ୍ୟପର୍ବ ରଚିଲି ପ୍ରସ୍ତାବେ ।
ଶ୍ରୀମହାଭାରତ ଏହି ବନପର୍ବ କଥା
ସଂସାରେ ବୋଧ ନିମନ୍ତେ ଅଟଇ ଶକତା ।
ଏହା ପଢ଼ି ଶୁଣି ନରେ ହୁଅ ଭବୁଁ ପାରି
ଯମ ବାନ୍ଧି ନ ପାରିବ ପାଶଅସ୍ତ୍ର ଧରି ।
ବଧିର ଅନ୍ଧ ଆବର ଜଡ଼ ଅପୁତ୍ରକ
ଶୁଣି ମୋକ୍ଷଗତି ହେବେ ଛାଡ଼ି ରୋଗ ଶୋକ
ଜଗନ୍ନାଥଙ୍କ ନିକଟେ ସଦା ରଖ ଲୟେ
କହଇ ଶାରଳା ଦାସ ଶ୍ରୀଚଣ୍ଡୀ ଆଶ୍ରୟେ ।

## ନକୁଳର ସତ୍ୟନିଷ୍ଠା ଦର୍ଶନେ ରେବା ଦୈତ୍ୟର ପୁରସ୍କାର ଏବଂ ବସ୍ତ୍ରାହରଣ ଦୋଷେ ବ୍ରହ୍ମାଙ୍କୁ ଅପୂର୍ବ୍ୟ ଅଭିଶାପ

ପୁଣି ପୁଚ୍ଛନ୍ତି ବିଲଙ୍କ ଦେଶ ନୃପବର
ହେ ଅଗସ୍ତି କହ ବନବାସର ବିଚାର ।
ବାରବର୍ଷ ବନସ୍ତରେ କଟାଇଲେ ଦିନ
ତଦପରେ କିସକଲେ ଯୁଧିଷ୍ଠି ରାଜନ ।
ସେହି କଥା ଶୁଣିବାକୁ ମୋହର ମାନସ
କହନ୍ତି ଅଗସ୍ତି ଶୁଣ ମନୁ ନରଈଶ ।
ତୁଳମାସ କୃଷ୍ଣ ପକ୍ଷ ପଞ୍ଚମୀ ତିଥିରେ
ମଘା ନକ୍ଷତ୍ର ଅଟଇ ପୁଣି ସେ ଦିନରେ ।
ବ୍ୟତୀପାତ ଯୋଗ ବିଷ୍ଟି ନାମରେ କରଣ
ସପ୍ତମଚନ୍ଦ୍ର ଚତୁର୍ଥ ଘରେ ଅଛି ପୁଣ ।
ଯୁଧିଷ୍ଠିର ପଚାରିଲେ ସହଦେବ ଶୁଣ
ଆଉ ବନବାସ କେତେ କହ ତୁ ପ୍ରମାଣ ।
କର ଚାହିଁ ସହଦେବ ବୋଲନ୍ତି ବଚନ
ବାରବର୍ଷ ଗଣି ପରେ କହିବି ଗୋପନ ।
ସ୍ମରଣ କରାଏ ଆଦ୍ୟଦିନ ବନବାସ
କନ୍ୟାମାସ କୃଷ୍ଣପକ୍ଷ ଭାର୍ଗବ ଦିବସ ।
ତହୁଁ ମନୁ ଅନିଳ ଯେ ପ୍ରମାଥି ଜଳଦ
ଉଦାସୀନ ଧ୍ରୁବ ହରି ଶଶଧର ଆଦ୍ୟ ।
ଅନୁମାନ ଆଦିକରି ଏହା ହେଲା ଦଶ
ଯାହା କହୁଅଛି ଏବେ ଶୁଣ ହେ ନରେଶ ।
ଦଶବରଷ ସମ୍ପୂର୍ଣ୍ଣ ହୋଇଲା ଏମନ୍ତେ
ଆହୁରି ଦୁଇବରଷ ହୋଇବ ଲେଖନ୍ତେ ।
ବରଷକେ ଦଶଦିନ ଲେଖାରେ ବଢ଼ଇ
ଦଶବର୍ଷ ବଢ଼ା ଶତ ଦିବସ ଅଟଇ ।
ତିନିମାସ ଦଶଦିନ ହୋଇବ ଏମନ୍ତେ
ଏଥିରେ ସନ୍ଦେହ ମାତ୍ର ନାହିଁଟି କିଞ୍ଚିତେ ।
କୂଟ କପଟ ବହୁତ ଶକୁନି ଜାଣଇ
ପାପବୁଦ୍ଧି ଛଡ଼ା ସେହୁ ଧର୍ମ ନ ଶୁଣଇ ।
କେଭେ ତାହାର କଥାରେ ବିଶ୍ୱାସ ଯେ ନାହିଁ
ବାରବର୍ଷେ ବିଶାଶତେ ଦିନ ବଢ଼ା ହୋଇ ।
ଯୁଧିଷ୍ଠି ବୋଇଲେ ମୋର ତୁ ପଣ୍ଡିତ ଭାଇ
ଯୁକ୍ତିବେଳକୁ ଆମ୍ଭେ ବା ଆଉ ଥିବୁ କାହିଁ ।
କପଟ ବେଳକୁ ନିନ୍ଦା ପାଇବ ଦଇବ
ଆପଦ କର୍ମ କେମନ୍ତେ ବେଳକୁ ମେଣ୍ଟିବ ।

ହେଜ କି ବିଳମ୍ବ ସତ୍ୟ ମୁଁ ଯେବେ ଲଙ୍ଘଇ
ମୋ ବିଚାରେ ବନବାସ ଉତ୍ତମ ଅଟଇ ।
ରାଜ୍ୟଭାର ନେବାପାଇଁ ବଡ଼ଇ ଜଞ୍ଜାଳ
ଧରମ ନ ହୋଇ ପାପ ଗୋଡ଼ାଏ କେବଳ ।
ଲୋଭ ମୋହ ରାଗ ଦ୍ଵନ୍ଦ୍ଵ ବହୁତର ଚିନ୍ତା
ଆଦାୟ ବିବାଦ ଦ୍ଵନ୍ଦ୍ଵ ହୁଏ ଅଗଣିତା ।
ମନ୍ତ୍ରୀବୋଲେ ଦେବ ସ୍ଵାମୀ ଏ କଥା ତ ସତ
ସୋଦରେ ବିବାଦପଣେ ନ କଲା ଏମନ୍ତ ।
ଶକୁନି ବିଚାରେ ସିନା ହୋଇଛି ସେ ମନ୍ଦ
ନ ଜାଣଇ କପଟ ସେ ନ ଜାଣଇ ଛନ୍ଦ ।
ତୁମ୍ଭ ଉପରେ ସର୍ବଦା ତୁଷ୍ଟ ଧୃତରାଷ୍ଟ୍ର
କଦାଚ ପାଇବା ନାହିଁ ଯେ ଏଥିରେ କଷ୍ଟ ।
ତହୁଁ ବିଜୟ କରିଲେ ବୀର ପାଞ୍ଚଜଣ
ସଙ୍ଗତରେ ରହିଛନ୍ତି ସଙ୍ଗୀ ଋଷିଗଣ ।
ଚାଲୁଛନ୍ତି ପଣ୍ଡୁପୁତ୍ରେ ଆନନ୍ଦ ମନରେ
ପ୍ରବେଶ ହୋଇଲେ ଯାଇ ରେବା ନଦୀ ତୀରେ
ରେବାସୁର ନାମଧେୟ ଏକଇ ଦାନବ
ଋଷି ବିପ୍ରମାନଙ୍କର ତାର ବୈରଭାବ ।
ଋଷି ବିପ୍ର ତପୋଧନ ଖୋଜି ଖାଏ ଭାଜି
କଞ୍ଚି ମାଂସ ବୋଲି ତାର ଚିତ୍ତ ଥାଏ ମଜ୍ଜି ।
ତା ଭୟରେ ସେ ବନକୁ ନ ଯାଆନ୍ତି କେହି
ପ୍ରତିଦିନ ଶତଯୂଣ ଦାନବ ଭ୍ରମଇ ।
ଗୋପାଳଙ୍କ ନାମେ ସତ୍ୟଯୁଗର ବିଷୟ
ରେବାତୀର୍ଥେ ଥାଏ ରେବା ଦୈତ୍ୟ ପାପାଶୟ
ସେ ରେବାତୀର୍ଥେ ଅମେୟ ନାମେ ଥିଲା ଦୈତ୍ୟ
ତାହାକୁ ବନ୍ଧନ କଲା ଅଞ୍ଜନାର ସୁତ ।
ଅମେୟର ସୁତ ହେଲା ପ୍ରଳମ୍ଭା ଅସୁର
ପ୍ରଳମ୍ଭାର କାଳ କାମ ହୋଇଲା କୁମର ।
କାଳକାମର ସନ୍ତାନ ଅଟେ ଜମ୍ଭୁଦୈତ୍ୟ
କେଶୀ ବୋଲିକରି ହେଲା ତାର ଏକ ସୁତ ।
ଧୂମ୍ର ଲୋଚନ ବୋଲିଣ କେଶୀର ନନ୍ଦନ
ଏହା ପୁତ୍ର ନାମ ହେଲା କାଳବିମୋଚନ ।
କାଳବିମୋଚନ ପୁତ୍ର ହୁଏ ଭକ୍ଷଶ୍ରବା
ଏହାପୁତ୍ର ପୁରୁରବା ତାର ପୁତ୍ର ରେବା ।
ସେହି ଅସୁରର ବାସ ଏହି ରେବା ତୀର୍ଥେ
ଦେବତା ଋଷି ବିପ୍ରାଦି ନ ପଶନ୍ତି ଏଥେ ।
ସେହି ବନସ୍ତେ ପ୍ରବେଶ ପାଣ୍ଡବେ ଆନନ୍ଦେ
ଏଣେ ତେଣେ ବୁଲନ୍ତି ଯେ ଛନ୍ତି ଋଷିବୃନ୍ଦେ ।
ଆମ୍ବ ପଣସ କଦଳୀ ଜାମୁ ନଟୀକାଳ
ବୃକ୍ଷମାନଙ୍କେ ଫଳିଛି ବହୁତର ଫଳ ।

ଯା ଇଚ୍ଛା କରିବ ତହିଁ ସେ ଫଳ ମିଳଇ
ରେବାସୁର ଭୟେ ତହିଁ କେହି ନ ପଶଇ ।
ରେବାନଦୀ ବହିଯାଏ ଉତ୍ତରବାହିନୀ
ଐଶାନ୍ୟ କୂଳରେ ଅଛି ବଟ ଯେ ଭାବିନୀ ।
ସେ ବଟତୀର୍ଥେ ବସନ୍ତି ଦେବ ଯୁଧିଷ୍ଠିର
ମଧୁବନ ଦେଖି କହେ ବାଇ ବୃକୋଦର ।
ଅଠାଇଶ ମାସ ଅଛି ବନବାସ ରହି
ଏ ବନ ଛାଡ଼ି ଅନ୍ୟତ୍ର ଆଉ ଯିବାନାହିଁ ।
ଧର୍ମ ବୋଇଲେ ଏ ସ୍ଥାନେ କରିବା ତର୍ପଣ
ଅନ୍ୟତ୍ରକୁ ଯିବା ଏବେ ଗଣ୍ଡା ଖୋଜିଆଣ ।
ପଶ୍ଚିମକୁ ବୃକୋଦର ପାର୍ଥ ଉତ୍ତରରେ
ଦକ୍ଷିଣେ ନକୁଳ ପୂର୍ବେ ମନ୍ତ୍ରୀ ବିଜେକଲେ ।
ଗଣ୍ଡା ନିମନ୍ତେ କିରାତ ରୂପକୁ ଧଇଲେ
ଧାମଣା କାଠର ଧନୁ ବାଂଶଗୁଣ କଲେ ।
ମଥା କଣ୍ଠରେ ପିନ୍ଧନ୍ତି କାଇଞ୍ଚର ମାଳି
କଟି ବାହେ ଛନ୍ତି ଗୋପୀଚନ୍ଦନ ଶ୍ୟାମଳି ।
ବନ୍ଧନି ଟୋପରେ ଅଛି କୁଙ୍କୁମର ଶିଖା
ଫିରିକର ଶର ଶିରେ ଶିଖୀପୁଚ୍ଛ ଶିଖା ।
କିରାତ ରୂପ ଧଇଲେ ଏମନ୍ତ ପ୍ରକାରେ
ବନସ୍ତ ଦେଖି ଜଗନ୍ତି ପାଣିର ଘାଟରେ ।
ଏମନ୍ତ କାଳରେ ରେବା ନାମକ ଅସୁର
ନଦୀକୂଳେ ବୁଲି ବୁଲି ସେବଇ ସମୀର ।
ଦେଖଇ ସେ ନକୁଳର ବନେ ବୁଲିବାର
ଜନ୍ତୁ ଖୋଜିଣ ନକୁଳ ଭେଟିଲା ଅସୁର ।
କିଳିକିଳା ନାଦେ ଦୈତ୍ୟ ଆସିଲାକ ଚଳି
ବିଚାରେ ମିଳିଲା ଆଜି ମୋତେ ନରବଳି ।
ଅନେକ କାଳୁ ଭ୍ରମେ ମୁଁ ଏହି ବନସ୍ତରେ
ସୁଭୋଜନ ପ୍ରାପ୍ତି ହେଲି ଆଜି ଏହିଠାରେ ।
ମନ ମଧ୍ୟରେ ବିଚାର କରି ଏ ପ୍ରକାରେ
ନକୁଳଙ୍କୁ ଭେଟି ଦୈତ୍ୟ ଅତି ହରଷରେ ।
ନକୁଳ ବୋଇଲା କିପାଁ ପାଟିକରୁ ତୁହି
ମୁହିଁ ଗଣ୍ଡା ଲୋଡୁଅଛି ପିତୃଶ୍ରାଦ୍ଧ ପାଇଁ ।
ଦାନବ ବୋଇଲା କିସ କହୁରେ ମାନବା
ମୁହିଁ ରେବାସୁର ମୋର ଖାଦ୍ୟ ଅଟୁ ବାବା ।
ଧୂମ୍ର ଲୋଚନର ଅଟେ ମୁହିଁ ପଣନାତି
ମୋ ଭୟେ ଦେବତା ଋଷି ନ ପଶନ୍ତି ଏଥି ।
ନକୁଳ ବୋଲେ କାଲି ମୋ ପିତୃକାର୍ଯ୍ୟ ହେବ
ତେଣୁ ନେବାକୁ ଆସିଛି ମୁହିଁ ଗଣ୍ଡାଜୀବ ।
ଏକଗୋଟି ଗଣ୍ଡା ମୋତେ ଦିଅ ତୁ ଦେଖାଇ
ସତ୍ୟକଲି ପରଦିନ ଆସିବଇଁ ମୁହିଁ ।

ଆରେ ରେବାସୁର ତୁହି ଏହିଠାରେ ଥାଅ
ପରଦିନ ପହରକେ ଆସିବି ନିଶ୍ଚୟ ।
ସେହି ସମୟରେ ମୋତେ କରିବୁ ଭକ୍ଷଣ
ଆଜିଠାରୁ ତୋ ଆହାର ହେଲି ମୁହିଁ ଜାଣ ।
ଶୁଣି ଦୈତ୍ୟ ବୋଲେ ଗଣ୍ଡା ଦେଖାଇବି ଚାଲ
ଯାଅନ୍ତେ ଦେଖିଲା ତହିଁ ଆସେ ଗଣ୍ଡାପଲ ।
ତହୁଁ ସେ ପଥରେ ନେଇ ଜାଲ ବସାଇଲେ
ବେନିଗୋଟି ଗଣ୍ଡା ଆସି ସେ ଫାଶେ ପଡ଼ିଲେ
ସେହି ବେନିଗୋଟି ଗଣ୍ଡା ବାନ୍ଧି ଭାରକରି
ଯୁଧିଷ୍ଠିରଙ୍କ ନିକଟେ ଆସେ ବେଗେ ଧରି ।
ଅର୍ଜୁନ ଆଣିଲେ ଯାଇ ଚାରିଗୋଟି ଗଣ୍ଡା
ଆଣିଲା ଦୁଇଟି ଗଣ୍ଡା ଭୀମ ପରଚଣ୍ଡା ।
ମୃଗ ଭାରେକ ଆଣିଲା ମନ୍ତ୍ରୀ ସହଦେବ
ଶେଷ ପାଇବାରୁ ବେଶୀ ନ ପାଇଲେ ଜୀବ ।
ତୁଳ ଶୁକ୍ଳ ପଞ୍ଚମୀ ଯେ ପୁଣି ଗୁରୁବାର
ପିତୃକାର୍ଯ୍ୟ ଶେଷ କଲେ ଦେବ ଯୁଧିଷ୍ଠିର ।
ଋଷିବିପ୍ରେ ଗଣ୍ଡାମାଂସ ଦେଲେ ଭୋଜି ଦାନ
କାମ୍ୟଶ୍ରାଦ୍ଧାର୍ଥେ ଋଷିଏ କରିଲେ ଭୋଜନ ।
ଅନେକ କଲ୍ୟାଣ କଲେ ସବୁ ତପୋନିଷ୍ଠୀ
ବୋଇଲେ ଆରୋଗ୍ୟ ହୁଅ ଖଣ୍ଡୁ ତୋ ଅରିଷ୍ଟି
ଆମ୍ଭ ଆୟୁଷ ଘେନିଣ ତୁମ୍ଭେମାନେ ବର୍ତ୍ତ
ଏ ପଞ୍ଚରାଜ୍ୟ ତୁମ୍ଭଙ୍କୁ ହେଉ ପରାପତ ।
ଏକାଙ୍ଗ ନୃପତି ହୋଇ ରାଜ୍ୟ ଭୋଗକର
ଆମ୍ଭ କଲ୍ୟାଣରେ ଦୁଃଖ ହତ ହେବ ତୋର ।
ଶତ୍ରୁମାରି ନିଷ୍କଣ୍ଟକେ ହୁଅ ଦଣ୍ଡଧାରୀ
ଅଳ୍ପଦିନେ ସବୁ ଦୁଃଖ ଯିବ ଅପସରି ।
ମୁନିମାନେ ପାଣ୍ଡବଙ୍କୁ ଏ କଲ୍ୟାଣ କଲେ
ଧର୍ମଦେବଙ୍କ ଆଗରେ ନକୁଳ କହିଲେ ।
ଭୀମ ପାର୍ଥ ସହଦେବ ଦ୍ରୁପଦ କୁମାରୀ
ପୁରୋହିତ ମାର୍କଣ୍ଡେୟ ଋଷି ଆଦିକରି ।
ଏ ସକଳେ ଯୁଧିଷ୍ଠିଙ୍କୁ ଘେରି ବସିଛନ୍ତି
ନାନାଦି କଥା ପ୍ରସଙ୍ଗ କୁହାକୁହି ହୁଅନ୍ତି ।
ଏକାଳେ ନକୁଳ ବୋଲେ ବନେ ବୁଲୁଥିଲି
ରେବାସୁର ଦାନବକୁ ସେଠାରେ ଭେଟିଲି ।
ଦାନବ ବୋଇଲା ତୁହି ଭକ୍ଷ ଅଟୁ ମୋର
ଯାହା ମୁଁ ଯତ୍ନେ ଖୋଜଇ ମିଳିଲୁରେ ନର ।
ମୁହିଁ ବୋଇଲି ଦାନବ ତୁ ମୋତେ ନ ମାର
ପିତୃକାର୍ଯ୍ୟ ଶେଷକରି ଭକ୍ଷ ହେବି ତୋର ।
ଅତି ଧାର୍ମିକ ଅଟଇ ସେ ବଳିଷ୍ଠ ଦୈତ୍ୟ
ମୋହର ଯିବାକୁ ସେହି ଚାହିଁଥିବ ପଥ ।

ଏବେ ମୁହିଁ ଯାଉଅଛି ସେ ରାକ୍ଷସ ପାଶ
ଭୋଜନ କରିବ ମୋତେ ଆଜର ଦିବସ ।
ଦାନବ ହୋଇଲେ ମଧ୍ୟ ଅଛି ତା ବିଚାର
ପିତାର କାର୍ଯ୍ୟ ବୋଲନ୍ତେ ଦେଲା ଅବସର ।
ସତ୍ୟ ପାଳନ କରିଲା ଦାନବ ସେ ହୋଇ
ମୁହିଁ କିପାଇଁ ଅସତ୍ୟ ହୋଇବି ଗୋସାଇଁ ।
ତାର ପାଶକୁ ଯଦ୍ୟପି ମୁହିଁ ବା ନ ଯିବି
ନ ଗଲେ ସତ୍ୟଭଗନ ନରକେ ପଡ଼ିବି ।
ସ୍ୱାମୀ ହେ ବିଶ୍ୱାସ ହୀନ ଅଟେ ଯେଉଁ ନର
ଅସାର୍ଥକ ଅଟଇ ଯେ ଜୀବନ ତାହାର ।
ତାହା ଶୁଣି ଯୁଧିଷ୍ଠିର ବଚନ ବୋଲନ୍ତି
ଏତେ ବିଶ୍ୱାସ କିପାଇଁ ସେ ଦାନବ ପ୍ରତି ।
ଆରେ ବାବୁ ନକୁଳ ତୁ ନ ବୋଲ ଏ କଥା
ଉପାୟେ ଜୀବନ ରକ୍ଷା କରନ୍ତି ସର୍ବଥା ।
ତୁହି ମୋର ସାନଭାଇ ବୁଦ୍ଧି ତୋର ହୀନ
ଏମନ୍ତ କଥା ତୁ କହୁ ଯାହା କି ନଗଣ୍ୟ ।
ନାନାଦି ଧର୍ମ କରନ୍ତି ଜୀଇଁବାର ପାଇଁ
ଶରୀର ନାଶ ନ କରି କୌଣସି ଅର୍ଥେ ହିଁ ।
ନକୁଳ କହିଲେ ବ୍ୟାସ କହିଛନ୍ତି ଯୋଗେ
ଗଉତମ ନାଶଗଲା ଯାଇ ଏହି ମାର୍ଗେ ।
କାଠଭାର ରଖନ୍ତେ ଯେ ଦେଖିଲା ସୌଦାସ
ବୋଇଲା ବ୍ରାହ୍ମଣ ତୁହି ହେବୁ ମୋର ଗ୍ରାସ ।
ଉତ୍ତଙ୍ଗ ବୋଇଲା ମୁହିଁ ଥୋଇ କାଠଭାର
କହିଣ ଆସିବି ଯାଇ ଗୁରୁଙ୍କୁ ମୋହର ।
ଗୁରୁଙ୍କୁ କହି ଉତ୍ତଙ୍ଗ ବାହୁଡ଼ି ଅଇଲା
ସୌଦାସ ନିକଟେ ପୁଣି ପ୍ରବେଶ ହୋଇଲା ।
ଯୁଧିଷ୍ଠି ବୋଇଲେ ତାହା କାଳ ଅନୁଗତେ
ଯାହା ସତ୍ୟଯୁଗ କଥା ତା କହୁଛୁ ମୋତେ ।
ନକୁଳ ବୋଇଲା ମୁହିଁ ତାକୁ ସତ୍ୟକଲି
ଆଶା ଦେଖାଇଣ ଭଣ୍ଡି ପଳାଇ ଅଇଲି ।
ଯୁଧିଷ୍ଠି ବୋଇଲେ ପୋଡୁ ପୋଡୁ ତାର ଆଶା
ଅଜ୍ଞାନ ପାପବୁଦ୍ଧିକୁ କରୁ ତୁ ଭରସା ।
ନକୁଳ ବୋଇଲା ତହୁଁ ଯୋଡ଼ି କରପୁଟ
ଆଜ୍ଞା ହେଉ ନିଶ୍ଚେଁ ଯିବି ତାହାର ନିକଟ ।
ଅର୍ଜୁନ ବୋଇଲା ସ୍ୱାମୀ ନିଷେଧ ନ କର
ପ୍ରମାଦେ ପଶିଲେ ନିଶ୍ଚେଁ ଧର୍ମେ ହେବ ପାର
ଶୁଣି କଲ୍ୟାଣ ତାହାକୁ କଲେ ଯୁଧିଷ୍ଠିର
ବୋଇଲେ ଅସୁର ମାରି ଆସ ଭାଇ ମୋର ।
ବାବୁ ମାଦ୍ରୀ ମୃତ୍ୟୁକାଳେ ସମର୍ପିଲେ ମୋତେ
ତୋତେ ପଠାଇଣ ମୁହିଁ ରହିବି କେମନ୍ତେ ।

ଯୁଧିଷ୍ଠି ବୋଇଲେ ଭୀମସେନକୁ ଅନାଇ
ଯାଆ ସାହାପକ୍ଷ ହୁଅ ନକୁଳକୁ ତୁହି ।
ଯୁଧିଷ୍ଠିଙ୍କ ଆଜ୍ଞା ପାଇ ବୀର ବୃକୋଦର
ନକୁଳକୁ ସଙ୍ଗେ ଘେନି ହୋଇଲେ ବାହାର ।
ରେବାନଦୀ ପାରେ ଗଲେ ପଞ୍ଚଶରି ପୁଣ
ରେବାସୁରକୁ ଭେଟିଲେ ସେଠାରେ ଯାଇଣ ।
ଭୀମ ଲୁଚିଣ ରହିଲା ଅଙ୍କୁଶ ଗିରିରେ
ନକୁଳକୁ ବୋଲେ ଯାଅ ନିର୍ଭୟ ଚିତ୍ତରେ ।
ସେହୁ ଛାର କିସ ଅବା କରିପାରେ ତୋତେ
ମୁହିଁ ଯେକାଳେ ରହିଛି ତୋହର ପଶ୍ଚାତେ ।
ଖାଇବାକୁ ଚେଷ୍ଟାକଲେ ଡାକିଦେବୁ ଖରେ
ମୁଁ ଯାଇ ସେ ଅସୁରକୁ ଦେବି ଯମପୁରେ ।
ନକୁଳକୁ ବୋଇଲା ସ୍ୱାମୀ ଯାହା ଇଚ୍ଛା ତୋର
ମୁହିଁ କ୍ଷୁଧା ନିବାରିବି ଯାଇ ଅସୁରର ।
ରେବାସୁର ନିକଟରେ ମାଦ୍ରୀର ଆତ୍ମଜ
ସାନନ୍ଦ ମନେ ମିଳିଲା ଅନର୍ଗଳ ତେଜ ।
ଦେଖି ନକୁଳ ବୋଇଲା ପାଇଲୁ ତୁ କଷ୍ଟ
ମାୟାମୋହେ ବଞ୍ଚିବାକୁ ନାହିଁ ମୋ ଅଭୀଷ୍ଟ ।
ଆସିଣ କର ଭୋଜନ ମୋ ଶରୀର ମାଂସ
ଦେଖି ଶୁଣି ସେ ଦାନବ ହେଲା ହସ ହସ ।
ସ୍ନାନକରି ଦୈତ୍ୟରାଜ କରେ ନିତ୍ୟକର୍ମ
ବିଚାରେ ବଡ଼ ସଙ୍କଟ ପଡ଼ିଲା ହୋ ଧର୍ମ ।
ପଳାଇଗଲା ମନୁଷ୍ୟ ବାହୁଡ଼ି ଆସଇ
କି ସୁଖ ଅର୍ଜିବି ମୁହିଁ ଏହା ମାଂସ ଖାଇ ।
ପୁଣି ବୋଲେରେ ମାନବ ଉପାୟରେ ଗଲୁ
ମରଣ ଭୂଇଁକୁ ଆଉ କିପାଁ ବାହୁଡ଼ିଲୁ ।
ନକୁଳ ବୋଇଲା ତୋତେ ଦେଖାଇ ମୁଁ ଆଶ
ପୁଣି କେଉଁବାଗେ ଥାଇ କରିବି ନିରାଶ ।
ଶୁଣି ଦୈତ୍ୟ କୋଳକରି ମୁଖେ ଦେଲା ଚୁମ୍ବ
ବୋଇଲା ବାଳକ ହୋଇ ତୋର ଏଡ଼େ ଦମ୍ଭ
ଆସ ଆସ ଆରେ ବାବୁ ସନ୍ତୁଷ୍ଟ ହେଲଇଁ
କହି ରତ୍ନମାଳା ଗଳେ ଲମ୍ବାଇଲା ନେଇ ।
ରତ୍ନମୁକୁଟ ସୀମନ୍ତେ କର୍ଣ୍ଣେ କର୍ଣ୍ଣାଞ୍ଚଳ
ହୃଦେ ପଦକ ବାହୁରେ ବାହୁଟି ସରଳ ।
ଦଶ ଅଙ୍ଗୁଷ୍ଠିରେ ମୁଦି ଦଶ ଅବତାର
ମୁକୁତାର ଝାଲି ଶିରେ ପାଦରେ ନୂପୁର ।
ଏହି ରୂପରେ ଭୂଷଣ କରି ଦୈତ୍ୟରାଣ
ବୋଲେ ଅଭିନ୍ନ ବାନ୍ଧବ ହେଲା ମୋର ପ୍ରାଣ
ସତ୍ୟ ସତ୍ୟ ମୋହର ହେ ଆଉ ନାହିଁ ଭିନ୍ନ
ହୋଇଲୁ ମିତ ତୁମ୍ଭର ମୋ ଭକତି ଘେନ ।
ପୁଣ ପୁଣ ଏ ସ୍ଥାନକୁ ଆସୁଥିବ ମିତ
ଧର୍ମ ସିନା କରାଇଲେ ତୁମ୍ଭ ପରିଚିତ ।
ହେ ମଇତ୍ର ନ ଭୁଲିବ କହେ ବାରବାର
ଏସବୁ ଧନ ରତନ ଅଛଇ ତୁମ୍ଭର ।
ଏହା କହି ଦ୍ରାକ୍ଷାଫଳ ଦେଲା ଗଉରବେ
ଖଣ୍ଡଦୂରେ ଛାଡ଼ିଦେଲା ନେଇ ଭକ୍ତିଭାବେ ।
ବାହୁଡ଼ିଲା ରେବାସୁର ଆପଣାର ବାସ
ନକୁଳ ଭୀମର ପାଶେ ହୋଇଲା ପ୍ରବେଶ ।
ଚଳିଗଲେ ଭୀମସେନ ନକୁଳର ତୁଲେ
ଦେଖି ଆଶ୍ଚର୍ଯ୍ୟ ହୋଇଲେ ମୁନିଏ ସକଳେ ।
ତୋଷେ ଧନଞ୍ଜୟ ଉଠି କଲେ କୋଳାଗ୍ରତ
ବୋଇଲେ ସତ୍ୟରେ ଥିଲେ ଧର୍ମ ପରାପତ ।
ଯୁଧିଷ୍ଠିରଙ୍କୁ ନକୁଳ କହେ ସର୍ବକଥା
ସାନନ୍ଦ ହୋଇଲେ ଦେବ ଦେଖି ସାନଭ୍ରାତା ।
ତହୁଁ ରେବାତୀର୍ଥ ଛାଡ଼ି ଗଲେ ପାଞ୍ଚବୀରେ
ଲକ୍ଷେ ମହର୍ଷି ଗମନ୍ତି ତାଙ୍କର ସଙ୍ଗରେ ।
ଜୟ ଜୟ ନାରାୟଣ ଜଗତ ତାରଣ
ଚତୁର୍ଦ୍ଦଶ ଭୁବନର ତୁ ଏକା ଶରଣ ।
ଇହ ପରକାଳେ ନାଥ ତୁ ଅଟୁ କରତା
ସକଳ ଶୟଳ ଜନମାନଙ୍କର ଚିନ୍ତା ।
ସବୁଦେହ ଏକବର୍ଣ୍ଣେ କରିଲୁ ଶ୍ୟାମଳି
ତେଣୁ ନାମ ତୁ ବହିଲୁ ପ୍ରଭୁ ବନମାଳୀ ।
ଧର୍ମ ବିବର୍ଦ୍ଧନ ନାଥ ଦୁଷ୍ଟ ଦୋଷହାରୀ
ଶମନ ଦଣ୍ଡରୁ ମୋତେ କରିଦିଅ ପାରି ।
ବଡ଼ ବିଷମ ଅଟଇ ସଂସାରର ଛନ୍ଦ
ମାୟାମୋହେ ପଡ଼ି ମୁହିଁ ହୋଇଲିଣି ଅନ୍ଧ ।
ନିରାକାର ପୁରୁଷ ତୁ ନିର୍ଦ୍ୱନ୍ଦ୍ୱ ନିବାସୀ
ଏ ମାୟା ସଂସାରୁ ମୋତେ ଉଦ୍ଧରି ଧରସି ।
ଜୟ ତୁ ବାମନ ମୂର୍ତ୍ତି ପରସନ୍ନ ମୁଖ
ହେ ମନମୋହନ ନାଥ ଆତ୍ମା ମୋର ରଖ ।
ଶଙ୍ଖ ଚକ୍ର ଗଦାପାଣି ସୁରଙ୍ଗ ଅଧର
ଶିରେ କିରୀଟ କୁଣ୍ଡଳ ଅତି ମନୋହର ।
ମସ୍ତକରେ ଶୋଭା ପାଏ ଅହି ସପ୍ତଫଣି
ତାର ପାଦରଜ କରୁ ମୋ ଶିର ମଣ୍ଡଣି ।
ଆରକ୍ତ ଲୋଚନ ଜିଣି ରକତ କୁମୁଦ
ବେଣୁସ୍ୱରେ ମୁଗ୍ଧ କଲୁ ଗୋପାଙ୍ଗନା ହୃଦ ।
ବିରହ ଆକୁଳେ ଯାଉ ଯମୁନାର କୂଳେ
ପୁଷ୍ପକ ଦୁହିତା ଆସି ଅକସ୍ମାତେ ମିଳେ ।
ସ୍ନାନ ସାରିଣ ରାଧିକା ଗୃହେ ବାହୁଡ଼ଇ
ବସ୍ତ୍ର ଛାଡ଼ି ତାଙ୍କ ସଙ୍ଗେ ଭେଟ ହେଲୁ ଯାଇ ।

ଏ ଯୁଗଳ ସଦା ମୁହିଁ ଚିନ୍ତେ ହୃଦଗତେ
ପୁଷ୍ପକସୁତା ପ୍ରସନ୍ନା ହୋଇବୁ ତୁ ମୋତେ ।
ଅନେକ ବିନୟୀ ଯହୁଁ ହେଲୁ ବନମାଳୀ
ସୁବେଳେ ପ୍ରସନ୍ନା ତୋତେ ହେଲା ଚନ୍ଦ୍ରାବଳୀ
ତୁମ୍ଭେ ଦୁହେଁ ବିଜେକଲ କୁଞ୍ଜଲତା ତଳେ
ମଳୟାନିଳ ବହିଲା ଭୟରେ ଅକାଳେ ।
ଏକାଳେ ବିଧାତା ଚିନ୍ତେ ମରାଇବି କଂସ
ସଦା ଏହୁ ହେଲେ ନାରୀମାନଙ୍କର ବଶ ।
ବିଧାତା ଏମନ୍ତ କଥା ମନମଧ୍ୟେ ଭାଳି
ଯାନେ ବସାଇ ହରଣ କଲା ବତ୍ସାପଲି ।
ରାଧାକୃଷ୍ଣ କୁଞ୍ଜବନେ ଛନ୍ତି କୁତୂହଳେ
ବେଳ ଅସ୍ତଗତ ସୂର୍ଯ୍ୟ ପଶ୍ଚିମକୁ ଚଳେ ।
ଗୋରୁପଲ ଗୋଗୋଷ୍ଠରେ ପ୍ରବେଶ ହୋଇଲେ
ବତ୍ସା ନ ଦେଖିଲେ ଯହୁଁ ହମ୍ବାରାବ କଲେ ।
ବେଳ ଅସ୍ତଗତ ଦେଖି ରାଧା ଗଲେ ଘରେ
ତହୁଁ ବତ୍ସାଙ୍କୁ ଖୋଜିଲ ଯମୁନା କୂଳରେ ।
ଧବଳୀ କମଳୀ କାଳୀ କସ୍ତୁରୀ ଶାମଳୀ
ନ ପାଇ ଚତୁର୍ଦ୍ଦିଗରେ ଲୋଡ଼ିଲୁ ତୁ ଚଳି ।
ଗୋପାଳମାନେ ଆସିଣ ବୃକ୍ଷପରେ ଉଠି
ଉଚ୍ଚରେ ଡାକନ୍ତି ଧରି ତୋତେ ନାମ ଗୋଟି ।
ବତ୍ସାମାନଙ୍କୁ ନ ଦେଖି ଧାଇଁଆସେ ନନ୍ଦ
ବୃକ୍ଷେ ଚଢ଼ିଣ ଡାକଇ ଗୋବିନ୍ଦ ଗୋବିନ୍ଦ ।
ଗୋପାଳେ ଏତେତେଣେ ଯେ ଦଉଡ଼ି ବୁଲନ୍ତି
କେହୁ ଶ୍ରୀପତି ମାଧବ ବୋଲିଣ ଡାକନ୍ତି ।
କେ ବୋଲଇ ରଘୁନାଥ କେହୁ ଜଗନ୍ନାଥ
କେ ବୋଲଇ କେଶବ କେ ଡାକେ ଅଚ୍ୟୁତ ।
କେହି ଯେ ଡାକଇ ବିଷ୍ଣୁ କେହି ଦାମୋଦର
କେବୋଲେ ବତ୍ସାଙ୍କୁ ଆଣ ବେଗେ ହେ ଶ୍ରୀଧର
ଗାଈଙ୍କର ହମ୍ବାରାବ ଗୋପାଳଙ୍କ ଡାକ
ଶୁଣି ଧାମେ ମହାଖୁଡ଼ ହୋଇଣ ବିମୁଖ ।
ବତ୍ସା ନ ପାଇଲେ ଯହୁଁ ଏଣେତେଣେ ଦୌଡ଼ି
ଗୋଠକୁ ଗଲେଣି ବୋଲି ପୁଣି ଯାନ୍ତି ଲୋଡ଼ି
ନନ୍ଦ ମହାଖୁଡ଼ ଲୋଡ଼ି ଆସୁ ଆସୁ ବେଗେ
ତୁମ୍ଭେ ପଡ଼ିଗଲ ହରି ସେ ଖୁଡ଼ର ଆଗେ ।
ବୋଲେ ବତ୍ସାପଲ କାହିଁ ଛାଡ଼ିଲୁରେ କହ୍ନା
ଦଣ୍ଡେ ନ ଛାଡୁ ଏ କୁଞ୍ଜ ଆବର ଯମୁନା ।
ତୁ ବୋଇଲୁ ଏ ନିଦାଘ ବୈଶାଖର ମାସ
ନିଦ ଘାରନ୍ତେ ହୋଇଲି ଲଭିଣ ଆଳସ୍ୟ ।
ଚାରିଆଡ଼ ଖୋଜିଲଇଁ ନିଦରୁ ମୁଁ ଉଠି
ଏହାଶୁଣି ନନ୍ଦ ଯାଇ ଧଇଲାକ ଚୁଟି ।
ରାତି ନ ପାହୁଣୁ କଂସ ନିଯୋଗ ହୁଅଇ
ନିତି ଲକ୍ଷେଭାର ଦୁଧ ଦେଇ ମୁଁ ଖଟଇ ।
ବାଛୁରୀମାନଙ୍କୁ ମୋର ହଜାଇଲୁ କେଣେ
ଏହା କହି ତୋର ଚୂଳ ଝିଙ୍କଇ ସେ ଟାଣେ ।
ତେନ୍ତୁଳି ବୃକ୍ଷରୁ ନେଇ ଧଇଲାକ ଛାଟେ
ତୋହର ଶରୀରେ ନେଇ ମାଇଲାକ ଆଣ୍ଟେ ।
ପୁଣି ଗ୍ରୀବାରେ ଚାପୋଡ଼େ କରିଲା ପ୍ରହାର
ଶ୍ରୀମୁଖୁ ରୁଧିର ତୋର ବହେ ଧାର ଧାର ।
ପୁଣି ଭୂମିରୁ ଉପାଡ଼େ ସରୁ ବୃକ୍ଷଟାଏ
ପାଞ୍ଚ ପ୍ରହାର କରିଲା ସେହୁ ତୋର କାୟେ ।
କୋମଳ ଶ୍ରୀଅଙ୍ଗେ ବାଜି ବହିଲା ଶୋଣିତ
କଷ୍ଟ ଦେଖି ବ୍ରହ୍ମା ବତ୍ସା ଛାଡ଼ିଲେ ତୁରିତ ।
ହମ୍ବାରାବ କରି ଗାଈ ବତ୍ସାପାଶେ ଗଲେ
ତାଙ୍କୁ ଆବୋରିଣ ସର୍ବେ ଦୁଧ ପିଆଇଲେ ।
ଗାଈବତ୍ସା ଧରି ନନ୍ଦ ଗମଇ ତୁରିତେ
ବ୍ରହ୍ମା ଆସି କୋଳକରି ଧଇଲେ ଯେ ତୋତେ
ଆସାଷ୍ଟମେ ନାରାୟଣ ଥିଲୁ ମହାଦୁଃଖେ
ଲେଉଟି ଚାହାନ୍ତେ ଦେଖୁ ପଛେ ଚତୁର୍ମୁଖେ ।
ଧାତାଙ୍କର ମୁଖ ଚାହିଁ କାନ୍ଦିଲୁ ତୁ ହରି
ବୋଇଲୁ ହେ ବେଦବର ଅଟୁ ମନ୍ଦକାରୀ ।
ଯଦ୍ୟପି ବତ୍ସା ହରିଲୁ କଉତୁକ ଭାବେ
ଫେରାଇ ନ ଦେଲୁ ନନ୍ଦ କଟାଳିଲା ଯେବେ ।
ଜନମ ହୋଇଲି ମଞ୍ଚେ ତୋର କଥା ମତେ
କିପାଁ ଏଡ଼େ ଅପମାନ ଦେଲୁ ତୁ ଜଗତେ ।
କହୁଁ କହୁଁ କୋପକଲୁ ବ୍ରହ୍ମା ଉପରକୁ
ବୋଇଲୁ ଅପୂଜ୍ୟ ହୁଅ ଏ ମଧ୍ୟସ୍ୱର୍ଗକୁ ।
ଶାପ ପାଇକରି ବ୍ରହ୍ମା ପଳାଇଲେ ଡରେ
ରହି ନ ପାରିଲେ ଆଉ ତୋହର ଛାମୁରେ ।
କୌତୁକ ପୁରୁଷ ତୁହି ସବୁକଥା ସହୁ
ପ୍ରାଣୀହିତେ ଜନାର୍ଦ୍ଦନ ନାମ ସିନା ବହୁ ।
ସ୍ୱାମୀ ଆପେ ବଢ଼ାଇଲୁ କଉତୁକ ଅର୍ଥେ
ବହୁତ ମେଳ ହୋଇଲୁ ଗୋପୀଙ୍କ ସହିତେ ।
ସ୍ନେହରେ ତୁ ନ ମାନିଲୁ ମାନ୍ୟ ଗଉରବ
ଆପଣା କଲା କର୍ମକୁ ଭାବିଲେ କି ହେବ ।
ମନ ବଚନ କର୍ତ୍ତବ୍ୟେ କିଛି ଅଛି ଦୋଷ
ମୋର ଏ ପାପ ଖଣ୍ଡନ କର ହୃଷୀକେଶ ।
ମୂର୍ଖପଣରେ ବଢ଼ିଲି ନ ଜାଣେ ମୁଁ କିଛି
ଏହାର ଯେ ପ୍ରତିକାର ମାଗୁଛି ଶ୍ରୀବତ୍ସି ।
ଆକୁଳଭାବେ ଡାକଇ ଭାବି ନାରାୟଣ
ଶାରଳା ଦାସକୁ ରଖ ଶ୍ରୀପଦେ ଶରଣ ।

## ସତୀସ୍ତ୍ରୀର ଉପାଖ୍ୟାନ

ଏଥୁଅନ୍ତେ ବୈବସ୍ୱତ ମନୁ ନୃପବର
କୁମ୍ଭରଷି ସୁତ ପାଦେ କରି ନମସ୍କାର ।
ବୋଇଲେ ମୁହିଁ ତୁମ୍ଭର ଦାସ ଅନୁଦାସ
ତୁମ୍ଭେ ତ ପ୍ରଳୟ ବଞ୍ଚା ସୁଜ୍ଞାନୀ ପୁରୁଷ ।
ବିଷ୍ଣୁ ପୁରାଣ କହିଲ ଜନଙ୍କର ହିତେ
ଶରୀର କୃତାର୍ଥ କଲି ତାହା ଶୁଣି ନିତ୍ୟେ ।
ଅରଣ୍ୟରେ ବାରବର୍ଷ ବୁଲିଲେ ପାଣ୍ଡବେ
ହସ୍ତିନାପୁରକୁ ଏବେ ଗଲେଟିକି ସର୍ବେ ।
କହନ୍ତି ଅଗସ୍ତି ମୁନି ହୋ ମନୁପୁରୁଷ
କାହୁଁଯିବେ ଆଉ କିଛି ଅଜ୍ଞାତ ବରଷ ।
ପିତାମହଙ୍କର ଆଜ୍ଞା କେ କରିବ ଆନ
ଗୋପନୀୟ କର୍ମ ହେବ ରହିବେ ସେ ସ୍ଥାନ ।
କୁମ୍ଭମାସ କୃଷ୍ଣପକ୍ଷ ଚତୁର୍ଥୀର ଦିନ
ହସ୍ତାନକ୍ଷତ୍ର ଯେ ଅର୍କବାର ବିଦ୍ୟମାନ ।
ବିଷ୍ଟି ନାମରେ କରଣ ବଇଧୃତି ଯୋଗ
ସେହିଦିନ ଆଦିକରି ବାରବର୍ଷ ଭୋଗ ।
ଅସ୍କନ୍ଦ ବନେ ବିଜୟ କଲେ ପାଞ୍ଚଭାଇ
ବ୍ୟାସ ଧୌମ ପୁରୋହିତ ସଙ୍ଗେ ଛନ୍ତି ରହି ।
ମାରକଣ୍ଡ ଉଦ୍ଦାଳକ ଦୁର୍ବାସା ଅଗସ୍ତି
ବାଲମୀକ ବିଶ୍ୱାମିତ୍ର ବଶିଷ୍ଠ ପୌଲସ୍ତି ।
ଏମାନେ ମଧ ଅଛନ୍ତି ତାଙ୍କର ସଙ୍ଗରେ
ପୁଣି ଯାହା ହେଲା ଶୁଣ ଏଥୁ ଅନନ୍ତରେ ।
ଅସ୍କନ୍ଦ ଗୋପାଳେ ଯାଙ୍କ ଆସିବାର ଶୁଣି
ଆଣିଦେଲେ କ୍ଷୀର ଛେନା ଅଧାମ ଲବଣୀ ।
ଖଣ୍ଡ ଶାକର ଆବର ଦ୍ରାକ୍ଷା କନ୍ଦମୂଳ
ଆମ୍ବ ପଣସ କଦଳୀ ପୁଣି ନଟିକାଳ ।
ଏ ସମସ୍ତ ଦ୍ରବ୍ୟ ପାଇ ଧର୍ମଙ୍କ ନନ୍ଦନ
ଋଷିମାନଙ୍କୁ ସନ୍ତୋଷେ ଦିଅନ୍ତି ଭୋଜନ ।
ଭୋଜନ କରି ସକଳେ ଆଚମନ କଲେ
ଯୁଧିଷ୍ଠିର ଋଷିଙ୍କର ପାଦେ ପ୍ରଣମିଲେ ।
ବୋଇଲେ ମୁଁ ସେବାକଲି ଦ୍ୱାଦଶ ବରଷ
ତୁମ୍ଭ ପ୍ରସାଦରେ ତୀର୍ଥ ବୁଲିଲି ଅଶେଷ ।
ତୁମ୍ଭେମାନେ ଥାଅ ଏବେ ଯାଇ ଅନ୍ୟସ୍ଥାନେ
ଅଜ୍ଞାତବାସେ ରହିବି ଏବେ ମୁଁ ଗୋପନେ ।
ଏହା କହିଣ କ୍ରନ୍ଦନ କଲେ ଯୁଧିଷ୍ଠିର
ତାହା ଦେଖି ଋଷିମାନେ ବିକଳ ଅପାର ।
ପରମ କଲ୍ୟାଣ କରି ବୋଲନ୍ତି ଲୋମଶ
ଅଜ୍ଞାତବାସେ ବଞ୍ଚିବୁ ହୋଇ ଯେଉଁ ବେଶ ।
ମୋ କଲ୍ୟାଣେ ତୋତେଗୋପ୍ୟ କରନ୍ତୁ ତପନ
ତୁ ସବୁ ଚିହ୍ନିବୁ ତୋତେ ନ ଚିହ୍ନିବେ ଆନ ।
ଯଦି ଶାସ୍ତ୍ର ମନ୍ତ୍ରଆଦି ଅଟଇ ଯଥାର୍ଥ
ତେବେ ମୋର ଆଶୀର୍ବାଦ ଫଳିବ ନିଶ୍ଚିତ ।
ଆମ୍ଭେମାନେ ଆନନ୍ଦିତ ହେଉ ତୋତେ ଦେଖି
ଦାନବ ମାରି ଆମ୍ଭଙ୍କୁ ଅଛୁ ତୁହି ରଖି ।
ମାର୍କଣ୍ଡ ବୋଇଲେ ତୁମ୍ଭେ ଶୁଣ ଗୋ ପାର୍ବତୀ
ସମସ୍ତଙ୍କ ଦୁଃଖଠାରୁ ସ୍ତିରୀକଷ୍ଟ ଅତି ।
ଶୁଣ ସେହି କଥା ମୁହିଁ କହେ ତୋର ଆଗେ
ବ୍ରହ୍ମଋଷି ଏକ ଥିଲେ ଜାଣ ସତ୍ୟଯୁଗେ ।
ବୈତରଣୀ କୂଳେ ରୁଦ୍ର ବୋଲିଣ ଶାସନ
ବାଉନଲକ୍ଷ ତହିଁରେ ଥିଲେ ମହାଜନ ।
ରାମେଶ୍ୱର ବୋଲି ତହିଁ ଏକଲିଙ୍ଗ ଥିଲେ
ଅନନ୍ତ ନାଭିକମଳୁଁ ସେହୁ ଫୁଟିଥିଲେ ।
ନଗ୍ର ଉତ୍ତର ପଶ୍ଚିମ ମଧ୍ୟଗତ କୋଣେ
କଉଶିକ ବୋଲି ଥିଲା ଏକଇ ବ୍ରାହ୍ମଣେ ।
ବଡ଼ ଧାର୍ମିକ ବିବେକ ପୁରାଣେ ଶକତା
ଚତୁର୍ବେଦ ଶାସ୍ତ୍ରେ ତାକୁ ନ ଥିଲେ ଜିଣନ୍ତା ।
ଯାଗ ଯଜ୍ଞକର୍ମେ ସେହୁ ବଡ଼ ଧୂରନ୍ଧର
ପରସ୍ତ୍ରୀ ହରଣ କାର୍ଯ୍ୟେ ଅତି ଦୁରାଚାର ।
ଯେଉଁ ଦ୍ୱିଜ ଅଷ୍ଟାଦଶ ପୁରାଣେ ନିର୍ଜିତ
ସେ ପୁଣି ହୋଇଲା ଧୂର୍ତ୍ତ ବେଶ୍ୟା ସଙ୍ଗେ ରତ
ସେହି ବ୍ରାହ୍ମଣ ଭାରିଯା ନାମ ଅଟେ ସତ୍ୟା
ପରମାସାଧବୀ ସେହୁ ଅଟେ ପତିବ୍ରତା ।
ପତି ଯେ ପରମ ଗୁରୁ ପତି ମୁକ୍ତିଗତି
ଏହି କଥାକୁ ଜାଣଇ ସେ ସାଧବୀ ସତୀ ।
ସେ ବ୍ରାହ୍ମଣୀ ରୂପ ଦେଖି ବିଟ ପୁଂସମାନେ
ଦିନରାତି ଲୋଡୁଥାନ୍ତି ଶୟନ ସ୍ୱପନେ ।
ଦୂତୀ ପେଷିଣ ତା ପାଶେ ଚାଳିଦ୍ୟନ୍ତି ଦ୍ରବ୍ୟ
ବୋଲନ୍ତି ସେ ଆମ୍ଭସଙ୍ଗେ କରୁ ପ୍ରିୟଭାବ ।
ବ୍ରାହ୍ମଣ ଚଳେ ଯେ କାଳେ ଦେବପୂଜା କରି
ସେହିକାଳେ ଚାଳିଦ୍ୟନ୍ତି ଦୂତୀକୁ ହକାରି ।
ଖୋଷାପାଡ଼ି କୁଙ୍କୁମାଦି ଅଳତା ଲଗାଇ
ସୁବାସିତ ତୈଳମାନ ମଥାଦେଶେ ଦେଇ ।
ସଙ୍ଗତରେ ନିଏ ପୁଣି ବହୁତର ଧନ
ସତୀର ନିକଟେ ତହୁଁ କରଇ ଗମନ ।
ଓଳଗି ହୋଇ ବୋଲନ୍ତି ପଣ୍ଡିଆଣୀ ଶୁଣ
ବିଶ୍ୱାସକଥା ଗୋଟିଏ କରିବି ଜଣାଣ ।
ଆହେ ପଣ୍ଡିଆଣି ତୁମ୍ଭ ସ୍ୱାମୀ ବେଦବର
ପରସ୍ତିରୀ ସଙ୍ଗତରେ ଥାନ୍ତି ନିରନ୍ତର ।

ତୁମ୍ଭେତ ସୁନ୍ଦରୀ ପୁଣି ଅଟଗୋ ଯୁବତୀ
ତୁମ୍ଭଙ୍କୁ ଛାଡ଼ି କିପାଇଁ ଅନ୍ୟେ ଦ୍ୟନ୍ତି ମତି ।
ଏହାଙ୍କ ଅଭାବେ ମଧ ଦେଖ ତୁମ୍ଭ ବେଶ
ତୁମ୍ଭର ଅଛି କି ଆଉ କେହି ବିଟପୁଂସ ।
ଏ ନଗ୍ର ଦ୍ୱିଜଙ୍କପରେ ଯେ ଅଟେ ରାଜନ
କାମଦେବ ତାଙ୍କ ତୁଲ୍ୟ ତାହାଙ୍କ ନନ୍ଦନ ।
ସେ ତୁମ୍ଭଙ୍କୁ ଦେଖିଲେ ଗୋ ସ୍ନାନଘାଟଠାରେ
ମୋତେ ଡାକି ପଚାରିଲେ ତୁମ୍ଭ ବିଷୟରେ ।
ବଡ଼ଲୋକ ପୁଅ ସେ ଗୋ ଅତ୍ୟନ୍ତ ସୁନ୍ଦର
ତିରିଶ ବର୍ଷ ବୟସ କେବଳ ତାଙ୍କର ।
ଯିବକି ଗୋ ମାଏ ତୁମ୍ଭେ ମୋର ଘରଯାଏ
ଯତ୍ନକରି ଦେଇଅଛି ଭୂଷଣ ଗୁଡ଼ାଏ ।
ଏହିସବୁ ଅଳଙ୍କାରେ ଆଭରଣ କର
ଏହାପରେ ଭଲ ଦ୍ରବ୍ୟ ଦେବେ ସେ ଅପାର ।
ଏହା କହି ପାଣିଦ୍ରବ୍ୟ ଘଟ ଦେଖାଇଲା
ତାହାଦେଖି ମହାସତୀ କୋପରେ ବୋଇଲା
ମୁଁ ବିଚାରେ ଆୟୁଶେଷ ତୋହର ହେଲାଣି
ଏ ବୟସେ ନ ଛାଡ଼ିଲୁ ତୋର ଦୋଚାରୁଣୀ ।
ମୁହିଁ ଅଟେ ପତିବ୍ରତା ଆନେ ନ ଛୁଅଇଁ
କଉଶିକ ଦ୍ୱିଜ ମୋର ଦେବତା ଅଟଇ ।
ଆଲୋ ଦୋଚାରୁଣୀ ବୁଢ଼ୀ ମୋ ନିକଟୁ ପଳା
ଅନ୍ୟ ସ୍ତ୍ରୀ ନିକଟେ ଯାଇ ତା ମତିକି ବଳା ।
ଅନେକ ଭର୍ତ୍ସନା କରି କହେ ଦ୍ୱିଜନାରୀ
ପୁନଃ ପୁନଃ କହେ ଦୂତୀ ଅନୁରୋଧ କରି ।
ଅତି କୋପଭରେ ସାଧ୍ୱୀ କରିଦ୍ୟନ୍ତେ ପାଟି
ପଳାଇଲା କଳଙ୍କିନୀ ହୋଇ ଛାଟିପିଟି ।
ଏରୂପେ ବହୁ ଲମ୍ପଟ ପେଷିଥିଲେ ଦୂତୀ
ଧନେ ବଶ ନ ହୋଇଲା ତାହାର ପ୍ରକୃତି ।
ମନୁଷ୍ୟରେ ବଶ ସେହୁ ନ ହୋଇଲା ଯହୁଁ
ବିହନ୍ତା ପୁରୁଷମାନେ ଦଣ୍ଡ ଦେଲେ ତହୁଁ ।
ପ୍ରାପତ ଧନରେ ଯହୁଁ ହେଲା ଉଦାସିନୀ
ଗୌରବୀ ରମଣୀ ହୋଇ ହେଲା ଭିକ୍ଷାସିନୀ
ଅନ୍ନ ଅଭାବେ ବ୍ରାହ୍ମଣ ହେଲା ତନୁକ୍ଷୀଣ
ରକ୍ଷା ନ ମିଳଇ ଦେଖ ଦଇବ ଘଟନ ।
ସତୀକି ଦୂତୀ ପେଷନ୍ତି ଦଇବ ପୁରୁଷେ
କହି ପଠାନ୍ତି ମରୁଛୁ କିପାଁ ସ୍ୱାମୀ ଆଶେ ।
କାହାରି କଥାକୁ ସେହୁ ନ କଲା ଗ୍ରହଣ
ଦରିଦ୍ର ବ୍ରାହ୍ମଣୀ ତାର ପାପେ ନାହିଁ ମନ ।
ବୁଝିବାକୁ ସେ ସତୀର ପତିବ୍ରତା ବୁଦ୍ଧି
ତାହାର ସ୍ୱାମୀ ଅଙ୍ଗରେ ଦେଲେ କୁଷ୍ଠବ୍ୟାଧି
ବ୍ରାହ୍ମଣ ଅଙ୍ଗରେ ବ୍ୟାଧି ହୁଅନ୍ତେ ପ୍ରବଳ
ପୂଜରକ୍ତ ଅନୁକ୍ଷଣେ ବହିଲା କେବଳ ।
ତପ୍ତପାଣି ଘେନି ନାରୀ ତା କ୍ଷତକୁ ଧୁଏ
କ୍ଷତଗନ୍ଧ ଜାଣଇ ସେ ସୁବାସିତ ପ୍ରାୟେ ।
କୋମଳ ପତ୍ର ପାରିଣ ସ୍ୱାମୀକି ଶୁଆଇ
ନଗରେ ପଶିଣ ଭିକ୍ଷା ମାଗିଣ ଆଣଇ ।
ତହିଁକି ରାଜ୍ୟେ ପଡ଼ିଛି ଆସିଣ ଅକାଳ
ପାଞ୍ଚଗାଁ ବୁଲିଲେ ମିଳେ ମାଣେକ ଚାଉଳ ।
ପୁଣ ବିଚାର କରିଲେ ବିହନ୍ତା ପୁରୁଷ
ଏ ସତୀର ପତିଠାରେ କେମନ୍ତ ବିଶ୍ୱାସ ।
କେଶ ଧରି ଏ ନାରୀକି ଅନ୍ତରୀକ୍ଷେ ନେବା
କିଛି ପାପ ହେଲେ ଅବା ସେ କଥା କହିବା ।
ପୃଥିବୀରେ ଅବତୀର୍ଣ୍ଣ ହୋଇ ନାରାୟଣ
ଗଉରବ ସ୍ତିରୀ ସଙ୍ଗେ କଲେ ବିଡ଼ମ୍ବନ ।
ବୋଲାଇଲେ ଅବିକାର ପୁରୁଷ ନାମେଣ
ପାପ ନାହିଁ ଏ ଭୂମିରେ ପରସ୍ତ୍ରୀ ହରଣ ।
ସତୀ ସ୍ତ୍ରୀ ବୋଇଲା ଆରେ ପାପୀମାନେ ଶୁଣ
ମୋତେ ନ ଛୁଅଁରେ ତୁମ୍ଭେ ପୁରରବାଗଣ ।
ବିହନ୍ତା ପୁରୁଷ ଶୁଣି ଭୟ କଲେ ମନେ
ଅନ୍ତର୍ଦ୍ଧାନ ହୋଇଗଲେ ସେଠାରୁ ସେମାନେ ।
ଶୁଣ ଗୋ ପାଞ୍ଚାଳି ପତିବ୍ରତାର ମହିମା
ବିଧାତା ପୁରୁଷମାନେ ନ ଡେଇଁଲେ ସୀମା ।
ଦ୍ରୌପଦୀ ବୋଇଲେ ଶୁଣ ସୁଦେବର ସୁତ
କିସ ହେଲା ପୁଣି କହ ସେ ଦ୍ୱିଜ ଚରିତ ।
କହନ୍ତି ମାର୍କଣ୍ଡ ତୁମ୍ଭେ ଶୁଣ ଗୋ ଉତ୍ତମା
ଧର୍ମ ଟାଳି ନ ପାରଇ ପତିବ୍ରତା ବାମା ।
ମୀନମାସ ଶୁକ୍ଳପକ୍ଷ ସୋମ ଯେ ଚଉଠି
ଦ୍ୱିଜା ନାମରେ ନକ୍ଷତ୍ର ବେଳ ନବଘଟି ।
ରାଜଦ୍ୱାରେ ନୃତ୍ୟକରି ବାରନାରୀ ଗଣ
ଯାଉଛନ୍ତି ଦିବ୍ୟବେଶେ ଗୃହକୁ ଫେରିଣ ।
ତାଙ୍କୁ ଦେଖିଣ ଆସିଲା ସେ ଦ୍ୱିଜ କୌଶିକ
କହେ ଯାଙ୍କ ସଙ୍ଗେ କେତେ କରିଛି କୌତୁକ ।
ସେ ସତୀ ବୋଇଲା ସ୍ୱାମୀ କାହିଁକି ହସିଲ
ପୂର୍ବର କଥା କି ତୁମ୍ଭେ ମନେ ପକାଇଲ ।
ଯେବେ ବେଶ୍ୟା ନାରୀଠାରେ କଲ ଅଭିପ୍ରାୟ
ମନବାଞ୍ଛା ପୂରାଇବି ଦେଇ ମୁଁ ନିଶ୍ଚୟ ।
ବ୍ରାହ୍ମଣ ବୋଇଲେ ପ୍ରିୟେ କି କହୁ ଭରସି
ମୋ ଶରୀର ଦୁର୍ଗନ୍ଧରେ କେ ପାରିବ ପଶି ।
ତହୁଁ ସେ ସତୀ ବୋଇଲା ମୋହର ବଚନେ
ଅତ୍ୟନ୍ତ ସ୍ନେହ କରିବେ ଆସିଣ ସେମାନେ ।

ଖଟଣୀ ସାରି ଯାଆନ୍ତି ମୋହିନୀ ମେନକା
ସଙ୍ଗେ ଛନ୍ତି କାଞ୍ଚନିକା ଅଗ୍ନି ଚିତ୍ରଲେଖା ।
ସତୀ ସ୍ତ୍ରୀ ବୋଇଲା ମୋର କୁଷ୍ଠିଆ ବ୍ରାହ୍ମଣ
ତୋତେ ଇଚ୍ଛା କରିଛନ୍ତି ଶତଭାବେ ପୁଣ ।
ମେନକା ବୋଇଲା ମାଗୋ ଆଜ୍ଞାକୁ ତୋହର
ଦେବି ଅଙ୍ଗଭୋଗ ତାକୁ ଆଣ ମୋର ପୁର ।
ସମ୍ମତ କରାଇ ସତୀ ଗଲା ନିଜବାସ
କୁଷ୍ଠିଆ ସ୍ୱାମୀକି ତାର କରାଇ ସୁବେଶ ।
ନିଶି ଅନ୍ଧାରେ ନ ଦିଶେ ଆପଣାର କାୟେ
କାନ୍ଧରେ ବସାଇ ସତୀ ପତି ଘେନିଯାଏ ।
ବୈତରଣୀ ନଦୀତୀରେ ପଶ୍ଚିମ ଦିଗରେ
ଅଣିମାଣ୍ଡବ୍ୟ ବସିଣ ଅଛନ୍ତି ଶୂଳରେ ।
ସେ ବାଟେ ଯାଏ ସୁନ୍ଦରୀ ଭର୍ତ୍ତାକୁ ମୁଣ୍ଡାଇ
ଅନ୍ଧାରେ ସେ ଭର୍ତ୍ତା ଧକ୍କା ବାଜେ ଶୂଳେଯାଇ
ବ୍ୟଥା ପାଇଣ ସେ ଋଷି ବୋଲେ କୋପଭରେ
ଶୂଳେ ବସିଲା ଲୋକକୁ କିଏ ସେ ଚାଳେ ରେ
ମୋର ଯେବେ ସତ୍ୟଧର୍ମ ସଦା ଚିତ୍ତ ଥିବ
ସୂର୍ଯ୍ୟଉଦୟ ହୋଇଲେ ତାର ପ୍ରାଣଯିବ ।
ଏହି ପରକାରେ ଶାପ ଦ୍ୟନ୍ତେ ମୁନିବର
ସତୀ ବୋଲେ ଏବେ ମୁହିଁ ଯିବି କି ପ୍ରକାର
ଭର୍ତ୍ତାକୁ ତଳରେ ଥୋଇ ସୂର୍ଯ୍ୟେ କରେ ସ୍ତବ
ଉଦୟ ନୋହିବୁ ଛାୟାଦେବୀଙ୍କ ବଲ୍ଲଭ ।
ଯେବେ ମୋ ବୋଲ ଭାଙ୍ଗିଣ ହୋଇବୁ ଉଦୟ
ତେବେ ମୋର ଭର୍ତ୍ତା ପ୍ରାୟ ହୋଇବୁ ନିଶ୍ଚୟ
ଶାପ ଦେଇକରି ସତୀ ନିଜପୁରେ ଫେରେ
ଦିନକର ନାଥ ଉଦେ ନ ହୋଇଲେ ଡରେ ।
ସପତ ଦିନ ପର୍ଯ୍ୟନ୍ତେ ନୋହିଲା ଦର୍ଶନ
ସତୀ ଆଦେଶେ କିରଣ ନ କଲା ପତନ ।
ବ୍ରହ୍ମା ମହେଶ୍ୱର ପୁଣି ସୁରଙ୍କ ଈଶ୍ୱର
ପୁଚ୍ଛନ୍ତି ଉଦୟ କିପାଁ ନୁହ ହେ ମିହିର ।
ମିହିର ବୋଇଲା ପତିବ୍ରତା ଶାପେ ମୁହିଁ
ଭୟକରି ମୁଁ ଉଦୟ ହୋଇ ପାରୁନାହିଁ ।
ତହୁଁ ବ୍ରହ୍ମା ଦିଗପାଳମାନଙ୍କୁ ଘେନିଣ
ସତୀ ଆଶ୍ରମେ ପ୍ରବେଶ ହୋଇଲେ ଯାଇଣ ।
ବ୍ରହ୍ମା ବୋଇଲେ ସୂର୍ଯ୍ୟଙ୍କୁ କିପାଁ କରୁ ରୋଷ
ସେ ଉଦୟ ନ ହୋଇଲେ ପୃଥ୍ୱୀ ଯିବ ନାଶ ।
ଶୁଣି ସେ ସତୀ ବୋଇଲା ଉଦେହେଲେ କିନା
ଏ ସ୍ୱାମୀ ମୋହର ତେବେ ନାଶଯିବେ ସିନା
ତା ଶୁଣି ବୋଇଲେ ଉଦେ ହେଉ ଦିନକର
ତୋ ପତିକି ଜ୍ୟାଇଁଦେବା ଆମ୍ଭେ ପୁନର୍ବାର ।
ତା ସଙ୍ଗେ ତୁ ମଧ୍ୟ ଯାଇ ପଡ଼ିବୁ ବହନି
ନିଷ୍ପାପେ ବଞ୍ଚାଇ ଦେବା ପୁଣି ପତି ପତ୍ନୀ ।
ସତୀ ବୋଇଲା ଉଦୟ ହେଉ ଦିନମଣି
ଏ ରଜନୀ ଶେଷ ହୋଇ ଦିନ ହେଉ ପୁଣି ।
କଉଶିକ ଦ୍ୱିଜ ଯହିଁ ପ୍ରତ୍ୟକ୍ଷରେ ମଲା
ଅଣିମାଣ୍ଡବ୍ୟର କଥା ଅନ୍ୟଥା ନୋହିଲା ।
ଚିତା ସଂଗ୍ରହ କରିଲେ ସର୍ବ ଦିଗପାଳେ
ସ୍ୱାମୀକି ଘେନିଣ ସତୀ ପଶିଲା ଅନଳେ ।
ଚନ୍ଦନ ଘୃତ ମିଶାଇ ପୋଡ଼ିଲେ ସେ କାୟେ
ସେ ପାଉଁଶ ଦୁଇଭାଗ କଲେ ଦେବତାଏ ।
ସ୍ତ୍ରୀ ପୁରୁଷ କରି କଲେ ଦୁଇଟି ପିତୁଳି
ମୃତ୍ୟୁସଞ୍ଜିବନୀ ପଢ଼ି ସୁଧା ଦେଲେ ଢାଳି ।
ନିଦ୍ରାକୁ ତେଜି ଉଠନ୍ତି ଯେଉଁରୂପେ ପ୍ରାଣୀ
ତେମନ୍ତେ ଉଠିଲେ କାମ ରତି ରୂପ ଜିଣି ।
ଦେବ ବିମାନେ ବସାଇ ଆଣିଲେ ଆକାଶେ
ଉଦୟ ହୋଇଲେ ସପ୍ତଋଷିଙ୍କର ପାଶେ ।
କହନ୍ତି ମାର୍କଣ୍ଡ ଶୁଣ ଦ୍ରୁପଦ କୁମାରୀ
ପତିବ୍ରତା ହେଲେ ପୁଣ୍ୟ ହୁଅଇ ଏପରି ।
ଅନିତ୍ୟ ସଂସାର ଏହୁ କିଛି ନୁହେ ଚିର
ଅନେକ ଦୋଷ ବାଛଇ ଥାଇ ନାଶକର ।
ସ୍ୱାମୀ ସେବାହୁଁ ସ୍ତିରୀଙ୍କ ଅନ୍ୟ ପୁଣ୍ୟ ନାହିଁ
ଏହି ମୋକ୍ଷ ଧର୍ମ ସିନା ତାଙ୍କର ଅଟଇ ।
ଆଦିଅନ୍ତ କିଛି ନାହିଁ ବୟସ ମଧ୍ୟରେ
ତହିଁ ପାର୍ଥ ପୁଣ୍ୟ ବିଧି ହୁଅଇ ଲବ୍‌ଧରେ ।
ବୟସ ଗଲେ ବିଚାର ନ କରିବ ଆଉ
ଅଳପ ସୁଖରେ ପାପ ବଢ଼ଇ ନ ବହୁ ।
ବୃଦ୍ଧ ବୟସେ ବିଚାର ଏ କଥା ଶୁଣିବ
ନିଜ ପ୍ରଭୁ ସେବାକଲେ କାରଣ ପାଇବ ।
ତୁମ୍ଭେ ବା ବିଚାରୁଥିବ ବୁଝିବା କେମନ୍ତେ
ପତିବ୍ରତା ସ୍ତିରୀ କଥା ଚିନ୍ତି ହୃଦଗତେ ।
କହନ୍ତି ମାରକଣ୍ଡେୟ ଶାସ୍ତ୍ର କଥା ଶୁଣ
ସଂସାରୁ ତରିବାକୁଟି ଶ୍ରୀବିଷ୍ଣୁ ପୁରାଣ ।
ସୁସ୍ତିରୀ ସୁବୁଦ୍ଧି ଆଉ ଅଟନ୍ତି ସୁଗତି
ଅନିତ୍ୟ ସଂସାରେ ପାଆନ୍ତି ସେ ନିଜପତି ।
ଶ୍ରୀମହାଭାରତ ଆରଣ୍ୟକ ପର୍ବ କଥା
ଶାରଳା ଦାସ କହିଲେ ସତୀର ବାରତା ।

■ ■ ■

## ତ୍ରିପୁର ମୋହିନୀ ହରଣ ଓ ମେରୁଶୃଙ୍ଗ ଦୈତ୍ୟ ବଧ

ପାଦେ ପଡ଼ି ପୁଚ୍ଛା କଲେ ମନୁ ବୈବସ୍ୱତ
ତୁମ୍ଭ ମୁଖରୁ ଶୁଣିଲି ଭାରତ ଚରିତ ।

ପାଣ୍ଡବେ ବାରବର୍ଷ ତ କଟାଇଲେ ବନେ
ତଦପରେ କେଉଁକଥା କରିଲେ ସେମାନେ ।
ସେହି କଥା ଶୁଣିବାକୁ ମୋର ଅଭିଳାଷ
କହନ୍ତି ଅଗସ୍ତି ତେବେ ଶୁଣ ହେ ନରେଶ ।
ଯାହା କହିଥିଲେ ସତ୍ୟବତୀ ଦେବୀ ଶିଷି
ସାତକଳ୍ପ ବଞ୍ଚାଇଲେ ମାର୍କଣ୍ଡ ମହର୍ଷି ।
ପ୍ରସ୍ତାବ ବାକ୍ୟାନୁସାରେ କହିଲେ ବିଧାନ
ଦ୍ରୌପଦୀକୁ ଜଣାଇଲେ ସତୀର ଆଖ୍ୟାନ ।
ଆଗୋ ଅନ୍ନପୂର୍ଣ୍ଣେ ତୁ ତ ଅଟୁ ମହାସତୀ
ସଂସିଦ୍ଧା ସାଧବୀ ସଦା ପ୍ରସନ୍ନ ମୂରତି ।
ଅଗ୍ନି ଭିତରୁ ତୁହି ଗୋ ଅଛୁ ଅବତରି
ପଞ୍ଚପାଣ୍ଡବ ମୋହିତା ଅଟୁ ଯୋଗେଶ୍ୱରୀ ।
ଗୋପନ ଭାବେ ଯେପରି ଦିନ ହୁଏ ପାର
ସେହିପରି ନିଜ ନିଜ ରୂପ ଗୋପ୍ୟକର ।
ଦ୍ରୌପଦୀ ବୋଇଲେ ଦେବ ଶୁଣ ମହାଯତି
ପାଣ୍ଡବ ଛଡ଼ା ମୋହର ନାହିଁ ଅନ୍ୟଗତି ।
ପାଣ୍ଡବ ଜଗତ ଶ୍ରେଷ୍ଠ ବୀର ଚୂଡ଼ାମଣି
ମୋତେ ଯେ ଇଚ୍ଛିବ ନିଶ୍ଚେ ହେବ ଖଣ୍ଡତିନି ।
କଲ୍ୟାଣ କରିଣ ଋଷି କରିଲେ ଗମନ
ଭୀମସେନେ ତିଆରନ୍ତି ବସି ପୁନଃ ପୁନଃ ।
ଗୋପନ ହୋଇବ ଦିନ କାଟିବା ନିମନ୍ତେ
ବାଦୀ ନ ହୋଇବ ତୁମ୍ଭେ କାହାରି ସହିତେ ।
କର୍ମ ବିପାକେ ଯଦ୍ୟପି ବିପଦ ପଡ଼ଇ
ସଂହରିବ ବଳବୀର୍ଯ୍ୟ ବରଷକ ପାଇଁ ।
ଦିନ କ୍ଷେପଣ କରିବ ଦୀନ ଦୁଃଖୀ ପ୍ରାୟ
ଏହା କହି ଆଶୀର୍ବାଦ କଲେ ମୁନିଚୟ ।
ଆମ୍ଭେମାନେ ଯାଉଅଛୁ ଏବେ ସ୍ଥାନାନ୍ତରେ
ତୁମ୍ଭ ବିହୀନେ ବଞ୍ଚିବୁ କେମନ୍ତ ପ୍ରକାରେ ।
ଆଜଠାରୁ ଆଶୀର୍ବାଦ କରୁଅଛୁ ଆମ୍ଭେ
ପଞ୍ଚକଟକ ମଧ୍ୟରେ ରାଜା ହୁଅ ତୁମ୍ଭେ ।
ଆୟୁ ଆରୋଗ୍ୟ ବାଞ୍ଛିଣ ଗଲେ ମୁନିମାନେ
ଚଳିଗଲେ ବାଳଖିଲ୍ୟା ଯେ ଯାହାର ସ୍ଥାନେ ।
ରହିଲେ ମାର୍କଣ୍ଡ ଆଉ ଅଗସ୍ତି ଲୋମଶ
ପୌଲସ୍ତ୍ୟ ବଶିଷ୍ଠ ଏହି ପାଞ୍ଚଟି ତାପସ ।
ପାଞ୍ଚପାଣ୍ଡବ ଆବର ଦ୍ରୁପଦ ଦୁହିତା
ଏକତ୍ରେ ବସି ଭାବନ୍ତି ଗୁପ୍ତବାସ କଥା ।
ଧର୍ମ ବୋଇଲେ ବାବୁରେ ଶୁଣ ଫାଲଗୁନି
ହରିଙ୍କି ସ୍ମରଣ କର ଆସନ୍ତୁ ଏକ୍ଷଣି ।
ଶୁଣି ଶୁଚିମନ୍ତ ହୋଇ ବସି ଶୁଦ୍ଧାସନେ
ଶ୍ରୀହରିଙ୍କୁ ସୁମରଣା କଲା ପଞ୍ଚମନେ ।
ଧନଞ୍ଜୟ ସୁମରନ୍ତେ କମ୍ପିଲା ଆସନ
ଜାଣି ପାରିଲେ ସେକ୍ଷଣି ଶ୍ରୀମଧୁସୂଦନ ।
ଅଜ୍ଞାତ ଗୁପତବାସ ନିକଟେ ସେ ଜାଣି
ଖଗପୃଷ୍ଠେ ବିଜେକଲେ ପ୍ରଭୁ ଚକ୍ରପାଣି ।
ଆକାଶ ମାର୍ଗେ ଗମଇ ବିନତା ନନ୍ଦନ
ଦୂରରୁ ଦର୍ଶନ କରି ଧର୍ମଙ୍କ ଆସନ ।
ବହୁତ ଆନନ୍ଦ ହେଲେ ତାଙ୍କ ମୁଖ ଦେଖି
ଗରୁଡ଼ ପୃଷ୍ଠ ଆସନ ସତ୍ୱରେ ଉପେକ୍ଷି ।
ନିକଟେ ପ୍ରବେଶି କଲେ ତାଙ୍କୁ ନମସ୍କାର
ଉଠି କଲ୍ୟାଣ କରିଲେ ଧର୍ମ ଯୁଧିଷ୍ଠିର ।
ଯୁଧିଷ୍ଠିର ପୁଚ୍ଛାକଲେ ରାମଙ୍କ କୁଶଳ
ଆବର ପୁଚ୍ଛିଲେ ଦ୍ୱାରାବତୀର ସକଳ ।
ତାହାଶୁଣି ଜଗନ୍ନାଥ ବଚନ ଭାଷନ୍ତି
ତୁମ୍ଭ ପ୍ରସାଦେ ସକଳ କୁଶଳେ ଅଛନ୍ତି ।
ବ୍ୟାସ ବୋଇଲେ ପାଣ୍ଡବେ ଛନ୍ତି ଅନୁସରି
ଏ ଦୁସ୍ତର ବିପଦରୁ ଉଦ୍ଧାର ତୁ ହରି ।
ସର୍ବ ଭୂତନାଥ ତୁହି ଥାଇ ସର୍ବ କରୁ
ସର୍ବଜନ ଚିନ୍ତାମଣି ନାମ ତେଣୁ ଧରୁ ।
ବାର ବର୍ଷ ବୁଲି ବଞ୍ଚିଲେ କାନନ
ଅଜ୍ଞାତବାସ ଅଛଇ ବର୍ଷେ ତେରଦିନ ।
ଏକଶ କୋଡ଼ିଏ ଦିନ ହୋଇବ ଲେଖନ୍ତେ
ବନେ ଆଉ ଚାରିମାସ ରହିବେ କେମନ୍ତେ ।
ଏତେକ ସରିବା ମାତ୍ରେ ହୋଇବେ ସେ ଜ୍ଞାତ
ତେଣୁକରି ସୁମରଣା କଲେ ଧର୍ମସୁତ ।
କୂଟ କପଟୀ ଶକୁନି ମନ୍ତ୍ରୀ ଯେ ଅଟଇ
ବଢ଼ାଦିନ ଲେଖି ଯୋଗ ଯଦ୍ୟପି କରଇ ।
ଧର୍ମସୁତ ତ ଧର୍ମକୁ ତିଳେ ନ ଛାଡ଼ିବେ
ପୁଣିହିଁ ବନବାସକୁ ନିଶ୍ଚୟ ସେ ଯିବେ ।
ଶୁଣି ଯୁଧିଷ୍ଠି ବୋଇଲେ ଶୁଣ ଜଗନ୍ନାଥ
ବ୍ୟାସ ଯେ କଥା କହିଲେ ତାହା ଅଟେ ସତ ।
ମୋତେ ତୋହର ସଦୟ ଥିବାରୁ ଗୋବିନ୍ଦ
ମନଦୁଃଖ ନ ଲାଗିଲା ହୋଇଲି ଆନନ୍ଦ ।
ଏ ଅରଣ୍ୟ ବାସକୁ ମୁଁ ମଣିଲଇଁ ହିତ
ନାନା ତୀର୍ଥ ବୁଲି ବୁଲି ହୋଇଲି ପବିତ୍ର ।
ବ୍ୟାସ ମାର୍କଣ୍ଡ ଯୁଧିଷ୍ଠି ଏହି ତିନିଜଣ
ସଙ୍ଗତେ ଘେନି ବିଚାର କଲେ ନାରାୟଣ ।
ପୁଣି ଅଗସ୍ତି ବାହ୍ଳିକ ବଶିଷ୍ଠ ଲୋମଶ
ଏହାଙ୍କୁ ଡାକି ପୁଚ୍ଛନ୍ତି ପ୍ରଭୁ ହୃଷୀକେଶ ।
ହେ ସପ୍ତଋଷି ମୁଁ ପୁଚ୍ଛେ କଥାର ବିଧାନେ
ପାଣ୍ଡବେ ଗୋପନ ଏବେ ହେବେ କେଉଁସ୍ଥାନେ

ମାର୍କଣ୍ଡ ବୋଲନ୍ତି ହିମ ପର୍ବତ ଉତ୍ତରେ
ଜନ ମାନବ ନାହାନ୍ତି ଶତଯୁଣାନ୍ତରେ ।
ବହୁ କଥା ଅଛି ରଣସ୍ତମ୍ଭର ଗଡ଼ରେ
ସେ ପୁର ରଚେ କରତା କାନନ ଭିତରେ ।
ବିଜେ ମାହେଶ୍ୱରୀ ତହିଁ ପ୍ରସନ୍ନା ହିଙ୍ଗୁଳା
ଯୋଗିନୀବୃନ୍ଦଙ୍କୁ ଘେନି କରୁଥାନ୍ତି ଖେଳା ।
ଜୀବଜନ୍ତୁ ଗମ୍ୟ ନାହିଁ ଯୋଗ୍ନୀଙ୍କ ଭୟରେ
ଗୋସାମଣୀ ତୃପ୍ତକରି ରହିଲେ ସେଠାରେ ।
ଅଗସ୍ତି ବୋଇଲେ ଆହୋ ଦକ୍ଷିଣ କୋଶଳେ
ବୃକ୍ଷେକ ଅଛଇ ଜନାର୍ଦ୍ଦନ ପାଟସ୍ଥଳେ ।
ଶୁଣି ପ୍ରତ୍ୟୁତ୍ତର ଦେଲେ ତାପସ ବଶିଷ୍ଠ
ଏକ ଶାଳବୃକ୍ଷ ଅଛି ମନ୍ଦର ନିକଟ ।
ମନ୍ଦର ଗନ୍ଧମାଦନ ଲୋକାଲୋକ ପୁରେ
ମେରୁଶୂଳ ଦୈତ୍ୟରାଜ ତହିଁ ରାଜ୍ୟକରେ ।
ଗଜ ତୁରଙ୍ଗ ସୈନ୍ୟାଦି ତାର କିଛି ନାହିଁ
ସହସ୍ର କନ୍ୟା ଘେନିଣ ସେ ଦର୍ପିଷ୍ଟ ଥାଇ ।
ତାକୁ କେହି ଯାଇ ବଂଧ କରନ୍ତା କି ରଣେ
ସେ ସ୍ଥାନେ ଗୋପ୍ୟ ହୁଅନ୍ତେ ମଲେ ଏକଜଣେ
ଅମରପୁରକୁ ସଦା ଧାଡ଼ି ସେ ଦିଅଇ
ସଦା ସମ୍ପାତି କନ୍ଧରେ ସେହୁ ଚଢ଼ିଥାଇ ।
ଧନୁ ଗଦା ଖଡ୍‌ଗ କୁନ୍ତ ନ ଧରଇ ହାତେ
କୋଦାଳ ଆୟୁଧ ସେହୁ ନ ଛାଡ଼େ କିଞ୍ଚିତେ ।
ଯୁଧିଷ୍ଠିର ପଚାରିଲେ ବଶିଷ୍ଠ ମୁନି ହେ
ମେରୁଶୂଳ ଦୈତ୍ୟ ବୋଲି ଅଟଇ ସେ କିଏ ।
ମୁନି ବୋଇଲେ ଅନନ୍ତ ନାମରେ ଅସୁର
ଶୃଙ୍ଗନାଦ ବୋଲି ହେଲା ତାହାର କୁମର ।
ଶୃଙ୍ଗନାଦ ପୁତ୍ର ହେଲା ବଜ୍ରଶୂଳ ବୀର
କୃତାନ୍ତଶୂଳ ହୋଇଲା ତାହାର କୁମର ।
ଏହାର ପୁତ୍ର ଅଟଇ ରେ ରେ ଶୂଳଦୈତ୍ୟ
ତାଡ଼କଶୂଳ ଏହାଠୁ ହୋଇଲା ସମ୍ଭୂତ ।
ତାଡ଼କ ପୁତ୍ର ନିର୍ଘାତଶୂଳ ନାମ ବୀର
ଅର୍ଥଶୂଳ ହୋଇଲାକ କୁମର ଏହାର ।
ଦ୍ୱୀପାଶୂଳ ବୋଲି ଏହା ପୁତ୍ର ଅନୁପମ
ସଂସାର ବିଖ୍ୟାତ ହେଲା ଜାଣ ଏହା ନାମ ।
ଦ୍ୱୀପାଶୂଳ ପୁତ୍ର ହେଲା ନାମ ରୂପାଶୂଳ
ଦାନାବାଶୂଳ ବୋଲିଣ ଅଟେ ଏହା ବାଳ ।
ଦାନବାଶୂଳର ପୁତ୍ର ମହୀଶୂଳ ହେଲା
ମହୀ ପୁତ୍ର ବଜ୍ରାଙ୍ଗୁଳ ନାମ ବୋଲାଇଲା ।
ବଜ୍ରାଙ୍ଗୁଳ ପୁତ୍ର ହେଲା ମହାଶୂଳ ବୋଲି
ଏକା ଥରକେ ବୁଲଇ ମହୀ ଦଣ୍ଡ ଭଳି ।

ବିରୂପ ସତ୍ୟଯୁଗରେ ବିରଞ୍ଚି ସେବିଲା
ଜଗଜ୍ଜିତା କରି ପୁତ୍ର ଗୋଟିଏ ମାଗିଲା ।
ଭୋଳେ ପ୍ରସନ୍ନ ହୋଇଲେ ଦେବ ଅଂଶୁମାଳ
ବୋଇଲେ ମହୀଶୂଳର ହେଉ ଏକବାଳ ।
ସଦୟ ହୋଇଣ ବର ଦିଅନ୍ତେ ବିରଞ୍ଚି
ମେରୁଶୂଳ ନାମେ ପୁତ୍ର ହୋଇଲା ଉତ୍ପତ୍ତି ।
ସେ ମେରୁଶୂଳ ଭାରିଯା ନାମ କାତ୍ୟାୟିନୀ
ତାହାର ଦୁହିତା ନାମ ତ୍ରୈଲୋକ୍ୟ ମୋହିନୀ
ବର ଯହୁଁ ନ ପାଇଲା ତା ଅନୁରୂପରେ
ଯତ୍ନକରି ରଖେ ନୃପ ନେଇଣ ମେଢ଼ରେ ।
ସେ ମେଢ଼ର ଦୀର୍ଘ ପ୍ରତି ଅଟେ ପାଞ୍ଚକ୍ରୋଶ
ପାଞ୍ଚଶତ ହସ୍ତ ଉଚ୍ଚ ତାର ଚୂଡ଼ାଦେଶ ।
ବହୁତ ନଗ୍ର ଅରଣ୍ୟ ନଦନଦୀ ଦେଶ
ତାହା ଉପରେ ଚଢ଼ିଲେ ହୁଅଇ ପ୍ରକାଶ ।
ସେ ପୁରେ ଥୋଇଛି ନେଇ ସେହି ସୁନ୍ଦରୀକି
ମାଛି ଯାଇ ନ ପାରଇ ତାହାର କତିକି ।
କାର୍ତ୍ତିକ ଶୁକ୍ଳନବମୀ ପୁଣି ଗୁରୁବାର
ଶ୍ରବଣା ନକ୍ଷତ୍ର ଯୋଗ ଅଟେ ସେ ଦିନର ।
ବାଳବ ନାମେ କରଣ ପ୍ରୀତି ନାମେ ଯୋଗ
ତୁଳ ସଙ୍କରାନ୍ତିକି ଯେ ବିଂଶଦିନ ଭୋଗ ।
ଦୁର୍ବାସା ମହର୍ଷି ଯାଇ ସେ ଦିନ ଭେଟିଲେ
ତ୍ରିପୁରମୋହିନୀ ଦେଖି ପ୍ରଣିପାତ ହେଲେ ।
କଲ୍ୟାଣ ପୌରୁଷ ତାକୁ କରିଲେ ବହୁତ
ବୋଇଲେ କରିବି ପୂର୍ଣ୍ଣ ତୋର ମନୋରଥ ।
ତା ଶୁଣି ବୋଇଲା ତହୁଁ ତ୍ରିପୁର ମୋହିନୀ
ମୋର ପାଇଁ ବର ଏକ ଠାବକର ମୁନି ।
କନ୍ୟାର ବଚନେ ମୁନି ହୋଇଲେ ତୃପତି
କାଢ଼ିଲେ ସେ କାର୍ତ୍ତିକର ପଟପ୍ରତିମୂର୍ତ୍ତି ।
କନ୍ୟାକୁ ଦେଖାଇ ମୁନି ବୋଇଲେ ଏପରି
ଏହାର ମାତା ପାର୍ବତୀ ପିତା ତ୍ରିପୁରାରି ।
କାମନାଶ କରି ଶିବ ଯାଙ୍କୁ କଲେ ଜାତ
ପ୍ରତ୍ୟକ୍ଷେ ଦିଶନ୍ତି କାମ ମୂରତି ସଂଜାତ ।
ମହା ଅନଳକୁ ଭେଦି ଏହୁ ହେଲେ ଜାତ
ଜନ୍ମ ମାତ୍ରକେ ମାଇଲେ ତାରକା ଦଇତ୍ୟ ।
ଷଡ଼ମୁଖ ବାରଭୁଜ ବାରଟି ନୟନ
ଚାହିଁଲେ କୋଟି ବ୍ରହ୍ମାଣ୍ଡ କରନ୍ତି ଦର୍ଶନ ।
ମହାଜ୍ଞାନୀ ତପୋବନ୍ତ ପୁଣି ଗୁଣବନ୍ତ
କେତେ ମନୁ ଭୋଗ କଲେ ତାର ନାହିଁ ଅନ୍ତ ।
ବହୁପୁଣ୍ୟ କରିଥିବୁ ଯେବେ ଲୋ ସୁନ୍ଦରୀ
ରୁଦ୍ର ପୁରୁଷ ପାଇବୁ ତେବେ ହାତ ଧରି ।

ପର୍ଶୁକୁଠାର ପିନାକ ସମାନରେ ଧନୁ
ଶୂଳଶକ୍ତି ଧରି ଶୋଭାପାଏ ତାଙ୍କ ତନୁ ।
ମହାବୀର ପୁରୁଷ ସେ ଅଜେୟ ସମରେ
ଶିବଠାରୁ ଶତଗୁଣ ଅଟନ୍ତି ବଳରେ ।
ବିରହିତା କନ୍ୟା କହେ ମଦନ ଆରତେ
ଭୋ ଭୁନି ସତେକି ପାପ୍ତହୋଇବେ ସେ ମୋତେ
ମୁନି ବୋଇଲେ ତୋଇଚ୍ଛା ଯେବେଲୋ ମୋହିନୀ
ସାତ ଦିନରେ ତାହାଙ୍କୁ ଆସିବି ମୁଁ ଘେନି ।
କନ୍ୟା ବୋଇଲା ଭୋ ମୁନି ତୁମ୍ଭରେ ଶରଣ
ଭକତବତ୍ସଳ ତୁମ୍ଭେ ତାଙ୍କୁ ବେଗେ ଆଣ ।
ଦୁର୍ବାସା ଚଳିଲେ ତହୁଁ ଆନନ୍ଦିତ ହୋଇ
କାର୍ତ୍ତିକେଶ୍ୱରଙ୍କୁ ବେଗେ ଆଣିବାର ପାଇଁ ।
ବଶିଷ୍ଠ ବୋଇଲେ ଯାର ଶିବ ବନ୍ଧୁବଳ
ପାଣ୍ଡବ ବଳେ ଆଉ କି ମରେ ମେରୁଶୂଳ ।
ଯୁଧିଷ୍ଠି ବୋଇଲେ ତୁହି ଶୁଣ ଆରେ ମନ୍ତ୍ରୀ
ଈଶ୍ୱର ମେରୁଶୂଳର ହେବ କେଡ଼େ ପ୍ରୀତି ।
ସହଦେବ ବୋଲେ ତାର ବହୁକଥା ଅଛି
ପାର୍ଥଠାକୁରଙ୍କ ହସ୍ତେ ମରିବ କହୁଛି ।
ମାର୍କଣ୍ଡ ବୋଇଲେ ମନ୍ତ୍ରୀବର କଥା ଶୁଣି
ବହୁଦୂର କଥା ସେ ତ ମରିବ ଏକ୍ଷଣି ।
ସହଦେବ ମନ୍ତ୍ରୀ ବୋଲେ ଶୁଣ ଯଦୁସାଇଁ
ବହୁତ କଳହ ହେବ ସେ କନ୍ୟାର ପାଇଁ ।
ଦୁର୍ବାସା ଗଲେ ମୋହିନୀ ପ୍ରତିମୂର୍ତ୍ତି ଘେନି
ମନ୍ଦର ଶୈଳେ ଭେଟିଲେ ସେ ନାରଦ ମୁନି ।
ନାରଦ ଦୁର୍ବାସ ଦୁହେଁ ବସି ଏକମେଳେ
ଦୁର୍ବାସା କହିଲେ ତାଙ୍କୁ କଥା କୁତୂହଳେ ।
ମେରୁଶୂଳ ଦୈତ୍ୟସୁତା ତ୍ରିପୁରମୋହିନୀ
ତା ନିମନ୍ତେ କାର୍ତ୍ତିକକୁ ଯାଉଅଛୁ ଆଣି ।
ନାରଦ କହିଲେ କଲ ବଡ଼ ଅବିଚାର
ସେଥିପାଇଁ ତୁମ୍ଭେ ଲଜ୍ଜା ପାଇବ ଅପାର ।
ଚିତ୍ରପଟ ଦେଖାଇଣ ଭଣ୍ଡିଲ କନ୍ୟାକୁ
କାର୍ତ୍ତିକ ଆନନ୍ଦ ହେବେ ପାଇଣ ତାହାକୁ ।
ଭିତରେ ଲୁଚାଇ ଦୋଷ ଦେଖାଇଣ ଗୁଣ
ପାଦେ କୁଷ୍ଟବ୍ୟାଧି ଅଛି ତାହା କି ନ ଜାଣ ।
ହାଡ଼ମାଳ ଅଳଙ୍କାର କଉପନୀ ବାସ
ପ୍ରପଞ୍ଚ ତପସ୍ୱୀ ବେଶ ଦେହରେ ପାଉଁଶ ।
ଦୁର୍ବାସା ବୋଇଲେ ତାହା ଅଟେ ସତ୍ୟବାଣୀ
ମୋହିନୀ କନ୍ୟା ବରିଛି ମୋର କଥା ଶୁଣି ।
ଏହାକହିଣ ଦୁର୍ବାସା ଗଲେ କପିଳାସ
ନାରଦ କନ୍ୟା ପାଶରେ ହୋଇଲେ ପ୍ରବେଶ
ଅକସ୍ମାତେ ପ୍ରବେଶନ୍ତେ ସେ ନାରଦ ମୁନି
ତାଙ୍କୁ ଦେଖି ପୂଜାକଲା ତ୍ରିପୁରମୋହିନୀ ।
ବହୁତ ଆନନ୍ଦ ହୋଇ ଦୈତ୍ୟର କୁମାରୀ
ବୋଇଲା ପ୍ରସନ୍ନ ମୋତେ ହୁଅ ବ୍ରହ୍ମଚାରୀ ।
ମୋର ପିତା ଦୂରନ୍ତକ ଦୈତ୍ୟ ଅଧିପତି
ଅନ୍ୟେ ପ୍ରଦାନ ନ କଲା ହୋଇଲି ଯୁବତୀ ।
ତିନିପୁରରେ ଭ୍ରମଣ ଅଟଇ ତୁମ୍ଭରି
ମୋର ଅନୁରୂପେ ବର ଆଣ ଖୋଜିକରି ।
ନାରଦ ବୋଇଲେ ଭକ୍ତି ତୋହର ଅପାର
ଆଣିଦେବି ବାଛିକରି ଏକଗୋଟି ବର ।
ଏହା କହି ପ୍ରଦ୍ୟୁମ୍ନର ଚିତ୍ରପଟ ଧରି
କନ୍ୟା ଆଗେ ଦେଖାଇଲେ ନେଇ ତପଚାରୀ
ପ୍ରକୃତ ଅନଙ୍ଗ ଯେହ୍ନେ ଜନ୍ମ ଅଙ୍ଗ ପାଇ
ଦେଖି ଜେମା ଅଙ୍ଗେ ପଞ୍ଚବିଶିଖ ବିନ୍ଧଇ ।
ତ୍ରିଗୁଣ ପୁଂସ ସହସ୍ର ଗୁଣେ ଅବତାର
ମନସିଜ ମୋହନ ସେ ଶ୍ରୀକୃଷ୍ଣ କୁମର ।
ଦହନ କାଞ୍ଚନ ପ୍ରାୟ ଅଙ୍ଗଆଭା ତାର
ପୁଷ୍ପଧନୁ ଶରେ ଶୋଭା ଦିଶେ ବେନିକର ।
ଅନଙ୍ଗର ରୂପଗୁଣ ପ୍ରତ୍ୟକ୍ଷରେ ସେହି
ତାକୁ ଦେଖି ବିରହିଣୀ ପ୍ରଣାମ କରଇ ।
ବୋଲେ ହେ ନାରଦ ମୁନି ତୁମ୍ଭଙ୍କୁ ଦଇନି
ଏହି ମୋହର ସ୍ୱାମୀକୁ ବେଗେ ଆସ ଘେନି ।
ନାରଦ ବୋଇଲେ ଶୁଣ ଦୈତ୍ୟର ଦୁଲ୍ଲଣୀ
ଦୁର୍ବାସା ଗଲେ ପରା ଲୋ କାର୍ତ୍ତିକଙ୍କୁ ଆଣି ।
କୁମାରୀ ବୋଇଲା ତାଙ୍କୁ ପରିତ୍ୟାଗ କଲି
ନିଜ ପତିକରି ଯାଙ୍କୁ ପ୍ରାଣ ସମର୍ପିଲି ।
ମୁନି ବୋଇଲେ କ୍ଷଣକେ ଦ୍ୱାରକା ନଗରୀ
ଅଶୀ ସହସ୍ର ଯୋଜନ କ୍ଷୀରାର୍ଣ୍ଣବ ପାରି ।
କୁମାରୀ ବୋଇଲେ ଚିତ୍ର ଦେଇଯାଅ ମୋତେ
ଆଜହୁଁ ବରିଲି ସେବା ତାଙ୍କ ପାଦାଗ୍ରତେ ।
ପଟ ଦେଇଣ ନାରଦ ସେଠାବରୁ ଗଲେ
ମନ ପବନ ଦଣ୍ଡରେ ଦ୍ୱାରକାରେ ହେଲେ ।
ସହଦେବ ଜଣାଇଲେ ଶୁଣ ଧର୍ମମଣି
ନାରଦ ପ୍ରଦ୍ୟୁମ୍ନ ଦୁହେଁ ଆସିବେ ଏକ୍ଷଣି ।
ସେ ତ୍ରିପୁର ମୋହିନୀର ଘେନି ଚିତ୍ରପଟ
ପ୍ରଦ୍ୟୁମ୍ନକୁ ଦେଖାଇଲେ ନେଇ ବ୍ରହ୍ମାଚାଟ ।
ଯୁଧିଷ୍ଠିର ପଚାରିଲେ ଶୁଣ ସହଦେବ
ନାରଦ ବାକ୍ୟେ ପ୍ରଦ୍ୟୁମ୍ନ ସତେ କି ଆସିବ ।
ଏମନ୍ତ ଶୁଣି ବୋଲଇ ମନ୍ତ୍ରୀ ଚୂଡ଼ାମଣି
ଏଠାରେ ଭେଟିଲେ ଆସି ପିତା ଚକ୍ରପାଣି ।

ପ୍ରଦ୍ୟୁମ୍ନ ଆସିବ ସ୍ୱାମୀ ପୁଷ୍ପକ ରଥରେ
କୃଷ୍ଣଙ୍କୁ ଦେଖା କରିବ ନାରଦ ସଙ୍ଗରେ ।
ବ୍ରହ୍ମା ସୁତ ପ୍ରଦ୍ୟୁମ୍ନଙ୍କୁ କରିଲେ ପ୍ରକାଶ
ଗୁଣବତୀ ନାରୀ ଏକ ପାଇବୁ ତୁ ଆସ ।
ଦୁର୍ବାସା ଗଲେ କାର୍ତ୍ତିକ ଆଣିବାର ପାଇଁ
ସେ ତ୍ରିପୁରମୋହିନୀର ତାକୁ ଇଚ୍ଛା ନାହିଁ ।
ତୋତେ ବରିବାକୁ ଇଚ୍ଛା କରିଛି ତରୁଣୀ
ଦେଖି ଯିବା ଆସ ମୋର ସଙ୍ଗରେ ଏକ୍ଷଣି ।
ନାରଦ ବୋଇଲେ ତୋର ବିଳମ୍ବ କିପାଇଁ
କାର୍ତ୍ତିକ ଆନେ କି ତୋତେ କନ୍ୟା ପ୍ରାପ୍ତ ନାହିଁ
ବାବୁ ସେ କନ୍ୟାର ସମ ତ୍ରିଭୁବନେ ନାହିଁ
କିସ ପଟାନ୍ତର ତାକୁ ଦେଇପାରେ ମୁହିଁ ।
କୁଞ୍ଚିତ ଚିକୁର ଗଭା ଅଙ୍ଗେ ହୁଏ ଭାରି
ପ୍ରବନ୍ଧ ଥୋପ ବିସ୍ତାର ଅଟେ କୁମ୍ଭକରି ।
ତେଣୁ କୁସୁମ ନ ଲାଗେ ତାହାର ଉପର
କେଶ ସୁବାସରେ ଲୁବ୍ଧ ହୁନ୍ତି ମଧୁକର ।
ରସାଣ ପ୍ରତିମା ପ୍ରାୟ ତା ଲଲାଟ ପାଟି
ରୋମାବଳୀ ନାଳରେଖା ପ୍ରାୟ ଦିଶେ ଫୁଟି ।
ନିବିଡ଼ କନ୍ଦର ଜିଣି ତାର ଗଣ୍ଡସ୍ଥଳ
ସୁଗଭୀର ନାଭି ତାର ଅତ୍ୟନ୍ତ ସୁନ୍ଦର ।
ବିସ୍ତାର ହୃଦୟ ଜାନୁ ରମ୍ଭାବୃକ୍ଷ ପ୍ରାୟ
ସ୍ଥୂଳ ପୁଣି ଲମ୍ବ ଅଟେ ତାର କରଦ୍ୱୟ ।
ଢଳ ଢଳ ସ୍ୱର୍ଣ୍ଣପ୍ରାୟ ବେନି କରସ୍ଥଳି
ଚମ୍ପାକଢ଼ିର ପରାୟ ତାହାର ଅଙ୍ଗୁଳି ।
ସୁନ୍ଦର ସେ କଟିମଝା କରୀଐରୀ ପ୍ରାୟେ
କୁଞ୍ଚଫଳ ଭାଜିଗଲା ପ୍ରାୟ ଶୋଭା ପାଏ ।
ସୁବର୍ଣ୍ଣ କେତକୀ ପ୍ରାୟ କନ୍ୟା ଅଙ୍ଗଜ୍ୟୋତି
ଅତୁଳୀନୟ ଅଟଇ ତାହାର ମୂରତି ।
ସୁରଭୀ ପାଖୁଡ଼ା ପ୍ରାୟ ଦିଶେ ତାର ପିଠି
ହେମ ପିତୁଳା ସଦୃଶ ତାର ଅଙ୍ଗଗୋଟି ।
ଅଳପ ବିସ୍ତାର ଜାଣି ତାର ବେନି ଜାନୁ
ଦେଖିଣ ପୁରୁଷମାନେ ଧରିବେ କି ତନୁ ।
ହୀରକ ଜ୍ୟୋତି ପରାୟେ ତାର ନଖପନ୍ତି
ତେସନେ ଶୋଭା ଧାରଣ କରିଅଛି ଅତି ।
ସୁରଭୀ ପୁଷ୍ପପରାୟେ ତଳିପାର କାନ୍ତି
ବାଳପୋଏଳା ପରାୟେ ଅଙ୍ଗୁଳି ଦିଶନ୍ତି ।
ଶଙ୍ଖନିଧି ପଦ୍ମନିଧି ଶୋଭେ ବେନି କରେ
ପାଣିଦ୍ରବ୍ୟ ହୁଏ କର ଲାଗିଲେ ମାଟିରେ ।
ଅଳିକୁଳ ପ୍ରମୋଦିନୀ ଅଟଇ ସେ ବାମା
ପ୍ରତ୍ୟକ୍ଷେ ପଦ୍ମିନୀ ସ୍ତିରୀ କୁଳରେ ଉପମା ।
ଜଘନ ଅତ୍ୟନ୍ତ ଶୋଭା ଦିଶୁଥାଏ ତାର
କିବା ଥୋଇଅଛି ସେହୁ ଅନଙ୍ଗ ଭଣ୍ଡାର ।
ତ୍ରିଭୁବନ ମୋହୁଅଛି ତା ଗଣ୍ଡ ଯୁଗଳ
ସଂସାର ଜନଙ୍କ ହିତେ ଢାଙ୍କିଛି ଦୁକୂଳ ।
ସମ୍ପୂର୍ଣ୍ଣ ଚନ୍ଦ୍ରମା ବୋଲି ବୋଲିବା ମୁଖକୁ
ତା ବଦନ ନିନ୍ଦା କରେ ଚନ୍ଦ୍ର ଦେବତାଙ୍କୁ ।
ଦିନେ ଦିନେ ହୋଇ ହୁଏ ଚନ୍ଦ୍ରମା ପୂରଣ
ପୁଣି ପ୍ରଜାପତି ଶାପେ ଦିନେ ଦିନେ କ୍ଷୀଣ ।
ପୁଣି ଅଙ୍ଗରେ କଳଙ୍କ ବହିଅଛି ଶଶୀ
କିନ୍ତୁ ବାଳାମଣି ମୁଖ ଅଟଇ ନିର୍ଦ୍ଦୋଷୀ ।
ସର୍ବ ଗୁଣରେ ସମ୍ପୂର୍ଣ୍ଣ ଅଟେ ଗୁଣବତୀ
ଅବଶ୍ୟ ଗୁଣକେ ବେଶି ରହେ ପ୍ରଜାପତି ।
ହୃଦୟ ପ୍ରଶସ୍ତ ତାର ଅଟେ ଅବିଚ୍ଛନ୍ନ
କୁଚ ସଂପୁଟରେ ସେହୁ ହୋଇଛି ଗୋପନ ।
କୁଚସଂପୁଟ ମନ୍ଦର ଅଟେ ମହାଭାର
ଏ ଭାରକୁ କଟିମଝା ଅତିକ୍ଷୀଣ ତାର ।
ତପୀ ତପ ବରଜିବେ ଦେଖି ତାର ଛବି
ପ୍ରକୃତ ବର୍ଣ୍ଣନା କରି ନ ପାରିବେ କବି ।
କେତେକାଳ ବସି ତାକୁ ସର୍ଜିଲା ବିଧାତା
ଏହା ନିମନ୍ତେ ଛାଡ଼ିଲା ସୃଷ୍ଟିର ଯେ ଚିନ୍ତା ।
କ୍ଷୀଣମଝା ଯେବେ ତାର ପଡ଼ିବଟି ଭାଙ୍ଗି
ପୁଣି ସର୍ଜିବ ବିଧାତା କେତେକାଳ ଲାଗି ।
ଗ୍ରୀଷ୍ମ ବରଷା ଶରତ ଶିଶିର ହେମନ୍ତ
ଷଡ଼ଋତୁ ଭୋଗ କରେ ମିଶାଇ ବସନ୍ତ ।
ହେମ ଶିଶିର ତପତ ତାର କଳେବର
ବସନ୍ତ ଗ୍ରୀଷ୍ମେ ମଳୟ ଅନିଳ ପ୍ରକାର ।
ବରଷା ଶରତେ ତାର ବାଳଅର୍କ ତେଜ
ଯେତେହେଁ ପ୍ରାପ୍ତ ହୋଇବ ସେହୁ ମନସିଜ ।
ସେ ନାରୀବର କାଞ୍ଚନ ତୁ ପୁଂସରତନ
ହୋଇବ ତୁମ୍ଭର ମଧୁ-ମାଳତୀ ମିଳନ ।
ଦ୍ୱାରକାମଣ୍ଡନା ବାମାଅଳଙ୍କାର ସେହି
ତୋତେ କହି ଆସିଅଛି ତେଣୁକରି ମୁହିଁ ।
ସେ ବିରହୀସ୍ତିରୀ ତୋରେ ପଶିଛି ଶରଣ
ଏବେ ତୁହି ଯାଇ ତାକୁ ବେଗ କରି ଆଣ ।
ନାରଦ କହିଲେ ତାର ରୂପଗୁଣ ଯେତେ
ବିସ୍ତାରି କହିଲେ ସୁଦ୍ଧା ନ ସରେ କିଞ୍ଚିତେ ।
ଦେଖିଲେ ଲେଖି ନ ପାରେ ତା ଗୁଣ ଲେଖନୀ
ତେଣୁକରି ତାର ନାମ ତ୍ରୈଲୋକ୍ୟମୋହିନୀ
ଶୁଣି ବ୍ୟାକୁଳ ହୋଇଲା କୁମାର ମନ୍ମଥ
ସାରଥିକି ବୋଲେ ବେଗେ ସାଜ ମୋର ରଥ

କରେ ଧରିଅଛି ସେହୁ ପୁଷ୍ପ ଶରାସନ
ପୁଷ୍ପକ ରଥ ଚଢ଼ିଲା ଶ୍ରୀକୃଷ୍ଣ ନନ୍ଦନ ।
କୁମୁଦ ସାରଥି ଶୂନ୍ୟେ ରଥ ନେଲା ବାହି
କଳହପ୍ରିୟ ଚଳନ୍ତି ପଥକୁ ଦେଖାଇ
ପଞ୍ଚଶିର ପର୍ବତରେ ବିଜେ ଦେବହରି
ପଞ୍ଚପାଣ୍ଡବେ ଅଛନ୍ତି ସଙ୍ଗରେ ତାଙ୍କରି ।
ନାରାୟଣଙ୍କ ଅଗ୍ରତେ କହେ ସହଦେବ
ନାରଦ ସଙ୍ଗେ ପ୍ରଦ୍ୟୁମ୍ନ ଅଇଲା ହେ ଦେବ ।
ଯେତେଦୂରୁ ଯୁଧିଷ୍ଠିରଙ୍କ ଦିଶିଲା ଆସନ
ବିମାନକୁ ତେଜ୍ୟାକରି ଉଠିଲା ପ୍ରଦ୍ୟୁମ୍ନ ।
ଯୁଧିଷ୍ଠିରଙ୍କ ପଦ୍ମପାଦେ ଆସି ପ୍ରଣମଇ
ଧର୍ମଦେବ କୋଳାଗ୍ରତ କଲେ ଉଠି ଯାଇ ।
ପିତାଙ୍କ ପାଦେ ପଡ଼ିଲା ଭୂମିଷ୍ଠ ହୋଇଣ
ସମସ୍ତଙ୍କୁ ମାନ୍ୟକଲା ଯେହୁ ମାନ୍ୟଗଣ ।
ଶ୍ରୀଗୋବିନ୍ଦ ପ୍ରଶଂସନ୍ତି ସାଧୁ ସହଦେବ
ଭୂତ ଭବିଷ୍ୟତ ଆଦି ଜାଣୁ ତୁହି ସର୍ବ ।
ନାରଦ କହିଲେ ସ୍ୱାମୀ ଶୁଣ ଆଦିମୂଳ
ବକ୍ର ଗିରିଦେଶ ରାଜା ଅଟେ ମେରୁଶୂଳ ।
ତାହାର ଦୁହିତା ନାମ ତ୍ରିପୁରମୋହିନୀ
ତାହାପାଇଁ ପ୍ରଦ୍ୟୁମ୍ନକୁ ଯାଉଅଛି ଘେନି ।
ଦୁର୍ବାସା ଯାଇଅଛନ୍ତି କାର୍ତ୍ତିକକୁ ଆଣି
ପ୍ରଦ୍ୟୁମ୍ନର ପ୍ରତି ମତି ବଳାଇ ତରୁଣୀ ।
ଅଯାଚିତ ଭାବେ କନ୍ୟା ପ୍ରାପ୍ତ ହୁଏ ଯଦି
ତାହାକୁ ତ୍ୟାଗ ନ କରେ କଦାଚ ସୁବୁଦ୍ଧି ।
ସୁବିଧାରେ ସୁଲକ୍ଷଣୀ ଭାରିଯା ମିଳିଲେ
ପଣ୍ଡିତଜନେ ତାହାକୁ ନ ଛାଡ଼ନ୍ତି ଭଲେ ।
ଗୋବିନ୍ଦ ବୋଇଲେ ଏହା ଅଟଇ ଯୁକତ
ଆମ୍ଭେ ମଧ୍ୟ ଯିବୁ ଧର୍ମଦେବଙ୍କ ସହିତ ।
ପ୍ରଦ୍ୟୁମ୍ନକୁ ସଙ୍ଗେ ଘେନି ତୁମ୍ଭେ ଆଗେ ଯାଅ
ସେ କନ୍ୟା ସହିତେ ଯାକୁ ମିଳନ କରାଅ ।
ଯେଉଁରୂପେ ପ୍ରଦ୍ୟୁମ୍ନକୁ ସେ କନ୍ୟା ଭଜଇ
ଅମୃତ ଯୋଗେ ଦେଖାଅ ତାହାପାଶେ ନେଇ
କାର୍ତ୍ତିକକୁ ଘେନି ଯେବେ ଆସନ୍ତି ବା ଶୂଳୀ
ତାହାଙ୍କ ତୁଲେ ପ୍ରଦ୍ୟୁମ୍ନ ଲଗାଇବ କଳି ।
କନ୍ୟାକୁ ଘେନିଣ ଆସ ଆଗ ଯାଇ କରି
ଆମ୍ଭେ ସମର କରିବୁ ପାର୍ଥ ସଙ୍ଗ ଧରି ।
ଆଜ୍ଞା ପାଆନ୍ତେ ନାରଦ ଏହି ପରକାରେ
ପ୍ରଦ୍ୟୁମ୍ନକୁ ଘେନିଗଲେ ଆକାଶ ମାର୍ଗରେ ।
ଦୁର୍ବାସା ଯେ ଯାଇଥିଲେ ଉନ୍ନତ କୈଳାସ
ପ୍ରବେଶ ହୋଇଲେ ଯାଇ କାର୍ତ୍ତିକଙ୍କ ପାଶ ।
ବୋଇଲେ ମେରୁଶୂଳର ଏକଇ ନନ୍ଦିନୀ
ତାହାର ନାମ ଅଟଇ ତ୍ରୈଲୋକ୍ୟ ମୋହିନୀ ।
ତ୍ରିଭୁବନେ ତା ରୂପକୁ ପଟାନ୍ତର ନାହିଁ
ତାର ରୂପକ ତୁଳନା ସେ ଏକା ଅଟଇ ।
ଦଇବ ବଶରୁ ସେହୁ ଅସୁରର ଭୂମି
ତେଣୁ ସେ ସ୍ଥାନକୁ କେହି ନ ପାରନ୍ତି ଗମି ।
ତୋତେ ସେ ସୁନ୍ଦରୀ ବଡ଼ ଇଚ୍ଛା ଅଛି କରି
ତୁ କାର୍ତ୍ତିକ ଏବେ ଯାଅ ତହିଁ ବିଜେକରି ।
ଦୁର୍ବାସା ବଚନ ଶୁଣି କାର୍ତ୍ତିକ ଚଳିଲେ
ପ୍ରଣାମ କରି ଶିବଙ୍କ ପାଶରେ କହିଲେ ।
ସ୍ୱାମୀ ବକ୍ରଗିରି ଦେଶ ମେରୁଶୂଳ ରାଜା
ତ୍ରିପୁରମୋହିନୀ ନାମେ ଅଛି ତା ତନୁଜା ।
ସେ କନ୍ୟା ଦୁର୍ବସା ଆଗେ କହିଲା ବିଶେଷ
ବୋଇଲା କାର୍ତ୍ତିକେଶ୍ୱର ବେଗେ ଘେନିଆସ
ଶାସ୍ତ୍ରରେ ରହିଛି ଦେବ ଅରଜିଲା ଅନ୍ନ
ଯେ ତ୍ୟାଗ କରନ୍ତି ସେହୁ ଅପଣ୍ଡିତ ଜନ ।
ଶିବ ବୋଇଲେ ତୁହି ତ ଭରଦ୍ୱାଜ ଶିଷ୍ୟ
ସେ କନ୍ୟା ଗୋଟିକ ଏବେ ଶୀଘ୍ର ଘେନିଆସ
ଶୁଣି ସାନନ୍ଦ ହୋଇଲା କୁମାର ମନରେ
ବିଜୟ ଈଶ୍ୱରସୁତ ମୟୂର ପୃଷ୍ଠରେ ।
କାର୍ତ୍ତିକେଶ୍ୱରଙ୍କୁ ଘେନି ଦୁର୍ବାସା ଚଳନ୍ତି
ଅନ୍ତରୀକ୍ଷ ମାର୍ଗେ ଦୈତ୍ୟ ରାଜ୍ୟେ ପ୍ରବେଶନ୍ତି
କାର୍ତ୍ତିକ ବୋଇଲେ ମେରୁଶୂଳ ପାଶେ ଯିବା
ରାଜାଙ୍କୁ ଜଣାଇ ତାର କନ୍ୟା ବିଭା ହେବା ।
ଚୋରିକରି କନ୍ୟା କିପାଁ କରିବା ଗ୍ରହଣ
ଆମ୍ଭ କୁଳକୁ ଏ କଥା ହୋଇବ ଦୂଷଣ ।
କାର୍ତ୍ତିକ ବାକ୍ୟାନୁସାରେ ଦୁର୍ବାସା ତାପସ
ମେରୁଶୂଳ କଟକରେ ହୋଇଲେ ପ୍ରବେଶ ।
କାର୍ତ୍ତିକେଶ୍ୱରକୁ ମୁନି ଦ୍ୱାରରେ ବସାଇ
ମେରୁଶୂଳ ରାଜାକୁ ସେ ଜଣାଇଲେ ଯାଇଁ ।
ଆରେ ବାବୁ ତୋ ଦୁହିତା ତ୍ରିପୁର ମୋହିନୀ
ତା ନିମନ୍ତେ କାର୍ତ୍ତିକଙ୍କୁ ଆସିଅଛୁ ଘେନି ।
ଶୁଣି ଆନନ୍ଦିତ ହେଲେ ମେରୁଶୂଳ ରାଜା
ମୁନିଙ୍କୁ ଅତି ସାଦରେ କଲେ ପାଦପୂଜା ।
ବୋଇଲେ ବଡ଼ କଥାଏ କଲ ଆହେ ଋଷି
ପୂର୍ବ ତପେ ଦ୍ୱିତୀଶିବ ପାଇଲି ମୁଁ ବସି ।
ଅତି ପୁଣ୍ୟବଳ ମୋର ଅଛଇ ଜାଣିଲି
କାର୍ତ୍ତିକେଶ୍ୱର ଜାମାତା ତେଣୁ ମୁଁ ପାଇଲି ।
ମୋହର ଦୁହିତା ଅଟେ ଅତି ଭାଗ୍ୟବତୀ
ତେଣୁ ସେ କାର୍ତ୍ତିକେଶ୍ୱର ପାଇଲାକ ପତି ।

ପୁରରେ ଉତ୍ସବମାନ କରେ ମେରୁଶୃଙ୍ଗ
ବିଭାର ଯୋଗାଡ଼ମାନ ଭିଆଏ ସକଳ ।
ଆପଣେ ବିଜୟ କଲା ବେଗେ ନୃପବର
ପ୍ରବେଶ ହେଲା ଯେଠାରେ କାର୍ତ୍ତିକ କୁମର ।
ପାଦ୍ୟ ଅର୍ଘ୍ୟଦେଇ ପୂଜା ବିଧାନ କରଇ
ନବରେ ବିଜେ କରାଏ କାର୍ତ୍ତିକଙ୍କୁ ନେଇ ।
ତାଙ୍କ ନିକଟେ ରାଇଲା ଲକ୍ଷେ ପରିବାରୀ
ପ୍ରଣାମ ଆଜ୍ଞା ତାହାକୁ ଦେଲା ଦଣ୍ଡଧାରୀ ।
ବୋଲେ ବହୁ ଅଳଙ୍କାର ଘେନ ଲୋ ମାତଙ୍ଗୀ
କନ୍ୟାକୁ ବେଶ ଭୂଷଣ କର ଯାଇ ଲାଗି ।
ଶୁଣି ମେଢ଼କୁ ଧାଇଁଲେ ସର୍ବ ପରିବାରୀ
ବୋଲେ ବଧାଇ ଦିଅ ଗୋ ଆମ୍ଭକୁ ସୁନ୍ଦରୀ ।
ତୋହର ମନ କାମନା ହୋଇଲା ସଫଳ
ଯହିଁପାଇ ଚିନ୍ତାଯୁକ୍ତ ଥିଲୁ ଗୋ କେବଳ ।
କାର୍ତ୍ତିକେଶ୍ୱର ଦ୍ୱିତୀୟ ଅଟଇ ଈଶ୍ୱର
ସେ ତୋତେ ପ୍ରାପତ କାଲି ହୋଇବେ ଗୋ ବର
କାଲି ପ୍ରଭାତରେ ତୋର ହେବ ବିଭାଘର ।
ତୋତେ ସୁଘଟଣ ସେହୁ ହୋଇଅଛି ବର ।
ବେଢ଼ି ମାର୍ଜନା କରନ୍ତି ତାଙ୍କୁ ସର୍ବବାଳୀ
ପ୍ରଦ୍ୟୁମ୍ନ ଚିନ୍ତାରେ ଜେମା ସର୍ବଦା ବ୍ୟାକୁଳି ।
ବିଚାରେ କହିଣ ଗଲେ ସେ ନାରଦ ମୁନି
ମୀନକେତନ ସ୍ୱାମୀକି ନ ଅଇଲେ ଘେନି ।
ତାଙ୍କୁ ନିମନ୍ତ୍ରଣ କରି କାର୍ତ୍ତିକେ ଛାଡ଼ିଲି
ଏବେ କଉଣସି ଆଡ଼େ ଦେଖୁଛି ନୋହିଲି ।
ଏହା ଭାବି ଆକୁଳରେ ମେରୁଶୃଙ୍ଗ ଜେମା
ମନେ ଚିନ୍ତାକଲା ଦେବୀ ରଖ ମୋତେ ଉମା ।
ଜୟ ଜୟ ମାତଙ୍ଗୀ ଗୋ ଜୟ କାମସେନୀ
ଜୟ ଜୟ ମାହେଶ୍ୱରୀ ବ୍ରହ୍ମାଙ୍କ ଦୁଲଣୀ ।
ଶୁମ୍ଭ ନିଶୁମ୍ଭ ଦଇତ ସଂହାରିଲୁ ମାୟେ
ବୀରଘଣ୍ଟ ଚାମରାଦି କରିଅଛୁ କ୍ଷୟେ ।
କାନ୍ତିମାଳା ଦଇତ୍ୟକୁ ମର୍ଦ୍ଦିଲୁ ତୁ ପାଦେ
ତେଣୁ କାତ୍ୟାୟିନୀ ନାମ ବହିଲୁ ଗୋ ହାଦେ
ଜୟ ତୁ ମାତଙ୍ଗୀ ମାଗୋ ହେମଗିରି ଜେମା
ସ୍ତିରୀଜାତି ବେଦନାକୁ କରିଦେବୁ କ୍ଷମା ।
ସଜ୍ଜନ ତାରିଣୀ ମାଗୋ ପୃଥ୍ୱୀଜନ ଚିନ୍ତା
ଜୟ କାମସେଣା କାମ କଷ୍ଟ ଉଦ୍ଧାରନ୍ତା ।
ଗୋବିନ୍ଦ ପୁତ୍ର ପ୍ରଦ୍ୟୁମ୍ନ ବୀର ମୋର ବର
ନ ରୁଚଇ ଆନ ମାଗୋ ମନକୁ ମୋହର ।
ବହୁତ ବିନତି କଲା ମେରୁଶୃଙ୍ଗ ବଳା
ପ୍ରଦ୍ୟୁମ୍ନ ଉପରେ ତାର ମନ ସଦାଭୋଳା ।
ମାର୍ଗଶିର କୃଷ୍ଣପକ୍ଷ ପୁଣି ଯେ ଚତୁର୍ଥୀ
ପୁନର୍ବସୁ ନକ୍ଷତ୍ରହିଁ ବାର ବୃହସ୍ପତି ।
ବାଣିଜ୍ୟ ନାମେ କରଣ ଶୁଭ ନାମେ ଯୋଗ
ବିଭା ଅନୁକୂଳ ତହିଁ କରନ୍ତି ସେ ବେଗ ।
ଚତୁର୍ଦ୍ଦଣ୍ଡ ପ୍ରବେଶିଲା ମୀନଲଗ୍ନ ବେଳ
ପାପଲଗ୍ନ ନାହିଁ କିଛି ସର୍ବ ଶୁଭଫଳ ।
କାର୍ତ୍ତିକେଶ୍ୱର ଚଳିବେ ହୋଇ ବରବେଶ
ସ୍ୱୀକାର କରି ବରଣ କରିଲେ ନରେଶ ।
ନିଜେ ପୁରୋହିତ ଯହିଁ ଅଛନ୍ତି ଦୁର୍ବାସା
ମଙ୍ଗଳାଚରଣ କଲେ ନ ଦେଖି ଭରସା ।
ଶୁଭ ଅନୁକୂଳ ବେଳେ କର୍ମ ଆଚରିଲେ
ବେଳ ତେର ଘଡ଼ିଠାରେ ମଙ୍ଗଳ ସାରିଲେ ।
ରାଜ୍ୟସ୍ଥ ନରନାରୀଏ କଲେ ଧନ୍ୟବାଣୀ
ସାଧବୀ ପୁଣ୍ୟବତୀ ତୁ ତ୍ରିପୁର ମୋହିନୀ ।
ଜୀବନ ସଫଳ ଅଟେ ସୁନ୍ଦରୀ ଗୋ ତୋର
ଶିବଙ୍କ ସୁତ କାର୍ତ୍ତିକ ହେଲେ ତେଣୁ ବର ।
ସାନ ବଡ଼ ସର୍ବେ ମିଶି କନ୍ୟା ପ୍ରଶଂସନ୍ତି
କନ୍ୟାକୁ ଅହ୍ୟ କନ୍ୟାଏ ଘେନିଣ ଚଳନ୍ତି ।
ସୁବର୍ଣ୍ଣର ହାନ୍ଦୋଳରେ ବିଜୟ ଭବାନୀ
କରେ ଦୀପ ଘେନି ଗୀତ ଗାବନ୍ତି କାମିନୀ ।
ପାଟଛତ୍ର ଉଦ୍ଦଣ୍ଡାଦି ଉଡ଼େ ଅକଳନା
ବହୁ ସମ୍ଭାରେ ବିଜୟ କରିଲେ ଅପର୍ଣ୍ଣା ।
ମନ୍ଦର ପର୍ବତେ ବିଜେ ହୋଇଲେ କାମାକ୍ଷୀ
ଚଳେ ସେ ସୁନ୍ଦରୀବାଳୀ ଗୋସାମଣି ଦେଖି
ପଥେ ଗମନ୍ତେ ଆଦିତ୍ୟ ଅସ୍ତ ହୋଇଗଲା
ଅନେକ ଦିହୁଡ଼ି ହୁଳା ସେଠାରେ ଲାଗିଲା ।
ପ୍ରଥମ ଦଣ୍ଡ ପ୍ରବେଶ ହୋଇଲାକ ରାତି
ଦେଉଳ ଭିତରେ ପଶେ ଯାଇ ଗୁଣବତୀ ।
ଦିବ୍ୟ ବସନ ଭୂଷଣ ହୋଇଛି ସୁବେଶ
ଅଞ୍ଜଳି କରିଛି ବାଳୀ ଅଷ୍ଟରତ୍ନ କୋଷ ।
କାମସେଣା ଦେବୀଙ୍କର ଛାମୁରେ ତା ଥୋଇ
ପ୍ରଣିପାତ ହେଲା ବାଳା ଭୂମିପରେ ଶୋଇ ।
ବୋଇଲା ମାତା ପ୍ରସନ୍ନ ହୁଅ ଗୋ ଅଭୟା
ଭକ୍ତ ବତ୍ସଳା ପ୍ରସନ୍ନ ହୋଇ କର ଦୟା ।
ମନ କାମନା ମୋହର ସିଦ୍ଧ କର ଦେବୀ
ଭକ୍ତି କରୁଅଛି ତେଣୁ ମୁହିଁ ତୋତେ ଭାବି ।
ଜଗତଜନନୀ ମାଗୋ ଦୁଃଖ ବିନାଶିନୀ
ବାଞ୍ଛିତ ଫଳ ମାଗଇ ତ୍ରିପୁର ମୋହିନୀ ।
ସୁରବର ସୁନ୍ଦରୀ ଗୋ ଶରଣ ଧାରିଣୀ
ତୋରେ ମୁଁ ଶରଣ ଗଲି ରଖ ଗୋସାମଣି ।

ଅନେକ ବିନୟ ହୋଇ ତୋତେ ମୁଁ ମାଗୁଛି
ମୀନକେତନ ବରକୁ ଦିଅ ଗୋ କହୁଛି ।
କାମସାଗରୁ ଉଦ୍ଧର ମୋତେ କାମସେଣା
ମଦନ ବାଣରେ ଆଉ ନ ଦିଅ ଗଞ୍ଜଣା ।
କହନ୍ତି ଅଗସ୍ତି ଶୁଣ ମନୁ ନରନାଥ
ସୁନ୍ଦରୀକୁ ସେ ସ୍ଥାନରେ ମିଳିଲା ସଙ୍କେତ ।
ବାମ ନୟନ ତାହାର ସ୍ଫୁରେ ଘନ ଘନ
ଐଶାନ୍ୟ କୋଣେ ଶୁଭଇ ଝିଟିପିଟି ସ୍ୱନ ।
ଆଗରେ ବାଜିଲା ଶଙ୍ଖ ଅତି ରାବ କରି
ଉତ୍ତରେ ପୁରୁଷେ ଏକ ଡାକିଲା ଫୁକାରି ।
ଦେବୀଙ୍କର ଦିଶିଗଲା ଶ୍ରୀମୁଖ ଚାହାଣି
ବୋଇଲେ ପ୍ରଦ୍ୟୁମ୍ନର ତୁ ହୁଅ ଲୋ ଘରଣୀ ।
ଏମନ୍ତ ଭାବେ ସୁନ୍ଦରୀ ପାଇଲାକ ବର
ତହୁଁ ଦେଉଳ ଭିତରୁ ହୋଇଲା ବାହାର ।
ଦ୍ୱାରରେ ପ୍ରବେଶ ହେଲା ତ୍ରିପୁର ମୋହିନୀ
ଦେଖେ ନାରଦ ପ୍ରଦ୍ୟୁମ୍ନ ଆସୁଛନ୍ତି ବେନି ।
ନାରଦ ବୋଇଲେ ତୁହି ଦେଖ ଆଗେ ବାଳା
ଏ ଅଟେ ମୀନକେତନ ଦେ ବରଣମାଳା ।
ବାଳକାଳେ ନାଶକଲା ଶମ୍ବର ଅସୁର
ମାୟାବତୀର ବଲ୍ଲଭ ଏହୁ ଚାପଧର ।
ସମ୍ମୁଖରେ ପ୍ରଦ୍ୟୁମ୍ନକୁ ଦେଖି ଶଶିମୁଖୀ
ଅତି ଆନନ୍ଦିତ ହେଲା ଦୁଃଖକୁ ଉପେକ୍ଷି ।
କଣ୍ଠେ ଲମ୍ବାଏ ସୁନ୍ଦରୀ କୁସୁମର ମାଳ
ରଥେ ବସାଏ ପ୍ରଦ୍ୟୁମ୍ନ ତାକୁ କରି କୋଳ ।
ରଥେ ବସୁ ବସୁ ବେଳ ତିନିଘଡ଼ି ରାତି
ଦେଖୁ ଦେଖୁ ସେ ବିମାନ ହେଲା ଉର୍ଦ୍ଧ୍ୱଗତି ।
ହାନ୍ଦୋଳାଶୂନ୍ୟ ପଡ଼ିଛି କନ୍ୟା ତହିଁ ନାହିଁ
ଦେଖି ଆଶ୍ଚର୍ଯ୍ୟ ହୋଇଲେ ଥିଲେ ଯେତେ ତହିଁ
ବିଚାରିଲେ ରୂପ ଦେଖି ହରିଲେ ଗନ୍ଧର୍ବ
କିବା ଏ କାମାକ୍ଷୀ ଦେବୀ ଭକ୍ଷେ କରି ଲୋଭ
ମେରୁଶୂଳର ନିକଟେ କହିଲେ ସେ ଯାଇ
ଅହିଙ୍କ ସ୍ଥାନରୁ କନ୍ୟା କେ ନେଲା ଚୋରାଇ ।
ତାହାଶୁଣି ଅସୁରର କିଛି ନ ସ୍ଫୁରିଲା
ପଚାରିଲା ନ ଦେଖିଲ କିଏ ତାକୁ ନେଲା ।
ଅସୁର ଭୁବନେ ଯହୁଁ ହେଲା ମୁଖସ୍ୱନ
ମଥାରୁ ମୁକୁଟ କାଢ଼େ ତହୁଁ ଷଡ଼ାନନ ।
ବୋଇଲା କିଏ ସେ ମୋର ଯୁବତୀ ହରିଲା
ଏହାକହି କୋପଭରେ ଶକତି ଧଇଲା ।
କାମାକ୍ଷୀ ଦେବୀ ଦେଉଳ ଭିତରେ ପଶଇ
ଏଣେ ତେଣେ ଚଉକତି ଆକୁଳେ ଲୋଡ଼ଇ ।

ନାରଦ ବୋଇଲେ ବାବୁ ଶୁଣ ଷଡ଼ାନନ
କନ୍ୟାକୁ ହରେ ଅନଙ୍ଗ ଶ୍ରୀକୃଷ୍ଣ ନନ୍ଦନ ।
ଏ କି ଚରିତ ଉପୁଜେ ମେରୁଶୂଳ ପୁରେ
ଦେଖିବା ଏ କଉତୁକ କଥା ରହସ୍ୟରେ ।
ପ୍ରଦ୍ୟୁମ୍ନେ ବଳାଇ ଦେଇ ବାହୁଡ଼ି ତାପସ
କାମାକ୍ଷୀ ଦେଉଳ ପାଶେ ହୋଇଲେ ପ୍ରବେଶ
ଦୁର୍ବାସାଙ୍କୁ ପଚାରିଲେ ଯାଇଁ କଳିପ୍ରିୟ
କିସ ଲୋଡ଼ୁଛନ୍ତି ସର୍ବେ ହଜିଗଲା ପ୍ରାୟ ।
ଶୁଣି ଦୁର୍ବାସା ବୋଇଲେ ସ୍ୱର୍ଗ ଗଙ୍ଗା ତଟେ
ତୁମ୍ଭଙ୍କୁ ଯା କହିଥିଲୁ ଆସୁ ଆସୁ ବାଟେ ।
ମେରୁଶୂଳର ଦୁହିତା ତ୍ରିପୁର ମୋହିନୀ
ତାର ନିମନ୍ତେ ଅଇଲୁ କାର୍ତ୍ତିକକୁ ଘେନି ।
ବିଭାକାଳେ ଦେବୀପୂଜା କରିବାକୁ ଗଲା
ଅଦଭୂତେ କିଏ ତାକୁ ହରଣ କରିଲା ।
ବେଢ଼ିଣ ଥିଲେ ତାହାକୁ ବହୁ ପୁରଜନ
କେହୁ ନ ଦେଖିଲେ ସେହୁ ହେଲା ଅନ୍ତର୍ଦ୍ଧାନ ।
ନାରଦ ବୋଇଲେ ତୁମ୍ଭେ ଦୁର୍ବାସା ହେ ଶୁଣ
ତୁମ୍ଭ ପରା ମୁନି କାର୍ଯ୍ୟ ହେଲା ଅକାରଣ ।
ନ ଜାଣିଲ କିଛି ତୁମ୍ଭେ ବିବାହର ମେଳ
ଗଣନା ନ କଲ ଯାତ୍ରା ଯୋଗ ଅନୁକୂଳ ।
କୃତ୍ତିକା ବୃଷରାଶି ଯେ ଅଟେ କାର୍ତ୍ତିକର
ଧନୁରାଶିକି ଅଷ୍ଟମ ବୃହସ୍ପତି ତାର ।
ତେଣୁ ବିଭାଘର ଯୋଗ ତାହାକୁ ନୋହିଲା
କିପାଇଁ ଗୃହରୁ ସେହୁ ବାହାର ହୋଇଲା ।
ଅହିଙ୍କକୁ ଯାଉଥିଲା ରାଜାର କୁମାରୀ
ଦିଗ ଭ୍ରମି ଯାଉଥିଲା ଶମ୍ବର ଅରି ।
କାମାକ୍ଷୀ ଦେବୀଙ୍କି ସେହୁ ଦର୍ଶନ ନିମନ୍ତେ
ଦେଉଳ ଭିତରେ ଥିଲା ସର୍ବ ଅସାକ୍ଷାତେ ।
ମୋହିନୀ ପ୍ରଦ୍ୟୁମ୍ନ ଦୁହେଁ ତହିଁ ହେଲେମେଳ
ଜେମା ପ୍ରଦ୍ୟୁମ୍ନର ଗଳେ ଦିଏ ଫୁଲମାଳ ।
ବୋଇଲା ଭୋ ନାଥ ତୋରେ ଶରଣ ମୁଁ ଗଲି
ତୁ ମୋର ବଲ୍ଲଭ ମୁଁ ତୋ ବଲ୍ଲଭୀ ହୋଇଲି ।
ପ୍ରଦ୍ୟୁମ୍ନ ତ ବୟସରେ ଅଟଇ କୁମାର
କୁମାରୀକି ଘେନିଗଲା ଦ୍ୱାରାବତୀ ପୁର ।
ସୈନ୍ୟାଦି କେହି ନାହାନ୍ତି ସେହୁଥିଲା ଏକା
ମୁଁ ଦେଖିଲି କନ୍ୟା ଘେନିଗଲା ସେ ଦ୍ୱାରକା ।
ଜାଣିଲି ସେ ଦୁହିଙ୍କର ପୂର୍ବୁଥିଲା ପ୍ରୀତି
ନ ବିଚାରି କାର୍ଯ୍ୟ କଲ ଏ ବଡ଼ ଅନୀତି ।
ନାରଦ ବାକ୍ୟେ କାର୍ତ୍ତିକ ଉଠେ ଗଳଗାଜି
ବୋଇଲା ଦ୍ୱାରକା ଆଜି ପକାଇବି ଭାଜି ।

ନାରଦ ବୋଇଲେ ଏହା ଅତି ଅବିଚାର
ତୋ କନ୍ୟା ନେବାକୁ ଆନ ଶକ୍ତି ଅଛି କାର ।
ଚନ୍ଦ୍ରିକା ନାଶି ଅନ୍ଧକ ଦର୍ପତୁ ଗଞ୍ଜିଲୁ
ସୌଦାସ ଧ୍ୱଂସି ପୁତ୍ରର ବଳକୁ ନାଶିଲୁ ।
ଅଜ୍ଞାନ ବାଳକ ଯେବେ କଲା ଏହି କୃତ୍ୟ
ଶ୍ରୀକୃଷ୍ଣ ପାଇଁ ତୋର ସହିବା ଉଚିତ ।
ଆହୁରି କଥାଏ ପୁଣି କହିବା ନ ରହି
ବିବାହ ବେଳରେ ଆସି କି ନ କଲା ସେହି ।
ସାମାନ୍ୟ କଥା କି କଲା କେଡ଼େ ହେଲା ଲଜ୍ଜା
ବିଭା ହେଲାଠାରୁ ଆସି ନେଇଗଲା ଭାର୍ଯ୍ୟା ।
ଏହା କହି ହସ୍ତିକରି ଝାଡ଼ିଦେଲେ ମୁଣି
ଏଡ଼େ ବିଡ଼ମ୍ବନା କଲା ଅସୁର ଦୁଲଣୀ ।
ତିନିଭୁବନେ ତୋହର ଉପୁଜିଲା ଲାଜ
କିସ ନ ବୋଲିବେ ତୋତେ ଦେବତା ସମାଜ
ମୁନି ପ୍ରବୃତ୍ତି ନିବୃତ୍ତି କଥାମାନ ଶୁଣି
କୋପଭରରେ କୁମର ଉଠେ ଶିରଝୁଣି ।
ଅତି କୋପାନଳେ ସେହୁ ଘେନିଲାକ ଶୂଳ
ଧାଇଁଲା କୁମରମଣି ସଙ୍ଗେ ନାହିଁ ବଳ ।
ମୀନକେତନ କନ୍ୟାକୁ ଘେନିକରି ଗଲା
ବଳାକୀ କୂଳରେ ହରି ପାର୍ଥକୁ ଭେଟିଲା ।
କନ୍ୟା ସହିତେ ପ୍ରଦ୍ୟୁମ୍ନ ରଥରୁ ଓହ୍ଲାଇ
ପ୍ରଣାମ କଲେ ଶ୍ରୀକୃଷ୍ଣ ପାର୍ଥ ପାଦେ ଯାଇ ।
କନ୍ୟା ଦେଖିକରି ହରି କରି ଧନ୍ୟ ଧନ୍ୟ
ବୋଲେ ଦ୍ୱାରକାମଣ୍ଡଣି ଆଣିଲୁ ପ୍ରଦ୍ୟୁମ୍ନ ।
ଏବେ ଆମ୍ଭ ବଧୂ ଘେନି ଯାଅ ଦ୍ୱାରକାକୁ
ଦୈତ୍ୟଦ୍ୱନ୍ଦ୍ୱ କଲେ ଆମ୍ଭେ ଓଗାଳିବୁ ତାକୁ ।
ଏହାକହି ଆନନ୍ଦିତ ହେଲେ ଚକ୍ରପାଣି
କନ୍ୟାଘେନି ଚଳିଗଲା ସେ କୁମରମଣି ।
ମଳୟ ପର୍ବତେ ହରି ପାର୍ଥ ରହିଥିଲେ
କାର୍ତ୍ତିକ ମେରୁଶୂଳକୁ ଧାଇଁବା ଦେଖିଲେ ।
କାର୍ତ୍ତିକ ଚଢ଼ି ଅଛଇ ମୟୂର ପିଠରେ
ମେରୁଶୂଳ ଆରୋହିଛି ସମ୍ପାତି ଉପରେ ।
କାର୍ତ୍ତିକ କରେ ଶକତି ଡମ୍ବରୁ ରହିଛି
ମେରୁଶୂଳର କୋଦାଳ ଛଡ଼ା ନାହିଁ କିଛି ।
ମନ୍ଦର ବିନ୍ଧ୍ୟଗିରିକି ଆସୁଅଛି ଉଡ଼ି
ପାର୍ଥ ଶ୍ରୀକୃଷ୍ଣ ଦେଖିଲେ ପର୍ବତରେ ଚଢ଼ି ।
ବୈନତୟେ ଆରୋହଣ କରିଲେ ମାଧବ
ମୟୂରକୁ ଦେଖି ସେହି କଲା ଘୋରରାବ ।
ମୟୂର ସେ ରାବ ଶୁଣି ଘୁଞ୍ଚେ ଯୁଣ ତିନି
ଦୈତ୍ୟ କେବଳ ରହିଲା କୋଦାଳାସ୍ତ୍ର ଘେନି

ଦିବା ଅବସାନ ବେଳେ ଦିଶେ ଯେହ୍ନେ ଗିରି
ମେରୁଶୂଳ ଦୈତ୍ୟ ଅଙ୍ଗ ଦିଶେ ସେହିପରି ।
ସମ୍ପାତି ପୃଷ୍ଠେ ଆରୋହି ଚଳେ ମେରୁଶୂଳ
ନାରାୟଣ ଅଗ୍ରତରେ ବୁଲାଇ କୋଦାଳ ।
ନାରଦ ବୋଇଲେ ଶୁଣ ଆହେ ଦୈତ୍ୟରାଜ
ତୋହର ଦୁହିତା ନେଲା ଏହାଙ୍କ ଆତ୍ମଜ ।
ଆହୁରି କୋପ କରିଲା ଶୁଣିଣ ସେ ଦୈତ୍ୟ
କରସ୍ଥଳରେ ଧଇଲା ଉପାଡ଼ି ପର୍ବତ ।
ପବନ ଗତିରେ ଗିରିବରକୁ ବୁଲାଏ
ନାରାୟଣଙ୍କ ଉପରେ ଫୋପଡ଼ାଇ ଦିଏ ।
ପର୍ବତ ଦେଖିଣ ପିଠିପାତେ ଖଗବର
ପିଠିରେ ପଡ଼ି ପର୍ବତ ହେଲା ଶତଚୂର ।
ନିର୍ଘାତ ମାରେଣି ଦେଖି ବୀରବର ପାର୍ଥ
ମେରୁଶୂଳ ଉପରକୁ ମାରେ ଘେନି ଶସ୍ତ୍ର ।
ଅସ୍ତ୍ରମାନ ଆସିବାର ଦେଖି ମେରୁଶୂଳ
କୋପଭରେ ପାତିଦେଲା ନିଜ ବକ୍ଷସ୍ଥଳ ।
ତହିଁ ପଡ଼ି ଅସ୍ତ୍ର ସବୁ ହୋଇଗଲା ଚୂର
ଶରୀରରେ ସେହ୍ନା ନାହିଁ ବଜ୍ରଅଙ୍ଗ ତାର ।
ପୁଣି କୋପଭରେ ଦୈତ୍ୟ ବୁଲାଇଲା ଶୂଳ
ଅର୍ଜ୍ଜୁନ ଉପରେ ପିଟେ କରି ଅନ୍ତରାଳ ।
ଶୂଳ ଆସିବାର ଦେଖି ପାର୍ଥ ମହାଯୋଧୀ
ପାଶୁପତ ଅସ୍ତ୍ରେ ତାହା ପକାଇଲେ ଛେଦି ।
ତାହା ଦେଖି ମେରୁଶୂଳ କୋଦାଳ କଚାଡ଼ି
ବିନ୍ଧ୍ୟଗିରି ପ୍ରାୟ ଗିରି ଆଣିଲା ଉପାଡ଼ି ।
ସେ ଗିରି ଉପରେ ଥିଲେ କୃଷ୍ଣ ଅରଜୁନ
ଗରୁଡ଼ ସହିତେ ତହିଁ ହେଲେ ତିନିଜଣ ।
କୋଦାଳ ଧରି ବୁଲାନ୍ତେ କୋପରେ ଦଇତ
କୁରାଳ ଚକ୍ର ପରାୟେ ବୁଲାଇ ପର୍ବତ ।
ବୁଲାଇ ବୁଲାଇ ତାକୁ ଦିଅନ୍ତେ ଫୋପାଡ଼ି
କୃଷ୍ଣାର୍ଜ୍ଜୁନ ପଞ୍ଚବିଂଶ ଯୂଣ ଗଲେ ଉଡ଼ି ।
ସେହି ପର୍ବତରେ ମଧ୍ୟ ଥିଲା ଖଗବର
ସେ ପର୍ବତ ତଳେ ପଡ଼ି ହେଲା ଶତେଚୂର ।
ବିନତା ନନ୍ଦନ ତହୁଁ ଅତିବେଗେ ଉଡ଼ି
ମେରୁଶୂଳ ଅଗ୍ରତରେ ଦେଲା ଯାଇ ରଡ଼ି ।
ପୁନଃ ପୁନଃ ରଡ଼ି ଦ୍ୟନ୍ତେ ହୋଇ କୋପାନଳ
ଗରୁଡ଼ ଉପରେ ନେଇ ପିଟେ ସେ କୋଦାଳ ।
ତାହା ଦେଖି ବୈନତେୟ ପିଟିଦେଲା ଥଣ୍ଟ
ବେନିଖଣ୍ଡ ହୋଇଗଲା କୋଦାଳର ବେଣ୍ଟ ।
ବେଣ୍ଟ ଭାଙ୍ଗନ୍ତେ ଦଇତ ହୋଇ ଶୂନ୍ୟହସ୍ତ
କୋପେ ଗରୁଡ଼ ଉପରେ ମାଇଲା ସେ ମୁଥ ।

ତାହା ଦେଖି ଧନଞ୍ଜୟ ନାରାଚ ବିନ୍ଧିଲା
ଘୁଞ୍ଚିଯାଇ ଦୈତ୍ୟବୀର ତା କରେ ଧଇଲା ।
ପୁଣି ପର୍ବତାଶରକୁ ମାଇଲେ ଅର୍ଜୁନ
ଦୈତ୍ୟ ଉପରେ ପଡ଼ି ତା ହୋଇଗଲା ଚୂର୍ଣ୍ଣ ।
ଅସ୍ତ୍ର ବିଅର୍ଥ ହେବାର ଦେଖିଣ କିରୀଟୀ
ବଜ୍ରବାଣ ମାରେ ପୁଣି କରି କୋପଦୃଷ୍ଟି ।
ତାହା ଦେଖି ମେରୁଶୃଙ୍ଗ ତୁଣ୍ଡ ବିସ୍ତାରିଲା
ସେ ମହାଅସ୍ତ୍ରକୁ ନେଇ ଗର୍ଭେ ସଂହରିଲା ।
ରଣ କରୁ କରୁ ଅସ୍ତ ହୁଅନ୍ତେ ଆଦିତ୍ୟ
ବାହୁଡ଼ି ନିଜ କଟକେ ପ୍ରବେଶିଲା ଦୈତ୍ୟ ।
ଭଗ୍ନ କୋଦାଳ ଆୟୁଧ ନିଜ ପୁରେ ଥୋଇ
ଲୋହଗିରି ଉପାଡ଼ିଲା ଦୈତ୍ୟ ବୀର ଯାଇ ।
ସେହି ଗିରି ଆୟତନ ଅଟେ ପଞ୍ଚଯୂଣ
କୋଦାଳ ଆୟୁଧ ବେଣ୍ଟ ହୋଇଗଲା ସେ ଜାଣ
ପୁଣି ଶିଖିପୁଚ୍ଛେ ଚଢ଼ି ବୀର କାର୍ତ୍ତିକେୟ
ମେରୁଶୃଙ୍ଗ ନିକଟକୁ କରିଲେ ବିଜୟ ।
ଦେଖି ଦୈତ୍ୟ ବୋଲେ ଦ୍ୱିତୀଈଶ୍ୱର ତୁ ଅଟୁ
ସେମାନଙ୍କ ସମାନରେ ରଣେ ଅଟୁ ପଟୁ ।
କିନ୍ତୁ ରଣେ ନ ଘୁଞ୍ଚିଲା ତୋର ଶରାଘାତେ
ଶରୀର କମ୍ପଇ ମୋର ଦେଖି କୃଷ୍ଣ ପାର୍ଥେ ।
କାର୍ତ୍ତିକ ବୋଇଲେ ତୁହି ଶୁଣ ଦୈତ୍ୟରାଜ
ରହିଣ ସମର ଦେଖ ମୋର ଓଜ ତେଜ ।
ପୁଣିହିଁ ସଜ ହୋଇଲେ ଦୁହେଁ ଏକାବେଳେ
ହରି ଅର୍ଜୁନ ରହିଲେ ତମାଳର ତଳେ ।
ପାର୍ଥ ବୋଇଲେ କୃଷ୍ଣଙ୍କୁ ଶୁଣିବା ଗୋସାଇଁ
କାର୍ତ୍ତିକ ସଙ୍ଗେ ସମର କର ତୁମ୍ଭେ ଯାଇ ।
ମୁଁ ରଣ କରିବି ମେରୁଶୃଙ୍ଗ ସହିତରେ
ଦେଖିବି ବଳ ରହିଛି କେତେ ତା ଶରୀରେ ।
ଶୁଣି ବିଜେକଲେ ହରି ଖଗବର ପିଠି
ମେରୁଶୃଙ୍ଗ ସଙ୍ଗେ ଯାଇ ମିଳିଲେ କିରୀଟୀ
ଗର୍ଜି ବିନତାନନ୍ଦନ କଲେ ପକ୍ଷାଘାତ
କାର୍ତ୍ତିକ ମୟୂର ଉଡ଼ି ପଡ଼େ ଯୂଣ ସାତ ।
ବାହନ ବିହୀନ ହୋଇ ଦେବ ଷଡ଼ାନନ
ଦଣ୍ଡ କମଣ୍ଡଳୁ ଧରି ରଣେ ଆଗମନ ।
ଏକ କ୍ଷେପାକରେ ସାତଯୋଜନ ଅଇଲେ
ଷଡ଼ଶିର ଚତୁର୍ବିଂଶ ଭୁଜ ସେ ହୋଇଲେ ।
ଶୁକ୍ଳାମ୍ବର ପରିଧାନ ଅଙ୍ଗ ସ୍ୱର୍ଣ୍ଣଜ୍ୟୋତି
କର୍ଣ୍ଣେ ବିକଟ ତମ୍ବୁର ଶର ତେଜ ଅତି ।
ଭୁଜମାନଙ୍କରେ ପର୍ଶୁ କୁଠାର ମୁଦ୍‌ଗର
ପିନାକ ପାଶୁପତ ଯେ ଆଉ ଅସିବର ।
ବୀରବେଶରେ ଭୂଷିତ ସଦାନନ୍ଦ ବାଳ
ତାରକ ବିଧ୍ୱଂସକାରୀ କ୍ଷତ୍ରୀ ଅନର୍ଗଳ ।
ଆଦିତ୍ୟ ଅସ୍ତେ ଦିଶଇ ଯେହ୍ନେ ଗିରିବର
ସେହି ସଦୃଶେ ଦିଶଇ ସେ କାର୍ତ୍ତିକେଶ୍ୱର ।
କାର୍ତ୍ତିକେଶ୍ୱର ବୋଲନ୍ତି କୃଷ୍ଣଙ୍କ ଅଗ୍ରତେ
ଆଗେ ଦୁର୍ବାସାଙ୍କ ଦ୍ୱାରା କନ୍ୟାବରେ ମୋତେ
ପାପ ପୁଣ୍ୟ ଦୁଇକଥା ବିଚାର ନ କଲ
ଅଭିଜ୍ଞ ସ୍ଥାନରୁ କନ୍ୟା ଚୋରାଇଣ ନେଲ ।
ଶିଶୁପାଳ ବିଭାକଲେ ତୁମ୍ଭେ କଲ ଯାହା
ପୁତ୍ରକୁ ସେ କଥା ଶିକ୍ଷା ଦେଲ ଚଉବାହା ।
ବେଳେବେଳେ ତୁମ୍ଭେମାନେ ଚୋରିକାର୍ଯ୍ୟ କର
ଏବେ ବଳବୀର୍ଯ୍ୟ କେତେ ଜାଣିବା ତୁମ୍ଭର ।
ଗୋଳକୁଣ୍ଡା ପାଣ୍ଡବଙ୍କୁ କରିଛୁ ତୁ ସଖା
ଦେଖିବା ତୋର ଦ୍ୱାରକା କେ କରିବ ରକ୍ଷା ।
ପ୍ରାଣରେ ମମତା ଯେବେ ଅଛଇ ତୋହର
ବେଗେ ସେ କନ୍ୟାକୁ ଆଣି ସମର୍ପଣ କର ।
ଯେବେ ସେ କନ୍ୟାକୁ ତୁହି ନ କରୁ ଅର୍ପଣ
କିଏ ସେ ରଖିବ ତୋତେ ଆରେ ନାରାୟଣ ।
କାର୍ତ୍ତିକ ବଚନ ଶୁଣି ବୋଲନ୍ତି ଶ୍ରୀହରି
ମତ୍ତଗର୍ବେ କଥା କହୁ କିଛି ନ ବିଚାରି ।
ଉନ୍ମତ୍ତ କୁମାରୀ ପୁଣି ଅଟେ ନବଯୁବା
ପରାପର ନ ଚିହ୍ନନ୍ତି ପାପ ପୁଣ୍ୟ କିବା ।
ତୁ ତ ତପୋଧନ ପୁଣି ନିରାକାର ଦୀକ୍ଷା
ସ୍ତିରୀକୁଳ ବିଳାପରେ ତୋର କିପାଁ ଇଚ୍ଛା ।
ଦ୍ୱାରେ ଦ୍ୱାରେ ଭିକ୍ଷା ମାଗି ସାଧିବୁ ତୁ ଯୋଗ
କିବା ଆବଶ୍ୟକ ତୋର ସ୍ତିରୀସେବା ଭୋଗ
ନାରାୟଣଙ୍କ ମୁଖରୁ ଶୁଣି ଏ ପ୍ରକାର
କୋପେ କାଳସର୍ପ ପ୍ରାୟ ଗର୍ଜିଇ କୁମର ।
ଛିନ୍ନ ରମ୍ଭାପତ୍ର ପ୍ରାୟ ଅଙ୍ଗ ଆଦି ଥରେ
ନାରାଚ ବସାଏ ନେଇ ପିନାକ ଧନୁରେ ।
ସେହି ନାରାଚ ଅଟଇ ଅତି ତୀକ୍ଷଣ ମୁନ
ଶ୍ରୀକୃଷ୍ଣଙ୍କ ଉପରକୁ ପେଷିଲେ ବହନ ।
ଉଲ୍‌କାପାତ ପ୍ରାୟ ପୃଥିବୀ ଦିଶିଲା ଉଜ୍ଜ୍ୱଳ
ତାହା ଦେଖି କମ୍ପମାନ ହେଲେ ଦିଗପାଳ ।
କାର୍ତ୍ତିକ ନାରାଚ ଦେଖି ଦେବ ଭଗବାନ
ଅସ୍ତ୍ର ଶସ୍ତ୍ର ତ୍ୟାଗକରି ବୁଜିଲେ ନୟନ ।
ଦେଖି ଗରୁଡ଼ କୃଷ୍ଣଙ୍କୁ ପକ୍ଷ ଦେଲା ଢ଼ାଙ୍କି
ସେ ପକ୍ଷେ ପଡ଼ି ନାରାଚ ହେଲା ଟିକି ଟିକି ।
ତା ଦେଖି କାର୍ତ୍ତିକେଶ୍ୱର ବୋଇଲା ହେ ହରି
ବହୁତ ଦ୍ୱନ୍ଦୀ ନ ହୁଅ ନିଶ୍ଚେ ଯିବ ହାରି ।

ଦୁର୍ବାସା ରହିଣ ଥିଲେ କାର୍ତ୍ତିକ ପାଶରେ
କୈଳାସେ ଯାଇ ଶିବଙ୍କୁ ଜଣାଇଲେ ଖରେ ।
ଆମ୍ଭଙ୍କୁ ଡାକି କହନ୍ତେ ଦୈତ୍ୟର କୁମାରୀ
କାର୍ତ୍ତିକର କଥା ତାକୁ କହିଲୁ ବିସ୍ତାରି ।
ତହୁଁ ସେ ଆମ୍ଭ ସାକ୍ଷାତେ କରିଲା ବରଣ
ତେଣୁ କାର୍ତ୍ତିକକୁ ନେଲୁ ଛାମୁରେ କହିଣ ।
ପ୍ରଦ୍ୟୁମ୍ନ ଫଟକୁ ଆଣି ଦେଖାନ୍ତି ନାରଦ
ବିରହିଣୀ ବାମା ତହୁଁ ହୋଇଲା ପ୍ରମୋଦ ।
କାର୍ତ୍ତିକ ବିଭା ହେବାକୁ ଏଣେ ଅଛି ବସି
ଅଭିଜ୍ଞ ସ୍ଥାନେ ପ୍ରଦ୍ୟୁମ୍ନ ଦେଖାଦେଲା ଆସି ।
ପ୍ରଦ୍ୟୁମ୍ନକୁ ଦେଖି ନାରୀ ହୋଇଲା ମୋହିତ
ତା ଗଳେ ବରଣମାଳା ଦେଲାକ ତୁରିତ ।
ତହୁଁ ସେ କନ୍ୟାକୁ ଘେନି ଦ୍ୱାରକା ଚଳଇ
ମେରୁଶୂଳ କାର୍ତ୍ତିକେୟ ଶୁଣି ଗଲେ ଧାଇଁ ।
ପାଣ୍ଡବଙ୍କୁ ଘେନି ହରି ରହିଥିଲେ ବାଟେ
ଏମାନେ ଭେଟିଲେ ତାଙ୍କୁ ବଳାଙ୍ଗୀର ତଟେ ।
ଗରୁଡ଼ର ବାତାଘାତେ କେକୀ ଗଲା ଉଡ଼ି
ସାତ ଯୋଜନ ଅନ୍ତରେ ସେହୁ ଗଲା ପଡ଼ି ।
ଏହିପରି ପରାଜୟ ହେଲେ ବେଳ ତିନି
ମେରୁଶୂଳ ସଙ୍ଗେ ରଣ କଲେ ଫାଲଗୁନି ।
ଦୁର୍ବାସାଙ୍କ ବଚନରେ ନନ୍ଦୀ ମହାକାଳ
ବିନାୟକ ପ୍ରଚଣ୍ଡ ଯେ ଚଣ୍ଡ କ୍ଷେତ୍ରପାଳ ।
ମହାବଳବନ୍ତ ବୀରେ ରୁଦ୍ର ଭୃରୁକୁଟି
ଶିବଗଣ ଗରଜନ୍ତି ଚତୁର୍ଦ୍ଦଶ କୋଟି ।
କାହା କରରେ ତ୍ରିଶୂଳ କା କରେ ପିନାକ
ମେଦିନୀ ଉଛୁଳି ପଡ଼େ ବାହିନୀଙ୍କ ଡାକ ।
କୋପଭରେ ରୁଦ୍ରଗଣ ହେଲେ ବୀରସାଜ
ଦେଖି ପରମ ସାନନ୍ଦ ଦେବ ଦେବରାଜ ।
ବୃଷଭ ପିଠିରେ ବିଜେହେଲେ ମହେଶ୍ୱର
ବାହିନୀ ଘେନି ଛାଡ଼ିଲେ କୈଳାସ କନ୍ଦର ।
ସମର ନିକଟେ ଯାଇ ହୁଅନ୍ତେ ପ୍ରବେଶ
ମହେଶ୍ୱର ଆସିବାର ଦେଖି ପୀତବାସ ।
ଖଗବର ପୃଷ୍ଠାସନ ବେଗେ ତ୍ୟାଗକରି
ପ୍ରବେଶିଲେ ଶିବପାଶେ ହୋଇ ପାଦଚାରୀ ।
ଶଙ୍କରଙ୍କ ପାଦତଳେ ହୋଇଣ ପ୍ରଣତି
କଲ୍ୟାଣ ବାଞ୍ଛିଲେ ଶିବ ହୋଇ ତୋଷମତି ।
ସଦାଶିବ ହସ ହସ ହେଲେ କରି ଦୃଷ୍ଟି
ଶ୍ରୀକୃଷ୍ଣ ଉଭା ହୋଇଲେ ତାଙ୍କ ପୁରମେଣ୍ଟି ।
ପ୍ରଦ୍ୟୁମ୍ନ ପ୍ରବେଶ ହେଲା ଦ୍ୱାରାବତୀ ପୁରୀ-
ଦେଖି ଆନନ୍ଦ ହୋଇଲେ ତହିଁ ନରନାରୀ ।

ବତିଶ ସହସ୍ର କନ୍ୟା ଘେନି ଅର୍ଘ୍ୟସ୍ଥାଳି
ବରକନ୍ୟା ବନ୍ଦାପନା କରୁଛନ୍ତି ମିଳି ।
ନାରଦ କହିଲେ ଦେବ ଶୁଣ ସଂକର୍ଷଣ
ମେରୁଶୂଳ ସଙ୍ଗେ ହରି କରୁଛନ୍ତି ରଣ ।
କାର୍ତ୍ତିକେଶ୍ୱର ନିମନ୍ତେ ଅଭିମାନ କରି
ନିଜେ ରଣେ ଆସିଛନ୍ତି ଦେବ ତ୍ରିପୁରାରି ।
ଚୌଦକୋଟି ଶିବଗଣ ସଙ୍ଗତରେ ଘେନି
କେବଳ ଅଛନ୍ତି ତହିଁ କୃଷ୍ଣ ଫାଲ୍‌ଗୁନି ।
ଆସ୍ଥାନୁ ଡେଇଁ ପଡ଼ିଲେ ଶୁଣି ଦେବରାଜ
ଆରେ ଆରେ ଯଦୁବୀରେ ଦଣ୍ଡ ବେଗେ ସାଜ
ଶ୍ରୀଭୁଜରେ ସମର୍ଥକ ହଳ ଯେ ମୂଷଳ
ଧରିଣ ଧାଇଁଲେ ପାଦେ ଦେବ କାମପାଳ ।
ତାଳଧ୍ୱଜ ରଥ ବେଗେ ସାଜିଲା ସାରଥି
ଶାର୍ଦ୍ଦୂଳ ଯୋଚି ଧାଇଁଲା ରାମ ପଛକତି ।
ଯଦୁବଂଶ ଭୋଜବଂଶ ଯେତେକ ସାମର୍ଥ
ଆଉ ଆଉ ଯୋଦ୍ଧାମାନେ ଚଢ଼ିଛନ୍ତି ରଥ ।
ହଳ ମୂଷଳ ବୁଲାଇ ଯାନ୍ତେ ବଳେବରେ
ଆଦିତ୍ୟ ଅଦୃଶ୍ୟ ହେଲେ ଚରଣ ଧୂଳିରେ ।
ଯୁଧିଷ୍ଠିଙ୍କୁ ଆଦିକରି ପାଞ୍ଚଗୋଟି ଭାଇ
ମେରୁଶୂଳ ସଙ୍ଗେ ଆଗ ଯୁଦ୍ଧ କଲେ ଯାଇ ।
ସଦାନନ୍ଦଙ୍କୁ ପ୍ରବୋଧ କରନ୍ତି ଅଚ୍ୟୁତ
ବଚନେ ପ୍ରବୋଧ କରି କହନ୍ତି ବହୁତ ।
ଶାନ୍ତି ବଚନ ତାହାଙ୍କୁ କହନ୍ତି କପାଳୀ
ଏ ସମୟେ ପ୍ରବେଶିଲେ ଆସି ଦେବହଳୀ ।
କୋଟିଏ ସିଂହର ବଳ ଯେଉଁ ବଳରାମ
କାଦମ୍ବରୀ ପାନେ ମତ୍ତକରି ଅତି ତମ ।
ରେରେକାର ଶବ୍ଦ କରି ଦେଲେ ଘୋର ଡାକ
ସେ ଡାକେ କମ୍ପି ଉଠିଲେ ତ୍ରିଭୁବନ ଲୋକ ।
ଐରାବତ ଆରୋହିଣ ବିଜେ ସୁନାସୀର
ଶାନ୍ତି କରାଇଲେ ଧରି ରାମଙ୍କ ପୟର ।
ଯୁଧିଷ୍ଠିଦେବ ପ୍ରଣାମ କଲେ ବଳରାମେ
ଦେବ ହରିହର ଶାନ୍ତି ହେଲେଣି ସଂଗ୍ରାମେ ।
ଏବେ କୋପ ସଂହରଣ କର ଦେବ ହଳୀ
ଶାନ୍ତି ଭଜିଲେଣି ହରି ନ କରନ୍ତୁ କଳି ।
ଏରୂପେ ବହୁ ବିନୟେ ବୋଲୁ ଧର୍ମରାୟେ
ଶାନ୍ତି ଭଜି ବଳରାମ ବସିଲେ ସେଠାଏ ।
ନାରାୟଣଙ୍କୁ ଚାହିଁଣ କହନ୍ତି କପାଳୀ
ଆଗେ କାର୍ତ୍ତିକେଶ୍ୱରଙ୍କୁ ବରିଥିଲା ବାଳୀ ।
ଗୋବିନ୍ଦ ବୋଇଲେ କୋପ ନ କରନ୍ତୁ ଭ୍ରାତ
କନ୍ୟା ନାରଦ ପଠାନ୍ତି ପ୍ରଦ୍ୟୁମ୍ନ ନିମିତ୍ତ ।

ମୁହିଁ ଯେବେ ଜାଣିଥାନ୍ତି ଏଥିର ତଦନ୍ତ
ଏ ଘଟଣା ଘଟିଥାନ୍ତା କିପାଁ ବିଶ୍ୱନାଥ ।
ଏବେ ହେଁ ମୁଁ ସମର୍ପଣ କରନ୍ତି ସେ କନ୍ୟା
ବରମାଳ ଦେଇ ବିଭାହେଲା ବରାଙ୍ଗନା ।
କାର୍ତ୍ତିକ ଅଟନ୍ତି ଜ୍ୟେଷ୍ଠ କନିଷ୍ଠ ପ୍ରଦ୍ୟୁମ୍ନ
ଏ କଥା ବିଚାର କର ତୁମ୍ଭେ ତ୍ରିଲୋଚନ ।
ଏରୂପେ ବୋଧି କହିଲେ ତାଙ୍କୁ ବନମାଳୀ
ଶୁଣି ସନ୍ତୋଷ ଚିତ୍ତରେ ତହୁଁ ଗଲେ ଶୂଳୀ ।
କାର୍ତ୍ତିକେଶ୍ୱରଙ୍କୁ ଶିବ ବସାଇଣ କୋଳେ
ବୃଷଭ ପୃଷ୍ଠେ ବସିଣ ସେଠାରୁ ଚଳିଲେ ।
ପଥେ ଯାଉଁ ବୋଇଲେକ ଦେବ ସଦାନନ୍ଦ
ବାବୁ ବିରହିଣୀ କନ୍ୟା କଲା ଅତି ମନ୍ଦ ।
ଛାର ସ୍ତିରୀ ନିଲକ୍ଷଣୀ ପାଇଁ ଆରେ ସ୍କନ୍ଦ
ଏକଘରେ ଆମ୍ଭେ କିପାଁ ଲଗାଇବା ଦ୍ୱନ୍ଦ୍ୱ ।
କାର୍ତ୍ତିକେୟଙ୍କୁ ପ୍ରବୋଧି ଭ୍ରୁକୁଟିଙ୍କ ତୁଲେ
କୈଳାସ ସ୍ୱର୍ଗରେ ଦେବ ବିଜୟ କରିଲେ ।
ଆରମ୍ଭରୁ ମେରୁଶୃଙ୍ଗ ଦୈତ୍ୟ ତହିଁ ଥିଲା
ମହେଶଙ୍କ ଯିବା ଦେଖି ନିର୍ମାଖି ହୋଇଲା ।
ମେରୁଶୂଳଙ୍କୁ ଦେଖିଣ ଦେବ ହଳଧାରୀ
ମୂଷଳକୁ ବୁଲାଇଣ ଚକ୍ରାକାର କରି ।
ବଜ୍ରହଳ ବୁଲାଇଣ ପ୍ରହାରିଲେ କୋପେ
ଅସୁର ଅଙ୍ଗେ ବାଜନ୍ତେ ରହିଲା ସେ ଦର୍ପେ ।
ସମରେ ଅନିର୍ବାର ସେ ମେରୁଶୂଳ ରାଜା
ମୂଷଳ ବାଜନ୍ତେ ହେଲା ଦୁଇଗୁଣ ତେଜା ।
ପୁଣ ପୁଣ ବଳରାମ ପ୍ରହାର କରିଲେ
ନିର୍ଘାତ ଜାଣି ପଡ଼ଇ ଦୈତ୍ୟ ବକ୍ଷସ୍ଥଳେ ।
ବଜ୍ରହଳ ପ୍ରହାରରେ ଉଠିଲାକ ବହ୍ନି
ଦେଖିଣ ବିସ୍ମୟ ହେଲେ ଦେବ ହଳପାଣି ।
ରେରେକାର କରି ରାଗେ ଧାଇଁ ମେରୁଶୂଳ
ବଳରାମଙ୍କ ଉପରେ ପିଟିଲା କୋଦାଳ ।
ମନ୍ଦର ଗିରି ସଦୃଶ ଆସି ଅଙ୍ଗେ ପଡ଼ି
ସହି ତାହା ଘୁଞ୍ଚିଗଲେ ରାମ ଯୁଦ୍ଧ ଛାଡ଼ି ।
ମେରୁଶୂଳ ଧାଇଁ ପୁଣି କୋଦାଳ ଧରିଣ
ଚକ୍ରଘେନି ଉଗାଳିଲେ ତାକୁ ନାରାୟଣ ।
କୌମୋଦକୀ ଗଦା ପୁଣି ଶ୍ରୀକରେ ବୁଲାଇ
ମେରୁଶୂଳ ପରେ କୋପେ ପିଟିଲେ ନିଠାଇ ।
ଦେଖିଣ ତା ଦୁରାନ୍ତକ ପାତେ ବାମକର
ସେ ଗଦା ଆଘାତେ କିଛି ନୋହିଲା ତାହାର ।
ତା ଦେଖି ରୋଷେ କେଶବ ସୁଦର୍ଶନ ଧରି
ମେରୁ ଶୂଳର ଉପରେ ସେ ଚକ୍ର ପ୍ରହାରି ।

ଚକ୍ର ପେଷିବା ଦେଖିଣ ଧାଇଁ ମେରୁଶୂଳ
ମାର ମାର ବୋଲି ଦୈତ୍ୟ ପାତେ ବକ୍ଷସ୍ଥଳ ।
ସୁଦର୍ଶନ ଚକ୍ରବର ପଡ଼ି ଦୈତ୍ୟ କାୟେ
ଝଲକିଲା ବହ୍ନି ଲଙ୍କା ଦଗ୍‌ଧାନଳ ପ୍ରାୟେ ।
କୋଦାଳ ଆୟୁଧ ଘେନି ବୁଲାଇ ଦୁର୍ଦ୍ଦାନ୍ତ
ନାରାୟଣଙ୍କ ଉପରେ ପିଟିଲା ତୁରିତ ।
ସେ ଅସୁରଶ୍ୱର ଯହୁଁ କୋଦାଳେ ପ୍ରହାରି
ତାହା ଦେଖି ନାରାୟଣ ଗଲେ ଅପସରି ।
ଶ୍ରୀକୃଷ୍ଣଙ୍କ ପରାଜୟ ଦେଖି ପାର୍ଥବୀର
ରେ ରେକାର କରି ଧାଇଁ ହେଲେ ଅଗ୍ରସର ।
ଅନିର୍ବାର ଶର ବିନ୍ଧୁ ତା ସେହ୍ନାରେ ପଡ଼େ
ଦୈତ୍ୟ ହୃଦେ ନ ଭେଦିଣ ଚୂନାହୋଇ ଝଡ଼େ
ମନଭେଦିକୁ ବିନ୍ଧନ୍ତେ ପଡ଼ି ତାର ଦେହେଁ
ରୋମରୋମରେ ଭେଦିଣ ରକ୍ତ ଧାର ବହେ
ଅନବରତ ନାରାଚ ବିନ୍ଧିଲେକ ପାର୍ଥ
କଉଣସି ଅସ୍ତ୍ରେ ବଧ ନୋହିଲା ସେ ଦୈତ୍ୟ ।
ଗୋବିନ୍ଦ ପୁଚ୍ଛା କରିଲେ ସହଦେବ ଆଗେ
ଏ ଦଇତ ନାଶ ହେବ କେବଣହିଁ ବାଗେ ।
ସହଦେବ ବୋଇଲେ ଯେ ଶୁଣ ଦେବରାୟେ
କୌଣସି ଅସ୍ତ୍ର ଭେଦିବ ନାହିଁ ଏହା କାୟେ ।
ଯେଉଁ ସମୟେ ବ୍ରହ୍ମାଙ୍କୁ ମାଗିଲା ଏ ବର
ଦିଗପାଳ ଜନ୍ମିଥିବ ଯେହୁ ହୋଇ ନର ।
ସେହୁ ପୁଣି ତିନିପୁର ବିଜୟୀ ହୋଇବ
ତା ହସ୍ତରେ ନୀଳବାଣ ଭୁଜବାଣ ଥିବ ।
ତାହାର ହସ୍ତରେ ଏହୁ ହୋଇବ ବିନାଶ
ଏମନ୍ତ ବର ଘେନିଛି ଜାଣ ହୃଷୀକେଶ ।
ଏରୂପେ କହିଲେ ଯହୁଁ ଫେଡ଼ି ସହଦେବ
ଶୁଣିଣ ବିଷର୍ଣ୍ଣ ହେଲେ ଯୁଧିଷ୍ଠିର ଦେବ ।
ବୋଇଲେରେ ଭାଇଦୈତ୍ୟ ହୋଇବ ବିନାଶ
ଏମନ୍ତ ଜନମି ଅଛି କେବଣ ପୁରୁଷ ।
ଆରେ ବାବୁ ଭୀମସେନ ଯାଅ ତୁ ବହନ
ସମରରୁ ଘୁଞ୍ଚାଇଣ ଆଣ ଅରଜୁନ ।
ସହଦେବ ବୋଇଲେ ଯେ ନୁହଇ ଏମନ୍ତ
ଏକା ଅରଜୁନ ଚାରିଦିଗପାଳେ ଜାତ ।
ବେଦବରଙ୍କର ଶିର ଈଶ୍ୱର ବିଭୂତି
ବାସୁଦେବର ରୁଧିର ବୀର୍ଯ୍ୟ ସୁରପତି ।
ମୋଡ଼ିଲେ ଈଶ୍ୱର ବ୍ରହ୍ମା ଶିର ଯେତେବେଳେ
ତହିଁ ବ୍ରହ୍ମା ରକ୍ଷାହୋଇ ଗୋଡ଼ାଇ ସେକାଳେ
ବ୍ରହ୍ମାର ମୁଣ୍ଡ ଈଶ୍ୱର କରେ ଲାଗିଅଛି
ଈଶ୍ୱରେ ଡାକିଲେ ରକ୍ଷାକର ହେ ଶ୍ରୀବତ୍ସି ।

ଈଶ୍ୱର ବିକଳେ ଚକ୍ର ଘେନି ବାମହସ୍ତେ
ଦକ୍ଷିଣ କରରେ ଚକ୍ର ପେଷିଲେ ତୁରିତେ ।
ସେ ରୁଧିର ବହିଲା ଯେ ବ୍ରହ୍ମାର କପାଳେ
ଘେନିଲେ ବିଭୂତି ଈଶ୍ୱରର କୁତୂହଳେ ।
ଅଦଭୂତେ ପୁରୁଷେକ ହୋଇଲାକ ଜାତ
ତାହାର ନାମ ଗୋଟିକ ଦେଲେ ଯେ ପ୍ରଶସ୍ତ ।
ପ୍ରଶସ୍ତ ବୋଲି କରିଣ ଧାତା ଯହୁଁ ପାଏ
ଦୁହିଙ୍କୁ ସମର କରାଇଲେ ଦେବରାୟେ ।
ସହସ୍ର ବରଷ ତାଙ୍କ ସମର ହୋଇଲା
କେହି କାହାରିକୁ ରଣେ ଜିଣି ନ ପାରିଲା ।
ସମର ରୁହାଇଲେ ଯେ ଦେବ ବିଶ୍ୱନାଥ
ଦ୍ୱାପର ଯୁଗେ ମନୁଷ୍ୟେ ହୁଅ ତୁମ୍ଭେ ଜାତ ।
ବ୍ରହ୍ମାର ରୁଧିରେ ସେହୁ ହେଲା ଉତପନ୍ନ
ଦ୍ୱାପର ଯୁଗେ ଆଦିତ୍ୟ ସଂହାରିଲା କାହ୍ନ ।
ହରର ରୁଧିର ତହୁଁ ହେଲା ବିତପନ୍ନ
ବାସବ ସଂହାରିଲା ଯେ ହୋଇଲା ଅର୍ଜ୍ଜୁନ ।
ସହଦେବ କହେ ଶୁଣ ରାମ କୃଷ୍ଣ ବେନି
ଚାରିଦିଗପାଳେ ସେହି ଯେହୁ ଫାଲଗୁନି ।
ଆବର ଉତପତ୍ତି ସେ ମାନବୀର ଗର୍ଭେ
ମେରୁଶୂଳ ଦୈତ୍ୟ ବଧ ହେବ ଜାଣ ଏବେ
ଯାଙ୍କ ପାଶେ ନୀଳବାଣ ଭୁଜବାଣ ଅଛି
ଜଗତଜୟୀ ଅଟନ୍ତି ପୁଣି ସବ୍ୟସାଚି ।
ଶୁଣିକରି ଯୁଧିଷ୍ଠିର ହେଲେ ଆନନ୍ଦିତ
ଏ ସମ୍ବାଦ କହିଲୁ ତୁ ଧନ୍ୟ ମୋର ଭ୍ରାତ ।
ଏଥୁ ଅନନ୍ତରେ ଶୁଣ ମନୁ ମହୀପାଳ
ଅନେକ ସମର କଲେ ଦୈତ୍ୟ ମେରୁଶୂଳ ।
ସମରେ ବିଜୟୀ ସେହି ବାସବ ସନ୍ତତି
ପାହୁଣ୍ଡେ ନ ହଟି ଦମ୍ଭେ ନାରାଚ ବିନ୍ଧନ୍ତି ।
ବେଳୁବେଳ ଏହିରୂପେ ଲାଗିଲା ସମର
କୌଣସି ଅସ୍ତ୍ରେ ବିନାଶ ନୁହନ୍ତେ ଅସୁର ।
ନୀଳବାଣ ଭୁଜବାଣ ଏ ନାରାଚ ବେନି
ରାଗେ ଗୁଣେ ବସାଇଲେ ବୀର ଫାଲ୍‌ଗୁନି ।
ହରିହର ଅବତାର ସେ ଦୁଇଟି ବାଣ
ବିନ୍ଧିଲେ ଅବଶ୍ୟ ସେହୁ ଘେନନ୍ତି ପରାଣ ।
ଯାହାକୁ ଜାଣିବାପାଇଁ କରଇ ସେ ଥୟ
ତାହାକୁ ସେ ଅସ୍ତ୍ର କାଢ଼ି ବିନ୍ଧେ ଧନଞ୍ଜୟ ।
ସେ ଅସ୍ତ୍ରକୁ ତିଆରିଣ ପେଷେ ଫାଲଗୁନି
ଏ ଅସୁରକୁ ହାଣିଣ ଆସ ତୁମ୍ଭେ ବେନି ।
ପାଞ୍ଚକୋଟି କିରଣ ସେ ଦୁଇସସ୍ତ୍ର ଜ୍ୟୋତି
ପେଷନ୍ତେ ଭୟେ କମ୍ପଇ ଦେବୀ ବସୁବତୀ ।

ନାରାଚ ଆସୁ କମ୍ପିଲେ ପୁଣି ଦିଗପାଳେ
ଦେବେ ରହି ନ ପାରିଲେ ଆକାଶ ମଣ୍ଡଳେ ।
ଆଦିତ୍ୟ ଦେବତା ମେରୁ ଉହାଡ଼େ ଲୁଚିଲେ
ପବନ ଦେବତା ଭୟେ ସ୍ଥକିତ ହୋଇଲେ ।
ଦେଖି କୋଦାଳ ଆୟୁଧ ପାତେ ଦୈତ୍ୟପତି
ନୀଳବାଣେ ଭସ୍ମହେଲା ସେ କୋଦାଳଜ୍ୟୋତି
ଶୂନ୍ୟହସ୍ତ ହୋଇକରି ମେରୁଶୂଳ ଦୈତ୍ୟ
ମାରିବାକୁ ଉଞ୍ଚାଇଛି ପୁଣି ବେନି ମୁଥ ।
ଭୁଜବାଣ ପଡ଼ିଲା ତା ନାଭି ମଣ୍ଡଳରେ
ନୀଳବାଣ ପଡ଼େ ଯାଇ ତା ବକ୍ଷ ସ୍ଥଳରେ ।
ତିନିଖଣ୍ଡ ହୋଇ ପଡ଼େ ଦୈତ୍ୟକାୟା ଛିଡ଼ି
ପଡ଼ିଲା ମହୀରେ ତହୁଁ ଛାଡ଼ି ଘୋରରଡ଼ି ।
ଦୈତ୍ୟ ପଡ଼ନ୍ତେ ଉଲ୍ଲାସ ହୋଇଲା ମେଦିନୀ
ସାଧୁ ଅର୍ଜ୍ଜୁନ ବୋଲିଣ ଶୁଭେ ସ୍ୱର୍ଗଧ୍ୱନି ।
କୋଦାଳ ବୁଲାଇ ସେହୁ ପ୍ରହାର କରିଲେ
ପୃଥିବୀ ମୁଖୁଁ ରୁଧିର ବହେ ଅବହେଳେ ।
ଏଡ଼େ ଭାରାକୁ ଉଶ୍ୱାସ କଲୁ ତୁହି ଧନ୍ୟ
ଯୁଗେ ଯୁଗେ ତୋର କୀର୍ତ୍ତିଥିବ ବିଦ୍ୟମାନ ।
ବ୍ରହ୍ମା ଇନ୍ଦ୍ର ହରିହର ଯାକୁ ଭୟକରି
ସାକ୍ଷାତେ ଦେଖୁଛୁ ଯୁଦ୍ଧୁ ଗଲେ ଅପସରି ।
ତୋହଦ୍ୱାରା ବଧ ହେଲା ତେଡ଼େ ନିଶାଚର
ଧନ୍ୟ ଧନ୍ୟ କ୍ଷତ୍ରିବୃତ୍ତି ଅଟଇ ତୋହର ।
ଅସୀମ ଆନନ୍ଦ ମନେ ହେଲେ ଦିଗପାଳ
ଅମରେ ଉତ୍ସବ କଲେ ଦେବ ଆଖଣ୍ଡଳ ।
ଧନ୍ୟ ଧନ୍ୟ ଧନଞ୍ଜୟ ବୋଲନ୍ତି ତ୍ରିଦଶ
ତୋହଯୋଗୁଁ ପୃଥୀଭାରା ହୋଇଲା ଉଶ୍ୱାସ
ଜୟ ଜୟ ବଳରାମ ଜୟ ଦେବ ସ୍ୱାମୀ
ଜୟ ଜୟ ନୀଳାମ୍ବର ତୋ ପାଦେ ନମାମି ।
ମଉଳିରେ ସପ୍ତଫେଣା କୁଣ୍ଡଳି ତୋହର
ଅଦଭୂତେ ତୁହି ଦେବ ହେଲୁ ଅବତାର ।
ଜଗତରେ ଯେତେ କଥା ଅନ୍ୟ କିଛି ନାହିଁ
ପୃଥ୍ୱୀ ଆପ ତେଜ ବାୟୁ ଆକାଶ ଯେ ତୁହି ।
ସଚରାଚର ମେଦିନୀ ତୁହି ଉଦ୍ଧାରନ୍ତା
ଅଣାକାର ପୁରୁଷ ତୋ କାହିଁ ପିତାମାତା ।
ସୌନିଧିପୁର ମଣ୍ଡଳବାସୀ ତୁହି ନାଥ
କାଦମ୍ବରୀ ପାନେ ସଦା ସର୍ବଦା ତୁ ମତ୍ତ ।
ନମସ୍ତେ ଦେବ ରେବତୀ ଦେବୀ ପ୍ରାଣମଣି
କୋଟିକଳ୍ପ ବଞ୍ଚାଇଲୁ ଶିରେ ସପ୍ତଫେଣି ।
ଶ୍ୱେତ ପୀତ ଲୋହିତ କୁଙ୍କୁମ ନୀଳବର୍ଣ୍ଣ
ଶ୍ରୀକୃଷ୍ଣ ସୋଦର ଶଙ୍ଖର ଯେ ବର୍ଣ୍ଣ ଚିହ୍ନ ।

କଦୟା ପ୍ରଳୟା ପୁଣି ମୁଷ୍ଟିକକୁ ଧ୍ୱଂସି
ଷଣ୍ଡା ଯାମଳା ଚାଣୁର ଏ ଆଦିଙ୍କୁ ନାଶି ।
ଉଶ୍ୱାସ କରିଲୁ ସିନା ତୁହି ଦେବ ସୃଷ୍ଟି
ମୋ ହୃଦେ ବିକାଶୁ ତୋର ରାମନାମ ଗୋଟି
ତୋ ନାମ ଗୁଣି ଖଣ୍ଡିବି ଏ କଳି କଲ୍ମଷ
ସତତ ନମି ଜଣାଏ ଶ୍ରୀଶାରଳା ଦାସ ।

■ ■ ■

## ବିରାଟ ରାଜା ଓ ସୁଦେଷ୍ଣାଙ୍କ ପୂର୍ବ ଜନ୍ମ ବିବରଣ, କୀଚକ ଶତଭାଇଙ୍କ ଜନ୍ମ ଏବଂ ବିରାଟ ରାଜାଙ୍କର ମତ୍ସ୍ୟଦେଶେ ଅଭିଷେକ

ଏଥୁ ଅନନ୍ତରେ ପୁଣି ମନୁ ଦଣ୍ଡଧର
ଅଗସ୍ତିଙ୍କୁ ପୁଚ୍ଛା କଲେ ଯୋଡ଼ି ବେନିକର ।
ମେରୁଶୂଳ ବଧ ପରେ ହେଲା କେଉଁ କଥା
ସେ କଥା କହି ମୋହର ଫେଡ଼ ମନୁବ୍ୟଥା ।
ଅଗସ୍ତି କହିଲେ ଶୁଣ ମନୁ ନରପତି
ଆରଣ୍ୟକ ପର୍ବ ସଦା ଶ୍ରବଣେ ଜୟତି ।
ମେରୁଶୂଳକୁ ଅର୍ଜ୍ଜୁନ କରନ୍ତେ ନିଧନ
ମାରକଣ୍ଡ ଆଦି ଥିଲେ ଯେତେ ତପୋଧନ ।
ଏକମୁଖେ ଅର୍ଜ୍ଜୁନକୁ ଧନ୍ୟ ଧନ୍ୟ କଲେ
ସର୍ବଶୁଭେ ସଦା ରହ କଲ୍ୟାଣ ବାଞ୍ଛିଲେ ।
ଅନେକ ଦାନବଗଣ ଥିଲେ ଏ ଭୁବନେ
ସର୍ବେ ନାଶ ହେଲେ ଏବେ ତୁମ୍ଭର ଦର୍ଶନେ
କୁମ୍ଭୀରୀ କିନ୍ନରୀ ଆଉ ବକ ହିଡ଼ିମ୍ବକ
ପାଣ୍ଡବାଦି ଦେବାସୁର ପୁଣି ହିରଣ୍ୟକ ।
ମେଧା ନିର୍ବାତ ଆବର ହିରଣ୍ୟ ଅସୁର
କୁମ୍ଭ ନିକୁମ୍ଭ ଗୋସିଂହ କାଳାଞ୍ଜ ଦୁର୍ବାର ।
ମତ ଉଗ୍ରମତ ଆଉ ଦଇତ୍ୟ ଯାମାକ୍ଷୀ
ଏ ଦୈତ୍ୟଙ୍କୁ ବିନାଶିଲେ ଭୀମ ସବ୍ୟସାଚି ।
ତ୍ରିଜଟା ତୃଣା କପଚ ଦୈତ୍ୟ ମହାବୀର
ମେରୁଶୂଳ ସହିତରେ ଅନେକ ଅସୁର ।
ବନେ ଯେତେବେଳେ ଥିଲେ ଏ ଅସୁରମାନେ
ଲୁଚି ତପ କରୁଥିଲେ ଅତି ଭୟମନେ ।
ବନେ ଏହୁ କରୁଥିଲେ ଅନେକ ଉତ୍ପାତ
ତୁମ୍ଭ ବନବାସ ଯୋଗେ ହେଲେ ସେ ନିପାତ
ଆମ୍ଭେମାନେ ଯାଉଅଛୁ ଯେଝା ତପସ୍ଥାନ
ଅଜ୍ଞାତବାସରେ ତୁମ୍ଭେ ରହ ଷଡ଼ଜଣ ।
ଯା କହି ଋଷିଏ ଗଲେ ଯେ ଯାହା ଆଶ୍ରମ
ଯଦୁବଂଶ ଘେନି ପୁରେ ଗଲେ ବଳରାମ ।
ପ୍ରଦ୍ୟୁମ୍ନକୁ ତ୍ରିଭୁବନ ମୋହିନୀ ସୁନ୍ଦରୀ
ବିଭା କରାଇଲେ ଶୁଭଲଗ୍ନ ବୁଝିକରି ।
ବଜ୍ରଗିରି ଦେଶେ ପଞ୍ଚ ପାଣ୍ଡବଙ୍କୁ ଘେନି
ନିଶ୍ଚିନ୍ତରେ ରହିଲେକ ତହିଁ ମାସ ତିନି ।
ବ୍ୟାସ ସହଦେବ ଛନ୍ତି ଏହାଙ୍କର ତୁଲେ
ପାଣ୍ଡବମାନେ ଏରୂପେ ଦିନ କଟାଇଲେ ।
ଯୁଧିଷ୍ଠି ବୋଇଲେ ଏବେ ଅଜ୍ଞାତ କିପରି
କାଟିବୁ ହୋ ମହାମୁନି କହନ୍ତୁ ବିଚାରି ।
ବ୍ୟାସ ବୋଲେ ମତ୍ସ୍ୟଦେଶେ ନୃପତି ବିରାଟ
ତା ଦେଶରେ ରହି ସୁଖେ ଅଜ୍ଞାତକୁ କାଟ ।
ଯୁଧିଷ୍ଠି ବୋଇଲେ ସେ ତ ଅଟେ ନୀଚଜାତି
ତାର ସେବା କରିବାକୁ ନବଳଇ ମତି ।
ବୋଇଲେ ବ୍ୟାସ ବିରାଟ ଅଟେ ମହାଜନ
ତା ପର୍ବ ଚରିତ ଏବେ ମନଦେଇ ଶୁଣ ।
ରାଜ ଗୋଳକ ବୋଲିଣ ଏକଶତ ଯୁଗ
ବୈବସ୍ୱତ ମନୁ ଯାହା କରିଥିଲେ ଭୋଗ ।
ଆଠଲକ୍ଷ ଚଉଷଠି ବରଷ ଯେ ଯୁଗ
ଆଠଲକ୍ଷ ତେଷଠି ସହସ୍ର ବର୍ଷ ଭୋଗ ।
ପିତା କପିଳାର ମଧ ମେରୁ ସମ୍ପରରେ
ତୁଳମାସ କୃଷ୍ଣପକ୍ଷ ଯେ ତ୍ରୟୋଦଶୀରେ ।
ଶଶାଙ୍କବାର ଅଶ୍ୱିନୀ ନକ୍ଷତ୍ର ଯୁକତ
ବାଣିଜ୍ୟ ନାମେ କରଣ ଭୋଗ ଯେ ନିୟତ ।
ପ୍ରୀତି ନାମେ ଯୋଗ ନାହିଁ ଦୈତ୍ୟ ଉପଦର୍ପ
ଏହି ସମୟେ ରାଜତ୍ୱ କଲେ ଶ୍ୱେତନୃପ ।
ପଶୁଠାରୁ କୀଟଆଦି ଜୀବ ପରିଯନ୍ତେ
କାହାକୁ କା ଭୟ ନାହିଁ ତାହାର ଆଶ୍ରିତେ ।
ଏରୂପେ ରାଜତ୍ୱ କରେ ସେ ଶ୍ୱେତ ନରେଶ
ତାର ଧନ୍ୟ ଧନ୍ୟ ବାଣୀ ଗାଆନ୍ତି ତ୍ରିଦଶ ।
ସତ୍ୟଯୁଗେ ତିନିଲକ୍ଷ ବର୍ଷ ରାଜ୍ୟ କଲା
ଯାଗ କରିବାକୁ ସେହି ମନରେ କଳ୍ପିଲା ।
ବ୍ରହ୍ମାଙ୍କର ନିକଟକୁ ଗଲେ ରାୟେ ଶ୍ୱେତ
ଆସ୍ଥାନର ତଳେ ଯାଇ ହେଲେ ପ୍ରଣମିତ ।
ହେ ଚତୁରାନନ ମୋତେ ସଦୟ ହୁଅନ୍ତୁ
ଯଜ୍ଞ ମୁଁ କରିବି ମୋତେ ପୁରୋହିତ ଦ୍ୟନ୍ତୁ ।
ରାଜାଙ୍କୁ ବୋଇଲେ ବ୍ରହ୍ମା ପ୍ରୋହିତ ଏ ଶ୍ରେଷ୍ଠ
ବଶିଷ୍ଠଙ୍କୁ ଘେନିଯାଅ ଏବେ ତୁମ୍ଭ ରାଷ୍ଟ୍ର ।
ବଶିଷ୍ଠେ ବୋଇଲେ ବ୍ରହ୍ମା ଯାଅ ଯଜ୍ଞ କର
ଯଜ୍ଞଫଳେ ରାଜା ଯେହ୍ନେ ବସୁ ସ୍ୱର୍ଗପୁର ।
ଶ୍ୱେତକୁ ସଙ୍ଗେ ଘେନିଣ ଅଇଲେ ବଶିଷ୍ଠ
ତୋ ଯାଗ ହେତୁ ମୋ ତପକାର୍ଯ୍ୟ ହେଲା ନଷ୍ଟ

ପଞ୍ଚବିଂଶ ଅନଳ ଯେ ମୋହର ଦୋହରା
ଚାରିମେଘ ହୋଇବ ଯେ ପ୍ରୋକ୍ଷଣିର ଧାରା
ତୁହି ଯେବେ ଘୃତ ରାଜା ପାରିବୁ ଯୋଗାଇ
ଏକବର୍ଷ ପରିଯନ୍ତେ ଯଜ୍ଞକର ତୁହି ।
ବଶିଷ୍ଠ ବଚନେ ହେଲେ ଶ୍ୱେତରାଜା ତୋଷ
ବଶିଷ୍ଠଙ୍କୁ ବରି ରାୟେ ହୋଇଲେ ହରଷ ।
ରତ୍ନଝରି ଘେନି ରାଜା ପାଦ ପ୍ରକ୍ଷାଳିଲା
ଆସନ ସମାର୍ଜ୍ଜନା ଯେ ପାଦ୍ୟାସନ ଦେଲା ।
ଧୂପ ଦୀପ ନଇବେଦ୍ୟ ସୁଗନ୍ଧ ଚନ୍ଦନ
ଦେଇ ଅନେକ ବିନୟୀ ହୋଇଲା ରାଜନ ।
ନବତନ ବସ୍ତ୍ର ଆଉ ନାରିକେଳ ଫଳ
ଏ ବିଧିରେ ପୂଜି ରାଜା ଦେଲା ପୁଷ୍ପମାଳ ।
ବଶିଷ୍ଠ ବୋଇଲେ ରାଜା ଯଜ୍ଞଶାଳ ରଚ
ଯେତେ ଯେତେ ପାରୁ ଏବେ ଘୃତ ଆଣି ସଞ୍ଚ ।
ଅଗ୍ନି ଅତୃପ୍ତି ଭୋଜନେ ଧର୍ମ ହୁଏ ହାନି
କାରଣ ନାହିଁଟି ଏଥେଁ ବୋଇଲେକ ମୁନି ।
ବଶିଷ୍ଠଙ୍କ ବଚନରେ ଚଳିଲେ ନରେଶ
ଘୃତସିନ୍ଧୁକୁ ସେବିଲେ ପଞ୍ଚଦଶ ବର୍ଷ ।
ପ୍ରସନ୍ନେ ସିନ୍ଧୁ ବୋଇଲେ ବରମାଗ ରାଜ
ଯେ ବାଞ୍ଛା ମନେ ତୋହର ସିଦ୍ଧହେଉ କାର୍ଯ୍ୟ
ରାଜାବୋଲେ ଭୋ ସମୁଦ୍ର ଯେବେ ହେଲ ତୁଷ୍ଟ
ଘୃତ ଯୋଗାଇବୁ ଯାଗ କରନ୍ତି ବଶିଷ୍ଠ ।
ପିତା ଆଜ୍ଞାରେ ବଶିଷ୍ଠେ ବରିଲଇଁ ମୁହିଁ
ସେ ବୋଇଲେ ଘୃତସିନ୍ଧୁ ଯାଗକୁ ଅଣ୍ଟଇ ।
ସମୁଦ୍ର ବୋଲେ ଋଷିଙ୍କ ଶ୍ରୁବ ସ୍ରୁଚ କାଠି
ତହିଁରେ ବର୍ଷିବୁ ଯଜ୍ଞ ଶେଷକୁ ଯେ ଅଣ୍ଟି ।
ଶୁଣ ବାବୁ ଯୁଧିଷ୍ଠିର କହୁଛନ୍ତି ବ୍ୟାସ
ମୁନିଙ୍କୁ ହର୍ଷେ କହନ୍ତି ଶ୍ୱେତ ନରଈଶ ।
ଯାଗ ଆରୋପଣ କଲେ ହିମଗିରି ତଟେ
ସରଭଦ୍ରାନଦୀ ବାଞ୍ଛାବଟର ନିକଟେ ।
ଅସମ୍ଭବ ସଙ୍କଳପ ଇଚ୍ଛିଲେ ସେ ରାୟେ
ଯଜ୍ଞକଲା ଚଉବିଂଶ ସମ୍ବତ୍ସରଯାଏ ।
ବଶିଷ୍ଠ ଯାଜ୍ଞିକ ହେଲେ ସେ ହୋମ କୁଣ୍ଡରେ
ଘୃତଧାର ବରଷଇ ହାତୀ ଶୁଣ୍ଢାକାରେ ।
ସାଧୁ ମହାତ୍ମା ଅଟନ୍ତି ବଶିଷ୍ଠ ବ୍ରାହ୍ମଣ
ଯଜ୍ଞଧୂମ ଶିଖା ଉଠେ ଆକାଶେ ବ୍ୟାପିଣ ।
ଲୋଭ କରିଣ ଭକ୍ଷିଲେ ଘୃତ ବୈଶ୍ୱାନର
ଲୁଦୁବୁଦି ବ୍ୟାଧିହେଲା ଶରୀରେ ତାଙ୍କର ।
ଅସାଧ ଯେ ବ୍ୟାଧି ହେଲା ତିନିଯୁଗ ଯାଏ
ପୀଳୋହୀ ବଢ଼ିଲା ତେଣୁ ଅସୁସ୍ଥ ଯେ କାୟେ
ଦେବ ଦାନବ ମାନବ ସର୍ବେ ବ୍ୟାଧିଯୁକ୍ତ
ଅଗ୍ନିଦେବତା ଆରୋଗ୍ୟ ନ ହେବା ପର୍ଯ୍ୟନ୍ତ ।
ଯେ ଯାହା ଭକ୍ଷିଲେ ଜୀର୍ଣ୍ଣ ନୋହିଲା କାହାର
ଲୁଦୁବୁଦୁ ବ୍ୟାଧିଯୁକ୍ତ ପଶୁପକ୍ଷୀ ନର ।
ଶ୍ୱେତରାଜା ଏହିରୂପେ ଯଜ୍ଞ ପୂର୍ବେ କଲା
ସେ ଯଜ୍ଞ ଫଳରେ ରାଜା ବ୍ରହ୍ମାପୁରେ ଗଲା ।
ଆନନ୍ଦ ମନରେ ତହିଁ ହେଲା ବିରାଜିତ
ବ୍ରହ୍ମା ବୋଇଲେ ତୋ ପୁଣ୍ୟଧର୍ମ ଏ ପ୍ରାପତ ।
ଆମ୍ଭ ଦେବ କାର୍ଯ୍ୟରେ ତୁ ଜାତ ହୁଅ ମର୍ତ୍ତ୍ୟେ
ବିରାଟ ନାମରେ ଖ୍ୟାତ ହୁଅ ତୁ ଜଗତେ ।
ମତ୍ସ୍ୟଦେଶେ ହୁଅ ମଘଦେଶ ଅଧିକାରୀ
ସୁଖ ଭୋଗେ ରହି ତହିଁ ଭୁଞ୍ଜ ରାଜ୍ୟଶିରୀ ।
ମର୍ତ୍ତ୍ୟପୁରେ ଉପୁଜିବ ରାଜା ଯୁଧିଷ୍ଠିର
ଦ୍ୱିତୀ ନିରଞ୍ଜନ ହେବ ନର ଅବତାର ।
ଅଜ୍ଞାତବାସ ସେ ଏକବର୍ଷ ପରିଯନ୍ତେ
ତୋର ପୁରେ କଟାଇବେ ରହିଣ ନିଶ୍ଚିନ୍ତେ ।
ବାବୁ ସେ ରାଜା ବସିଛି ଏ ମଞ୍ଚ ବ୍ରହ୍ମାଣ୍ଡେ
ତୁମ୍ଭର ନିମନ୍ତେ ଯାଅ ତୁମ୍ଭେ ତହିଁ ଚାଣ୍ଡେ ।
ଏମନ୍ତ ସେ ବଡ଼ଲୋକ ଅଟେ ମତ୍ସ୍ୟଇନ୍ଦ୍ର
ବଡ଼ ଧାର୍ମିକ ସେ ଶ୍ୱେତ ତାହାକୁ ନ ନିନ୍ଦ ।
ବ୍ୟାସଙ୍କ ବାକ୍ୟେ ଧର୍ମଙ୍କ ମନ ହେଲା ଶାନ୍ତି
ଯିବି ବିରାଟ ରାଜ୍ୟକୁ ଗଲା ମନୁଭ୍ରାନ୍ତି ।
ଯୁଧିଷ୍ଠି ବୋଇଲେ ଏଡ଼େ ଧାର୍ମିକ ସେ ରାଜା
କି ମନ୍ଦ ତାଙ୍କ ଚରଣେ କରିଲେ ମୁଁ ପୂଜା ।
ବ୍ୟାସ ବୋଇଲେ ତୁ ଧର୍ମଦେବ ଅଟୁ ବାବା
ତୋହର ଚରଣେ ନିଶ୍ଚେଁ କରିବ ସେ ସେବା ।
ଯୁଧିଷ୍ଠି ବୋଇଲେ ସଙ୍ଗେ ଅଛି ଯାଜ୍ଞସେନୀ
ଦ୍ୱାରକାକୁ ଯଦୁନାଥ ଯାନ୍ତୁ ଏଥୁ ଘେନି ।
ବ୍ୟାସ ବୋଇଲେ କିପାଇଁ କହିଲୁ ଏମନ୍ତ
ଅଜ୍ଞାତବାସ ଦ୍ରୌପଦୀ ହେତୁ ବୁଦ୍ଧିମନ୍ତ ।
କୃଷ୍ଣ ବୋଇଲେ ବ୍ୟାସଙ୍କୁ ନଯାନ୍ତୁ ଦ୍ରୌପଦୀ
ବ୍ୟାସ ଗୁପତେ କହନ୍ତି ଶୁଣ ଦୟାନିଧି ।
କିସ ମୁଁ କହିବି ତୁମ୍ଭେ ଜଗତ ଈଶ୍ୱର
କୀଟୁଁ ବ୍ରହ୍ମ ପରିଯନ୍ତେ ଉଦରେ ତୋହର ।
ତୋତେ କିଅବା ଅଗମ୍ୟ କି ଅବା ନ ଜାଣୁ
ଯୁଧିଷ୍ଠିଙ୍କ ବାକ୍ୟେ ଭୁଲି କି କଥା ବଖାଣୁ ।
ସଂକୋଚନର ନନ୍ଦନ କୀଚକ ଯେ ବୀର
ବିରାଟ ଶଳା ସେ ଅଟେ ଏ ପୃଥ୍ୱୀକି ଭାର ।
ସେ କୀଚକକୁ ବିନାଶ କରିବା ନିମନ୍ତେ
ଦ୍ରୌପଦୀ ଯୋଗେ ମରିବ ଭୀମସେନ ହସ୍ତେ

ବ୍ୟାସଙ୍କ ବୋଲରେ ତୁନି ହେଲେ ବନମାଳୀ
ବୋଇଲେ ବିରାଟ ରାଜ୍ୟେ ଯାଆନ୍ତୁ ପାଞ୍ଚାଳୀ
ଯୁଧିଷ୍ଠି ବୋଇଲେ କହ ଆହେ ପିତାମହ
କା ପାଶେ ବଞ୍ଚିବେ ତହିଁ ଏ ଦ୍ରୁପଦ ଝିଅ ।
ବ୍ୟାସ ବୋଇଲେ ବିରାଟ ରାଜାର ସେ ରାଣୀ
ସୁଦେଷ୍ଣା ବୋଲିଣ ସଂକୋଚନର ଦୁଲଣୀ ।
ବାବୁ ସୁଜାଣ ବୋଇଲେ ଗୋଟିଏ ନଗର
ବୀରସେନ ବୋଲି ତହିଁ ଏକ ନୃପବର ।
କଳିପାଦ ବଂଶେ କଳିବଧି ଭୋଗ ରାଜା
ବଶିଷ୍ଠଙ୍କ ମନ୍ତ୍ରେ ପୁତ୍ର କଲେକ ବିଡ଼ୋଜା ।
ବିଶ୍ୱାମିତ୍ର ସ୍ୱର୍ଗେଣେ ଯେ ହୋଇଲେ ରାକ୍ଷସ
ଏହାର ନନ୍ଦନ ଏକ ହେଲା ଦଣ୍ଡକେଶ ।
ଦଣ୍ଡକେଶ ନନ୍ଦନ ଯେ ହେଲା ବଇଧୃତ
ଅରୁଣକେଶୀ ବୋଲି ଯେ ତାର ପୁତ୍ର ଜାତ ।
ଏହାର ପୁତ୍ର ହୋଇଲା ରାଜା ସଂକୋଚନ
ବଡ଼ ଦର୍ପିଷ୍ଟ ଅଟଇ ଏ ମହା ରାଜନ ।
ସଂକୋଚନର ଭାରିଯା ନାମ ଯେ ତୁଳସୀ
ସୁଦେଷ୍ଣା ବୋଲି ନନ୍ଦିନୀ ତାର ଚାରୁହଂସୀ ।
ମତ୍ସ୍ୟଦେଶର ନରେଶ ଅଟେ ବଇରାଷ୍ଟ୍ର
ବଡ଼ାଇ ଦର୍ପିଷ୍ଟ ରାଜା ନିଜେ ପରଥାଟ ।
କାଶୀ ଦେଶର ନୃପତି ଅଟେ କାଳନେମି
ବଇରାଷ୍ଟ୍ର ଦେଶକୁ ସେ ସାଜିଲା ବାହିନୀ ।
କଚ୍ଛିଦେଶେ ଯାଇକରି ବେଢ଼ିଲା ସେ ରାଷ୍ଟ୍ର
କାଳନେମି ରାଜାର ଯେ ଅଟେ ବଡ଼ ଥାଟ ।
ବହୁତ ସମର କଲା ବଇରାଷ୍ଟ୍ର ତୁଳେ
ମତ୍ସ୍ୟଦେଶର ସଇନି ଭାଜି ପଳାଇଲେ ।
ବୈରାଷ୍ଟ୍ର ରାଜା ପଳାଏ ସମରକୁ ତେଜି
ତାର ପଛେ କାଳନେମି ଧାଏଁ ଗଳଗାଜି ।
ଏକାକୀ ସେ ବଇରାଷ୍ଟ୍ର ବହୁ ରଣ କଲା
କଚ୍ଛିରାଜା କାଳନେମି ସାହାଯ୍ୟ କରିଲା ।
ପଦ୍ମେକ ଯୋଦ୍ଧା ଘେନିଣ ରାଜା କାଳନେମି
ବୈରାଷ୍ଟ୍ରକୁ ଘେନିଲା ସେ ଶରକୁ ସନ୍ଧାନି ।
ଶରାଘାତରେ ଆଘାତ ହୋଇ ମତ୍ସ୍ୟେଶ୍ୱର
ଏକାଥରେ ପ୍ରହାରିଲା ଅଶୀଲକ୍ଷ ଶର ।
ସମରରେ ପଡ଼ିଲାକ ବୈରାଷ୍ଟ୍ର ନୃପତି
ତା ରାଜ୍ୟକୁ କାଳନେମି ଚଳିଲା ଝଟତି ।
ପତି ବଧ ବାର୍ତ୍ତା ପାଇ ତାର ମହାଦେଈ
ଉଜାଣି କାଞ୍ଚି ନଗରେ ପଶିଲା ସେ ଯାଇ ।
ସଂକୋଚନ ନରପତି ଆସ୍ଥାନେ ବିଜୟେ
ବୈରାଷ୍ଟ୍ର ରାଣୀ ଶରଣ ରଖ ବୋଲି କହେ ।
ସଂକୋଚନ ଅନାଥିନୀ ଦେଖି ଦୟାକଲା
ଆପଣାର ମହାଦେଈ ପାଶେ ରଖାଇଲା ।
ପାଞ୍ଚମାସ ଗର୍ଭବାସ ବୈରାଷ୍ଟ୍ର ରାଣୀର
ଯତ୍ନେ ସଂକୋଚନ ଚର୍ଚ୍ଚା ବୁଝିଲା ତାହାର ।
ବୃଷମାସ କୃଷ୍ଣପକ୍ଷ ଅର୍କବାର ଚୌଠି -
ହସ୍ତାନକ୍ଷତ୍ର ଯେ ରାତ୍ର ପାଞ୍ଚଦଣ୍ଡ ଘଟି ।
ତୈତିଳ ନାମେ କରଣ ବ୍ୟତୀପାତ ଯୋଗ
ଚତୁର୍ଥଘରେ କରଇ ବୃହସ୍ପତି ଭୋଗ ।
ଅମୃତ ଲଗ୍ନରେ ତହିଁ ମାହେନ୍ଦ୍ରର ବେଳା
ରଜନୀ ପାଞ୍ଚଘଡ଼ିରେ ଜନ୍ମ ହେଲା ବଳା ।
ବାର୍ତ୍ତା ପାଇଣ ଉଜାଣ ରାଜ୍ୟ ନରଦେବ
କାରାଗାରୁ ବନ୍ଦୀମୁକ୍ତ କରାଇଲେ ସର୍ବ ।
କୁମରର ହସ୍ତା କନ୍ୟାରାଶି ଦେବ ଜାତି
ପଣ୍ଡିତ ଚନ୍ଦ୍ରମା ପାଦେ ଥିଲେ ବୃହସ୍ପତି ।
ବେନି କରସ୍ଥଳେ ଅଛି ଶଙ୍ଖ ଚକ୍ର ଚିହ୍ନ
ଦେଖିଣ ହରଷ ହେଲା ରାଜା ସଂକୋଚନ ।
ତାହାଙ୍କ ପିତାର ନାମ ଅଟେ ବଇରାଷ୍ଟ୍ର
ଏଣୁ ତାର ନାମ ଗୋଟି ଦେଲେକ ବିରାଟ ।
ସଙ୍କୋଚନ ନରପତି ମହନ୍ତ ଧାର୍ମିକ
ଯତ୍ନେ ପାଳିଲେ ସେ ବାଳ କୁମାର ଗୋଟିକ
ମନସିଜ ବୋଲିକରି ଏକଇ ମହର୍ଷି
ବିରାଟ ବ୍ରହ୍ମବେତ୍ତା ସେ ଅଗସ୍ତିଙ୍କ ଶିଷି ।
ତାହାକୁ ଭକ୍ତି କରିଲେ ସଙ୍କୋଚନ ରାଣୀ
ଅରଣ୍ୟ ଶତେକ ଫଳ ତାଙ୍କୁ ଦେଲେ ଆଣି ।
ଏହି ପଦାର୍ଥ ଭକ୍ଷଣ କର ତୁ ଗୋ ମାଏ
ପ୍ରାପ୍ତ ହେବ ନିଶ୍ଚେଁ ତୋତେ ଶତେକ ତନୟେ
ବିଦ୍ୟାବନ୍ତର କୁମାରୀ ଶୌଚବନ୍ତ ହେଲେ
ଋଷିଙ୍କର ସନ୍ନିଧିରେ ତାହା ଗ୍ରାସ କଲେ ।
ସେ ଚଞ୍ଚଳ ମନସିଜ ଋଷିଙ୍କ ଉପାୟେ
ସଙ୍କୋଚନ ରାଣୀଙ୍କର ହେଲା ଶତପୋଏ ।
ସଙ୍କୋଚନ ଭାରିଯାର ନାମ ଶରତ୍ତୃଷା
ଆଗେ କନ୍ୟା ଜନ୍ମେ ଯେ ତା ନାମଟି ସୁଦେଷ୍ଣା
ପୁତ୍ର ଜନ୍ମ ହେବା ଶୁଣି ମନସିଜ ଋଷି
ଉଜାଣି କାଞ୍ଚି ନଗ୍ରରେ ବିଜେକଲେ ଆସି ।
ଦେଖି ସଙ୍କୋଚନ ଭକ୍ତି କରିଲା ବହୁତ
ତୋ ପ୍ରସନ୍ନେ ଜାତହେଲେ ମୋର ଶତପୁତ୍ର ।
ଅପୁତ୍ରକ ଲକ୍ଷଣରୁ ପାରିକଲୁ ମୋତେ
ଯା କହି ପୁତ୍ରକୁ ଆଣି ଦେଖାଏ ଅଗ୍ରତେ ।
ଦେଖିକରି ମହାମୁନି ସାନନ୍ଦ ହୋଇଲେ
କୀଚକ ବୋଲି ପ୍ରଥମ ପୁତ୍ର ନାମ ଦେଲେ ।

ସ୍ନେହେ ମହାମୁନି ତାକୁ କରିଛନ୍ତି କୋଳ
ତୋଷେ ବୋଇଲେ ତୋ ଶତସିଂହ ହେଉବଳ
ବର ଦେଇ ସେ ମହର୍ଷି କୋଳେ ଛନ୍ତି ଘେନି
ପାଦ ହଲାଇ କାନ୍ଦିଲା ସେ କୁମର ମଣି ।
ଋଷିଙ୍କ ବକ୍ଷେ ବାଜିଲା ତାର ପାଦଗୋଟି
ମୂର୍ଚ୍ଛିତ ହୋଇ ପଡ଼ିଲେ ତଳେ ତପୋନିଷ୍ଠି ।
ଝର ଝର ରକ୍ତ ପଡ଼େ ଋଷି ମୁଖବାଟେ
ବେନିଘଡ଼ି ଅଚେତନ ହେଲେ ତପୋନିଷ୍ଠେ ।
ଚେତନା ପାଇ ବୋଇଲେ ତହୁଁ ମୁନିବର
ପ୍ରଥମେ ମୋ ହୃଦେ ପାଦ କଲୁ ତୁ ପ୍ରହାର ।
ବରଦେଲି ତୋତେ ଶତସିଂହର ପ୍ରାକର୍ମ
ଏକା ସିଂହବଳେ ତୋତେ ବଧକରୁ ଭୀମ ।
ବ୍ୟାସ ବୋଇଲେକ ବାବୁ ଶୁଣ ଯୁଧିଷ୍ଠିର
ଏହି ଶାପଦେଲେ ତାକୁ ସେ ମୁନି ପ୍ରବର ।
ଏବେ କହୁଅଛି ଶୁଣ ସୁଦେଷ୍ଣା ଚରିତ
ବଶିଷ୍ଠ ବିବାଦେ ତପ କଲେ ବିଶ୍ୱାମିତ୍ର ।
ବାସବ ଦେବଙ୍କ ମନେ ହେଲା ବଡ଼ ଶଙ୍କା
ମଦନ ମଳୟ ସଙ୍ଗେ ପେଷିଲେ ମେନକା ।
ସେ ମେନକା ଅପସରୀ ବିଶ୍ୱାମିତ୍ରେ ଭେଟି
ଦେଖି ତା ରୂପ ମୋହିତ ହେଲେ ତପୋନିଷ୍ଠି
ତପ ତ୍ୟାଗ କରି ତାକୁ ଧଇଲେ ଚଞ୍ଚଳେ
ମନୋହର ବନେ ଋଷି ରତିକଲେ ଭୋଳେ ।
ସେ ଋଷି ସଙ୍ଗମୁ ଏକ କନ୍ୟା ହେଲା ଜାତ
ଶକୁନ୍ତଳା ନାମ ତାର ଦେଲେକ ବିଧାତ ।
ସେ କନ୍ୟା ଘେନି ମେନକା ସ୍ୱର୍ଗପୁରେ ଗଲେ
ବାସବ ଦେଖିଣ ତାକୁ ଏମନ୍ତ ବୋଇଲେ ।
ଯାଅ ଗୋ ସୁନ୍ଦରୀ ତୁହି ବେଗେ ମଞ୍ଚପୁର
ସଙ୍କୋଚନ ରାଜାଘରେ ହୁଅ ଅବତାର ।
ସୁଦେଷ୍ଣା ନାମେ ବିଖ୍ୟାତ ହୁଅ ତୁ ମହୀରେ
ବିରାଟ ଦେଶର ରାଜା ବିଭାହେଉ ତୋରେ ।
ମଘଦେଶ ମତ୍ସ୍ୟଦେଶେ ହୁଅ ଠାକୁରାଣୀ
ସମୟେ ଭେଟିବେ ତୋତେ ଦ୍ରୁପଦ ଦୁଲଣୀ ।
ସେ ଯାଜ୍ଞସେନୀ ରହିବେ ଅଜ୍ଞାତେ ତୋ ବାସେ
ପ୍ରିୟଭାବେ ଖଟିବୁ ତୁ ତାହାଙ୍କର ପାଶେ ।
ଜାତିସ୍ମର ହୋଇଣ ତୁ ଜନ୍ମ ହୋଇଥିବୁ
ପାଣ୍ଡବେ ରହିବା କଥା ତୁ ସର୍ବ ଜାଣିବୁ ।
ଜାଣିଣ ସକଳ କଥା ଗୁପ୍ତ କରିଥିବୁ
ଫିଟାଇ କହିଲେ ତୁହି ମରଣ ଲଭିବୁ ।
ଏମନ୍ତ କହନ୍ତେ ତାକୁ ଦେବ ମଘବାନ
ତେଣୁ ସଙ୍କୋଚନ ଘରେ ହେଲା ଉତପନ୍ନ ।

ବ୍ୟାସ ବୋଇଲେ ତୁ ବାବୁ ଆନ ବିଚାର
ବିରାଟ ଭବନେ ସୁଖେ ଦିନ ଯିବ ତୋର ।
ବ୍ୟାସ ଫିଟାଇ କହନ୍ତେ ଏମନ୍ତ ସନ୍ଦେଶ
ତାଙ୍କ ପାଦେ ପ୍ରଣିପାତ ହେଲେ ଧର୍ମଶିଷ୍ୟ ।
ବିରାଟ ରାଜା କେମନ୍ତେ ସଙ୍କୋଚନ ଘରେ
ସୁଦେଷ୍ଣାଙ୍କୁ ବିଭାହେଲେ କେମନ୍ତ ପ୍ରକାରେ ।
ବ୍ୟାସ ବୋଇଲେରେ ବାବୁ ଶୁଣ ଯୁଧିଷ୍ଠିର
ବିରାଟ ରୂପ ଅଟଇ ଅତ୍ୟନ୍ତ ସୁନ୍ଦର ।
ପୁତ୍ରକୁ ପାଶେ ବସାଇ ଭାଳେ ସଙ୍କୋଚନ
ଏ ବିରାଟକୁ ସୁଦେଷ୍ଣା କରିବା ପ୍ରଦାନ ।
ମତ୍ସ୍ୟମଘେ ବିରାଟକୁ କରାଇବା ରାଜା
ଲକ୍ଷେ ରାଜାଙ୍କର ସଙ୍ଗେ ପାଇବ ସେ ପୂଜା ।
ଶୁଣିଣ ଜ୍ୟେଷ୍ଠ କୀଚକ କଲା ସନମତ
ବଡ଼ ସମାରୋହେ ତାକୁ କନ୍ୟା କଲା ଦତ୍ତ ।
ବିରାଟକୁ ତାର କନ୍ୟା ପ୍ରଦାନ କରିଲା
ବହୁତ ଯେ ଘୋଡ଼ା ହାତୀ ଯଉତୁକ ଦେଲା ।
ପଞ୍ଚସସ୍ର ହସ୍ତୀ ପୁଣି ପାଞ୍ଚସସ୍ର ହୟ
ବିରାଟକୁ ଏ ଯୌତୁକ ଦେଇ ପୁଣି ରାୟ ।
ସଙ୍ଗରେ ସୈନ୍ୟ ବତ୍ରିଶ ଗୋଷ୍ଠ ଦେଲେ ଗାଈ
ଆବର ବେନି ଭଣ୍ଡାର ଦେଲେ ତୁଷ୍ଟ ହୋଇ ।
ଏହାପରେ ରାଜା ବହୁ ଭୂମିଦାନ କଲା
ବିରାଟକୁ ଏହିରୂପେ ସଙ୍କୋଚନ ଦେଲା ।
କୀଚକ ଯେ ଅସ୍ତ୍ରଧାରୀ ହେଲା ସେତେବେଳେ
ବହୁମଣ୍ଡଳ ସାଧିଲା ନିଜ ବାହୁବଳେ ।
ବିରାଟ ନବ ସହସ୍ର କୀଚକ ପନ୍ଦର
ସମଦଣ୍ଡ ଘେନି ଗଲା ସେ ମତ୍ସ୍ୟ ନଗର ।
ବଇରାଷ୍ଟ୍ରକୁ ଜିଣିଲା କାଳନେମି ରାୟେ
ତହିଁ ବସାଇଲା ରାଜା ପାରିଦଣ୍ଡଟିଏ ।
ଅର୍ବୁଦେକ ରଥ ଘେନି ଅର୍ବୁଦେକ ହସ୍ତୀ
ତୁରଙ୍ଗମ ପାଞ୍ଚପଦ୍ମ ସାଗରେ ପଦାତି ।
ଶରଣ ସେନ ବୋଲିଣ ତହିଁ ପାରିଦଣ୍ଡ
ମାଡ଼ିବସି ରହିଅଛି ମତ୍ସ୍ୟଦେଶ ଖଣ୍ଡ ।
କୀଚକ ଦଣ୍ଡ ବାହିଲା ତହିଁ ଯେତେବେଳେ
ଶରଣସେନ ଉଗାଳେ ଗିରିନଦୀ କୂଳେ ।
ଦୁଇବଳଙ୍କ ସମର ହେଲା ମହାଗୋଳ
ସେ ସମରେ ନ ଘୁଞ୍ଚିଲେ ଉଭୟଙ୍କ ବଳ ।
କୀଚକ ବୋଲି ଯେ ଅଟେ ମହାବଳବନ୍ତ
ଶତସିଂହର ପ୍ରାକର୍ମ ସମରେ ଶକତ ।
କୁରୁମାନ ବୋଲିକରି ଏକ ପରବତ
ଉସର୍ଗ ପ୍ରସ୍ଥ ସେ ନବକୋଟି ପରିଯନ୍ତ ।

ସେ ପର୍ବତକୁ ଉପାଡ଼ି ନିଜବଳେ ଧରି
ବୁଲାଇଲା ଯେସନେକ ଛତ୍ରାକାର କରି ।
ସେ ଗିରିକି ପାରିଦଣ୍ଡ ସୈନ୍ୟରେ ଫିଙ୍ଗିଲେ
ଗିରି ଆଘାତେ ତାହାରି ସସ୍ରସୈନ୍ୟ ମଲେ ।
ସାତଦିବସ ସଂଗ୍ରାମ ହେଲା ଅବିଚ୍ଛିନ୍ନ
ଅନୁକ୍ଷଣେ ପଡ଼ିଲେକ ଯହୁଁ ତାର ସୈନ୍ୟ ।
ଶରଣସେନର ସୈନ୍ୟପଡୁ ବେଳୁବେଳ
ତହୁଁ ପଳାଇଣ ଗଲା ଘେନି ଭଗ୍ନବଳ ।
ଉଜାଣି ଦେଶ ନୃପତି ସମରେ ପ୍ରଚଣ୍ଡା
କଳିବିରାଜା ସୈନ୍ୟ ସବୁ କଲା ମସିଗୁଣ୍ଡା ।
ପାଞ୍ଚଯୋଜନ ପର୍ଯ୍ୟନ୍ତେ ପାଏଡ଼ା ପଡ଼ିଲା
ଶରଣ ସେନକୁ ଯାଇ କୀଚକ ଧଇଲା ।
କେଶ ଧରିଣ କୀଚକ ଚାପୋଡ଼େ ପ୍ରହାରି
ସେ ଘାତେ ଶରଣ ଗଲା ରକତ ଉଦ୍‌ଗାରି ।
ଶରଣସେନର ଆଉ କଳିବିରାଜା ସୈନ୍ୟ
ଏକାକେ କୀଚକ ତାହା କରିଲା ମନ୍ଥନ ।
ରଥ ଗଜ ଅଶ୍ୱ ତିନି ସାଗର ସଇନି
କୀଚକ ଧ୍ୱଂସିଲା କରେ ଗଦାବର ଘେନି ।
ପାଷାଣ ଗିରିରେ ତହିଁ ବିଜେ ମତ୍ସ୍ୟ ହରି
ବିରାଟେ ଘେନି କୀଚକ ପ୍ରଣିପତ୍ୟ କରି ।
ଜୟ ତୁ ଜୟ ତୁ ଦେବ ମତ୍ସ୍ୟ ଅବତାର
ବେଦକୁ ଆଣିଲୁ ତୁହି ବଧି ଶଙ୍ଖାସୁର ।
ଅଣାକାର ପୁରୁଷ ତୋ ରୂପରେଖ ନାହିଁ
ସଚରାଚର ବ୍ରହ୍ମାଣ୍ଡ ନାଥ ଅଟୁ ତୁହି ।
ତୋହର ମହିମା ନାଥ ଦେବେ ଅଗୋଚର
ବିରାଟ ରାଜ୍ୟକୁ ପ୍ରଭୁ ଆଶୀର୍ବାଦ କର ।
ବିରାଟ କୀଚକ ସ୍ତବେ ପ୍ରଭୁ ହେଲେ ଭୋଳ
ହସ୍ତରୁ ଖସି ପଡ଼ିଲା ଏକ ଫୁଲମାଳ ।
ସେ ମାଳା ବିରାଟ କଣ୍ଠେ କୀଚକ ଲମ୍ବାଇ
ମତ୍ସ୍ୟଦେଶ ସିଂହାସନେ ବସାଇଲେ ନେଇ
ସେ ମତ୍ସ୍ୟରୂପୀ ପ୍ରଭୁଙ୍କ ଚରଣେ ଶରଣ
ଶାରଳାଦାସ ମାଗଇ ଅନ୍ତିମେ କାରଣ ।

■ ■ ■

## ବିରାଟ ମଘଦେଶ ପ୍ରାପ୍ତ ଏବଂ ପଞ୍ଚପାଣ୍ଡବଙ୍କର ଛଦ୍ମରୂପ ଧାରଣ, ଶମୀ ବୃକ୍ଷର ଉତ୍ପତ୍ତି ଓ ତାହାର କ୍ରୋଡ଼େ ଅସ୍ତ୍ରରକ୍ଷା

ପୁନରପି ପୁଚ୍ଛାକଲେ ବୈବସ୍ୱତ ମନୁ
ଏହାପରେ କିସ ହେଲା କହ କୁମ୍ଭସୂନୁ ।
ଅଗସ୍ତି କହିଲେ ଶୁଣ ଆହେ ଦଣ୍ଡଧାରୀ
କୀଚକ ଗଲା ବିରାଟେ ରାଜ୍ୟେ ରାଜାକରି ।
ଆପଣା ନଗ୍ରରେ ଯାଇ ପ୍ରବେଶ ହୋଇଲା
ସଙ୍କୋଚନ ପିତା ଆଗେ ସକଳ କହିଲା ।
ମତ୍ସ୍ୟଦେଶେ ବିରାଟକୁ କରିଲି ରାଜନ
ଶରଣସେନ ରାଜାର ଘେନିଲି ଜୀବନ ।
ସଙ୍କୋଚନ ବୋଲେ ବାବୁ ବିରାଟର ପାଶେ
ଭାଇଗଣ ଘେନି ତହିଁ ରହ ତୁ ହରଷେ ।
ପିତା ବାକ୍ୟେ ଭ୍ରାତା ସହ କୀଚକ ଚଳିଲା
ବିରାଟରେ ସେନାପତି ହୋଇଣ ରହିଲା ।
ତେଣେ କଳିବିରାଜା ଭଗ୍ନଦଣ୍ଡକୁ ଘେନିଣ
ମଘଦେଶେ ମିଳି କହେ କାଳନେମି ଶୁଣ ।
ସଂକୋଚନର ନନ୍ଦନ କୀଚକ ଯେ ବୀର
ଶରଣ ସେନକୁ ବଧି ରାଜ୍ୟ ନେଲା ତାର ।
ମୁହିଁ ତାହା ସଙ୍ଗେ କଲି ବହୁତର ଯୁଦ୍ଧ
ମୋହର ଅନେକ ସୈନ୍ୟ ସେହୁ କଲା ବଧ ।
ଦଣ୍ଡଭଗ୍ନ ହୋଇ ମୁହିଁ ଅଇଲି ପଳାଇ
ନପୁଣ ମଘଦେଶକୁ ନ ଆସଇ ବାହି ।
କାଳନେମି ରାଜା ଅଟେ ମହା ଧନୁର୍ଦ୍ଧର
ଅସଂଖ୍ୟ ସଇନ ପାଶେ ଅଛନ୍ତି ତାହାର ।
ଅଶୀବୃନ୍ଦ ରଥୀ ତାର ଯେ ମୁକୁଟ ବନ୍ଧା
ବିଂଶଶତ କୋଟି ସୈନ୍ୟ ସର୍ବେ ରଣେ ସିଦ୍ଧା
ଏକାକେ ବଇରାଷ୍ଟ୍ରକୁ ଭୟକରି ସେହି
ତାର ମତ୍ସ୍ୟ ମଘଦେଶ ବଳେ ଥିଲା ନେଇ ।
ମତ୍ସ୍ୟଦେଶେ ରାଜା କରି ଶରଣ ସେନକୁ
ଆପେ ଭୋଗ କରୁଥିଲା ସେ ମଘଦେଶକୁ ।
କଳିବିରାଜାଠାରୁ ଶୁଣି ଏହି ସମାଚାର
କାଳନେମି ଦଣ୍ଡ ସାଜି ବାହିଲା ସତ୍ୱର ।
ଏକାଳେ ବିରାଟ ପାଶେ କହିଲେ ମୁନେହି
ମଘଦେଶ ଗୋଟି ଦେବ ତୁମ୍ଭର ଅଟଇ ।
ତୁମ୍ଭ ପିତାଙ୍କୁ ବିନାଶ କରି କାଳନେମି
ମଘଦେଶେ ରାଜା ସେହୁ ହୋଇଅଛି ସ୍ୱାମୀ ।
ଶୁଣିଣ କୀଚକ ଅତି ରାଗାନ୍ୱିତ ହେଲା
କାଳନେମିର ତହିଁକି ଦଣ୍ଡ ସେ ସାଜିଲା ।
ବୀରଭଦ୍ରା ନଦୀକୂଳେ ହେଲା ବେନିଥାଟ
ଉଭୟ ବଳଙ୍କ ଯହୁଁ ହୋଇଗଲା ଭେଟ ।
ମୁଖାମୁଖି ହୋଇ ଅସ୍ତ୍ର ବିନ୍ଧାବିନ୍ଧି ହେଲେ
ଅସ୍ତ୍ରାଘାତେ ଉଭୟଙ୍କ ସୈନ୍ୟ ବହୁ ମଲେ ।
ତାହା ଦେଖିଣ କୀଚକ ରଡ଼ିଏ ଛାଡ଼ିଲା
କାଳନେମିର ଥାଟରେ ଧସାଇ ପଶିଲା ।

ଶତ ଶତ ଭାର ଗଦା ବେନିକରେ ଧରି
ରାହୁ ପ୍ରାୟ ଗ୍ରାସିଲା ସେ ଶରୀର ବିସ୍ତାରି ।
ଯେଉଁପରି କୃତାନ୍ତକ ଘେନି କାଳଦଣ୍ଡ
ଗୋଷ୍ଠ ମଧ୍ୟରେ ଭ୍ରମଇ ଯେହ୍ନେ ମତ୍ତଷଣ୍ଢ ।
ତେସନ ପ୍ରମତ୍ତ ସେହି ଅଟେ ବଳବନ୍ତ
କୀଚକ ପ୍ରସାଦେ ସର୍ବ ସଇନ ଶକତ ।
ଏକ ଏକ ପ୍ରହାରକେ ଦଶବିଂଶ ମାରେ
ଜୀବନ ହରାଇ ସୈନ୍ୟ ଲୋଟନ୍ତି ମହୀରେ ।
ଗଜ ଅଶ୍ୱ ରଥ ରଥୀ କେ କରେ ଗଣନ
ଏକା କୀଚକ କରେ ତା ସୈନ୍ୟକୁ ମଣ୍ଡନ ।
ଯେଉଁପରି ମତ୍ତକରୀ ଦଳେ ରମ୍ଭାବନ
ସୈନ୍ୟମାନଙ୍କୁ ଦଳିଲା କୀଚକ ତେସନ ।
ମେଦ ମେଦା ପୃଥିବୀ ଯେ ହୋଇଲା କର୍ଦ୍ଦମ
ଭୟରେ କାଳନେମିର ଦଣ୍ଡ ହେଲା ଭଗ୍ନ ।
ଏସନକ ପରାକ୍ରମୀ ସଂକୋଚନ ବଳ
ମତ୍ତଗଜ ସମତାର ତେଜ ଅନର୍ଗଳ ।
ଗଦାଧରି ପିଟେ କାଳନେମି ନୃପବର
କୀଚକ ଅଙ୍ଗେ ସେ ଗଦା ପଡ଼ି ହେଲା ଚୂର ।
ଗଦା ଭଗ୍ନ ହେବା ଦେଖି କରି ମହାଭୟ
ପ୍ରାଣ ବିକଳେ ପଳାଏ କାଳନେମି ରାୟ ।
ଆରେ ରେ ବୋଲି କୀଚକ ଡାକି ପଛୁ ଧାଇଁ
କାଳନେମି ପରେ ଗଦା ପିଟିଲା ନିଠାଇ ।
କୀଚକ ହାତରୁ ଖାଇ ନିର୍ଘାତ ପ୍ରହାର
ସେକ୍ଷଣି ଜୀବନ ହାରି ପଡ଼ିଲା ଭୂମିର ।
ରାଜା ପଡ଼ନ୍ତେ ତା ସୈନ୍ୟ ବହୁ ଯୁଦ୍ଧକଲେ
କୀଚକ ସବୁ ସୈନ୍ୟଙ୍କୁ ଗୋଡ଼ାଇ ମାଇଲେ ।
ଅବଶିଷ୍ଟ ସୈନ୍ୟଙ୍କୁ ସେ ପ୍ରବୋଧନା ଦେଇ
ମଘଦେଶେ ବିରାଟଙ୍କୁ କଲେ ନରସାଇଁ ।
ପଳାଇଲେ କିରାତର ନନ୍ଦନ ତ୍ରିଗର୍ତ୍ତ
ମାନଗୋବିନ୍ଦର ସେହୁ ହୋଇଲା ଆଶ୍ରିତ ।
ଏହିପରି ଅଟେ ବାବୁ ମତ୍ସ୍ୟଦେଶପୁରୀ
ଏହା ଦେଇଛନ୍ତି ତୋତେ ମତ୍ସ୍ୟରୂପୀ ହରି ।
ବୈରାଷ୍ଟ୍ର ଉପର ବଂଶେ କେଶରୀ ନୃପତି
ମତ୍ସ୍ୟନାଥେ କରିଥିଲେ ବହୁତ ଭକତି ।
ସଦୟେ ବର ଯାଚିଲେ ତାକୁ ମହାଯୋଗୀ
ଭକ୍ତିରେ ବୈରାଷ୍ଟ୍ର ନେଲେ ମତ୍ସ୍ୟଦେଶ ମାଗି
ପଦ୍ମେକ ଗୋଧନ ମତ୍ସ୍ୟରୂପୀଙ୍କର ଥିଲା
ହରିକେଶରୀ ରାଜାଙ୍କୁ ତୋଷେ ତାହା ଦେଲା
ପଦ୍ମେକ ଗୋଧନ ଦେଲେ ମତ୍ସ୍ୟଇନ୍ଦ୍ର ପୂର୍ବେ
ଦୁହାଁଳ ଦ୍ୱିପଦ୍ମ ଗାଈ ହୋଇଲେଣି ଏବେ ।
ବର୍ତ୍ତମାନ ବରଡ଼ ଯେ ବାରଲକ୍ଷ ଗାଈ
ଖର୍ବେକ ଅଣ୍ଡିର ଛନ୍ତି ପାଞ୍ଚଖର୍ବ ମାଈ ।
ପ୍ରଥମେ ଦୁହିଁ ଫିଙ୍ଗନ୍ତି ଭୂମିଭାଗେ ଯାହା
କଟକ ବେଢ଼ି ବହଇ ଧବଳାଙ୍ଗୀ ତାହା ।
ଏସନ ସମ୍ପଦ ବାବୁ ବିରାଟ ନଗରୀ
ଧରାଧାମେ ରାଜା ତାକୁ କେହି ନୁହେଁ ସରି ।
ସବୁଦିନେ ରହିଲେ ତୁ ଯାଇ ମତ୍ସ୍ୟଦେଶେ
ଷଡ଼ମାସର ପାତକ ଯିବ ସେ ଦିବସେ ।
ବ୍ୟାସଙ୍କ ବାକ୍ୟେ ସମ୍ମତ କଲେ ଧର୍ମରାୟେ
କୁହ ବିରାଟେ କହିବି କେମନ୍ତ ଉପାୟେ ।
ବ୍ୟାସ ବାସୁଦେବ ଆଉ ଧୌମ୍ୟ ପୁରୋହିତ
ପାଣ୍ଡବ ପାଞ୍ଚବୀର ଯେ ଦ୍ରୌପଦୀ ସହିତ ।
ଏତିକିଜଣ ରହିଣ ଭାଳେଣି କରନ୍ତି
ଘୋରବନେ ଏ ଭାବନା କେହି ନ ଜାଣନ୍ତି ।
ମଣିଭଦ୍ରା ବୋଲିକରି ଯେଉଁ ନଦୀଗୋଟି
ଉତ୍ତରୁ ବହେ ସେ ନଦୀ ବସୁଧାରୁ ଫୁଟି ।
କରୁଣାକର ବୋଲିଣ ଏକ ବଟତଳେ
ବସି ଭାଳନ୍ତି ସମସ୍ତେ ମଣିଭଦ୍ରାକୂଳେ ।
କୃଷ୍ଣ ବୋଲନ୍ତି ଧର୍ମଙ୍କୁ ହୋଇ ପରଣାମି
ବିରାଟର ଭୃତ୍ୟ ତୁମ୍ଭେ ନ ହୋଇବ ସ୍ୱାମୀ ।
ବିରାଟ ସମାନେ ଯାଇ ବସିବ ସଭାରେ
ତୁମ୍ଭଙ୍କୁ ଦର୍ଶନ ଯାଇ କରିବେ ସୋଦରେ ।
ସ୍ୱାମୀ ବିରାଟ ନ ଜାଣେ ତୁମ୍ଭର ପ୍ରକୃତି
କିଛିଦିନ ରହି ତହିଁ କାଟ ଦିବାରାତି ।
ଯଦ୍ୟପି ମନ୍ଦ ପ୍ରକୃତି ତାହାର ଦେଖିବ
ଭୀମ ହସ୍ତରୁ ବର୍ତ୍ତି କି ରହି ସେ ପାରିବ ।
ଶୁଣ ହେ ଭୀମ ଅର୍ଜ୍ଜୁନ ମାଦ୍ରୀ ବେନିସୁତ
ଆମ୍ଭର ବାକ୍ୟରେ ତୁମ୍ଭେ ଚାରିଗୋଟି ଭ୍ରାତ ।
ସମସ୍ତେ ଥିବ ବିରାଟ ରାଜ୍ୟେ ଗୋପ୍ୟ ହୋଇ
ଅନୁବ୍ରତେ ଦ୍ରୌପଦୀକି ଥିବ ଲୟ ଦେଇ ।
ଯେବେ କେହି ଦ୍ରୌପଦୀକି ଅନୀତି ବୋଲିବ
ଅବଶ୍ୟ ତାହାକୁ ତୁମ୍ଭେ ବିନାଶ କରିବ ।
ଗୁପତେ ନାଶିବ ତାହା ନ ଜାଣିବେ କେହି
ଜଣା ହେଉ ପରେ ତହିଁ ବାଧା କିଛି ନାହିଁ ।
ଅବା ଏ କଥା ପ୍ରକାଶ କରିବ କେ ଯଦି
ସେ ମୋତେ ଲାଗିଲା ଏହି ମୁଁ ତା ପ୍ରତିବାଦୀ
ଯୁଧିଷ୍ଠିରଙ୍କୁ ଭର୍ତ୍ସନା କରିବଟି ଯେହି
ତାହାର ନିଶ୍ଚୟ ପ୍ରାଣ ଘେନିବରେ ଭାଇ ।
ନାରାୟଣଙ୍କ ବଚନ ଶୁଣିଣ ଶ୍ରବଣେ
ପ୍ରତିଜ୍ଞା କରି ସମ୍ମତ କଲେ ଜଣେ ଜଣେ ।

ବୋଇଲେକ ବ୍ୟାସେ କୋପ ନ କରିବୁ ଭୀମ
ଗୁପ୍ତେ ରହି କରୁଥିବ ଯେ ଯାହାର କାମ ।
ଅଜ୍ଞାତ ବରଷେ ତେରଦିନ ପରିଯନ୍ତେ
ଜଣା ନୋହିବ ଛଦ୍ମେ ରହିବ ଗୁପତେ ।
ଏତେ କରି ମଧ ଯେବେ ଜଣା ପଡ଼ିଯିବ
ପୁଣି ବାରବର୍ଷ ତୁମ୍ଭେ ବନରେ ରହିବ ।
ଏହା ଶୁଣି ମୌନବ୍ରତ ହେଲେ ଚାରିଜଣ
ବୋଇଲେ ହେ କୃଷ୍ଣ ରଖ ତୋହର ଶରଣ ।
ତୁହି ଜଗତ ମୋହନ କରୁଣାବତ୍ସଳ
ତୁହି ଆମ୍ଭମାନଙ୍କର ଅଟୁ ରକ୍ଷାପାଳ ।
ଆମ୍ଭ ଭାରା ଦେବ ସହି ନ ପାରେ ଧରଣୀ
କେହ୍ନେ ବିରାଟ ସହିବ ପ୍ରଭୁପଣ ଘେନି ।
ଦ୍ରୁପଦ ନନ୍ଦିନୀ ପ୍ରତି ଚାହିଁ ବଳଦେବ
ବୋଇଲେକ ସୁଦେଷ୍ଣାର ବଚନରେ ଥିବ ।
ମହତଜନଙ୍କୁ ନିଶ୍ଚେ ପଡ଼ଇ ପ୍ରମାଦ
ସହିଲେ ଶୁଭଇ ସଦା ଧନ୍ୟ ଧନ୍ୟ ପଦ ।
ଦ୍ରୌପଦୀ ବୋଇଲେ ତୁମ୍ଭେ ଶୁଣ ଚିନ୍ତାମଣି
ଆମ୍ଭର ମନ ମଧରୁ ନ ଭୁଲିବ ପୁଣି ।
କେତେକାଳ ଅଛି ଗୁପ୍ତ ବନବାସ ବୋଲି
ତୁମ୍ଭର ସଦୟ ଦେବ ବଞ୍ଚିବୁଟି କାଳି ।
ଜଳଘୋଷ ବୋଲିକରି ମନ୍ତର ଗୋଟିଏ
ପାଣ୍ଡବଙ୍କୁ ଶିଖାଇଲେ ପ୍ରସନ୍ନ ହୃଦୟେ ।
ଏହି ମନ୍ତ୍ର ତୁମ୍ଭେ ପାଠ କରୁଥିବ ନିତି
କେହି ଚିହ୍ନି ନ ପାରିବେ ତୁମ୍ଭ ବର୍ଣ୍ଣ ମୂର୍ତ୍ତି ।
ପ୍ରତ୍ୟକ୍ଷେ ପରୀକ୍ଷା କଲେ ତହିଁ ଜନାର୍ଦ୍ଦନ
ଯୁଧିଷ୍ଠିର ଦିଶିଲେକ ପଣ୍ଡୁର ବରନ ।
ଭୀମସେନ ରୂପ ଗୋଟି ଗୌରବର୍ଣ୍ଣ ଥିଲା
କିଂଶୁକ ପୁଷ୍ପପରାୟେ ତା ଅଙ୍ଗ ଦିଶିଲା ।
ନୀଳୋତ୍ପଳ କାନ୍ତି ଥିଲା ଅର୍ଜ୍ଜୁନ ଶରୀର
ଚମ୍ପକପୁଷ୍ପ ପରାୟେ ଦେହ ହେଲା ତାର ।
ନକୁଳ ଶରୀର ଶୁଦ୍ଧ ସ୍ଫଟିକ ବରନ
ତା ଶରୀର ଦେଖାଗଲା କାଞ୍ଚନ-ସମାନ ।
ସହଦେବର ଶରୀର ସୁରଭିରୁ ବଳି
ବିଶୁଦ୍ଧ ସ୍ୱର୍ଣ୍ଣପରି ତା ଲୋମ ଦିଶେ ଝଳି ।
କାଳିଆ ବରନ ଥିଲା ଦ୍ରୌପଦୀର କାୟ
ତାର ଅଙ୍ଗ ବିକାଶିଲା ଗୌରବର୍ଣ୍ଣ ପ୍ରାୟ ।
ବୁଝ ହେ ରାଜା କୃଷ୍ଣଙ୍କ ମହିମା ଅପାର
ଏକମନ୍ତ୍ରେ ସବୁଙ୍କର ହେଲା ରୂପାନ୍ତର ।
ଅଦୃଶୀକରଣ ବିଦ୍ୟା ମନ୍ତର ମୋହିନୀ
କୃଷ୍ଣା ଆଦିଙ୍କୁ କହିଲେ ପ୍ରଭୁ ଚକ୍ରପାଣି ।

ଏରୂପେ ମନ୍ତ୍ର ପରୀକ୍ଷା ନେତ୍ରେ ଦେଖିକରି
ବ୍ୟାସ ବୋଇଲେ ବିପତ୍ତି ଫିଟିଲା ତୁମ୍ଭରି ।
ପୁନରପି ପୁଚ୍ଛା କଲେ ଧର୍ମଙ୍କ ନନ୍ଦନ
କେଉଁ ସ୍ଥାନରେ ଥୋଇବ ଧନୁ ଅସ୍ତ୍ରମାନ ।
ବହୁତ ଧନ ରତନ ଏଥେ ଅଛି ଲାଗି
କିପରି ଏହାକୁ ଆମ୍ଭେ ଯିବା ପରିତ୍ୟାଗୀ ।
ଧରାତଳେ ଥୋଇଲେ ତ ପୃଥ୍ୱୀ ନ ସହିବ
ପୋତି ରଖିଲେ ବାସୁକି ହରଣ କରିବ ।
ପର୍ବତେ ଥୋଇଲେ ହରିନେବେ ବନଚରେ
ଜଳଚରେ ହରିନେବେ ଥୋଇଲେ ଜଳରେ ।
ଗିରିଙ୍କ ରାଜା ଅଟଇ ଯେ ଅଚଳ ମେରୁ
ସେ ସହି ପାରିଲେ ପାରେ ଏ ଅସ୍ତ୍ରଙ୍କ ଗୁରୁ ।
ମେରୁରେ ଲୁଚାଇଲେ ତ ଗନ୍ଧର୍ବେ ହରିବେ
ହେ କୃଷ୍ଣ କାହିଁ ରଖିବୁ କହ ବୁଦ୍ଧି ଏବେ ।
ଧନୁଅସ୍ତ୍ର ରହିଥିବ ଯଦି ଆମ୍ଭ କରେ
ଗୁପ୍ତେ ରହି ନ ପାରିବୁ ଯାଇ କେଉଁଠାରେ
ଏହି ଦୁରାପଦ କଥା କହିବି କାହାକୁ
କହ ଉପାୟ ପୁଚ୍ଛଇ ତୁମ୍ଭ ଦ୍ୱି ଜଣଙ୍କୁ ।
ଯୁଧିଷ୍ଠିରଙ୍କ ବଚନ ଶୁଣିଣ କିରୀଟି
ହସ୍ତରେ ଘେନିଲେ ତହୁଁ ଖଡ଼ି ଏକଗୋଟି ।
ଶ୍ରୀହରି ବୋଲି ଦୁଇଟି ଗାର କାଟିଦେଲା
ସେ ଗାରରୁ ଦୁଇ ବୃକ୍ଷ ଉତପନ୍ନ ହେଲା ।
କଳା ଧଳା ସେ ଦୁଇଟି ବୃକ୍ଷଙ୍କର ଜ୍ୟୋତି ।
ଚାରିଦିଗକୁ ସେ ଚାରି ଶାଖା ମେଲିଛନ୍ତି ।
ଶମୀବୃକ୍ଷ ବୋଲିଣ ଯେ ସେହି ତରୁ ନାମ
ମଧରେ ଗୋଟିଏ କ୍ରୋଟ ଅତି ଅନୁପମ ।
ନବତାଳ ଗଭୀର ସେ ଉଚ୍ଚ ବେନିକାଠି
କୋଶେକ ବିସ୍ତାର ମୂଳ ଆକାଶକୁ ଘୋଟି ।
ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣ ଦିଗକୁ
ଯେ ଚାରିଡ଼ାଳ ମେଲିଛି କି ବର୍ଣ୍ଣି ତାହାକୁ ।
ଗୋଟିଏ ଗୋଟିଏ ଡାଳ ଯୋଜନେ ବିସ୍ତାର
ମୂଳୁଁ ନବତାଳ ପରେ କ୍ରୋଟ ଅଛି ତାର ।
ଏହା ଦେଖିଣ ଆଶ୍ଚର୍ଯ୍ୟ ହେଲେ ଯୁଧିଷ୍ଠିର
ବୋଇଲେ ତୋ ବୁଦ୍ଧି ଭାଇ ଅତି ଚମତ୍କାର ।
କେମନ୍ତ ଉପାୟେ ତୁହି କଲୁ ଏହି ଗଛ
ଶୁଣିବାକୁ ବଡ଼ଇଚ୍ଛା କହରେ ବିବସ୍ତ ।
ଅର୍ଜ୍ଜୁନ ବୋଇଲେ ଶୁଣ ଧର୍ମ ନରନାଥ
ତୁମ୍ଭ ଆଗରେ କହୁଛି ବୃକ୍ଷର ଚରିତ ।
ତୁଳମାସେ କୃଷ୍ଣପକ୍ଷ ଅମାବାସ୍ୟା ତିଥି
ସ୍ୱାତୀ ନାମେ ନକ୍ଷତ୍ର ଯେ ବାର ବୃହସ୍ପତି ।

ବାଳବ ନାମେ କରଣ ନାଗ ନାମେ ଯୋଗ
ଈଶ୍ୱର ବିଜୟ କଲେ ହଟକେଶ ସ୍ୱର୍ଗ ।
ସ୍ୱାମୀ ହିରଣ୍ୟାକ୍ଷୀ ବୋଲି ଏକଇ ଅସୁରୀ
ବୈଲୋଚନ ଭଗିନୀ ସେ ଅଟଇ ଗୋଦରୀ ।
ସୁବାହୁ ଦୈତ୍ୟର ସେହୁ ଅଟଇ ଭାରିଯା
କେଶବରୂପେ ବଧିଲେ ତାକୁ ଦେବରାଜା ।
ହିରଣ୍ୟାକ୍ଷୀ ଗୁପ୍ତେ ଥିଲା ପାତାଳ ପୁରରେ
ଶଚୀବଟ ତଳେ ଥିଲା ମାନିନୀ ରୂପରେ ।
ବୃଷଭ ବାହନେ ବିଜେ କଲେ ଦେବକାଶୀ
ସେ ଶଚୀବଟ ତଳରେ ମିଳିଲେକ ଆସି ।
ପାର୍ବତୀ ସଦୃଶ ଦିଶେ ତାର ରୂପକାନ୍ତି
ଦେଖିଣ କୋଳେ ଧଇଲେ ତାକୁ ପଶୁପତି ।
ସେ ହରିଣ୍ୟାକ୍ଷୀ କାମିନୀ ମନ୍ଦେ ମନ୍ଦେ ହସି
ଈଶ୍ୱରଙ୍କ ମୁଖଚାହିଁ ବଚନ ପ୍ରକାଶି ।
ଈଶ୍ୱରଙ୍କ ଚରଣରେ ପ୍ରଣମି ମାନିନୀ
ଛାଡ଼ ଛାଡ଼ ବୋଲିକରି କରଇ ଦଇନୀ ।
ଶୃଙ୍ଗାର ପ୍ରିୟ ଅଟନ୍ତି ସେ ପରମ ଯୋଗୀ
ଇଚ୍ଛା ବଳାଇଲେ ସେହି ସ୍ତିରୀଅଙ୍ଗ ଭୋଗୀ ।
ସନ୍ନିଧିରେ କେହି ନାହିଁ ଦେଖିଲେ ଏକାନ୍ତେ
ଆକର୍ଷି ଧଇଲେ ତାକୁ ବିରହ ଆରତେ ।
ରାକ୍ଷସୀ ତୁଲେ ବିଳାସ କଲେ ବିଶ୍ୱବାସୀ
ପୁରୁଷ ବଶ ବିଦ୍ୟା ସେ ଜାଣଇ ରାକ୍ଷସୀ ।
ଅନେକ ରଙ୍ଗ କୌତୁକ ରତିରସ ଭୋଳେ
କୈଳାସେ ନ ଯାଇ ଶିବ ରହିଲେ ବିଭୋଳେ
ବହୁକାଳ ଚାହିଁ ଚାହିଁ ରହିଲେ ଗିରିଜା
ଆରେ ନନ୍ଦି ନ ଅଇଲେ କିପାଁ ଦେବରାଜା ।
ଗଙ୍ଗାପୁରେ ଅବା ବାବୁ ସ୍ୱାମୀ ଛନ୍ତି ରହି
ଅତି ବିମୁଖ ହୁଅନ୍ତି ଶିବେ ଚାହିଁ ଚାହିଁ ।
ମାୟାମୋହିନୀ ଅଟଇ ସେହି ବରାଙ୍ଗନା
କୁଜ୍ଞାନମନ୍ତ୍ରେ ଅସୁରୀ ଅଟେ ଅନ୍ନପୂର୍ଣ୍ଣା ।
ପାତାଳପୁରେ ରହିଲେ ଯାଇ ବିଶ୍ୱବାସ
ପିଶାଚୀ ତୁଲେ ରମିଲେ ଏକାଦଶ ବର୍ଷ ।
ଅନେକ ଦୂତ ପେଷିଲେ ଦେବୀ ଶାକମ୍ବରୀ
ନ ପାଇଲେ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ନଗରୀ ।
କକଡ଼ା ମାସ ଶୁକଳ ପଞ୍ଚମୀ ଅଟଇ
ଏ ଦିନ କୈଳାସେ କୃଷ୍ଣ ସଙ୍ଗେ ଥିଲି ଯାଇ ।
କୃଷ୍ଣ ପୁଚ୍ଛିଲେ ଉମାଙ୍କୁ ଶିବଙ୍କୁ ନ ଦେଖି
ଶୁଣି କୃଷ୍ଣଙ୍କୁ ବୋଇଲେ ଗିରିଜା ସୁମୁଖୀ ।
ହେ କୃଷ୍ଣ କୈଳାସ ତେଜି ଏକାଦଶ ବର୍ଷ
କାହିଁଗଲେ ଦେଖିଥିଲେ କହ ହୋଇ ତୋଷ ।
ଗୋବିନ୍ଦ ପୁଣି ଚାହିଁଲେ ମୋହର ବଦନ
ବୋଇଲେ ଦେଖିଛୁ ତୁ କି କେଉଁଠି ଈଶାନ ।
ଯାହାଙ୍କ ବଚନେ ମୁହିଁ ଗାଣ୍ଡୀବକୁ ଧରି
ନାରାଚ ଯୋଖି ଚାହିଁଲି ଏକଲୟ କରି ।
ମନଭେଦୀକୁ ଯୋଖିଲି ଗାଣ୍ଡୀବରେ ମୁହିଁ
ଅନନ୍ତକୋଟି ବ୍ରହ୍ମାଣ୍ଡ ଚାହିଁଲେ ଦିଶଇ ।
ଚାହାଁନ୍ତେ ପାତାଳପୁରେ ହେଲା ମୋତେ ଦୃଶ୍ୟ
ହିରଣ୍ୟାକ୍ଷ୍ୟାସୁରୀ ତୁଲେ ଅଛନ୍ତି ମହେଶ ।
ଏମନ୍ତ ଦେଖିଣ ମୁହିଁ କହିଲି ଉମାଙ୍କୁ
ହିରଣ୍ୟାକ୍ଷୀ ଦଇତୁଣୀ ମୋହିଲା ଶିବଙ୍କୁ ।
ହଟକେଶ୍ୱର ପୁରକୁ ଯିବାର ବାଟରେ
ଅନ୍ଧକାର ପୁର ଏକ ଅଛି ତା ମଧ୍ୟରେ ।
ସେହିବାଟ ଦେଇ ଯାଉଁ ଯାଉଁ ଦେବକାଶୀ
ପାର୍ବତୀଙ୍କ ରୂପ ଧରି ମୋହିଛି ରାକ୍ଷସୀ ।
ଗିରିଜା ବୋଇଲେ କର ମୋତେ ପ୍ରତିକାର
ଯେମନ୍ତେ ଅସୁରୀ ସଙ୍ଗୁ ଶିବ ହୁନ୍ତି ପର ।
ଏମନ୍ତ ଶୁଣି ଧନୁରେ ଯୋଚି ମନଭେଦୀ
ଲକ୍ଷଯୋଜନେ ସେ ଥିଲା ଶର ଦେଲି ବିନ୍ଧି ।
ହିରଣ୍ୟାକ୍ଷୀ ବସିଥିଲା ଶିବଙ୍କର କୋଳେ
ରଙ୍ଗରସ କଉତୁକ ପରିହାସ ବେଳେ ।
ଲକ୍ଷେକ ଯୋଜନ ମୋର ଶର ଭେଦିଗଲା
ସେ ହରିଣ୍ୟାକ୍ଷୀ ରାକ୍ଷସୀ ଉପରେ ପଡ଼ିଲା ।
ହୃଦେ ପଡ଼ିଣ ନାରାଚ ପୃଷ୍ଠେ ଗଲା କଣ୍ଟି
ଗର୍ଜିଣ ରାକ୍ଷସୀ ମଲା ହୋଇ ଛାଟିପିଟି ।
ଈଶ୍ୱରଙ୍କ ଆଗେ ତାର ଯାଆନ୍ତେ ଜୀବନ
ଶିବଙ୍କର ତୁଟିଗଲା ତା ମାୟା ବନ୍ଧନ ।
ତହୁଁ ମନେ ପଡ଼ିଲାକ କୈଳାସ ନଗରୀ
ବେଗେ ବିଜୟ କରିଲେ ସେ ତ୍ରିଶୂଳଧାରୀ ।
ଶିବଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଲେ ଗିରିସୁତା
ବୋଇଲେ ଫାଲ୍‌ଗୁନି ଧନ୍ୟ ତୋର ପିତାମାତା
ଈଶ୍ୱର କହିଲେ ତହିଁ କୃଷ୍ଣଙ୍କ ଅଗ୍ରତେ
ପାର୍ବତୀ ପ୍ରାୟ ଅସୁରୀ ଦିଶିଲାକ ମୋତେ ।
ଅନ୍ଧାର କୈଳାସପୁର ଅଟଇ ମୋହର
ମୋର ଜ୍ଞାନ ନୋହିଲା ସେ ପିଶାଚୁଣୀ ପୁର ।
ଭକତି କରିଲା ଯେତେ ମୋତେ ସେ ଅସୁରୀ
ଉମାଙ୍କ ପରି ତା ସେବା ନ ପାରିଲା ବାରି ।
କାମଦେବ ବୋଲି ଯେହୁ ବୁଝ ନାରାୟଣ
ପାଷାଣ ତରଳେ କଲେ ସେହି ଆକ୍ରମଣ ।
ଈଶ୍ୱର ବୋଇଲେ ପାର୍ଥ ତୁହି ଧନ୍ୟ ଧନ୍ୟ
ମୁହିଁ ପ୍ରସନ୍ନ ହୋଇଲି ବର ମାଗି ଘେନ ।

ପାର୍ବତୀ ବୋଇଲେ ବର ମାଗ ବୀର ପାର୍ଥ
ତୁମ୍ଭଠାରେ ପରସନ୍ନ ଛନ୍ତି ବିଶ୍ୱନାଥ ।
ଅର୍ଜ୍ଜୁନ ବୋଇଲେ ଦେବ କି ବର ମାଗିବି
ଆବଶ୍ୟକ ହେଲେ ମୁହିଁ ବର ମାଗିନେବି ।
ପାର୍ଥବାକ୍ୟେ ବୋଇଲେକ ଦେବ ବିଶ୍ୱନାଥ
ଅଜ୍ଞାତବାସେ ବିରାଟେ ଯେବେ ହେବ ଗୁପ୍ତ ।
ସେହି ସମୟରେ ଆମ୍ଭେ ଦେବୁ ଏହି ବର
ତୋହପାଇଁ ହେବା ଆମ୍ଭେ ଏକ ତରୁବର ।
ଯେଡ଼େ ଇଚ୍ଛା କରିବୁ ତୁ ହେବା ତେଡ଼େ ତରୁ
ତାହା ମନେ ପଡ଼ିଗଲା ଚିନ୍ତା କରୁ କରୁ ।
ଶିବଙ୍କୁ ଚିନ୍ତି ଖଡ଼ିରେ ପକାଇଲି ଗାର
ସେ ବରେ ହୋଇଲା ଦେବ ଏହି ତରୁବର ।
ଧର୍ମରାଜା ପୁଚ୍ଛାକଲେ କହ ମୁନିବର
ବୃକ୍ଷ ସହିଲା ତ ଧନୁ ଅସ୍ତ୍ରଙ୍କର ଭାର ।
ବ୍ୟାସ ବୋଇଲେକ ଶୁଣ ଧର୍ମ ନରସାଇଁ
ସେହି ବୃକ୍ଷ ହରି ହର ଉମା ଆଉ ବିହି ।
ଏକଶାଖା ହରି ଆଉ ଏକ ଶାଖା ହର
ଚାରିଗୋଟି ଡାଳ ତାର ଦେବ ବେଦବର ।
ମଧ୍ୟରେ ଯେ କ୍ରୋଟ ସେହି ଅଟନ୍ତି ଗିରିଜା
ଯାଙ୍କ ଧନୁଅସ୍ତ୍ରଭାର କେତେ ବୁଝ ରାଜା ।
ଶୁଣି ପାର୍ଥଙ୍କୁ ପ୍ରଶଂସା କରନ୍ତି ଯୁଧିଷ୍ଠି
ଏସନକ କଲୁ ଭାଇ ଶମୀବୃକ୍ଷ ଗୋଟି ।
ପାର୍ଥ ବୋଇଲେ ମୁଁ ଡାଳେ ଉଠୁଅଛି ଭାଇ
ତୁମ୍ଭେ ଭୀମସେନ ଅସ୍ତ୍ର ଦିଅ ହେ ବଢ଼ାଇ ।
ଏହା କହିଣ ଅର୍ଜ୍ଜୁନ ବୃକ୍ଷ ପାଶେ ଗଲେ
ସେ ତରୁବରକୁ ବେଗେ କୁଣ୍ଢାଇ ଧଇଲେ ।
ବୃକ୍ଷକୁ କୋଳ କରିଣ ବୁଜନ୍ତେ ନୟନ
ସେକ୍ଷଣି ଉଠିଣ ଡାଳେ ବସିଲେ ଅର୍ଜ୍ଜୁନ ।
ପଞ୍ଚତାଳ ଉହର୍ଗ ଯେ ବୃକୋଦର କାୟ
ଧନୁ ଅସ୍ତ୍ର ଦେଲେ ତୋଳି ପବନ ତନୟ ।
ପଞ୍ଚଧନୁ ତୂଣ କ୍ରୋଟେ ରଖେ ବୀର ପାର୍ଥ
ଭୀମସେନ ଗଦାବର ନକୁଳର କୁନ୍ତ ।
ଗଗନେ ଶିଖା ପାତାଳେ ଲକ୍ଷେ ଯୂଣ କରି
ବିସ୍ତାରିତ ବୃକ୍ଷଡାଳ ଚାରିଦିଗ ଘୋଟି ।
ବାଞ୍ଛାବଟର ନିକଟେ ରହେ ବୃକ୍ଷ ଶମୀ
ସେ ବୃକ୍ଷେ ଶାରଳାଦାସ ସହସ୍ରେ ପ୍ରଣମି ।
ଅଗସ୍ତି କହିଲେ ଶୁଣ ମନୁ ଦଣ୍ଡଧର
ସେ ବୃକ୍ଷ ମହିମା ଅଟେ ଦେବ ଅଗୋଚର ।
ଯେତେବେଳେ କ୍ରୋଟେ ରଖେ ପାର୍ଥଅସ୍ତ୍ର ଧନୁ
କ୍ରୋଟ ମଧ୍ୟ ତେଜଦିଶେ ଉଇଁଛି କି ଭାନୁ ।

ଯୁଧିଷ୍ଠି ବୋଇଲେ ଶୁଣ ବୀର ଅରଜୁନ
ଏ ଧନୁ ଅସ୍ତ୍ର ରକ୍ଷକ ହେବ କେଉଁଜନ ।
ପାର୍ଥବୋଲେ ଏଥିପାଇଁ ନ କରନ୍ତୁ ଚିନ୍ତା
ଯାକୁ ଜଗିବାକୁ ଅଛି ଏକ ବଳବନ୍ତା ।
ଖଡ଼ି ଘେନିଣ ଅର୍ଜ୍ଜୁନ ଲେଖିଲେ ପିତୁଳି
ତହିଁରୁ ବାହାର ହେଲା ଏକ ମହାବଳୀ ।
କର ପାଦ ନାହିଁ ତାର ନାହିଁ କନ୍ଧ ମୁଣ୍ଡ
ପେଟ ପିଠି କିଛି ନାହିଁ ମେଦ ଶ୍ରୁତି ତୁଣ୍ଡ ।
ଯୁଧିଷ୍ଠିଙ୍କି ପ୍ରଣମିଣ କହେ ଧନଞ୍ଜୟେ
ଅଜ୍ଞାତ ଶେଷଯାଏ ଏ ଜଗିବ ଏଠାଏ ।
ଯୁଧିଷ୍ଠି ହସିଲେ ପାର୍ଥ ମୁଖକୁ ଅନାଇଁ
ଏସନକ ପରପଞ୍ଚ ଦେଖିଲାତ ନାହିଁ ।
ଆରେ ମୁହିଁ ଧର୍ମ ଅଟେ ଦୟାର ପ୍ରକୃତି
ପଶାଖେଳେ କେହୁ ହାରେ ରାଜ୍ୟଭାର ବୃତ୍ତି
ଆମ୍ଭଙ୍କୁ ଠକାଇବାକୁ ତୋର ଏଡ଼େ ଜଟା
ଶସ୍ତ୍ର କାହିଁ ରଖିବ ଏ ମେଦ ପିଣ୍ଡ ଗୋଟା ।
ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଶୁଣ ଜ୍ୟେଷ୍ଠଭ୍ରାତ
ଇଚ୍ଛା କଲେ ଏ ଗିଳିବ ପୃଥିବୀ ସମସ୍ତ ।
ଏହାର ଶିର ଆବର କର ପାଦ ଥିଲେ
ତ୍ରିଭୁବନ ଟାଳିବ ଏ ଏକ ରାବ ଦେଲେ ।
ପାର୍ଥ ଲୟ କରି ଚିନ୍ତାକଲା ବୃକ୍ଷତଳେ
ଧାତିକାରେ ସେହି ପିଣ୍ଡ ଉଠିଲାକ ଡାଳେ ।
ଅଦଭୂତରେ ଉଠିଣ ଗଲା ତାର କାୟ
ବୃକ୍ଷଡାଳରେ ବୁଲିଲା ମେଦ ଚକ୍ରପ୍ରାୟ ।
ବଦନ ବିହୀନ ମେଦ ଛାଡ଼େ ଘୋର ରଡ଼ି
ଭୂମିରୁ ପର୍ବତ କିବା ପଡ଼ିଲା ଉପୁଡ଼ି ।
ଧର୍ମନନ୍ଦନ ନକୁଳ ଭୀମ ସହଦେବ
ମୂର୍ଚ୍ଛା ଯାଇଣ ପଡ଼ିଲେ ସେ ଚାରି ପାଣ୍ଡବ ।
ସନକ ବିଶ୍ୱଦେବା ଏ ବିହନ୍ତା ପୁରୁଷ
ତେତ୍ରିଶ କୋଟି ଦେବତା ଶୁଣି କଲେ ତ୍ରାସ ।
ଯୁଧିଷ୍ଠିଙ୍କି କୋଳକରି ଧରି ସବ୍ୟସାଚି
ସାଷ୍ଟାମ କରିଲେ ତାଙ୍କ ମୁଖେ ଜଳ ସିଞ୍ଚି ।
ପାର୍ଥବାକ୍ୟରେ ସେ ପିଣ୍ଡ ହୋଇଲାକ ଶାନ୍ତି
ଚେତନା ଲଭି ବସିଲେ ଧର୍ମ ନରପତି ।
ଭୀମ ଆଉ ସହଦେବ ନକୁଳ ଏ ତିନି
ଅଚେତନେ ପଡ଼ିଥିଲେ ତାଙ୍କୁ ଫାଲଗୁନି ।
ଜଳ ସିଞ୍ଚି ସେମାନଙ୍କୁ ସଚେତ କରାଇ
ବୋଇଲେ ଆଉ ରଡ଼ିଏ ଦେଇଥିଲେ ସେହି ।
ତୁମ୍ଭ ସହିତରେ ମୁହିଁ ହାରିଥାନ୍ତି ପ୍ରାଣ
ମେଦ ମହିମା ଏବେ ତ ବୁଝିଲ ଆପଣ ।

ଯୁଧିଷ୍ଠି ବୋଇଲେ ଏତ ବଡ଼ାଇ ଦୁର୍ଲ୍ଲଭ
ଏ ପିଣ୍ଡର ପୂର୍ବକଥା କହରେ ପାର୍ଥିବ ।
କର ଚରଣ ନାସିକା ଶିର ନାହିଁ କିଛି
ବଦନ ବିହୀନେ ଘୋର ରଡ଼ି ଛାଡୁଅଛି ।
ପାର୍ଥ ବୋଲେ ଯେବେ ଦେବ ଗଲି ସ୍ୱର୍ଗେ ମୁହିଁ
ନିର୍ବାତକୁ ବଧ କଲି ବାସବଙ୍କ ପାଇଁ ।
ଭୋଦେବ ଗନ୍ଧର୍ବରାଜା ନାମ ବିଶ୍ୱାବସୁ
ତାଙ୍କର ନନ୍ଦନ ଅଟେ ଯେ କଣୟ ପର୍ଶୁ ।
କଣୟ ପର୍ଶୁ ନନ୍ଦନ ବିରଞ୍ଚ୍ ଯେ ଧ୍ୱଜ
ବୃଦ୍ଧଶ୍ରବା ବୋଲିକରି ଏହାର ଆତ୍ମଜ ।
ବୃଦ୍ଧଶ୍ରବା ସୁତ ନାମ ଯେ ପ୍ରଚଣ୍ଡାବଳୀ
ଏହାର ଭାରିଯା ନାମ ଅଟେ ଗନ୍ଧବାଳୀ ।
ଇନ୍ଦ୍ରେ ଖଟିଥାନ୍ତି ସଦା ଗାନ୍ଧର୍ବୀ ଗନ୍ଧର୍ବ
ସେ ଗନ୍ଧବାଳୀ ସହିତେ ଇନ୍ଦ୍ରଙ୍କର ଭାବ ।
ନିର୍ବାତ କବଚ ଧାଡ଼ି ଦେଲା ଯେତେବେଳେ
ସଂଗ୍ରାମେ ବାସବ ତାକୁ ହାରିଲେ କନ୍ଦଳେ ।
ପଳାଇଲେ ସ୍ୱର୍ଗପୁର ତେଜି ବିଦ୍ୟାଧର
ନିର୍ବାତ କବଚ କଲା ସ୍ୱର୍ଗପୁର ଜୁର ।
ସର୍ବେ ଯହୁଁ ପଳାଇଲେ ଦୈତ୍ୟଭୟ କରି
ସେ ଗନ୍ଧବାଳୀ କି ଦୈତ୍ୟ ନେଲା ବଳେ ଧରି
ରଥଉପରେ ବସାଇ ତହୁଁ ଘେନିଗଲା
ଗନ୍ଧମାଦନ ପର୍ବତେ ଯତନେ ରଖିଲା ।
ମୁହିଁ ଯେତେବେଳେ ବଧ ନିର୍ବାତକୁ କଲି
ପୁଣି ସେ କନ୍ୟାକୁ ନେଇ ବିଦ୍ୟାଧରେଦେଲି
ତା ସ୍ୱାମୀ ପ୍ରଚଣ୍ଡାବଳୀ ମୋତେ କୋଳକରି
ବୋଲେ ବରମାଗ ନାଶ କଲୁ ଦାରାବୈରୀ ।
ମୁହିଁ ବୋଇଲି ନିଶ୍ଚୟ ଦେବୁ ଯେବେ ବର
ଅଜ୍ଞାତବାସରେ ଆମ୍ଭ ଅସ୍ତ୍ର ରକ୍ଷାକର ।
ପ୍ରଚଣ୍ଡାବଳୀ ବୋଇଲେ ତୋ କାର୍ଯ୍ୟ ଯେ କାଳେ
ଚିନ୍ତିବା ମାତ୍ରକେ ମୁହିଁ ଯିବି ତତକାଳେ ।
ବୃକ୍ଷ କ୍ରୋଟରେ ରଖିବ ତୁମ୍ଭେ ଧନୁଶର
ମାଂସପିଣ୍ଡ ରୂପେ ମୁହିଁ ଜଗିବି ଡାଳର ।
ଯଦି ବିଷ୍ଣୁ ମହେଶ୍ୱର ବ୍ରହ୍ମା ସୁରପତି
ମୋର ରଡ଼ିଘାତେ କେହି ନ ଆସିବେ ଜତି ।
ବିଶ୍ୱାବସୁଙ୍କର ଏହୁ ଅଟେ ପଣନାତି
ସମରରେ ଧନୁର୍ଦ୍ଧର ଏହୁ ମହାକ୍ଷତ୍ରୀ ।
ଏରୂପେ କହିଲେ ଯହୁଁ ଫେଡ଼ି ଧନଞ୍ଜୟ
ଶୁଣି ଆନନ୍ଦିତ ହେଲେ ଧର୍ମ ନରରାୟ ।
ବୈକୁଣ୍ଠ ବିହାରୀ ପ୍ରଭୁ ଆହେ କୃପାସିନ୍ଧୁ
ଏ ଅଧମ ଦାସେ ଦିଅ ତବ କୃପାବିନ୍ଦୁ ।
କୃଷ୍ଣ ନାମଗୋଟି ନରେ ଜପ ଅବିରତ
ତ୍ରିତାପ ଖଣ୍ଡିଣ ନିଶ୍ଚେ ହୋଇବ ମୁକତ ।
ଶାରଳାଦାସ କହନ୍ତି ବନପର୍ବ ଗୀତେ
ଶ୍ରୀକୃଷ୍ଣ ସେବିଲେ ସୁଖେ ରହିବ ଜଗତେ ।

❋ ❋ ❋

## ପଞ୍ଚୁପାଣ୍ଡବଙ୍କର ଗୁପ୍ତ ବେଶ ଧାରଣ କରି ରହିବାର ମନ୍ତ୍ରଣା

ଏଥୁଅନ୍ତେ ପଚାରିଲେ ବିଲଙ୍କ ରାଜନ
ହେ ଅଗସ୍ତି ମୁନି ମୋର ଘେନ ନିବେଦନ ।
ବିରାଟ ରାଜାଙ୍କ କଥା ଶୁଣିଲି ସକଳ
ପୁଣି କେଉଁ କୃତ୍ୟ କଲେ ପଣ୍ଡୁଙ୍କର ବାଳ ।
ସେ କଥା ଶୁଣାଇ ପାପ କରାଅ ଖଣ୍ଡନ
କହନ୍ତି ଅଗସ୍ତି ତହୁଁ ଶୁଣ ହେ ରାଜନ ।
ଧର୍ମ ବୋଇଲେ ବିରାଟେ ରହିବା ଗୁପତେ
ଦିନ କଟାଇବା ବାବୁ କେଉଁ କେଉଁ ମତେ ।
ଭୀମ ବୋଇଲା ନ ଚିନ୍ତି ଆମ୍ଭର କଥାକୁ
ନିଶ୍ଚିନ୍ତେ ରହିବୁ ଆମ୍ଭେ ଭଣ୍ଡି ବିରାଟକୁ ।
ଯାହା କହିବୁ ଆମ୍ଭର ତହିଁ ନାହିଁ ଦୋଷ
ତୁମ୍ଭେ ମିଛ କହିଲେ ତ ଧର୍ମଯିବ ନାଶ ।
ତୁମ୍ଭଙ୍କୁ ତ ନ ଆସିବ କେଭେ ମିଥ୍ୟାବାକ୍ୟ
ଯୁଧିଷ୍ଠି ନାମ କହିଲେ ଜାଣିବେ ତ ଲୋକ ।
ଯୁଧିଷ୍ଠି ବୋଇଲେ ବାବୁ ନ କର ସେ ଚିନ୍ତା
ବିରାଟକୁ ସତ୍ୟ ଛଡ଼ା ନ କହିବ ମିଥ୍ୟା ।
ଭୀମସେନ ହସିଲେକ ଧର୍ମଙ୍କ ବଚନେ
ତୁମ୍ଭ ନାମ ଲୁଚାଇବ କିପରି ଗୋପନେ ।
ବିଧାତା ପୁରୁଷ ଯାହା କରିଛି ଘଟନ
ଯୁଗ୍ମ ଯୁଗ୍ମ କରି ଦେଖ ରାତ୍ର ଆଉ ଦିନ ।
ସ୍ତିରୀ ଆଉ ପୁରୁଷେକ ପାପେକ ପୁଣ୍ୟେକ
ହାରିବା ଜିଣିବା ପୁଣି ଜାତେକ ଅନ୍ତେକ ।
ଚନ୍ଦ୍ରେକ ସୂର୍ଯ୍ୟେକ ଆଉ ଧର୍ମ ଅଧର୍ମେକ
ଏଥିମଧ୍ୟେ ଅଛି କିସ ଅନ୍ୟ ବିଚାରେକ ।
କର୍ମେ ଯାହା ଲେଖାଅଛି ମେଣ୍ଟଣ ନ ଯାଏ
ଏପରି କହିଲେ ଯହୁଁ ପବନ ତନୟେ ।
ଯୁଧିଷ୍ଠି ବୋଇଲେ ତୁ ଯା କହିଲୁରେ ଭାଇ
ଏଥିମଧ୍ୟେ ଯାହା ଅଛି କହିବା ବୁଝାଇ ।
ତୁ ଯାହା ବୋଇଲୁ ଭୀମ ରାତ୍ରେକ ଦିନକ
ତହିଁର ମଧ୍ୟରେ ଅଛି ପୁଣି ସନ୍ଧ୍ୟା ଏକ ।
ଆବର ବୋଇଲୁ ସ୍ତିରୀ ଏକ ପୁରୁଷେକ
ତାହାର ମଧ୍ୟରେ ପୁଣି ଅଛି ନପୁଂସକ ।।

ପୁନରପି ବୋଇଲୁ ତୁ ପାପେକ ପୁଣ୍ୟେକ
ତହିଁର ମଧ୍ୟରେ ଅଛି ପୁଣି ମଉନକ ।
ଆଉ ଯାହା କହିଲୁ ତୁ ଚନ୍ଦ୍ରେକ ସୂର୍ଯ୍ୟେକ
ତାହାଙ୍କ ମଧ୍ୟରେ ଅଛି ତାରା ଅସଂଖ୍ୟକ ।
ପୁନଶ୍ଚ କହିଲୁ ତୁହି ସତ୍ୟେକ ମିଛେକ
ତହିଁକି ପାଲଟ ବାବୁ ସଖା ସାକ୍ଷ୍ୟଲୋକ ।
ଭୀମ ବୋଇଲା ପଡ଼ିଛି ଦୁଃସହ ସଙ୍କଟ
କେଉଁରୂପେ ନାମ ତୁମ୍ଭେ କରିବ ପାଲଟ ।
ଯୁଧିଷ୍ଠି ବୋଇଲେ ଆମ୍ଭେ ସଭାପଣ୍ଡା ହେବୁ
ଧର୍ମ ବିଚାରିଣ କୋନ୍ତ ନାମକୁ କହିବୁ ।
କୋନ୍ତଭୋଜର ନନ୍ଦିନୀ କୁନ୍ତୀ ଆମ୍ଭ ମାତ
କୋନ୍ତଭଟ୍ଟ ନାମେ ଆମ୍ଭେ ତହିଁ ହେବୁ ଖ୍ୟାତ
ଭୀମ ବୋଲେ ତୁମ୍ଭେ ଦେବ କେଉଁ ଗୁଣଗ୍ରାହୀ
ଅର୍ଜ୍ଜୁନ ଗୁଣକୁ ସିନା ପୂଜାପାଅ ରହି ।
ସ୍ୱାମୀ ସକଳ ହାରିଲ ଏଡ଼େ ତୁମ୍ଭେ ଯୋଗ୍ୟ
ବିରାଟ ରାଜ୍ୟେ ତୁମ୍ଭଙ୍କୁ ଅଛି କିସ ଭୋଗ ।
ଯୁଧିଷ୍ଠି ବୋଇଲେ ଆରେ ଶୁଣ ଭୀମସେନ
ସମାନେ ବସିବୁ ଆମ୍ଭେ ଅଛି ଏକଗୁଣ ।
ପଶାଖେଳିବୁ ବସିଣ ବିରାଟର ତୁଲେ
ଏହି ଉପାୟେ ବସିବୁ ଯୁଧିଷ୍ଠି ବୋଇଲେ ।
ଭୀମ ଶୁଣି ବୋଲେ ବାବୁ ଉଠରେ ଅର୍ଜ୍ଜୁନ
ବାହୁଡ଼ିଣ ପୁଣି ଆମ୍ଭେ ପଶିବା ଅରଣ୍ୟ ।
ବେଳୁଁବେଳ ଏହାଙ୍କର ବଢ଼ଇ ଦୁର୍ବୁଦ୍ଧି
ଧୃତରାଷ୍ଟ୍ରପୁତ୍ରେ ଦେଲେ ଅଚଳ ସମୃଦ୍ଧି ।
ଏକଥର ଖେଳିକରି ହାରିଲେ ସମସ୍ତ
ତା ଅଧୀନ ହେଲୁ ଭାର୍ଯ୍ୟାସହ ଚାରିଭ୍ରାତ ।
ସଭାତଳେ ଆମ୍ଭଙ୍କୁ ସେ ନେଇ ବସାଇଲେ
ଦ୍ରୌପଦୀର କେଶ ଧରି ବିବସନ କଲେ ।
ବାରେ ପଶାଖେଳେ ହେଲା ଦୁଃଖ ଏତେ ଦୂର
ଏବେହେଁ ପଶାଖେଳିବେ ବିରାଟ ସଙ୍ଗର ।
ବିରାଟ ସଙ୍ଗେ ଖେଳକୁ ନୋହିବେ ଭାଜନ
ହାରିଲେ କି ଦେବ ତୁମ୍ଭ ହାତେ ଅଛି ଧନ ।
ଏଘାନ୍ତେ ଯେବେ ହାରିବ ଧନଦ୍ରବ୍ୟ ନାହିଁ
ପ୍ରାଣଘାତ ହୋଇବାକ ଏହି ପଶା ପାଇଁ ।
ଯୁଧିଷ୍ଠିର ବୋଇଲେକ ଶୁଣରେ ପାବନି
କପଟରେ ହରାଇଲା ଆମ୍ଭଙ୍କୁ ଶକୁନି ।
କିଞ୍ଚିତ ଖେଳରେ ମୋତେ କିଏ ହେବ ସରି
କଉତୁକ ଉପୁଜାଇ ହେବୁ ଅଧିକାରୀ ।
ପଶାଖେଳେ ଜାଣ ଆମ୍ଭେ ଅଟୁ ଜଗଜ୍ଜିତା
ଇହଲୋକରେ କେ ଅଛି ଆମ୍ଭଙ୍କୁ ଜିଣନ୍ତା ।

ଏହାଶୁଣି ବୋଇଲେକ ପବନ ତନୟ
ପଶାଛଡ଼ା ଅଛି ତବ କହ କି ଉପାୟ ।
ଯୁଧିଷ୍ଠି ବୋଇଲେ ଅଛି ମୋର ଏକ ବୁଦ୍ଧି
ରାଜା ମୋତେ ବସାଇବ ସଙ୍ଗେ ନିରବଧି ।
ଆମ୍ଭେ ତ ବସିଲେ ସେହି ରାଜାଙ୍କ ସଙ୍ଗରେ
ସେ ଦେଶେ ରହିବ ତୁମ୍ଭେ କାହା ଦର୍ଶନରେ ।
ପ୍ରକୃତି ଜାଣି କରିବ ଯେବେ ପରିଚର୍ଯ୍ୟା
ତୁମ୍ଭଙ୍କୁ ଛାଡ଼ିପାରେ କି ସେହୁ ମତ୍ସ୍ୟରାଜା ।
ବିରାଟ ସଙ୍ଗେ ସଭାରେ ଆମ୍ଭେ ବସିଥିବୁ
ଆମ୍ଭେ ଯା ଚିହ୍ନି ତୁମ୍ଭଙ୍କୁ ସମ୍ମାନ କରିବୁ ।
ଧର୍ମଙ୍କ ବାକ୍ୟେ ଫିଟିଲା ତାଙ୍କ ମନଭ୍ରାନ୍ତି
ପୁଣି ଯୁଧିଷ୍ଠି ଭୀମକୁ ଅନାଇ କହନ୍ତି ।
ତୋହର କଥାକୁ ଭୀମ ମୋର ବଡ଼ ଚିନ୍ତା
ମତ୍ସ୍ୟଦେଶେ କେ ନୋହିବ ତୋତେ ଅନ୍ନଦାତା
ଷାଠିଏ ପଉଟି ହେଲେ ବେଳକେ ଅତୃପ୍ତି
ତିନିବେଳ ଖାଉ ଏହ୍ନେ ତୋହର ପ୍ରକୃତି ।
ମାଗିଥିଲେ ତୋତେ ଭିକ୍ଷା ଦିଅନ୍ତା କେ ନାହିଁ
ସମସ୍ତେ ଭୟ କରନ୍ତି ତୋ ମୁଖକୁ ଚାହିଁ ।
ଅପଣ୍ଡିତ ଅଜ୍ଞାନୀ ତୁ ଅଟୁ ବଡ଼ ମନ୍ଦ
ଯେଣେ ଯାଉ ତେଣେ କରୁ ଅନୁବ୍ରତେ ଦ୍ୱନ୍ଦ୍ୱ ।
ବାବୁ କାଞ୍ଚନ ପର୍ବତ ପରି ତୋର କାୟେ
ଏକା ଗୋପ୍ୟ କରିବୁ ତୁ କେବଣ ଉପାୟେ ।
ଭୀମସେନ ବୋଲେ ଦେବ ଅଛି ମୋର ବୁଦ୍ଧି
ଯେସନେକ ରାନ୍ଧଣା ଯେ ନଳର ପ୍ରସିଦ୍ଧି ।
ବିରାଟ ନଗରେ ଥାଇ ସୂପକାର ହେବି
ରାନ୍ଧଣା କାର୍ଯ୍ୟରେ ମୁହିଁ ପାକଶାଳେ ଥିବି ।
ଯୁଧିଷ୍ଠି ବୋଇଲେ ତୁହିକେତେ ବା ରାନ୍ଧିବୁ
ତୋତେ କିସ ଅଣ୍ଟିବ ତୁ ଆନେ କିସ ଦେବୁ ।
ଭୀମ ବୋଲେ ବିରାଟର ଯେତେ ସୂପକାର
ସବୁଙ୍କୁ ଛଡ଼ାଇ ମୁହିଁ ହେବି ଏକେଶ୍ୱର ।
ଶତ ସୂପକାରଙ୍କୁ ସେ ପଡ଼ିଦ୍ୟନ୍ତି ନିତ୍ୟେ
ମୁଁ ଏକା କଲେ କି ରାଜା ନ ରଖିବ ମୋତେ ।
ଯୁଧିଷ୍ଠି ବୋଇଲେ ବାବୁ ଏହି ଗୁଣ ତୋର
ନ ଜାଣୁ ରାନ୍ଧିବୁ ତୁହି କେମନ୍ତ ପ୍ରକାର ।
ଯୁଧିଷ୍ଠିରଙ୍କ ପାଶରେ କହନ୍ତି ମାରୁତି
ଅମୃତ ଯୋଗାଡ଼ ଭାବ କରିବି ମୁଁ ନିତି ।
ହାଣ୍ଡିରେ ଯୋଗାଡ଼ ଯେବେ ରଖିବି ଚୁଲୀରେ
ସୁଧା ପାକ ହେବ ତାହା କ୍ଷଣକ ମଧ୍ୟରେ ।
ଏମନ୍ତ ପ୍ରକାରେ ଦେବ ଜାଣେ ମୁହିଁ ରାନ୍ଧି
ଯୁଧିଷ୍ଠି ବୋଇଲେ ଏ ତ ଶୌରୀ ଗୌରୀ ବିଧି

ଏମନ୍ତ ମହିମା ତୋର ଦେଖିଲା ତ ନାହିଁ
ଏମନ୍ତ ରାନ୍ଧଣା ବାବୁ ଶିଖିଲୁ ତୁ କାହିଁ ।
ଭୀମସେନ ବୋଲେ ତହୁଁ ଯୋଡ଼ି ବେନିକର
ଅନଳ ପ୍ରସନ୍ନେ ଏହା ସିଦ୍ଧ ହେଲା ମୋର ।
ଯୁଧିଷ୍ଠି ବୋଇଲେ ତୁହି କେବଣ ଭକତ
ସେବାଗୁଣ କହ ତୋର ଶୁଣିବୁ ସମସ୍ତ ।
ଏଣେ ତେଣେ ଥିଲେ ତୁହି ଅଶୌଚରେ ଆସୁ
ବେନି ଚରଣ ଦେଖାଇ ଅଗ୍ନି ପାଶେ ବସୁ ।
ଏଡ଼େ ଭକତିରେ ଅଗ୍ନି ହୋଇଲେ ପ୍ରସନ୍ନ
କି ଜାଣୁ ଦିନେ ତାହାଙ୍କୁ କରିଛୁ ପୂଜନ ।
ଆମ୍ଭେମାନେ ଅନଳକୁ କରୁ ବହୁ ପୂଜା
ଘୃତାହୂତି କରି ତାଙ୍କୁ ଦେଉ ବଳିଭୋଜା ।
ତେବେ ଦେଖି ନ ପାରିଲୁ ତାହାଙ୍କ ମୂରତି
ନିର୍ଦ୍ଦୟ ଅଣାକାର ସେ ଅଟଇ ଦହତି ।
ଭୀମ ବୋଲେ ଥିଲୁ ଶତସିଂହ ପରବତେ
ରାନ୍ଧଣା ପାକ ଭୋଜନ କରଇ ଗୁପତେ ।
ମାତା ରାନ୍ଧି ଯେତେବେଳେ ଗାଧୋଇଣ ଯାଏ
ତେତେବେଳେ ଉଠିକରି ଭାତ ଅର୍ଦ୍ଧଖାଏ ।
ନିତି ଏହା ଦେଖି ମାତା ପିତାଙ୍କୁ କହିଲେ
କେ ଏହା କରଇ ବୋଲି ଗୁପତେ ଜଗିଲେ ।
ହସ୍ତରେ କୃପାଣ ଧରି ଜଗିଛନ୍ତି ପିତା
ସ୍ନାନ କରିବା ପାଇଁକି ଚଳିଗଲେ ମାତା ।
ଅନ୍ଧାର ଜାଗାରେ ପିତା ଜଗି ବସିଛନ୍ତି
ଶୋଇଲା ଶଯ୍ୟାରୁ ମୁହିଁ ଉଠିଣ ଝଟତି ।
ରାନ୍ଧଣା ଶାଳରେ ବସି ଖାଉଅଛି ଭାତ
ଖାଇବା ସମୟେ ମୋତେ ଦେଖିଲେକ ତାତ
କୃପାଣ ବୁଲାଇ ଧାଉଁ ମୋହର ପଛରେ
ପିତାଙ୍କର ଭୟେ ତହୁଁ ପଳାଇଲି ଖରେ ।
ଆରେ ଆରେ ଦୁଷ୍ଟପୁତ୍ର ପକାଇବି ହାଣି
ବୋଲୁ ଜନନୀ ଧଇଲେ ତାହାଙ୍କର ପାଣି ।
କୋପେ ଜନନୀଙ୍କି ପିତା ପକାଇଲେ ଠେଲି
ଏହି ଅବସରେ ମୁହିଁ ତହୁଁ ପଳାଇଲି ।
ମୁହିଁ ପଳାଉଛି ପଛେ ଧାମନ୍ତି ପିଅର
ଅଗ୍ନି ଦେବତା ଗୋଡ଼ାନ୍ତି ପଛରେ ତାଙ୍କର ।
ଅଗ୍ନିଙ୍କ ପଛେ ଗୋଡ଼ାନ୍ତି ଜନନୀ ଆମ୍ଭରି
ପ୍ରାଣଭୟେ ପଳାଇଲି ତହୁଁ କୋଶ ଚାରି ।
ଲେଉଟି ଚାହାନ୍ତେ ମୁହିଁ ଝୁଣ୍ଟି ଗଲି ପଡ଼ି
ମୋହର ଉପରେ ପିତା ପଡ଼ିଲେକ ମାଡ଼ି ।
ଅଗ୍ନି ବ୍ରାହ୍ମଣ ରୂପରେ ପିତାଙ୍କୁ ଧଇଲେ
କିପାଁ ଶିଶୁବଧ କରୁ ଏମନ୍ତ ବୋଇଲେ ।
ଛାଡ଼ ଛାଡ଼ ପଣ୍ଡାଏ ହେ ମାରିବି ଏ ଦୁଷ୍ଟ
ନିତି ନିତି ମଣୋହି ଏ କରଇ ଉଚ୍ଛିଷ୍ଟ ।
ମାୟା ଦ୍ୱିଜ ବୋଇଲେ ଏ ବାଳୁତ ଅଜ୍ଞାନ
ଆମ୍ଭାରୁ ଜାତକରି ତୁ ବଧିବୁ କେସନ ।
ବାଳୁତଙ୍କ ଉଚ୍ଛିଷ୍ଟରେ ଦୋଷ ନ ଲାଗଇ
ମାଛି ମଞ୍ଜାରୀ ଭକ୍ଷିଲେ କିଛି ଦୋଷ ନାହିଁ ।
ପିତା ବୋଇଲେ ତାହାଙ୍କୁ ମୋତେ ସିନାଯୋଗ
ଦେବ ପିତୃଙ୍କୁ ନୈବେଦ୍ୟ କରଇ ମୁଁ ଆଗ ।
ଅନଳ ବୋଇଲା ଏହୁ ଅଜ୍ଞାନ ତନୟେ
ଏହାଙ୍କ ଦୋଷ ଘେନନ୍ତି ନାହିଁ ଦେବତାଏ ।
ପୁନଶ୍ଚ ବୋଇଲେ ପିତା ସେମାନଙ୍କୁ ଦେଲି
ଦୋହରା ଅଗ୍ନିଙ୍କି ପୁଣି ଉଚ୍ଛିଷ୍ଟ ପର୍ଷିଲି ।
ମାୟାଦ୍ୱିଜ ବୋଇଲେ ହେ ବାଳୁତ ଉଚ୍ଛିଷ୍ଟ
ଦୋହରା ଅଗ୍ନି ପାଇଲେ ହୁଅନ୍ତି ସନ୍ତୁଷ୍ଟ ।
ଏଥକୁ ଅପ୍ରତେ ତୁ ନ କର ମହୀପାଳ
ଆମ୍ଭେ ସେହି ବୈଶ୍ୱାନର ଦୋହରା ଅନଳ ।
ଆଜି ସିନା ଦେଖିଣ ତୁ ଏମନ୍ତ କହୁଛୁ
ସାତବର୍ଷ ହେଲା ଯାର ଉଚ୍ଛିଷ୍ଟ ଭୁଞ୍ଜୁଛୁ ।
ଏହାକହି ନିଜରୂପ ଅନଳ ଧଇଲେ
କୋପ ଛାଡ଼ି ପିତା ତାଙ୍କୁ ପ୍ରଣିପାତ କଲେ ।
ଅଗ୍ନି ବୋଇଲେ ପିତାଙ୍କୁ ଏ ତୋ ପୁତ୍ରଗୋଟି
ଭୋଜନେ ଅତୃପ୍ତ ସଦା ଜାଣ ହେବ ଏଟି ।
ଆମ୍ଭେ ଯାହା ଖାଇ ଭସ୍ମ କରୁଛୁ ଯୁକତେ
ଏ ମଧ୍ୟ ସେପରି ଖାଇ ପାରିବ ଜଗତେ ।
ଦିବା ରାତ୍ରେ ଥିବ ଯାର ଭୋଜନେ ସରାଗ
ଏ ପିଲା ରାନ୍ଧନ୍ତେ ହେବ ଶଉରୀର ଯୋଗ ।
ଗଉରୀ ଶଉରୀ ନଳ ବିଧି ତ୍ରିପ୍ରକାର
ପ୍ରସନ୍ନ ହୋଇଣ ମୋତେ ଦେଲେ ବୈଶ୍ୱାନର
ସ୍ୱାମୀ ଏହି ଗୁଣ ମୁହିଁ ପାଇଅଛି ପୂର୍ବେ
ବିରାଟର ସୂପକାର ହେବି ଯାଇ ଏବେ ।
ଯଦ୍ୟପି ଶ୍ରଦ୍ଧା କରିବ ମୋତେ ନରସାଇଁ
ଆବର ମାଲଯୁଦ୍ଧକୁ ଦେଖାଇବି ମୁହିଁ ।
ଆପଣ ତାଙ୍କ ଆସ୍ଥାନେ ଥିବ ଅନୁବ୍ରତେ
ପରରାଷ୍ଟ୍ର ଯୁଦ୍ଧ ହେଲେ ହକାରିବ ମୋତେ ।
ଭୀମ ଯା କହୁଁ ଫିଟିଲା ତାଙ୍କ ମନଭ୍ରାନ୍ତି
ଏବେ ଆପଣେ ବସନ୍ତୁ ବିରାଟର କତି ।
ଆମ୍ଭେ ଦର୍ଶନ କରିବୁ ଯେତେବେଳେ ଯାଇ
ଭୃତ୍ୟପଣେ ଆସିଛ କି ପୁଛିବ ଗୋସାଇଁ ।
ଯେ କଥା ଆମ୍ଭେ କହି ନ ଜାଣିବୁ ଆସ୍ଥାନେ
ତୁମ୍ଭେ ପୂରଣ କରିବ କହି ତା ଯତନେ ।

ଏମନ୍ତ ଶୁଣି ଯୁଧିଷ୍ଠି ଧରି ପାର୍ଥ କର
ବୋଇଲେ ରହିବୁ ତୁହି ତହିଁ କି ପ୍ରକାର ।
ଅର୍ଜ୍ଜୁନ ବୋଲେ ଛାମୁରେ ହାତ ଯୋଡ଼ିକରି
ବିରାଟ ରାଜ୍ୟେ ରହିବି ହୋଇ ବୃହନ୍ନାରୀ ।
ରାଣୀହଂସପୁରେ ତହିଁ କରାଇବି ନୃତ୍ୟ
ବେଣୁ ବୀଣାବାଦ୍ୟ ଆଉ ପଟହ ସଙ୍ଗୀତ ।
ପଞ୍ଚତାଳ ଏକୋଇଶ ଖଟଣି ମୂର୍ଚ୍ଛନା
ଅନନ୍ତ ବିନୋଦ ବୃନ୍ଦାରକ ମୋହମନା ।
ଯୁଧିଷ୍ଠି ଉତ୍ତର କଲେ ପାର୍ଥ ବଚନରେ
ପୁରୁଷରୂପେ କେମନ୍ତେ ଥିବୁ ଅନ୍ତଃପୁରେ ।
ଅର୍ଜ୍ଜୁନ ବୋଇଲେ ମୁହିଁ ହେବି ସ୍ତିରୀବେଶ
ଫୁଲ ଅଳଙ୍କାର ପିନ୍ଧି ବାନ୍ଧିବି ମୁଁ କେଶ ।
ସ୍ତିରୀଙ୍କ ପ୍ରାୟେ ପିନ୍ଧିବି ମୋହର ବସନ
ବୃହନ୍ନାରୀ ନାମଗୋଟି କରିବି ଧାରଣ ।
ଯୁଧିଷ୍ଠିର ବୋଇଲେକ ଶୁଣ ରେ ବିଜୟୀ
ବିରାଟ ଡାକି ଯଦ୍ୟପି ପରୀକ୍ଷା କରଇ ।
ପାର୍ଥବୋଲେ ନପୁଂସକ ହେବି ଆହେ ଭ୍ରାତ
ସେଥିପାଇଁକି ଆପଣ ନୁହନ୍ତୁ ଚିନ୍ତିତ ।
ପାର୍ଥକୁ ବୋଇଲେ ଧର୍ମ ବିଷାଦିତ ହୋଇ
ନପୁଂସକ କେଉଁପରି ହୋଇବୁ ରେ ଭାଇ ।
ବଡ଼ ଧୂର୍ତ୍ତ ଅଟଇ ସେ ମତ୍ସ୍ୟ ଅଧିପତି
ପରୀକ୍ଷା କଲେ ତୋଷି କି ପାରିବୁ ତା ମତି ।
ପାର୍ଥ ବୋଲେ ହେବି ଦେବ ନପୁଂସକ ରୂପ
ଶାପେକ ଅଛି ମୋହର ଏସନ ସ୍ୱରୂପ ।
ଯେତେବେଳେ ଗଲି ମୁହିଁ ଅମର ମଣ୍ଡଳେ
ନିର୍ବାତକୁ ବଧକଲି ପିତାଙ୍କର ଛଳେ ।
ତୋଷେ ମୋତେ କୋଳେ ବସାଇଲେ ମଘବାନ
ଶ୍ରଦ୍ଧାରେ କିରୀଟ ନାମ କରିଲେ ପ୍ରଦାନ ।
ଦେବରତ୍ନ ମୋର ଅଙ୍ଗେ କଲେ ଆଭରଣ
ଗନ୍ଧ ଚନ୍ଦନ ମୋ ଦେହେ କଲେକ ଲେପନ ।
ବେଶ ଭୂଷଣେ ବସିଛି ପିତାଙ୍କର ପାଶେ
ଅପସରୀଏ ଖଟିଲେ ଆସି ନୃତ୍ୟରସେ ।
ବାସବଙ୍କ ପ୍ରିୟବତୀ ଉର୍ବଶୀଟି ଯେହି
ନୃତ୍ୟ କରୁ କରୁ ମୋର ବଦନକୁ ଚାହିଁ ।
ସେହିକ୍ଷଣି ତଳେ ପଡ଼ି ହେଲା ଅଚେତନ
ନୃତ୍ୟ ବନ୍ଦ କଲେ ପିତା ଜାଣିଲେ ତା ମନ ।
ସଭା ଭଗ୍ନ ହେଲା ଦେବେ ଯେଝା ବାସ ଗଲେ
ମୋ ପାଶକୁ ଉର୍ବଶୀକୁ ରାତିରେ ପେଷିଲେ ।
ଶୟନାଗାରେ ମୁଁ ବସି ମାଜୁଅଛି ଶର
ଉର୍ବଶୀ ଡାକେ ଏକାଳେ ଦ୍ୱାରେ ମାରି କର ।
କବାଟ ନ ଫିଟାନ୍ତେ ମୁଁ କରି ମହାକୋପ
ମୋ ଆଶା ପୂର୍ଣ୍ଣ ନ କଲୁ ଘେନ ଏବେ ଶାପ ।
ମୁହିଁ ଜଗତମୋହିନୀ ଭାଙ୍ଗିଲୁ ମୋ ଆଶା
ମୋର ଶାପେ ଭୋଗ ତୁହି ନପୁଂସକ ଦଶା ।
ଏମନ୍ତ ଶୁଣି ତା ପ୍ରତି ରାଗିଲେ ଜନକ
ନିଷ୍କଳଙ୍କ ପୁତ୍ରକୁ ମୋ ଦେଲୁ ତୁ କଳଙ୍କ ।
ମୁହିଁ ତୋତେ ଶାପ ଦେବି ଲୋ ଉର୍ବଶୀ ଘେନ
ଯା ଶୁଣି ଉର୍ବଶୀ ଧରି ପିତାଙ୍କ ଚରଣ ।
ବୋଇଲା ମୋ ପ୍ରତି କୋପ ନ କରନ୍ତୁ ଦେବ
ମୁଁ ଯେ ଶାପ ଦେଲି ତାହା ପାର୍ଥ ହିତ ହେବ ।
ଅଜ୍ଞାତବାସ କରିବେ ବର୍ଷେ ତେରଦିନ
ତେତେଦିନ ନପୁଂସକ ହୋଇବ ଅର୍ଜ୍ଜୁନ ।
ଏମନ୍ତ ଶୁଣି ଯୁଧିଷ୍ଠି ହେଲେ ଆନନ୍ଦିତ
ଦୁଃଖିତେ ଭାବିଲେ ପୁଣି ଏହା ହେବ ପାର୍ଥ ।
ନକୁଳକୁ ପୁଚ୍ଛା କଲେ ପୁଣି ଯୁଧିଷ୍ଠିର
ତୁ ରହିବୁ କେଉଁପରି କହ ଆଗେ ମୋର ।
ନକୁଳ ବୋଇଲେ ମୁହିଁ ହେବି ବାଜୀପାଳ
ମୋହର କଥାକୁ ଦେବ ମନରେ ନ ଭାଳ ।
ଅଶ୍ୱପାଳଙ୍କ ମଧ୍ୟରେ ପ୍ରଧାନ ମୁଁ ହେବି
ବିରାଟ ରାଜାକୁ ଅଶ୍ୱଲାଗି କରାଇବି ।
ଶୁଣି ନକୁଳେ ବୋଇଲେ ଧର୍ମଙ୍କ ନନ୍ଦନ
ଅଶ୍ୱବିଦ୍ୟା ଭାଇ ତୁହି ପାଇଲୁ କେସନ ।
ନକୁଳ ବୋଇଲା ଦେବ ଶୁଣ ସାବଧାନେ
ସନମାନ ସତ୍ୟଯୁଗ କଥାର ପ୍ରସନ୍ନେ ।
ତୁଳ ଶୁକଳ ଦ୍ୱିତୀୟା ଗୁରୁ ଯେ ପ୍ରଭବ
ଧନୁମାସ ଦିବାକର ନାମ ସଉରଭ ।
ଅନନ୍ତ ନାମେ ଆଦିତ୍ୟ ମାର୍ଗଶିର ମାସେ
ନାରାୟଣ ମୂର୍ତ୍ତି କୁମ୍ଭ ମାସରେ ପ୍ରକାଶେ ।
ସ୍ୱାମୀ ଦକ୍ଷର ନନ୍ଦିନୀ ସଞ୍ଜ୍ଞା ମହାସତୀ
ବିରଞ୍ଚି ନାରାୟଣର ଅଟେ ପ୍ରିୟବତୀ ।
କୋଟିଏକ ବିରଞ୍ଚି ଯେ ନାରାୟଣ ମୂର୍ତ୍ତି
ସଂଜ୍ଞା ସହି ନ ପାରଇ ପତି ମହାଜ୍ୟୋତି ।
ସ୍ୱାମୀ ତେଜୋମୂର୍ତ୍ତି ଦେଖି ସେ ସଞ୍ଜ୍ଞା ଅପର୍ଣ୍ଣା
ଶରୀରୁ ଜାତ କରିଲା ମାୟା ବରାଙ୍ଗନା ।
ସ୍ୱାମୀର ପ୍ରକୃତିମାନ ସବୁ ତାକୁ କହି
ସ୍ତମ୍ଭନ ମୋହନ ବିଦ୍ୟା ଛାୟାକୁ ଶିଖାଇ ।
ଗୋପନ ହୋଇବି ମୁହିଁ ଯାଇ ମେରୁପୃଷ୍ଠ
ତୁ ଯାଇ ବିରଞ୍ଚି ନାରାୟଣଙ୍କୁ ଯେ ଖଟ ।
ଛାୟା ସମର୍ପିଣ ତହୁଁ ଗଲା ସଂଜ୍ଞା କୋପେ
ମେରୁ କ୍ରୋଟରେ ପଶିଲା ଯାଇ ଅଶ୍ୱରୂପେ ।

ମାୟାଛାୟା ଖଟିଲା ଯେ ନାରାୟଣ ପାଶେ
ସଂଜ୍ଞାହୁଁ ଶତଗୁଣରେ ସେବା କରଇ ସେ
ଏ ବିଧିରେ ସତ୍ୟ ତ୍ରେତା ଦ୍ୱାପର ଯେ କଳି
ଏକସ୍ତରି ଗଣ୍ଡାଯୁଗ ଅଟେ ଅଂଶୁମାଳି ।
ଅନେକ ପ୍ରିୟଭାବରେ ଖଟିଲା ରମଣୀ
ବିରଞ୍ଚି ନାରାୟଣ ତା ନ ପାରିଲେ ଜାଣି ।
ମନୁସାନନ୍ଦ ବୋଲିଣ ଏକ ସମ୍ୱସରେ
କୁନ୍ଦଳି ନାମେ ଶବଦ କାଳେ ଭୋଗ କରେ ।
କୃତାନ୍ତ ବୋଲିକରି ଯେ ତହୁଁ କନ୍ୟାମାସେ
କୃଷ୍ଣପକ୍ଷ ଏକାଦଶୀ ସଂକ୍ରାନ୍ତି ଦିବସେ ।
ଭୌମବାରେ ସେଦିନ ଯେ ମଘାସିଂହ ରାଶି
କିଂସ୍ତୁଘ୍ନ ନାମେ କରଣ ଯୋଗନାମ ଦିଶି ।
ସେହିଦିନ କୃତାନ୍ତକ ଛାୟା ସଙ୍ଗେ କଳି
ଅନେକ ଭର୍ତ୍ସନା କରି ଛାୟା ଦେଲା ଗାଳି ।
ସହି ନ ପାରିଣ ତହୁଁ କୋପ କଲା ଯମ
ଛାୟାକୁ ପ୍ରହାର କଲା ହୋଇ ଅତିତମ ।
ସେ ରାଗରେ ଛାୟାଦେବୀ କୋପ କଲେ ହେଳୁ
ଯାଅ ରେ ଯମ ତୋହର ବାମପାଦ ଗଳୁ ।
ଯେବେ ତୋତେ ମୁହିଁ ଏ ଗର୍ଭରେ ଦେବିଠାଏ
ଗଳିକ୍ରୋଷ୍ଟ ହେଉ ପ୍ରହାରିଲୁ ଯେଉଁ ପାଏ ।
ଏସନକ ଶାପ ବିହି ଛାୟା ମହାମାୟେ
ଗଳିତ କୁଷ୍ଟବ୍ୟାଧି ଯେ ଦେଲା ଯମପାୟେ ।
ନିତ୍ୟକର୍ମ ବିଧି ଯେ ଶୟଳ ଜନ ଚିନ୍ତା
ବିଜେ କଲେ ଆପଣାର ମନ୍ଦିରେ ସବିତା ।
ଦେଖଇ ଯମ ଚରଣେ ଗଳିତ ଯେ କୁଷ୍ଟ
ବାବୁ କାହାର ବୋଇଲେ ତୋର ଏଡ଼େ କଷ୍ଟ
କ୍ରୋଧଭର ହୋଇ ନାଶକର ଯେ ବୋଇଲା
ମାତାଙ୍କର ଶାପେ ମୋର ଏଡ଼େ କଷ୍ଟ ହେଲା
ବୋଇଲେ ଯମର ବାକ୍ୟ ଶୁଣି ଅଂଶୁମାଳି
ପୁଅକୁ ବାଧିବ ନିକି ମାତାଙ୍କର ଗାଳି ।
ସବ୍ୟ ଅସବ୍ୟରେ ପୋଏ କରନ୍ତି ଯେ ରୋଷ
ପୁତ୍ରକୁ ଜନନୀ ଶାପ ଦେବାକ ଅବଶ୍ୟ ।
ପୁତ୍ରକୁ ଏମନ୍ତ ଶାପ ଜନନୀ ବିହିଲେ
ବଂଶ ରହିବ କି ଏହା ଆଦିତ୍ୟ ବୋଇଲେ ।
ନିଶ୍ଚୟ ଆମ୍ଭର ଏହୁ ନୁହଇ ବଲ୍ଲଭୀ
ମାୟା କରିଣ ଆମ୍ଭଙ୍କୁ ଅଛି ଏହୁ ସେବି ।
ଧ୍ୟାନରେ ଜାଣିଲେ ତାହା ଗଗନ ବିହାରୀ
ବିଚାରିଲେ ପୁଅଙ୍କ ଏ ନୁହେଁ ଗର୍ଭଧାରୀ ।
ସହି ନ ପାରି ଆମ୍ଭନ୍ତ ଦେବୀ କଲେ ମାୟା
ଧ୍ୟାନରେ ଜାଣିଲେ ଅଟଇ ସେ ଦେବୀଛାୟା

ସଂଜ୍ଞାର ଛଦ୍ମମ ଜାଣିଲେକ ଦେବବୃନ୍ଦେ
ଛାୟାକୁ ପ୍ରସନ୍ନ ହେଲେ ପରମ ସାନନ୍ଦେ ।
ଏତେକାଳ ମନ ଜାଣି ସେବିଲୁ ଗୋ ତୁହି
ସଂଜ୍ଞାଦେବୀର ବଲ୍ଲଭ ହାଦେ ଅଟେ ମୁହିଁ ।
ସଂଜ୍ଞାଦେବୀଙ୍କୁ ଲୋଡ଼ିବା ନିମନ୍ତେ ବିରଞ୍ଚି
ସୁସଞ୍ଚ ଅଶ୍ୱେକ ଯେ ହୋଇଲେ ଦେବ ସଞ୍ଚି ।
ହ୍ରେଷାରବ ଶବଦ କୁହୁକ କଲେ ନାଦ
ଅନନ୍ତକୋଟି ବ୍ରହ୍ମାଣ୍ଡେ ଶୁଭିଲା ଶବଦ ।
ଯେଉଁପରି ଅଶ୍ୱଜାତି ତେହ୍ନେକ ପ୍ରକୃତି
ସଂଜ୍ଞାଦେବୀ ହସିଲେ ବିରହ ଭାବ ମତି ।
ପଶିଲେ ଶବଦ ଗୋଡ଼ାଇଣ ମେରୁକ୍ରୋଟେ
ମାଡ଼ି ବସିଲେକ ଦେବ ସଂଜ୍ଞା ବକ୍ଷପୃଷ୍ଠେ ।
ଏକରାତି ହେଲା ଦିନ ବତିଶ ପର୍ଯ୍ୟନ୍ତ
ଗର୍ଭରେ ଚାଳିଲେ ଦେବ ଅମୋଘ ଯେ ରେତ
ସଇନ୍ଦୂ ଜାତ ହୋଇଲା ତହିଁରୁ କୁମର
ଅଶ୍ୱର ଶିର ଗୋଟିଏ ମାନବ ଶରୀର ।
ଚଲୁକ ବୋଲିକରି କଲେ ମହାପାତର
ଅଯୋନିରୁ ଜାତ ସେ ହୋଇଲା ରେହନ୍ତର ।
ତାର ଅଶ୍ୱକାୟେ ଦିଗପାଳ ଶିରଗୋଟି
ଆକାଶ ପୁରୁଷଙ୍କ ଦୁଃସହ ଗଲାଫିଟି ।
ସ୍ତମ୍ଭନ ମୋହନ ବଶ୍ୟ ହାସ୍ୟ ଉଚ୍ଚାଟନ
ଗୁଟିକା ଅଞ୍ଜନ ତାର ଧରଣ ଧାରଣ ।
ଆବର ନବକୋଟି ଯେ ମନ୍ତ୍ର ମଉଷଧି
ଅନଳ ପୁରୁଷମାନେ ସର୍ବ ବିଦ୍ୟା ସାଧି ।
ନକୁଳ ବୋଇଲା ଦେବ କରନ୍ତୁ ଶ୍ରବଣ
ପିତା ଯେ ସମୟେ ବନେ କାଟୁଥିଲେ ଦିନ ।
ସେ ସମୟେ ଦିନେ ମାଦ୍ରୀମାତା ଘେନି ମୋତେ
ଅନନ୍ତା ନଦୀକୂଳରେ ଭେଟିଲେ ରେହନ୍ତେ ।
ସ୍ୱାମୀ ଅଶ୍ୱଲକ୍ଷଣ ଯେ ମନ୍ତ୍ର ମହୌଷଧି
ରେହନ୍ତ ସାରଥିଠାରୁ କରିଲି ମୁଁ ସିଦ୍ଧି ।
ସେ ମହାପୁରୁଷ ମୋତେ ଧରି କୋଳାଗ୍ରତେ
ପଞ୍ଚଦଶ ମନ୍ତ୍ର ଶିକ୍ଷା ଦେଲାକ ଗୁପତେ ।
ଅଶ୍ୱ ଚିକିତ୍ସା ଅଶ୍ୱକୁ ସ୍ତମ୍ଭନ ମୋହନ
ଅଶ୍ୱବଶ ଅଶ୍ୱଙ୍କର ପୁଣି ଉଚ୍ଚାଟନ ।
ଏ ସମସ୍ତ ବିଦ୍ୟା ମୋତେ ବୁଝାଇ କହିଲେ
ମାତା ସଙ୍ଗେ ଅଇଲି ମୁଁ ତହୁଁ ସେ ଚଳିଲେ ।
ଯେ ବିଦ୍ୟା ସକଳ ଦେବ ମୁହିଁ ଅଛି ସାଧି
ମୁଁ ଯତ୍ନକଲେ ଅଶ୍ୱଙ୍କ ନାହିଁ ମୃତ୍ୟୁ ବ୍ୟାଧି ।
ଅବଧାନ ବୋଲିକରି ଯେଉଁ ମନ୍ତ୍ରଦେବ
ସେ ମନ୍ତ୍ରେ ସାମାନ୍ୟ ଅଶ୍ୱ ଆକାଶ କ୍ଷେପିବ ।

ଅସାଧ ଅଶ୍ୱକୁ ଚାହିଁ କରିବି ସାଧନ
ଏରୂପେ ହେଜନ୍ତେ ମୋତେ କହେ ମନ୍ତ୍ରଦାନ
ନକୁଳ କହନ୍ତେ ସ୍ତମ୍ଭୀଭୂତେ ଧର୍ମସୁତ
ଭାବିଲେ ଦୁଃଖକୁ ଧାତା ସଞ୍ଚିଛି ଏମନ୍ତ ।
ଯୁଧିଷ୍ଠିର ବୋଇଲେକ ଶୁଣ ଆରେ ଭାଇ
ମନ୍ତ୍ରଦ୍ୱାରା ଏକ ଗୋଟି ଅଶ୍ୱ ଆଣ ତୁହି ।
ଆମ୍ଭେ ପରୀକ୍ଷା କରିବା ଆଗେ କଥା ତୋର
ନୋହିଲେ ବିରାଟଠାରେ ହେବୁ ହତାଦର ।
ନକୁଳ ଚାହିଁଲା ଅଶ୍ୱ ଅଞ୍ଜନକୁ ଘେନି
ଦେଖିଲା ଅଶ୍ୱ ଅଛନ୍ତି ଯୂଣ ଶତ ତିନି ।
ନକୁଳ ବୋଇଲା ଦେବ କରନ୍ତୁ ଶ୍ରବଣ
ବାରାସ ଦେଶ ଏଥକୁ ତିନିଶତ ଯୂଣ ।
ସେହିଠାରେ ଅଶ୍ୱଙ୍କର ଉତପତ୍ତି ସ୍ଥାନ
କଳା ପାଟଳ ହରିତ ଆଦି ନାନା ବର୍ଣ୍ଣ ।
କିପରି ଆଣିବି ଅଶ୍ୱ ଏତ ବହୁଦୂର
ଶ୍ୱେତ ଅଶ୍ୱେ ତହିଁ ଛନ୍ତି ଅତ୍ୟନ୍ତ ସୁନ୍ଦର ।
ବାମମନ୍ତ୍ରକୁ ଜପନ୍ତେ ନକୁଳ ମନରେ
ଅଦଭୂତେ ଅଶ୍ୱ ଆସି ମିଳିଲା ପାଶରେ ।
ଦେଖିକରି ଧର୍ମସୁତ ହୋଇଲେ ଆଶ୍ଚର୍ଯ୍ୟ
ବୋଇଲେ ତୋର ପ୍ରସାଦେ ପାଇବି ମୁଁ ରାଜ୍ୟ
ଅଶ୍ୱ ସାହାଯ୍ୟରେ ବାବୁ ଶତ୍ରୁ ହୁଏ ଜିଣି
ତୋ ବୁଦ୍ଧିରେ ବହୁ ଅଶ୍ୱ ପ୍ରାପ୍ତ ହେବ ପୁଣି ।
କୌରବମାନଙ୍କୁ ଭାଇ ଆଉ ଭୟ କିସ
ଅଜ୍ଞାତବାସ କିପରି ଏବେ ହେଉ ଶେଷ ।
ସହଦେବକୁ ବୋଇଲେ ପୁଣି ଯୁଧିଷ୍ଠିର
ତୁହି ତ ସର୍ବଜ୍ଞ ଭାଇ ଅଟୁରେ ଆମ୍ଭର ।
ଆମ୍ଭ ସବୁଙ୍କରି ତୁହି ଅଟୁ ବୁଦ୍ଧିଦାତା
ତୁ କି ଭାବେ ଗୁପ୍ତ ହେବୁ କହ ସେହିକଥା ।
ସହଦେବ ବୋଲେ ତହିଁ ଶୁଣ ଧର୍ମରାୟ
ଗୁପ୍ତ ହେବାକୁ ମୋହର ଅଛଇ ଉପାୟ ।
ଧର୍ମ ବୋଇଲେ କେମନ୍ତେ ଗୁପ୍ତହେବୁ ତୁହି
ସହଦେବ ବେନିକର ଯୋଡ଼ିଣ କହଇ ।
ହେ ଦେବ ଦେଖନ୍ତୁ ଏହି ବଂଶୀ ଗୋଟି ନେଇ
ଗୋପାଳ ବେଶେ ବିରାଟ ପାଶେ ଯିବି ମୁହିଁ ।
ତୋ ଗୋଧନ ପଲ ରକ୍ଷାପାଳ ହେବି ମୁହିଁ
ଅସାଧ୍ୟ ଗୋରୁକୁ ତୋର ସାଧିବି ଗୋସାଇଁ
ଯୁଧିଷ୍ଠି ବୋଇଲେ କହ ବଂଶୀର କି ଗୁଣ
ଏହା ଘେନିଣ ଜଗିବୁ ତାହାର ଗୋଧନ ।
ସହଦେବ ବୋଲେ ଦେବ ଏ ବଂଶୀ ମହିମା
ବୁଝିଛନ୍ତି ବନମାଳୀ ଜାଣିଛନ୍ତି ବ୍ରହ୍ମା ।
ଯାଙ୍କ ଛଡ଼ା କାହାରିକି ହୋଇନାହିଁ ଜ୍ଞାତ
ତୁମ୍ଭର ଆଗେ ପ୍ରକାଶ କରୁଛି ହେ ଭ୍ରାତ ।
ଯେତେବେଳେ ରାଧା ସହ ପ୍ରଥମ ମିଳନ
ନନ୍ଦଘରେ ଥାଇ କୃଷ୍ଣ ବଳାଇଲେ ମନ ।
ଅଙ୍ଗୀକାର ନ କରନ୍ତେ ବୃଷଭାନୁ ସୁତା
ତହୁଁ କୃଷ୍ଣଙ୍କ ମନରେ ହେଲା ବଡ଼ ଚିନ୍ତା ।
ଭାବିଲେ କଂସ ନିଧନେ ଜନମିଛି ମୁହିଁ
ରାଧା ସହିତରେ ଖେଳାଲୀଳା କରିବଇଁ ।
ସେ ରାଧା ଏବେ ମୋହର ନୋହିଲାକ ବଶ
ମର୍ତ୍ତ୍ୟେ ଜନମିଣ ମୋର ସୁଖ ଆଉ କିସ ।
ବିଷାଦେ ଭାବନ୍ତି ବସି କଦମ୍ବର ମୂଳେ
ଧାତା ବିଜୟ କରିଲେ ଆସି ସନ୍ଧ୍ୟାବେଳେ ।
ବ୍ରହ୍ମା ବୋଇଲେକ ତାଙ୍କୁ ଶୁଣ ପୀତବାସ
କିପାଇଁ ମନରେ ଦେବ ହୋଇଛ ବିରସ ।
କଂସକୁ ବିନାଶି ବେଗେ ନାଶ ପୃଥ୍ୱୀଭାର
ଦେବତାଙ୍କୁ ତା କଷ୍ଟରୁ କରନ୍ତୁ ଉଦ୍ଧାର ।
ଶ୍ରୀକୃଷ୍ଣ ଉତ୍ତର କଲେ ଶୁଣ ବେଦବର
ଜାନକୀ ବିଚ୍ଛେଦେ ଗଲା ତ୍ରେତାଯୁଗ ମୋର ।
ତୁମ୍ଭ ଯୋଗେ ରାବଣକୁ କରିଲି ବିନାଶ
ତୁମ୍ଭ ହେତୁ ଯୁଗେ ଯୁଗେ ଲଭେ ମୁହିଁ କ୍ଳେଶ
ଏବେ ପୁଣି ତୁମ୍ଭ ଯୋଗେ ହେଲି ଅବତାର
କରିଥିଲି ରାଧାସହ ଗୋପରେ ବିହାର ।
ସେ ରାଧା ଏବେ ମୋହର ନୁହଇ ଆୟତ୍ତ
ଦୂତୀ ପେଷି ଉପାୟ ମୁଁ କଲିଣି ବହୁତ ।
ଦିନେ ପୁଣି ପାଦେ ସେହୁ କରିଲା ପ୍ରହାର
ତାହାର ଅଭାବେ ଅଛି କେଉଁ ସୁଖ ମୋର ।
ବିଧାତା ବୋଇଲେ ତବ ବର୍ଣ୍ଣ ଦେଖି କଳା
ତେଣୁ କି ଭାବିଲା ମନେ ବୃଷଭାନୁ ବଳା ।
ଏହି ବଂଶୀଟିକୁ ଦେଲେ ତାଙ୍କୁ ବେଦବର
ସ୍ତମ୍ଭନ ମୋହନ ବଶ ଆଦି ପଞ୍ଚଶର ।
ଏଥେ ଅଛି ରାଧା ନାମ କରିଲେ ବାଦନ
ତବପ୍ରେମେ ସେ କିଶୋରୀ ହୋଇବ ମଗନ ।
ବିରହୀ ହୋଇ କୁଟୁମ୍ବ ତେଜି ନରବର
ତୁମ୍ଭ ପ୍ରେମେ ବନ୍ଧା ହେବ ଜାଣ ଚକ୍ରଧର ।
ଆବର ଗୋଟିଏ ସ୍ୱର ଯଦ୍ୟପି ବାଇବେ
ଗୋପାଙ୍ଗନାମାନେ ତାହା ଶୁଣି ବଶହେବେ
ନପୁଂସକ ହୋଇବେ ଯେ ତାଙ୍କ ସ୍ୱାମୀମାନେ
ଏଥିକି କୌଣସି କଥା ନ ଭାଳନ୍ତୁ ମନେ ।
ସମସ୍ତେ ସେ ବହିଥିବେ ପୁରୁଷର ଅଙ୍ଗ
କ୍ରୀଡ଼ାକରି ନ ପାରିବେ ତାଙ୍କ ପତ୍ନୀ ସଙ୍ଗ ।

ତ୍ରୟସ୍ୱର ଧରି ଯେବେ ବାଇବ ବଇଁଶୀ
ବନସ୍ଥ ଗୋଧନମାନେ ପ୍ରବେଶିବେ ଆସି ।
ଅସାଧ ଗୋରୁଏ ଦେବ ହୋଇବେ ସାଧନ
ତୁମ୍ଭ ପଛେ ଗୋଡ଼ାଇବେ ଜାଣ ଭଗବାନ ।
କରଟା ଅର୍କଟ ଛନ୍ଦ ଦୁହାଁଳିଆ ଗାଈ
ସୁଖେ କ୍ଷୀରଦେବେ ଯେତେ ଇଚ୍ଛା ଭାବଗ୍ରାହୀ
ଚତୁର୍ଥ ସ୍ୱର ଧରିଣ ଯଦି ବଜାଇବେ
ଏଥେ ଥାଇଁ ଦେବତାଙ୍କୁ ଦେଖି ଯେ ପାରିବେ ।
ପଞ୍ଚମସ୍ୱରେ ଡାକିବ ହରି ଯେବେ ବାରେ
କ୍ଷତ୍ରୀଙ୍କର ହସ୍ତୁ ଶର ପଡ଼ିବ ସମରେ ।
ରଥୀ ହାତୀ ତୁରଙ୍ଗମ ଯୋଦ୍ଧା ଆଦି କରି
ପଦାତି ସହିତେ ହୁଡ଼ିଯିବେ ରଣେ ହାରି ।
ଚଳ ଅଚଳ ବୃକ୍ଷରେ ପଶୁପକ୍ଷୀମାନେ
ଏ ମୋହନ ବଂଶୀସ୍ୱନ ଯେ ଶୁଣିବ କାନେ ।
ଶତେକ କିଳିଣୀ ଥିଲେ ଫିଟିବ କବାଟ
ଏହା କହି ବଂଶୀ ଦେଇଗଲେ ସୁରଜ୍ୟେଷ୍ଠ ।
ରାଧା ନାମ ଧରି ତହୁଁ ବାଇଲେ ମୋହନ
ସେଦିନ ରାତ୍ରେ ରାଧିକା ମିଳିଲେ ଆସିଣ ।
ବ୍ରହ୍ମା ବାକ୍ୟ ସତ ଜାଣି ଦେବ ଚକ୍ରଧର
ମନେ ମନେ ଆନନ୍ଦିତ ହୋଇଲେ ଅପାର ।
ଦିନେ ମୁହିଁ ଯାଇଥିଲି ମୃଗ ଅନ୍ୱେଷଣେ
ଶ୍ରୀକୃଷ୍ଣଙ୍କୁ ଭେଟିଲି ମୁଁ କାଳିନ୍ଦୀ ଅରଣ୍ୟେ ।
ଗୋପୀସ୍ତ୍ରୀମାନଙ୍କୁ ଘେନି ଦେବ ବଂଶୀଧାରୀ
କୁମ୍ଭ ଶୁକ୍ଳ ଦଶମୀରେ ଫଗୁଯାତ୍ରା କରି ।
ନାନାଖେଳ କୌତୁକରେ ତହିଁ ମାତିଥିଲେ
କିଛିଦୂରେ ଥିଲି ଯହୁଁ ମୋତେ ସେ ଦେଖିଲେ ।
ଧାଇଁଆସି ବେଗେ ପ୍ରଭୁ ଧଇଲେକ କୋଳେ
ସ୍ନାହାନ କରାଇ ମୋତେ ବସାଇଲେ କୋଳେ
ଦୋଳା ଖେଳ ଛାଡ଼ିକରି ପ୍ରଭୁ ଦେବହରି
ସର୍ବ କୁଶଳ ବାରତା ପୁଚ୍ଛିଲେ ଆମ୍ଭରି ।
ମୁଁ ବୋଇଲି ଯାତ୍ରାରଙ୍ଗ କରୁଅଛ ଏଣେ
ଦଣ୍ଡ ସାଜି ବାହିଲାଣି ଜରାସନ୍ଧ ତେଣେ ।
ଯେଉଁ ଦିନ ବଧକଲ ତୁମ୍ଭେ କଂସାସୁର
ହେତି ପ୍ରହେତି ଦୁଇଟି ଭାରିଯା ତାହାର ।
ଏ ଦୁହେଁ ଜରାସନ୍ଧର ଅଟନ୍ତି ନନ୍ଦିନୀ
ବିଧବା ହେଲୁ କହିଲେ ପିତାଆଗେ ପୁଣି ।
ଦୁଇ କନ୍ୟାଙ୍କ ବିକଳ ଜରାସନ୍ଧ ଚାହିଁ
ମଥୁରା ଧାଡ଼ି ଦେବାକୁ ଆସୁଅଛି ସେହି ।
ମୋହର ବଚନ ଶୁଣି କମଳଲୋଚନ
ମୋତେ ସେ ଗୋଧନ ପଲ କରିଲେ ଅର୍ପଣ ।
ବୋଇଲେ ଯା ଘେନି ତୁମ୍ଭେ ଯାଅ ବାରୁଣାକୁ
ଯତ୍ନେ ପାଳିଥିବ ବାବୁ ଏ ଗୋରୁମାନଙ୍କୁ ।
ଗୋଧନ ସମର୍ପି ମୋତେ ଏ ବଇଁଶୀ ଦେଲେ
ଏହାଯୋଗେ ଗୋରୁସାଧ ହୋଇବେ ବୋଇଲେ
ଗୋପାଳି ବିଦ୍ୟା ମନ୍ତ୍ରାଦି କହିଲେ ସକଳ
ନିଜେ ଶିକ୍ଷା ଦେଇଛନ୍ତି ମୋତେ ଆଦିମୂଳ ।
କୃଷ୍ଣ ପ୍ରସନ୍ନେ ଗୋଧନ ବିଦ୍ୟାରେ ମୁଁ ଜିତା
ବିରାଟ ଗୋରୁ ରଖିବି ନ ଭାଳ ମୋ କଥା ।
ମୋ ନାମ ଧରି ଝାଡ଼ିଲେ ଗୋଧନ ବର୍ତ୍ତନ୍ତି
ତନ୍ତ୍ରୀପାଳ ହେବି ମୁହିଁ ଗୋପାଳ ମୂରତି ।
ସହଦେବ ବାକ୍ୟ ଶୁଣି ଧର୍ମ ନରପତି
ଆନନ୍ଦିତ ହେଲେ ଗଲା ତାଙ୍କ ମନୁ ଭ୍ରାନ୍ତି ।
ଦ୍ରୌପଦୀଙ୍କୁ ପୁଚ୍ଛିଲେ ଯେ ଦେବ ଯୁଧିଷ୍ଠିର
ତୁମ୍ଭେ କି ଭାବେ ରହିବ କହ ସେ ବିଚାର ।
ଶୁଣି ଧର୍ମଙ୍କୁ କହିଲେ ଦ୍ରୁପଦ ଦୁଲଣୀ
ସୁଦେଷ୍ଣା ରାଣୀର ହେବି ମୁଁ ବେଶକାରିଣୀ ।
ଚତୁଃସମ ଯୋଗାଇବି ତିଳକ ମଣ୍ଡିବି
ସୈରିନ୍ଧ୍ରୀ ନାମରେ ମୁହିଁ ଏଠାରେ ରହିବି ।
ଧର୍ମ ବୋଇଲେ ଏମନ୍ତ ଭାବେ ତୁମ୍ଭେ ଥିବ
ସ୍ତିରୀ ଛଡ଼ା ପୁରୁଷ କେ ଦେଖି ନ ପାରିବ ।
ଯେ ଅବା ଦେଖି ପାରିବ ପାପ ଅଭିଳାଷ
ବିରାଟ ହେଲେହେଁ ସେହୁ ନିଶ୍ଚେଁ ଯିବ ନାଶ ।
ଦ୍ରୌପଦୀ ବୋଇଲେ ପରେ ଯା ହେବ ଘଟଣ
ସୈରିନ୍ଧ୍ରୀ କାର୍ଯ୍ୟେ ମୁଁ ତାହା କଟାଇବି ଦିନ ।
କର୍ମ ପଡ଼ିଛି ଅବଶ୍ୟ ସେବା ମୁଁ କରିବି
ପ୍ରସ୍ତାବ ଅନୁରୂପରେ କରିବା ତା ଭାବି ।
ପବନ ସାହାଯ୍ୟେ ଯେହ୍ନେ ଜଳଇ ଅନଳ
କର୍ମ ପଡ଼ିଛି କି ରୂପେ କଟାଇବା କାଳ ।
ଏହା ଶୁଣି ହରଷିତ ହେଲେ ଧର୍ମସୁତ
ଶୁଣି ପୁଣି ଆନନ୍ଦିତ ହେଲେ ଚାରିଭ୍ରାତ ।
ଜୟ ହେ ଜଗନ୍ମୋହନ ଦେବ ପୀତବାସ
ତୁମ୍ଭେ କୃପାକରି ଦେବ ମୋର ଦୁଃଖ ନାଶ ।
ନ ଜାଣେ ମୁଁ ଧର୍ମ କର୍ମ ନ କଲି ମୁଁ ତୀର୍ଥ
କେବଳ ଶୁଣିଛି ପ୍ରଭୁ ତବ ନାମ ମାତ୍ର ।
ନ ପଢ଼ିଲି ଶାସ୍ତ୍ର ମୁହିଁ କିଛି ନ ଜାଣଇ
ନୁହଇ ଭକତ ତୋର ଅଭକତ ମୁହିଁ ।
ଶୟନେ ସ୍ୱପନେ ଦିନେ ତୋତେ ଦେଖିନାହିଁ
ତୋ ରୂପ ଦେଖିବା ପାଇଁ ସର୍ବଦା ଭାବଇ ।
କରୁଣା କରି ହେ ନାଥ ଚିତ୍ରପଟ ତୋର
ଦେଖାଇ ଦିଅନ୍ତୁ ହୃଦ ସ୍ଥିର ହେଉ ମୋର ।
ଶିବ ଇନ୍ଦ୍ର ବ୍ରହ୍ମା ଆଦି ଯେ ପାଦ ବନ୍ଦନ୍ତି
ସେ ପାଦରେ କିସ ଅବା କରିବି ମୁଁ ଭକ୍ତି ।
ବୌଦ୍ଧରୂପେ ନାରାୟଣ ତୁମ୍ଭେ ବୁଦ୍ଧିଦାତା
ଭବ ଜଳଧିରୁ ପ୍ରଭୁ ତୁମ୍ଭେ ଉଦ୍ଧାରନ୍ତା ।

ଅପଣ୍ଡିତ ଅଟେ ମୁହିଁ କିଛି ନ ଜାଣଇ
ଉଦ୍ଧାର କର ହେ ପ୍ରଭୁ ଜ୍ଞାନଚକ୍ଷୁ ଦେଇ ।
ତୁମ୍ଭ ଆଶ୍ରା ବିନା ପ୍ରଭୁ ନ ଜାଣଇ ଆନ
ମାର ତାର ଯାହାକର ତବ ପାଦେ ଧ୍ୟାନ ।
ତୁଳସୀବଲ୍ଲଭ ତୁମ୍ଭେ ଲକ୍ଷ୍ମୀ ପ୍ରାଣବନ୍ଧୁ
ଶାରଳା ଦାସଙ୍କୁ ଗତି ଦିଅ କୃପାସିନ୍ଧୁ ।



## ଯୁଧିଷ୍ଠିର ବାଞ୍ଛାବଟଙ୍କୁ ସ୍ତବ ଓ ସାହାଡ଼ା ପତ୍ରର ମାହାତ୍ମ୍ୟ

ପୁନରପି ପୁଚ୍ଛାକଲେ ବିଲଙ୍କ ରାଜନ
ଅଗସ୍ତି ମୁନିଙ୍କ ପାଦେ କରି ନିବେଦନ ।
ଏପରେ ପାଣ୍ଡବମାନେ କଲେ ଯେଉଁ କଥା
ତାହା କହିଣ ମୋହର ଫେଡ ମନୋବ୍ୟଥା ।
ଅଗସ୍ତି କହିଲେ ଶୁଣ ମନୁ ନରନାଥ
ଏହାପରେ ଯାହାକଲେ କୁନ୍ତୀ ପାଞ୍ଚପୁତ୍ର ।
ଶମୀବୃକ୍ଷର ନିକଟେ ଶିଶୁଲତା ତଳେ
କଣ୍ଟଭଦ୍ରା ନାମେ ନଦୀ ଉତ୍ତର କୂଳରେ । ।
ବିଷ୍ଣୁପ୍ରସାଦ ନାମରେ ଏକଇ ପର୍ବତ
ତହିଁଥିଲେ ବାରବର୍ଷ ହେଲା ସମାପତ ।
ଧନୁମାସ ଶୁକ୍ଳପକ୍ଷ ଚଉଠିର ଦିନ
ଶତଭିଷା ଋକ୍ଷ ଗୁରୁବାର ଅଟେ ଜାଣ ।
କିଂସ୍ତୁଘ୍ନ ନାମେ କରଣ ଆୟୁଷ୍ମାନ ଯୋଗ
ଧନୁ ସଂକ୍ରାନ୍ତିକୁ ଊନବିଂଶ ଦିନ ଭୋଗ ।
ଆରଣ୍ୟକ ବନବାସ ଦ୍ୱାଦଶ ବରଷ
ଏହିଠାରେ ଥିଲେ ଯହୁଁ ହୋଇଲାକ ଶେଷ ।
ସହଦେବ ଠାରୁ ବୁଝି ଧର୍ମଙ୍କ ନନ୍ଦନ
ଅଜ୍ଞାତ ବାସକୁ ତହିଁ ବଳାଇଲେ ମନ ।
ବୋଇଲେରେ କହ ବାବୁ ଶୁଭବେଳଗୋଟି
ଯେପରିକି ଅମଙ୍ଗଳ ଆମ୍ଭଙ୍କୁ ନ ଘଟି ।
ଶୁଣି ସହଦେବ କହେ ଧର୍ମ ପାଦେ ନମି
ଧନୁ ଶୁକ୍ଳପକ୍ଷ ଗୁରୁବାର ଯେ ଦଶମୀ ।
ତୈତିଳ ନାମେ କରଣ ନକ୍ଷତ୍ର ରେବତୀ
ଚନ୍ଦ୍ରଙ୍କର ଶୁଭବେଳା ଅଟେ ଦିବାରାତି ।
ସ୍ୱାମୀ ପ୍ରାତଃକାଳେ ଯୋଗ୍ମୀମହାଲକ୍ଷ୍ମୀ ମୂର୍ତ୍ତି
ମକର ଯାନେ ଐଶାନ କୋଣରେ ଯେ ସ୍ଥିତି ।
ମତ୍ସ୍ୟଦେଶ ଅନୁକୂଳ କଲେ ଦକ୍ଷିଣାଙ୍ଗ
ଧନୁଲଗ୍ନେ ପାପଗ୍ରହ ନାହିଁ ମହାଯୋଗ ।
ବିଜୟ କରିଲେ ଆମ୍ଭେ ଏହି ଅନୁକୂଳେ
ସର୍ବଶୁଭରେ ବଞ୍ଚିବା ବିରାଟ ମଣ୍ଡଳେ ।
ଏହିରୂପେ ସହଦେବ କହିଲେ ବୁଝାଇ
ବାଞ୍ଛାବଟ ତଳେ ସର୍ବେ ଶୁଣୁଥିଲେ ରହି ।
ସେହିଠାରେ ଯୁଧିଷ୍ଠିର ସେ ବଟକୁ ଚାହିଁ
ଜଣାଇଲେ ତାଙ୍କ ସ୍ତବେ ଭକ୍ତିଭାବ ବହି ।
ଭୋ ମହତ ବଟ ତୁମ୍ଭେ ଶୁଣ ଆମ୍ଭ କଥା
ମତ୍ସ୍ୟଦେଶେ ଗୁପ୍ତ ହେବୁ ନ କହିବୁ ମିଥ୍ୟା ।
ଅଜ୍ଞାତବାସ ଅଛଇ ବର୍ଷେ ତେରଦିନ
କେହି ଜାଣନ୍ତା ନୋହିବ ଆମ୍ଭ ବର୍ଣ୍ଣଚିହ୍ନ ।
ଦିନ ବଞ୍ଚୁ ଥିବୁ ଆମ୍ଭେ ନିୟତ ଭାବରେ
ସୁଖେ ଅଜ୍ଞାତ ବଞ୍ଚିବୁ ତୋର ପ୍ରସାଦରେ ।
ଭାବଗ୍ରାହୀ ଜଗନ୍ନାଥ ବାଞ୍ଛା କଳ୍ପବୃକ୍ଷ
ଯେ ଯାହା ଇଚ୍ଛଇ ତାହା ଦେଉ ତୁ ପ୍ରତ୍ୟକ୍ଷ ।
ଆମ୍ଭ ଅନୁକୂଳ ବଟ କର ସର୍ବସିଦ୍ଧି
ହେ ଗୁଣସାଗର ତରୁ ସଞ୍ଚ ଆମ୍ଭ ବିଧି ।
ତାହାର ନିକଟେ ଅଛି ବୃକ୍ଷ ସାହାଡ଼ାର
ତହିଁ ତଳେ ଯାଇ ବସେ ପବନକୁମର ।
ଏ ସମୟେ ଏକପତ୍ର ଝଡ଼ିଣ ପଡ଼ିଲା
ଯୁଧିଷ୍ଠି ଦେଖନ୍ତେ ନେଇ କାନରେ ଖୋସିଲା ।
ସହଦେବ ମୁଖ ଚାହିଁ ହସେ ଧର୍ମସୁତ
ଅବାଟରେ ଏହା ମନ ଥାଏ ଅନୁବ୍ରତ ।
ବାଟେ ନ ଚାଲଇ ଏହୁ ଅମଡ଼ା ମାଡ଼ଇ
ପତିଧର୍ମ ଯହିଁ ତହିଁ ଦଣ୍ଡେ ନ ବସଇ ।
ସୁଜ୍ଞାନୀ ପଣ୍ଡିତଙ୍କର ପାଖରେ ନ ବସି
କୁଜନ ଗୋଷ୍ଠୀରେ ଏହି ବସେ ଦିବାନିଶି ।
କୁଭୂମି ପାଇଲେ କରେ ସୁଭୂମିକୁ ତେଜ୍ୟା
ସୁପାତିକୁ ଉପେକ୍ଷିଣ ତଳେ କରେ ଶଯ୍ୟା ।
କୁସ୍ଥାନରେ ବାସ ଯାର କୁଜନରେ ଗୋଷ୍ଠୀ
କୁମନ୍ତ୍ର କୁବିଦ୍ୟା ପଥେ ଯାର ମନ ଖଟି ।
ଦେଖ ହେ ମହତ ବଟ ବାଞ୍ଛା କଳ୍ପତରୁ
ଅଜ୍ଞାନେ ରହିବା ପାଇଁ ଆମ୍ଭେ ସ୍ତମ୍ଭ କରୁ ।
କିଛି ଭକ୍ତି ନ କଲା ଏ କିଛି ନ ବୋଇଲା
ସାହାଡ଼ାଙ୍କୁ କି କି କହି ପତ୍ରେକ ଖୋସିଲା ।
ଅଗ୍ନିଙ୍କର ବର ଦେବା ବିଅର୍ଥ ହୋଇବ
ସୂପକାର ବୃତ୍ତି ଯାର କଦାପି ନୋହିବ ।
ଭୀମ ବୋଲେ ତୁମ୍ଭେ ଦେବ କିଛିହିଁ ନ ଜାଣ
ଏ ସାହାଡ଼ା ବୃକ୍ଷଗୋଟି ଅଟେ ବଡ଼ଜଣ ।
ଯୁଧିଷ୍ଠି ବୋଇଲେ ତୁହି ଜାଣିଲୁ କିପରି
ସେହି କଥା ମୋ ଆଗରେ କହ ତୁ ବିସ୍ତାରି ।
ଭୀମସେନ ବୋଲେ ଦିନେ କଇଲାସ ପତି
ବୃଷଭ ଆରୋହି ଦିଗ ଭ୍ରମି ଯାଉଛନ୍ତି ।
ସାହାଡ଼ାବୃକ୍ଷ ବୃଷଭ ପଥରେ ଦେଖିଲା
ତହିଁରୁ ଗୋଟିଏ ପତ୍ର ଶିରେ ଲଗାଇଲା ।
ତାହା ଦେଖି ସେ ବୃଷକୁ ଶିବ ପଚାରିଲେ
ସାହାଡ଼ା ପତ୍ର ଲଗାଉ କିପାଁ ତୁ ମଥାରେ ।
ଚନ୍ଦନ ଅଗୁରୁପତ୍ର ମାଥେ ନ ଲଗାଇ
ସାହାଡ଼ା ପତ୍ର ରଖିଲୁ ମଥାରେ କିପାଇଁ ।

ବୃଷ ବୋଲେ ସ୍ୱାମୀ ବାମେ ସାହାଡ଼ା ଦେଖିଲେ
ଭଲ ଖାଦ୍ୟ ମିଳେ ପତ୍ର ଶିରେ ଛୁଆଇଁଲେ ।
ବୃଷଭର କଥା ଶୁଣି ଈଶ୍ୱର ହସିଲେ
କିପରି ଖାଦ୍ୟ ମିଳିବ ଦେଖିବା ଭାବିଲେ ।
ଏପରି ଭାବନା କରି ବୃଷଭ ଆରୋହି
ଅବିଶ୍ରାମେ ଭ୍ରମୁଛନ୍ତି ବୃଷଭକୁ ନେଇ ।
କାହିଁ ନ ଛାଡ଼ନ୍ତି ତାକୁ ଦେବ ତ୍ରିପୁରାରି
ଜଳ ତୃଣଆଦି କିଛି ନ ପାରିଲା ଚରି ।
ଏମନ୍ତେ ଭ୍ରମନ୍ତେ ସୂର୍ଯ୍ୟ ଅସ୍ତଗତ ହେଲେ
ତଦପରେ କୈଳାସକୁ ରୁଦ୍ର ବାହୁଡ଼ିଲେ ।
ଅମୃତ ପାକ ଯୋଗାଡ଼ କରିଣ ପାର୍ବତୀ
ଚାହିଁ ଚାହିଁ ବିମୁଖରେ ବସି ଭାବୁଛନ୍ତି ।
କେବଣ ଭୁବନେ ଅବା ରହିଲେ ଈଶାନ
ଅଥବା ମଣୋହି ହେଲା କେବଣ ଭୁବନ ।
ବେଳ ଅବସାନ ଦେବୀ କରି ନିତ୍ୟ କୃତ୍ୟ
ମଣୋହିକି ବିଜେକଲେ ସେ ଜଗତମାତ ।
ପାଞ୍ଚଥର ମାତ୍ର ଦେବୀ ଗ୍ରାସ କରିଛନ୍ତି
ଡମ୍ବରୁ ଶବ୍ଦ ଏକାଳେ ଶୁଣିଲେ ସେ ସତୀ ।
ସ୍ୱାମୀ ଆସିଲେ ବୋଲିଣ ଉଠି ଧାତିକାରେ
ଉଚ୍ଛିଷ୍ଟ ଫିଙ୍ଗିଲେ ନେଇ ବୃଷଭ କୁଣ୍ଡରେ ।
ଗୁହାଳ ଭିତରେ ତାହା କୁଣ୍ଡରେ ଥୋଇଲେ
ଘାସ ଲୁଚିଏ ତାହାର ପରେ ଘୋଡ଼ାଇଲେ ।
ଆଚମନ ସାରି ଦେବୀ ଘେନି ରତ୍ନଝରି
ସ୍ୱାମୀଙ୍କି ଦେଖିଣ ନିଜ ଦ୍ୱାରେ ରହିକରି ।
ବୃଷପୃଷ୍ଠୁ ଉତୁରିଣ ଦେବ ତ୍ରିଲୋଚନ
ଗୁହାଳେ ତାହାକୁ ନେଇ କରିଲେ ବନ୍ଧନ ।
ନନ୍ଦିକି ବୋଇଲେ ତୋତେ ମୁହିଁ କହୁଅଛି
ବୃଷଭକୁ ଘାସ ପାଣି ନ ଦେବୁ ତୁ କିଛି ।
ଭୋକେ କୁଣ୍ଡରେ ବୃଷଭ ମାରନ୍ତେ ଯେ ମୁଖ
ପାଇଲାକ ଅପୂରୁବ ସୁଧାମୟ ଭକ୍ଷ୍ୟ ।
ଷଡ଼ରସର ଯୋଗାଡ଼ ଯେତେକ ପଦାର୍ଥ
ବୃଷ ବୋଇଲା ପାଇଲି ସୁସ୍ୱାଦୁ ଅମୃତ ।
ଆହାର କରି ସନ୍ତୋଷେ ରହିଛି ବୃଷଭ
ସ୍ନାନ ଭୋଜନ କରିଣ ଗଲେ ମହାଦେବ ।
ମୋହର ବାହନ ହୋଇ ମୋତେ କରୁସେବା
ସାହାଡ଼ା ପତ୍ରୁ କି ଫଳ ପାଇବୁ ତୁ ଅବା ।
ଜାଣିବା କିରୂପେ ପ୍ରାପ୍ତ ହୋଇବୁ ଆହାର
ରଜନୀ ପ୍ରଭାତେ ମୋତେ ଦେବୁ ତୁ ଉତ୍ତର ।
ଆହାର ଭକ୍ଷି ବୃଷଭ ଥିଲା ସୁଖ ପାଇ
ତେଣୁ ମହାସୁଖରେ ସେ ନିଦ୍ରା ଅଛି ଯାଇ ।
ଶିବଙ୍କ ବଚନ ଶୁଣି ବୋଇଲା ବୃଷଭ
ଅମୃତ ମଣୋହି ଆଜି ପାଇଅଛି ଦେବ ।
ଭୋ ସ୍ୱାମୀ ବେଦଶାସ୍ତ୍ର କି ମିଥ୍ୟା ହୋଇପାରେ
ଫଳ ଲଭିଅଛି ପ୍ରଭୁ ତାର ଅନୁସାରେ ।
ସ୍ୱାମୀ ଯେତେକ ତୁମ୍ଭର ଯୋଗାଡ଼ ପ୍ରସ୍ତୁତ
ସେ ବୃଷ କୃପାରୁ ମୁହିଁ ପାଇଛି ସମସ୍ତ ।
ଉମାଙ୍କୁ ଚାହିଁ ବୋଇଲେ ଦେବ ଶୂଳପାଣି
ତୁମ୍ଭେ କି ଏହାକୁ ରାତ୍ରେ ଖାଦ୍ୟ ଦେଲ ଆଣି ।
ପ୍ରଣାମ କରି ତାହାଙ୍କୁ କହନ୍ତି ପାର୍ବତୀ
ତୁମ୍ଭଙ୍କୁ ମୁଁ ଚାହିଁ ଚାହିଁ ପ୍ରବେଶିଲା ରାତି ।
ଏ ସମୟେ ଯୋଗାଡ଼ ମୁଁ ବାଢ଼ି ଏକ ଯୋଗେ
ମଣୋହିରେ ବସିଥିଲି କ୍ଷୁଧାର ସରାଗେ ।
ସର୍ବେ ପାଞ୍ଚଥର ମୁହିଁ କରିଅଛି ଗ୍ରାସ
ଡମ୍ବରୁ ନାଦ କରିଣ ହୋଇଲେ ପ୍ରବେଶ ।
ଡମ୍ବରୁ ନାଦକୁ ଶୁଣି ସବୁ ଘେନିଗଲି
ବୃଷଭ କୁଣ୍ଡରେ ତାହା ପକାଇ ଅଇଲି ।
ଏହା ଶୁଣିଣ ହସିଲେ ଦେବ ସଦାନନ୍ଦ
ସାହାଡ଼ା ବୃକ୍ଷକୁ ବନ୍ଦ ଏଣୁ ସାଧୁ ବୃନ୍ଦ ।
ଭୀମ ବୋଲେ ଏସନକ ପୂର୍ବୁ ଅଛି କଥା
ତେଣୁ ପତ୍ର ଖୋଷିଅଛି ବୁଝ ଆହେ ଭ୍ରାତା ।
ଏହା ଶୁଣିଣ ସାନନ୍ଦ ହେଲେ ଧର୍ମବାଳ
ବୋଇଲେ ମୂର୍ଖ ହୋଇ ତୋ ବୁଦ୍ଧି ଅନର୍ଗଳ ।
ବାଞ୍ଛାବଟ ତଳେ ବସି ପାର୍ଥ ପାଞ୍ଚଭାଇ
ଏହିପରି କଥାବାର୍ତ୍ତା ହେଉଥିଲେ ରହି ।
ରଜନୀ ପାଞ୍ଚଘଡ଼ିରେ ଦେବ ଯୁଧିଷ୍ଠିର
ପଦ୍ମାସନେ ବସିକରି ଯୋଡ଼ି ବେନିକର ।
ସ୍ମରଣ କରନ୍ତି ମନେ ସେହୁ ବାକ୍ୟଦେବୀ
ବିରାଟେ ବିଜେ କର ଗୋ ପରମ ବୈଷ୍ଣବୀ ।
ତୁହି ଯାଇ ପରସନ୍ନ ହୁଅ ରାଜାମନେ
ଅବିଘ୍ନେ ଯେପରି ତହିଁ ରହୁ ଆମ୍ଭେମାନେ ।
ହିମମନ୍ଦର ନନ୍ଦିନୀ ଆଗୋ ଧବଳାଙ୍ଗୀ
ଇଚ୍ଛାସୁଖେ ମୋହିଲୁ ଗୋ ତୁହି ମହାଯୋଗୀ ।
ଶତପତ୍ର ଆସନ ଗୋ କରି ବ୍ରହ୍ମବେଣୀ
ମୋହିଲୁ ଶ୍ରୀକୃଷ୍ଣ ଗଙ୍ଗାଧର ସୁରବାଣୀ ।
କେଶରୀ ବାହିନୀ ପୂର୍ଣ୍ଣ କର ମୋର ଆଶ
ତୋ ଶରଣ ଶୂଦ୍ରମୁନି ଶ୍ରୀ ଶାରଳା ଦାସ ।



## ତ୍ରିପୁରାସୁର ବଧ

ଏଥୁଅନ୍ତେ ପୁଚ୍ଛାକଲେ ମନୁ ମହୀପତି
ଏହାପରେ କିସ ହେଲା କହ ବ୍ରହ୍ମଯତି ।
ଅଗସ୍ତି କହିଲେ ଶୁଣ ହେ ମନୁ ରାଜନ
ବାକ୍ୟଦେବୀଙ୍କୁ ସୁମରି ଭାଇ ପାଞ୍ଚଜଣ ।
ବାଞ୍ଛାବଟ ସ୍ଥାନ ତେଜି ଗମିଣ ଯେ ଗଲେ
ତ୍ରିପୁରାନ୍ତକ ପର୍ବତେ ବିଶ୍ରାମ ସେ କଲେ ।

ପର୍ବତ ଶୋଭା ବସିଣ ଦେଖନ୍ତି ସମସ୍ତେ
ଧର୍ମ ବୋଇଲେ ତ୍ରିପୁର ବଧ ହେଲା ଏଥେ ।
ଦ୍ରୌପଦୀ ପୁଚ୍ଛିଲେ ମଲା କେମନ୍ତ ଅସୁର
କାହା ପୁତ୍ର ସେହୁ ତାର କେଉଁଠାରେ ଘର ।
ଯୁଧିଷ୍ଠି ବୋଇଲେ ମଧୁପୁରୀ ଏକଗ୍ରାମ
ବହୁ ମହାଜନ ତହିଁ କରନ୍ତି ବିଶ୍ରାମ ।
ମଧୁଶ୍ରବଣ ବୋଲିଣ ଏକଇ ବ୍ରାହ୍ମଣ
କୁରଞ୍ଜାନୀ ବୋଲିକରି ତା ଭାରିଯା ନାମ ।
ଜ୍ୟେଷ୍ଠମାସ କୃଷ୍ଣପକ୍ଷ ଅଷ୍ଟମୀର ଦିନ
ପ୍ରଥମ ରଜୋବତୀ ସେ ହେଲା ପ୍ରିୟେ ଜାଣ ।
ସମ୍ବତ୍ସର ଅନ୍ତେ ତାର ସ୍ୱାମୀ ନାଶଗଲା
ଶାସେକ ଶୂଦ୍ରକୁ ଘେନି ସେହି ଘର କଲା ।
ଯୁବାବସ୍ଥାରେ ସମ୍ଭାଳି ନ ପାରି ବ୍ରାହ୍ମଣୀ
ଆପଣା ଇଚ୍ଛାରେ ହେଲା ଶୂଦ୍ରର ଘରଣୀ ।
ବ୍ରାହ୍ମଣୀର ରଜ ଆଉ ଶୂଦ୍ରର ବୀର୍ଯ୍ୟରେ
ଗୋଟିଏ ପୁତ୍ର ରହିଲା ବ୍ରାହ୍ମଣୀ ଗର୍ଭରେ ।
କାର୍ତ୍ତିକ ଶୁକ୍ଳ ପୂର୍ଣ୍ଣମୀ ଗୁରୁବାର ଦିନ
କୃତ୍ତିକା ନକ୍ଷତ୍ର ଗୋଟି ଅଟେ ବିଦ୍ୟମାନ ।
ବିଷ୍ଟି ନାମରେ କରଣ ନାଗନାମେ ଯୋଗ
ପଞ୍ଚମ ଘରର ରାହୁ କରେ ଦିବା ଭୋଗ ।
ନଗ୍ର ଛାଡ଼ି ସେ ବ୍ରାହ୍ମଣୀ ମିଳେ ବନସ୍ତରେ
ପୁତ୍ର ଜାତ ହେଲା ରାତ୍ର ତେରଦଣ୍ଡ ଠାରେ ।
କୃତ୍ତିକା ବୃଷର ରାଶି ଜାତି ବ୍ରହ୍ମାସୁର
ତାମ୍ରବର୍ଣ୍ଣ ନେତ୍ର ଦ୍ୱୟ ଦିଶେ ସେ ଶିଶୁର ।
ଯେତେବେଳେ ପୁତ୍ର ଗର୍ଭୁ ଜନମ ହୋଇଲା
ଶାସେକ ଶୂଦ୍ରେ ତାହାର ପାଖରେ ନ ଥିଲା ।
ସେ ପୁତ୍ରଗୋଟି ଘେନି ସେ ବିଧବା ବ୍ରାହ୍ମଣୀ
ସେହିଠାରେ ରହି ବଞ୍ଚେ ଦିବସ ରଜନୀ ।
ଫଳମୂଳ ଖାଇକରି ବଞ୍ଚୁ ଥାଇ ଦିନ
ସାତ ବରଷର ତହୁଁ ହୋଇଲା ନନ୍ଦନ ।
ସିଂହ କୃଷ୍ଣ ଅମାବାସ୍ୟା ଅଟେ ସୋମବାର
ନାରଦ ପ୍ରବେଶ ହେଲେ ବାଳକ ପାଶର ।
ତୁଙ୍ଗଭଦ୍ରା ନଦୀକୂଳେ ଖେଳେ ବାଳଶିଷି
ଦଣ୍ଡ କମଣ୍ଡଳୁ ଘେନି ଯାଉଥିଲେ ଋଷି ।
ସେ ନନ୍ଦନ ମୁନିପାଦେ କଲା ନମସ୍କାର
ଦେଖିଣ ବିସ୍ମୟ ହେଲେ ବ୍ରହ୍ମାଙ୍କ କୁମର ।
ଆରେ ଚଣ୍ଡାଳ ତୁ ମୋତେ ହେଲୁ ନମସ୍କାର
ଆମ୍ଭର ସୁକୃତ ଗଲା ଆଜି ଦିନକର ।
ସେ ପୁତ୍ର ବୋଲଇ ମୁନି ଦେଖିଲେ ବ୍ରାହ୍ମଣ
ନିତି ତାଙ୍କୁ ନମସ୍କାର କରେ ମୁହିଁ ଜାଣ ।
ମୁନି ବୋଇଲେ ତୁ ମୋତେ କଲୁ ନମସ୍କାର
କହ କେ ତୋ ପିତା ମାତା ଜାତି କିସ ତୋର ।
ନାରଦ ବୋଇଲେ ତୁହି ନ ଜାଣୁରେ ପାପ
ମାତାକୁ ପଚାର ଯାଇ କେହୁ ତୋର ବାପ ।
ତୋହର ମାତା କହିବ ସକଳ ତଦନ୍ତ
ତୁ ଆମ୍ଭଙ୍କୁ କାହିଁକି ରେ କଲୁ ଦଣ୍ଡବତ ।
ଋଷିଙ୍କ ବଚନ ଶୁଣି ବୋଲେ ସେ ବାଳୁତ
ଭୂତ ଭବିଷ୍ୟତ ଜ୍ଞାତା ତୁମ୍ଭେ ତପୋବନ୍ତ ।
ମୋହର କେ ପିତା ତୁମ୍ଭେ କହ କିନାମୋତେ
ମାତାକୁ ପଚାରି ମୁହିଁ ବୁଝିବି ପଶ୍ଚାତେ ।
ନାରଦ ବୋଇଲେ ଆହେ ବୁଝି ଆସ ଯାଇ
ସେ ଶୁଣି ଗଲା ମାତାକୁ ପଚାରିବା ପାଇଁ ।
ଏଣେ ନାରଦ ମହର୍ଷି ହେଲେ ଅନ୍ତର୍ଦ୍ଧାନ
ତେଣେ ବ୍ରାହ୍ମଣୀକି ଯାଇ ପୁଚ୍ଛେ ତା ନନ୍ଦନ ।
କେ ମୋହର ପିତା ଆଗେ କହ ମହାମ୍ମାଣୀ
ମାତା ବୋଲେ ମୁହିଁ ବାବୁ ବିଧବା ବ୍ରାହ୍ମଣୀ ।
ପିତା ତୋହର ଶାସେକ ଶୂଦ୍ର ଆରେ ସୁତ
ପୁତ୍ର ବୋଇଲାକ ହେଲି ମୁଁ ଗୋଳକ ପୁତ୍ର ।
ତୋହ ଯୋଗେ ମାତା ମୁହିଁ ହେଲି କଳଙ୍କିତ
କହ କାହା ସେବା କରି ହୋଇବି ମୁକତ ।
ଶୁଣି ମାତା ବୋଇଲେକ ଶୁଣରେ କୁମର
କଳଙ୍କ ଖଣ୍ଡିବୁ ବାବୁ ଶିବ ସେବାକର ।
ଏମନ୍ତ ଶୁଣି ସେ ସାତ ବରଷ ନନ୍ଦନ
ଶିବ ସେବା କରିବାକୁ ବାଞ୍ଛା କଲା ମନ ।
ଏହି ପର୍ବତରେ ବସି ବହୁ ତପ କଲା
ଷଷ୍ଟି ସସ୍ର ବର୍ଷଯାଏ ପବନ ଭକ୍ଷିଲା ।
ଘୋର ତପ ଦେଖି ତାର ଆସି ପଶୁପତି
ଜୀବନ୍ୟାସ ମନ୍ତ୍ରେ ପୁଣି ସିଞ୍ଚିଲେ ବିଭୂତି ।
ବସିଲେ କୁମର ତହୁଁ ହୋଇ ସଚେତନ
ବୋଲେ କେଉଁ ମହାତମା ଭାଙ୍ଗିଲ ମୋ ଧ୍ୟାନ
ଈଶ୍ୱର ବୋଇଲେ ସେବା କରୁ ତୁ କାହାର
ନିଜେ ମୁହିଁ ବିଶ୍ୱନାଥ ଅନାଦି ଈଶ୍ୱର ।
କୁମର ବୋଇଲେ ସ୍ୱାମୀ ଯେବେଟି ଈଶାନ
ନିଜରୂପ ଧର ତୁମ୍ଭେ କରିବି ଦର୍ଶନ ।
ତତକ୍ଷଣେ ନିଜରୂପ ଧଇଲେ ମହେଶ
ହସ୍ତେ ଶୋଭଇ ଡମ୍ବରୁ ଯେ ପାଶ ଅଙ୍କୁଶ ।
ବିଭୂତି ଭୁଷଣ ଅଙ୍ଗେ ଶୋହେ ପାଞ୍ଚଶିର
ଦଶକରେ ଦଶାୟୁଧ ଅଛି ତାହାଙ୍କର ।
ଗଳେ ଶୋହେ ହାଡ଼ମାଳା ଶିରେ ଶୋହେ ଜଟା
ପିନ୍ଧିଛନ୍ତି ସେହି ବ୍ୟାଘ୍ର ଚର୍ମରେ କାଛଟା ।

ଅନନ୍ତ ନାଗ ପଇତା କାନ୍ଧରେ ତାଙ୍କର
ଧାତୁରା ଫୁଲ କର୍ଣ୍ଣରେ ଦିଶଇ ସୁନ୍ଦର ।
ଜାହ୍ନବୀ ଚନ୍ଦ୍ର ମସ୍ତକ ଦିଶେ ଶୋଭାବନ
ଯୁଗଳ ନୟନ ଦିଶେ ଲୋହିତ ବରନ ।
ଅନନ୍ତ ରୂପ ଧାରଣ ବିଜେ ଦେବରାଜା
ଜାନୁପରେ ପଦ୍ମାସନେ ବିଜୟ ଶୈଳଜା ।
ବକ୍ଷସ୍ଥଳେ ଶୋଭାପାଏ ସେ ଅମୂଲ୍ୟ ମଣି
ବେନି କର୍ଣ୍ଣରେ କୁଣ୍ଡଳ ରବି ଶଶି ଜିଣି ।
ଏମନ୍ତ ସ୍ୱରୂପ ଦେଖି ବିଜେ ମହେଶ୍ୱର
କୁମରକୁ ବୋଇଲେ ତୁ ମାଗି ଘେନ ବର ।
କୁମର ବୋଇଲେ ପ୍ରଭୁ ସେବା କଲି ମୁହିଁ
ଦିଅ ମନୋମତ ବର ଆହେ ଉମାସାଇଁ ।
ସ୍ତିରୀଙ୍କର ତିନିବର ପୁଂସେ ଦଶ ବର
ଏ ଦଶ ବର ମାଗିବି ଦିଅ ମହେଶ୍ୱର ।
ଦଶବରୁରୁ ଯଦ୍ୟପି ମାଗିବି ଅଧିକ
ଶାସ୍ତ୍ର ପରମାଣେ ମୋର ଛେଦିବ ମସ୍ତକ ।
ତିନିବରରୁ ଅଧିକ ମାଗେ ଯେବେ ସ୍ତିରୀ
ନାସା ଛେଦନ ଅବଶ୍ୟ ହୁଅଇ ତାହାରି ।
ମୋର ମନ ଜାଣି ପ୍ରଭୁ ବର ଦେବ ମୋତେ
ତୁଦେଠାରୁ ମାଗିବି ମୁଁ ଅସ୍ତ ପରିଯନ୍ତେ ।
ସଦାନନ୍ଦ ବୋଇଲେ ତୁ କିସ ମନେ ଇଛୁ
ହେଉ ତା ପ୍ରାପତ ତୋତେ ମନେ ଯାହା ବାଞ୍ଛୁ ।
ସ୍ୱାମୀ ଇଚ୍ଛାବର ଯେବେ ଦେଲ ହେ ଧୂର୍ଜଟି
ଦିଅ ପ୍ରଭୁ ବହିବି ମୁଁ ତବ ନାମ ଗୋଟି ।
ଈଶ୍ୱର ବୋଇଲେ ମୋର ନାମ ତ୍ରିପୁରାରି
ସେ ବୋଇଲା ଏହି ନାମ ଦିଅ ଶୂଳଧାରୀ ।
ଏ ଶରୀର ବଜ୍ର ପରି ହୋଇବ ମୋହର
ଦେବ ଦାନବେ ଜିଣିବି କରିଲେ ସମର ।
ସ୍ୱାମୀ ଆପ ତେଜ ବାୟୁ ପୃଥିବୀ ଆକାଶ
ଏ ପଞ୍ଚ ଭୌତିକେ ମୋର ହୋଇବେ ଯେ ବଶ
ବାହୁବଳେ ତିନିପୁର ପାରିବି ମୁଁ ସାଧି
ଶସ୍ତ୍ର ଧଇଲେ ସମାନ ନୋହିବ କେ ଯୋଧି ।
ସ୍ୱାମୀ ଇନ୍ଦ୍ର ଚନ୍ଦ୍ର ଆଉ ପବନ ଆଦିତ୍ୟ
ଯମ କୁବେର ବରୁଣ ଆଉ ଚଉମାଥ ।
ଏହାଙ୍କୁ ରଣେ ଜିଣିବି ମୁହିଁ ଶସ୍ତ୍ର ଧରି
ଏହି ବର ଦିଅ ମୋତେ ଆପେ ତ୍ରିପୁରାରି ।
ଦିବ୍ୟଚକ୍ଷୁ ଦିଅ ମୋତେ ଆହେ ଦେବଦେବ
ଯହିଁରେ ଚାହିଁଲେ ସବୁ ବ୍ରହ୍ମାଣ୍ଡ ଦିଶିବ ।
ଶସ୍ତ୍ରେ ଭେଦ ନୋହିବଟି କେଭେ ମୋର ଅଙ୍ଗ
ବଜ୍ରଶକ୍ତି ଶୂଳ ଚକ୍ର ସର୍ବେ ହେବେ ଭଙ୍ଗ ।
କାଳପାଶ ଯମପାଶ ନାଗପାଶ ତିନି
କାଳଦୂତେ ନ ପାରିବେ ନେଇ ସଂଯମନୀ ।
ଏକସ୍ତରି ଗଣ୍ଡା ଯୁଗେ ହୁଏ ଏକ ମନୁ
ଏକ ଏକ ମନୁ ହେଲେ ଛାଡ଼ିବି ମୁଁ ତନୁ ।
ଈଶ୍ୱର ବୋଇଲେ ଅସ୍ତୁ ଯେ ତୋହର ଚିତ୍ତ
ଏ ସମସ୍ତ ବର ତୋତେ ହେଉ ପରାପତ ।
ସ୍ୱାମୀ ଦିବି ଭୁବି ଚଳ ଏହି ତିନିପୁର
ବିଶ୍ୱରୂପରେ ଘୋଟିବ ମୋହର ଶରୀର ।
ନାରାୟଣଙ୍କ ହସ୍ତରେ ନୋହିବ ମୁଁ ହତ
ଅଶ୍ୱବିଦ୍ୟାରେ ହୋଇବି ମୁହିଁ ସମରଥ ।
ଶୂନ୍ୟପୁରୁଷମାନେଟି ଯେତେକ ଅଛନ୍ତି
ସେମାନେ ହୋଇବେ ଜାଣ ମୋର ବଶବର୍ତ୍ତୀ
ତୁମ୍ଭେ ମୋତେ ସମାନଟି ନୋହିବ ହେ ହର
କପିଳାସ ତେଜିକରି ହୋଇବ ଅନ୍ତର ।
ତୁମ୍ଭର ଚରଣେ କେହି ନ କରିବେ ପୂଜା
ତୁମ୍ଭ ସ୍ଥାନେ ବସି ମୁହିଁ ବୋଲାଇବି ରାଜା ।
ଈଶ୍ୱର ବୋଇଲେ ଆରେ କଲି ମୁହିଁ ସତ୍ୟ
ତୁ ଯାହା ମାଗୁ ସମସ୍ତ ହେଉ ତୋତେ ପ୍ରାପ୍ତ ।
ସ୍ୱାମୀ ପିନାକ ସାରଙ୍ଗ ଅକ୍ଷୟ ଯେ ତୂଣ
ଏହା ସବୁ ବିଶ୍ୱନାଥ ଦିଅ ଏହିକ୍ଷଣ ।
ତ୍ରିଶୂଳ ଶକ୍ତି ଅମୋଘ ଯେଉଁ ମୁଦ୍ଗର
ଅଧାଚନ୍ଦ୍ର ମହାକାଳ ପାଶୁପତ ଶର ।
ତ୍ରିପୁର ବଚନେ ଦେବ ଦେଲେ ସେ ସମସ୍ତ
ପୁଣି ମାଗେ ବୃଷଭକୁ ଦିଅ ବିଶ୍ୱନାଥ ।
ଏକାଦଶ ଲୋକମାନେ ଜିଣନ୍ତା ନୋହିବେ
ତ୍ରିଦଶଦେବତା ମୋର ସେବା ଯେ କରିବେ ।
ଈଶ୍ୱର ବୋଇଲେ ଅସ୍ତୁ ହେଲୁ ତୁ ତୃପତି
ଡମ୍ବରୁ ବୃଷ ଇତ୍ୟାଦି ଦେଲେ ପଶୁପତି ।
ଏରୂପେ ବର ଦିଅନ୍ତେ ଦେବେ ଶଙ୍କାକରି
ଆଣିଲେ ବାକ୍ୟଦେବୀଙ୍କୁ ପାଶକୁ ହକାରି ।
ତୁ ଦେବୀ ବିଜୟ କର ତ୍ରିପୁର ହୃଦରେ
ଗଙ୍ଗା ଉମାଙ୍କୁ ନ ମାଗେ ସେ ଯେଉଁ ପ୍ରକାରେ ।
ଦେବତାଙ୍କ ବଚନରେ ଗଲେ ସରସ୍ୱତୀ
ତ୍ରିପୁର ହୃଦଗତରେ ଯାଇ କଲେ ସ୍ଥିତି ।
ସମସ୍ତ ସେ ନେଲା ଗଙ୍ଗା ପାର୍ବତୀଙ୍କୁ ଛାଡି
ଈଶ୍ୱର ତାହାକୁ ସବୁ ଦେଲେ ସତ୍ୟେ ପଡ଼ି ।
ସୂର୍ଯ୍ୟଦେବଙ୍କୁ ବୋଇଲେ ଦେବ ପିତାମହ
ଶୀଘ୍ରଯାଇ ତୁମ୍ଭେ ମେରୁ ଉହାଡ଼ରେ ରହ ।
ବ୍ରହ୍ମା ବଚନେ ଚଳିଲେ ସେ ଦେବ ଆଦିତ୍ୟ
ତିରିଶ ଦଣ୍ଡ ନୋହୁଣୁ ହୋଇଲେ ସେ ଅସ୍ତ ।

ବର ମାଗନ୍ତେ ଆଦିତ୍ୟ ଯହୁଁ ଅସ୍ତ ହେଲେ
କଇଳାସ ଭୁବନକୁ ଶିବ ବିଜେ କଲେ ।
ଏହି ପର୍ବତେ ତ୍ରିପୁର ଦୈତ୍ୟଥାଏ ରହି
ଭୟେ ଦେବେ ନିତି ତାକୁ ଯୋଗାନ୍ତି ମଣୋହି ।
ଦିନେ ରଜନୀ ସମୟେ ସେ ତ୍ରିପୁର ଦୈତ୍ୟ
ଦେବସଭାରେ ପ୍ରବେଶ ହୋଇଲେ ତୁରିତ ।
ପଞ୍ଚବଦନ ତା ଜଟାକୁଟ ମସ୍ତକରେ
ପିନାକ ତ୍ରିଶୂଳ ପର୍ଶୁ ଖଟ୍ବାଙ୍ଗ ହସ୍ତରେ ।
ଦିଗବିଜୟ କଲା ସେ ବୃଷଭ ବାହନେ
ବିଜୟ କଲା ସେ ଯହୁଁ ଦେବସଭା ସ୍ଥାନେ ।
ଈଶ୍ୱରଙ୍କ ସମାନରେ ତାର ରୂପ ଦେଖି
ଦିଗପାଳେ ଯେ ଉଠିଲେ ଆସ୍ଥାନ ଉପେକ୍ଷି ।
ଈଶ୍ୱର ଆସ୍ଥାନେ ଯାଇ ଦୈତ୍ୟ ବସେ ମାଡ଼ି
ଦିଗପାଳେ ଉଭାହେଲେ କରପତ୍ର ଯୋଡ଼ି ।
ଜାଣିପାରି ମହାଭୟେ ସର୍ବ ଦିଗପାଳ
ପ୍ରଣିପତ୍ୟ ହୋଇଲେ ସେ ଦୈତ୍ୟପାଦତଳ ।
ସେ ଦିନ ସଭାକୁ ହରି ବିଜେ କରିଥିଲେ
ତ୍ରିପୁରକୁ ପିଠିକରି ଯହୁଁ ସେ ବସିଲେ ।
ତ୍ରିପୁର ବିଚାରେ ଏହୁ କଲା ମନ୍ଦପଣ
ପର୍ଶୁ ଘେନି ଏହା ଶିର କାଟିବି ଏକ୍ଷଣ ।
ମୁଁ ଅଟେ ଈଶ୍ୱର ଦେବ ପିଠିକଲା ମୋତେ
ପ୍ରଥମେ ଏହାକୁ ଦୁଃଖ ଦେବି ମୁଁ କେମନ୍ତେ ।
ମତ୍ତଗର୍ବେ ଏହି ମୋତେ ଚିହ୍ନି ନ ପାରିଲା
ଜାଣୁ ଜାଣୁ ଏହୁ ଆଜି ଅପମାନ ଦେଲା ।
ଶ୍ରୀକୃଷ୍ଣ ଭାବିଲେ ଏହି ରାକ୍ଷସ ତ୍ରିପୁର
ବର ପାଇ ମତ୍ତଗର୍ବେ ବହେ ଅହଙ୍କାର ।
ଏହା ଭାବି ପ୍ରତ୍ୟୁତ୍ତର ଦେଲେ ତ୍ରିପୁରକୁ
ଆହେ ନମସ୍କାର କିପାଁ ନ କର ଆମ୍ଭଙ୍କୁ ।
ତ୍ରିପୁର ବୋଇଲା ତୁହି ପୁରୁଷ ଉତ୍ତମ
ଈଶ୍ୱରଙ୍କୁ କିପାଇଁ ହୋ ନ କରୁ ପ୍ରଣାମ ।
ବିଷ୍ଣୁ ବୋଇଲେ ଈଶ୍ୱର ଆମ୍ଭ ସାନ ଭ୍ରାତ
ତାଙ୍କୁ ନମସ୍କାର ମୋର ନୁହଇ ବିହିତ ।
ଶିରେ ଧବଳାଙ୍ଗୀ ଥାନ୍ତି ଉମା ଥାନ୍ତି ହୃଦେ
ସେ ହେତୁରୁ ନମସ୍କାର କରୁ ଆମ୍ଭେ ହାଦେ ।
ମହିଷାର ବଧ ହେତୁ ଜାତ ହେଲେ ମାଏ
ତେଣୁ ତାଙ୍କୁ ପ୍ରଣମନ୍ତି ସର୍ବ ଦେବତାଏ ।
ଆହେ ଈଶ୍ୱର ଅଟନ୍ତି ଜଗତରେ ବାଇ
ତାଙ୍କୁ ସେବାକରି ବର ଆଣିଲୁ ଭୁଲାଇ ।
ତୋତେ ଈଶ୍ୱର ପଦ ସେ ଯଦ୍ୟପି ଦିଅନ୍ତା
ଗଙ୍ଗାଆଦି ଚାରିପତ୍ନୀ ତୋତେ ଦେଇଥାନ୍ତା ।
ଏ ଚାରି ପତ୍ନୀଙ୍କୁ ଯେବେ ସଙ୍ଗେ ଆଣିଥାନ୍ତୁ
ତେବେ ଅମର ମଣ୍ଡଳେ ତୁ ପୂଜା ପାଆନ୍ତୁ ।
ରେ ନର ଚାଣ୍ଡାଳ ତୋତେ ଈଶ୍ୱର ଭଣ୍ଡିଲା
ଅକାରଣେ ବରଗୁଡ଼ା ପୁଣି ତୋତେ ଦେଲା ।
ଆମ୍ଭର ବୋଲକର ତୁ ଯାଅ ଏହିକ୍ଷଣ
ଶିବଙ୍କ ଚାରି ଭାରିଯା ମାଗିକରି ଆଣ ।
ତେବେ ଜାଣିବୁ ତୁ ହେବୁ ଦେବତାଙ୍କ ସ୍ୱାମୀ
ତେବେ ଆମ୍ଭେ ତୋତେଯାଇ ହେବୁ ପରଣାମି
ଚାରି ଭାରିଯାକୁ ଯେବେ ଆଣି ନ ପାରିବୁ
ଦ୍ୱିପତ୍ନୀ ଆଣିଲେ ଅର୍ଦ୍ଧଈଶ୍ୱର ହୋଇବୁ ।
କେବେ ତୋତେ ସେହି ଦୁଇଭାରିଯା ନ ଦେବ
ବୃଦ୍ଧ ଈଶ୍ୱର କିପାଇଁ ଆଉ ବର୍ତ୍ତିଥିବ ।
ଯାଅ ବେଗେ କଇଳାସ ତୁହି ଏହିକ୍ଷଣ
ତାହାର ମସ୍ତକ ଏବେ ଛେଦ ତୁ ଯାଇଣ ।
ତାଙ୍କର ପତ୍ନୀମାନଙ୍କୁ ଯେବେ ତୁ ଆଣିବୁ
ଅମରମଣ୍ଡଳେ ତୁହି ସୁନ୍ଦର ଦିଶିବୁ ।
ପୁରୁଣା ଈଶ୍ୱର ଗୋଟି ଜୀବିତରେ ଥିଲେ
ତୋତେ ପୂଜିବୁ କିପାଇଁ ଶ୍ରୀକୃଷ୍ଣ ବୋଇଲେ ।
ରାକ୍ଷସେ ବୋଧିଲେ କହି ଚକ୍ରକୁଟ ବୁଦ୍ଧି
ମୂର୍ଖ ପାମର ସେ ଜାଣି ନ ପାରିଲା ବିଧି ।
ଅତି ଉଗ୍ର ବର ଘେନି ଥିବାରୁ ତ୍ରିପୁର
ନିକଟେ ତା ମୃତ୍ୟୁଚିନ୍ତା କଲେ ଚକ୍ରଧର ।
ବିଷ୍ଣୁଙ୍କ ବଚନ ଶୁଣି ଧାଇଁଲା କୌଣପ
ପ୍ରବେଶ ହୋଇଲା ଯାଇ ଈଶ୍ୱର ସମୀପ ।
ଆରେ ଆରେ ବୋଲି ଉଚ୍ଚେ ଡାକେ ମହାଦୁଷ୍ଟ
କଇଳାସ ଶିଖରେ ଉଠିଲା ପାପିଷ୍ଠ ।
ତିନିପୁର କମ୍ପିଲାକ କମ୍ପିଲା ବାସବ
ଧ୍ୟାନରେ ଜାଣିଲେ ତାହା ଦେବ ମହାଦେବ ।
ଭାବିଲେ ଉଗ୍ରବର ଏ ପାଇଛି ଅସୁର
ତାହା ପ୍ରାପ୍ତଯୋଗେ ମାୟାକଲେ ଚକ୍ରଧର ।
ସେହି ପ୍ରଭୁଙ୍କର ଅଟେ ଚକ୍ରକୂଟ ବୁଦ୍ଧି
ଯେହ୍ନେ ଦାନବ ମରିବ କରିବା ସେ ବିଧି ।
ଈଶ୍ୱର ବିଜେ ପର୍ବତ ଉତ୍ତର କୋଣରେ
ଅସୁରକୁ ଭେଟିଲେ ଯେ ଦେବ ସେହିଠାରେ ।
ତମ୍ୱାପତ୍ର ପ୍ରାୟ ତାର ବୁଲେ ବେନିଆଖି
ଈଶ୍ୱର ଭୟ କରିଲେ ତାର ରୂପ ଦେଖି ।
ତ୍ରିଶୂଳ ବୁଲାଇକରି ବୋଇଲା ତ୍ରିପୁର
ହେ ଈଶ୍ୱର କି ବିଚାର ହୋଇଲା ତୋହର ।
ଷାଠିଏସହସ୍ର ବରଷ ଦୁଃଖେ ତପ କଲି
ଯେ ବର ନ ଦେଲୁ ତହିଁରେ ଫଳ ନ ପାଇଲି ।

ଦେବେ ବସାଇ ନ ଦେଲେ ମୋତେ ମେରୁସଭା
ତୋହର ଚାରିପତ୍ନୀଙ୍କି ମୋତେ ଏବେ ଦେବା
ଈଶ୍ୱର ବୋଇଲେ ତୁହି ଅଟୁରେ ଗୋଳକ
ପରପତ୍ନୀ ହରଣରେ ଛିଡ଼ଇ ମସ୍ତକ ।
ତ୍ରିପୁର ବୋଇଲେ ତୁହି ହରିଲୁ ଯେ ମାତ
ଈଶ୍ୱର ପଦ ତୋଠାରେ ଅଛଇ କେମନ୍ତ ।
ଈଶ୍ୱର ବୋଇଲେ ଯେବେ କାଲି ମାଗିଥାନ୍ତୁ
ନିଶ୍ଚୟ ଚାରିପତ୍ନୀଙ୍କି ଆମ୍ଭେ ଦେଇଥାନ୍ତୁ ।
ଉଦେଅସ୍ତ ପର୍ଯ୍ୟନ୍ତେ ଯା ମାଗିଲୁ ତା ଦେଲି
ଆଜି ମାଗିଲେ ନ ପାଉ ଯାଅ ଏଥୁ ଚାଲି ।
ତ୍ରିପୁର ବୋଇଲା ତୁହି ମୋର ମହାଗୁରୁ
ତୋ ଦୁଇ ଭାରିଯା ଦିଅ କିପାଁ ନାହିଁକରୁ ।
ଯେବେ ଦୁଇଟି ଭାରିଯା ନ ଦେବୁଟି ମୋତେ
କଇଳାସ ଭାଙ୍ଗି ନାଶ କରିବି ମୁଁ ତୋତେ ।
ଏହା ଶୁଣି କୋପ କଲେ ଦେବ ଶୂଳପାଣି
ଏ ତୋହର ମୃତ୍ୟୁ ତୋତେ ଆଣିଲାକ ଟାଣି ।
ତ୍ରିପୁର ବୋଇଲା ତୋର ଛେଦିବି ମୁଁ ଶିର
ତେବେ ସେ ଈଶ୍ୱରପଦ ହୋଇବ ମୋହର ।
ଏହା କହି ଧନୁଧରି ନାରାଚ ବିନ୍ଧିଲା
ସେ ଅସ୍ତ୍ର ଯାଇ ଶିବଙ୍କ ଚରଣେ ନମିଲା ।
ଦେଖି ପ୍ରଜ୍ୱଳିତ ହେଲେ ଦେବ ପଞ୍ଚାନନ
ରାଗେ ଧନୁ ଧରି ଶର ବିନ୍ଧିଲେ ବହନ ।
ପୁଣି ସହସ୍ର ନାରାଚ ଯୋଚିଣ ତ୍ରିପୁର
ଈଶ୍ୱରଙ୍କ ଉପରକୁ ବିନ୍ଧେ ତତପର ।
ବାୟବ୍ୟ ଅସ୍ତ୍ର ବିନ୍ଧିଣ ଦେବ ଶୂଳପାଣି
ତ୍ରିପୁର ଶସ୍ତ୍ରମାନଙ୍କୁ ପକାଇଲେ ହାଣି ।
ସହସ୍ର ନାରାଚ ପୁଣି ବିନ୍ଧିଲେ ମହେଶ
ତ୍ରିପୁର ତା ପ୍ରତିଅସ୍ତ୍ରେ କଲା ସବୁ ନାଶ ।
ପରସ୍ପରରେ ସମର ବଢ଼େ ମହାରୋଳ
ଦୁହିଙ୍କର ଶରୀରରୁ ବହେ ଶ୍ରମଝାଳ ।
ଲାଘବ ଯୁଦ୍ଧରେ କେହି କାହାକୁ ନ ଜିଣି
ଦେବାସ୍ତ୍ରମାନ ବିନ୍ଧନ୍ତି ଦୁହେଁ ପୁଣି ପୁଣି ।
ସେ ଅସ୍ତ୍ରଙ୍କ ଚାଳନାରେ କମ୍ପେ ତିନିପୁର
ଚାରିଦିଗେ ଉଲ୍‌କାପାତ ହେଲା ନିରନ୍ତର ।
ଅବିଶ୍ରାମ ଦିନରାତି ସଂଗ୍ରାମ ଲାଗିଲା
ଆହାର ନିଦ୍ରାବକାଶ ଦୁହିଙ୍କି ନୋହିଲା ।
ଏହିରୂପେ ମହାଗୋଳ ହେଲା ଅପ୍ରମିତ
ଦୁହିଙ୍କର ଷଷ୍ଟି ସସ୍ର ବର୍ଷେ ପରିଯନ୍ତ ।
ଯୁଦ୍ଧରେ ବିମୁଖ ହୋଇ ଦେବ ତ୍ରିଲୋଚନ
ଭାଳନ୍ତି ଭାର୍ଯ୍ୟାକୁ ଦେବି ନେଇ ଏ ଦୁର୍ଜ୍ଜନ ।
ବିଘ୍ନରାଜ ଜାଣିପାରି ଶିବଙ୍କର ମନ
ସମରେ ଶ୍ରମ ପାଇଲ କିପାଇଁ ଆପଣ ।
ଈଶ୍ୱର ବୋଇଲେ ବାବୁ ବିନ୍ଧେ ଯେତେ ଶର
ତ୍ରିପୁର ଶରୀରେ ପଡ଼ି ସବୁ ହୁଏ ଚୂର ।
ଗଣେଶ ବୋଇଲେ ବକ୍ର କଲ ତା ଦେହକୁ
ତେଣୁକରି ନ ଭେଦଇ ଅସ୍ତ୍ର ଯେ ତାହାକୁ ।
ଏବେ କି ବିଚାର ପ୍ରଭୁ କରୁଛ ଆପଣ
ଦୁଇପତ୍ନୀ ଦେବି ତାକୁ ବୋଇଲେ ଈଶାନ ।
ଗଣେଶ ବୋଇଲେ ମନେ ନୁହନ୍ତୁ ଭାବିତ
ସ୍ୱାମୀ ଏ କଥା ଯୁକତେ ନୁହେଁ କଦାଚିତ ।
ମୋ ବିଚାରେ ତ୍ରିପୁରକୁ ବଧନ୍ତୁ ଏମନ୍ତ
ଦେବତାମାନଙ୍କୁ ଏବେ ଚିନ୍ତନ୍ତୁ ତୁରିତ ।
ବ୍ରହ୍ମା ବିଷ୍ଣୁ ପୁରନ୍ଦର ଆଉ ଚନ୍ଦ୍ର ସୂର୍ଯ୍ୟ
ବାୟୁ ଅଗ୍ନି ଆଦିକରି ଅଣାଅନ୍ତୁ ଆଜ ।
ବିଘ୍ନରାଜଙ୍କ ବଚନେ ସେ ଦେବ ଧୂର୍ଜ୍ଜଟି
ଚିନ୍ତାକଲେ ଆସ ଦେବେ ତିନି ତ୍ରିଂଶକୋଟି ।
ଶିବ ସ୍ମରନ୍ତେ ଅଇଲେ ତହିଁ ଦେବଗଣ
ବୋଇଲେ ଆମ୍ଭଙ୍କୁ କିପାଁ କରିଲ ସ୍ମରଣ ।
ଗଣେଶ ବୋଇଲେ ଆମ୍ଭେ ନାଶିବୁ ତ୍ରିପୁର
ହେ ବିଷ୍ଣୁ ଆପଣ ହେବେ ଫଳା ନାରାଚର ।
କାଣ୍ଡଶର ହେବ ତୁମ୍ଭେ ଆହେ ବୈଶ୍ୱାନର
ଶର ପଛେ ପଞ୍ଚପକ୍ଷୀ ହେବ ହେ ସମୀର ।
ଅନାଦି ଧନୁଟି ଯେବେ ଆର୍ଦ୍ରାବଳୀ ହେବ
ଏ ଅସ୍ତ୍ର ଘେନି ବିନ୍ଧିବେ କଇଳାସ ଧବ ।
ରକ ଯଜୁ ଅଥରବ ସାମବେଦ ଚାରି
ଏ ଅଶ୍ୱ ହୋଇଣ ରଥ ନେବେ ଚାଳିକରି ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଏ ଦିଗ
ରଥକାଣ୍ଡ ହୋଇବେ ଏ ଶୁଣ ମହାଭାଗ ।
ଆବର୍ତ୍ତକ ସମ୍ବର୍ତ୍ତକ ଦ୍ରୋଣ ଯେ ପୁଷ୍କର
ଚାରିପୀଢ଼ ହୋଇବେ ଏ ଜାଣ ହେ ରଥର ।
ସତ୍ୟ ତ୍ରେତା ଦ୍ୱାପର ଯେ କଳି ଏହି ଚାରି
ରଥ ଚାରିଚକ ହେଲେ ଜାଣ ଚକ୍ରଧାରୀ ।
ହିମବନ୍ତ ଆଦିକରି ଗନ୍ଧ ଯେ ମାର୍ଦନ
ରଥକୁ ପାବଚ୍ଛ କଲେ ଦେବ ଗଜାନନ ।
ରଥ ଚାଳିବାକୁ ଶୂଳୀ ବ୍ରହ୍ମାଙ୍କୁ ବୋଇଲେ
ଆପଣେ ବ୍ରହ୍ମା ସେ ରଥେ ସାରଥି ହୋଇଲେ ।
ଅଷ୍ଟକୁଳ ନାଗେ ହେଲେ ଅଶ୍ୱର ଦଉଡ଼ି
ରଥକୁ ଚଳାଇ ଦେବ କଲେ ଘୋର ରଡ଼ି ।
ମାର ମାର ଧର ଧର ବୋଲିଣ ଧାଇଁଲେ
ତ୍ରିପୁର ଅସୁର ପାଶେ ପରବେଶ ହେଲେ ।
ଈଶ୍ୱରଙ୍କ ମୂର୍ତ୍ତି ଦେଖି ଭାଳଇ ଅସୁର
ହାତୀମୁଣ୍ଡା ମୃତ୍ୟୁଭେଦ କହିଲା ମୋହର ।
ଏହାଭାଳି ଭୟେ ତହୁଁ କଲା ପଳାୟନ
ତା ପଛେ ରଥ ଚଳାଇ ଯାନ୍ତି ତ୍ରିଲୋଚନ ।

ବିଷ୍ଣୁ ବୋଇଲେ ଶିବଙ୍କୁ ଆହେ ମହେଶ୍ୱର
ଅସୁରପରେ ପ୍ରୟୋଗ କର ଦେବଶର ।
ଦେଖ ଆକାଶେ କ୍ଷେପଇ ବେଗଗତି କରି
ହେଳା ନ କରିଣ ବେଗେ ପେଷ ଅସ୍ତ୍ର ଧରି ।
ବ୍ରହ୍ମଶର ପେଷୁଥିବା ଦେଖିଣ ଦଇତ୍ୟ
ଭୟରେ ବିକଳ ହୋଇ ହେଲା ଚମକିତ ।
ମହାତ୍ରାସେ ପଳାଇଣ ଯାଏ ଯେ ତ୍ରିପୁର
ପବନୁ ବେଗେ ତା ପଛେ ଗୋଡାନ୍ତି ଶଙ୍କର ।
ଅନ୍ତରୀକ୍ଷେ ପଳାଏ ସେ ନ ଚାହେଁ ଲେଉଟି
ତାକୁ ଲକ୍ଷ୍ୟକରି ଶର ବିନ୍ଧନ୍ତି ଧୂର୍ଜ୍ଜଟି ।
ଷାଠିଏ ସହସ୍ର ବର୍ଷ ଯୁଦ୍ଧ ପ୍ରଥମରେ
ଏକବର୍ଷ ପୁଣି ଯୁଦ୍ଧକଲେ ଏହାପରେ ।
ନିଦାଘକାଳ ହୋଇଛି ବଇଶାଖ ମାସ
ଶୁକ୍ଳପକ୍ଷ ଭୌମବାର ଦ୍ୱାଦଶୀ ଦିବସ ।
ହସ୍ତାନାମରେ ନକ୍ଷତ୍ର ଭୋଗ ସେ ଦିନରେ
ବେଳ ହୋଇଅଛି ଅଷ୍ଟଦଣ୍ଡର ମଧ୍ୟରେ ।
ତ୍ରିପୁର ରହିଲା ଆଉ ନ ପାରିଲା ଯାଇ
ଗଣେଶ ବୋଇଲା ମାର କେଭେଁ ଛାଡ଼ନାହିଁ ।
ଧୂର୍ଜ୍ଜଟି ବିନ୍ଧିଲେ ସେହି ମହାତୀକ୍ଷ୍ଣ ବାଣ
ତ୍ରିପୁର ନାଭିରେ ପଡ଼ି ଯାଇ ସେହିକ୍ଷଣ ।
ଶତକୋଟି କିରଣଟି ଯେଉଁ ଶର ତେଜ
ସେ ନାଭିରେ ପଡୁ ଦୈତ୍ୟ ହୋଇଲା ଦହିଯ୍ୟ
ତ୍ରୈଲୋକ୍ୟେ ଶୁଭିଲା ଜୟ ସୁମଙ୍ଗଳ ବାଣୀ
ତ୍ରିପୁର ନାଶନ ଦେବ ଜୟ ଶୂଳପାଣି ।
ତବ ପଦ୍ମପାଦେ ରହୁ ଚିତ୍ତ ଅବିରତ
ମେରୁଶିରେ ସଭାକରି ବସିଲେ ଦୈବତ ।
ତ୍ରିପୁରକୁ ବଧ କରି ତହିଁ ବିଶ୍ୱନାଥ
ଆନନ୍ଦରେ ଆରମ୍ଭିଲେ ସେ ତାଣ୍ଡବ ନୃତ୍ୟ ।
ପିତାମହ ବିଜେ କଲେ ବାଇଲେ ମର୍ଦ୍ଦଳ
ଦେବେଶ କଂସାଳ ନେଲେ ପବନ କାହାଳ ।
ନାରାୟଣ ଗାଇଲେକ ମଧୁର ସଙ୍ଗୀତ
ସରସ୍ୱତୀ ଯାହାଙ୍କର ଚରଣେ ବନ୍ଦିତ ।
ବସନ୍ତ ବାଇକ ବଂଶୀ ଅନଙ୍ଗ ଯେ ବୀଣା
ଏ ରୂପେ ଆନନ୍ଦେ ସର୍ବେ କଲେକ ବାଜଣା ।
ଓଁକାର ସୁରସ ଚଉରସେ ଯେ ଆଳତୀ
ନୃତ୍ୟ ଆରମ୍ଭିଲେ ଏକା ଛନ୍ତି ପଶୁପତି ।
ଏମନ୍ତ ନୃତ୍ୟ କରନ୍ତେ ଉଇଁଲେ ଭାସ୍କର
ସକଳ ଦେବଙ୍କ ମନେ ଆନନ୍ଦ ଅପାର ।
ନିଦାଘ କାଳ କିରଣ ସମାନ ମୁକୁଟେ
ଦେବେ ପିନ୍ଧାଇଲେ ନେଇ ଶିବଙ୍କ ଲଲାଟେ ।
କାମକଳା ବିଦାରିଣ ଅମୂଲ୍ୟ ଧାତୁରେ
ସେ ମୁକୁଟ ଗଢ଼ିଥିଲେ ଅତ୍ୟନ୍ତ ଯତ୍ନରେ ।
ସେ ମୁକୁଟେ ଅତି ଶୋଭା ପାଇଲା ମସ୍ତକ
ଶଙ୍ଖପଦ୍ମ ମହାପଦ୍ମ ଶ୍ୱେତ କର୍କୋଟକ ।
ତକ୍ଷକ ଭକ୍ଷକ ନାଗ ଅନନ୍ତ ଏମାନେ
କର୍ଣ୍ଣାଞ୍ଚଳ ବାହୁଟିଆ ହୋଇଲେ ଏ କର୍ଣ୍ଣେ ।
ଏହି ରୂପରେ ମହେଶ କରନ୍ତି ନର୍ତ୍ତନ
ତାଙ୍କ ନୃତ୍ୟରଙ୍ଗେ ମେରୁ ହେଲା କମ୍ପମାନ ।
ପୁଣି ନୃତ୍ୟ କରୁଛନ୍ତି ବଜାଇ ଡମ୍ବରୁ
ଧରଣୀ କମ୍ପେ କମ୍ପିଲା ଅନନ୍ତର ଫେରୁ ।
ତାଣ୍ଡବ ନୃତ୍ୟରେ ଦେବ ଅଟନ୍ତି ନିର୍ଜିତା
ଦିଗବସନ ତାଙ୍କର କଟିରେ ଯେ କନ୍ଥା ।
ସେ ତ୍ରିପୁର ବିଦାରଣ ଚରଣେ ନମଇ
ତାଙ୍କ ନାମ ସଦା ହୃଦେ ଧାଉଅଛି ମୁହିଁ ।
ଜୟ ଜୟ ମହେଶ୍ୱର ଜୟ ଉମାକାନ୍ତ
ସଦାନନ୍ଦ ପୁରୁଷ ତୋ ମହିମା ଅନନ୍ତ ।
ସସ୍ରଧାରେ ବହଇ ତୋ ଶିରେ ଧବଳାଙ୍ଗୀ
ଶୁଦ୍ଧ ସ୍ଫଟିକ ଶରୀରେ ତୁ ପରମ ଯୋଗୀ ।
ସେବକକୁ ଦେଉ ସୁଖାସନ ଯାନ ଛତ୍ର
ଆପଣ ହଡ଼ା ବାହନେ ବିହର ନିରତ ।
ତ୍ରିପୁରକୁ ନାଶି ସର୍ବ ଦେବଙ୍କୁ ରଞ୍ଜିଲୁ
ବିଜୟା ଭକ୍ଷଣେ ସଦା ତୁହି ରତ ହେଲୁ ।
ଏଥୁ ଅନନ୍ତରେ ଶୁଣ ବିଲଙ୍କ ରାଜନ
ଏହିପରି ସ୍ତବ ପାଠ କରି ଦେବଗଣ ।
ଆନନ୍ଦରେ ଚଳିଗଲେ ଯେ ଯାହାର ପୁରେ
ମହାଦେବ ବିଜେ କଲେ କୈଳାସ କନ୍ଦରେ ।
ତ୍ରିପୁରା ବିନାଶେ ସୁଖୀ ହୋଇଲେ ପାର୍ବତୀ
ନାନାଶସ୍ୟ ଜାତକଲେ ଦେବୀ ବସୁମତୀ ।
ଶିବପୁରାଣର କଥା ଏହିଟି ଅଟଇ
ମୁହିଁ ଏଠାରେ ଲେଖିଲି ଜନହିତ ପାଇଁ ।
ତ୍ରିପୁରର ବଧ ଯେହୁ ଶୁଣନ୍ତି ଶ୍ରବଣେ
ତା ପାଶକୁ ନ ଆସନ୍ତି ଯମଦୂତଗଣେ ।
ବାରାଣସୀ କ୍ଷେତ୍ର ଅଟେ ବିଶ୍ୱନାଥ ସ୍ଥାନ
ଜନ୍ମେ ଜନ୍ମେ ତାଙ୍କ ପାଦେ ରହୁ ମୋର ମନ ।
ମୁହିଁ ନୁହେଁ ରୁଦ୍ରଗଣ ନାହିଁ ପ୍ରଭୁ କଳା
ପାଞ୍ଚୁଅଛି ରୁଦ୍ରଗଣେ ହୋଇବାକୁ ମେଳା ।
ଶୁଣ ଜନେ ପାଣ୍ଡବଙ୍କ ଏଥେଁ ବାରବର୍ଷ
ଶେଷ ହେଲା ଯିବେ ଏବେ ସେ ବିରାଟଦେଶ
ଆରଣ୍ୟକ ପର୍ବ ଏଥି ହୋଇଲା ସମ୍ପୂର୍ଣ୍ଣ
ଶାରଳା ଦାସ କହଇ ଦେବୀ କରି ଧ୍ୟାନ ।

ଇତି ଶ୍ରୀ ମହାଭାରତ ବନପର୍ବ ସମ୍ପୂର୍ଣ୍ଣ

# ମହାଭାରତ






ପ୍ରକାଶକ-

ଧର୍ମଗ୍ରନ୍ଥ ଷ୍ଟୋର (TM)

ଅଲିଶା ବଜାର, କଟକ-୨

ଫୋନ୍ : (୦୬୭୧)୨୫୦୮୨୯୬

website : www.dharmagranthastore.com